ମହର୍ଷି କୃଷ୍ଣ ଦ୍ୱୈପାୟନ ବେଦବ୍ୟାସ କୃତ

# ପଦ୍ମ ପୁରାଣ

## ଭୂମିଖଣ୍ଡ ଓ ବ୍ରହ୍ମଖଣ୍ଡ

ଲେଖକ : ୰ ଗୋପୀନାଥ କରଶର୍ମା

(ନୂତନ ମୁଦ୍ରଣ)

ପ୍ରକାଶକ :

ଧର୍ମଗ୍ରନ୍ଥ ଷ୍ଟୋର



ପ୍ରାପ୍ତିସ୍ଥାନ :

ଧର୍ମଗ୍ରନ୍ଥ ଷ୍ଟୋର

ପ୍ରତିଷ୍ଠାତା : ଶ୍ରୀ ବିଦ୍ୟାଧର ସାହୁ

ପ୍ରୋ : ମହିମା ପ୍ରସାଦ ସାହୁ

ଅଲିଶାବଜାର, କଟକ - ୭୫୩ ୦୦୨

ଫୋନ : ୨୫୦୮୨୯୬

ମୂଲ୍ୟ : ଏକଶହ ସତୁରୀ ଟଙ୍କା ମାତ୍ର

# ସୂଚିପତ୍ର


| ବିଷୟ | ପୃଷ୍ଠାଙ୍କ |
|---|---|
| ଋଷିଙ୍କ ପ୍ରଶ୍ନେ ସୂତଙ୍କର ବ୍ରହ୍ମ ବ୍ୟାସ ସମ୍ବାଦ ଓ ପ୍ରହ୍ଲାଦଚରିତ କଥନ | ୧ |
| ଧର୍ମ ଶର୍ମାଦ୍ୱାରା ମୃତ ପୁତ୍ରର ପୁନର୍ଜୀବନ ଲାଭ ଓ ବିଷ୍ଣୁ ଶର୍ମାଙ୍କୁ ଅମୃତ ହରଣେ ଆଦେଶ | ୪ |
| ବିଷ୍ଣୁ ଶର୍ମାର ପଥେ ମେନକାର ଭେଟ | ୫ |
| ସୋମ ଶର୍ମା ଉପାଖ୍ୟାନ | ୯ |
| ପତ୍ନୀ ସହିତ ଶିବଶର୍ମାର ବିଷ୍ଣୁଲୋକ ପ୍ରାପ୍ତି ଓ ପ୍ରହ୍ଲାଦର ପୂର୍ବଜନ୍ମ ବୃତ୍ତାନ୍ତ ଓ ଇନ୍ଦ୍ରପଦ ଲାଭ | ୧୧ |
| ଇନ୍ଦ୍ରର ଐଶ୍ୱର୍ଯ୍ୟ ଦର୍ଶନେ ଦନୁର ଦୁଃଖ ଦିତିର ବିଳାପ ଓ କଶ୍ୟପଙ୍କର ସାନ୍ତ୍ୱନା | ୧୪ |
| ଦିତି ଆଗରେ ପଞ୍ଚ ମହାଭୂତ ଇନ୍ଦ୍ରିୟ ସହିତ ଆତ୍ମାର ଗର୍ଭଗୃହ ପ୍ରବେଶ କଥନ | ୧୬ |
| ଆତ୍ମାର ବୈରାଗ୍ୟ ସହିତ ମିଳନ | ୧୯ |
| ଧ୍ୟାନଯୋଗେ ଆତ୍ମାର ମୋକ୍ଷ ଓ ଆତ୍ମଜ୍ଞାନ ଲାଭ | ୨୪ |
| ହିରଣ୍ୟ କଶିପୁ ଆଦି ଦୈତ୍ୟଙ୍କର କଶ୍ୟପଙ୍କ ଆଗେ ଦୁଃଖ ପ୍ରକାଶ | ୨୫ |
| ସୁବ୍ରତ ଚରିତ | ୨୭ |
| ଋଣ ସମ୍ବନ୍ଧରେ ରିପୁଲାଭପ୍ରଦ ଓ ଉଦାସୀନ ପୁତ୍ର ଲକ୍ଷଣ | ୨୯ |
| ବ୍ରହ୍ମଚର୍ଯ୍ୟ, ତପ, ସତ୍ୟ, ଦାନ, ନିୟମାଦି ଲକ୍ଷଣ | ୩୫ |
| ସୁମନାର ପୂର୍ବ ବୃତ୍ତାନ୍ତ | ୩୭ |
| ପାପୀ ମରଣ ଲକ୍ଷଣ | ୩୯ |
| ପାପୀର ମୃତ୍ୟୁପର କ୍ଳେଶ ନିର୍ଣ୍ଣୟ | ୪୦ |
| ସୁମନା ଉପଦେଶେ ସୋମଶର୍ମାର ପୁତ୍ରାର୍ଥେ ବଶିଷ୍ଠ ପାଶେ ଗମନ | ୪୧ |
| ସୋମଶର୍ମା ବିପ୍ର ଜନ୍ମ କାରଣ | ୪୪ |
| ସୁମନା ସହିତ ସୋମଶର୍ମାର ରେବାକପିଳ ସଙ୍ଗମ ତୀର୍ଥେ ତପସ୍ୟା | ୪୫ |
| ସୋମଶର୍ମାକୁ ଶ୍ରୀବିଷ୍ଣୁଙ୍କର ବରଦାନ | ୪୮ |
| ସୁବ୍ରତ ଚରିତ | ୫୦ |
| ସୁବ୍ରତର ପୂର୍ବଜନ୍ମ ବୃତ୍ତାନ୍ତ | ୫୩ |
| ସୃଷ୍ଟି ସଂହାର | ୫୫ |
| କ୍ରୋଧେ କଶ୍ୟପଙ୍କର ଅଗ୍ନିକୁଣ୍ଡେ ଜଟା ନିକ୍ଷେପ ଓ ବୃତ୍ରାସୁରୋତ୍ପତ୍ତି | ୫୭ |
| ରମ୍ଭାସକ୍ତ ବୃତ୍ରାସୁରର ମଧୁପାନ ଓ ଇନ୍ଦ୍ରହସ୍ତେ ବୃତ୍ର ବଧ | ୫୯ |
| କଶ୍ୟପ ସହିତ ଦିତିର ମେରୁ ପର୍ବତେ ତପସ୍ୟାରମ୍ଭ | ୬୦ |
| ପୃଥୁ ରାଜ୍ୟାଭିଷେକ | ୬୧ |
| ପୃଥୁ ଚରିତ ଓ ବେନର ଉଦ୍ଧାର | ୬୩ |
| ପୃଥିବୀ ଦୋହନ | ୬୮ |
| ବେନ ରାଜା ଚରିତ | ୭୧ |

| ବିଷୟ | ପୃଷ୍ଠାଙ୍କ |
|---|---|
| ମେରୁ ପର୍ବତେ ଅଙ୍ଗରାଜାର ତପସ୍ୟା | ୭୪ |
| ଗଙ୍ଗ ତଟେ ଅଙ୍ଗରାଜାର ବିଷ୍ଣୁସ୍ତୁତି | ୭୫ |
| ସୁନୀଥା ଚରିତ | ୭୮ |
| ସଖିଆଗେ ସୁନୀଥାର ଦୁଃଖ ପ୍ରକାଶ | ୭୯ |
| ରମ୍ଭାମୁଖରୁ ସୁନୀଥାର ଅଙ୍ଗ ବୃତ୍ତାନ୍ତ ଶ୍ରବଣ | ୮୧ |
| ସୁନୀଥା ବିଭା ଓ ବେନଜନ୍ମ | ୮୨ |
| ବେନର ବେଦଧର୍ମ ଧ୍ୱଂସ | ୮୪ |
| ବେନର ନାସ୍ତିକ ବୁଦ୍ଧି ବଳେ ବୈଦିକ ଧର୍ମ କର୍ମାଦି ତ୍ୟାଗ | ୮୭ |
| ରେବାତୀରେ ତୃଣବିନ୍ଦୁ ଆଶ୍ରମରେ ବେନର ତପସ୍ୟା | ୮୮ |
| ନିତ୍ୟ ନୈମିତ୍ତିକ ଦାନର ଫଳ | ୯୨ |
| ଭାର୍ଯ୍ୟା ତୀର୍ଥ ବର୍ଣ୍ଣନ ଓ ପତିବ୍ରତା ସୁକଳାର ଚରିତ୍ର | ୯୪ |
| ପତିବ୍ରତା ସୁଦେବା ଚରିତ | ୯୭ |
| ମେରୁ ପର୍ବତେ ବରାହ ଯୂଥସଙ୍ଗେ ଇକ୍ଷ୍ୱାକୁ ସୈନ୍ୟର ଯୁଦ୍ଧ | ୧୦୧ |
| ଇକ୍ଷ୍ୱାକୁ ବରାହ ଯୂଥପତିର ମୃତ୍ୟୁ | ୧୦୬ |
| ଶୂକରୀ ଯୁଦ୍ଧ | ୧୦୭ |
| ଶୂକରୀ ମୁଖେ ସୁଦେବାର ଜଳ ସେଚନ ଓ ଶୂକର ବୃତ୍ତାନ୍ତ | ୧୦୯ |
| ଶୂକରୀ ପୂର୍ବ ଜନ୍ମ ବୃତ୍ତାନ୍ତ | ୧୧୧ |
| ସୁଦେବାର ସ୍ୱାମୀ ଆଗରେ ବାପ ଘରେ ଥିବା କନ୍ୟାର ଦୋଷ କୀର୍ତ୍ତନ | ୧୧୪ |
| ଗୋଭିଳ ଦୈତ୍ୟର ପଦ୍ମାବତୀ ହରଣ | ୧୧୫ |
| ପଦ୍ମାବତୀ ପ୍ରତି ଗୋଭିଳର ପୁଂଶ୍ଚଳୀ ଧର୍ମ କଥନ | ୧୧୬ |
| କଂସ ଜନ୍ମ | ୧୧୯ |
| ପତି ଗୃହେ ସଉତୁଣୀର ପତିବ୍ରତ ଦର୍ଶନେ ସୁଦେବାର ପଶ୍ଚାତ୍ତାପ | ୧୨୧ |
| ଇନ୍ଦ୍ରଦ୍ୱାରା ସୁକଳାର ପତିବ୍ରତା ପରୀକ୍ଷା | ୧୨୩ |
| ରତି କନ୍ଦର୍ପ ସହିତ ଇନ୍ଦ୍ରର ସୁକଳା ସମୀପେ ଗମନ | ୧୨୮ |
| ଇନ୍ଦ୍ର ମଦନ ବିବାଦ ଓ ମଦନର କ୍ରୀଡ଼ା ଦୂତୀ ପ୍ରେରଣ | ୧୨୯ |
| ସତ୍ୟ ଓ ଧର୍ମର ବାଦାନୁବାଦ | ୧୩୨ |
| କାମଦୂତୀ କ୍ରୀଡ଼ାସଙ୍ଗେ ସୁକଳାର ଉପବନ ଗମନ | ୧୩୪ |
| ଇନ୍ଦ୍ରର ଆଶାଭଙ୍ଗ | ୧୩୬ |
| ତୀର୍ଥ ବ୍ରତକରି ଗୃହକୁ ଆସିବାବେଳେ କୃକଳର ବାଟରେ ପିତୃବନ୍ଧନ ଦର୍ଶନ | ୧୩୮ |
| ଭାର୍ଯ୍ୟାହସ୍ତ ଅନ୍ନଦାନ କୃକଳର ପିତୃମୁକ୍ତି | ୧୪୦ |
| ପିତୃତୀର୍ଥ ବର୍ଣ୍ଣନ | ୧୪୧ |
| ପିପ୍ପଳ ସୁକର୍ମା ସମ୍ବାଦ | ୧୪୩ |
| ମାତୃ ପିତୃ ମାହାତ୍ମ୍ୟ | ୧୪୭ |
| ନହୁଷ ଯଯାତି ଚରିତ | ୧୪୮ |

| ବିଷୟ | ପୃଷ୍ଠାଙ୍କ |
|---|---|
| ଶରୀର ଦୋଷ ନିର୍ଣ୍ଣୟ | ୧୫୨ |
| ଦେହର ଉତ୍ପତ୍ତି ନିର୍ଣ୍ଣୟ | ୧୫୨ |
| ସୁକୃତ ଦୁଷ୍କୃତ କର୍ମବିପାକ | ୧୬୩ |
| ସୁକୃତ କର୍ମଫଳ କଥନ | ୧୬୯ |
| ବିବିଧ ଶିବଧର୍ମ କଥନ | ୧୭୦ |
| ଯମଲୋକ ପୀଡ଼ା ବର୍ଣ୍ଣନ | ୧୭୨ |
| ଦେବଲୋକ ସଂସ୍ଥିତି ବର୍ଣ୍ଣନ | ୧୭୨ |
| ଯଯାତିର ସ୍ୱର୍ଗଗମନ ଅସ୍ୱୀକାର | ୧୭୪ |
| ଯଯାତିର ସ୍ୱର୍ଗରାଜ୍ୟେ ବିଷ୍ଣୁସେବା ପ୍ରଚାର | ୧୭୫ |
| ପୃଥିବୀ ଲୋକଙ୍କର ଭାଗବତଧର୍ମ ଅବଲମ୍ବନ | ୧୭୬ |
| ବୈଷ୍ଣବଧର୍ମ ପ୍ରଭାବେ ରାଜାପ୍ରଜାଙ୍କର ଜରା ମରଣରୋହିତ୍ୟ | ୧୭୮ |
| ଇନ୍ଦ୍ର ନିକଟେ ଯମର ଯଯାତି ସ୍ୱର୍ଗାନୟନ ପ୍ରାର୍ଥନା | ୧୭୯ |
| ଯଯାତି ଦେହେ ଜରା ପ୍ରବେଶ | ୧୮୧ |
| ତିନିପୁତ୍ରଙ୍କୁ ଯାଯାତିଙ୍କ ଅଭିଶାପ | ୧୮୬ |
| ଅଶ୍ରୁବିନ୍ଦୁମତୀ ବିଭା | ୧୮୯ |
| ଦେବଯାନି ଓ ଶର୍ମିଷ୍ଠା ଚରିତ | ୧୯୧ |
| ବାସବ ଆଦେଶେ ମେନକାର ଅଶ୍ରୁବିନ୍ଦୁମତୀ ସମୀପେ ଗମନ | ୧୯୧ |
| ଯଯାତିର ପୁରୁକୁ ରାଜ୍ୟ ଓ ଯୁବାଦାନ, ଜରାଗ୍ରହଣ, ରାଜନୀତି ଉପଦେଶ | ୧୯୫ |
| ଯଯାତିର ବୈଷ୍ଣବ ଲୋକ ଗମନ | ୧୯୬ |
| ପିତୃସେବା ଫଳେ ପୁରୁର ରାଜ୍ୟଲାଭ | ୧୯୯ |
| ଗୁରୁତୀର୍ଥ ମହିମା ବର୍ଣ୍ଣନେ ଚ୍ୟବନ ମାହାତ୍ମ୍ୟ | ୨୦୦ |
| ଦିବ୍ୟାଦେବୀର ପୂର୍ବଜନ୍ମ ବୃତ୍ତାନ୍ତ | ୨୦୩ |
| ଅଶୂନ୍ୟ ଶୟନବ୍ରତ ଓ କୃଷ୍ଣ ଶତନାମ | ୨୦୬ |
| ଉଜ୍ଜ୍ୱଳର ପ୍ଳକ୍ଷଦ୍ୱୀପେ ଦିବ୍ୟାଦେବୀ ଅଗ୍ରେ ବ୍ରତ ସ୍ତୋତ୍ରାଦି କଥନ | ୨୦୮ |
| ଦ୍ୱିତୀୟ ପୁତ୍ର ପ୍ରତି କୁଞ୍ଜଳର ପ୍ରଶ୍ନ | ୨୧୦ |
| ତୀର୍ଥ ବର୍ଣ୍ଣନ | ୨୧୩ |
| ବ୍ରହ୍ମହତ୍ୟାଦି ଦୋଷିତ ଇନ୍ଦ୍ରର ମାଳବଦେଶେ ଗମନ | ୨୧୫ |
| ସିଦ୍ଧୋପଦେଶ ବିଦୁର ଆଦିଙ୍କର ବାରାଣସୀ ସ୍ନାନେ ମୁକ୍ତି | ୨୧୬ |
| ବିଜ୍ୱଳର ନିଜ ବୃତ୍ତାନ୍ତ ନିବେଦନ | ୨୧୮ |
| ସୁବାହୁ ରାଜୋପାଖ୍ୟାନ | ୨୧୯ |
| ଜୈମିନିର ସ୍ୱର୍ଗଗୁଣ ବର୍ଣ୍ଣନ | ୨୨୨ |
| ନର୍କଗାମୀ ଓ ସ୍ୱର୍ଗଗାମୀ ବର୍ଣ୍ଣନ | ୨୨୩ |
| ସୁବାହୁ ଚରିତ | ୨୨୫ |
| ଶ୍ରୀ ବାସୁଦେବ ସ୍ତୋତ୍ର | ୨୨୯ |

| ବିଷୟ | ପୃଷ୍ଠାଙ୍କ |
|---|---|
| ସ୍ତୋତ୍ର ଶ୍ରବଣେ ସୁବାହୁର ମୋକ୍ଷ ଓ ଫଳ ଶ୍ରୁତି | ୨୩୩ |
| ପିତୃ ଅଗ୍ରତେ ବିଜ୍ୱଳର ସକଳ ବୃତ୍ତାନ୍ତ ବର୍ଣ୍ଣନ | ୨୩୫ |
| କୁଞ୍ଜଳଅଗ୍ରେ ଚତୁର୍ଥପୁତ୍ରର ଆପଣା ବୃତ୍ତାନ୍ତ କଥନ | ୨୩୬ |
| କୁଞ୍ଜଳର କାମଦାହାସ୍ୟ ରୋଦନଜନିତ ପଦ୍ମାବୃତ୍ତାନ୍ତ ଓ | |
| ଅଶୋକ ସୁନ୍ଦରୀ ବୃତ୍ତାନ୍ତ କଥନ | ୨୩୮ |
| ହୁଣ୍ଡ ଦୈତ୍ୟକଥା | ୨୪୧ |
| ଆୟୁ ଔରଷେ ଇନ୍ଦୁମତୀର ଗର୍ଭ | ୨୪୭ |
| ହୁଣ୍ଡ ଦୈତ୍ୟର ଇନ୍ଦୁମତୀ ପୁତ୍ରହରଣ | ୨୪୮ |
| ଇନ୍ଦୁମତୀ ଶୋକ | ୨୫୦ |
| ନାରଦ ରାଜ ସମୀପେ ନହୁଷ ବୃତ୍ତାନ୍ତ କଥନ | ୨୫୨ |
| ନହୁଷର ହୁଣ୍ଡ | |
| ଅଶୋକ ସୁନ୍ଦରୀ ନିକଟେ ହୁଣ୍ଡର ନହୁଷ ବୃତ୍ତାନ୍ତ କଥନ | ୨୫୪ |
| ନହୁଷକୁ ବଶିଷ୍ଠାଦିଙ୍କର କଲ୍ୟାଣ | ୨୫୬ |
| ନହୁଷ ଆଗମନୋତ୍ସବ | ୨୫୭ |
| ଅଶୋକ ସୁନ୍ଦରୀର ତପୋଭଗ୍ନ | ୨୫୭ |
| ରମ୍ଭାସହିତ ଅଶୋକସୁନ୍ଦରୀର ନହୁଷ ଦର୍ଶନ | ୨୫୮ |
| ନହୁଷ ସଙ୍ଗେ ହୁଣ୍ଡଦୈତ୍ୟର ଯୁଦ୍ଧ | ୧୫୯ |
| ହୁଣ୍ଡଦୈତ୍ୟ ବଧ | ୨୬୧ |
| ଅଶୋକ ସୁନ୍ଦରୀ ସହିତ ବଶିଷ୍ଠାଶ୍ରମେ ପ୍ରବେଶ | ୨୬୩ |
| ହସ୍ତିନାପୁରେ ନହୁଷର ରାଜ୍ୟାଭିଷେକ | ୨୬୪ |
| ହୁଣ୍ଡ ପୁତ୍ର ବିହୁଣ୍ଡ ଚରିତ | ୨୬୫ |
| କାମଦା ଜନ୍ମ ବୃତ୍ତାନ୍ତ | ୨୬୭ |
| କାମଦାପୁରେ ନାରଦ ପ୍ରବେଶ ଓ କାମୋଦା ସହିତ ବାକ୍ୟାଳାପ | ୨୬୮ |
| ଭୃଗୁଶାପେ ବିଷ୍ଣୁର ଦଶାବତାର କ୍ଳେଶ ବର୍ଣ୍ଣନ | ୨୭୧ |
| କୁଞ୍ଜଳର ଆତ୍ମବୃତ୍ତାନ୍ତ କଥନ | ୨୭୨ |
| କୁଞ୍ଜଳର ଜ୍ଞାନଲାଭ ଓ ଶୁକଯୋନି ଲାଭ | ୨୭୪ |
| ବେନକୃତ ପୃଥୁ ପ୍ରଶଂସା | ୨୭୬ |
| ବେନର ଅଶ୍ୱମେଧାଦି ଯଜ୍ଞ ଓ ସଶରୀରେ ବିଷ୍ଣୁଲୋକେ ଗମନ ଏବଂ | |
| ଭୂମିଖଣ୍ଡର ଫଳଶ୍ରୁତି | ୨୭୭ |

ମହର୍ଷି କୃଷ୍ଣଦ୍ୱୈପାୟନ ବେଦବ୍ୟାସ କୃତ

# ପଦ୍ମ ପୁରାଣ

## ଭୂମିଖଣ୍ଡ



### ଶ୍ରୀ ଗଣେଶାୟ ନମଃ

ନାରାୟଣଂ ନମସ୍କୃତ୍ୟଂ ନରଂଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟ ମୁଦିରୟେତ୍ ।।
ବେଦେ ରାମାୟଣେ ଚୈବ ପୁରାଣେ ଭାରତେ ତଥା ।
ଆଦୌ ପ୍ରାନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ ।।
ଯଂ ବ୍ରହ୍ମା ବରୁଣେନ୍ଦ୍ର ରୁଦ୍ର ମରୁତଃସ୍ତୁନ୍ୱନ୍ତି ଦିବ୍ୟୈସ୍ତବୈ
ର୍ବେଦୈଃ ସାଙ୍ଗପଦକ୍ରମୋପନିଷଦୈର୍ଗାୟନ୍ତି ଯଂ ସାମଗାଃ ।
ଧ୍ୟାନାବସ୍ଥିତତଦ୍‌ଗତେନ ମନସା ପଶ୍ୟନ୍ତି ଯଂ ଯୋଗିନୋ-
ଯସ୍ୟାନ୍ତଂ ନ ବିଦୁଃ ସୁରାଶୁରଗଣା ଦେବାୟ ତସ୍ମୈ ନମଃ ।।
ନମୋ ବ୍ରହ୍ମଣ୍ୟ ଦେବାୟ ଗୋ ବ୍ରାହ୍ମଣହିତାୟଚ
ଜଗଦ୍ଧିତାୟକୃଷ୍ଣାୟ ଗୋବିନ୍ଦାୟ ନମୋନମଃ ।।
ବ୍ୟାସଂ ବଶିଷ୍ଠନପ୍ତାରଂ ଶକ୍ତେଃ ପୌତ୍ରମକଳ୍ମଷଂ ।
ପରାଶରାତ୍ମଜଂ ବନ୍ଦେ ଶୁକତାତଂ ତପୋନିଧିଂ ।।

## ପ୍ରଥମ ଅଧ୍ୟାୟ

### ଋଷିଙ୍କ ପ୍ରଶ୍ନେ ସୂତଙ୍କର ବ୍ରହ୍ମ ବ୍ୟାସ ସମ୍ବାଦ ଓ ପ୍ରହ୍ଲାଦ ଚରିତ କଥନ

ନାରାୟଣ ନର ବ୍ୟାସ ନରଙ୍କ ଉତ୍ତମ
ଦେବୀ ସରସ୍ୱତୀ କରି ଏହାଙ୍କୁ ପ୍ରଣାମ ।
ତହୁଁ ଜୟ ଉଚ୍ଚାରିଣ ପଢ଼ିବ ପୁରାଣ
ତଦନ୍ତେ ଶ୍ରୀହରି ପାଦେ ପଶିବ ଶରଣ ।
ପୂଜା କରିବ ଯେ ତହୁଁ ଦେବ ଲମ୍ବୋଦର
ମନେ ମନେ ଚିନ୍ତାକରି ଶିବଙ୍କ ପୟର ।
ରାମରୂପୀ ହରିପାଦେ ମନକୁ ନିବେଶି
ରାମକୃଷ୍ଣ ନାମାମୃତ ପିଇବ ବିଶେଷି ।
ମହାଲକ୍ଷ୍ମୀ ପାର୍ବତୀଙ୍କ ଚରଣ ବନ୍ଦିବ
ଅଭୟ ଚରଣତଳେ ଶରଣ ପଶିବ ।
ନୀଳ ଶଇଳ ନିବାସୀ ଚତୁର୍ଦ୍ଧା ମୂରତି
ତାହାଙ୍କ ପାଦପଦ୍ମରେ କରିଣ ପ୍ରଣତି ।

ଦୁର୍ଗାନାମ ମନ୍ତ୍ରଗୋଟି ଜପିବ ଅନ୍ତରେ
ଶରଣ ପଶିବ ଭଦ୍ରକାଳୀଙ୍କ ପୟରେ ।
ନୃସିଂହ ପାଦପଦ୍ମରେ ଲଗାଇବ ଲୟ
ପୁରାଣ କହିବ ସବୁ ପାରକରି କ୍ଷୟ ।
ଋଷିଗଣ ପଚାରିଲେ ଅହେ ମୁନିସୁତ
ଭଲରୂପେ ଜାଣ ତୁମ୍ଭେ ପୁରାଣର ତତ୍ତ୍ୱ ।
ମହାଭାଗ୍ୟବନ୍ତ ତୁମେ ବ୍ୟାସଋଷି ଶିଷ୍ୟ
ଶୁଣି ଯେ ସଂଶୟ କଲା ଆମ୍ଭ ବୁଦ୍ଧିନାଶ ।
ପୁରାଣରେ କହିଛନ୍ତି କେହି ଦ୍ୱିଜବରେ
ହିରଣ୍ୟ ପୁତ୍ର ପ୍ରହ୍ଲାଦ ପାଞ୍ଚବରଷରେ ।
କେଶବଙ୍କୁ ତୋଷକଲା ହେ ବିଦୁଷବର
ଦେବାସୁର ମିଳିକଲେ ଯେ କାଳେ ସମର ।
ହରଙ୍କ ସଙ୍ଗେ ଯୁଝିଲା ପ୍ରହ୍ଲାଦ କିମ୍ପାଇଁ
ମାଇଲେ ତାହାକୁ ପ୍ରଭୁ ଲକ୍ଷ୍ମୀ ଦେବୀସାଇଁ ।
ବଇଷ୍ଣବ ଦେହେ ଯାଇ ମିଶିଲା ତକ୍ଷଣେ
ସୁତମୁନି ବୋଇଲେ ଯେ ଶୁଣ ମୁନିଗଣେ ।
ପୂର୍ବେ ଯେ କଶ୍ୟପଋଷି ଜାଣିଥିଲେ ଏହା
ନିଜେ ବ୍ରହ୍ମା କହିଥିଲେ ବ୍ୟାସଆଗେ ତାହା ।
ତହୁଁ ବୁଦ୍ଧିମନ୍ତ ବ୍ୟାସ କଲେ ତା ପ୍ରକାଶ
ମୁଁ ତାହା କହୁଛି ଏବେ ବସି ତୁମ୍ଭପାଶ ।
ଏ ସନ୍ଦେହ ନିବାରଣ କରିଛନ୍ତି ଧାତା
ଦିନେ ସେହି ବ୍ୟାସଦେବ ଶୁକଦେବ ପିତା ।
କହିଥିଲେ ଆହେ ମହାଭାଗ୍ୟବନ୍ତ ସୁତ
ଶୁଣ ତୁହେ ପ୍ରହ୍ଲାଦର ଜନମ ବୃତ୍ତାନ୍ତ ।
ଯେମନ୍ତେ ଆମ୍ଭଙ୍କୁ କହିଥିଲେ ବେଦବର
ପୁରାଣେ ଶୁଣିଛ ଯାହା ଆନ ପରକାର ।
ଯେ ପ୍ରହ୍ଲାଦ ଦେବତାଙ୍କଠାରୁ ପୂଜାପାଇ
ଜନମି ସେ ବଇଷ୍ଣବ ଗଲା ବାଟେ ଯାଇ ।
ଯେଉଁ ବଇଷ୍ଣବ ପଥ ଦିଏ ସବୁସୁଖ
ହୋଇଥିଲା ମହାଭାଗବତ ଜନ ମୁଖ୍ୟ ।
ସେ ପୁଣି ବିଷ୍ଣୁଙ୍କ ସଙ୍ଗେ ଯୁଝିବା ନିମନ୍ତେ
ଅବତାର ହେଲା ନିଜ ପୁତ୍ରର ସହିତେ ।
ତହୁଁ ଯୁଦ୍ଧେ ବାସୁଦେବ କଲେ ତାକୁ ବଧ
ଲଭିଲା ସେ ବଇଷ୍ଣବୀ ତନୁତେଜି କ୍ରୋଧ ।
କହୁଛି ସେ ମହାତ୍ମା ପ୍ରହ୍ଲାଦ ଜନମ
ଶୁଣିଲେ ଛାଡ଼ିପଳାଇ ଯିବ ପାପତମ ।

ସେହି ଯେ ପ୍ରହ୍ଲାଦ ଥିଲା ମହା ବୀର୍ଯ୍ୟବନ୍ତ
ଆପଣାର ପୁତ୍ରାଦିଙ୍କି ଘେନି ହେଲା ଜାତ ।
ଶ୍ରୀବିଷ୍ଣୁଙ୍କ ସଙ୍ଗେ ପୁଣି ଘୋର ଯୁଦ୍ଧକଲା
ନିଜତେଜେ ବଇଷ୍ଣବ ତେଜ ସେ ପାଇଲା ।
ଯେରୂପେ ସେ ଜନମିଲା ସଂକ୍ଷେପି କହୁଛି
ପଶ୍ଚିମ ସମୁଦ୍ରପ୍ରାନ୍ତେ ଏକପୁର ଅଛି ।
ତା ନାମ ଦ୍ୱାରକା ତହିଁ ସବୁ ଋଦ୍ଧି ସିଦ୍ଧି
ଘରକରି ରହିଥାଏ ଏକ ଯୋଗିନିଧି ।
ଯୋଗ ସାଧନା ଉତ୍ତମରୂପେ ତାକୁ ଜଣା
ବେଦ ଅର୍ଥ କରିବାରେ ନୁହଇ ସେ ଊଣା ।
ଶିବଶର୍ମା ବୋଲି ତାକୁ ସମସ୍ତେ ଡାକନ୍ତି
ତାର ପାଞ୍ଚପୁତ୍ର ସବୁ ଶାସ୍ତ୍ର ପଢ଼ିଛନ୍ତି ।
ସେ ପାଞ୍ଚପୁତ୍ରଙ୍କ ନାମ କହୁଅଛି ଶୁଣ
ଯଜ୍ଞଶର୍ମା ବେଦଶର୍ମା ଧର୍ମଶର୍ମା ପୁଣ ।
ବିଷ୍ଣୁଶର୍ମା ସୋମଶର୍ମା ଏ ପାଞ୍ଚକୁମରେ
ସଦାଭକ୍ତି ରଖିଥାନ୍ତି ପିତାର ପୟରେ ।
ପିତୃଭକ୍ତି ଛଡ଼ା ଅନ୍ୟଧର୍ମ ନ ଜାଣନ୍ତି
ସେହି ପଞ୍ଚ ମହାତମା ପିତୃପାଦ ଚିନ୍ତି ।
ଦିନରାତି ହରୁଥାନ୍ତି ରହି ପାଞ୍ଚପୋଏ
ଦ୍ୱିଜବର ଶିବଶର୍ମା ଭାବଇ ହୃଦୟେ ।
ପିତୃଭକତ ଦେଖିଣ ସବୁ ପୁତ୍ରଙ୍କର
ଆକର୍ଷଣ ଶକତି ଯେ ଅଛଇ ମୋହର ।
ଦେବଦେବଙ୍କୁ ମୁଁ ଆଣି ପାରଇ ଓଟାରି
ଅନ୍ତରେ ଅଛିକି ନାହିଁ ଭକ୍ତି ଏହାଙ୍କରି ।
କିଅବା ଦେଖାନ୍ତି ପିତୃଭକତି ବାହାରେ
ଚେଷ୍ଟାକଲେ ଅବଶ୍ୟ ମୁଁ ତାହା ଜାଣିପାରେ ।
ବୁଦ୍ଧିଥିଲେ ଚେଷ୍ଟା କେଭେ ବିଫଳନୋହିବ
କରିବା ସିନା ଯେରୂପେ ତା ଜଣା ପଡ଼ିବ ।
ଶିବଶର୍ମା ଦ୍ୱିଜବର ବିଷ୍ଣୁ ପରସାଦେ
ସର୍ବସିଦ୍ଧ ପୁରୁଷ ଯେ ଥିଲା ଋଷି ବୃନ୍ଦେ ।
ଜାଣିବାପାଇଁ ଚିନ୍ତିଲା ଉତ୍ତମ ଉପାୟ
ବିଶେଷେ ସେ ବ୍ରହ୍ମଜ୍ଞାନୀ ବ୍ରାହ୍ମଣ ତନୟ ।
ନାନା ଉପାୟ ତାହାକୁ ଅଛଇତ ଜଣା
ଏହିରୂପେ ଚିନ୍ତାକରୁ କରୁ ଶିବଶର୍ମା ।
ଉପାୟେକ ସ୍ଥିରକଲା ମାୟାକୁ ବିସ୍ତାରି
ମାୟାବଳେ ଛଳେ ନିଜ ଭାରିଯାକୁ ମାରି ।

ପୁତ୍ରଙ୍କ ଆଗେ ଶୁଆଇଦେଲା ତାକୁ ଆଣି
ଦେଖିଲେ ପୁତ୍ରେ ମରିଛି ଆପଣା ଜନନୀ ।
ତା ଦେଖି ପୁତ୍ରେ କହିଲେ ପିତାପାଶେ ଯାଇ
ଭୋ ତାତ ଆମ୍ଭର ମାତା ଦେହେ ଜୀବନାହିଁ ।
ପାଞ୍ଚଭାଇ ବଢ଼ିଥିଲୁ ଯାହାର ଉଦରେ
ସେ ଜନନୀ ଦେହଛାଡ଼ି ଗଲା ସ୍ୱର୍ଗପୁରେ ।
କହତାତ କି କରିବୁଁ ଆମ୍ଭେ ଏହିକ୍ଷଣି
ପୁତ୍ରଙ୍କ ମୁଖରୁ ଶିବଶର୍ମା ଦ୍ୱିଜ ଶୁଣି ।
ପରମ ଭକତ ଯଜ୍ଞଶର୍ମା ବଡ଼ପୁଅ
ତାକୁ ଡକାଇ କହିଲା ଶୁଣରେ ତନୟ ।
ଏହି ଯେ ତୋହର ମୃତ ମାତାର ଶରୀର
ଦାଢୁଆ ଶସ୍ତ୍ରେ ସର୍ବାଙ୍ଗ ଖଣ୍ଡ ଖଣ୍ଡ କର ।
ପିତାର ବଚନେ ତହୁଁ ଯଜ୍ଞଶର୍ମା ଗଲା
ମାତାର ମୃତଶବକୁ ଖଣ୍ଡ ଖଣ୍ଡ କଲା ।
ପୁଣି ଆସି ପିତାଆଗେ କହେ ଯୋଡ଼ିକର
ଯେରୂପେ କହିଲ ତାହା କଲି ହେ ପିଅର ।
ଏବେ କି କରିବି କୁହ ବିଚାରିଣ ମୋତେ
ଦୁର୍ଜୟ ଦୁର୍ଲ୍ଲଭ ବୋଲି ନ ଭାବିବ ଚିତ୍ତେ ।
ପୁତ୍ରକଥା ଶୁଣି ପିତା ମନେ ବିଚାରଇ
ଏ ପୁତ୍ର ପିତୃଭକତ ନିଶ୍ଚେ ଜାଣିଲଇଁ ।
ଦ୍ୱିତୀୟ ପୁତ୍ର ଯେ ଦେବଶର୍ମାକୁ ବୁଝିବା
ତାହାକୁ ଡାକି ଆବର କଥାଏ କହିବା ।
ଏମନ୍ତ ଭାଳି ଦ୍ୱିତୀୟ ପୁତ୍ରକୁ ଜଣାଇ
ବୋଇଲେରେ ପୁତ୍ର ମୁହିଁ କାମାତୁର ହୋଇ ।
ସ୍ତିରୀବିନା ଏ ଦେହକୁ ନପାରିବି ଧରି
ଏହାକହି ମାୟାବଳେ ଜାତକଲେ ସ୍ତିରୀ ।
ଅତିସୁନ୍ଦରୀ ଲାବଣ୍ୟ ରୂପ ଯଉବନ
ପୁତ୍ରକୁ ଚାହିଁ କହିଲେ ଏମନ୍ତ ବଚନ ।
ଦେଖିବାକୁ ଏ ସୁନ୍ଦରୀ ରମଣୀରତନ
ଏହାକୁ ଆଣି ତୁ ମୋତେ ଦିଅରେ ନନ୍ଦନ ।
ବେଦଶର୍ମା ପିତା କଥା ଶୁଣି ତହୁଁ ଗଲା
ରମଣୀ ପାଶରେ ମିଳି ଏମନ୍ତ କହିଲା ।
ଆଗୋଦେବି ମୋର ପିତା ଅତି କାମାତୁର
ପ୍ରସନ୍ନେ ତୁମ୍ଭେ ତାହାକୁ କର ଅଙ୍ଗୀକାର ।
ପିତା ମୋର ବୃଦ୍ଧବୋଲି ନଘେନଗୋମନେ
ଚାରୁଅଙ୍ଗୀ ସୁନ୍ଦରୀ ଗୋ ବିଶାଳ ନୟନେ ।

ସେ ମାୟାନାରୀ ବୋଇଲା ପିତାଯେ ତୋହର
ବୁଢ଼ା ପୁଣି ଜରାଜୀର୍ଣ୍ଣ ଶରୀର ତାହାର ।
ରୋଗରେ ମୁଖ ମଣ୍ଡଳ ଅସୁନ୍ଦର ଦିଶେ
ନାସାରୁ ପାଣିଗଡ଼ଇ ଶ୍ଳେଷ୍ମା ରୋଗବଶେ ।
ଇନ୍ଦ୍ରିୟ ଶିଥିଳ ଯୋଗୁଁ ଉଠି ନପାରଇ
ମୁଁ ଯୁବତୀ ମୋତେ ତାର ସଙ୍ଗକି ଯୋଗାଇ ।
ତୁମେ ଯେ ଯୁବା ପୁରୁଷ ସୁନ୍ଦର ଆବର
ତୁମ ସଙ୍ଗ କରିବାକୁ ମନହୁଏ ମୋର ।
ରୂପ ଗୁଣ ସଉଭାଗ୍ୟେ ତୁମେ ଅଳଂକୃତ
ପୁରୁଷ ଲକ୍ଷଣେ ଯେଣୁ ହୋଇଛ ଲକ୍ଷିତ ।
ତେଜୋବନ୍ତ ଯୋଗୁଁ ତୁମେ ଅଟ ସୁପୁରୁଷ
ତୁମ ପିତାଙ୍କର ଜାଣ ଗଲାଣି ବୟସ ।
ମୋର ଅଙ୍ଗ ବଇଭବ ପାଇ ହେବ ସୁଖୀ
ମୁହିଁ କାମେ ବିମୋହିତ ତବରୂପ ଦେଖି ।
ହେ ଦ୍ୱିଜ ଗୋସାଇଁ ଯାହାମାଗିବ ତାଦେବି
ତୁମ ସଙ୍ଗ ମୋରହେଲେ ସଉଭାଗୀ ହେବି ।
ବେଦଶର୍ମା ଦ୍ୱିଜ ଏହି ପାପକଥା ଶୁଣି
ଦେବୀ ଗୋ କିପାଇଁ କହ ଏ ଅଧର୍ମ ବାଣୀ ।
ପିତାଙ୍କ ଭାରିଯା ହେଲେ ଆମ୍ଭର ବିମାତା
ପାପ ଗ୍ରାସିଲାଣି ମୋତେ ଶୁଣି ତୁମ କଥା ।
ମୁଁ ପିତୃ ଭକତ ଜାଣି କହୁ ଏ ଅନୀତି
ଯେଣୁ ମୁହିଁ ପିତା ପାଦେ କରୁଛି ଭକତି ।
ମୁଁ ନିରପରାଧୀ ମୋତେ ନକହ ଏମନ୍ତ
ପିତାଙ୍କୁ ଭଜି ଆମ୍ଭର ହୁଅ ତୁଗୋ ମାତ ।
ଯା ମାଗିବୁ ଦେବି ଥିଲେ ଏ ତିନି ଭୁବନେ
ଦୁର୍ଲ୍ଲଭ ସ୍ୱର୍ଗୁ ଅଧିକ ନାହିଁ ସୁଲୋଚନେ ।
ମୁଁ ତାହା ଦେଇ ପାରଇ ଏ କଥା ନିଶ୍ଚୟ
ମାୟାନାରୀ କହେ ଶୁଣ ବିପ୍ରର ତନୟ ।
ପିତାପାଇଁ ଏହା ଯେବେ ଦେଇପାରୁ ତୁହି
ଯେଉଁକଥା ଗୋଟା ଇଚ୍ଛାକଲେ ଆଜି ମୁହିଁ ।
ତାଦେଇ ପାରିଲେ ତୋର ପିତାକୁ ଭଜିବି
ଦ୍ୱିଜ ବୋଇଲା ଯାଇଚ୍ଛା ମାଗୁକିନା ଦେବି ।
ମାୟାନାରୀ କହେ ଇନ୍ଦ୍ର ରୁଦ୍ର ଦେବତାଙ୍କୁ
ମୋର ଇଚ୍ଛା ହେଉଅଛି ଆଜି ଦେଖିବାକୁ ।
ସମର୍ଥ ପଣ ଥିଲେତ ପାଇବ ଦେଖାଇ
ସାମଗ୍ରୀ ମଧ୍ୟେ ଦୁର୍ଲ୍ଲଭ ଅଟନ୍ତି ଏ ଦୁଇ ।

ତୁମ୍ଭର ମହିମା କେତେ ଆଜି ବୁଝାଯିବ
ଦ୍ୱିଜ ବୋଇଲେଗୋ ଦେଖ ମୋ ତପପ୍ରଭାବ ।
ମୁଁ ଡାକିଲେ ଇନ୍ଦ୍ରଆଦି ଦେବଗଣ ଯେତେ
ଏକ୍ଷଣି ଆସି ମିଳିବେ ସେ ତୁମ୍ଭ ଅଗ୍ରତେ ।
ଏମନ୍ତ କହି ଡାକନ୍ତେ ସେ ଦ୍ୱିଜ ଗୋସାଇଁ
ଦେବତାଙ୍କୁ ସେଙ୍ଗ ଘେନି ବିଜେ ସୁରସାଇଁ ।
ଦେବଶର୍ମାଙ୍କୁ କହିଲେ ଆହେ ଦ୍ୱିଜବର
ତୁମ୍ଭେ ଇଚ୍ଛା ଅନୁସାରେ ମାଗିଘେନ ବର ।
ଦେବଶର୍ମା କହିଲେସେ ଦେବଗଣେ ଚାହିଁ
ପ୍ରସନ୍ନେ ଦିଅ ଏ ବର ମାଗୁଅଛି ମୁହିଁ ।
ନିର୍ମଳା ଅଚଳା ଭକ୍ତି ରହୁ ପିତୃପାଦେ
କ୍ଷଣେ ତା ବିରତ ନୋହୁ ତବ ପରସାଦେ ।
ହେଉକହି ଯେଝାପୁରେ ଗଲେ ଦେବଗଣ
ଦେଖି ମାୟାନାରୀ କହେ ଦ୍ୱିଜବର ଶୁଣ ।
ଦେଖିଲି ଆଜି ତୁମ୍ଭର ତପସ୍ୟାର ବଳ
କି ହେବ ମୋହର ଦେଖି ଦେବତା ସକଳ ।
ତୋ ପିତାପାଶେନେବାକୁ ମନଯେବେତୋର
ନିଜହସ୍ତେ କାଟିଦିଅ ଆପଣାର ଶିର ।
ତହିଁରେତୋ ପିତାସେଙ୍ଗ ବଢ଼ିବମୋ ପ୍ରୀତି
ବେଦଶର୍ମା ଦ୍ୱିଜକହେ ଧନ୍ୟ ତୁ ଗୋ ସତୀ ।
ଆଜି ମୋର ଦିନ ଧନ୍ୟ ଧନ୍ୟ ମୋ ଜୀବନ
ଶୁଝିଲି ତୋ ଯୋଗୁଁ ମାତ ତିନିଗୋଟା ଋଣ ।
ଋଣ ତ୍ରୟରୁ ମୁକତ ହେଲି ଶୁଭ୍ରକେଶୀ
ଏହାକହି ବିପ୍ରମଣି ବେଗେ ଉଠି ଆସି ।
ଶାଣଦିଆ କ୍ଷୁରଧାର ଅସ୍ତ୍ର ବାଛି ନେଲା
ମାୟାନାରୀ ଅଗ୍ରତରେ ଧରି ଉଭାହେଲା ।
ବୋଇଲାଗୋ ଶୁଭେଦିଅ ତୋ ହାତପତାଇ
ଆପଣାର ହସ୍ତେ ଶିର କାଟି ମୁଁ ଦେବଇଁ ।
ଏମନ୍ତ କହି କାଟିଲା ଆପଣାର ବେକ
ଛିଡ଼ି ଦୁଇଖଣ୍ଡ ହେଲା ଦେଖି ଦେବଲୋକ ।
ବୋଇଲେରେ ଧନ୍ୟ ଧନ୍ୟ ତୁ ପିତୃ ଭକତ
ଧନ୍ୟଯେ ଗର୍ଭେ ଧଇଲା ଧନ୍ୟ ତୋରମାତ ।
ଏମନ୍ତେ ବହୁ ପ୍ରଶଂସା କଲେ ଦେବଲୋକେ
ବେକ ସଳଖରୁ ଛିଡ଼ିପଡ଼େ ଭୂମି ବକ୍ଷେ ।
ମୁଣ୍ଡରୁ ରୁଧିର ଧାର ପଡୁଅଛି ବହି
ମାୟାନାରୀ ସେ ମୁଣ୍ଡକୁ ହସ୍ତରେ ଧରଇ ।
ଶିବଶର୍ମା ଦ୍ୱିଜପାଶେ ମିଳି ସେ ବୋଇଲା
ଅହୋ ମୁନିବର ତୋର ପୁତ୍ରକି ନକଲା ।
ଆପଣା ହସ୍ତରେ ମୁଣ୍ଡକାଟି ଦେଲା ମୋତେ
ରୁଧିରରେ ସରସର ଦେଖମୋର ହସ୍ତେ ।
ତୁମ୍ଭର ଭକତ ପୁତ୍ର ଦେବଶର୍ମା ଶିର
ମୋହସ୍ତେ ପଠାଇଦେଲା ବେଗେ ଉଠିଧର ।
ତୁମ୍ଭପାଇଁ ନିଜ ଶିର ଦେଲା ପୁତ୍ରମଣି
ଏ ଉପହାର ମୁଁ ଦେଇ ହେଲି ତୋ ରମଣୀ ।
ମୋତେ ଉପଭୋଗ କର ତୁହୋ ମୁନିବର
ବେଦଶର୍ମା ବିପ୍ରର ଯେ ତିନି ସହୋଦର ।
ଭାଇର ଏ ଦୁଃସାହାସ ଦେଖିଣ ଧରିଲେ
ପରସ୍ପରେ ତିନିଭାଇ କୁହାକୁହି ହେଲେ ।
ଆମ୍ଭମାନଙ୍କର ମାତା ଧନ୍ୟ ପ୍ରତିବ୍ରତା
ପତି ଜୀବିତେ ଅଛନ୍ତି ଛାଡ଼ି ସବୁ ଚିନ୍ତା ।
ସତ୍ୟ ସମାଧିର ବଳେ ତେଜିଲା ଜୀବନ
ଧନ୍ୟ ଭାଇ ପିତାପାଇଁ କଲା ଶିରଦାନ ।
ଶିବଶର୍ମା ମୁନି ଶୁଣି ପୁତ୍ରଙ୍କ ବଚନ
ବୁଝିପାରିଲେ ନିଶ୍ଚୟ ଏ ମୋର ନନ୍ଦନ ।
ପ୍ରକୃତ ପିତୃ ଭକତ ଭକତିର ବଶେ
ସ୍ୱହସ୍ତେ ଆପଣା ଶିର କାଟିଦେଲା ତୋଷେ ।
ବୁଝିପାରି ବୋଇଲା ସେ ତୃତୀୟ ପୁତ୍ରକୁ
ଏ ଶିର ଦେଲଇଁ ତୋତେ ନିଅ ତୁ ଏହାକୁ ।
ଦୀନ ଗୋପୀନାଥବୋଲେ ବୋଲ ହରିହରି
ଏ ଘୋର ଆପଦୁ ଦ୍ୱିଜପୁତ୍ର ଯାଉ ତରି ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ
ଶିବଶର୍ମା ଚରିତେ ପ୍ରଥମୋଽଧ୍ୟାୟଃ



## ଦ୍ୱିତୀୟ ଅଧ୍ୟାୟ
### ଧର୍ମଶର୍ମା ଦ୍ୱାରା ମୃତ ପୁତ୍ରର ପୁନର୍ଜୀବନ ଲାଭ ଓ ବିଷ୍ଣୁଶର୍ମାକୁ ଅମୃତ ହରଣେ ଆଦେଶ ।

ଶୁଣୁଛନ୍ତି ମୁନିଜନେ କହୁଛନ୍ତି ସୁତ
ମହାତମା ଧର୍ମଶର୍ମା ଯେ ତୃତୀୟ ସୁତ ।
ଭାଇର ମୁଣ୍ଡକୁ ଘେନି ହୋଇଲା ବାହାର
ବୋଇଲା ପିତାରପାଦେ ଭକ୍ତିଯେବେମୋର ।
ସେ ଭକତି ବଳେ ପୁଣି ମୋର ତପବଳେ
ଥାଇଯେବେ ସତ୍ୟଧର୍ମେ ମୋମନ ନିଶ୍ଚଳେ ।

ସରଳଭାବ ମୋଠାରେ ଥାଇ ଯେବେନିତ୍ୟେ
ଧର୍ମଦେବତାଙ୍କ ମନ ଓଟାରୁ ସେ ସତ୍ୟେ ।
ଏମନ୍ତ କହି ସେ ଦ୍ୱିଜ ଡାକନ୍ତେ ଧର୍ମଙ୍କୁ
ତକ୍ଷଣେ ଧର୍ମଦେବତା ଆସି ସେଠାବକୁ ।
କହିଲେ ହେ ଧର୍ମଶର୍ମା ଦ୍ୱିଜ ଶିରୋମଣି
କିପାଇଁ ଡାକିଲ ମୋତେ କହିଲେ ତା ପୁଣି
କରିବି ନିଶ୍ଚୟ ଏହା ସତ୍ୟ ସତ୍ୟ ମୋର
ଧର୍ମ ଶର୍ମା ଦ୍ୱିଜ କହେ ଯୋଡ଼ି ବେନିକର ।
ଶ୍ରୀଗୁରୁ ସେବାରେ ଯେବେ ନିଷ୍ଠାମୋରଥାଇ
ଦେହ କଠୋର ତପରେ ଯେବେଥାଇ ଦାହୀ ।
ସେହି ସତ୍ୟବଳେ ବଞ୍ଚୁ ବେଦଶର୍ମା ଭାଇ
ଧର୍ମଦେବତା କହିଲେ ହେ ଦ୍ୱିଜ ଗୋସାଇଁ ।
ତୋର ଦାନ ଧର୍ମ ତପ ପିତୃଭକ୍ତି ବଳେ
ତୋଭାଇ ଜୀଉ ଏକଥା ଥାଉ କାଳେ କାଳେ ।
ତୋର ତପ ପିତୃଭକ୍ତି ଗୁଣେ ମୁହିଁ ତୋଷ
ଯାହାତୁ ମାଗିବୁ ତାହା ଦେବଇଁ ଅବଶ୍ୟ ।
ଧର୍ମଦେବତା ମୁଖରୁ ଏ ବଚନ ଶୁଣି
କରଯୋଡ଼ି ବୋଲେ ଧର୍ମଶର୍ମା ଦ୍ୱିଜମଣି ।
ଯେବେଦେବ ଧର୍ମହେଲ ମୋଠାରେ ପ୍ରସନ୍ନ
ନିରତେ ପିତୃଭକ୍ତିରେ ଯାଉମୋର ଦିନ ।
ମୋକ୍ଷ ପଦବୀ ପାଇବି ମୁହିଁ ଦେହ ଅନ୍ତେ
ଧର୍ମଦେବତା କହିଲେ ଦ୍ୱିଜଙ୍କୁ ଏମନ୍ତେ ।
ମୋର ପରସାଦେ ଯାହା ମାଗିଲୁ ତା ହେବ
ଏମନ୍ତ କହିବା ମୋତେ ତହିଁ ଧର୍ମଦେବ ।
ଦେବଶର୍ମା ଦ୍ୱିଜ ଜୀଇ ଉଠିଲା ତକ୍ଷଣେ
ଯେମନ୍ତେ ଶେଯୁ ଉଠନ୍ତି ଶୋଇଥିବା ଜନେ ।
ଉଠି ଧର୍ମଶର୍ମାକୁ ସେ ବୋଇଲା ହେ ଭାଇ
ସେ ଦେବୀ ପିତାପାଶକୁ ଯାଇଛି କି ନାହିଁ ।
ଏମନ୍ତ ବୋଲି ସଂକ୍ଷେପି କହିଲା ସକଳ
ଧର୍ମଶର୍ମା ଦ୍ୱିଜଶୁଣି ଆନନ୍ଦେ ବିହ୍ୱଳ ।
ବେଦଶର୍ମା ବୋଲେ ଭାଇ ନାହିଁତୋ ସମାନ
ତୋର ଧର୍ମବଳେ ଆଜି ପାଇଲି ଜୀବନ ।
ଏମନ୍ତେ ସେ ବେନିଭାଇ କଥାବାର୍ତ୍ତା ହୋଇ
ପ୍ରବେଶ ହେଲେ ପିତାଙ୍କ ନିକଟରେ ଯାଇ ।
ଧର୍ମଶର୍ମା କରଯୋଡ଼ି କହେ ପିତାଆଗେ
ଧର୍ମ ଆଉ ତପ ତବ ପାଦସେବା ଯୋଗେ ।

ବଞ୍ଚିଲା ଦେଖହେ ତାତ ବଡ଼ଭାଇ ମୋର
ନିଅ ଏବେ ଏହି ପୁତ୍ର ଗୋଟିକି ତୁମ୍ଭର ।
ଶିବଶର୍ମା ପୁତ୍ରଙ୍କର ପିତୃଭକ୍ତି ଜାଣି
କିଛି ନକହି ତାହାଙ୍କୁ ହୋଇ ପୁଣି ତୁନି ।
କିଛିକ୍ଷଣ ଭାଳି ତହୁଁ ଶିବଶର୍ମା ଦ୍ୱିଜ
ବିଷ୍ଣୁ ଶର୍ମା ନାମେ ଯେଉଁ ଚତୁର୍ଥ ଆତ୍ମଜ ।
ତାହାକୁ ଡାକି ବୋଇଲେ ଶୁଣରେ କୁମର
ଅମୃତ ଆଣ ତୁ ଆଜି ଯାଇ ଇନ୍ଦ୍ରପୁର ।
ଏ କାମିନୀ ସହବାସେ ବଳିଛି ମୋ ମନ
ତେଣୁ ମୁଁ ଯାଇ ନ ପାରେ ତହିଁକି ନନ୍ଦନ ।
ମାଗିଛି ଅମୃତ ଯେଣୁ ଏ କାମିନୀ ମୋତେ
ତୁ ପିତୃ ଭକତ ଯେଣୁ ପଠାଉଛି ତୋତେ ।
ନଦେଲେ ଅନ୍ୟପାଖକୁ ଯିବ ଏ କାମିନୀ
ମୁଁ ବୁଢ଼ା ହେବାର ଜାଣି ନଭଜଇ ପୁଣି ।
ଜରାବ୍ୟାଧି ତୁଟିଯାଏ ଯେ ଅମୃତ ପାନେ
ଉପୁଜିଥିଲା ସେ ପୁଣି ସମୁଦ୍ର ମନ୍ଥନେ ।
ତାହାଖାଇ ଯୁବାହେଲେଭଜିବଏ ମୋତେ
ବିଷ୍ଣୁଶର୍ମା ଦ୍ୱିଜବର କହେ ଯୋଡ଼ି ହସ୍ତେ ।
ଯହିଁରେ ତୁମ୍ଭର ସୁଖ ହେବ ତା କରିବି
ଏମନ୍ତ କହି ସେ ପିତୃ ପାଦ ଦୁଇ ସେବି ।
ପ୍ରଦକ୍ଷିଣ କରି ତହୁଁ ଉଠିଲା ଗଗନେ
ତପସ୍ୟା ବଳେ ଚଳଇ ଇନ୍ଦ୍ରର ଭୁବନେ ।
ପବନହୁଁ ବେଗେ ଦ୍ୱିଜ କରଇ ଗମନ
ଶ୍ରୀହରି ଚରଣେ ସଦା ଗୋପୀନାଥ ମନ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ
ଶିବଶର୍ମା ଚରିତେ ଦ୍ୱିତୀୟୋଽଧ୍ୟାୟଃ ।

## ତୃତୀୟ ଅଧ୍ୟାୟ

### ବିଷ୍ଣୁଶର୍ମାର ପଥେ ମେନକାର ଭେଟ

ସୁତମୁନି କହିଲେ ସେ ବିଷ୍ଣୁଶର୍ମା ଦ୍ୱିଜ
ସ୍ୱର୍ଗପୁରକୁ ଆସିବା ଦେଖି ଦେବରାଜ ।
ମେନକା ଅପସରାକୁ କହିଲେ ଡକାଇ
ଏ ସ୍ୱର୍ଗପୁରେ ସୁନ୍ଦରୀ ତୋ ସମାନ ନାହିଁ ।
ବୁଦ୍ଧିରେ କି ଭାଙ୍ଗିପାରୁ ଋଷି ମୁନି ତପ
ଯୋଗିଯୋଗ ଭାଙ୍ଗିଯିବ ଦେଖି ତୋର ରୂପ
ଦେଖ ଏହି ବିଷ୍ଣୁଶର୍ମା ଦ୍ୱିଜ ଶୂନ୍ୟେ ଆସେ
ବାପର ବୋଲେ ଆସୁଛି ଏ ମୋହରବାସେ ।

ତପ ଧର୍ମବଳେ ନେବ ଅମୃତକୁ ହରି
ମୋରବୋଲେ ତୁମ୍ଭେ ଏଥିଯୋଗୁଁ ବେଗକରି ।
ଯେମନ୍ତେ ନ ପଶିପାରେ ମୋପୁରେ ବ୍ରାହ୍ମଣ
ପଶିଲେ ନିଶ୍ଚେ ଅମୃତ କରିବ ହରଣ ।
ଇନ୍ଦ୍ର ଆଜ୍ଞା ପାଇ ତହୁଁ ମେନକା ସୁନ୍ଦରୀ
ସୁବେଶହେଲା ସର୍ବାଙ୍ଗେ ଅଳଙ୍କାର ଭରି ।
ସୁନ୍ଦରପଣେ ସେ ଦଶଦିଗକୁ ମୋହିଲା
ଇନ୍ଦ୍ରଙ୍କୁ ବନ୍ଦି ନନ୍ଦନ ବନପ୍ରାନ୍ତେ ଗଲା ।
ଦୋଳାରେ ବସିଯାଉଛି ମେନକା ସୁନ୍ଦରୀ
ତା ସ୍ୱରସଙ୍ଗେ ବୀଣାର ସ୍ୱର ନୋହେ ସରି ।
ପଞ୍ଚମସ୍ୱରେ ସୁନ୍ଦରୀ ବସାଇଛି ଗୀତ
ଯୋଗୀ ମୁନି ଋଷି ଶୁଣି ହୋଇବେ ମୋହିତ ।
ବିଶାଳନୟନା ସେହି ଚତୁର ରତନ
ଚାରୁଲୋଚନେ ସେ ମୋହିପାରେ ତ୍ରିଭୁବନ ।
ବିଷ୍ଣୁ ଶର୍ମାର ହୁଅନ୍ତେ ନୟନ ଗୋଚର
ଯୋଗବଳେ ଜାଣିପାରି ସେହି ଦ୍ୱିଜବର ।
ସ୍ୱର୍ଗ ଅପସରା ଏହି ମେନକା ସୁନ୍ଦରୀ
ବାସବ ପଠାଇଅଛି ଏହାକୁ ତିଆରି ।
ବାଟେ ବିଘ୍ନ ଘଟାଇବ ଏ ସୁନ୍ଦରୀ ମୋର
ଏମନ୍ତ ମନରେ ଭାଳି ଯାଉଁ ଦ୍ୱିଜବର ।
ପର୍ବନହୁଁ ଗତି ତାର ଅଧିକେ ବଢ଼ିଲା
ମେନକା ଦ୍ୱିଜବରକୁ ବାଟରେ ଦେଖିଲା ।
ପଚାରିଲା କେଣେ ଯାଅ ଆହେ ମହାମତି
ଦ୍ୱିଜବର ବୋଲେ ଶୁଣ ସ୍ୱର୍ଗର ଯୁବତୀ ।
କହିବାକୁ ବେଳନାହିଁ ଚଞ୍ଚଳ ମୋ ମନ
ବିଳମ୍ବ ହେବ ପିତାଙ୍କ ବାକ୍ୟ ଅଲଙ୍ଘନ ।
ମୋଟାମୋଟି କହୁଛି ମୁଁ ଯାଏ ଇନ୍ଦ୍ରଲୋକେ
ଶୁଣି ମେନକା କହଇ ମୃଦୁ ପ୍ରିୟବାକ୍ୟେ ।
କାମବାଣେ ଅଧୀର ମୁଁ ଆହେ ଦ୍ୱିଜବର
ଡରେ ଶରଣ ପଶିଲି ବାରେ ରକ୍ଷାକର ।
ଯେବେ ଧର୍ମ କରିବାକୁ ଥାଏ ତୁମ୍ଭ ମନ
ଏ ସୁଯୋଗ ନହୁଡ଼ି ହେ ଦ୍ୱିଜର ନନ୍ଦନ ।
କାମେ ମୋ ମନବ୍ୟାକୁଳ ହେବାବେଳେ ମୁହିଁ
ଅଧୀର ହୋଇଣ ଚାରିଦିଗେ ଦେଲି ଚାହିଁ ।
ନୟନ ପଥେ ପଡ଼ିଲ ତୁମ୍ଭେ ଦ୍ୱିଜବର
ଜଳିଉଠି କାମାନଳ ଦହେ ମୋ ଶରୀର ।

ବିଷ୍ଣୁଶର୍ମା ବୋଇଲେ ଗୋ ଶୁଣ ବରାନନେ
ଦେବଦେବ ବାସବର ଚରିତ୍ର ଯେସନେ ।
ଭଲକରି ଜାଣେ ତୋର ଚରିତ୍ର ଆବର
ତେମନ୍ତ ପୁରୁଷ ମୁହିଁ ନୋହେ ରାମାବର ।
ତୋହର ପ୍ରଭାବ ମୋତେ ଜଣାଗୋ ସୁନ୍ଦରୀ
ତୋରୂପେ ମୋହିତ ବିଶ୍ୱାମିତ୍ର ତପଚାରୀ ।
ମୁଁ ଶିବଶର୍ମାର ପୁତ୍ର ନୁହଇଁ ତେମନ୍ତ
ଯୋଗସିଦ୍ଧ ତପଃସିଦ୍ଧ ମୁଁ ଗୁରୁ ଭକତ ।
କାମ ଆଦି ଦୋଷକୁ ମୁଁ କରିଅଛି ଜୟ
ବିଶାଳ ନୟନେ ତୋର ଥାଏ ଯେବେ ଭୟ ।
ଅନ୍ୟ ପୁରୁଷକୁ ଭଜ ଏଥୁ ବେଗେ ଯାଇ
ଇନ୍ଦ୍ରଲୋକେ ଯାଉଛି ମୁଁ ଗଲା ଏହା କହି ।
ମେନକାକୁ ପଚାରିଣ ବୁଝି ସୁନାସୀର
ମେନକାର ଯତ୍ନମାନ ବିଫଳ ହେବାର ।
ଜାଣି ଭୂତକୁ ପଠାଇ ଦେଲେ ମାୟାବଳେ
ଭୟଙ୍କର ରୂପ ଧରି ସେ ଶୂନ୍ୟ ମଣ୍ଡଳେ ।
ନାନା ଭୟ ଦେଖାଇଲେ ଜାଣି ଦ୍ୱିଜବର
ସୂର୍ଯ୍ୟ ତେଜ ତହୁଁ ବଳି ତେଜ ସେ ବିପ୍ରର ।
ଆଗେ ରହି ନପାରିଲେ ଗଲେ ଆଡ଼ହୋଇ
ଏମନ୍ତେ ନାନାଦି ଭୟ ବାସବ ଦେଖଇ ।
ଅଗ୍ନିତେଜେ ପୋଡ଼ିଯାଏ ଯେହ୍ନେ ଶୁଷ୍କ ତୃଣ
ଦ୍ୱିଜବର ତେଜେ ସବୁ ଭୟ ହେଲା ଲୀନ ।
ତଥାପି କ୍ଷାନ୍ତ ନହୋଇ ଦେବ ସୁରସାଇଁ
ପୁଣି ଭୟ ଦେଖାଇଲେ ବିଘ୍ନ ଦେବାପାଇଁ ।
ମାୟାରେ ଅସୁରଗୋଟା ଧାଏ ଆଁ ଆଁ କରି
ସେ ଅସୁର ଗୋଟା ଦୀର୍ଘ ପ୍ରତି ପୁଣି ଚାରି ।
ଦନ୍ତ ଅତି ଭୟଙ୍କର ଦାଢ଼ିଆ ଆବର
ଗିଳିବାପାଇଁ ଆସିବା ଦେଖି ଦ୍ୱିଜବର ।
ଜାଣିପାରି ଇନ୍ଦ୍ର ମାୟା ନ ଡ଼ରିଲା ତିଳେ
ପ୍ରେତକୁ ଯେ ପଠାଇଲେ ଦେବ ଆଖଣ୍ଡଳେ ।
ସେ ଆଦି ବିପ୍ରର ତେଜେ ନପାରିଲେ ପଶି
ଭୟରେ ପଳାଇଗଲେ ଅଇଲା ରାକ୍ଷସୀ ।
ତାର ବିକରାଳ ମୁଖ ଅତି ଭୟଙ୍କର
କେଶ ତାହାର ଲୁଖୁରା ଉଡ଼େ ଫରହର ।
ଦ୍ୱିଜର ତେଜ ତାଠାରୁ ପଡ଼ିଲା ହୁଗୁଳି
ଡରେ ପଳାଇ ଅସୁରୀ ନ ହୋଇ ସମ୍ଭାଳି ।

ଯେତେ ଭୟ ଦେଖାଇଲେ ଦେବ ପୁରନ୍ଦର
ତେଜେ ଲୀନ କରିଦେଇ ଭାଳେ ଦ୍ୱିଜବର ।
ବାସବ କି ଜାଣିନାହିଁ ମୋର ବଳ କେତେ
ପିତୃ ଭକତ ମୁଁ ଭୟ ଦେଖାଉଛି ମୋତେ ।
ତପୀଙ୍କ ତପ ଭଙ୍ଗାଇ ଦେଲା ପ୍ରାୟ ମଣେ
ମୁଁ କୋପିଲେ ଇନ୍ଦ୍ର ପଦ ନରହିବ କ୍ଷଣେ ।
ଏମନ୍ତ ଭାଳୁଁ ବିପ୍ରର କୋପହେଲା ଜାତ
ଇନ୍ଦ୍ରଲୋକୁଁ ଇନ୍ଦ୍ରକୁ ମୁଁ କରିବି ପତିତ ।
ସ୍ୱଧର୍ମରେ ବାଧାଦିଏ ସେହି ମୂର୍ଖ ପଣେ
ଦଣ୍ଡ ନଦେଲେ ସେ କାହୁଁ ଜାଣିବ ଏକ୍ଷଣେ ।
ବିନାଦୋଷେ ପରକୁ ଯେ ମାରିବା ପାଈଇ
ଆପେ ସେ ମରଇ ତାର କିଛି ଯେ ନଯାଇ ।
ଆଉ ଏକ ଇନ୍ଦ୍ର ଆଣି କରିବି ସ୍ଥାପନ
ଏମନ୍ତ ଭାଳୁଁ ଦିଶିଲା ଅନଳ ସମାନ ।
ଜାଣିପାରି ଦେବଗୁରୁ ବୃହସ୍ପତି ମିଳି
ବୋଇଲେ ଦ୍ୱିଜର କୋପେ ସ୍ୱର୍ଗଯିବ ଜଳି ।
ଶିବଶର୍ମାର ତନୟ ପିତାର ଭକତ
ସବୁ ଦେବତା ତହିଁରେ ତାଠାରେ ତୃପତ
ହରି ହର ବ୍ରହ୍ମା ଆଦି ଯେତେ ଦେବଗଣ
ତା କଥା ଅନ୍ୟଥା କରି ନପାରିବେ ପୁଣ ।
ଯାଅ ବାବୁ ଇନ୍ଦ୍ର ତୁହୋ ବିଳମ୍ବ ନକର
ବିପ୍ରକୁ ପ୍ରସନ୍ନ କରି ରଖ ତୋର ପୁର ।
ଗୁରୁ ମୁଖୁଁ ଶୁଣି ଇନ୍ଦ୍ର ଅଇଲେ ତକ୍ଷଣେ
ଐରାବତ ଗଜପୃଷ୍ଠେ ସଙ୍ଗେ ସୁରଗଣେ ।
ଦ୍ୱିଜମଣି ଶୁଣ ମୁହିଁ କହେ ପୁରନ୍ଦର
ଦେଖିନାହିଁ ତୋ ସମାନ ଜଣେ ଦ୍ୱିଜବର ।
ତପ ଧର୍ମ ସତ୍ୟ ଦମ ଶଉଚ ନିୟମେ
ଚଉଦ ଭୁବନେ ଏକା ମାତ୍ର ତୁହି ଜଣେ ।
ପିତୃ ଭକତିର ବଳେ ଏ ସବୁ ତୋହର
ବ୍ରହ୍ମା ଆଦି ଦେବେ ଆମ୍ଭେ ସର୍ବଦା କିଙ୍କର ।
ବିଷ୍ଣୁ ରୁଦ୍ର ତୋର କଥା ନପାରିବେ ଏଡ଼ି
ମୁହିଁ ଅପରାଧୀ ତୋର ପାଦତଳେ ପଡ଼ି ।
ଦୋଷ କ୍ଷମା କର ହେଉ ମଙ୍ଗଳ ତୁମ୍ଭର
ମାଗିଲେ ଦୁର୍ଲ୍ଲଭ ବର ଦେବି ଦ୍ୱିଜବର ।
ଏମନ୍ତ ଶୁଣି ବୋଇଲେ ବିଷ୍ଣୁଶର୍ମା ଦ୍ୱିଜ
ଆହେ ଇନ୍ଦ୍ର ବ୍ରାହ୍ମଣର ମହାରୌଦ୍ର ତେଜ ।
ସହି ନପାରିବେ ସୁରାସୁର ଆଦିପ୍ରାଣୀ
ଯେଣୁ ମୁଁ ପିତୃଭକତ ବ୍ରାହ୍ମଣ ଯେ ପୁଣି ।
ସେ ମହାତେଜ କେ ପୁଣି ସହିବ ବ୍ରହ୍ମାଣ୍ଡେ
ନ ଆସି ଯେବେ କି ରହିଥାନ୍ତି ଆଉଦଣ୍ଡେ ।
ଇନ୍ଦ୍ରପଦ ନାଶିଥାନ୍ତି ନିଶ୍ଚୟ ତୁମ୍ଭର
ବିପ୍ର ତେଜ ଭାଙ୍ଗ ତୁମ୍ଭେ ଏ କି ଚମତ୍କାର ।
ବିପ୍ରତେଜ ବ୍ରହ୍ମା ବିଷ୍ଣୁ ନପାରନ୍ତି ସହି
ପୁତ୍ର ନାତି ବନ୍ଧୁ ମୂଳେ ସବୁ କ୍ଷୟ ଯାଇ ।
ସ୍ୱର୍ଗପୁରେ ଥୋଇଥାନ୍ତି ଆନଇନ୍ଦ୍ର ଆଣି
ଯେଣୁ ତୁମ୍ଭେ ଆସି ମୋତେ ବରଯାଚିଲଣି ।
ଏହି ବର ଦେଲେମୁହିଁ ଯିବି ଏଥୁଁ ଫେରି
ଅମୃତ ପିତୃ ଭକତି ଦିଅ ବଜ୍ରଧାରୀ ।
ଇନ୍ଦ୍ର କହିଲେ ତା ତୋତେଦେଲି ଦ୍ୱିଜବର
ଅମୃତ କୁଣ୍ଡ ଆଣିଲେ ତହୁଁ ପୁରନ୍ଦର ।
ବିପ୍ରହସ୍ତେ ଦେଇ ପୁଣି ବୋଇଲେ ଏମନ୍ତ
ଏ ଅମୃତ କୁଣ୍ଡ ଯେହ୍ନେ ନୋହେ ଦୁଷ୍ଟହସ୍ତ ।
ତୋର ପିତୃପାଦେ ରହୁ ଅଚଳ ଭକତି
ଏମନ୍ତ କରି ସେଠାରୁ ଗଲେ ସୁରପତି ।
ତହୁଁ ଆସି ବିଷ୍ଣୁ ଶର୍ମା ବୋଇଲେହେ ତାତ
ଇନ୍ଦ୍ରତହୁଁ ଆସିଅଛି ଘେନ ଏ ଅମୃତ ।
ଏ ସୁଧା ପ୍ରସାଦେ ତୋର ଜରାରୋଗ ଯାଉ
ଏ ଦେବୀ କାମିନୀ ଏବେ ତୋତେ ସୁଖପାଉ ।
ଶିବଶର୍ମା ତୋଷ ହେଲେପୁତ୍ରକଥା ଶୁଣି
ସବୁ ପୁତ୍ରକୁ ଡକାଇ ଆଣି ସେହିକ୍ଷଣି ।
ବୋଇଲେ ଜାଣିଲି ଏବେ ତୁମ୍ଭେରେ ସମସ୍ତେ
ପିତାକଥା ମାନି ଦୁଃଖ ସହିଲଯେ ଏତେ ।
ପ୍ରଧାନ ପିତୃ ଭକତ ବୋଲାଇଲ ତୁମ୍ଭେ
ଯାହା ମାଗିବସେ ବର ଦେଇପାରୁ ଆମ୍ଭେ ।
ପିତାର ମୁଖୁଁ ଏମନ୍ତ ଶୁଣି ପୁତ୍ରଗଣ
ଆପଣା ଆପଣା ମଧ୍ୟେ ବିଚାରିଣ ପୁଣ ।
ବୋଇଲେ ପ୍ରସନ୍ନେତାତ ଦେବୁଯେବେବର
ତବ ପରସାଦେ ବଞ୍ଚୁ ଜନନୀ ଆମ୍ଭର ।
ଆମ୍ଭ ପିତା ମାତାହୁଅ ଜନ୍ମଜନ୍ମାନ୍ତରେ
ପୁତ୍ରହୋଇ ସେବୁଥାଉ ଏ ତୋର ପୟରେ ।
ସତ୍ୟ ଧର୍ମ ଥାଉ ସଦା ଏ ଆମ୍ଭର ମନ
ଶିବଶର୍ମା ବୋଲେ ଶୁଣ ପୁତ୍ରଙ୍କ ବଚନ ।

ବଞ୍ଛ ତୁମ୍ଭ ମାତା ପୁଣି ଆସିବ ଏକ୍ଷଣି
ଯେଣୁ ପତିବ୍ରତା ଅଟେ ତୁମ୍ଭର ଜନନୀ ।
ଶିବଶର୍ମା ଋଷି ଏହା କହିବାର ବେଳେ
ଜନନୀ ଆସି ବୋଇଲେ ଆନନ୍ଦ ବିହ୍ୱଳେ ।
ଶତପୁତ୍ର ଖୋଜୁଥାନ୍ତି ଜନେ ଏଥିପାଇଁ
କୁଳଦୀପ ପ୍ରାୟ କୁଳ ଉଜ୍ଜ୍ୱଳ ଦିଶଇ ।
ଏ ଜଗତେ ପୁଣ୍ୟବତୀ ସ୍ତିରୀଜନ ଯେତେ
ପୁଣ୍ୟକାରୀ ପୁତ୍ର ବାଞ୍ଛା କରୁଥାନ୍ତି ଚିତ୍ତେ ।
ପୁଣ୍ୟଗର୍ଭେ ପୁଣ୍ୟବନ୍ତ ପୁତ୍ରଧରେ ନାରୀ
ପିତୃମାତୃ କୁଳ ଗୋତ୍ର ପାରଇ ଉଦ୍ଧାରି ।
ପୁଣ୍ୟ ନଥିଲେ କି ମିଳେ ଏମନ୍ତ କୁମର
ଯେ ସ୍ୱାମୀ ବୀର୍ଯ୍ୟେ ରହିଲ ଉଦରେ ମୋହର ।
ତୁମ୍ଭ ପରା ପୁତ୍ର ଆମ୍ଭେ ପାଇଲୁ କି ପୁଣ୍ୟେ
ଜାଣିଲି ତୁମ୍ଭେ ଜନମ ତୁମ୍ଭ ପିତା ଧର୍ମେ ।
ପିତାର ପୁଣ୍ୟ ପ୍ରଭାବେ ପୁତ୍ରହୋଏ ଜାତ
ମୋ ଉଦରେ ତୁମ୍ଭେ ପିତା ଧର୍ମରେ ଉଦିତ ।
ତୁମ୍ଭ ପିତା ଧର୍ମେ ସିନା ମୋ ଗର୍ଭ ପବିତ୍ର
ଏକ ପୁତ୍ର ନୋହ ତୁମ୍ଭେ ପୁଣି ପଞ୍ଚପୁତ୍ର ।
ସମସ୍ତେ ପିତୃ ଭକତ ଏକୁ ଏକ ବଳି
ମାତାର ଏକଥା ଶୁଣି ସବୁ ପୁତ୍ର ମିଳି ।
ଚରଣେ ପ୍ରଣମି ପୁଣି ବୋଇଲେ ଏମନ୍ତ
ଲୋକେ ଯେବେ ପୁଣ୍ୟକରି ଥାଆନ୍ତି ବହୁତ ।
ପୁଣ୍ୟବନ୍ତ ପିତା ମାତା କର୍ମକୁ ମିଳଇ
ତୁମ୍ଭତୁଲ୍ୟ ମାତା ଭାଗ୍ୟଥିଲେ ସିନା ପାଇ ।
ତୁମ୍ଭ ଗର୍ଭେ ରହି ଆମ୍ଭେ ହେଲୁଁ ପୁଣ୍ୟବନ୍ତ
ଜନ୍ମେ ଜନ୍ମେ ହେବ ଯେହ୍ନେ ତୁମ୍ଭେ ଆମ୍ଭମାତ ।
ଏ ପିତା ହେବେ ଜନମେ ଜନମେ ଆମ୍ଭର
ମାଗୁଛୁଁ ଜନନୀ ଦିଅ ମାଗୁଛୁଁ ଏ ବର ।
ଶିବଶର୍ମା ବୋଇଲେରେ ଶୁଣ ପୁତ୍ରଚାରି
ଯେବର ଦେଉଛୁଁ ଆମ୍ଭେ ରଖ ହେତୁକରି ।
ଅକ୍ଷୟ ଭୋଗ ପାଇଣ ସୁଖେ ଥାଅ ରହି
ପୁତ୍ରଗଣ କହିଲେଯେ ପିତାମୁଖ ଚାହିଁ ।
ଯେବେକି ତାତସେବାରେ ହୋଇଲ ପ୍ରସନ୍ନ
ଏହିବର ମାଗୁଅଛୁଁ ତୋଷେ କର ଦାନ ।
ଯେଉଁ ବଇଷ୍ଣବ ଧାମ ଗୋଲୋକ ଅଟଇ
ଯହିଁ ରୋଗ ଶୋକ ତାପ ଆଦି ନରହଇ ।

ସେହି ବଇକୁଣ୍ଠପୁର ଆମ୍ଭଙ୍କୁ ଯେ ଦିଅ
ଏ ବର ମାଗିଲେ ଯହୁଁ ସେହି ଚାରିପୁଅ ।
ଶିବଶର୍ମା ଦ୍ୱିଜ ତାଙ୍କୁ କହିଲେ ଏମନ୍ତ
ଯେହେତୁ ତୁମ୍ଭେ ଚାରିଏ ପିତାର ଭକତ ।
ସେହି ତପ ପରସାଦେ ହୁଅ ପାପଶୂନ୍ୟ
ଏକ୍ଷଣି ବିଷ୍ଣୁଧାମକୁ କରଯା ଗମନ ।
ଯେବଣ ଗୋଲକ ଧାମ ପରମଦୁର୍ଲ୍ଲଭ
ଯହିଁ ରହିଥାନ୍ତି ସାଧୁ ସନ୍ଥ ବଇଷ୍ଣବ ।
ଶିବଶର୍ମା ଋଷି ଏହା କହିବା ମାତ୍ରକେ
ଦେବାଧି ଦେବରାୟଯେ ଥିଲେ ବିଷ୍ଣୁଲୋକେ ।
ଶଙ୍ଖ ଚକ୍ର ଗଦା ପଦ୍ମ ଧରି ଚାରିକରେ
ଗଗନମାର୍ଗେ ଅଇଲେ ଗରୁଡ଼ ଉପରେ ।
ଶିବଶର୍ମାକୁ ବୋଇଲେ ତୁହୋ ଦ୍ୱିଜବର
ସାଧୁ ସାଧୁ ଅଟନ୍ତି ଏ ପୁତ୍ରେ ଯେ ତୋହର ।
ଭକତିବଳେ ଆମ୍ଭଙ୍କୁ କଲ ସୁପ୍ରସନ୍ନ
ଏହି ଭାରିଯା ତୁମ୍ଭର ପତିବ୍ରତା ଧନ୍ୟ ।
ତୁମ୍ଭେ ସମସ୍ତଙ୍କୁ ଘେନି ଆସ ମୋର ପୁରେ
ଶିବଶର୍ମା କହିଲେ ଯେ କର ଦେଇ ଶିରେ ।
ସୋମଶର୍ମା ସାନପୁଅ ଅଟଇ ମୋହର
ତାହାକୁ ଛାଡ଼ି ଆବର ଚାରି ଯେ କୁମର ।
ବଇଷ୍ଣବ ଲୋକକୁ ସେ କରନ୍ତୁ ଗମନ
ମାଆ ପୁଅ ଘେନି ମୁହିଁ ଥିବି କିଛିଦିନ ।
ଶିବଶର୍ମା ଋଷିକଥାଶୁଣି ଚକ୍ରଧର
ବୋଇଲେରେ ପୁତ୍ରେ ଶୁଣ ବଚନମୋହର ।
ଦାହ ଭୟ ଯହିଁ ନାହିଁ ଯାଅ ସେହିପୁରେ
ଏମନ୍ତ କହିବାବେଳେ ସେ ଚାରି କୁମରେ ।
ଶ୍ରୀବିଷ୍ଣୁରୂପ ଧଇଲେ ହେଲା ଭୁଜ ଚାରି
ଉଭାହେଲେ ଶଙ୍ଖ ଚକ୍ର ଗଦାପଦ୍ମ ଧରି ।
ଇନ୍ଦ୍ର ନୀଳମଣି ପରି ବର୍ଣ୍ଣ ତାହାଙ୍କର
ସବୁ ଆଭରଣେ ଅଙ୍ଗ ଦିଶଇ ସୁନ୍ଦର ।
କୋଟି ସୂର୍ଯ୍ୟ ତୁଲ୍ୟ ତାଙ୍କ ତେଜ ବିକାଶଇ
ରତନ ମଣ୍ଡିତ ହାର ଗଳାରେ ଶୋଭଇ ।
ସୁବର୍ଣ୍ଣର କଙ୍କଣ ଯେ ବିରାଜଇ କରେ
ଶିବଶର୍ମା ଆଗେ ଆଗେ ଶ୍ରୀବିଷ୍ଣୁ ଦେହରେ ।
ଦୀପାବଳୀ ଦୀପେ ଲୀନ ହେଲା ପ୍ରାୟ ଲୀନ
ଶ୍ରୀବିଷ୍ଣୁ ଦେହେ ମିଶିଲେ ସେ ଚାରି ନନ୍ଦନ ।

ଦୀନ ଗୋପୀନାଥ ଭଜି ଭଜି ଦିନ ରାତି
ଦିନ ନ ସରିଲା ଆହେ କମଳାର ପତି ।
ଇତି ଶ୍ରୀ ପଦ୍ମ ପୁରାଣେ ଭୂମିଖଣ୍ଡେ
ଶିବଶର୍ମୋପାଖ୍ୟାନଂ ନାମ
ତୃତୀୟୋଧ୍ୟାୟଃ ।



## ଚତୁର୍ଥ ଅଧ୍ୟାୟ

### ସୋମଶର୍ମା ଉପାଖ୍ୟାନ

ସୁତମୁନି କହିଲେ ହେ ଦ୍ୱିଜପୁତ୍ର ଚାରି
ବିମାନ ଆରୋହୀଗଲେ ଗୋଲାକ ଯେ ପୁରୀ ।
ଶିବଶର୍ମା ଡାକି ସାନପୁଅକୁ ବୋଇଲେ
ଆରେ ସୋମଶର୍ମା ତୁହି ପିତୃଭକ୍ତି ବଳେ ।
ଏ ଅମୃତ କୁଣ୍ଡ ଜଗିବସିବୁ ଯତନେ
ଭାରିଯାକୁ ଘେନିଯିବି ତୀର୍ଥ ଦରଶନେ ।
ପୁତ୍ର ସୋମଶର୍ମା ପିତାମୁଖୁ ଏହାଶୁଣି
ଜଗିଲା ଅମୃତକୁଣ୍ଡ ଦିବସ ରଜନୀ ।
ଭାରିଯାକୁ ଘେନି ତୁହଁ ଶିବଶର୍ମା ଗଲେ
ନିରତେ ଦଶ ବରଷ ବସି ତପ କଲେ ।
ସୋମଶର୍ମାକୁ ଯେ ଦିନ ରାତି ନିଦନାହିଁ
ଜଗିଥାଏ ସେ ଅମୃତ କୁଣ୍ଡପାଖେ ରହି ।
ଶିବଶର୍ମା ପୁତ୍ରଭକ୍ତି ପରୀକ୍ଷା ନିମନ୍ତେ
ତପତେଜି ପତ୍ନୀଘେନି ଘରକୁ ଫେରନ୍ତେ ।
ମାୟାବଳେ ହରି ନେଲେ କୁଣ୍ଡରୁ ଅମୃତ
ଗଳୁତ କୁଷ୍ଟବ୍ୟାଧିରେ ନିତାନ୍ତ ପୀଡ଼ିତ ।
ଭାରିଯା ତେସନ ଘୋର କୁଷ୍ଟବ୍ୟାଧି ଗ୍ରସ୍ତ
ସର୍ବାଙ୍ଗ ସେ ଦୁହିଁଙ୍କର ଦିଶଇ ବିକୃତ ।
ଛିଡ଼ି ଯାଇଅଛି ହାତ ଗୋଡ଼ ନାକ କାନ
ଦିଶନ୍ତି ସେ ଦୁହେଁ ମାଂସ ପିଣ୍ଡୁଳା ସମାନ ।
ପୂଯ ରକତ ସର୍ବାଙ୍ଗୁ ବହେ ଝର ଝର
ମାଛି ଭଣ ଭଣ ହୋଇ ବେଢ଼ନ୍ତି ଶରୀର ।
କୃମି ପୋକ ସଲସଲ ଦୁର୍ଗନ୍ଧ ଯେ ଅତି
ସୋମଶର୍ମା ପୁତ୍ରପାଶେ ଆସିଣ ମିଳନ୍ତି ।
ପିତା ମାତାଙ୍କର କଷ୍ଟ ଦେଖି ପୁତ୍ରମଣି
ଚରଣେ ପଡ଼ି ବୋଇଲେ ଶିରେ ଦେଇପାଣି ।

ପବିତ୍ର ଗୁଣ ତପସ୍ୟା ଫଳେ କି ତୁମ୍ଭର
ଏ ଦଶା ଘଟିଲା ଆହେ ଜନନୀ ପିଅର ।
ଯେ ବିପ୍ରକୁ ଦାସତୁଲ୍ୟ ଖଟିଥାନ୍ତି ଦେବେ
ଏ ବ୍ୟାଧି ଆସି ଘୋଟିଲା ସେ ବିପ୍ରକୁ ଏବେ ।
ଏମନ୍ତ ଭାଳି ବୋଇଲା ଆହେ ତାତ ମାତ
କିମ୍ପାଇ ହୋଇଲ ଘୋର ବ୍ୟାଧିରେ ପୀଡ଼ିତ ।
ପବିତ୍ରତାକୁ ଛୁଇଁଲା ଏ ବ୍ୟାଧି କେମନ୍ତେ
ଆନସୃଷ୍ଟି କରିପାରେ ଯେ ଚାହିଁଲା ମାତ୍ରେ ।
ପତିସେବାରେ କି ପୁଣି ଏ ଫଳ ଘଟିଲା
ଦାରୁଣ ଏ କୁଷ୍ଟବ୍ୟାଧି ସର୍ବାଙ୍ଗେ ଘୋଟିଲା ।
ଏ କି ବିପରୀତ ଫଳ ଜାଣିପାରୁ ନାହିଁ
ଶିବଶର୍ମା କହିଲେ ଯେ ପୁତ୍ରମୁଖ ଚାହିଁ ।
ଆମ୍ଭପାଇଁ ଶୋକ ଆଉ ନକର କୁମର
ପାପ ପୁଣ୍ୟ ଫଳଭୋଗୀ ଏ ନର ଶରୀର ।
ପାପକଲେ ନାନାକଷ୍ଟ ପାଏ ଏ ଦେହରେ
ପୁଣ୍ୟକରି ଜନ ପୁଣ୍ୟବଳେ ସୁଖ କରେ ।
ସୁଖ ଦୁଃଖ ପାଇଁ ବାବୁ ନକର ଶୋଚନା
କଲା କର୍ମ ଭୋଗ ନିଶ୍ଚେ କରିବ ନା ସିନା ।
ପୁଣ୍ୟ କରିବାରେ ଇଚ୍ଛାଥିଲେ ବାବୁ ତୋର
ସେବା ଶୁଶ୍ରୁଷା ତୁ କର ଆମ୍ଭ ଦୁହିଁଙ୍କର ।
ସୋମଶର୍ମା ଶୁଣି ଅତି ଆନନ୍ଦ ହୋଇଲା
ତୁମ୍ଭ ସେବା ଶୁଶ୍ରୁଷା ମୁଁ କରିବି ବୋଇଲା ।
ମୁଁ ପାପୀ କୃପଣ ଦୀନ ପୁଣି ଦୁଷ୍ଟଜନ
ଶ୍ରୀଗୁରୁ ପୂଜା ନକଲେ ବିଅର୍ଥ ଜୀବନ ।
ଗୁରୁ ମଧ୍ୟେ ମହାଗୁରୁ ପିତାମାତା ଦୁଇ
ଏହାକହି ତାଙ୍କଦୁଃଖେ ଦୁଃଖିତ ସେ ହୋଇ ।
ଶ୍ଳେଷ୍ମା ପୂଯ ରକ୍ତ ଧୋଇ ପୋଛେ ମଳମୂତ୍ର
ତିଳେ ଘୃଣା ନାହିଁ ତାର ଯେଣୁ ସାଧୁପୁତ୍ର ।
ପାଦଧୋଇ ଦେଇ ପାଦ ଉଦକ ପିଅଇ
ନିତି ତୀର୍ଥେ ଯାଇ ତାକୁ କାନ୍ଧରେ ବସାଇ ।
ତୀର୍ଥ ଜଳ ଦେଇ ଶିରେ କରାଇଣ ସ୍ନାନ
ତର୍ପଣ କରାଇ ପିତୃ ମନ୍ତ୍ର ଉଚ୍ଚାରିଣ ।
ଦେବାର୍ଚ୍ଚନ ଆଦି ସାରି ଘରକୁ ଆସଇ
ଆପେ ହୋମ ସାରି ଦିବ୍ୟ ପାକ ସମ୍ପାଦଇ ।
ପିତାମାତାଙ୍କୁ ଭୁଞ୍ଜାଇ ଭୁଞ୍ଜଇ ଆପଣେ
କୋମଳ ଶେଯ ବିଛାଇ ଦିଏ ଦିବ୍ୟସ୍ଥାନେ ।

ବସନ ପିନ୍ଧାଇ ଦିଏ ଗୁନ୍ଥି ଫୁଲମାଳ
ଗଳାରେ ଲମ୍ବାଇଦେଇ ଖୁଆଇ ତାମ୍ବୂଳ ।
ସୁଗନ୍ଧ ଚନ୍ଦନ ଘୋରି ଅଙ୍ଗରେ ବୋଳଇ
ଉତ୍ତମ ଶେଯ ଶେଯାଇ ଶୁଆଇ ଦିଅଇ ।
ଯେତେବେଳେ ଯେଉଁଦ୍ରବ୍ୟ ସେଦୁହେଁ ମାଗନ୍ତି
ତାହା ଆଦିଦିଏ ତାଙ୍କୁ ସେ ଦୁଇ ଭୁଞ୍ଜନ୍ତି ।
ତିନି ଭୁବନରେ ଯହିଁ ତହିଁ ଥିଲେ ଆଣେ
ଏମନ୍ତେ ଭକତି ରଖି ତାହାଙ୍କ ଚରଣେ ।
ଏରୂପେ କଠୋର ସେବା ଦେଖିଣ ପୁତ୍ରର
ପୁତ୍ରକୁ ଡାକିଣ ଶିବଶର୍ମା ଦ୍ୱିଜବର ।
ନିଷ୍ଠୁର ଭାବେ ବହୁତ ଗାଳି ତାକୁ ଦେଲା
ଗାଳିମନ୍ଦ କରି ତାକୁ ମାଡ଼ହିଁ ମାଇଲା ।
ତୁ ମୋର ସେବାନକରୁ ଆରେ କୁଳାଙ୍ଗାର
କେତେକଷ୍ଟେ ଗର୍ଭେ ତୋତେ ଧଇଲୁ ପାମର ।
ଗୁହମୂତ କାଢ଼ି କେତେ ତୋର ସେବାକଲୁ
କର୍ମଦୋଷେ ଆମ୍ଭେ ଏବେ ଏ ଦୁଃଖପାଇଲୁ ।
କପଟ ସେବା ତୁ କରୁ ଆରେରେ ଦୁର୍ମତି
ଅନ୍ତରେ ତୋହର ଘୃଣାଥାଏ ଆମ୍ଭପ୍ରତି ।
ଏମନ୍ତେ ବହୁତ ଗାଳିମନ୍ଦ ଦେଇ ପୁଣି
ମାଡ଼ ମାରଇ ସେ ନିନ୍ଦା ବଚନ ବଖାଣି ।
ଏତେ ମତେ ସୋମଶର୍ମା ସେବା ନ ଛାଡ଼ଇ
ତହିଁରେ ସେ କିଛି ତାଙ୍କୁ ଉତ୍ତର ନଦେଇ ।
ଘୃଣାନାହିଁ କିଛି ତାର ଅନ୍ତର ବାହାରେ
ପୁଣ୍ୟ କରୁଥାଇ ଶ୍ରଦ୍ଧା ଭକତି ଚିତ୍ତରେ ।
ଶିବଶର୍ମା ବୋଲେ ପୁତ୍ର ବିଷ୍ଣୁ ଶର୍ମା ଧନ୍ୟ
ମୋ କଥାମାନି ସ୍ୱର୍ଗକୁ କଲାକ ଗମନ ।
ଅମୃତକୁଣ୍ଡ ସ୍ୱର୍ଗରୁ ମୋତେ ଦେଲା ଆଣି
ଧନ୍ୟତୁରେ ଯଜ୍ଞଶର୍ମା ମୋର ପୁତ୍ରମଣି ।
ମୋ କଥାରେ ମାତାଦେହ କଲୁ ଖଣ୍ଡ ଖଣ୍ଡ
ମନରେ ନକଲୁ ଏହି ମୋ ମାତାର ପିଣ୍ଡ ।
ମୋ କଥାରେ ଲୋକମୋହ ତ୍ୟାଗକଲୁ ପୁଣି
ତୋ ତହୁଁ ମୋ ବେଦଶର୍ମା ଅଟେ ପୁତ୍ରମଣି ।
ତୋଠାରୁ ସାହାସ ତାର ଅଧିକ ଅଟଇ
ଖଣ୍ଡ ଖଣ୍ଡ କଲୁ ସିନା ମଲା ଦେହ ତୁହି ।
ସେହି ନିଜ ଶିରକାଟି ଦେଲା ମୋ ନିମନ୍ତେ
ଧର୍ମଶର୍ମା ପୁତ୍ରଧର୍ମ କହିବି ମୁଁ କେତେ ।

ଭାଇକି ବଞ୍ଚାଇ ଦେଲା ତପସ୍ୟାର ବଳେ
ତୁଯେବେ ଆମ୍ଭର ସେବାକରୁ ସେହିପରେ ।
ଆରେ ସୋମଶର୍ମା ଦିଅ ପିଇବୁ ଅମୃତ
ଏ ଘୋର ବ୍ୟାଧିରୁ ଆମ୍ଭେ ପାଇବୁ ମୁକତ ।
ସୋମଶର୍ମା ଶୁଣି ତହୁଁ ବେଗେ ଉଠିଗଲା
ଅମୃତ ନାହିଁ ଅମୃତ କୁଣ୍ଡରେ ଦେଖିଲା ।
ତୁଚ୍ଛାକୁଣ୍ଡ ଦେଖି ମନେ ଭାଳଇ କୁମର
କେଉଁ ପାପରୁ ଏ ଦଶା ଘଟିଲା ମୋହର ।
ଏମନ୍ତେ ସେ କିଛିକ୍ଷଣ ଭାଳି ମନେ ମନେ
ପିତାକୁ ଏ ଭାଣ୍ଡ ମୁହିଁ ଦେବଇଁ କେସନେ ।
ଦେଖି ବୋଲିବେ ପିଇଲୁ ତୁ ମୋର ଅମୃତ
ରୋଗାର୍ତ୍ତପିତା ମୋଠାରେ ହୋଇବେ କୁପିତ ।
ଏରୂପେ ନାନକଥା ସେ ମନରେ ବିଚାରି
ବୋଇଲା ଯେବେ କି ମୁହିଁ ଦିବସ ସର୍ବରୀ ।
ପିତା ମାତା ପାଦ ସେବା କରୁଥିବି ସତେ
କପଟ ଥିବ ଯେବେ କିଏମୋହର ଚିତ୍ତେ ।
ଧର୍ମ କରୁଥିବି ଯେବେ ହୋଇ ଶୁଚିମନ୍ତ
ସେହି ସତ୍ୟ ଧର୍ମେ ପୁର ଏ କୁଣ୍ଡେ ଅମୃତ ।
ଏହା କହି ଦେଲା ପୁଣି କୁଣ୍ଡକୁ ଅନାଇ
କୁଣ୍ଡ ଅମୃତେ ପୂରିଛି ସାକ୍ଷାତେ ଦେଖଇ ।
ଆନନ୍ଦେ ସେ କୁଣ୍ଡ ଘେନି ପିତାପାଶେ ଗଲା
ପ୍ରଣମି ଅମୃତକୁଣ୍ଡ ଆଗରେ ଥୋଇଲା ।
ବୋଇଲା ଅମୃତପାନ କରନ୍ତୁ ଭୋ ତାତ
ଦେହୁଁ ରୋଗ ତୁଟି ଯାଉ ହୁଅ ଶୁଚିମନ୍ତ ।
ଶିବଶର୍ମା ମନେ ମନେ କରଇ ବିଚାର
ସବୁ ପୁତ୍ରହୁଁ ଅଧିକ ଭକତି ତୋହର ।
ମଳମୂତ୍ର ଶ୍ଳେଷ୍ମା ଧୋଉ ଘୃଣା ତୋର ନାହିଁ
ଆମ୍ଭ ମନ ଜାଣି ପୁତ୍ର ସେବାକରୁ ତୁହି ।
ଗାଳିମନ୍ଦ ଦେଲେ ତେଣେ ନୋହୁ ବିରକତ
ମାଇଲି ମୁଁ ତହିଁରେ ତୁ ନୋହିଲୁ କୁପିତ ।
ଏମନ୍ତେ ମନ ମଧ୍ୟରେ ପ୍ରଶଂସା କରିଣ
ଦ୍ୱିଜ ଗୋପୀନାଥ ଭଜେ ଅଭୟ ଚରଣ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ସୋମ-
ଶର୍ମୋପାଖ୍ୟାନଂ ନାମ ଚତୁର୍ଥୋଽଧ୍ୟାୟଃ ।



## ପଞ୍ଚମ ଅଧ୍ୟାୟ

### ପତ୍ନୀ ସହିତ ଶିବଶର୍ମାର ବିଷ୍ଣୁଲୋକ ପ୍ରାପ୍ତି ଓ ପ୍ରହ୍ଲାଦର ପୂର୍ବଜନ୍ମ ବୃତ୍ତାନ୍ତ ଓ ଇନ୍ଦ୍ରପଦ ଲାଭ

ଶିବଶର୍ମା ଦ୍ୱିଜ କହେ ମଧୁର ବଚନେ
ସାଧୁ ସାଧୁ ପୁତ୍ର ତୁରେ ଏ ତିନି ଭୁବନେ ।
ତୋ ତପ ଦମ ଶଉଚ ଗୁରୁ ସେବା ଶକ୍ତି
ଦେଖି ପ୍ରସନ୍ନ ହୋଇଲୁଁ ଆମ୍ଭେ ଯେ ଦମ୍ପତି ।
ଆଜି ଏ ବିକୃତ ରୂପ ଛାଡ଼ିଲୁରେ ବାବୁ
ଆମ୍ଭ ଠହୁଁ ଅତି ସୁଖ ତୁ ନିଶ୍ଚେ ପାଇବୁ ।
ଏକଥା କହି ତେଜିଲେ ବିକୃତ ଶରୀର
ପୂର୍ବରେ ଯେମନ୍ତେ ଥିଲା ତାଙ୍କ କଳେବର ।
ତେସନ ଉଜ୍ଜ୍ୱଳ କାନ୍ତି ଦୁରୁ ବିରାଜଇ
ସୂର୍ଯ୍ୟ ବିମ୍ବ ତୁଲ୍ୟ ତାଙ୍କ ତେଜ ବିକାଶଇ ।
ପୁତ୍ର ଦେଖି ଆନନ୍ଦରେ ଚରଣ ବନ୍ଦିଲା
କରପତ୍ର ଯୋଡ଼ି ପୁଣି ଆଗେ ଉଭା ହେଲା ।
ଶିବଶର୍ମା ବୋଲେ ବାବୁ ମୋ ପାଶକୁ ଆସ
ଏମନ୍ତ କହି ସେ ଦ୍ୱିଜ କଲା ଯୋଗାଭ୍ୟାସ ।
ଯୋଗବଳେ ଭାରିଯାକୁ ସଙ୍ଗତରେ ଘେନି
ବଇକୁଣ୍ଠପୁରେ ଗଲେ ପତିପତ୍ନୀ ବେନି ।
ନିର୍ମଳ ଅତି ଦୁର୍ଲ୍ଲଭ ବଇଷ୍ଣବ ପଦ
ପାଇଲେ ସେ ପଦଗୋଟି ଅଟେ ମୋକ୍ଷପ୍ରଦ ।
ଯୋଗବଳେ ବିଷ୍ଣୁ ଦେହେ ମିଶିଲା ଯେସନେ
ସେ ପଦ ନମିଳେ ପୁଣ୍ୟ ତପ ଅରଜନେ ।
ବିଷ୍ଣୁଧ୍ୟାନେ ବିଷ୍ଣୁମନ୍ତ୍ର ନ୍ୟାସେ ନମିଳଇ
ଶ୍ରୀବିଷ୍ଣୁ ସ୍ତବ ପଢ଼ିଲେ ସେ ପଦ ନପାଇ ।
ସମାଧିବଳେ କି ଜ୍ଞାନବଳେ ଯୋଗବଳେ
ଦାନରଫଳେ କି ନାନାତୀର୍ଥ ଯାତ୍ରାଫଳେ ।
ନପାଇ ଦେବାଧିଦେବ ଶ୍ରୀ ମଧୁସୂଦନ
ସୁତ ମୁନି କହିଲେ ଯେ ଏଥୁଅନ୍ତେ ଶୁଣ ।
ତହୁଁ ସୋମଶର୍ମା ଦ୍ୱିଜ ତପକଲା ବସି
କାଞ୍ଚନ ଭୂଷଣ ଗୋଡ଼ି ମାଟି ପ୍ରାୟ ଦିଶି ।
ଆହାର ନିଦ୍ରା ତେଜିଲା ଧର୍ମେ ଦେଲା ମନ
ନିଖିଳ ବିଷୟ ସ୍ପୃହା ତେଜିଲ ବହନ ।
ସବୁ ଛାଡ଼ି ଯୋଗାସନ ମାଡ଼ିବସେ ଦ୍ୱିଜ
ତାର ମୃତ୍ୟୁକାଳ ଜାଣି ଅଇଲେ ଦନୁଜ ।
ଶାଳଗ୍ରାମ କ୍ଷେତ୍ରବର ଅଟେ ଯାର ନାମ
ଋଷି ମୁନିମାନଙ୍କର ମାନବର ଧନ ।
କେତେକ ଦାନବ ପୁଣି କେତେକ ଦଇତ
କଥାବାର୍ତ୍ତା ହେଲେତହୁଁ ଶବ୍ଦହେଲା ଜାତ ।
ସେ ଶବଦ ଯାଇ ଦ୍ୱିଜକର୍ଣ୍ଣେ ସମ୍ଭାଇଲା
ଧ୍ୟାନ ଭାଙ୍ଗିଗଲା ତାର ଜ୍ଞାନ ହଜିଗଲା ।
ଦୈତ୍ୟଭୟେ ସୋମଶର୍ମା ପାଇ ମହାଭୀତି
ପ୍ରାଣ ବିସର୍ଜିଲା ତାର ଶବ ପଡ଼େ କ୍ଷିତି ।
ତାର ପ୍ରାଣ ଛାଡ଼ିଗଲା ଯହୁଁ ଦୈତ୍ୟଭୟେ
ତେଣୁ ସେ ଜନମହେଲା ଯାଇଁ ଦୈତ୍ୟଗୃହେ ।
ହିରଣ୍ୟକଶିପୁ ଦୈତ୍ୟରାଜାର ତନୟ
ଦେବାସୁର ଯୁଦ୍ଧେଗଲା ବିଷ୍ଣୁ ଚକ୍ରେ କ୍ଷୟ ।
ଯୁଦ୍ଧ କରୁ କରୁ ସେହି ପ୍ରହ୍ଲାଦ ଅସୁର
ଦେଖିଥିଲା ବିଶ୍ୱରୂପ ବାସୁଦେବଙ୍କର ।
ପୂର୍ବ ଯୋଗାଭ୍ୟାସ ବଳେ ଜନମିଲା ଜ୍ଞାନ
ଶିବଶର୍ମାର ଚରିତ କଲା ସୁମରଣ ।
ପୂର୍ବେ ମୁହିଁ ସୋମଶର୍ମା ନାମେ ଦ୍ୱିଜ ଥିଲି
ମଲାବେଳେ ଦାନବଙ୍କ ଦେହରେ ମିଶିଲି ।
ଏ ଦେହରୁ କେବେ ମୁହିଁ ପାଇବି ମୁକତି
ମହାପୁଣ୍ୟ ଜ୍ଞାନଯୋଗେ ଲଭିବି ସୁଗତି ।
ମରିବା ବେଳେ ପ୍ରହ୍ଲାଦ କରେ ଏହି ଚିନ୍ତା
ମନେରଖ ମୁନିଗଣେ ଏ ଅପୂର୍ବ କଥା ।
ତହୁଁ ପୁଣି କହିଲେ ସେ ମହାମୁନି ସୁତ
ଚକ୍ରପାଣି ଚକ୍ରେକରି ପ୍ରହ୍ଲାଦ ନିହତ ।
ହିରଣ୍ୟକଶିପୁ ଜାୟା ପ୍ରହ୍ଲାଦ ଜନନୀ
ପତିବ୍ରତା ଶିରୋମଣି ସେ କମଳାରାଣୀ ।
ପୁତ୍ର ଶୋକେ ଦିନରାତି କରଇ ରୋଦନ
ତାହାକୁ ଯାଇ କହିଲେ ନାରଦ ଏସନ ।
କମଳା ରାଣୀଗୋ ଶୋକ ନକର ତୁ ଆଉ
ତୋ ପୁତ୍ରକୁ ବଧ କଲେ ବିଷ୍ଣୁ ମହାବାହୁ ।
ତୋର ସେହିତ୍ରୟ ପୁଣି ଆସିବ ତୋ ଘରେ
ପୁନରପି ଜନମିବ ଏ ତୋର ଉଦରେ ।
ଯେ ଲକ୍ଷଣମାନ ତୁ ଗୋ ଦେଖିଥିଲୁ ତାର
ସେ ଲକ୍ଷଣ ଘେନି ଜାତ ହେବ ହେ କୁମର ।

ପ୍ରହ୍ଲାଦ ନାମେ ବିଖ୍ୟାତ ହୋଇବଯେ ଗୁଣି
ଅସୁର ଭାବ ନାଶିଲେ ତାର ଚକ୍ରପାଣି ।
ଦେବତା ଭାବ ଆସିବ ତାର ହୃଦୟରେ
ଦେବଇନ୍ଦ୍ର ବୋଲାଇବ ସ୍ୱର୍ଗ ଭୁବନରେ ।
ଇନ୍ଦ୍ରପଦ ପାଇବ ସେ ନ ଭାଳ ତୁ ରାଣୀ
ସୁଖ ସମ୍ଭୋଗ ହେ ତୋତେ ଦେବ ପୁତ୍ରମଣି ।
ସବୁ ଦେବତା ଖଟିବେ ତାହାର ଚରଣେ
ଗୋପନ କରି ରଖ ତୁ ଆପଣାର ମନେ ।
କାହାରି ଆଗେ ଏ କଥା ନକହିବୁ ରାଣୀ
ଗୁପତେ କହି ଚଳିଲେ ନାରଦ ଯେ ମୁନି ।
ସମୟେ କମଳା ଗର୍ଭୁ ପୁଣି ଉପୁଜିଲା
ଏ ଜନ୍ମେ ପ୍ରହ୍ଲାଦ ନାମ ପୁଣି ସେ ବହିଲା ।
ବାଳକାଳୁଁ କୃଷ୍ଣେ ତହିଁ ରହିଁଲା ତା ମନ
ନରସିଂହ ପରସାଦେ ବୋଇଲା ରାଜନ !
ଦେବରାଜ ଇନ୍ଦ୍ରହେଲା ଯାଇ ସ୍ୱର୍ଗପୁରେ
ତହୁଁ ମୋକ୍ଷ ହୋଇଗଲା ଶ୍ରୀବିଷ୍ଣୁ ନଗରେ ।
ଏରୂପେ ଅସଂଖ୍ୟ ନାମ ସୃଷ୍ଟି ବହିଯାଇ
ମୋହେ ନପଡ଼ନ୍ତି ଜ୍ଞାନୀଜନେ ଜ୍ଞାନପାଇ ।
କହିଲି ଯା ପଚାରିଲ ତୁମ୍ଭେ ଋଷିଗଣ
ଏଣିକି ଯା ପଚାରିବ କହିବା ତା ପୁଣ ।
ବିଷ୍ଣୁ ଦାନବ ନାଶନ୍ତି ଦେବଙ୍କୁ ରଖନ୍ତି
ଏ ତିନି ଭୁବନ ଜାଣ ଏରୂପେ ପାଳନ୍ତି ।
ଋଷିଏ କହିଲେ କହ ସୁତ ମୁନିବର
ଦେବ ଇନ୍ଦ୍ରପଦ ହୋଇଥିଲା ଯେ କାହାର ।
କେ ଦେଇଥିଲା କିରୂପେ କହିବ ବିସ୍ତାରି
ଏମନ୍ତ ଶୁଣି କହିଲେ ସୁତ ତପଚାରୀ ।
ପ୍ରହ୍ଲାଦ ପାଇଲା ଇନ୍ଦ୍ରପଦ ଯେଉଁ ପୁଣ୍ୟେ
ତାହା ବିସ୍ତାରି କହୁଛି ଶୁଣ ଋଷିଗଣେ ।
ମହା ସଂଗ୍ରାମେ ଗୋବିନ୍ଦ ମାଇଲେ ଅସୁର
ସବୁ ପାପ ଛାଡ଼ିଯାନ୍ତେ ନାଗ ବିଦ୍ୟାଧର ।
ଗନ୍ଧର୍ବ ସହିତେ ଦେବେ କହିଲେ ମାଧବ
ତୁମ୍ଭେ ପ୍ରଭୁ ଭଗବାନ ଦେବଙ୍କର ଦେବ ।
ତୁମ୍ଭଙ୍କୁ ଯେ ନମସ୍କାର କରୁଁ ହୃଷୀକେଶ
ଜଣାଉଛୁଁ ଆମ୍ଭେ ସର୍ବେ ଆସି ତୁମ୍ଭ ପାଶ ।
ସାବଧାନେ ଶୁଣ ତାହା ହେ ଦେବ କେଶବ
ପୁଣ୍ୟମୟ ପୁରୁଷ ତୁ କମଳାର ଧବ ।

ଆମ୍ଭ ସମସ୍ତଙ୍କ ତୁମ୍ଭେ ଅଟ ଶାସ୍ତି ଦାତା
ଆମ୍ଭର ତୁମ୍ଭେ ଯେ ପ୍ରତି ପାଳନ କରତା ।
ହେଲେହେଁ ଦେବତା ତଥା ତିନିପୁର ପ୍ରଜା
କେମନ୍ତେ ରକ୍ଷା ପାଇବେ ନଥିଲେତ ରାଜା ।
ଏମନ୍ତ ଜଣେକ ବାଛି ଦିଅ ନାରାୟଣ
ବାସୁଦେବ ବୋଇଲେହୋ ଶୁଣ ଦେବଗଣ ।
ଅଦିତି ଦେବୀର ପୁତ୍ର ତା ନାମ ସୁବ୍ରତ
ମହା ବଳବନ୍ତ ପୁଣି ମହା ବୀର୍ଯ୍ୟବନ୍ତ ।
ସ୍ୱର୍ଗେ ଇନ୍ଦ୍ରହୋଇ ତିନିଭୁବନ ପାଳିବ
ମୋପୁରେ ଥିଲା ପୁଣି ହୋଇ ବଇଷ୍ଣବ ।
ବହୁତ କାଳ ରହିଲା ମୋର ଏ ଭକତ
ପୂରିଗଲାଣି ମୋପୁରେ ରହିବାର ବ୍ରତ ।
ବଇଷ୍ଣବ ତେଜରେ ସେ ତୁମ୍ଭଙ୍କୁ ପାଳିବ
ସୁତମୁନି କହିଲେ ସେ ଦେବେଶ ମାଧବ ।
ଦେବଗଣଙ୍କୁ ଏରୂପେ ଦେଇଗଲେ ବର
କଶ୍ୟପଋଷି ଯେ ପିତା ଅଟେ ଦେବଙ୍କର ।
ଅଦିତି ଦେବୀ ଦେବଙ୍କ ଜନନୀ ଅଟଇ
ଦେବେଗଲେ ପିତାମାତା ଘରେମେଳିହୋଇ ।
ସେହି ଦୁଇପାଣୀ ସୁଖେ ବସିବାର ଦେଖି
ସମସ୍ତେ ଶୋଇଲେ ତାଙ୍କପାଦେ ଶିରରଖି ।
ଉଠି ପୁଣି କରଯୋଡ଼ି କହିଲେ ସାନନ୍ଦେ
ଦେବତା ହୋଇଲୁ ଆମ୍ଭେ ତବ ପରସାଦେ ।
ମହା ଆନନ୍ଦେ ବୋଇଲେ ସେ କଶ୍ୟପଋଷି
ସତ୍ୟଧର୍ମେ ଥିବା ଯୋଗୁଁ ହେଲ ସ୍ୱର୍ଗବାସୀ ।
ପାଇଲ ଅକ୍ଷୟ ଦେବ ପାଦ ତପବଳେ
ଅଜର ଅମର ହୋଇଥିବ ମୋର ବରେ ।
ଅକ୍ଷୟ ହୋଇ ରହିବ ଅମର ମଣ୍ଡଳେ
ଦେବତା ନାଗ ଗନ୍ଧର୍ବ ଏ ଆଦି ସକଳେ ।
ମୋର ବର ପରସାଦେ ଧନୀ କାମଚାରୀ
ସକଳ ସିଦ୍ଧି ପାଇବ ରହି ସ୍ୱର୍ଗପୁରୀ ।
ଶ୍ରୀବିଷ୍ଣୁ ବୋଇଲେ ଯଶୋବତୀ ବେଦମାତ
ବର ଦେବାପାଇଁ ତୁମ୍ଭ ପାଶେ ଉପଗତ ।
ତୁମ୍ଭେ ଯାହା ମାଗିବ ତା ଦେବଇଁ ନିଶ୍ଚୟ
ଅଦିତି ବୋଇଲେ ତୁମ୍ଭେ ଦେବ ଦେବରାୟ ।
ତୁମ୍ଭେ ତ ମାଧବ ପୁଣି ଶ୍ରୀ ମଧୁସୂଦନ
ମୋହର କଥାକୁ ଶୁଣ ହୋଇ ସାବଧାନ ।

ପୂର୍ବେ ତୁମ୍ଭ ପରସାଦେ ହେଲି ପୁତ୍ରବତୀ
ଏସବୁ ପୁତ୍ରେ ମୋହର ପୁଣ୍ୟକର୍ମେ ବ୍ରତୀ ।
ଅଜର ଅମର ପୁଣି ଅଟନ୍ତି ଅକ୍ଷୟ
ମୋ ଗର୍ଭେ ରହିବତୁମ୍ଭେ ହେବମୋ ତନୟ ।
ପ୍ରସନ୍ନେ ବରଯାଚିଲେ ଯେବେହେ ଗୋବିନ୍ଦ
ତୁମ୍ଭେ ମୋର ପୁତ୍ରହେଲେ ହେବି ମୁଁ ଆନନ୍ଦ ।
ଭୋନାଥ କେଶବ ମୋର ବାଞ୍ଛା ସିଦ୍ଧକର
ତହିଁକି ଶ୍ରୀବିଷ୍ଣୁ ଦେଲେ ଏ ପ୍ରତି ଉତ୍ତର ।
ଦେବଙ୍କ ନିମନ୍ତେ ତୁ ଗୋ ହୋଇବୁ ମାନବୀ
ସେକାଳେ ମୁଁ ତୋର ଗର୍ଭ ମଧରେ ରହିବି ।
ହେ ଦେବି ! ଏଗାରଯୁଗ ଅନ୍ତେ ତୁ ମହୀରେ
ଜାତହେବୁ ଋଷିକନ୍ୟା ରେଣୁକା ନାମରେ ।
ଯମଦଗ୍ନି ମୁନିଶତଜ ଉଦରେ ତୋହର
ବୋଲାଇବୁ ଆମ୍ଭେ ପର୍ଶୁରାମ ନାମେ ବୀର ।
ସବୁ ଶସ୍ତ୍ରଧାରୀ ମଧେ ପ୍ରଧାନ ହୋଇବୁ
ତେଜ ପ୍ରତାପେ ମହୀର ଭାରା ନିବାରିବୁ ।
ଛବିଶଯୁଗ ଅନ୍ତେ ସେ ସତାଇଶ ଯୁଗେ
ତୋହର ଗର୍ଭରୁଜାତ ହେବୁ ତ୍ରେତାଯୁଗେ ।
ରାମ ନାମଧାରୀ ପୁତ୍ର ହେବୁ ଗୋ ତୁମ୍ଭର
ବଧିବୁ ଲଙ୍କାରେ ଆମ୍ଭେ ବିଶ୍ରବା କୁମର ।
ସତାଇଶ ଯୁଗ ଅନ୍ତେ ଅଠାଇଶ ଯୁଗେ
ଅସୁର ନାଶିବାପାଇଁ ଆମ୍ଭେ ଭୂମିଭାଗେ ।
ତୋହରି ଗର୍ଭୁ ଜନମି ହେବୁ ତୋ କୁମର
କଂସ କେଶୀ ନାଶି ଉଶ୍ୱାସିବୁ ମହୀଭାର ।
ଦ୍ୱାପର ଯୁଗର ଏହି ଶେଷଭାଗ ଜାଣ
ସେ ଜନ୍ମେ ହେବ ଆମ୍ଭର ବାସୁଦେବ ନାମ ।
ଏକ୍ଷଣେ ଯାହା କରିବ ଶୁଣଗୋ କଲ୍ୟାଣି
ପୁତ୍ରେକ ଜନମକର ହେବ ବଜ୍ରପାଣି ।
ସୁନ୍ଦର ପଣେ ତାହାକୁ ନୋହିବେକେ ସରି
ଉତ୍ତମ ଲକ୍ଷଣଯୁକ୍ତ ହେବ ଯେଉଁପରି ।
ସର୍ବଜ୍ଞ ଆବର ହେବ ସତ୍ୟଧର୍ମ ରତ
ସ୍ୱର୍ଗରେ ତାହାକୁ ଇନ୍ଦ୍ର କରିବି ମୋ ବ୍ରତ ।
ଅଦିତି ଆନନ୍ଦ ମନେ ବୋଇଲେ ହେ ନାଥ
ତୁମ୍ଭର ବାକ୍ୟ ପାଳିବି ଏ ମୋହର ସତ୍ୟ ।
ଚିତ୍ତରୁ ଆତଙ୍କ ଗଲା ଦେବେ ହେଲେ ତୋଷ
ଯେ ଯାହା ପୁରକୁ ଗଲେ କହେ ବ୍ୟାସଶିଷ୍ୟ ।

ଅଦିତି ଦେବୀ ଯେ ଦିନ ହେଲେ ଋତୁମତି
କଶ୍ୟପଙ୍କୁ କହିଲେ ଯା କହିଲେ ଶ୍ରୀପତି ।
ଇନ୍ଦ୍ରହେବା ଭଳି ପୁତ୍ରଦିଅ ମୁନିବର
କଶ୍ୟପ କ୍ଷଣେକ ଭାଳି ଦେଲେକ ଉତ୍ତର ।
ଏଥର ତେମନ୍ତ ପୁତ୍ର ପାଇବୁ ଗୋ ସତୀ
ଏ ପୁତ୍ର ହେବ ଗୋ ତିନିପୁର ଅଧିପତି ।
ସତ୍ୟଧର୍ମେ ରହି ଯଜ୍ଞ ଭାଗକୁ ଭୁଞ୍ଜିବ
ତେଜୋବନ୍ତ ବଳବନ୍ତ ସେ ପୁତ୍ର ହୋଇବ ।
ଏମନ୍ତ କହି ଅଦିତି ମୁଣ୍ଡେ ଦେଇ ହାତ
ତପସ୍ୟା କରିବାପାଇଁ ଗଲେ ତପୋବନ୍ତ ।
ତେଜସ୍ୱୀ ସୁବ୍ରତ ଥିଲା ବଇକୁଣ୍ଠ ପୁରେ
କର୍ମଫଳେ ରହିବ ସେ ଅଦିତି ଉଦରେ ।
ସେ ଅଦିତି ତପବଳେ ଏ ଗର୍ଭ ଧରିବ
ଏଥୁ ଅନନ୍ତର କଥା ଶୁଣ ଋଷି ସର୍ବ ।
ଅଦିତି ଦେବୀ ରହିଲା ବନବାସେ ଯାଇଁ
ଘୋର ତପ କଲା ତିଳେ ଅଁଳସହିଁ ନାହିଁ ।
ଦେବ ବରଷରେ ଶତବର୍ଷ ବହିଗଲା
ଦ୍ୱିତୀୟ ଆଦିତ୍ୟ ପ୍ରାୟ ତେଜ ବିକାଶିଲା ।
ତପବଳେ ବେଳୁବେଳ ଦିଶିଲା ସୁନ୍ଦର
ପବନ ଭକ୍ଷି ତପସ୍ୟା କଲା ଘୋରତର ।
ସିଦ୍ଧଋଷି ଦେବଗଣ କଲେ ନାନାସ୍ତୁତି
ଆଉ ତପସ୍ୟା ନକର ଜନନୀ ଅଦିତି ।
ପୂରିଗଲା ଯହୁଁ ଶତ ବରଷ ତାହାର
ବିଷ୍ଣୁ ଦେବତା ମିଳିଲେ ନିକଟେ ତାଙ୍କର ।
ଉଚ୍ଚରେବୋଇଲେ ବେଦମାତାଗୋ ଅଦିତି
ପ୍ରସବ କାଳ ତୁମ୍ଭର ହେଲା ଉପସ୍ଥିତି ।
ଆଜି ତୁମ୍ଭେ କର ତୁମ୍ଭ ଗର୍ଭକୁ ମୋଚନ
ଏହାକହି ବଇକୁଣ୍ଠ ଗଲେ ଜନାର୍ଦ୍ଦନ ।
ଉତ୍ତମ ଶୁଭ ବେଳାରେ ସେ ଦେବୀ ଅଦିତି
ପୁତ୍ର ଏକ ପ୍ରସବିଲେ ତେଜୋବନ୍ତ ଅତି ।
ଦ୍ୱିତୀୟ ଆଦିତ୍ୟ ପ୍ରାୟ ତେଜ ବିକାଶଇ
ସର୍ବାଙ୍ଗ ଅତି ସୁନ୍ଦର ବାରିବାକୁ ନାହିଁ ।
ସବୁ ସୁଲକ୍ଷଣ ଯାକ ଅଙ୍ଗେ ବିରାଜିତ
ଚନ୍ଦ୍ରମା ପ୍ରାୟ ବଦନ ସୁନ୍ଦର ଅତ୍ୟନ୍ତ ।
ଶଙ୍ଖ ଚକ୍ର ଗଦାପଦ୍ମ ଚାରିଭୁଜେ ଶୋହେ
ବିଷ୍ଣୁ ତେଜେ ତିନିପୁର ଜନମନ ମୋହେ ।

ଦେଖିବାପାଇଁ ଅଇଲେ ବ୍ରହ୍ମାବିଷ୍ଣୁ ହର
ଋଷି ଗନ୍ଧର୍ବ ଯେ ନାଗ ସିଦ୍ଧ ବିଦ୍ୟାଧର ।
ସପ୍ତଋଷି ପୁଣ୍ୟ ଚେତା ପୁଣ୍ୟ ମୁନିଜନ
ସବୁ ଦେବତା ସକଳ ପର୍ବତ କାନନ ।
କ୍ଷୀରସିନ୍ଧୁ ଆଦିକରି ସପତ ସାଗର
ସବୁ ତପୀ ନଦ ନଦୀ ଜୀବ ଚରାଚର ।
ମଙ୍ଗଳ ମହାଉତ୍ସବ କଲେ ସର୍ବ ମିଳି
ଅପସରା ନୃତ୍ୟକଲେ ଦେଇ କରତାଳି ।
ଗନ୍ଧର୍ବେ ଗାଇଲେ ଗୀତ ତାନ ମାନ ଧରି
ଦେବଗଣ ସ୍ତୁତିକଲେ କରଯୋଡ଼ି କରି ।
ବ୍ରାହ୍ମଣେ ବେଦ ପଢ଼ିଲେ ଗୁରୁ ଲଘୁ ସ୍ୱରେ
ଅଧିକ କହିବି ମୁଁ ତୁମ୍ଭ ଅଗ୍ରତରେ ।
ଅଦିତି ପୁତ୍ର ଦେଖିବା ପାଇଁ ପୁଣ୍ୟଜନେ
ଯେତେକ ଥିଲେ ଅଇଲେ ଚଉଦଭୁବନେ ।
ବ୍ରହ୍ମା ବିଷ୍ଣୁ ଶିବ ଆସିଥିଲେ ଋଷିଗଣ
ସମସ୍ତେ ବିଚାରି କଲେ ତା ନାମକରଣ ।
ବସୁଦତ୍ତ ଆଖଣ୍ଡଳ ବସୁଦ ଆବର
ପାକ ଶାସନ ମଘବା ଶକ୍ର ପୁରନ୍ଦର ।
ସୁନାସୀର ବିଡ଼ୋଜା ଯେ ଇନ୍ଦ୍ରି ମରୁତ୍ୱାନ
ବିଶ୍ୱକର୍ମାକୁ ଡକାଇ ଅଣାଇ ବହନ ।
ଦିବ୍ୟ ଆଭରଣ ଅଙ୍ଗେ ଦେଇ ମଣ୍ଡାଇଲେ
ଶୁଭବେଳା ଶୁଭତିଥି ନକ୍ଷତ୍ର ଧଇଲେ ।
ଶୁଭ ମୁହୂର୍ତ୍ତରେ ଶୁଭଲଗ୍ନମାନ ଧରି
ସ୍ୱର୍ଗେ ଇନ୍ଦ୍ରକଲେ ଢାଳି ଅଭିଷେକ ବାରି ।
ବସୁଦତ୍ତ ଇନ୍ଦ୍ର ହେଲେ ବିଷ୍ଣୁ ପରସାଦେ
ତପସ୍ୟାକଲେ ସେ ପୁଣି ଥାଇ ଇନ୍ଦ୍ରପଦେ ।
ତପବଳେ ହେଲେ ପାଶାଙ୍କୁଶ ବଜ୍ରଧାରୀ
ଇନ୍ଦ୍ରଙ୍କର ଅତି ଉଗ୍ରତପ ଦେଖିକରି ।
ଶୁକ୍ରାଚାର୍ଯ୍ୟ ତହିଁ ଏକ ଗାଥାଏ ଗାଇଲେ
ବସୁଦତ୍ତ ତୁଲ୍ୟ କେହି ଜଣେ ଯେ ନଥିଲେ ।
ବିଷ୍ଣୁ ପରସାଦେ ଅଇଶ୍ୱର୍ଯ୍ୟ ଏ ପାଇଲା
ଏହା ତପ ତୁଲ୍ୟ ତପ କେହି ଯେ ନକଲା ।
ଆଉ କେହି ଉଗ୍ରବୀର୍ଯ୍ୟ ହୋଇ ନପାରିବେ
ଗୋପୀନାଥ ବିପ୍ରକୁ ଯେ ଦୟାକର ଦେବେ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ
ଇନ୍ଦ୍ରାଭିଷେକା ନାମ ପଞ୍ଚମୋଽଧ୍ୟାୟଃ ।



## ଷଷ୍ଠ ଅଧ୍ୟାୟ

### ଇନ୍ଦ୍ରର ଐଶ୍ୱର୍ଯ୍ୟ ଦର୍ଶନେ ଦନୁର ଦୁଃଖ, ଦିତିର ବିଳାସ ଓ କଶ୍ୟପଙ୍କର ସାନ୍ତ୍ୱନା

ସୁତ ମୁନି କହିଲେ ଯେ କଶ୍ୟପ ଋଷିର
ଦନୁଦିତି ନାମେ ଦୁଇ ଭାରିଯା ଅସୁର ।
ଦନୁ ତହୁଁ ପୁତ୍ରଶୋକେ ସନ୍ତାପିତା ହୋଇ
ଦିତିର ଘରକୁ ଗଲା ମନଦୁଃଖ ପାଇ ।
ଦିତି ପାଦପଦ୍ମ ଯୁଗେ ପ୍ରଣମି କାନ୍ଦିଲା
ତା ଦେଖି ଦିତି ତାହାକୁ ପ୍ରବୋଧି କହିଲା ।
କାହିଁକି ରୋଦନକରୁ କିହେଲା ତୋହର
ସେ କଥା ବିସ୍ତାର କରି କହ ମୋ ଆଗର ।
ରୋଦନ କାରଣ କିଛି ଜଣାଯାଉ ନାହିଁ
ନାରୀ ଏକପୁତ୍ରେ ପୁତ୍ରବତୀ ଯେ ବୋଲାଇ ।
ଶୁମ୍ଭ ଆଦି ଶତପୁତ୍ର ଅଛଇ ତୋହର
ସମସ୍ତେତ ଗୁଣବନ୍ତ ପୁଣି ମହାବୀର ।
କି ନିମନ୍ତେ ଦୁଃଖକରୁ କହ ମୋ ଅଗ୍ରତେ
ହିରଣ୍ୟକଶିପୁ ହିରଣ୍ୟାକ୍ଷ ଦୁଇଭ୍ରାତେ ।
ମହାବଳ ପରାକ୍ରମୀ ଅଟନ୍ତି ନୃପତି
ଏପରା ପୁତ୍ର ଥାଆନ୍ତେ ଅଛି କି ବିପତ୍ତି ।
ଦୁଃଖର କାରଣ ସଖି କହମୋର ଆଗେ
ରୋଦନ କରୁ ଏକଥା ଚମତ୍କାର ଲାଗେ ।
ଏମନ୍ତ କହିଣ ଦିତି ହୋଇଲେ ଯେ ତୁନି
ଦନୁବୋଇଲେ ସଖିଗୋ ଶୁଣ ସେ କାହାଣୀ ।
ଆମ୍ଭର ଯେ ସଉତୁଣୀ ଅଦିତି ସୁମୁଖୀ
ତାକୁ ବର ଯାଚିଦେଲେ ଆସି ପଦ୍ମଆଖି ।
ପୁତ୍ରେକ ସେ ପ୍ରସବିଲା ସେ ଅତି ସୁନ୍ଦର
ବଳବନ୍ତ ଗୁଣବନ୍ତ ମହା ଧନୁର୍ଦ୍ଧର ।
ତୋ ପୁତ୍ର ତହୁଁ ଛଡ଼ାଇ ନେଲା ଇନ୍ଦ୍ରପଦ
ତିନିଭୁବନ ପାଳିବ ସ୍ୱର୍ଗେ ହୋଇ ଇନ୍ଦ୍ର ।
ବିଷ୍ଣୁବରେ ବଳିୟାର ସେହି ନୂଆ ପୁଅ
ବିଷ୍ଣୁଙ୍କଯୋଗୁଁ ହୋଇଲା ସ୍ୱର୍ଗେ ଦେବରାୟ ।
ଅଦିତିର ସୁଖ କଥା କହିଲେ ନସରି
ବସୁଦତ୍ତ ନାମ ତାକୁ ଦେଲେ ଦଇତାରି ।

ଦେବଙ୍କୁ ଘେନି ସେ ସ୍ୱର୍ଗ ସୁଖ ଭୋଗକରେ
ଶୋକ କାରଣ କହିଲି ସଖି ତୋ ଆଗରେ ।
ଶୁଣି ଦିତି ବୋଇଲେ ମୋ ପୁତ୍ର ମହାମତି
ଇନ୍ଦ୍ରପଦରୁ ସେ ଚ୍ୟୁତ ହୋଇଲା କେମିତି ।
ଆଉ ଯେତେଥିଲେ ଦୈତ୍ୟଦାନବଯେ ବୀର
କି ନିମନ୍ତେ ଭ୍ରଷ୍ଟହେଲା ତେଜ ତାହାଙ୍କର ।
ସଖିଗୋ ସେ ସବୁକଥା କହିବା ବିସ୍ତାରି
ମନ ଶୁଖାଇ ବସିଲେ ଦିତି କହି କରି ।
ଦନୁ ବୋଇଲେଗୋ ସଖି ଶୁଣ ସାବଧାନେ
ଦେବେ ଦାନବେଯେରଣ କଲେକୋପମନେ ।
ଦେବେ ସଂଗ୍ରାମେ ପାରିବେକାହୁଁ ଦଇତ୍ୟଙ୍କୁ
ନପାରି ଦେବେ କହିଲେ ଯାଇଁ ଶ୍ରୀବିଷ୍ଣୁଙ୍କୁ ।
ବିଷ୍ଣୁ ସାହାପାଇ ଦେବେ ହେଲେ ବଳବାନ
ମୋର ପୁତ୍ରଙ୍କୁ ମାରିବେ ଆପେ ଭଗବାନ ।
ତୋର ପୁତ୍ରେ ନାଶଗଲେ ଚକ୍ରପାଣି ହସ୍ତେ
ସିଂହ ଯେହ୍ନେ ନିଜତେଜେ ପଶିଣ ବନସ୍ତେ ।
ବନଜନ୍ତୁଙ୍କୁ ଦିଅଇ ବଳେ ଘଉଡ଼ାଇ
ବିଷ୍ଣୁ ମାଇଲେ ପୁତ୍ରଙ୍କୁ ପଛରୁ ଗୋଡ଼ାଇ ।
କାଳନେମି ଆଦିକରି ଦୈତ୍ୟ ସୈନ୍ୟଯେତେ
ରଣେ ନ ଗଣନ୍ତି ସୁରାସୁରଙ୍କୁ ସମସ୍ତେ ।
ଚକ୍ରପାଣି ଚକ୍ରଧରି ତାହାଙ୍କୁ ମାଇଲା
କାହାକୁ ବା ମାରିଦେଲା ବିକଳାଙ୍ଗ କଲା ।
କେହି ଭୟପାଇ ରଣଛାଡ଼ି ପଳାଇଲେ
ବନଯେହ୍ନେ ପୋଡ଼ିଯାଏ ବନର ଅନଳେ ।
ଅନଳ ଶିଖା ଦହଇ ଯେହ୍ନେ ତୃଣରାଶି
କେଶବ ଦୈତ୍ୟରାଶିକି ପୋଡ଼ିଦେଲେ ଆସି ।
ସଖି ଗୋ ମରିଅଛନ୍ତି ପୁତ୍ର ମୋର ଯେତେ
ବହୁତ ମରିଅଛନ୍ତି ତୋହର ଯେ ପୁତ୍ରେ ।
ଅନଳେ ପତଙ୍ଗେ ପଡ଼ି ମରନ୍ତି ଯେସନ
ବଇରୀଯାଇ ହରିଙ୍କି ଦାନବେ ତେସନ ।
ଏ ଦାରୁଣ ବାଣୀ ଶୁଣି କହିଲା ଯେ ଦିତି
ବଜ୍ରପାୟ ଜଣାଗଲା ଏ ତୋର ଭାରତୀ ।
ଏମନ୍ତ କହି ଭୂମିରେ ପଡ଼େ ମୂର୍ଚ୍ଛାଯାଇ
ପୁତ୍ର ଶୋକରେ ସେ ଦିତି ଅତି ପୀଡ଼ାପାଇ ।
ହାୟ ହାୟ ଏକି କଷ୍ଟ ଏକି ଘୋର ଦୁଃଖ
ଏମନ୍ତ କହି ମନରେ ପାଇଣ ବିମୁଖ ।

କରୁଣସ୍ୱରେ ରୋଦନ କଲା ଗୁଣଗୁଣି
ଦିତିଶ୍ୱର କଶ୍ୟପ ତା କାନ୍ଦିବାର ଶୁଣି ।
ବୋଇଲେ ମଙ୍ଗଳ ହେଉ ନକର ରୋଦନ
ତୋ ତୁଲ୍ୟ ନାରୀ ନକରେ କଦାପି କ୍ରନ୍ଦନ ।
କହ ତୁଗୋ ଦେବୀ ଏହି ସଂସାର ଭିତରେ
ଲୋଭ ମୋହଛାଡ଼ି ବଳବନ୍ତ ପୁତ୍ର କରେ ।
କାହାର ଅଛି ନ ମରି ମନରେ ବିଚାର
ଏରୂପେ ବନ୍ଧୁ ବାନ୍ଧିବ ସ୍ୱଜନ ଆବର ।
ଦକ୍ଷ ପ୍ରଜାପତିର ତୁ ଅଟୁ ଯେ ନନ୍ଦିନୀ
ମୋହର ପ୍ରିୟ ଭାରିଯା ଅଟୁ ତୁଗୋ ପୁଣି ।
ତୋ କାମନା ପୁରାଇବା ପାଇଁ ମୁହିଁ ଭର୍ତ୍ତା
ପୋଷଣ କରତା ପୁଣି ପାଳନା କରତା ।
ଆବର ରକ୍ଷା କରତା ଆଗୋ ବରାନନେ
ଅଜିତଇନ୍ଦ୍ରିୟ କ୍ରୂର ଯେ ଅସୁରଗଣେ ।
ଜଗତଜନବଇରୀ ହୋଇଲେ କି ପାଇଁ
ସତ୍ୟଧର୍ମ ଛଡ଼ା ହୋଇ ଅଧର୍ମରେ ଯାଇ ।
ତାଙ୍କର ସେ ଦୋଷେପୁଣିତୋରସେହିଦୋଷେ
ବାସୁଦେବ ପଠାଇଲେ ଯମରାଜା ପାଶେ ।
ସତ୍ୟ ଆଉ ମୋକ୍ଷର ଯେ ବିରୋଧୀ ଅଟନ୍ତି
ତାଙ୍କପାଇଁ ଶୋକ ତୁହି ନ କର ଗୋ ଦିତି ।
ଶୋକକଲେ ଆପଣାର ହୋଏ ପୁଣ୍ୟକ୍ଷୟ
ପୁଣ୍ୟକ୍ଷୟେ ଆପଣାର ପୁଣ୍ୟ ଯାଏ ଲୟ ।
ଏଣୁ ଆଗୋ ବରାନନେ ଶୋକ ତୁ ନ କର
ଶୋକରୁ ନାନାଦି ବିଘ୍ନ ଉପୁଜେ ଆବର ।
ଦାନେବେ ଆପଣା ଦୋଷେ ପାଇଲେ ମରଣ
ତାହାଙ୍କ କର୍ମ ତାହାଙ୍କ ମୃତ୍ୟୁର କାରଣ ।
ଦେବତାମାନେ ନିମିତ୍ତ ମାତ୍ରହିଁ କେବଳ
ଏହା ବୁଝି ନ ହୁଅ ତୁ ଶୋକରେ ବିହ୍ୱଳ ।
ମହାଯୋଗୀ ମହାମତି ସେ କଶ୍ୟପ ମୁନି
ବିଷାଦ ଦୁଃଖ ନ କରି ଆପେ ହେଲେ ତୁନି ।
ହରି ହରି ବୋଲ ଭାଇ ଦୁଃଖ ଯାଉ ଦୂର
ଦ୍ୱିଜ ଗୋପୀନାଥ ଭଜେ ଶ୍ରୀହରି ପୟର ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ଦିତି
ବିଳାପୋ ନାମ ଷଷ୍ଠୋଽଧ୍ୟାୟଃ ।



## ସପ୍ତମ ଅଧ୍ୟାୟ

### ଦିତି ଆଗରେ ପଞ୍ଚ ମହାଭୂତ ଇନ୍ଦ୍ରିୟ ସହିତ ଆତ୍ମାର ଗର୍ଭ ଗୃହ ପ୍ରବେଶ କଥନ

ଦିତି ବୋଇଲେ ଭୋନାଥ କହିଲେ ଯା ସତ
ସ୍ୱାମୀ ପାଦସେବା ସ୍ନେହ କରିଣ ତ୍ୟଜତ ।
ସଉତୁଣୀ ପୁତ୍ରପାଇଁ ଦୁଃଖ ଭୋଗ କରେ
ଦୁଃଖ ଅଭିମାନ ନାଥ ଥିବାରୁ ଅନ୍ତରେ ।
ମାନଭଙ୍ଗରୁ ଉପୁଜେ ମହୀ ଦୁଃଖ ମୋର
ସନ୍ତାପିତ ହୋଇ ଜୀବ ଛାଡ଼ିବ ଶରୀର ।
କଶ୍ୟପ ବୋଇଲେ ଶୁଣ ଯେଣେ ହେବ ଶାନ୍ତି
ଏ ସଂସାରେକେ କାହାର ନୋହେ ପୁତ୍ରନାତି ।
କେହିକାହା ମାତା ନୁହେଁ କେହିକାହା ପିତା
ଏମନ୍ତେ ବନ୍ଧୁ ବାନ୍ଧବ ସ୍ୱଜନ ଯେ ଭ୍ରାତା ।
ଆପଣାର ସନାତନ ଧର୍ମ ଜାଣ ଆସେ
ନିଶ୍ଚେ ନାଶଯାଇ ନିଜ ଅନାଚାର ପାଶେ ।
ଆଚରେ ରହିଲେ ଆପେ ସୁଖୀ ହୋଇଥାଇ
ଅନାଚାରୀ ପାପୀ ନର କ୍ରୁର ଯୋନି ପାଇ ।
ଅସତ କର୍ମ ଆଚର ମହାପାପ କରି
ପ୍ରାଣୀ ନିତ୍ୟ ଜଗତକୁ ମଣେ ଶତ୍ରୁପରି ।
ଏଣୁ ତା ବଇରୀ ଯହିଁ ତହିଁ ରହିଥାନ୍ତି
ଯେଉଁପ୍ରାଣୀ ମିତ୍ର ପ୍ରାୟ ସଂସାର ମଣନ୍ତି ।
ସବୁଠାରେ ମିତ୍ରଲାଭ ହୁଅଇ ତାହାର
ଯେରୂପେ ବୀଜବୁଣଇ କୃଷିକାରୀ ନର ।
ତାହାରଫଳ ସେ ଯେହ୍ନେ ସେହିରୂପେ ପାଇ
ତେମନ୍ତେ ତୋ ପୁତ୍ରଙ୍କର ସାଧୁ ହିଂସାଥାଇ ।
ତାହାଙ୍କର ସେହି କର୍ମଫଳହିଁ ମରଣ
ତୁମ୍ଭେ ସେହି ଫଳ ଭୋଗକର ଗୋ ଏକ୍ଷଣ ।
ତୋ ପୁତ୍ରଙ୍କ ତହିଁ ତପ ଶାନ୍ତି କିଛି ନାହିଁ
ସେପାପେ ସେମାନେ ଉଚ୍ଚପଦକୁ ନ ପାଇ ।
ଏ ସବୁକଥା ତୁ ବୁଝି ଚିତ୍ତ କର ଶାନ୍ତି
ସୁଖ ଦୁଃଖ ମନରେ ତୁ ନଧର ଗୋ ଦିତି ।
ପୁତ୍ର ମିତ୍ର ଭାଇବନ୍ଧୁ ବାନ୍ଧବ ଯେତେକ
କେହି କାହାକୁ ନୁହନ୍ତି ସାକ୍ଷାତରେ ଦେଖ ।
ନିଜକର୍ମ ଅନୁସାରେ ସୁଖେ ବଞ୍ଚେ ପ୍ରାଣୀ
ସଂସାରେ ଯେତେ ପଣ୍ଡିତ ମହାଜନ ଜ୍ଞାନୀ ।
ବ୍ୟର୍ଥ ଚିନ୍ତା ନକରନ୍ତି କେଭେ ପରପାଇଁ
ଜାଣନ୍ତି ସେ ଚିନ୍ତାରେ ଯେ କିଛିଫଳ ନାହିଁ ।
ପଞ୍ଚଭୂତରେ ଏଦେହ ହୋଇଛି ନିର୍ମାଣ
ପଞ୍ଚମହାଭୂତ ନାମ ମନଦେଇ ଶୁଣ ।
ପୃଥ୍ୱୀ ଆପ ତେଜ ବାୟୁ ଆକାଶ ଏ ପାଞ୍ଚ
ଏଥିରେ ଦେହକୁ ଗତି କରିଛି ସୁସଞ୍ଚ ।
ସନ୍ଧିସ୍ଥାନମାନଙ୍କରେ ହାଡ଼ଅଛି ଖଞ୍ଜି
ସୁଖ ଆଶାରେ ଏ ଦେବେ ମନଥାଏ ମଜ୍ଜି ।
ତେଣୁ ଏ ଦେହକୁ କରି ଆପଣାର ମିତ
କେବଳ ସନ୍ଧିରେ ଏହି ଦେହ ଜର୍ଜରିତ ।
ଯାହାର ନାମଗୋ ଆତ୍ମା ତା ନାମ ପରମ
ପୁଣ୍ୟଙ୍କ ମଧ୍ୟେ ପରମ ଅଟେ ମହାପୁଣ୍ୟ ।
ଯହିଁ ତହିଁ ଯିବା ଯୋଗୁଁ ସର୍ବଗ ବୋଲାଇ
ସବୁଦେଖି ପାରିବାରୁ ସର୍ବଦର୍ଶୀ ସେହି ।
ସବୁ ସିଦ୍ଧି ହେବାରୁ ତା ନାମ ସର୍ବସିଦ୍ଧି
ସର୍ବାତ୍ମା ନାମରେ ଲୋକେ ଲଭିଛି ପ୍ରସିଦ୍ଧି ।
ସବୁରି ଆତ୍ମା ଅଟେ ଯେ ସତଗୁଣ ମୟ
ସକଳ ସିଦ୍ଧି ଦିଅଇ ଏକା ସର୍ବମୟ ।
ସେହି ନିରଞ୍ଜନ ଆତ୍ମା କରଇ ଭ୍ରମଣ
ବୋଲାଇ ଶୂନ୍ୟ ଶୂନ୍ୟ ମଧ୍ୟେ ମହାଶୂନ୍ୟ ।
ଶୂନ୍ୟେ ଭ୍ରମୁଁ ଭ୍ରମୁ ସେହିଆତ୍ମା ମହାଜ୍ୟୋତି
ଦେଖିଲେ ଯେ ଚାରିଗୋଟି ପବିତ୍ର ମୂରତି ।
ସେ ଚାରି ମୂରତି ପୁଣି ମହାତେଜୋବନ୍ତ
ପଞ୍ଚମମୂର୍ତ୍ତି ଶ୍ୱସନ ତାହାଙ୍କର ମିତ୍ର ।
ତହୁଁ ସେ ଆତ୍ମା ଆସିଲା ଜ୍ଞାନ ସାହାପାଇ
ଆସୁ ଆସୁଁ ଆତ୍ମା ପଞ୍ଚମୂରତିକି ଚାହିଁ ।
ଜ୍ଞାନକୁ ଡାକି ବୋଇଲେ ଦେଖ ତୁହୋଜ୍ଞାନ
କି ମନ୍ତ୍ରଣା କରୁଛନ୍ତି ଏହି ପାଞ୍ଚଜଣ ।
ତୁ ଯାଇ ପଚାରି ବୁଝିଆସ ଭଲ କରି
ସେହି ପାଞ୍ଚଜଣ କିଏ କି ନାମ ତାଙ୍କରି ।
କି ବିଚାର କରୁଛନ୍ତି ବସି ପରସ୍ପରେ
ଆତ୍ମାର ଏକଥା ଶୁଣି ଜ୍ଞାନ କହେ ଧୀରେ ।
ତୁମ୍ଭେ ସବୁରି ଦେବତା ପୂଜାଯୋଗ୍ୟ ପାତ୍ର
ହେ ଦେବ ଶୁଦ୍ଧ ପୁରୁଷ ତୁମ୍ଭେ ପୁଣି ନିତ୍ୟ ।
ତହିଁରେ କି ପ୍ରୟୋଜନ ଅଛଇ ତୁମ୍ଭର
ଯେ କେହି ହୁଅନ୍ତୁ ଯାହା କରିଛୁ ବିଚାର ।

କପଟ ନକରି ସତତ କହିବ ଯେ ମୋତେ
ଆତ୍ମା ବୋଇଲେରେ ଜ୍ଞାନ ଶୁଣ ଏକଚିତ୍ତେ ।
ଏହି ପାଞ୍ଚଜଣ ଜାଣ ଅତି ରୂପବନ୍ତ
ଭାଗ୍ୟବନ୍ତ ଏହାଙ୍କର ମନହିଁ ପ୍ରଶସ୍ତ ।
ମୁଁ ଯାଇଁ ଦେଖାକରିବି ଏହାଙ୍କ ସହିତେ
ଜାଣିବା କାରଣ ତେଣୁ ପଠାଉଛି ତୋତେ ।
ଜାଣିଥିଲେ ସିନା କିଛି କଥା ପଚାରିବି
ଏ ପାଞ୍ଚ ଭବ୍ୟ ବ୍ୟକ୍ତିଙ୍କ ବିଚାର ବୁଝିବି ।
ଦୂତ କାର୍ଯ୍ୟରେ ଚତୁର ଅଟ ତୁମ୍ଭେ ପୁଣି
ତେଣୁ ଦୂତ ହୋଇ ତୁମ୍ଭେ ଯାଅ ଏହି କ୍ଷଣି ।
ଜ୍ଞାନ କହିଲା ପରମ ଶୁଣ ମୋ ବଚନ
ମୁଁ ଯାହା କହୁଛି ସତ୍ୟ ସତ୍ୟ ଏ ପ୍ରମାଣ ।
ହେ ତାତ ଏହାଙ୍କ ସଙ୍ଗ କଦାପି ନକର
ଅତି ପବିତ୍ର ଯେ ଆତ୍ମା ଅଟଇ ତୁମ୍ଭର ।
ଆପଣତ ଶୁଭଇଚ୍ଛା କରନ୍ତି ନିରତେ
କିଛି ପ୍ରୟୋଜନ ନାହିଁ ଏହାଙ୍କ ସଙ୍ଗତେ ।
ଏ ମୋର ତୁମ୍ଭ ସଙ୍ଗକୁ ଇଚ୍ଛେ ମହାମତି
ଏମନ୍ତ ଶୁଣି ଜ୍ଞାନକୁ ଆତ୍ମା ଯେ ପୁଚ୍ଛନ୍ତି ।
କହ ଜ୍ଞାନ ତୁ କିପାଇଁ କରୁ ତା ବାରଣ
ପଣ୍ଡିତ ତୁ ସତକରି କହ ତା କାରଣ ।
ଏମନ୍ତ ଶୁଣି ଆତ୍ମାକୁ ଜ୍ଞାନ ଯେ କହଇ
ଏହାଙ୍କର ସଙ୍ଗେ ନିଶ୍ଚେ ମହାଦୁଃଖ ପାଇ ।
ଏହି ପାଞ୍ଚଜଣ ଜାଣ ଦୁଃଖର ଯେ ମୂଳ
ନିରତେ ଶୋକ ସନ୍ତାପ ଦିଅନ୍ତି କେବଳ ।
ତାହାଶୁଣି ଆତ୍ମା ପୁଣି ଜ୍ଞାନକୁ କହନ୍ତି
ତୋ କଥା ମାନି ନଯିବି ମୁଁ ତାହାଙ୍କ କତି ।
ଏମନ୍ତ କହି ସେ ଆତ୍ମା ଧ୍ୟାନରେ ବସିଲେ
କଶ୍ୟପରଷି ଦିତିଙ୍କ ଆଗରେ କହିଲେ ।
ଆତ୍ମାଧ୍ୟାନେ ବସିବାର ଦେଖି ପାଞ୍ଚଜଣ
ବୁଦ୍ଧିକି ଚାହିଁ କହିଲେ ବୁଦ୍ଧି ତୁହୋ ଶୁଣ ।
ଆତ୍ମାପାଖକୁ ତୁ ଯାଅ ଆମ୍ଭ ଦୂତ ହୋଇ
ଆଗୋ କଲ୍ୟାଣି ତାହାଙ୍କୁ କହ ଏହାଯାଇଁ ।
ଏହି ପାଞ୍ଚଜଣ ପଞ୍ଚତତ୍ତ୍ୱ ଯେ ବୋଲାନ୍ତି
ବିଶ୍ୱଧାରକ ବୋଲି ଯେ ଏହାଙ୍କୁ କହନ୍ତି ।
ଏହାଙ୍କ ତହୁଁ ଯେ ଜାଣ ଉପୁଜେ କଲ୍ୟାଣ
ତୁମ୍ଭର ମଇତ୍ର ହେବେ ଏହି ପାଞ୍ଚଜଣ ।

ଏରୂପେ କହି ତୁ ଦିଅ ସଙ୍ଗାତ ବସାଇ
ବୁଦ୍ଧି କହିଲା ଯାଉଛି ତୁମ୍ଭ ଆଜ୍ଞାପାଇ ।
ତହୁଁ ଯାଇ ବୁଦ୍ଧି କହେ ଆତ୍ମାକୁ ଏମନ୍ତ
ମୋ ନାମ ବୁଦ୍ଧି ମୁଁ ପଞ୍ଚ ମହାଜନ ଦୂତ ।
ସେହି ପାଞ୍ଚଜଣ ମୋତେ କହିଛନ୍ତି ଯାହା
ମନଦେଇ ଶୁଣ ତୁମ୍ଭେ କହୁଅଛି ତାହା ।
ବିଚାରନ୍ତି ତୁମ୍ଭ ସଙ୍ଗେ ସଙ୍ଗାତ ବସିବେ
ମଇତ୍ରହୋଇ ତୁମ୍ଭର ଚିରକାଳ ଥିବେ ।
ତୁମ୍ଭେ ଅତି ବୁଦ୍ଧିମନ୍ତ ମନରେ ବିଚାରି
ମଇତ୍ର ହୁଅ ଧ୍ୟାନକୁ ବେଗେ ଦୂର କରି ।
ବୁଦ୍ଧିକଥା ଶୁଣି ଧ୍ୟାନ ଆତ୍ମାକୁ କହଇ
ମୁଁ ଯାହା କହୁଛି ଏବେ ଶୁଣ ମନଦେଇ ।
ଏହାଙ୍କ ସଙ୍ଗେ ସଙ୍ଗାତ ବସିଲେ ଆପଣ
ନାନାଦି ଦୁଃଖ ପାଇବ ମୋର କଥା ମାନ ।
ମୋତେ ଆବର ଜ୍ଞାନକୁ ଛାଡ଼ିବ କେମନ୍ତେ
ଏ କର୍ମ ନକର ପ୍ରଭୁ ଏହାଙ୍କ ସହିତେ ।
ଗର୍ଭବାସେ ତୁମ୍ଭଙ୍କୁ ଏ ରଖାଇବେ ନେଇ
ଆତ୍ମାକୁ ଏରୂପେ କହି ଧ୍ୟାନ ତୁନିହୋଇ ।
ଆତ୍ମା ତହୁଁ ବୁଦ୍ଧିକି ଯେ କହିଲେ ଏମନ୍ତ
ଆଗୋ ବୁଦ୍ଧି ଶୁଣ ଏବେଯେ ମୋହରମତ ।
ଧ୍ୟାନ ଜ୍ଞାନ ଦୁଇମନ୍ତ୍ରୀ ଅଛନ୍ତି ମୋହର
ତାହାଙ୍କ ସଙ୍ଗରେ ମୁହିଁ କଲଇଁ ବିଚାର ।
ସେ ଦୁହିଁଙ୍କ ମତ ଯାହା ସେ ମୋହର ମତ
ତାଙ୍କୁ ଛାଡ଼ି ନପାରଇ ଏ ମୋହର ସତ୍ୟ ।
ତୁଗୋ ତୁମ୍ଭର ପ୍ରଭୁଙ୍କୁ କହ ଫେରି ଯାଇ
ମନ୍ତ୍ରୀ ଛାଡ଼ି ତାଙ୍କ ସଙ୍ଗ କରି ନପାରଇ ।
ବୁଦ୍ଧି ଏହିକଥା ଶୁଣି ବେଗେ ତହୁଁ ଗଲା
ପଞ୍ଚତତ୍ତ୍ୱଙ୍କ ଛାମୁରେ ବୁଝାଇ କହିଲା ।
ଆତ୍ମାକୁ ଯାହା କହିଲେ ଜ୍ଞାନ ଧ୍ୟାନ ଦୁଇ
ତହୁଁ ଆତ୍ମାକୁ ଭେଟିଲେ ପଞ୍ଚତତ୍ତ୍ୱ ଯାଇ ।
ବୋଇଲେ ଆହେ ପରମ ତୁମ୍ଭେ ଲୋକଈଶ
ତୁମ୍ଭେ ଶୁଦ୍ଧଯୋଗୁଁ ଆମ୍ଭେ ଆସି ତୁମ୍ଭ ପାଶ ।
କହୁଛୁଁ ତୁମ୍ଭ ସଙ୍ଗତେ ବସିମୁଁ ମଇତ୍ର
ମନରେ ବିଚାରି ତୁମ୍ଭେ କହିବ ଆମ୍ଭନ୍ତ ।
ତାହାଶୁଣି ଆତ୍ମା ପଞ୍ଚତତ୍ତ୍ୱକୁ କହିଲେ
ତୁମ୍ଭେ ପାଞ୍ଚଜଣ କାହୁଁ ଆସି ମୋର ତୁଲେ ।

ମଇତ୍ର ବସିବାପାଇଁ କହୁଅଛ ମୋତେ
ତୁମ୍ଭର ଯେ କି କି ଗୁଣ କୁହ ମୋ ଅଗ୍ରତେ ।
ଗୁଣଗ୍ରାମ ନ ପଚାରି ନବୁଝି କେମନ୍ତେ
ସଙ୍ଗାତ ବସିବା ଆମ୍ଭେ ତୁମ୍ଭର ସଙ୍ଗତେ ।
ସେ ପାଞ୍ଚଜଣଙ୍କ ମଧ୍ୟେ ଭୂମି ଆଗ ହେଲା
ଆମ୍ଭାକୁ ଅନାଇ ପୁଣି ଏମନ୍ତ କହିଲା ।
ସବୁ କର୍ମମାନଙ୍କର ମୁଁ ମୂଳ ଆଧାର
ଚର୍ମ ମାଂସମୟ ଜାଣ ମୋହର ଶରୀର ।
ତହିଁର ମୂଳ ଯେ ହାଡ଼ ସେହୁ ଅତି ଟାଣ
ନଖ ଲୋମର ସହାୟ ପାଇବାରୁ ପୁଣ ।
ଅଧିକେ ଟାଣ ହୁଅଇ ଏ ଦେହେ ମୋହର
ସନ୍ଧିଗଣ୍ଠିମାନ ସବୁ ଥିବାରୁ ଆବର ।
ପ୍ରଭାବ କହୁଛି ଶୁଣ ଆହେ ବୁଦ୍ଧିମନ୍ତ
ନାସାଗତ ଗନ୍ଧମୋର ଅଟଇ ଯେ ଭୃତ୍ୟ ।
ଆକାଶ କହିଲା ପରଂବ୍ରହ୍ମ ରୂପ ତୁମ୍ଭେ
ମୋହର ପ୍ରଭାବ ନାମ କହୁଅଛି ଏବେ ।
ମୋନାମ ଆକାଶ ଏହି ଦେହ ମଧ୍ୟେ ମୋର
ପ୍ରଭାବ ଯେ ଅବକାଶ ବାହାରା ଭିତର ।
ଶୂନ୍ୟରେ ମୁଁ ଶୂନ୍ୟଘର କରି ରହିଥାଇ
ମନ୍ତ୍ରୀ ମୋହର ଅଟନ୍ତି କର୍ଣ୍ଣ ନାମେ ଦୁଇ ।
ସବୁ ଶୁଣିବାପାଇଁ ସେ ଥାଆନ୍ତି ନିରତେ
ତୁହିଁ ସେ ବାୟୁ କହଇ ଆମ୍ଭାର ଅଗ୍ରତେ ।
ପାଞ୍ଚଗୋଟି ରୂପ ଧରି ମୁହିଁ ରହିଥାଇ
ଶୁଭ ଅଶୁଭ ଯେତେକ କାର୍ଯ୍ୟ ମୁଁ କରଇ ।
ଦେହେଥିବା ଚମ ମନ୍ତ୍ରୀ ଜାଣ ଯେ ମୋହର
ଦ୍ରବ୍ୟ ଲଭିବା ସାଧନା ଅଟଇ ତାହାର ।
କହିଲି ମୋର ବେପାର ତୁମ୍ଭଆଗେ ମୁହିଁ
ଜଳ ଯେ ତହୁଁ ଆମ୍ଭାର ଆଗେ ଏହାକହି ।
ଦେହେଥିବା ଶୁକ୍ରମଜ୍ଜା ଲାଳ ଯେ ଆବର
ଚମ ଆଉ ସନ୍ଧିସ୍ଥାନେ ଥିବା ଯେ ରୁଧିର ।
ଦେହ ମଧରେ ଏସବୁ ଦିଅଇ ପଠାଇ
ଦେହର ଭିତରେ ଘରକରି ରହିଥାଇ ।
ଅମୃତ ଦେଇ ଦେହକୁ ପୋଷୁଥାଇ ନିତି
ରସ ଆସ୍ୱାଦନକାରୀ ଜିଭ ମୋର ମନ୍ତ୍ରୀ ।
ଦେହରୂପ ପତ୍ତନରେ ଏ କର୍ମ ମୋହର
ନାସିକା ତହୁଁ କହଇ ହୋଇ ଆଗଭର ।
ସୁଗନ୍ଧ ଘେନି ଦେହକୁ ଦିଅଇ ବଢ଼ାଇ
ସୁଗନ୍ଧରେ ଦୁର୍ଗନ୍ଧକୁ ଦିଅଇ ଛଡ଼ାଇ ।
ବୁଦ୍ଧି ବିଚାରି ମୁଁ କରେ ସ୍ୱାମୀକାର୍ଯ୍ୟ ନିତି
ନିଶ୍ଚଳ ହୋଇ ଏ ଦେହେ ଥାଇ ଦିବାରାତି ।
ଗନ୍ଧ ମୋହର ଯେ ଗୁଣ ସେ ଦୁଇ ପ୍ରକାର
ସୁଗନ୍ଧ ଦୁର୍ଗନ୍ଧ ନାମ ଅଟଇ ତାଙ୍କର ।
ତହୁଁ ଯେ ଶ୍ରବଣ ଉଠି ଆମ୍ଭାକୁ କହଇ
ମୋହର ଯେତେକ କର୍ମ ଶୁଣ ମନଦେଇ ।
କାର୍ଯ୍ୟ କିଏ ଅକାର୍ଯ୍ୟ କେ ଏ ଆଦି ଜଣାଇ
ଶୁଭ ଅଶୁଭ ବୋଲି ଯା ଲୋକମୁଖେ କହି ।
ସତ୍ୟ ଅସତ୍ୟ ଯେ ପ୍ରିୟ ଅପ୍ରିୟ ଆବର
ଶବଦ ମୁଁ ଶୁଣେ ଦେହେ ଥାଇ ନିରନ୍ତର ।
ଶବଦ ମୋ ଗୁଣ ବୁଦ୍ଧି ଆଶ୍ରାନେଲାବେଳେ
ଶବଦ ଗ୍ରହଣରୁଁ ଆମ୍ଭେ ଯେ ସେକାଳେ ।
ତହୁଁ ଯେ ଚର୍ମ କହିଲା ଆଗଭର ହୋଇ
ଦେହରେ ପବନ ପାଞ୍ଚରୂପ ଧରିଥାଇ ।
ବାହାର ଭିତରେ ଚେଷ୍ଟା ବୁଝୁଥାଇଁ ତାର
ଶୀତ ଉଷ୍ଣ ଖରାବର୍ଷା ପବନ ଆବର ।
ପ୍ରାଣୀସଙ୍ଗ ଆଲିଙ୍ଗନ ଆଦି ଛୁଆଁ ଛୁଇଁ
ଏସନକ କଥାଯାକ ମୁଁ ଜାଣି ପାରଇ ।
ସ୍ମରଣ ମୋହର ଗୁଣ କହୁଅଛି ସତ
ମୋର କର୍ମମାନ ମୁହିଁ କଲଇଁ ବ୍ୟକତ ।
ତହୁଁ ଆମ୍ଭାକୁ କହିଲେ ଉଠି ନେତ୍ରଦୁଇ
ବୁଦ୍ଧି ସାହାପାଇ ଭଲ ମନ୍ଦ ମୁଁ ଦେଖଇ ।
ଦେହର ଭିତରେ ଘର ରୂପ ମୋର ଗୁଣ
ଏରୂପ କର୍ମ ମୋହର ମହାମତି ଜାଣ ।
ଜିହ୍ୱା କହିଲା ଆମ୍ଭାକୁ ଶୁଣ ଆହେ ତାତ
ବୁଦ୍ଧି ଆଶ୍ରାପାଇ କରେ ରସକୁ ବ୍ୟକତ ।
ପିତା କଷା ଖଟା ମିଠା ଚାଖି ମୁଁ କହଇ
ନୀରସ ଆଦି ସକଳ ମୁଁ ଜାଣି ପାରଇ ।
ଦେହେ ରହି ଏହି କର୍ମ କରୁଥାଇ ମୁହିଁ
ବୁଦ୍ଧି ସବୁ ଇନ୍ଦ୍ରିଙ୍କର ଚାଳକ ଅଟଇ ।
କଶ୍ୟପ ବୋଇଲେ ପ୍ରିୟେ ଅଦିତିଗୋ ଶୁଣ
ପଞ୍ଚଇନ୍ଦ୍ରିୟ କହିଲେ ନିଜକର୍ମ ଗୁଣ ।
ତହୁଁ ପୁଣି ବୁଦ୍ଧି ଆସି ଆମ୍ଭାକୁ କହଇ
ଆହେ ମହାମତି ଶୁଣ କହେ ମନଦେଇ ।

ମୋହର ବିଚ୍ଛେଦେ ଦେହ ନିଶ୍ଚେ ଯାଇନାଶ
ଏଣୁ ମୋ ଆଶ୍ରାରେ ଥାଇ ଦେହକରେ ବାସ ।
ଏଥିଅନ୍ତେ କର୍ମ ଆସି ଆତ୍ମାକୁ କହଇ
ହେ ମହାପ୍ରାଜ୍ଞ ମୋ ନାମ କର୍ମଯେ ଅଟଇ ।
ଆସିଛି ବାଟ କଢ଼ାଇ ନେବଗଁ ତୁମ୍ଭଙ୍କୁ
ଅନୁସରି ଚାଲି ତୁମ୍ଭ ଆସିବା ବାଟକୁ ।
ତୁମ୍ଭର ଯେ ବାଟ ଜାଣ ମୋର ସେହିବାଟ
କର୍ମକଥା ଶୁଣି ଆତ୍ମା ମନଯେ ଉଚ୍ଚାଟ ।
ଆତ୍ମାବୋଇଲେ ଯେ ପଞ୍ଚତତ୍ତ୍ୱକୁ ଅନାଇ
ଏକାଠିହୋଇ ଆସିଛ ମିତ ହେବାପାଇଁ ।
ଏଥିର କାରଣ କିଛି ବୁଝାଯାଉ ନାହିଁ
ସେ ସନ୍ଦେହ ନିବାରଣ କର ତାହା କହି ।
ପଞ୍ଚତତ୍ତ୍ୱ ବୋଇଲେ ହେ ଶୁଣ ମହାମତି
ଆମ୍ଭେ ପାଞ୍ଚ ଏକହେଲେ ପିଣ୍ଡ ଉତପତ୍ତି ।
ତୁମ୍ଭଙ୍କୁ ଘେନି ସେ ପିଣ୍ଡେ ରହିବା କାରଣ
ତୁମ୍ଭସଙ୍ଗେ ମିତ୍ରହେବା ପାଞ୍ଚୁ ପାଞ୍ଚଜଣ ।
ତୁମ୍ଭେ ଚଳାଇବ ଆମ୍ଭେ ପାଞ୍ଚ ଯେ ଚଳିବୁ
ତୁମ୍ଭଙ୍କୁ ନନେଲେ ଆମ୍ଭେ ଚଳି ନପାରିବୁ ।
ତୁମ୍ଭ ଆମ୍ଭ ସଙ୍ଗ ବିନା ନୋହିବ ସଂସାର
ତୁମ୍ଭେ ହେବ ଆମ୍ଭ ପାଞ୍ଚଜଣଙ୍କ ଈଶ୍ୱର ।
ଏମନ୍ତ ଶୁଣି ବୋଇଲେ ଆତ୍ମା ହେଉହେଉ
ମିତ୍ର ନ ହୋଇଲେ ପ୍ରୀତି ଜନମିବ କାହୁଁ ।
ତୁମ୍ଭର ଯେ ପ୍ରିୟ ଆଜୁଁହେଲା ସେ ମୋପ୍ରିୟ
ଆତ୍ମାର ଏକଥା ଶୁଣି ଜ୍ଞାନ ଧ୍ୟାନ ଦ୍ୱୟ ।
ମନାକଲେ ଆତ୍ମା ତୁମ୍ଭେ ଏ କର୍ମ ନକର
ଆତ୍ମା ଆଉ ନ ଶୁଣିଲା କଥା ତାହାଙ୍କର ।
କର୍ମ ତାହାଙ୍କୁ ପାଶରେ ପକାଇଲା ବାନ୍ଧି
ଜ୍ଞାନ ଧ୍ୟାନ ଛାଡ଼ି ଆତ୍ମା ତହୁଁ ହେଲା ବନ୍ଦି ।
ପଞ୍ଚତତ୍ତ୍ୱ ସଙ୍ଗେ ମିଶି ସେ ଆତ୍ମା ସେକାଳେ
ରାଗଦ୍ୱେଷ ହିଂସାମୋହ ଆଦି ଏ ସକଳେ ।
ଘୋଟିବାମାତ୍ରେ ସେ ଆତ୍ମାବୋଲାଇଲେଦେହୀ
ସେ ସମୟେ ତାଙ୍କ ସଙ୍ଗେ ଗର୍ଭରେସେ ରହି ।
ମଳମୂତ୍ର ଦୁର୍ଗନ୍ଧରେ ଗୋଳାଇ ହୋଇଲେ
ଲାଳ ଜରଜର ହୋଇ ଗର୍ଭରେ ବୁଲିଲେ ।
ଅଙ୍ଗପୀଡ଼ା ହୋଇବାରୁ ଅତ୍ୟନ୍ତ ବ୍ୟାକୁଳ
ପଞ୍ଚତତ୍ତ୍ୱକୁ ବୋଇଲେ ଭୋ ମିତ୍ର କି କଲ ।
ଏବେ ତୁମ୍ଭେ ମୋର ବୋଲ ଶୁଣ ମନଦେଇ
ମହାଦୁଃଖରେ ମୁଁ ପଡ଼ି ଆକୁଳ ହୁଅଇ ।
ଘୋର ଦୁର୍ଗନ୍ଧ ହୁଅଇ ଲାଳେ ଜରଜର
ପଞ୍ଚତତ୍ତ୍ୱ ବୋଇଲେହେ ଶୁଣ ନୃପବର ।
ଏ ଗର୍ଭ ପୂରିବାଯାଏ ରହ ସ୍ଥିର ହୋଇ
ତେବେ ସିନା ଏ କଷଣୁ ଉଦ୍ଧାର ଯେ ପାଇ ।
ନିଶ୍ଚେ ପାଇବ ଏଥିରେ ସଂଶୟ ନକର
ତୁମ୍ଭେ ଯେ ପ୍ରଭୁ ଅଟତ ଆମ୍ଭମାନଙ୍କର ।
ଏ ଦେହ ରହି ଏରୂପେ ରାଜ୍ୟକଷ୍ଟ ସହି
ପୁଣି ସୁଖଭୋଗ ତୁମ୍ଭେ କରିବ ଏ ମହୀ ।
ତାଙ୍କର ଏକଥା ଶୁଣି ଆତ୍ମା ଦୁଃଖାତୁରେ
ଆସିବା ପାଇଁ ପାଞ୍ଚିଲେ ଆପଣା ମନରେ ।
ପଳାଇଯିବାକୁ କଲେ ଅନେକ ଯତନ
ଗୋପୀନାଥକୁ ଉଦ୍ଧାର ଜଗତ ଜୀବନ ।
ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ଶରୀରୋ-
ତ୍ପତ୍ତି ନାମ ସପ୍ତମୋଽଧ୍ୟାୟଃ ।



## ଅଷ୍ଟମ ଅଧ୍ୟାୟ

### ଆତ୍ମାର ବୈରାଗ୍ୟ ସହିତ ମିଳନ

କଶ୍ୟପଋଷି ବୋଇଲେ ଶୁଣ ଆଗୋ ଦିତି
ଗର୍ଭମଧ୍ୟେ ରହି ଆତ୍ମା ବ୍ୟାକୁଳ ଯେ ଅତି ।
ଦିନୁଁଦିନ ଖେଦ ତାର ବଢ଼ଇ ଅପାର
ଧର୍ମାତ୍ମା ହୋଇସେ ଆତ୍ମା ଦୁଃଖରେ କାତର ।
ଗର୍ଭର ସବୁପୀଡ଼ାରେ ମହାପୀଡ଼ା ପାଇ
ମୋହ ଜାଲେ ପଡ଼ି ଅଧୋବଦନରେ ଥାଇ ।
ଆଧିବ୍ୟାଧିରେ ନିରତେ ହୋଇଣ ଆଚ୍ଛନ୍ନ
ହାହାରବେ ଆର୍ତ୍ତନାଦେ ସର୍ବଦା ଉଚ୍ଛନ୍ନ ।
ମହାଦୁଃଖ ଘୋଟିବାରୁ ଚେତା ବୁଡ଼ିଯାଇ
କାତର ହୋଇ ଉଚ୍ଚରେ ଜ୍ଞାନକୁ କହଇ ।
ଜାଣିଲି ହେ ଜ୍ଞାନ ତୁମ୍ଭେ ଅତ୍ୟନ୍ତ ଚତୁର
ଯାହା କହୁଥିଲ ଦୁଃଖ ପାଇବ ଅପାର ।
ନ ମାନିଲି ଧ୍ୟାନ ପୁଣି କହିଲ ଯେତେକ
ତୁମ୍ଭକଥା ନ ମାନିଲି କହିଲ ଅନେକ ।

ମୋହ ସଙ୍କଟରେ ପଡ଼ି ପାଇଛି କଷଣ
ଏ ଗର୍ଭବାସ ଯନ୍ତ୍ରଣା ଅତ୍ୟନ୍ତ ଦାରୁଣ ।
ଏଥୁ ମୁଁ କେମନ୍ତେ ରକ୍ଷା ପାଇବି ତା କହ
ନସହିପାରି ମୁଁ ବାରେ ବାରେ ଯାଏ ମୋହ ।
ଆହେ ମହାପ୍ରାଜ୍ଞ ତୁମ୍ଭେ ଏଥୁ ରକ୍ଷାକର
ଆତ୍ମାର କରୁଣବାଣୀ ଶୁଣି ଏ ପ୍ରକାର ।
ଜ୍ଞାନ କହିଲା ମୋ କଥା ନ ମାନିବାଫଳ
ଗର୍ଭେ ବାସକରି ହେଉଅଛ କଲବଲ ।
ମହାକ୍ରୂର ଅଟନ୍ତି ଏ ପଞ୍ଚ ମହାଭୂତ
ମୋହସଙ୍କଟେ ପକାଇ ହୋଇଲେ ନିଶ୍ଚିନ୍ତ ।
ଏବେ ମୋର ବୋଲମାନି ଧ୍ୟାନ ଆଶ୍ରାକର
ତେଣେ କିଛି ସୁଖ ଲାଭ ହୋଇବ ତୁମ୍ଭର ।
ଏ ଗର୍ଭବାସରୁ ନିଶ୍ଚେ ହୋଇବ ମୁକତ
ଏଥିରେ ସନ୍ଦେହ ନାହିଁ ଜାଣ ଅଣୁମାତ୍ର ।
ଜ୍ଞାନ ତହୁଁ ତତ୍ତ୍ୱଜ୍ଞାନ ଆତ୍ମା ପୁଣି ପାଇ
ଧ୍ୟାନକୁ ଡାକି ବୋଇଲା କରଯୋଡ଼ି ଦୁଇ ।
ଆହେ ଧ୍ୟାନ ପଶିଲି ତୋ ପାଦରେ ଶରଣ
ଏଥିମୋତେ ରକ୍ଷାକର ଏ ଘୋର କଷଣ ।
ଧ୍ୟାନ କହିଲା ଆତ୍ମାକୁ ରହିଲି ରଖିଲି
ତୁମ୍ଭେ ମହାପ୍ରଜ୍ଞା ହୋଇ ମୋହେ ଗଲ ଭୁଲି ।
ଏହାଶୁଣି ଆତ୍ମାଧ୍ୟାନେ ଲଗାଇଲେ ଲୟ
ଆତ୍ମାକୁ ଛାଡ଼ିଲେ ତହୁଁ ମୋହ ଆଦି ଭୟ ।
ଧ୍ୟାନେ ମଜ୍ଜିବାରୁ ଆତ୍ମା ସବୁ ପାସୋରିଲା
ଗର୍ଭର ଯନ୍ତ୍ରଣା ଭୟ କିଛି ନ ଜାଣିଲା ।
ଧ୍ୟାନବଳେ ଉପୁଜିଲା ଯହୁଁ ଆତ୍ମାଜ୍ଞାନ
ମନାସିଲା ଆପଣାର ସୁଖ ଦିନୁଦିନ ।
ଜ୍ଞାନ ଯୋଗୁଁ ମନମଧ୍ୟେ ଭାଳଇ ଏମନ୍ତ
ଏ ଗର୍ଭବାସରୁ ଯେବେ ହୋଇବି ମୁକତ ।
ଏହି ପଞ୍ଚ ମହାଭୂତ ଦେହକୁ ତେଜିବି
ଗର୍ଭବାସ ଯନ୍ତ୍ରଣାରେ ଆଉ ନ ପଡ଼ିବି ।
ସେହି ପ୍ରଭୁ ଆତ୍ମାନିତ୍ୟେ ଗର୍ଭବାସେ ଥାଇ
ଏରୂପେ ସେ ଭାଳୁ ଭାଳୁ ଦିନ ତାର ଯାଇ ।
ପ୍ରସବ କାଳ ହୁଅନ୍ତେ ଆଗୋ ବରାନନେ
ତହୁଁ ଯେ ପ୍ରାଣପବନ ବଳବନ୍ତ ପଣେ ।
ଏଣୁ ତେଣୁ ବହିଦିଏ ଗର୍ଭକୁ ଚଳାଇ
ପ୍ରସବ ମାର୍ଗକୁ ପୁଣି ଦିଅଇ ବଢ଼ାଇ ।
ଚବିଶ ଆଙ୍ଗୁଳ ହୁଏ ବିସ୍ତାର ତାହାର
ପଚିଶ ଆଙ୍ଗୁଳ ଜାଣ ପ୍ରମାଣ ଗର୍ଭର ।
ତହିଁରେ ତାହାର ପୀଡ଼ା ହୁଅଇଗୋ ପ୍ରିୟେ
ସେହି ଘୋର ପୀଡ଼ାପାଇ ଆତ୍ମା ମୂର୍ଛାଯାଏ ।
ମୂର୍ଚ୍ଛିତ ହୋଇ ସେ ଆତ୍ମା ଘେନି ଜ୍ଞାନ ଧ୍ୟାନ
ଗର୍ଭରୁ ଖସି ଭୂମିରେ ପଡ଼ନ୍ତେ ତକ୍ଷଣ ।
ପ୍ରଜାପତି ବାୟୁତାକୁ କରଇ ପୃଥକ
ଭୂଇଁ ଛୁଅନ୍ତେ ପାସୋରେ ଗର୍ଭର ବିବେକ ।
ଜ୍ଞାନ ଧ୍ୟାନକୁ ସେ ପୁଣି ପକାଇ ପାସୋରି
ଆତ୍ମାଜ୍ଞାନ ଧ୍ୟାନ ଆଦି ସବୁ ଛାଡ଼ିକରି ।
ସଂସାର ବନ୍ଧନ ପାଶେ ପଡ଼ି ହଜେ ଜ୍ଞାନ
ତକ୍ଷଣେ ଆସି ବସଇ ତାଦେହେ ଚେତନ ।
ଚେତାପାଇଁ ପୁଣି ପ୍ରୀତି ବଢ଼ାଇ ସଂସାରେ
ମାୟାମୋହେ ପଡ଼ି ଗୁଣ ଦୋଷ ଆଶ୍ରାକରେ ।
ଖାଇବା ପିଇବା ଇଚ୍ଛା ବଢ଼େ ଦିନୁଦିନ
ବନ୍ଧୁ ଭାରିଯାଦି ସ୍ନେହେ ହୁଅଇ ବନ୍ଧନ ।
ମନ ଆକୁଳ ତାହାଙ୍କ ପାଇଁ ସବୁବେଳେ
ଘୋର ପାପରେ ପକାନ୍ତି ଇନ୍ଦ୍ରିୟ ସକଳେ ।
ପଞ୍ଚଭୂତ ଆତ୍ମା ଏହିରୂପେ ହୁଏ ପୋଷି
ଦିନେ ଦିନେ ସେହୁ ବିଷାବିଷେ ଥାଇ ରସି
କଇବର୍ତ୍ତ ଜାଲେ ମୀନ ବନ୍ଧନ ଯେସନ
ମହା ମୋହ ଜାଲେ ଆତ୍ମା ଜଡ଼ିତ ତେସନ ।
ଆପେ ସେ ବିଭୁହେଲେହେଁ କିହୋଇବ ପୁଣ
ମହାମାୟୀ ମୋହଜାଲେ ପଡ଼ନ୍ତିଯେ ଜାଣ ।
ଏରୂପେ ବନ୍ଧନେ ପଡ଼ି ଚଳି ନ ପାରଇ
ମୋହ ଜାଲ ଦୃଢ଼କରି ତାହାକୁ ବନ୍ଧାଇ ।
ଜ୍ଞାନ ବିଜ୍ଞାନ ତାହାର ସବୁହୋଏ ଦୂର
ଧ୍ୟାନ ଯୋଗ ଭାଙ୍ଗିଯାଏ ହୁଅଇ ଅଧୀର ।
ପରପଞ୍ଚ ପଞ୍ଚଭୂତ ଥାଏ ତାଙ୍କୁ ବ୍ୟାପି
ରାଗ ଦ୍ୱେଷର ଆଘାତପାଇ ଉଠେ କମ୍ପି ।
କାମ କ୍ରୋଧ ଲୋଭେପଡ଼ି କର୍ମେବନ୍ଧାହୋଇ
ସୁଖ ଦୁଃଖ ଆଦି ସବୁ ଭୋଗ କରୁଥାଇ ।
ସୁତମୁନି କହିଲେ ହେ ଶୁଣ ଋଷିଗଣ
ଆତ୍ମା କାମ କ୍ରୋଧବଶେ ରହନ୍ତେ ତକ୍ଷଣ ।
ରାଗ ଲୋଭ ଆଦି ଆସି ଆକ୍ରମଣ କରେ
ଏମୋର ଭାରିଯା ବୋଲି କହଇ ମୁଖରେ ।

ଏ ମୋ ପୁତ୍ର ଏ ମୋ ମିତ୍ର ଏଘର ମୋହର
ଘୋର ମହାମାୟା ମୋହମାୟା ଏ ସଂସାର
ସେ ଜାଲରେ ବନ୍ଧାପଡ଼ି ବିଷୟରେ ରସି
ପୁତ୍ର ଶୋକ ଆଦି ଦୁଃଖେ ପଡ଼ି ଦିବାନିଶି ।
ଆଦିବ୍ୟାଧି ଜରାକ୍ରମେ କରେ ଆସି ଗ୍ରାସ
ଏରୂପେ ଆତ୍ମାସଂସାର ପାଇ ନାନାକ୍ଳେଶ ।
ଅଭିମାନେ ମାନଭଙ୍ଗେ ଅତି କଷ୍ଟପାଇ
ବାଲ୍ୟ ଯୁବାକାଳେ ଦୁଃଖ ସୁଖ ମଣୁଥାଇ ।
ଦେବୀଗୋ ମୁଁ କି କହିବି ବୃଦ୍ଧ କାଳକଥା
ବଳହାନି ହେବାଯୋଗୁଁ ଘୂରେ ତାର ମଥା ।
ଚର୍ମ ଲୋଚା ଲୋଚା ହେବା ଯୋଗୁଁଟି ଶରୀର
ମାଂସଝଡ଼ି କୁଢ଼େଇ ପଡ଼ଇ ପୁଣି ତାର ।
ହାଡ଼ସବୁ ତାହାର ଯେ ପୋରିଆ ହୁଅଇ
ଦାନ୍ତ ଝରିଯାଇ ମୁଖ ପାକୁଆ ଦିଶଇ ।
ଦେହଲୋମ ପାଚିଯାଇ ଦିଶଇ ଯେ ଧଳା
ଯଷ୍ଟି ଖଣ୍ଡିକି ସେ କରିଥାଇ ଗଳାମାଳା ।
ତଥାପି ସେ ଲୋଭେ ପଡ଼ି ହୁଏ ମୋର ମୋର
ମିଛେ ମାଳା ଗୋଟାଧରି ଜପେ ନିରନ୍ତର ।
ନିରତେ ଚିନ୍ତା ଦୁଃଖରେ ପଡ଼ି ହାହାହୋଇ
ଚଇତନ୍ୟ ଶୂନ୍ୟ ହୋଇ ନିଦ ନ ମାଡ଼ଇ ।
ତନ୍ଦ୍ରା ଆସିଲାବେଳେ ସେ ଦେଖଇ ସ୍ୱପନ
ଦିବସରେ ଲୋପପାଇ ତାର ଚଇତନ ।
ଦିନେ ଦିନେ ଆତ୍ମା ଅଙ୍ଗ ବଇକଲ୍ୟ ପାଇ
ଏରୂପେ ଆତ୍ମା ସଂସାରେ ଭ୍ରମି ଭ୍ରମି ଯାଇ ।
ଦିନେ ବଇରାଗ୍ୟ ସଙ୍ଗେ ହୋଇଲା ତାଭେଟ
ଦେଖିଲେ ନିର୍ଭୟ ତାର ଦେହ ହୃଷ୍ଟ ପୁଷ୍ଟ ।
କାମ କ୍ରୋଧ ଆଦି ନାହିଁ ସନ୍ତୋଷ ନିରତେ
ତାହାକୁ ଦେଖିଣ ଆତ୍ମା ବୋଇଲେ ଏକାନ୍ତେ ।
କିଏ ତୁମ୍ଭେ ତୁମ୍ଭଦେହ ଲଙ୍ଗଳା କିମ୍ପାଇଁ
ବନ୍ଧୁଙ୍କ ଆଗରେ ଚାଲ ଲାଜମାଡ଼େ ନାହିଁ ।
ସ୍ତିରୀ ପୁରୁଷ ଯୁବତୀ ମାତା ଭଗ୍ନୀ ଆଗେ
କେମନ୍ତେ ଚଳ ସେକଥା କହମୋର ଆଗେ ।
ଆତ୍ମା ମୁଖୁ ଶୁଣି ବୀତରାଗ ଯେ କହଇ
ଅସମ୍ଭବ କଥା ମୋତେ ପଚାର କିମ୍ପାଇଁ ।
ଲଙ୍ଗଳାବୋଲି କହୁଛ ତୁମ୍ଭେହେ କେମନ୍ତେ
ତୁମ୍ଭ ଚକ୍ଷୁରେ କି ରୋଗ ଅଛି କହ ମୋତେ ।

ଅନ୍ଧଯୋଗୁଁ କି ତୁମ୍ଭଙ୍କୁ କିଛି ଦିଶୁନାହିଁ
ନିରନ୍ତର ଲୁଗାପିନ୍ଧି ବୁଲୁଥାଇ ମୁହିଁ ।
ମୁଁ ଲଙ୍ଗଳା ବୋଲି କାହା ଆଖିକି ନଦିଶେ
ଜ୍ଞାନ ବସନ ସର୍ବଦା ମୋର ଅଙ୍ଗ ଦେଶେ ।
ତୁମ୍ଭେତ ନିଜେ ଲଙ୍ଗଳା ବାର ପୁଣି ମୋତେ
ଇନ୍ଦ୍ରିୟର ବଶେ ତୁମ୍ଭେ ରହିଥାଅ ନିତ୍ୟେ ।
ଆବର ମର୍ଯ୍ୟାଦାହୀନ ହେବାଯୋଗୁ ନେତ୍ରେ
ଦେଖିପାରୁ ନାହିଁ ଲୁଗାଥିବା ମୋର ଗାତ୍ରେ ।
ଏମନ୍ତ ଶୁଣି ସେ ଆତ୍ମା ବୋଇଲେ ସୁବ୍ରତ
ମର୍ଯ୍ୟାଦା କାହାକୁ କହି ସେ ପୁଣି କେମନ୍ତ ।
ଜଣାଥିଲେ ମୋ ଆଗରେ କହ ତା ବୁଝାଇ
ମହାମତି ବଇରାଗ୍ୟ ଆତ୍ମାକୁ କହଇ ।
ସୁଖଦୁଃଖେ ସବୁବେଳେ ଯାର ମନ ସ୍ଥିର
ସୁଖଦୁଃଖରେ ବିମୁଖ ନଥାଇ ଆବର ।
ତାହାକୁ ମର୍ଯ୍ୟାଦା କହି ତଥ୍ୟକରି ଜାଣ
ଲଜ୍ଜା କାହାକୁ କହଇ କହୁଅଛି ଶୁଣ ।
ବିଶେଷରେ ମନମଧ୍ୟେ ଥାଏ ଯାହା ରହି
ପଛେ ପୁଣି ଅନୁତାପେ ସନ୍ତାପିତ ହୋଇ ।
ଉଲଗ୍ନ ବା ସ୍ଥାନଭ୍ରଷ୍ଟ ହେବାବେଳେ ଜୀବ
ଏକଥା ମନେ ତାହାର ହୁଅଇ ଉଭବ ।
ଆଉ ନ କରିବ ବୋଲି କରେ ସଂକଳପ
ତାହାର ନାମ ଯେ ଲଜ୍ଜା କହିଲି ସ୍ୱରୂପ ।
ଏ ଲଜ୍ଜା କରିବ ପୁଣି କାହାକୁ ଯେ ତହିଁ
ଗୋଟିଏ ପୁରୁଷ ବିନା ଆନ ଜଣେ ନାହିଁ ।
ସେ ପୁଣି କାହାର କିଛି ନ ପାରଇ କରି
ଏଥୁଅନନ୍ତରେ କଥା ଶୁଣ କାନ ଡ଼େରି ।
ତୁମ୍ଭେ ଯେଉଁ ଲୋକଙ୍କର କଥା କହ ପୁଣି
କୁମ୍ଭାର ଯେସନେ ମାଟି ପିଣ୍ଡୁଳାଏ ଆଣି ।
ଚକ ଉପରେ ଥୋଇଣ ସୂତ୍ରେ ଚକ୍ରଧରି
ଭ୍ରମାଇ ନାନାଦିଭାଣ୍ଡେ କରଇ ତିଆରି ।
ତେସନ ବିଧାତାସୃଷ୍ଟି ନାନାରୂପେ କରେ
ଯେ କିଛି କାରଣେ ନାଶଯାଇ ପୁଣି ପରେ ।
ବିଧାତା ସୃଷ୍ଟି କୁମ୍ଭାର ହାଣ୍ଡିର ପରାୟ
ଜନମ ମରଣ ଜାଣ ପ୍ରାଣୀର ନିଶ୍ଚୟ ।
ଯାର ଜନ୍ମ ମୃତ୍ୟୁନାହିଁ ସଂସାରେ ସେ ନିତ୍ୟ
ତାହାକୁ ଲାଜକରିବା ଅଟଇ ଉଚିତ ।

ପୃଥ୍ୱୀ ଆପତେଜ ବାୟୁ ଆକାଶକୁ ଘେନି
ବିଧାତା ଜୀବ ଭିଆଇ କୋଟି କୋଟି ପୁଣି ।
ଏହାଙ୍କ ତହିଁ ଅଛନ୍ତି ପଞ୍ଚମହାଭୂତ
ପାଞ୍ଚଭୂତରେ ଏହାଙ୍କ ସର୍ବାଙ୍ଗ ଜଡ଼ିତ ।
ଏ ସଂସାର ପ୍ରାଣୀଙ୍କର ଭିନ୍ନ କିଛି ନାହିଁ
କହକେ କାହାକୁ ଲାଜ କରିବ କିପାଇଁ ।
ଆହେ ତାତ ଏବେ ତୁମ୍ଭେ ଶୁଣ ଦେଇ ମନ
ସ୍ତିରୀ ଜାତିଙ୍କର ରୂପ କରୁଛି ବର୍ଣ୍ଣନ ।
ସହସ୍ର ସହସ୍ର ଜଳ ପୂର୍ଣ୍ଣଘଟେ ଯେହ୍ନେ
ଏକ ଚନ୍ଦ୍ର ବିରାଜଇ ତେସନ ଆପଣେ ।
ସହସ୍ର ସହସ୍ର ପ୍ରାଣୀ ଦେହରେ ତେସନ
ମୋହମାୟା ଚକ୍ରେ ଏହି ପ୍ରାଣୀଏ ଆଛନ୍ନ ।
ତୁମ୍ଭେ ମାୟାମୋହମୟ ପାପ ଯୋନିଦ୍ୱାର
ନିତମ୍ବ ଯେ ଯଉବନ ବେନି ପୟୋଧର ।
ବିରାଜୁଛନ୍ତି ଆପଣ ଏ ସକଳ ଘେନି
ଯେ ମାଂସପିଣ୍ଡ ରମଣୀ ହୃଦେ ଦିଶେ ପୁଣି ।
ଭେକଙ୍କୁ ସେ ମାୟାମୋହେ ଦିଅନ୍ତି ପକାଇ
ଆପଣ କହିବା ନାରୀ ଏକ ଦେଖାନାହିଁ ।
ନିଜର ବିନୋଦପାଇଁ ବିଧାତା ନିରତେ
ସୃଷ୍ଟି ଭିଆଇ ରହିଣ ଲୀଳାର ଆୟତ୍ତେ ।
ବିଧାତାର ଅଟଇ ଏ ଖେଳଘର ଜାଣ
ନର ଯାହା ନାରୀ ତାହା ନାହିଁ କିଛି ଭିନ୍ନ ।
ସବୁରି ଜୀବ ଯେ ଏକ ପୃଥକ ନୁହଇ
ଯାହାର ଦେହରେ କୁଚ ଯୋନି ନ ଦିଶଇ ।
ଜୀବନ ମୁକତ ଜାଣ ସେ ଲୋକ ନିରତେ
ପ୍ରକୃତି ସଙ୍ଗେ ପୁରୁଷ ରମୁଥାଇ ନିତ୍ୟେ ।
ପୁରୁଷ ଯେ ନର ଜାଣ ନାରୀ ଯେ ପ୍ରକୃତି
ମୁକତି ନାହିଁ ତାଙ୍କର ସଦା ଭ୍ରମୁଥାନ୍ତି ।
ପ୍ରକୃତି ସଙ୍ଗେ ଥିବାରୁ ଏକ୍ଷଣି ଆପଣ
ପ୍ରକୃତି ବଶେ ଜାଣୁଛ ସକଳ ପ୍ରମାଣ ।
ପୁରୁଷଙ୍କ ସଙ୍ଗତରେ ପାଉଛନ୍ତି ଶୋଭା
ପ୍ରକୃତି ପୁରୁଷ ତୁମ ରୂପର ଏ ପ୍ରଭା ।
କେ କାହାକୁ ଲାଜପୁଣି କରିବ ବିଚାର
ମନେ ମନେ ବୁଝିପାରି ଶାନ୍ତି ଆଶ୍ରାକର ।
ତୁମ୍ଭେ କହିଥିବା ବୃଦ୍ଧା କଥାକହେ ଶୁଣ
ଯେଦଣ ସ୍ତିରୀ ସର୍ବାଙ୍ଗଯାକ ଜରାଜୀର୍ଣ୍ଣ ।
କେଶ ପାଚିଯାଇ ପୁଣି ଧଳା ଦିଶୁଥାଇ
ଦେହ ସ୍ଖଳିତହେବାରୁ ବଳହାନି ହୋଇ ।
ବଳୀ ବେଷ୍ଟିତ ସର୍ବାଙ୍ଗଯାକ ଯୋଗୁଁ ଦୀନ
ସେ ନାରୀକି ବୃଦ୍ଧାବୋଲି ନକହେ ମୁଁପୁଣ ।
ମୋମତେ ଯେ ବୃଦ୍ଧାନାରୀ ସେକଥା କହିବା
ଆଗ ଯୁବତୀର କଥା ଗୋଟା କହିଦେବା ।
ଯେଉଁଜ୍ଞାନୀ ବୃଦ୍ଧା ନିତି ଜୀବପାଶେ ଥାଇ
ସେ ନାରୀର ନାମ ଜାଣ ସୁମତୀ ଅଟଇ ।
ସେ ଯୁବତୀ ସେହି ବୃଦ୍ଧା ଜାଣ ମୋହ ମତେ
ଏ ପୁରୁଷ ନାରୀ ଲୋକେ ଅଛନ୍ତି ନିରତେ ।
ତାହାଙ୍କର ସିନା ଲାଜ କରିବା ଉଚିତ
ଯେଉଁ ମାତାକଥା ମୋତେ କହିଲହେ ତାତ ।
କହୁଛି ସେ ମାତା କଥା ଶୁଣ ମନଦେଇ
ପ୍ରାଣୀଦେହେ ସବୁବେଳେ ଯେ ଚେତନାଥାଇ ।
ପରମଜ୍ଞାନକୁ ସେହି କରଇ ପ୍ରଦାନ
ସେ ପରମଜ୍ଞାନୁ ପ୍ରଜ୍ଞାହୁଏ ଉତପନ୍ନ ।
ସେ ପ୍ରଜ୍ଞାକୁ ମାତାକହି ପ୍ରାଣୀଙ୍କି ସେ ଘୋଷେ
ସୁମତି ନାମ ବୋଲାଇ ସେହି ଅବଶେଷେ ।
ସବୁ ପ୍ରାଣୀଙ୍କର ହିତ କାରିଣୀ ଅଟଇ
ସବୁ ଲୋକଙ୍କର ମାତା ବୋଲି ସେ ବୋଲାଇ ।
ସକଳ ସଂସାର ଦ୍ୱାରେ ବାଟ ପୁଣି ଯେହୁ
ବହୁତ ଦୁଃଖ ଦିଅଇ ଜାଣ ମାତା ସେହୁ ।
ଯାହା ତୁମ୍ଭେ ପଚାରିଲ କହିଲି ବୁଝାଇ
ଆଉ ଯାହା ପଚାରିବ ତାହା କହିବଇଁ ।
ବୈରାଗ୍ୟ ମୁଖରୁ ଆତ୍ମା ଶୁଣି ଏ ବଚନ
ବୋଇଲେ ମୋର ସନ୍ତାପ ନାଶିବା କାରଣ ।
ଭେଟିଲି ତୁମ୍ଭ ସ୍ୱରୂପ କହିବ ବିସ୍ତାରି
ବୈରାଗ୍ୟ କହିଲେ କହେ ଶୁଣ କାନଡ଼େରି ।
କାମ ଆଦି ଯା ପାଖକୁ ଯାଇ ନପାରଇ
ଦୂଷିତ କର୍ମ ଯାହାକୁ ନ ପାରଇ ଚାହିଁ ।
କ୍ରୋଧ ଲୋଭ ମୋହଆଦି ଯାହାରଭୟରେ
ପାଖେ ନରଖି ପଳାଇ ଯାନ୍ତି ପୁଣି ଦୂରେ ।
ମୁହିଁ ସେହି ବୀତରାଗ ବୈରାଗ୍ୟ ମୋ ନାମ
ବିବେକ ନାମେ ମୋଭାଇ ମୋଠାରୁ ସେ ସାନ ।
ଏମନ୍ତ ଶୁଣି ସେ ଆତ୍ମା ପୁଣି ପଚାରଇ
ବିବେକନାମେ ଯେ ଅଛି ତୋର ସାନଭାଇ ।

ତାର ଲକ୍ଷଣ ଆବର ଲକ୍ଷଣ ତୁମ୍ଭର
ସବୁ ବୁଝାଇ କହିବ ଆଗରେ ମୋହର ।
ବୀତରାଗ କହିଲା ଯେ ଶୁଣ ଭାଗ୍ୟବନ୍ତ
ମୁହିଁ ସେ ଲକ୍ଷଣ ପାରିନପାରେ ବ୍ୟକତ ।
ଭାଇକି ମୁଁ ଡାକୁଅଛି କହିବ ସେ ଆସି,
ଭାଇଭାଇ ବୋଲି ତହୁଁ ଉଚ୍ଚସ୍ୱରେ ଭାଷି ।
ଶୁଣିଯା ଶୁଣିଯା ଆସି ଆରେ ମହାମତି
କଶ୍ୟପଋଷି କହନ୍ତି ଶୁଣନ୍ତି ଯେ ଦିତି ।
ଏକସ୍ଥାନେ ରହି ସବୁ ଯେ ଦେଖି ପାରଇ
ସକଳ ସ୍ଥାନ ବ୍ୟାପିଣ ଯେ ରହି ଅଛଇ ।
ଏକକାଳେ ସବୁସ୍ଥାନେ ସେ ପାରଇ ଯାଇ
ଆବର ସକଳ ତତ୍ତ୍ୱ ଯେ ପୁଣି ଜଣାଇ ।
ସେ ସବୁ ସନ୍ଦେହ ମନୁ କରିପାରେ ଦୂର
ଜ୍ଞାନ ବସ୍ତଳ ନିର୍ମଳ ନାହିଁ ଅହଙ୍କାର ।
ଯେହୁ କାହାଠାରୁ କିଛି ନକରେ ଗ୍ରହଣ
କାହିଁରେ ସେ କିଛି ଆଶାନାହିଁ ପୁଣି ଜାଣ ।
ସର୍ବଦା ପ୍ରସନ୍ନ ଚିତ୍ତ ଅଟଇ ଯାହାର
ଦ୍ୱନ୍ଦ୍ୱକୁ ଯେ ଅତିକ୍ରମ କରଇ ଆବର ।
ଯୋଗ ଯାର ବଡ଼ପୁଅ ପୁଣି ମହାମତି
ଦୁଇଗୋଟି ଝିଅ ଯାର ନାମ ଶୁଣ ଦିତି ।
ଧାରଣା ବଡ଼ର ନାମ ଧୀନାମେ ଯେ ସାନ
ମୋକ୍ଷ ଯାର ମହାଗୁରୁ ମହାତମା ଧର୍ମ ।
ସତ୍ୟକୁ ଘେନି ଏ ଦୁହେଁ ମହାମନ୍ତ୍ରୀ ଯାର
ସେ ବିବେକ ଗୁଣ ରତ୍ନ ପଣ୍ଡିତ ଆବର ।
ଶାନ୍ତିକ୍ଷମା ନାମେ ଦୁଇ ଭାରିଯାକୁ ଘେନି
ବଇରାଗ୍ୟ ପାଶେ ଆସି ମିଳିଲେ ସେ ତିନି ।
ବୋଇଲେ ହେ ଭାଇ ମୋତେ ଡାକିଲ କିପାଇଁ
ବୀତରାଗ ବୋଇଲାରେ ଶୁଣ ସାନଭାଇ ।
ଆଗରେ ଦେଖୁଛ ତୁମେ ଯେବଣ ପୁରୁଷ
ଏହିଯେ ଆତ୍ମାପୁରୁଷ ଅଟନ୍ତି ଲୋକେଶ ।
ମାୟାପାଶେ ପଡ଼ି ମୋହବାଣେ ହୋଇବିଦ୍ଧ
ସଂସାରେ ଭ୍ରମଇ ପଞ୍ଚତତ୍ତ୍ୱ ପାତି ଫାନ୍ଦ ।
ଜ୍ଞାନ ଧ୍ୟାନ ତେଜିବାରୁ ମୋହରେ ଜଡ଼ିତ
ତୁମ୍ଭେ ଅଟ ଯେଣୁ ତତ୍ତ୍ୱ ଗୁଣରେ ପଣ୍ଡିତ ।
ଡାକିବା କାରଣ ଏହି ଆତ୍ମାକୁ ପଚାର
ବିବେକ ଶୁଣି ବୋଇଲା ଆହେ ବିଶ୍ୱେଶ୍ୱର ।

କିପରି ସୁଖେ ଆପଣ ଅଛନ୍ତି ସଂସାରେ
କି କି ସୁଖ ଭୋଗକଲ କୁହମୋ ଆଗରେ ।
ଆତ୍ମା ବୋଇଲେ ଯେ ତୁମ୍ଭେ ମହାବୁଦ୍ଧିମନ୍ତ
ମୁହିଁ ଜ୍ଞାନ ଧ୍ୟାନ ହୀନ ହୋଇ ଅବିରତ ।
ଘୋର ଗର୍ଭବାସ ଦୁଃଖ ଭୋଗ ମୁଁ କରଇ
ଦେହେ ନାନାରୂପଧରେ ଜ୍ଞାନଭ୍ରଷ୍ଟ ହୋଇ ।
ବହୁତ କୁକର୍ମ କର୍ମ କଲି ବାଳକାଳେ
ବହୁଭାର୍ଯ୍ୟା ସଙ୍ଗେ କ୍ରୀଡ଼ାକଲି ଯୁବାବେଳେ ।
ବୃଦ୍ଧକାଳେ ପୁତ୍ର ଆଦି ଶୋକେ ସନ୍ତାପିତ
ଭାର୍ଯ୍ୟାଆଦି ବିଚ୍ଛେଦରେ ଦଗ୍ଧ ଦିବାରାତ୍ର ।
ଏହାର ଭିତରେ କିଛି ସୁଖ କରିନାହିଁ
ଏରୂପେ ମୁଁ ଜନ୍ମେ ଜନ୍ମେ ଦୁଃଖକଷ୍ଟ ପାଇ ।
ଏଥିର ଉପାୟ ମୋତେ କହ ମହାମତି
ଯହିଁରେ କି ଦୁଃଖୁପାର ହୋଇବି ଝଟତି ।
କର ତୁମ୍ଭେ ଏ ସଂସାର ବନ୍ଧନୁ ମୋଚନ
ବିବେକ ବୋଇଲା ଶୁଣ ଜଗତ ଜୀବନ ।
ଏକ୍ଷଣି ତୁମ୍ଭେ ଏ ବୀତରାଗ ଆଶ୍ରାଧର
ଏହି ମହାତମା ଦ୍ୱନ୍ଦ୍ୱ ଶୂନ୍ୟ ନିରନ୍ତର ।
ଏହାଙ୍କର ବୁଦ୍ଧି ଅତି ପବିତ୍ର ଅଟଇ
ପାପ ଏହାଙ୍କର ଦେହେ ଲେଶ ମାତ୍ର ନାହିଁ ।
ତୁମ୍ଭଙ୍କୁ ଉତ୍ତମ ସୁଖ ଏ ଦେଇ ପାରନ୍ତି
ଉଲଗ୍ନ ଆଚାର ଭ୍ରଷ୍ଟ ତୁମ୍ଭଙ୍କୁ ଦିଅନ୍ତି ।
ଦେଖାଇଦେବେ ଏ ସୁଖ ବାଟକୁ ତୁମ୍ଭର
କରିପାରିବେ ସକଳ ସନ୍ତାପ ଏ ଦୂର ।
ବିବେକ ମୁଖୁ ଏମନ୍ତ ଶୁଣି ଆତ୍ମା ଗଲେ
ବଇରାଗ୍ୟ ନିକଟରେ ପ୍ରବେଶ ହୋଇଲେ ।
ଦୀର୍ଘ ନିଃଶ୍ୱାସ ପକାଇ କହିଲେ ଦୁଃଖିତେ
ଆହେ ବଇରାଗ୍ୟ ସୁଖ ହେବ ମୋ ଯେମନ୍ତେ ।
ସେ ବାଟ ଦେଖାଇଦିଅ ମୋତେ କୃପାକରି
ବୀତରାଗ ତହିଁରେ ଯେ ପୁଣି ହଁ ହଁ ଭରି ।
ବିବେକର ପାଖେ ତୁମ୍ଭେ ପୁଣି ଯାଅ ଥରେ
ମୁଁ ନିଶ୍ଚେ ରଖିବି ତୁମ୍ଭ କଥାକୁ ଏ ବାରେ ।
ସୁଖ ଆଲୋଚନା ହେଉ ତାସଙ୍ଗେ ତୁମ୍ଭର
ଉପାୟ ଯେ କହିଦେବ ବିବେକ ଆବର ।
ବୀତରାଗ ପଠାନ୍ତେ ଯେ ଗଲା ଆତ୍ମା ପୁଣି
ବିବେକପାଶେ ପ୍ରବେଶି ବୋଇଲା ଏ ବାଣୀ ।

ତୁମ୍ଭେ ମୋର ସୁଖ ବାଟ ଦିଅହେ ଦେଖାଇ
ବୀତରାଗ ଦେଲେ ତୁମ୍ଭ ପାଖକୁ ପଠାଇ ।
ଶରଣ ପଶିଲି ମୋତେ କରିବା ଉଦ୍ଧାର
ବିବେକ ବୋଇଲା ତୁମ୍ଭେ ଜଗତ ଈଶ୍ୱର ।
ଜ୍ଞାନ ନିକଟକୁ ଗଲେ ସବୁ ଦେବ କହି
ବିବେକ ଆଦେଶେ ଆତ୍ମା ଗଲା ଜ୍ଞାନତହିଁ ।
ବୋଇଲା ଭୋ ଜ୍ଞାନନେଲି ମୁଁ ତୁମ୍ଭ ଶରଣ
ଦେଖାଇଦିଅ ସୁଖର ଉପାୟ ଯା ଜାଣ ।
ଜ୍ଞାନ ବୋଇଲା ଯେ ତୁମ୍ଭେ ଅଟ ଲୋକପତି
ମୁହିଁ ଯେ ତୁମ୍ଭର ଭୃତ୍ୟ ଖଟିଥାଇ ନିତି ।
ମୋତେ ଚିହ୍ନି ନ ପାରୁଛ ଘୋଟିବାରୁ ମୋହ
ଜ୍ଞାନ ଆଉ ଧ୍ୟାନ ତହୁଁ ଛାଡ଼ିଲ ଯେ ସ୍ନେହ ।
ଅନେକରୂପେ ବାରଣ କଲୁ ନ ମାନିଲ
ପଞ୍ଚତତ୍ତ୍ୱର ଫାନ୍ଦରେ ପଡ଼ି ଭୁଲିଗଲ ।
ତା ସଙ୍ଗପାଇ ଆପଦେ ପଡ଼ିଲ ଆପଣ
ଧ୍ୟାନପାଖେ ଯାଇ କୁହ ପଠାଇଲା ଜ୍ଞାନ ।
ଆତ୍ମାତହୁଁ ଯାଇଁ ଧ୍ୟାନ ପାଖରେ ମିଳିଲେ
ଦୁହୁ ଶରଣ ଫୁକାରି ଧ୍ୟାନକୁ ବୋଇଲେ ।
ଏ ଘୋର ଆପଦୁ ମୋତେ ରକ୍ଷାକର ଧ୍ୟାନ
ଆତ୍ମାର ଶୁଣି ଏମନ୍ତ କରୁଣ ବଚନ ।
ବୋଇଲେସେ ଧ୍ୟାନପୁଣି ଆହେ ଲୋକେଶ୍ୱର
ଯେଉଁ ଯେଉଁ କର୍ମମାନ ତୁମ୍ଭେ ପଛେକର ।
ତୁମ୍ଭେ ମୋତେ ନ ଛାଡ଼ିବ କହିଲି ତୁମ୍ଭଙ୍କୁ
ବିବେକ ଯେ ବଇରାଗ୍ୟ ଆବର ଧ୍ୟାନକୁ ।
ଆଶ୍ରାକରି ଆପେ ଦେଖ ଆତ୍ମାକୁ ତୁମ୍ଭର
ଆତ୍ମା ତହିଁ ନିଷ୍ଠାରଖି ଭୟ ପରିହର ।
ପବନ ନିରୋଧେ ସ୍ଥିର ପ୍ରଦୀପ ଯେସନ
କଜ୍ଜଳ ବାନ୍ତି କରଇ ଆପଣ ତେସନ ।
ଦୋଷରାଶି ନାଶି ନିଶ୍ଚେ, ପାଇବ ନିର୍ବାଣ
ନିରାହାରେ ଏକାନ୍ତରେ ରହିଣ ଆପଣ ।
ନିଶ୍ଚଳ ଆସନ ମାଡ଼ି ନିଶବଦ ଘରେ
ବୁଦ୍ଧିବଳେ ଧ୍ୟାନଯୋଗେ ଆତ୍ମାଦେଖ ଧୀରେ ।
ବିଷ୍ଣୁର ପରମପଦ ପାଇବ ନିଶ୍ଚୟ
ଦୀନ ଗୋପୀନାଥ ଆତ୍ମାପାଦେ କରେ ଲୟ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ଅଧ୍ୟାତ୍ମ
ବର୍ଣ୍ଣନଂ ନାମ ଅଷ୍ଟମୋଽଧ୍ୟାୟଃ ।



# ନବମ ଅଧ୍ୟାୟ

## ଧ୍ୟାନ ଯୋଗେ ଆତ୍ମାର ମୋକ୍ଷ ଓ ଆତ୍ମାଜ୍ଞାନ ଲାଭ

ବୋଇଲେ କଶ୍ୟପଋଷି ଶୁଣ ତୁଗୋ ଦିତି
ଏରୂପେ ପ୍ରବୋଧ ପାଇଣ ଆତ୍ମା ମହାମତି ।
ଦେହ ଛାଡ଼ିବା ନିମନ୍ତେ କଲେକ ଉଦ୍ୟମ
ଦେହଛାଡ଼େ ଆତ୍ମାକରି ନିମିତ୍ତ ଦର୍ଶନ ।
ଅନ୍ୟଦେହେ ପଶେଯାଇଁ ଆତ୍ମା ଯେତେବେଳେ
ଛାଡ଼ିବା ଦେହକୁ ଆଉ ନଚାହେଁ ସେକାଳେ ।
ଲକ୍ଷ୍ୟ କିଛି ନକରି ସେ ଦେହକୁ ଛାଡ଼ଇ
ଛାଡ଼ିବା ଦେହରେ ଦୃଷ୍ଟି ତାର ନ ପଡ଼ଇ ।
ପ୍ରାଣ ଦେହ ସଙ୍ଗେ ସଙ୍ଗେ ହେଲେହେଁ ବର୍ଦ୍ଧିତ
କାହାରି ସଙ୍ଗେ ସମ୍ବନ୍ଧ ନାହିଁ କିଛିମାତ୍ର ।
ଦାରା ଧନ ପୁତ୍ରେ କାହୁଁ ସମ୍ବନ୍ଧ ରହିବ
ତାହାଙ୍କ ପାଇଁଗୋ ପ୍ରିୟେ କିମ୍ପାଇଁ କାନ୍ଦିବ ।
ଆତ୍ମା ପରଂବ୍ରହ୍ମ ସନାତନ ଯେ ପୁରୁଷ
ଦେବ ଦାନବ ଅସୁରର ମାନବ ରାକ୍ଷସ ।
ପଶୁ ପକ୍ଷୀ କୀଟଆଦି ଯେତେ ଯେତେ ପ୍ରାଣୀ
ସବୁରି ଦେହେ ବିରାଜେ ସେହି ଆତ୍ମାପୁଣି ।
ସେହି ବ୍ରହ୍ମା ସେହି ରୁଦ୍ର ବିଷ୍ଣୁ ସନାତନ
ସେହି ଏକା ଏ ବିଶ୍ୱକୁ କରଇ ସୃଜନ ।
ସେହି ପ୍ରଜାଙ୍କୁ ପାଳଇ ଗର୍ବେ ସଂହରଇ
ସେହି ଧର୍ମରୂପୀ ଜନାର୍ଦ୍ଦନ ଯେ ଅଟଇ ।
ସେହି ଦେବ ଦାନବଙ୍କ ଉତ୍ପତ୍ତି କରତା
ଅଧର୍ମରେ ନଥାନ୍ତିତ ଯେତେକ ଦେବତା ।
ଧର୍ମଛଡ଼ା ଅଟନ୍ତିତ ଏ ତୋହର ପୁତ୍ର
ଦେବ ପାଳିତ ଧର୍ମହିଁ ଶ୍ରୀବିଷ୍ଣୁର ଗାତ୍ର ।
ଆଗୋ ଦେବୀ ଧର୍ମ ଚିନ୍ତା ଯେ ଜନ କରଇ
ଆପେ ଧର୍ମ କରୁଥାଇ ଧର୍ମ ପାଳୁଥାଇ ।
ଧର୍ମାତ୍ମ ବିଷ୍ଣୁ ତାଠାରେ ସର୍ବଦା ପ୍ରସନ୍ନ
ହୁଅନ୍ତି ଏ କଥା ଜାଣ ନାହିଁ ଏଥେ ଆନ ।
ଦେବେ ଧର୍ମ ସତ୍ୟ ତପବଳେ ଯେ ଉଜ୍ଜ୍ୱଳ
ଧର୍ମ ପାଳନା କରନ୍ତି ଦେବତା ସକଳ ।
ତେଣୁ ବିଷ୍ଣୁ ତାଙ୍କଠାରେ ସର୍ବଦା ପ୍ରସନ୍ନ
ସତ୍ୟ ବିଷ୍ଣୁର ହୃଦୟ ବିଷ୍ଣୁଦେହ ଧର୍ମ ।

ଏ ଦୁହିଁଙ୍କି ଯେଉଁଜନ ପାଳୁଥାଇ ନିତି
ଶ୍ରୀବିଷ୍ଣୁ ତାହାଙ୍କ ତହିଁ ପ୍ରସନ୍ନ ଥାଆନ୍ତି ।
ସତ୍ୟଧର୍ମେ ଦୋଷଦେଇ ଯେ ପାପ ପୋଷଇ
ଅତି ବୀର୍ଯ୍ୟବନ୍ତ ବିଷ୍ଣୁ ଅତିକ୍ରୁଦ୍ଧ ହୋଇ ।
ବିନାଶ କରନ୍ତି ତାକୁ ଜାଣଗୋ ନିଶ୍ଚୟ
ସତ୍ୟତପେ ରହି ନିତ୍ୟ ବଇଷ୍ଣବଚୟ ।
ଧର୍ମପାଳିବାକୁ ବିଷ୍ଣୁ ସର୍ବଦା ପ୍ରସନ୍ନ
ରକ୍ଷା କରୁଥାନ୍ତି ତାକୁ ପୁଣି ପ୍ରତିଦିନ ।
ଦିତିପୁତ୍ରେ ଦନୁପୁତ୍ରେ ସିଂହିକା କୁମରେ
ବୋଲନ୍ତି କ୍ରମେ ଦଇତ୍ୟ ଦାନବ ଅସୁରେ ।
ଏ ସମସ୍ତେ ପାପଚେତା ଅଧର୍ମରେ ରତ
ତେଣୁ ତାଙ୍କୁ ଚକ୍ରପାଣି କଲେ ଯେ ନିହତ ।
ପୂର୍ବେ ଯେଉଁ ଆତ୍ମାକଥା କହିଥିଲି ତୋତେ
ସେହି ଧର୍ମ ବିଷ୍ଣୁ ସବୁ ପାଳନ୍ତି ଜଗତେ ।
ପାପେଲିପ୍ତହେବାରୁ ସେଦୈତ୍ୟଦେହେଁ ଥାଇ
ତେଣୁ ମନେ କ୍ରୋଧବହି ଦାନବ ମରଇ ।
ସେ ବିଷ୍ଣୁଥାଇ ସବୁରି ଅନ୍ତରେ ବାହାରେ
ମାଇଲେ ତୋର ପୁତ୍ରକୁ ପଶି ସଂଗ୍ରାମରେ ।
ଯେ ଯହିଁରୁ ଉପୁଜଇ ସେ ତହିଁରେ ମରେ
ତାଙ୍କପାଇଁ ଶୋକ ତୁଗୋ ନଧର ମନରେ ।
ପାପୀର ଅଳପଦିନେ ନିଶ୍ଚୟ ନିଧନ
ମୋହ ତେଜି ଧର୍ମ ଆଶ୍ରାକରଗୋ ବହନ ।
ଦିତି ବୋଇଲେ ଭୋ ସ୍ୱାମୀ ତାହା ମୁଁ କରିବି
ତୁମ୍ଭ ବଚନ ଅନ୍ୟଥା କରି ନ ପାରିବି ।
ମୁନିବର କଶ୍ୟପଙ୍କ ବନ୍ଦିଲେ ଚରଣ
ଦ୍ୱିଜ ଗୋପୀନାଥ ସଦା ସେ ମୁନି ଶରଣ ।
ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ଦିତି
ସମ୍ବୋଧନଂ ନ୍ନାମ ନବମୋଽଧ୍ୟାୟଃ ।



## ଦଶମ ଅଧ୍ୟାୟ

### ହିରଣ୍ୟକଶିପୁ ଆଦି ଦୈତ୍ୟଙ୍କର କଶ୍ୟପଙ୍କ ଆଗେ ଦୁଃଖପ୍ରକାଶ

ଋଷିଗଣ ପଚାରିଲେ ଆହେ ମହାମତି
ହିରଣ୍ୟକଶିପୁ ମୂଳେ ଯେତେ ଦୈତ୍ୟପତି ।
ଦାନବ ଯେତେ ସଂଗ୍ରାମୁଁ ଅଇଲେ ପଳାଇ
କିକଲେ ସେ ପୁଣି ତାହା କରିବା ବୁଝାଇ ।
ଶୁଣିବାକୁ ଇଚ୍ଛା ମୁନି ବଳିଛି ଆମ୍ଭର
ଏମନ୍ତ ଶୁଣି ବୋଇଲେ ସୂତ ମୁନିବର ।
ହତଦର୍ପ ହୋଇବାରୁ ଦୁଃଖେ ଦୈତ୍ୟଗଣ
ଭୟରେ କାତର ହୋଇ ଛାଡ଼ିଗଲେ ରଣ ।
ପଳାଇଗଲେ ଯେ ପିତା କଶ୍ୟପଙ୍କ ପାଶେ
ଭକତିରେ ପ୍ରଣମିଲେ ପାଦେ ମହାତ୍ରାସେ ।
ଆହେ ଦ୍ୱିଜବର ତୁମ୍ଭ ବୀର୍ଯ୍ୟେ ଆମ୍ଭେ ଜାତ
ଦାନବ ଅସୁର ଯେତେ ଦେବତା ଦଇତ୍ୟ ।
ଆମ୍ଭେ ଆବରଦାନବେ ଯେତେକ ଅସୁରେ
ବଳବନ୍ତ ବୀର୍ଯ୍ୟବନ୍ତ ସମସ୍ତେ ସମରେ ।
ନାନାଦି ଉପାୟ ଜାଣୁ ବିଶେଷେ ସୁଧୀର
ଅଳସୁଆ ନୋହୁ ପୁଣି ଉଦ୍ୟମ ଉପର ।
ଦେବଙ୍କଠାରୁ ଆମ୍ଭର ସଙ୍ଖ୍ୟାହିଁ ବହୁତ
ଦେବଙ୍କ ବଳ ଅଳସ ପୁଣି ଆହେ ତାତ ।
ଯେ ଯୁଦ୍ଧେ ଜିଣିଲେ ଆମ୍ଭେ ଅଇଲୁ ପଳାଇ
ଏହାର କାରଣ କହ ଆମ୍ଭଙ୍କୁ ବୁଝାଇ ।
ଆମ୍ଭ ମଧ୍ୟେ ଏକ ଏକ ଜଣଙ୍କର ବଳ
ସହସ୍ର ସହସ୍ର ମତ୍ତହସ୍ତୀ ବଳ ତୁଲ୍ୟ ।
ସେପରି ବଳ କାହାରି ଦେବଙ୍କର ନାହିଁ
କିହେବ ଭୋ ତାତ ଆମେ ବଳବନ୍ତ ହୋଇ ।
ମହା ସଂଗ୍ରାମରେ ହାରି ପଳାଇ ଅଇଲୁଁ
ଦେବତାଙ୍କୁ ଦେଖି ଆମେ ମହାଭୟ କଲୁଁ ।
ଏଥର କାରଣ କହି ଫେଡ଼ ଏ ସଂଶୟ
କଶ୍ୟପମୁନି କହିଲେ ଶୁଣରେ ତନୟ ।
ଦେବଗଣ ଯୁଦ୍ଧେ ଜୟ କଲେ ଯହିଁ ପାଇଁ
ତାହାର କାରଣ ଶୁଣ କହୁଛି ବୁଝାଇ ।
ପିତା ଯେ ଅଟଇ ବୀଜ ମାତାଯେ କିଆରୀ
ପାଳଇ ପୋଷଇ ମାତା ଗର୍ଭେ ତାହା ଧରି ।
ପୁତ୍ରଙ୍କ ନିମନ୍ତେ ମାତା ପିତାହିଁ ସମାନ
ତହିଁରେ ସବ ବିଷମ ହୁଅନ୍ତି ସନ୍ତାନ ।
ତହିଁରେ ସେ ପିତାମାତା ପାରିବେକି କରି
ମୋ ବିଚାରେ କର୍ମ ଏକ ଏହା କରିପାରି ।
କର୍ମବଳରୁ ଅଧିକ ବଳ ନାହିଁ କାର
ସେ କର୍ମ ଜାଣ ଅଟଇ ଦୁଇଯେ ପ୍ରକାର ।

ପାପକର୍ମ ପୁଣ୍ୟକର୍ମ ନାମ ଏହି ଦୁଇ
ପୁଣ୍ୟକର୍ମ କରଇ ଯେ ସତ୍ୟଧର୍ମେ ରହି ।
ଆରେ ପୁତ୍ରେ ଧ୍ୟାନଯୋଗେ ତପସ୍ୟା କରିବ
ତେବେ ଏ ଘୋର ସଂସାରୁ ଉଦ୍ଧାର ପାଇବ ।
ଏହା ନାମ ପୁଣ୍ୟକର୍ମ କହିଲି ବୁଝାଇ
ପାପକର୍ମ କଥା ଏବେ ଶୁଣ ମନଦେଇ ।
ପତନର ମୂଳ ଏକା ପାତକ ନିରତେ
ବଳବନ୍ତ ବୀର୍ଯ୍ୟବନ୍ତ ହେଲେହେଁ ସେ ପୁତ୍ରେ ।
ବହୁତର ପରିବାର ଥିଲେହେଁ କି ହେବ
ଜାତିଆ କୁଳୀନ ଯେବେ ପାପ ଆଚରିବ ।
ସେ ପାପୀ ପୁରୁଷର ଏ ସବୁ ଯିବ ବ୍ୟର୍ଥ
ଗିରି ଦୁର୍ଗେ ଥିବା ପଛେ ବୃକ୍ଷହିଁ ଯେମନ୍ତ ।
ପବନ ଯୋଗେ ମୂଳରୁ ଉପୁଡ଼ି ପଡ଼ଇ
ପାପୀ ତେସନ ସମୂଳେ ଜାଣ ନାଶଯାଇ ।
ସବୁ ପ୍ରାଣୀଙ୍କି ସମାନ ଫଳଦିଏ ଧର୍ମ
ପ୍ରାଣୀଗଣେ ଏ ସଂସାରେ କରି ଯେଉଁ କର୍ମ ।
ଇହ ପରକାଳ କଷ୍ଟୁ ପାଆନ୍ତି ଉଦ୍ଧାର
ସେ ସତ୍ୟଧର୍ମଙ୍କୁ ଛାଡ଼ି ଅଛରେ କୁମର ।
ଅଧର୍ମକୁ ଆଶ୍ରାକଲ ସତ୍ୟଧର୍ମ ଛାଡ଼ି
ସତ୍ୟଧର୍ମ ତପସ୍ୟାକୁ ଦେଇ ତୁମ୍ଭେ ଏଡ଼ି ।
ପଡ଼ିଅଛ ଭୟଙ୍କର ଦୁଃଖ ପାରାବାରେ
ସତ୍ୟରେ ନିଷ୍ଠା ଥିବାର ସକଳ ଅମରେ ।
ତପ କାନ୍ତି ଶାନ୍ତି ପୁଣ୍ୟଆତ୍ମାଯେ ହୋଇଲେ
ଅଧର୍ମ ପାପ ତାହାଙ୍କୁ ଛୁଇଁ ନ ପାରିଲେ ।
ସତ୍ୟଧର୍ମ ତପ ପୁଣ୍ୟ ଯହିଁ ରହିଥାଇ
ବିରାଜନ୍ତି ହୃଷୀକେଶ ବିଷ୍ଣୁ ସ୍ୱୟଂ ତହିଁ ।
ବିଷ୍ଣୁ ଯହିଁ ଜୟ ତହିଁ ଏକଥା ନିଶ୍ଚୟ
ସନାତନ ବାସୁଦେବ ଦେବଙ୍କୁ ସହାୟ ।
ସତ୍ୟଧର୍ମଯୋଗୁଁ ଦେବେ ହୋଇଲେବିଜୟୀ
ବଳ ପଉରୁଷ ଆଦି ଥିଲେ ତୁମ୍ଭ ତହିଁ ।
ଥାଇକି ହେବ ତୁମ୍ଭର ତପ ସତ୍ୟ ନାହିଁ
ତେଣୁ ଯୁଦ୍ଧେ ହାରି ଡ଼ରେ ଅଇଲ ପଳାଇ ।
ବିଷ୍ଣୁ ସାହା ତପ ବଳ ଯୋଗୁଁ ଦେବେଜୟୀ
ବଳେ ଇନ୍ଦ୍ରପଦ ନେଇଥିଲ ଯେ ଛଡ଼ାଇ ।
ଦେହବଳ କଥାଯାକ ନୋହେ ବେଶିଦିନ
ଦେଖୁଦେଖୁ ଇନ୍ଦ୍ରପଦ ଗଲାରେ ନନ୍ଦନ ।

ପୂର୍ବ ତପ ଧର୍ମଫଳେ ସିନା ତୁମ୍ଭ ବଳ
ଇନ୍ଦ୍ରପଦ ସୁଖଭୋଗ ତେଣୁ ତୁମ୍ଭେ କଲ ।
ପାପଯୋଗୁଁ ତୁମର ସେ ବଳ କ୍ଷୟ ଗଲା
ତେଣୁ ଇନ୍ଦ୍ରପଦ ଭୋଗ ତୁମ୍ଭର ସରିଲା ।
ଏଣୁ କହୁଅଛୁଁ ତୁମ୍ଭେ ଯାଇଁ ତପ କର
ଯେ ତପସ୍ୟାବଳେ ଚିର ସୁଖଲଭେ ନର ।
ଜ୍ଞାନ ଧ୍ୟାନଯୋଗେ ରହ ତେଜି କଳିଦ୍ୱନ୍ଦ୍ୱ
ଶ୍ରୀବିଷ୍ଣୁ ସଙ୍ଗେ କଦାପି ନକର ବିବାଦ ।
ଏହାକଲେ ଏ ସଂସାରେ ବୋଲାଇବ ଧନ୍ୟ
ପାଇବ ପରମ ସିଦ୍ଧି ଆରେ ପୁତ୍ରଗଣ ।
ମହାତ୍ମା କଶ୍ୟପ ଏହାକହି ହେଲେ ତୁନି
ତେଜୋବନ୍ତ ଦାନବଯେ ବାପକଥା ଶୁଣି ।
ଭକତିରେ ପିତାପାଦେ ପ୍ରଣମି ଉଠିଲେ
ଆନସ୍ଥାନେ ମେଳହୋଇ ବସି ବିଚାରିଲେ ।
ହରିଣ୍ୟ କଶିପୁ ରାଜା କହିଲା ତାହାଙ୍କୁ
ମୁହିଁ ଯାଉଅଛି ଘୋର ତପ କରିବାକୁ ।
ହିରଣ୍ୟାକ୍ଷ ବୋଇଲା ମୁଁ ଘୋର ତପକରି
ତପବଳେ ସାଧିବି ମୁଁ ନିଶ୍ଚେ ତିନିପୁରୀ ।
ପାପକାରୀ ଗୋବିନ୍ଦକୁ ମାରିବି ସମରେ
ଦେବତାଙ୍କୁ ନାଶି ରାଜା ହେବି ସ୍ୱର୍ଗପୁରେ ।
ହିରଣ୍ୟ କଶିପୁ ନାତି ଦାନବ ଯେ ବଳି
ଆହେ ଦୈତ୍ୟରାଜଗଣ ତୁମ୍ଭେ ମହାବଳୀ ।
ବିଷ୍ଣୁର ବଇରୀ ହେଲେ ନିଶ୍ଚୟ ମରଣ
ଦାନ ଧର୍ମ ତପ ପୁଣ୍ୟ ବଳେ ନରଗଣ ।
ଯାଗ ଯଜ୍ଞକରି ହୃଷୀକେଶ ଆରାଧନ୍ତି
ଇହଲୋକେ ପରଲୋକେ ମହାସୁଖ ପାନ୍ତି ।
ହିରଣ୍ୟ କଶିପୁ କହେ ବଳିକଥା ଶୁଣି
ବିଷ୍ଣୁ ପୂଜା ନକରିବି ଏ ମୋ ସତ୍ୟବାଣୀ ।
ମରଣଠାରୁ ଅଧିକ ଶତ୍ରୁପାଦ ସେବା
ପ୍ରକୃତିଛଡ଼ା ମୁଁ କେଭେ ନୋହିବିରେ ବାବା ।
ପଣ୍ଡିତେ ଶାସ୍ତ୍ରେ ଏହାକୁ କହନ୍ତି ଯେ ମନ୍ଦ
ଦାନବ ସ୍ୱଭାବ ବାବୁ ଅଟେ କଳିଦ୍ୱନ୍ଦ୍ୱ ।
ମୁଁ ଏକାନୁହେଁରେ ବାବୁ ଏ ଦାନବଯେତେ
ଶରଣହିଁ ନ ପଶିବେ ବିଷ୍ଣୁ ପାଦଗତେ ।
ସେ ପିତାମହଙ୍କୁ ବଳି ପୁଣି ଯେ କହଇ
ଧର୍ମଶାସ୍ତ୍ରେ ରାଜନୀତି ଏରୂପେ ଅଛଇ ।

ତତ୍ତ୍ୱଜ୍ଞାନୀ ମୁନିଙ୍କର ମନ୍ତ୍ରଣା ଏମନ୍ତ
ନିଜ ତହୁଁ ଶତ୍ରୁ ଯେବେ ହୁଏ ବଳବନ୍ତ ।
ବୁଝିପାରି ତାର ପାଦେ ପଶିବ ଶରଣ
ଦୀପ ଛାୟା ଆଶ୍ରାକରେ ଅନ୍ଧାର ଯେସନ ।
ଦୀପ ଲିଭିଗଲେ ପୁଣି ବଳେ ବସେ ମାଡ଼ି
ତେସନ ଗୁପତେ ରହି ଶତ୍ରୁ ସଙ୍ଗେ ଲଢ଼ି ।
ସ୍ନେହ ଦେଖାଇ ଶତ୍ରୁକୁ କରାଇ ପ୍ରସନ୍ନ
ଘଉଡ଼ାଇ ଦେବ ଦେଖି ତାର ତେଜହୀନ ।
ଆହେ ନୃପବର ଦୈତ୍ୟ ଦାନବ ଅସୁର
ଦେବତାଙ୍କ ସଙ୍ଗେ କଲେ ଏମନ୍ତ ବେଭାର ।
ଧର୍ମ ଅନୁସାରେ ସ୍ନେହ ଦେଖାଇଲେ ଆଗ
ପଛେ ଇନ୍ଦ୍ରପଦ ନେଲେ ପାଇଣ ସୁଯୋଗ ।
କଶ୍ୟପ ଯେ ଦେଇଛନ୍ତି ଭଲ ସୁବିଚାର
ତପ ଧର୍ମ କରି ତୋଷ ଦେବ ଚକ୍ରଧର ।
ପ୍ରତାପୀ ଦଇତ ସେହି ହରିଣ୍ୟ କଶିପୁ
ବଳିକଥା ଶୁଣି ତାର ଦେହେ ଲାଗେ ରିପୁ ।
ବୋଇଲାରେ ନାତି ମୁହିଁ ଆପଣାର ମାନ
କିଞ୍ଚିତେ ଭାଙ୍ଗି ନପାରେ ଏ ସତ୍ୟ ବଚନ ।
ମହାଜନମାନଙ୍କରମାନ ଅଟେ ଧନ
ପ୍ରାଣପଣେ ରଖିବି ମୁଁ ଏ ମୋହର ମାନ ।
ଯେତେକ ବନ୍ଧୁ ବାନ୍ଧବ ତାର ତହିଁଥିଲେ
ହିରଣ୍ୟକଶିପୁ ଆଗେ ଏମନ୍ତ ବୋଇଲେ ।
ତୁମ୍ଭେତ ନୀତି ପଣ୍ଡିତ ସବୁରି ରାଜନ
ବଳି କହିଲା ଯେବଣ ପୁଣ୍ୟ କଥାମାନ ।
ସେ ସମସ୍ତ ଅତି ପ୍ରିୟ ହେବ ଦେବଙ୍କର
ଇନ୍ଦ୍ରର ମାନ ବଢ଼ିବ ତହିଁରେ ଆବର ।
ଦାନବଙ୍କ ଦେହେ ମହା ଭୟହେବ ଜାତ
ସମସ୍ତେ ଚାଲ କଠୋର ତପେ ହେବାରତ ।
ତପବଳେ ଦେବତାଙ୍କୁ ସଂଗ୍ରାମେ ସଂହାରି
ବଳେ ଇନ୍ଦ୍ରପଦ ନେବା ବିଷ୍ଣୁ ଯିବ ହାରି ।
ଏରୂପେ ବିଚାରକରି ମହାସୁର ଗଣ
ବିଷ୍ଣୁ ଆମ୍ଭ ରିପୁବୋଲି ମନରେ ଧରିଣ ।
ଗିରିଦୁର୍ଗେ ଘୋର ବନେ କନ୍ଦର ଶିଖରେ
ମନେ ବଇରାଗପାଇ ଦାନବେ ଅସୁରେ ।
ବଇରାଗୀ ହୋଇ କାମକ୍ରୋଧ ଲୋଭ ତେଜି
ନିରାହାରେ କ୍ଲେଶ ସହି ଘୋରତପେ ମଜ୍ଜି ।
ହରି ହରି ବୋଲ ଭାଇ ଦୁଃଖ ଯାଉ ଦୂର
ଶରଣ ଶ୍ରୀ ଗୋପୀନାଥ ଅଚ୍ୟୁତ ପୟର ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ଦୈତ୍ୟ
ତପଶ୍ଚର୍ଯ୍ୟା ବର୍ଣ୍ଣନଂ ନାମ
ଦଶମୋଽଧ୍ୟାୟଃ ।



## ଏକାଦଶ ଅଧ୍ୟାୟ

### ସୁବ୍ରତ ଚରିତ

ଋଷିଗଣ ବୋଇଲେ ହେ ସୁତ ମହାମୁନି
ସର୍ବଜ୍ଞ ପୁରୁଷ ତୁମ୍ଭେ ଅଟ ମହାଜ୍ଞାନୀ ।
ଦୈତ୍ୟ ଦାନବଙ୍କ କଥା କହିଲ ବୁଝାଇ
ସୁବ୍ରତ ଚରିତ କହ ହେ ମୁନି ଗୋସାଇଁ ।
ମହାତମା ସୁବ୍ରତ ଯେ କାହାର କୁମର
ତାହାର ଯେ କୁଳଗୋତ୍ର କହିବ ଆବର ।
କିରୂପେ ସେ ତପକଲା ହରିଙ୍କି ସେବିଲା
ସୁତମୁନି କହିଲେତ ପଚାରିଲା ଭଲା ।
ଜ୍ଞାନବଳେ ଯାହା ମୋତେ ଜଣା ଋଷିଗଣ
ତାହା ସର୍ବ ତୁମ୍ଭଆଗେ କରୁଛୁଁ କୀର୍ତ୍ତନ ।
ତୁମ୍ଭ ଆଗେ କହିବି ମୁଁ ବିଷ୍ଣୁ ପରସାଦେ
ଶୁଣିଲେ ଯେ ନପଡ଼ିବ କେଭେ ଅପମାଦେ ।
ମହାତମା ସେ ସୁବ୍ରତ ପରମ ବୈଷ୍ଣବ
ଶୁଣିଲେ ତାର ଚରିତ ପାପ ଛାଡ଼ିଯିବ ।
ରେବତୀରେ ପାପହର କ୍ଷେତ୍ର ଏକ ଥିଲା
ବାମନ ତୀର୍ଥ ତାହାର ନାମ ଯେ ହୋଇଲା ।
କଉଣସି କୁଳେ ଜାତ ଏକ ଦ୍ୱିଜବର
ତାର ନାମ ସୋମଶର୍ମା ଦରିଦ୍ର ଆବର ।
ଅପୁତ୍ରିକ ଅଟଇ ସେ ଦୁଃଖେ ହରେ ଦିନ
କି ଉପାୟ କଲେ ହେବ ପୁତ୍ର ଆଉ ଧନ ।
ସର୍ବଦା ଏହି ଚିନ୍ତାରେ ଦିନ ନ ସରଇ
ତାହାର ଭାରିଯା ନାମ ସୁମନା ଅଟଇ ।
ପତିବ୍ରତା ନାରୀ ସେହି ଏକ ଦିନକର
ସ୍ୱାମୀକି ଦେଖିଲା ଅତି ଚିନ୍ତାରେ କାତର ।
ବୋଇଲା ବସି କି ଚିନ୍ତାକର ସ୍ୱାମୀ ମନେ
ମାୟାମୋହେ ପଡ଼ି ନାଥ ବସିଛ ଅଜ୍ଞାନେ ।

ଆହେ ମହାମତି ମନୁ ଚିନ୍ତା ଦୂର କର
ମୋ ଆଗରେ କହ ସ୍ୱାମୀ କି ଚିନ୍ତା ତୁମ୍ଭର ।
ଦେହ ସୁସ୍ଥକର ସ୍ୱାମୀ ମନ କର ଶାନ୍ତି
ଚିନ୍ତା ଦେହରୁ ରକତ ଶୋଷେ ଦିବାରାତି ।
ଚିନ୍ତା ଯାର ନାହିଁ ତାର ଦିନ ସୁଖେ ଯାଇ
ଭାରିଯାର କଥା ଶୁଣି ସୋମଶର୍ମା କହି ।
ଚିନ୍ତା ଯେ ଦୁଃଖର ମୂଳ ଜାଣେ ଭଲକରି
ତଥାପି ସେ ଚିନ୍ତା ଛାଡ଼ି ନପାରେ ସୁନ୍ଦରୀ ।
କି ନିମନ୍ତେ ଚିନ୍ତାକରେ କହୁଛି ତୋ ଆଗେ
କି ପାପ ମୁଁ କରିଥିଲି ସେହି ମନ୍ଦଭାଗ୍ୟେ ।
ଅପୁତ୍ରିକ ହେଲି ପୁଣି ନିଧନୀ ଆବର
ସେହି ଚିନ୍ତାରେ ନିରତେ ଅସୁସ୍ଥ ଶରୀର ।
ସୁମନା କହିଲା ସ୍ୱାମୀ କହୁଛି ଯା ଶୁଣ
ଲୋଭ ସଂସାରେ ପାପର ବୀଜବୋଲି ଜାଣ ।
ମୋହ ସେ ବୀଜର ମୂଳ ଅସତ୍ୟ ତା କନ୍ଧ
ମାୟା ତାର ବଡ଼ ଡାଳ ପତ୍ରଦମ୍ଭ ଛନ୍ଦ ।
କୁବୁଦ୍ଧି ସେ ବୃକ୍ଷ ପୁଷ୍ପ ତା ବାସନା ମିଛ
ଅଜ୍ଞାନ ତହିଁର ଫଳ କପଟ ତା ତୁଚ୍ଛ ।
ପାଷାଣ୍ଡ ବେଭାର ଚୋରୀ ପରଶ୍ରୀକାତର
ଏମନ୍ତେ ନାନା ପ୍ରକାର ଫଳ ସେ ବୃକ୍ଷର ।
କ୍ରୂର କୁଟିଳ ପାପିଷ୍ଠ ରୂପତାର ଜାଣ
ଫଳମାନଙ୍କର ରସ ଅଧର୍ମ ଅଜ୍ଞାନ ।
ପାଣିଫୋଟକା ତହିଁରେ ତୃଷ୍ଣା ଯେ ଅଟଇ
କ୍ଷୁଧା ଆଳବାଳେ ସଦା ଶୁଷ୍କ ସେ ଦିଶଇ ।
ଅଶ୍ରଦ୍ଧା ତହିଁରେ ଦ୍ରବ୍ୟ ଆହେ ପ୍ରାଣନାଥ
ସେ ଲୋଭ ବୃକ୍ଷର ଫଳ ସୁଫଳ ଯେମନ୍ତ ।
ଅଧର୍ମ ତହିଁ ଉତ୍କଟ ସୁରସ ତେସନ
ହିଂସା ଅନୁରାଗେ ପୁଣି ହୁଅଇ ବର୍ଦ୍ଧନ ।
ଜିହ୍ୱାକୁ ଲାଗେ ସୁସ୍ୱାଦୁ ଅଧିକ ମଧୁର
ସେ ବୃକ୍ଷଛାଇରେ ରହେ ସନ୍ତୋଷଯେ ନର ।
ସେ ପାଚିଲା ଫଳ ନିତ୍ୟ କରଇ ଆହାର
ଅଧର୍ମେ ପୋଷି ହେବାରୁ ସନ୍ତୋଷ ତାହାର ।
ତା ଯୋଗୁଁ ନିଶ୍ଚେ ନରକେ ପଡ଼ଇ ସେ ଯାଇ
ଏଣୁ ଚିନ୍ତା ଲୋଭେ ମନ କଦାପି ନଦେଇ ।

ଧନପୁତ୍ର କଳତ୍ରାଦି ଚିନ୍ତାଛାଡ଼ କାନ୍ତ
ମୂର୍ଖ ଯିବା ପଥେ କେଭେ ନଯାଇ ପଣ୍ଡିତ ।
ମୂର୍ଖ ନିତି ଭାଳୁଥାଇ ଧନହେଉ ମୋର
ଉତ୍ତମ ଭାରିଯା ପୁତ୍ର ହୁଅନ୍ତୁ ଆବର ।
ମୂର୍ଖଲୋକ ମୋହମାୟା ଜାଲରେ ପଡ଼ଇ
ଦିବାରାତି ଭାଳି ଭାଳି ଦେହ କ୍ଷୟ ଯାଇ ।
ଭାଳୁଁ ଭାଳୁଁ କ୍ଷଣେ କ୍ଷଣେ ଯାଏ ଚଇତନ୍ୟ
ପୁଣି ପୁଣି ଚିନ୍ତା ଦୁଃଖେ ହୁଅଇ ଆଚ୍ଛନ୍ନ ।
ଯେକ୍ଷଣେ ଚୈତନ୍ୟପାଏ ସେକ୍ଷଣି ତା ସୁଖ
ଚିନ୍ତା ମୋହ ଛାଡ଼ ନାଥ ନହୁଅ ବିମୁଖ ।
କାହାର କିଛି ସମ୍ବନ୍ଧ ଏ ସଂସାରେ ନାହିଁ
ଦାରା ପୁତ୍ର ବନ୍ଧୁ ମିତ୍ର ପିତା ମାତା ଯେହି ।
ଭିନ୍ନ ସମ୍ବନ୍ଧରେ ବନ୍ଧା ଏମାନେ କେବଳ
ସମୟ ପଡ଼ିଲେ ନିଶ୍ଚେ ଛାଡ଼ିବେ ସକଳ ।
ମୋର ମୋର ଯାକୁ କହ ସେ ନିଶ୍ଚୟ ପର
ମିଛ ମୋହମାୟା ଜାଲେ ପଡ଼ିଣ ନ ମର ।
ଏମନ୍ତ ଶୁଣି ବୋଇଲା ସୋମଶର୍ମା ଦ୍ୱିଜ
ଆଗୋ ପ୍ରିୟେ ବୁଝାଇଲ ଯେଉଁ ଜ୍ଞାନ ଆଜ ।
ସେଥିରେ ମୋର ସଂଶୟ ଉପୁଜିଲା ପୁଣି
ପୁତ୍ର ମିତ୍ର ବନ୍ଧୁ ଭୃତ୍ୟ ଆଦି ଯେ ଘରଣୀ ।
ଏହାଙ୍କ ତହିଁ ସମ୍ବନ୍ଧ କିରୂପେ ତା କୁହ
ସୁମନା ବୋଲେ କହୁଛି ଶୁଣ ତୁମେ ପ୍ରିୟ ।
ପୁତ୍ର ଆଦି ସମ୍ବନ୍ଧରେ ଅଛି ଭେଦ ଚାରି
ଋଣ ଲାଭ ଉଦାସୀନ ନ୍ୟାସ ଅପହାରୀ ।
ପିତା ମାତା ଭୃତ୍ୟ ଦାରା ବାନ୍ଧବ ସ୍ୱଜନ
ଆପଣା ସମ୍ବନ୍ଧ ଧରି ଭୂମିରେ ଜନମ ।
ଋଣ ସମ୍ବନ୍ଧ ଅଛଇ ତା ମଧ୍ୟେ କାହାର
ଅଛନ୍ତି ତା ମଧ୍ୟେ କେହିକେହି ନ୍ୟାସଚୋର ।
ଲାଭପ୍ରଦ ହୁଅନ୍ତି ବା ତା ମଧ୍ୟରେ କେହି
କେହି ତାହା ମଧ୍ୟେ ଉଦାସୀନ ହୋଇ ରହି ।
*ନ୍ୟାସ ଯେ ସ୍ୱାମୀ ଅଟଇ ତାର ରୂପଗୁଣ
ସେ ସକଳ ଘେନିପୁତ୍ର ହୁଅଇ ଜନମ ।
ଯେ ନ୍ୟାସଚୋରୀ କରଇ ପୁଣି ତାର ଘରେ
ନିଶ୍ଚେ ଯାଇ ଜନମଇ ଏଥିଅନନ୍ତରେ ।

* ସନ୍ୟାସ — ସଞ୍ଚି ରଖିଥିବା ଦ୍ରବ୍ୟ

ନ୍ୟାସଚୋରୀରୁ ଯେବଣ ଦୁଃଖ ଉପୁଜଇ
ତାହାକୁ ଦେଇ ପୁଣି ସେ ତହୁଁ ଚାଲିଯାଇ ।
ନ୍ୟାସ ସ୍ୱାମୀହୋଏ ଜାଣ ନ୍ୟାସଚୋର ପୁତ୍ର
ରୂପଗୁଣ ସୁଲକ୍ଷଣେ ହୁଅଇ ଭକତ ।
ଦିନେ ଦିନେ ସେହି ପୁତ୍ର ଭକତି ଦେଖାଇ
ପ୍ରିୟ ମଧୁର ବଚନ ସର୍ବଦା କହଇ ।
ବହୁତ ସ୍ନେହ ଦେଖାଇ ନିଜଦ୍ରବ୍ୟ ହରେ
ପ୍ରୀତି ଉପୁଜାଇ ତାର ମନେତୋଷ କରେ ।
ଯେଉଁ ଦୁଃଖ ଦେଇଥିଲା ନ୍ୟାସ ହରି ପୂର୍ବେ
ଗୁଣବନ୍ତ ପୁତ୍ରରୂପେ ଜନମି ସେ ଏବେ ।
ମରଇ ସେ ଦୁଃଖଦେଇ ଅଳପାୟୁ ହୋଇ
ପିତାମାତା କାନ୍ଦି କାନ୍ଦି ଦିନ ନ ସରଇ ।
ଏରୂପେ ଜନମି ପୁତ୍ର ରୂପେ ବାରମ୍ବାର
ଦୁଃଖଦେଇ ମରୁଥାଇ ଜାଣ ପ୍ରାଣେଶ୍ୱର ।
ପିତା ମରିବାର ଦେଖି ଗୁଣିକ ନନ୍ଦନ
ହା ପୁତ୍ର ହା ପୁତ୍ର କହି କରନ୍ତେ ରୋଦନ ।
ପିତାକୁ ସେ ପୁତ୍ର ଦିଏ ହସରେ ଉଡ଼ାଇ
କେ କାହାର ପୁତ୍ର ପିତା କେ କାହାର ହୋଇ ।
ମିଛ ମାୟାରେ ପଡ଼ିଣ କରୁଛ ରୋଦନ
ଏଲୋକ ପୂର୍ବେ ଯେ ନେଇଥିଲା ମୋର ଧନ ।
ସଞ୍ଚି ରଖିଥିଲି ମୋର ଉପକାର ପାଇଁ
ସେ ଦ୍ରବ୍ୟ ଏ ମୋର ଚୋରିକରି ଘେନିଯାଇ ।
ଦ୍ରବ୍ୟ ନାଶଗଲା ମୋର ପ୍ରାଣର ଯେ ନଗଲା
ତହିଁରେ ମନରେ ମହାକଷ୍ଟ ଉପୁଜିଲା ।
ଦୁଃଖ ଭୋଗକରି କରି କଷ୍ଟେ ଗଲା ପ୍ରାଣ
ଆଜି ମୁହିଁ ମୋର ସେହି ଦ୍ରବ୍ୟକୁ ଘେନିଣ ।
ଯାଉଛି ସେରୂପେ ନାନା ଦୁଃଖଦେଇ ତୋତେ
କେ ମୋର ପିତା ମୁଁ କାର ପୁତ୍ର ଏ ଜଗତେ ।
ଏ ମୋର ପିତା ନୁହେଁ କାହା ପୁତ୍ର ମୁଁ ନଥିଲି
ଏହି ଦୁରାତମାକୁ ମୁଁ ପିଶାଚ ଯେ କଲି ।
ଏହା କହି କହି ପୁତ୍ର ହସି ହସି ଯାଏ
ଏରୂପେ ପୁତ୍ର ପିତାକୁ ନାନାକଷ୍ଟ ଦିଏ ।
ନ୍ୟାସହାରୀ ପିତାପୁତ୍ର ଏରୂପେ ହେ କାନ୍ତ
ସମ୍ବନ୍ଧରେ ନାନାଦୁଃଖ କେବଳହିଁ ଜାତ ।
ଏଥିପାଇଁ ଚିନ୍ତା ତୁମ୍ଭେ କର ଅକାରଣ
ଶରଣ ଶ୍ରୀ ଗୋପୀନାଥ ଅଚ୍ୟୁତ ଚରଣ ।

ଇତି ଶ୍ରୀପଦ୍ମପୁରାଣେ ଭୂମିଖଣ୍ଡେ ସୁବ୍ରତୋ-
ପାଖ୍ୟାନଂ ନାମ ଏକାଦଶୋଽଧ୍ୟାୟଃ ।



## ଦ୍ୱାଦଶ ଅଧ୍ୟାୟ

### ଋଣସମ୍ବନ୍ଧରେ ରିପୁ ଲାଭପ୍ରଦ ଓ ଉଦାସୀନ ପୁତ୍ର ଲକ୍ଷଣ

କାନ୍ତକୁ ପୁଣି କହଇ ସୁମନା ସୁନ୍ଦରୀ
ଋଣ ସମ୍ବନ୍ଧରେ କଥା ଶୁଣ କାନଡ଼େରି ।
କରଜ ଆଣି ନଶୁଝି ଯେ ଜନ ମରଇ
ସେହି ମହାଜନ ତା ପୁତ୍ରରୂପେ ଜନମଇ ।
ଭାଇ ବା ଭାରିଯା ପିତା ମିତ୍ର ହୁଏ ତାର
ତାର ଅନିଷ୍ଟ ଚିନ୍ତାରେ ଥାଇ ନିରନ୍ତର ।
କାହାରି ଗୁଣର ନଦେଖେ ସେ କ୍ରୂର ନିଷ୍ଠୁର
ସର୍ବଦା ନିଷ୍ଠୁର କହେ ସ୍ୱଜନେ ତା ପର ।
ଆପେ ନିତି ମିଠାଦ୍ରବ୍ୟ ଭକ୍ଷଣ କରଇ
ନାନାଭୋଗ ଉପଭୋଗେ ନିରନ୍ତରେ ଥାଇ ।
ପଶାଖେଳରେ ନିରତେ ଥାଇ ଆସକତ
ବଳେ ଘରେ ପଶେ ଚୋରିକରେ ଅବିରତ ।
ପରର ଦ୍ରବ୍ୟ ବଳରେ ଛଡ଼ାଇ ଭୁଞ୍ଜାଇ
ବାରଣକଲେ ରାଗରେ ଗାଳି ମନ୍ଦଦେଇ ।
ପିତା ମାତାଙ୍କର ନିନ୍ଦାକରେ ପ୍ରତିଦିନ
ଭୟ ଦେଖାଏ କହିଣ ନିଷ୍ଠୁର ବଚନ ।
ଏରୂପେ ତା ଦ୍ରବ୍ୟ ଭୋଗକରି ସୁଖେଥାଏ
ବାଳକାଳୁ ସେ ଦାରୁଣ ପ୍ରକୃତିକି ବହେ ।
ଜାତ କର୍ମାଦିରେ ପିତା ଦ୍ରବ୍ୟ ନିଏ ହରି
ବିଭାହେଲେ ନାନାରୂପେ ତା ବେଭାର କରି ।
ବୋଲଇ ଏ ଦ୍ରବ୍ୟଯାକ ସକଳ ମୋହର
ଜମିବାଡ଼ି ଗୋରୁ ଗାଈ ପୁଣି ଘରଦ୍ୱାର ।
ମୋହର ମୋହର କହି ଭୋଗ କରୁଥାଇ
ପିତା ମାତା କହିଲେଯେ ତାଙ୍କୁ ଗାଳିଦେଇ ।
ଠେଙ୍ଗା ବାଡ଼ିଧରି କରେ ଦାରୁଣ ପ୍ରହାର
ପିତାମଲେ ମାତାଠାରେ ନିଷ୍ଠୁର ବେଭାର ।
ବାପର ଶ୍ରାଦ୍ଧ ନକରେ ସଞ୍ଚିବ ଧନ
ସଂସାରେ ଏରୂପେ ପୁତ୍ର ହୁଅନ୍ତି ଜନମ ।

ରିପୁ ପୁତ୍ର କଥା ଶୁଣ କହୁଛି ହେ କାନ୍ତ
ବାଳକାଳୁ ପିତା ମାତା ଶତ୍ରୁ ସେହି ସୁତ ।
ଖେଳ ଖେଳୁ ଖେଳୁ ପିତା ମାତାଙ୍କୁ ମାରଇ
ପୁଣି ପୁଣି ମାଡ଼ମାରି ହସି ହସି ଯାଇ ।
ରାଗି ପୁଣି ପିତାମାତା ପାଶେ ଆସେ ଧାଇଁ
ପୁଣି ପୁଣି କଟୁକହି ନିତି ରାଗୁଥାଇ ।
ଏମନ୍ତେ ସେ ଦୁଷ୍ଟପୁତ୍ର ନିତି ଶତ୍ରୁପଣେ
ବାଳଯୁବା ପ୍ରାଏ ପୂର୍ବ ବଇର ଶୋଧନେ ।
ପିତାମାତା ମାରି ଭୋଗକରେ ତାରଶିରୀ
ପୂର୍ବେ ତା ସମ୍ପଦ ନେଇଥିବାରୁ ସେ ହରି ।
ଲାଭପ୍ରଦ ପୁତ୍ରକଥା ଶୁଣ ଆନେ ନାଥ
ପ୍ରିୟକାରୀ ପୁତ୍ରେ ଯେବେ ହୁଅନ୍ତିଟି ଜାତ ।
ପିତା ମାତାଙ୍କର ମନ ଆନନ୍ଦ କରାନ୍ତି
ବାଳକାଳେ ଯେଉଁ ଯେଉଁ ଖେଳ ସେ ଖେଳନ୍ତି ।
ତହିଁରେ ପିତାମାତାଙ୍କ ଆନନ୍ଦ ଉପୁଜେ
ଭକ୍ତି ରଖିଥାନ୍ତି ପିତା ମାତା ପାଦକଞ୍ଜେ ।
ଲଳିତ ବଚନ କହି ମନ ତୋଷୁଥାନ୍ତି
ପିତା ମାତା ଆଜ୍ଞାକାରୀ ହୋଇ ଦିବାରାତି ।
ସେବା କରୁଥାନ୍ତି ପିତାମାତାର ଚରଣ
ଯେତେବେଳେ ପିତାମାତା ଲଭନ୍ତି ମରଣ ।
ପିତାମାତା ସ୍ନେହେ ଦୁଖେ କରନ୍ତି ରୋଦନ
ତାଙ୍କପାଇଁ କରନ୍ତି ଯେ ଶ୍ରାଦ୍ଧ ପିଣ୍ଡଦାନ ।
ପିତୃଋଣୀ ହୋଇ ନିତ୍ୟ ଭୋଜନ ଦିଅନ୍ତି
ହେ କାନ୍ତ ଏରୂପେ ପିତାମାତା ସୁଖ ପାନ୍ତି ।
ଏ ପୁତ୍ରେ ସୁପୁତ୍ର ମଧ୍ୟେ ହୁଅନ୍ତି ଯେ ଗଣା
ଏପରା ପୁତ୍ରଙ୍କ କଥା ଜାଣ ଜଣାଶୁଣା ।
ଉଦାସୀନ ପୁତ୍ରକଥା ଶୁଣ ପ୍ରାଣେଶ୍ୱର
ଉଦାସ ହୋଇଣ ଦିନ ହରେ ଯେ କୁମର ।
ଦାନ ନଦିଅଇ ଆପେ କିଛି ନ ଘେନଇ
କାହାରି ଉପରେ କିଛି କ୍ରୋଧ ନ କରଇ ।
ଧନ ଦାରାଦିରେ ପୁଣି ନଥାଇ ସନ୍ତୋଷ
ସବୁ ବିଷୟ ଏରୂପେ ତାହାର ଉଦାସ ।
ଭୋ ସ୍ୱାମୀ ସବୁକୁଥା ମୁଁ କହିଲି ବୁଝାଇ
ପୁତ୍ରଙ୍କର ରୀତିଗତ ଏମନ୍ତ ଅଟଇ ।
ପିତାମାତା ଦାରାବନ୍ଧୁ ବାନ୍ଧବ ଯେ ଭୃତ୍ୟ
ଅଶ୍ୱଗଜ ଗୋରୁଗାଈ ସ୍ୱଜନ ଅମାତ୍ୟ ।

ସେ ରୂପେ ଋଣ ସମ୍ବନ୍ଧୀ ଜାଣିବ ସକଳ
ଜାଣିଶୁଣି ନାଥ କିମ୍ପା ହେଉଛ ବିକଳ ।
ଏଣୁ କାନ୍ତ ଆପଣାର ମନେରଖ ଶାନ୍ତି
ଏରୂପେ ତୁମ୍ଭେ ବିଚାର କର ଦିବାରାତି ।
ପୂର୍ବେ କାହାଠାରୁ କିଛି କରିନାହିଁ ଋଣ
ସଞ୍ଚିଥିବା ଦ୍ରବ୍ୟ ଚୋରି କରିନାହିଁ ପୁଣ ।
ପୂର୍ବ ଜନ୍ମରେ ମୋହର ଶତ୍ରୁ କେହିନାହିଁ
ଏମନ୍ତ ଭାଳି ନିଶ୍ଚିନ୍ତ ହୋଇଥାଅ ରହି ।
କେ କାହା ଭାରିଯା ପୁତ୍ର ଅଟେ କେ କାହାର
ମିଛମାୟାରେ ବୋଲନ୍ତି ମୋହର ମୋହର ।
କେହି କାହାର ସ୍ୱଜନ ବାନ୍ଧବ ନୁହଇ
କେହି କାହା ଭୃତ୍ୟକେହି ନୁହେଁ କାହାଭାଇ ।
ଘୋର ମାୟାମୋହମୟ ହୁଅଇ କଟାହେ
ନପଡ଼ ଭୋ ନାଥ ଆଉ ତୁମ୍ଭଙ୍କୁ ମୁଁ କହେ ।
ଧନ ଦେଲାନାହିଁ ବୋଲି ନ ହୁଅ କାତର
ଧନ ଅରଜିବା ଚିନ୍ତା ବେଗେ ଦୂର କର ।
ଯହୁଁ ଯାହା ମିଳିବାର ଥିବ ତା ମିଳିବ
ଗଗନରୁ ଯାହାପାଇଁ ଯେ ଦ୍ରବ୍ୟ ଖସିବ ।
ତାର କରଗତ ନିଶ୍ଚେ ହୋଇବ ସେ ଆସି
ଭୋ ସ୍ୱାମୀ ମନମଧରେ ବିଚାର ତା ବସି ।
ଖସିବା ପଡ଼ିବାସ୍ଥାନ ବିନେ ନାହିଁ ସ୍ଥାନ
ଅତି ଯତନେ ମାନବେ ସଞ୍ଚୁଥାନ୍ତି ଧନ ।
ଆପଣାର ଧନ କରି ଜଗି ବସିଥାଇ
ଆପେ ଯହିଁକି ଗମଇ ସଙ୍ଗେ ତାହାନେଇ ।
ସେ ଧନକୁ ଛାଡ଼ି କାହିଁ ନପାରଇ ରହି
ଯାହା ପାଇବାର ଥାଏ ତାହା ପାଏ ତହିଁ ।
ବହୁତ ଯତନେ ଧନ ନ ମିଳେ ଅଧିକ
ଏଣୁ ବେଶୀ ଧନ ଚିନ୍ତାକରେ ଅନର୍ଥକ ।
ଦାରାପୁତ୍ର ଆଦି କେହି ନୁହନ୍ତି କାହାରି
ସବୁରି ସଙ୍ଗେ ସମ୍ବନ୍ଧ ଅଛଇ ସବୁରି ।
ଏ ସଂସାରେ ପାପୀନରେ ମୋହମାୟା ମୋହେ
ତେଣୁ ତା ମନ ସର୍ବଦା ଥାଇ ନିଜଗୃହେ ।
ନିରତେ ସେ ବୋଲୁଥାଇ ମୋହର ମୋହର
ମୋର ପୁଅ ଝିଅ ସ୍ତିରୀ ଭୃତ୍ୟହିଁ ଆବର ।
ଭୋସ୍ୱାମୀ ମିଛ ମାୟାରେ ବନ୍ଧନ ସକଳ
ଅକାରଣେ ସ୍ୱାମୀ ଆଶ୍ରାକର ଚିନ୍ତାନଳ ।

ଭରିଯା ଯହୁଁ ଏରୂପେ କହିଲା ବୁଝାଇ
ସବୁକଥା ବୁଝିପାରି ସେଦିନ ଗୋସାଇଁ ।
ପଚାରିଲା ଭାରିଯା ଯେ ସୁମନାକୁ ପୁଣି
ଜ୍ଞାନପାଇ ସେହି ସୋମଶର୍ମା ଦ୍ୱିଜମଣି ।
ସତ କହିଲଗୋ ଭଦ୍ରେ ତୁଟିଲା ସନ୍ଦେହ
ଏବେ ଯାହା ପଚାରୁଛି ତାହା ତୁମ୍ଭେ କହ ।
ଉତ୍ତମ ପଣ୍ଡିତ ସାଧୁଜନେ ଯେ କହନ୍ତି
ବେଦଆଦି ନାନା ପୁରାଣରେ ବଖାଣନ୍ତି ।
ପୁତ୍ର ହୋଇଲେ ଆପଣା କୁଳରକ୍ଷା ହେବ
ପୁତ୍ରର ନିମନ୍ତେ ପ୍ରିୟ ଭାରିଯା କରିବ ।
ପୁତନାମ ନରକରୁ ପୁତ୍ର ଉଦ୍ଧାରଇ
ଧନ ଅରଜିବ ନିଜ ଦାରା ପୁତ୍ର ପାଇଁ ।
ଏଣୁ ଧନ ପୁତ୍ର ଚିନ୍ତା ଜାଣଗୋ ମୋହର
ଧନ ପୁତ୍ର ଆବଶ୍ୟକ ସଂସାରି ଲୋକର ।
ଏଣୁ ଯେ କିଛି ଉପାୟେ ଅରଜିବି ଧନ
ଉପୁଜାଇବି ଆବର ଏକଇ ନନ୍ଦନ ।
ସୁମନା କହିଲା ସ୍ୱାମୀ କହିଲ ଯା ସତ
ପୁତ୍ରଯୋଗୁଁ ଜୟ ହୁଏ ସକଳ ଜଗତ ।
ପୁତ୍ରହିଁ କେବଳ କୁଳ ଉଦ୍ଧାର କରତା
ସାଧୁପୁତ୍ର ଯୋଗୁଁ ସୁଖୀ ସଦା ପିତା ମାତା ।
ଜ୍ଞାନୀ ପଣ୍ଡିତେ ବାଞ୍ଛନ୍ତି ଗୁଣିକ ନନ୍ଦନ
ଗୁଣହୀନ ପୁତ୍ର ନ ବଞ୍ଛନ୍ତି କଦାଚନ ।
ଏଣୁ ଏକ ଗୁଣବନ୍ତ ପୁତ୍ର ହେବା ଭଲ
ନିର୍ଗୁଣ ବହୁତ ପୁତ୍ର କୁଳକୁ ଯେ ଶଲ ।
ଏକ ସାଧୁ ପୁତ୍ର କରେ କୁଳକୁ ଉଦ୍ଧାର
ପୂର୍ବେ ତୁମ୍ଭଙ୍କୁ କହିଛି ଆହେ ଦ୍ୱିଜବର୍ ।
ସମ୍ବନ୍ଧ ପୁତ୍ର ବୋଲନ୍ତି ଆବର ଯେତେକ
ସେ ସକଳ ସବୁଠାରେ ମିଳନ୍ତି ନିୟତ ।
ବହୁ ପୁଣ୍ୟବଳେ ଜାଣ ସାଧୁପୁତ୍ର ମିଳେ
ଉତ୍ତମ କୁଳ ମିଳଇ ବହୁ ପୁଣ୍ୟ ବଳେ ।
ବହୁତ ପୁଣ୍ୟେ ମିଳଇ ଉତ୍ତମ ଉଦର
ଏଣୁ କହୁଛି ହେ ସ୍ୱାମୀ ପୁଣ୍ୟକର୍ମ କର ।
ଜନମିଲେ ମୃତ୍ୟୁ ନିଶ୍ଚେ ମଲେ ନିଶ୍ଚେ ଜନ୍ମ
ପୁଣ୍ୟବଳେ ପାଇ ନିଶ୍ଚେ ସୁମୃତ୍ୟୁ ସୁଜନ୍ମ ।
ଭୋସ୍ୱାମୀ ଯେ ସୁଖ ଭୋଗ ପୁତ୍ର ଦାରା ଧନ
ଏ ଆଦି ସକଳ ପାଇ ପୁଣ୍ୟବନ୍ତ ଜନ ।
ପୁଣ୍ୟ ଏହାଙ୍କର ମୂଳ ଜାଣିଥାନେ କାନ୍ତ
ସୋମଶର୍ମା ଦ୍ୱିଜକହେ ଶୁଣିଣ ଏମନ୍ତ ।
ପୁଣ୍ୟ କରିବ କେମନ୍ତେକହ ପ୍ରିୟେ ମୋତେ
କାହାକୁ ସୁପୁଣ୍ୟ ବୋଲି କହନ୍ତି ଜଗତେ ।
ତାର ଚିହ୍ନ ବର୍ଣ୍ଣମାନ କହିବ ବୁଝାଇ
ସୁମନା ବୋଇଲା ସ୍ୱାମୀ ଶୁଣ ମନଦେଇ ।
କହିବି ଶୁଣିବାକଥା ତୁମ୍ଭ ଆଗେ କାନ୍ତ
ଆଗ ପୁଣ୍ୟକଥା କହେ ମୁଁ ତୁମ୍ଭ ଅଗ୍ରତ ।
ନର କିବା ନାରୀ ନିତ୍ୟ ଯେଉଁ ପୁଣ୍ୟକରି
ଲଭନ୍ତି ପୁତ୍ର ସମ୍ପତ୍ତି ଯଶ ଆଦି କରି ।
ସେ ପୁଣ୍ୟର ବର୍ଣ୍ଣ ଚିର୍ଣ୍ଣ କହୁଅଛି ଶୁଣ
ଦଶ ପ୍ରକାର ସେ ପୁଣ୍ୟ କାମ ଭିନ୍ନ ଭିନ୍ନ ।
ବ୍ରହ୍ମଚର୍ଯ୍ୟ ସତ୍ୟ ପଞ୍ଚଯଜ୍ଞ ଦାନ ବ୍ରତ
କ୍ଷମା ଶଉଚ ଅହିଂସା ଅସ୍ତେୟ ସୁଶୁକ୍ତ ।
ଏହି ଦଶଗୋଟି ଅଙ୍ଗ ଅଟେ ସେ ପୁଣ୍ୟର
ସମ୍ପୂର୍ଣ୍ଣ ଗ୍ରାସେ ଯେମନ୍ତେ ପୂରଇ ଉଦର ।
ସମ୍ପୂର୍ଣ୍ଣହୋଏ ଏହାଙ୍କ ଯୋଗୁଁ ଯେହ୍ନେ ପୁଣ୍ୟ
ଏ ଦଶଗୋଟି ଅଙ୍ଗରେ ଦେହପାଇ ଧର୍ମ ।
ଧର୍ମଦେହ ପାଇ ନର ବୋଇଲା ଯେ ଦେହୀ
ତ୍ରିବିଧି କର୍ମ କରନ୍ତି ଧର୍ମଆତ୍ମା ଯେହି ।
ସେ ତ୍ରିବିଧ କର୍ମଯୋଗେ ଧର୍ମ ଉପୁଜାନ୍ତି
ତହିଁରେ ସେ ଧର୍ମ ତାକୁ ପ୍ରସନ୍ନ ହୁଅନ୍ତି ।
ପ୍ରସନ୍ନ ହୋଇ କରନ୍ତି ତାକୁ ପୁଣ୍ୟ ଦାନ
ଯାହା ଯାହା ଚିନ୍ତାକରେ ଧର୍ମବନ୍ତ ଜନ ।
ତାହାର ପକ୍ଷେ ସେ ସବୁ ଦୁର୍ଲ୍ଲଭ ନୁହଇ
ଚିନ୍ତିଲା ମାତ୍ରେ ତକ୍ଷଣେ ତାହାକୁ ମିଳଇ ।
ଶୁଣି ସୋମଶର୍ମା ଦ୍ୱିଜକହେ ଗୋ ଭାମିନୀ
ଧର୍ମର ମୂର୍ତ୍ତି କେମନ୍ତ କହ ସୁବଦନୀ ।
ସେହିଁ ଧର୍ମ ମୂରତିର ଅଙ୍ଗ କିଏ କହ
ମୋହର ମନୁ ଯେମନ୍ତେ ଫିଟିବ ସନ୍ଦେହ ।
ଶୁଣିବାପାଇଁ ଗୋ ଶ୍ରଦ୍ଧା ବଳିଛି ମୋହର
ସୁମନା କହିଲା ଶୁଣ ତୁମେ ଦ୍ୱିଜବର ।
ଧର୍ମର ମୁରତି ଦେଖିନାହିଁ କେ ଜଗତେ
ଅଦୃଶ୍ୟ ବର୍ଣ୍ଣା ତାହାକୁ ବୋଲନ୍ତି ସମସ୍ତେ ।
ସତ୍ୟ ଆତ୍ମାଧର୍ମ ସୁରାସୁରେ ଅଗୋଚର
ଅତ୍ରି ଋଷିଭାର୍ଯ୍ୟା ଅନସୂୟା ନାମ ଯାର ।

ସେ ଋଷିର ବୀର୍ଯ୍ୟେ ଅନସୂୟା ଗର୍ଭେ ଜାତ
ତା ନାମ ଦୁର୍ବାସା ମୁନି ସେହି ଅତ୍ରି ପୁତ୍ର ।
ଆବର ଯେ ଦତ୍ତାତ୍ରେୟ ଅତ୍ରିର ନନ୍ଦନ
ଧର୍ମରୂପେ ଅବତାର ସେହି ଦୁଇଜଣ ।
ସେ ଦୁଇଭାଇ ଜନମି କଲେ ଯାଇଁ ତପ
ତପବଳେ ବେନିଭାଇ ଧର୍ମର ସ୍ୱରୂପ ।
ଇନ୍ଦ୍ର ଅପେକ୍ଷା ଅଧିକ ପୂଜା ତାହାଙ୍କର
ନିରାହାରେ ବସି ସେହି ବେନି ସହୋଦର ।
ଦଶ ସହସ୍ର ବରଷ ଭକ୍ଷିଲେ ପବନ
ଘୋର ତପେ ବନମଧ୍ୟେ ଅରଜିଲେ ଧର୍ମ ।
ଧର୍ମ ଦରଶନ ପାଇଁ ସେହି ବେନିଭାଇ
ପଞ୍ଚାଗ୍ନି ସାଧନକଲେ ନିରାହାରେ ଥାଇ ।
ତ୍ରଇକାଳିକି ସାଧନାକଲେ ରହି ଜଳେ
ତା ମଧ୍ୟରେ ଦତ୍ତାତ୍ରେୟ ଋଷି ଯତିଥିଲେ ।
ମୁନିବର ଦୁର୍ବାସା ଯେ ତପେ କୃଶହୋଇ
ଧର୍ମପ୍ରତି ତାହାଙ୍କର କ୍ରୋଧ ଉପୁଜଇ ।
ଭୋ ସ୍ୱାମୀ ମୁନିର କ୍ରୋଧ ଦେଖି ଧର୍ମ ଆପେ
ତପ ସ୍ଥାନରେ ମିଳିଲେ ଆପଣା ସ୍ୱରୂପେ ।
ସତ୍ୟ ବ୍ରହ୍ମଚର୍ଯ୍ୟ ଦୁହେଁ ହୋଇଲେ ବ୍ରାହ୍ମଣ
ତପ ଦ୍ୱିଜବର ରୂପେ କଲେ ଆଗମନ ।
ଦମ ବୁଦ୍ଧିମନ୍ତ ବିପ୍ରମଣି ରୂପେ ଆସେ
ମହା ବୁଦ୍ଧିମନ୍ତ ରୂପେ ନିୟମ ତା ପାଶେ ।
ଦାନ ଅଗ୍ନିହୋତ୍ର ରୂପ ଧରିଣ ଅଛନ୍ତି
ଭୋସ୍ୱାମୀ ଏରୂପ ଧରି ଏମାନେ ଆସନ୍ତି ।
ଅତ୍ରି ନନ୍ଦନ ଦୁର୍ବାସା ପାଖରେ ମିଳିଲେ
ଅହିଂସା ଯେ ଅକକ୍ଷଣା କ୍ଷମାଶାନ୍ତି ତୁଲେ ।
ଲଜ୍ଜାକୁ ଘେନି ଏମାନେ ସ୍ତିରୀରୂପ ଧରି
ଦୁର୍ବାସା ପାଶେ ମିଳିଲେ ତାହା ଦେଖିକରି ।
ବୁଦ୍ଧି ପ୍ରଜ୍ଞା ଶ୍ରଦ୍ଧା ଦୟା ମେଧା ସତକାର
ଶାନ୍ତି ପୁଣ୍ୟ ପଞ୍ଚଯଜ୍ଞ ବେଦ ଯେ ଆବର ।
ଅଙ୍ଗ ଉପାଙ୍ଗ ଯେ ଅଗ୍ନି ଆଧାନ ସହିତ
ଅଶ୍ୱମେଧ ଆଦି ଯଜ୍ଞ ପୁଣ୍ୟକର୍ମ ସତ ।
ନିଜ ନିଜ ରୂପଧରି ଦିଶିଲେ ସୁନ୍ଦର
ସବୁରି ରୂପ ଲାବଣ୍ୟ ଅତି ଚମତ୍କାର ।
ସବୁ ଆଭରଣେ ଅଙ୍ଗ ସବୁରି ମଣ୍ଡନ
ସବୁରି ଗଳା ଉତ୍ତମ ମାଳାରେ ଶୋଭନ ।

ସର୍ବେ ପିନ୍ଧିଛନ୍ତି ଦିବ୍ୟ ଶୁଭ୍ର ଝୀନବାସ
ଗନ୍ଧ ଲିପିବାରୁ ଦେହୁ ବାହାରେ ସୁବାସ ।
ସବୁରି ଶିରେ କିରୀଟ ମୁକୁଟ ଶୋହଇ
କର୍ଣ୍ଣେ କୁଣ୍ଡଳ ବିରାଜେ ଯୋଡ଼ି ଯୋଡ଼ି ହୋଇ ।
ଦିବ୍ୟ ଆଭରଣ ଯୋଗୁଁ ତେଜ ଅନର୍ଗଳ
ଦେହ ତାଙ୍କର ଦିଶଇ ଅତ୍ୟନ୍ତ ଉଜ୍ଜ୍ୱଳ ।
ଏମନ୍ତେ ଧର୍ମ ସକଳ ପରିବାର ଘେନି
ବିଜେକଲେ ଯହିଁ କ୍ରୋଧୀ ଦୁର୍ବାସା ଯେ ମୁନି ।
ଦେଖିଲେ ସେ କାଳଯମ ପ୍ରାୟ ବିରାଜନ୍ତି
ଧର୍ମ ତାହାଙ୍କୁ କହିଲେ ତୁମ୍ଭେ ମହାଯତି ।
ଆପଣ ଦେହକୁ କୃଶ କଲଣିତ ତପେ
କାଳଯମ ପ୍ରାୟ କିମ୍ପା ବିରାଜନ୍ତି କୋପେ ।
ଏଥିର କାରଣ କିଛି ବୁଝା ଯାଉ ନାହିଁ
କ୍ରୋଧ ଯହିଁ ତହିଁ ଆଉ ମଙ୍ଗଳବା କାହିଁ ।
କ୍ରୋଧ ଆପଣାର ତପ ବଳ କରେ କ୍ଷୟ
କ୍ରୋଧ ସର୍ବନାଶକାରୀ ଏକଥା ନିଶ୍ଚୟ ।
ସକଳ ପ୍ରକାର କ୍ରୋଧ କରିବ ବର୍ଜନ
ସୁସ୍ଥହୋଇ ଦ୍ୱିଜ କୁହ ଏହାର କାରଣ ।
ତପର ଯେ ଶେଷଫଳ ସେ ଅତି ଉତ୍ତମ
ଏରୂପେ ତାଙ୍କୁ ବୁଝାଇ କହନ୍ତେ ସେ ଧର୍ମ ।
କହିଲେ ତାଙ୍କୁ ତୁମ୍ଭେ କିଏ ଦୁର୍ବାସା କୁହ
ତୁମ୍ଭ ସଙ୍ଗ ବିପ୍ରଙ୍କର ଚମତ୍କାର ଦେହ ।
ତୁମ୍ଭସଙ୍ଗେ ଅଳଙ୍କାର ପିନ୍ଧି ସାତନାରୀ
ଏକୁଁ ଏକ ଦିଶନ୍ତିତ ଅପୂର୍ବ ସୁନ୍ଦରୀ ।
କହିବହେ ମହାମତି ବିସ୍ତାରି ସକଳ
ଧର୍ମ କହିଲେ ଦେଖୁଛ ଯେ ଦ୍ୱିଜ ମଣ୍ଡଳ ।
ଯାହାଙ୍କ ହସ୍ତେ ବିରାଜେ ଦଣ୍ଡ କମଣ୍ଡଳ
ତାଙ୍କ ପରିଚୟ ଘେନି ଆହେ ଦ୍ୱିଜବର ।
ଅତି ତେଜୋବନ୍ତ ପୁଣି ନିରତେ ପ୍ରସନ୍ନ
ତାଙ୍କ ନାମ ବ୍ରହ୍ମଚର୍ଯ୍ୟ ଜାଣ ତପୋଧନ ।
ତାହାଙ୍କୁ ତୁମ୍ଭେ ନିରେଖି ଦେଖ ଭଲକରି
କପିଳ ବର୍ଣ୍ଣ ଦେଖୁଛ ଯାକୁ ତପଚାରୀ ।
ନୟନ ଦୁଇ ପିଙ୍ଗଳ ଅତି ତେଜିୟାନ
ସେ ଦ୍ୱିଜର ନାମ ସତ୍ୟ କର ଦରଶନ ।
ବିଶ୍ୱେଦେବାଙ୍କ ସମାନ ଜ୍ୟୋଦି ଯାହାଙ୍କର
ପାଖେ ପାଖେ ବିରାଜନ୍ତି ଦେଖ ମୁନିବର ।

ସେ ଦ୍ୱିଜ ଗୋସାଇଁ ନାମ ତପ ଯେ ଅଟଇ
ଏକ୍ଷଣି ଯାହା ଆଶ୍ରାରେ ଅଛ ତୁମ୍ଭେ ରହି ।
ତୁମ୍ଭଙ୍କୁ ନିରତେ କରେ ଯେ ତପ ପୋଷଣ
ସାକ୍ଷାତରେ ଦେଖ ତୁମ୍ଭେ ସେ ତପ ବ୍ରାହ୍ମଣ ।
ଭୋ ମୁନି ତା ପାଶେ ଦେଖ ଯେଉଁ ଦ୍ୱିଜବର
ତାର ନାମ ଦାମ ସେହି ଉଜ୍ଜ୍ୱଳ ଶରୀର ।
ସର୍ବ ଜୀବେ ଦୟା ତାର ଥାଇ ଯେ ନିରତେ
କୋମଳ ବଚନ କହେ ସୁପ୍ରସନ୍ନ ଚିତ୍ତେ ।
ଶିରେ ଶୋଭା ପାଉଅଛି ଦେଖ ଜଟାଭାର
କର୍କଟ ପିଙ୍ଗଳ ତୀବ୍ର ଉତ୍ତେ ଫରଫର ।
ଏ ମହାପ୍ରଭୁର ପାଖେ ଦେଖୁଛ ଯାହାକୁ
ହସ୍ତେ ଖଡ୍‌ଗଧରି ନାଶେ ପାପ ସମୂହକୁ ।
ନିୟମ ଏହାର ନାମ ଜାଣ ଦ୍ୱିଜବର
ପୁଣ୍ୟବନ୍ତ କ୍ରିୟାଯୁକ୍ତ ଶାନ୍ତ ନିରନ୍ତର ।
ଯେ ବିପ୍ରକୁ ତାର ପାଖେ ଦେଖୁଅଛ ମୁନି
ଜଳପୂର୍ଣ୍ଣ କମଣ୍ଡଳୁ ହସ୍ତେ ଅଛି ଘେନି ।
ଶୁଦ୍ଧ ସ୍ଫଟିକ ପରାୟ ନିର୍ମଳ ଧବଳ
ଶଉଚ ଏହାର ନାମ ଦିଅଇ ଉଜ୍ଜ୍ୱଳ ।
ଦଣ୍ଡ କାଷ୍ଠ ଧରିବାରୁ ପାଉଅଛି ଶୋଭା
ତାପାଖେ ଯେବଣ ନାରୀ ହୋଇଅଛି ଉଭା ।
ପତିବ୍ରତା ସତୀ ସ୍ୱାଧୀ ଅତି ଭାଗ୍ୟବତୀ
ତାହାର ନାମ ଶୁଶ୍ରୁଷା ଜାଣ ଆହେ ଯତି ।
ସତ୍ୟ କେବଳ ଏହାର ଅଙ୍ଗର ଭୂଷଣ
ତାରପାଖେ ଦେଖ ଯେଉଁ ନାରୀକି ବ୍ରାହ୍ମଣ ।
ଗଉରର ଅଙ୍ଗୀ ପ୍ରସନ୍ନ ମୂରତି ସେ ଧୀରା
ମୁଖଚନ୍ଦ୍ର ସୁହାସରେ ଦିଶୁଅଛି ଗୋରା ।
ପଦ୍ମହସ୍ତା ପଦ୍ମନେତ୍ରୀ ଜାତିରେ ପଦ୍ମିନୀ
ଦିବ୍ୟ ଆଭରଣେ ଅଙ୍ଗ କରିଛି ମଣ୍ଡଣି ।
ତା ନାମ କ୍ଷମା ଧରିତ୍ରୀ ଅଟଇ ସେ ନାରୀ
ତାପାଖେ ଦେଖୁଛ ଯାକୁ ତୁମ୍ଭେ ତପଚାରୀ ।
ସେ ବହୁତ ମଙ୍ଗଳର ଆଳୟ ଅଟଇ
ଜ୍ଞାନରୂପା ନାରୀ ଶାନ୍ତିନାମ ସେ ବୋଲାଇ ।
ପ୍ରତିଷ୍ଠାବନ୍ତ ସେ ନାରୀ ପ୍ରକୃତି ତା ଶାନ୍ତ
ଦିବ୍ୟ ରତ୍ନ ଆଭରଣେ ସର୍ବାଙ୍ଗ ମଣ୍ଡିତ ।
ତାପାଖେ ଦେଖ ଯାହାକୁ ତୁମ୍ଭେ ଦ୍ୱିଜବର
ଜାଣ ଅକଳ୍ପନା ନାମ ଅଟଇ ତାହାର ।

ପର ଉପକାରିଣୀ ସେ ସଦା ସତ୍ୟେ ରତା
ମିତଭାଷିଣୀ ସେ ନାରୀ ଅତି ପତିବ୍ରତା ।
ତାପାଖେ ଦେଖୁଛ ଯେଉଁ ନାରୀକିହେ ମୁନି
ତାହାର ନାମ ଅହିଂସା ସେ ସଉଭାଗିନୀ ।
ପ୍ରସନ୍ନ ମୂରତି ଯେହି ସକଳ ସହଣୀ
ସବୁ ଆଭରଣେ ଅଙ୍ଗ କରିଛି ମଣ୍ଡଣି ।
ପଦ୍ମାସନା ଶ୍ୟାମବର୍ଣ୍ଣା ଯଶସ୍ୱିନୀ ନାରୀ
ଯାହାକୁ ଦେଖ ତାପାଖେ ତୁମ୍ଭେ ତପଚାରୀ ।
ତପତ କାଞ୍ଚନ-ବର୍ଣ୍ଣ ସର୍ବାଙ୍ଗ ସୁନ୍ଦରୀ
ମୁକ୍ତାରେ ଆଭରଣ ସର୍ବାଙ୍ଗ ଯାହାରି ।
ରକ୍ତାମ୍ବର ଧାରିଣୀ ଯେ ସୁଚାରୁ ହାସିନୀ
ଜ୍ଞାନରତା ସୁପ୍ରସନ୍ନା ମନ୍ତ୍ରଣା କାରିଣୀ ।
ସୁନିର୍ମଳ ତପସ୍ୱିନୀ ଅଟଇ ଆବର
ଯେଣେତେଣେ ଦୃଷ୍ଟି ପୁଣି ଥାଇ ଯେ ତାହାର
ସେ ନାରୀ ନାମ ଶରଧା ଜାଣ ବିପ୍ରମଣି
ତାହାର ପାଖେ ଦେଖୁଛ ଯେବଣ ରମଣୀ ।
ତାର ନାମ ମେଧା ସେହି ଅତି ରୂପବତୀ
ତା ସମାନ ନାରୀ ଜଣେ ନାହିଁ ଜାଣ କ୍ଷିତି ।
ବୁଦ୍ଧି ତା ଅତି ଗଭୀର ବିପୁଳ ତା ଜ୍ଞାନ
ସୁନ୍ଦର ମଙ୍ଗଳମୟ କରୁଅଛି ଧ୍ୟାନ ।
ସଉଭାଗ୍ୟବତୀ ମାଲ୍ୟ ବସ୍ତ୍ରେ ପାଏ ଶୋଭା
ପୀନ ଶ୍ରେଣୀ ପୟୋଧରା ବିରାଜଇ ପ୍ରଭା ।
ଶୋଭା ପାଉଛି ଅଙ୍ଗକୁ ସବୁ ଆଭରଣ
ଲୋକମାତା କୀରତିରେ ସର୍ବଦା ଭୂଷଣ ।
ତା ପାଖରେ ଯେଉଁ ହଂସ ସୁଧାଂଶୁ ସୁନ୍ଦରୀ
ଲମ୍ବିଛି ମୁକ୍ତା ହାର ଯା ଉର ଉପରି ।
ସର୍ବ ଆଭରଣେ ଅଙ୍ଗ କରିଛି ଭୂଷଣ
ଶ୍ୱେତ ସରୁଝୀନ ବାସ ଯାର ପହରଣ ।
ଶୋଭା ପାଉଛି ପୁସ୍ତକ ପଦ୍ମ ଯାରକରେ
ମନସ୍ୱିନୀ ପଦ୍ମାସନା ଉଭାଟୋ ଛାମୁରେ ।
ଭାଗ୍ୟବନ୍ତ ଜନପାଏ ଏହା ଦରଶନ
ଏହାର ନାମ ଯେ ପ୍ରଜ୍ଞା ଜାଣ ତପୋଧନ ।
ଲାକ୍ଷା ରସ ସମବର୍ଣ୍ଣା ଯେବଣ ସୁନ୍ଦରୀ
ତାପାଖରେ ବିରାଜୁଛି ଦେଖ ତପଚାରୀ ।
ପୀତ ପୁଷ୍ପମାଳା ଗଳେ ଲମ୍ବିଛି ଆବର
ବକ୍ଷସ୍ଥଳ ଶୋଭାପାଏ ଘେନିବାରୁ ହାର ।

କେୟୂର କଙ୍କଣ ବେନି କରେ ଶୋଭାପାଇ
ଦଶ ଆଙ୍ଗୁଳିରେ ଦଶ ମୁଦି ବିରାଜଇ ।
କର୍ଣ୍ଣ କୁଣ୍ଡଳ ଗଣ୍ଡ ମଣ୍ଡଳରେ ଲୁଳେ
ତ୍ରିଭୁବନ ଉପକାରେ ଥାଏ ସବୁବେଳେ ।
ସରୁକ୍ଷୀନ ପୀତବାସ ଯାର ପରିଧାନ
ଏ ତିନି ଲୋକକୁ ଯେହୁ କରଇ ପୋଷଣ ।
ନିରତେ ଚରିତ୍ର ଯାର ପବିତ୍ର ଅଟଇ
ତାର ନାମ ଦୟାସେହି ତୋ ପାଖେ ଅଛଇ ।
ଭୋ ମୁନି ଆଗେ ଦେଖୁଛ ଯେଉଁ ବୃଦ୍ଧାନାରୀ
ସେ ମୋହରମାତା ମୋତେ ଗର୍ଭେ ଅଛିଧରି ।
ଭାବର ଭାରିଯା ସେହି ଜାଣ ଦ୍ୱିଜବର
ମୁହିଁ ଯେ ସାକ୍ଷାତେ ଧର୍ମ ବିପ୍ର ଅବତାର ।
ଶାନ୍ତ ହୋଇ କର ତୁମ୍ଭେ ଆମ୍ଭଙ୍କୁ ପାଳନ
ଦୁର୍ବାସା କହିଲେ ଶୁଣି ଏମନ୍ତ ବଚନ ।
ଯେବେ ତୁମ୍ଭେ ସତ୍ୟ ସତ୍ୟ ଧର୍ମ ଅବତାର
ମୋର ନିକଟକୁ ଆସି କହ ସମାଚାର ।
କେତେ କାର୍ଯ୍ୟେ ଆସିଛନ୍ତି କହିଲେ କହିବି
ଏମନ୍ତ ଶୁଣି ବୋଇଲେ ଧର୍ମ ମନେ ଭାବି ।
କିମ୍ପାଇଁ କ୍ରୋଧ ତୁମ୍ଭର ଆହେ ଦ୍ୱିଜବର
ଦେଖୁଛତ ଆଗେ ମୋର ଯେତେ ପରିବାର ।
କି ଅନିଷ୍ଟ କଲେ ତେଣୁ ବହିଅଛ ତମ
କହିଲେ କରିବା ସିନା ଆମ୍ଭେ ଉପଶମ ।
ଦୁର୍ବାସା ବୋଇଲେ କୋପ ଯେହେତୁ ଆମ୍ଭର
କହୁଅଛି ଶୁଣ ଏବେ କାରଣ ତାହାର ।
ଲକ୍ଷେ ବରଷ ତପସ୍ୟା କଲି କଷ୍ଟ ସହି
ଦଶ ଶଉଚେ ଶୋଧନ କରି ମୋର ଦେହୀ ।
ଏତେକଷ୍ଟେ ମୋତେ ଦୟା ନୋହିଲାତୁମ୍ଭର
ଏଣୁ ଶାପ ଦେବାପାଇଁ ଉଦ୍ୟମ ମୋହର ।
ଧର୍ମ ଏହା ଶୁଣି ତାଙ୍କୁ କହିଲେହେ ମୁନି
ମୁହିଁ ନଷ୍ଟହେଲେ ନଷ୍ଟହେବ ଲୋକତିନି ।
ଆରେ ବାପ ଅତି କଷ୍ଟେ ସାଧହୁଏ ମୁହିଁ
ତୁମ୍ଭ ସାଧକଙ୍କୁ ପୁଣି କଷ୍ଟ ଯେ ଦିଅଇ ।
ଯେବେ ସତ୍ୟଭ୍ରଷ୍ଟ ନୋହି ସାଧକ ତୁମ୍ଭର
ତେବେ ତାଙ୍କୁ ସୁଖ ମୁହିଁ ଦିଅଇ ଅପାର ।
ଅଳପକେ ସାଧହୁଏ ଜାଣିଥାରେ ପାପ
ଅତିକଷ୍ଟେ ପୁଣ୍ୟଲାଭ ହୁଅଇରେ ବାପ ।

ପୁଣ୍ୟ କରୁ କରୁ ଯେବେ ଯାଏ କେହି ମରି
ପରକାଳେ ମୋଯୋଗୁଁ ସେ ସୁଖଭୋଗକରି ।
ଦୁର୍ବାସା କହିଲେପୁଣି ଧର୍ମ ମୁଖ ଚାହିଁ
ଯେ ସୁଖପାଇ ସେ ପରେ ପୁଣି ଦୁଃଖପାଇ ।
ଯେଦେହଛାଡ଼ିଯେ ସୁଖଭୋଗେ ଦେହାନ୍ତରେ
ସେ ସୁଖଜ୍ଞାନ କାହାର ମୁଁ ବୁଝି ନପାରେ ।
ମଙ୍ଗଳ ବୋଲି ମୁଁ ମନେ ନକରଇ ତାହା
ଅନ୍ୟାୟ କର୍ମ ତୁମ୍ଭର ନୁହଇ କି ଏହା ।
ଯେଦେହେ କଷ୍ଟ ସେଦେହେ ସୁଖ ନକରଇ
ଜଣେ ଦୁଃଖ କଲା ଜଣେ ସୁଖଭୋଗ ପାଇ ।
ସେ ସୁଖଜ୍ଞାନ ଗୋଟା ଯେ ହୁଅଇ କାହାର
ଏ ଦେହେ ଅନେକ ଦୁଃଖକରି ପୁଣି ନର ।
ଦେହାନ୍ତରେ ସୁଖଭୋଗ କରଇ ସେଯାଇଁ
ତୁମ୍ଭର ମତେ ମଙ୍ଗଳ ଏ କର୍ମ ଅଟଇ ।
ଏହିରୂପେ ଦୁଃଖକଷ୍ଟ ସହି କଲେ ପୁଣ୍ୟ
ମଲେ ପୁଣ୍ୟଫଳ ଭୋଗ କରିବ ସେ ପୁଣ ।
ଏ ଦେହରେ କଷ୍ଟକରି ପୁଣ୍ୟ ଅରଜିବ
ଦେହାନ୍ତରେ ସେ ପୁଣ୍ୟର ଫଳକୁ ଭୋଗିବ ।
ଏକଥା ଗୋଟା ତୁମ୍ଭର ମତେ ଯେ ମଙ୍ଗଳ
ମୋମତେ ଅତି ଅନ୍ୟାୟ ଏହି ତୁମ୍ଭଫଳ ।
ଭୋଧର୍ମ ଲୋଖାହୋଇଛି ବେଦାଦି ପୁରାଣେ
ଯେ ସକଳ ସୁଖମିଳେ ଯେଉଁସବୁ ପୁଣ୍ୟେ ।
ଦେହାନ୍ତରେ ପାଇ ତାହା ଆନ ନ ହୁଅଇ
ସେ ସବୁପାପ ଯେ ଦେହେଯେ ଜନ କରଇ ।
ସେହି ଦେହେ ନାନାକଷ୍ଟ ସହଇ ସେ ପୁଣି
ଇହକାଳେ ଦୁଃଖଭୋଗେ ଯେଦେହରେ ପ୍ରାଣୀ ।
ସେହି ଦେହେ ସେହି କଷ୍ଟପାଏ ପରକାଳେ
ଶାସ୍ତ୍ରରକଥା ଅନ୍ୟଥା ନୋହେ କେତେବେଳେ ।
ତୁମ୍ଭେ ଧର୍ମବନ୍ତ ପ୍ରାଣୀ ତେଣୁ ବୁଝିପାରି
ଏକଥା ଗୋଟାରେ ଦୃଷ୍ଟି ରଖ ଭଲକରି ।
ଯେଉଁରୂପେ ମହାପାପ କର୍ମକରି ଚୋର
ସ୍ୱଦେହେ ବହୁତକଷ୍ଟ ପାଇ ସେ ପ୍ରକାର ।
ଏ ଦେହେ ସୁଖ ନପାଇ କିମ୍ପା ପୁଣ୍ୟକାରୀ
ଧର୍ମ କହିଲେ ସେ କଥା ଶୁଣ ତପଚାରୀ ।
ପାପୀଏ ପାପ କରନ୍ତି ଯେ ଦେହରେ ପୁଣି
ସେଦେହେ ସେଦୁଃଖ ଭୋଗକରେ ଆହେମୁନି ।

ଏହି ଯେ ପାପର ଫଳ ଜାଣନ୍ତି ପଣ୍ଡିତେ
ସେ ପାପୀର ପରକାଳେ ଦଣ୍ଡଅଛି ଯେତେ ।
ଧର୍ମର ବିଧି ଏମନ୍ତ ଜାଣ ମୁନିବର
ତହିଁରେ ପୁଣି ଦୁର୍ବାସା ଦେଲେ ଏ ଉତ୍ତର ।
ଆହେ ଧର୍ମରାଜ ଯାହା କହିଲ ଆପଣ
ସେକଥାଗୋଟା ଅନ୍ୟାୟ ମୋବିଚାରେ ଜାଣ ।
ଏଣୁ ମୁହିଁ ଅଭିଶାପ ଦେବି କୋପଭରେ
ଆନକରି ନପାରିବେ କେହି ତିନିପୁରେ ।
ତିନିଗୋଟି ଅଭିଶାପ ଦେଉଛି ତା ଘେନ
ଧର୍ମରାଜା ବୋଇଲେହେ ଶୁଣ ତପୋଧନ ।
କୋପ ନକରି ଯେ କ୍ଷମା କରିବା ଉଚିତ
ଯେବେ କ୍ଷମା ନକରିବ ତୁମ୍ଭେ ତପୋବନ୍ତ ।
ତେବେ ଏହି ତିନିଗୋଟି ଶାପଦିଅ ମୋତେ
ହେବି ରାଜା ଦାସୀପୁତ୍ର ଚାଣ୍ଡାଳ ଯେମନ୍ତେ ।
ବ୍ରାହ୍ମଣେ ପ୍ରଣତ ଜନେ ସର୍ବଦା ପ୍ରସନ୍ନ
କୋପେ ଅଭିଶାପ ଦେଲେ ଦୁର୍ବାସା ତେସନ ।
ବୋଇଲେ ଭୋଧର୍ମ ତୁମ୍ଭେ ରାଜାହୁଅ ଯାଇଁ
ମର୍ତ୍ତ୍ୟପୁରେ ଦାସୀପୁତ୍ର ଆବର ବୋଲାଇ ।
ଚଣ୍ଡାଳ ଯୋନି ପ୍ରାପତହୁଅ ସ୍ୱଇଚ୍ଛାରେ
ଏରୂପେ ଏ ତିନିଶାପ ଦେଇ କୋପଭରେ ।
ତହୁଁ ଯେ ଅନ୍ତର ହୋଇଗଲେ ଦ୍ୱିଜବର
ଅଗୋଚର ଧର୍ମହେଲେ ଏରୂପେ ଗୋଚର ।
ଭୋସ୍ୱାମୀ ଯା ଶୁଣିଥିଲି କହିଲି ବୁଝାଇ
ଅଦୃଶ୍ୟ ଧର୍ମ ଏରୂପେ ଦୃଶ୍ୟ ତହିଁ ହୋଇ ।
ଭାରିଯାର କଥା ଶୁଣି ସୋମଶର୍ମା ଦ୍ୱିଜ
ଦୁର୍ବାସା ଋଷି ଯେ ଅତ୍ରି ମୁନିର ତନୁଜ ।
ଧର୍ମକୁ ଏରୂପେ ଶାପ ଦେଲେ ଗୋ ଭାମିନୀ
ତହୁଁ ସେ ଧର୍ମ କିକଲେ କହଥିଲେ ଜାଣି ।
ସୁମନା କହିଲା ସ୍ୱାମୀ ଶୁଣଦେଇ ମନ
ଭରତବଂଶେ ସେ ଧର୍ମ ଲଭିଲେ ଜନମ ।
ଧର୍ମ ଯୁଧିଷ୍ଠିର ନାମେ ହୋଇଲେ ନୃପତି
ମହୀମଣ୍ଡଳ ମଧ୍ୟରେ ରାଜ୍ୟେ ଯାର କୀର୍ତ୍ତି ।
ସେ ଧର୍ମ ଦାସୀର ପୁତ୍ର ନାମ ତା ବିଦୁର
ପୂର୍ବେ ବିଶ୍ୱାମିତ୍ର ମୁନି ଗାଧିର କୁମର ।
ହରିଶ୍ଚନ୍ଦ୍ର ନୃପତିଙ୍କି ଦେଲେ ଯେ କଷଣ
ସେ ବେଳେ ଚଣ୍ଡାଳ ରୂପଧାରୀ ଏହି ଧର୍ମ ।
ଦକ୍ଷିଣା ଦେଇ ରାଜାଙ୍କୁ ନେଲେ ପୁଣି କିଣି
କର୍ମଫଳ ଭୋଗକଲେ ସ୍ୱୟଂ ଧର୍ମ ପୁଣି ।
ଯହିଁ ଧର୍ମ ତହିଁ ସତ୍ୟ ତହିଁ ଭଗବାନ
ତାପାଦେ ଶରଣ ନିତ୍ୟ ଗୋପୀନାଥ ଦୀନ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ସୋମ-
ଶର୍ମୋପାଖ୍ୟାନଂ ନାମ ଦ୍ୱାଦଶୋଽଧ୍ୟାୟଃ ।



## ତ୍ରୟୋଦଶ ଅଧ୍ୟାୟ

### ବ୍ରହ୍ମଚର୍ଯ୍ୟ, ତପ, ସତ୍ୟ, ଦାନ, ନିୟମାଦିଲକ୍ଷଣ

କହିଲେକ ସୋମଶର୍ମା ଦ୍ୱିଜଗୋ ଭାମିନି
ବ୍ରହ୍ମଚର୍ଯ୍ୟର ଲକ୍ଷଣ କହ ଥିଲେ ଜାଣି ।
ସ୍ୱାମୀ ବଚନେ କହଇ ସୁମନା ସୁନ୍ଦରୀ
ନିତିଦିନ ସତ କହୁଥିବ ଗୃହକାରୀ ।
ପୁଣ୍ୟବନ୍ତ ହୋଇ ପୁଣି ସନ୍ତୋଷରେ ଥିବ
ଋତୁକାଳେ ଭାରିଯାର ଋତୁକୁ ରଖିବ ।
ଦୋଷଶୂନ୍ୟ ହୋଇଥିବ ରହି କୁଳାଚାରେ
ଏହିରୂପେ ବ୍ରହ୍ମଚର୍ଯ୍ୟ ବ୍ରତ ଗୃହୀ କରେ ।
ଯତିର ଯେ ବ୍ରହ୍ମଚର୍ଯ୍ୟ କହୁଅଛି ଶୁଣ
ଯତି ଦମ ସତ୍ୟେରଅଥିବ ଅନୁକ୍ଷଣ ।
ପାପକୁ ଯେ ଡରୁଥିବ ସବୁବେଳେ ଯତି
ସ୍ତିରୀସଙ୍ଗ ନ କରିବ ଧ୍ୟାନେ ଥିବ ମତି ।
ଏରୂପେ ଯତିର ବ୍ରହ୍ମଚର୍ଯ୍ୟ ବ୍ରତ ସ୍ୱାମୀ
ତପ ଲକ୍ଷଣ କହୁଛି ଅଛି ଯାହା ଜାଣି ।
କାମକ୍ରୋଧ ତେଜି ନିତ୍ୟ ରହିବ ଆଚାରେ
ଉଦ୍ୟମହିଁ କରୁଥିବ ପ୍ରାଣୀ ଉପକାରେ ।
କହିଲି ତପ ଲକ୍ଷଣ ଶୁଣିଲତ ନାଥ
ସତ୍ୟ ଲକ୍ଷଣ କହୁଛି ଶୁଣଦେଇ ଚିତ୍ତ ।
ପରସ୍ତ୍ରିତ: ପରଧନ ହରଣେ ଯା ମନ
ନବଳଇ ସତ୍ୟବନ୍ତ ଜାଣ ସେହିଜନ ।
ପ୍ରାଣୀଏ ପ୍ରାଣ ଧାରଣ କରନ୍ତି ଯେ ଦାନେ
ସେ ଦାନ ଲକ୍ଷଣ ନାଥ ଶୁଣ ସାବଧାନେ ।
ଇହ ପରକାଳ ସୁଖ ଇଚ୍ଛାକଲା ଦାନ
ଦେଉଥିବ ଅନ୍ନ ନାମେ ଯେଉଁ ମହାଜନ ।
ନିଶ୍ଚେ ସୁଖ ପାଇବାର ଆଶାଥାଏ ଯାର
କ୍ଷୁଧାର୍ତ୍ତିକି ଗ୍ରାସେ ଅନ୍ନ ଦେଉଥିବ ନର ।

ଏହି ମହାଦାନ ପୁଣ୍ୟେ ମୁକତି ନିୟତ
ବିଭବ ଦେଖିଣ ଦାନ ଦେଉଥିବ ନିତ୍ୟ ।
ତୃଣ ଶଯ୍ୟା ମିଠାକଥା ଅନ୍ନଭୂମି ଜଳ
ଆସନ ଗୃହର ଛାୟା ଯେ ପୁଣି ଶୀତଳ ।
ମଧୁରାଳାପ ଏ ଆଦି ଦାନ ସବୁ ଜାଣ
ଦେବ ପିତୃପୂଜା ଶେଷେ କରିବ ଅର୍ପଣ ।
ଆପଣା ଜୀବନ ଅର୍ଥେ ଯେ ଜନ ନିରତେ
ବିତ୍ତ ଅନୁସାରେ ଦାନ କରଇ ଏମନ୍ତେ ।
ଇହ ପରକାଳେ ସୁଖେ କରେ ସେ ବିହାର
ଦାନ ଅଧ୍ୟୟନେ ଦିନ କଟିଯାଏ ଯାର ।
ମାନବରୂପୀ ଦେବତା ନିଶ୍ଚୟ ସେ ଜାଣ
ନିୟମ ଲକ୍ଷଣ ନାଥ କହୁଅଛି ଶୁଣ ।
ଧର୍ମ ସାଧନର ମୂଳ ଯେବଣ ନିୟମ
ସେ ନିୟମେ ରହି ନିତ୍ୟବ୍ରତ ପୁଣ୍ୟକର୍ମ ।
ଦେବଦ୍ୱିଜ ପୂଜା ଦାନ ପର ଉପକାର
କରିବା ନାମ ନିୟମ ଜାଣ ପ୍ରାଣେଶ୍ୱର ।
ବିପ୍ର କ୍ଷମାର ଲକ୍ଷଣ କହୁଅଛି ଶୁଣ
ପର ଆକ୍ରୋଶ କରିବା କଥା ଯେ ବ୍ରାହ୍ମଣ ।
ଶୁଣିଲାମାତ୍ରେ ମନରେ କୋପ ନ କରଇ
କି ଅବା ଶୁଣି ତହିଁରେ ବ୍ୟସ୍ତ ନ ହୁଅଇ ।
କେହି ଯେବେ ତାକୁ ପୁଣି କରଇ ପ୍ରହାର
ତେବେ କ୍ରୋଧ ଜାତଯେହ୍ନେ ନହୁଏ ତାହାର ।
କିବା ଗାଳି ମନ୍ଦ କଲେ ମନଦୁଃଖ ନାହିଁ
ସହିଷ୍ଣୁବୋଲି ତାହାକୁ ଏ ସଂସାରେ କହି ।
ସେହି ଧର୍ମଆତ୍ମା ଦ୍ୱିଜ ଇହ ପରକାଳେ
ନାନାସୁଖ ଭୋଗକରେ ଅମର ମଣ୍ଡଳେ ।
ଶଉଚ ଲକ୍ଷଣ ଏବେ କହୁଅଛି ଶୁଣ
ଶୁଦ୍ଧ ରଖିବ ଅନ୍ତର ବାହାରକୁ ପୁଣ ।
ରାଗ ନକରିବ ପୁଣି ରହିବ ଆଚାରେ
ସ୍ନାନ ଆଚମନ କରି ବିଧି ଅନୁସାରେ ।
ଦିନ ହରୁଥିବା ଯମ ଶଉଚ ଅଟଇ
ଅହିଂସା ଲକ୍ଷଣ ଏବେ ଶୁଣ ମନଦେଇ ।
ବିନାକାର୍ଯ୍ୟେ ତୃଣମାତ୍ର ଛିଣ୍ଡାଇବ ନାହିଁ
ଯେମନ୍ତେ ଆପଣା ପ୍ରାଣପ୍ରତି ଦୟାଥାଇ ।
ତେମନ୍ତ ପର ପ୍ରାଣରେ ହିଂସା ନକରିବ
ତାହାକୁ ଅହିଂସା ବୋଲି ଜାଣ ଜୀବଧବ ।

ଶାନ୍ତିର କଥା କହୁଛି ଶୁଣ ମନଦେଇ
ଯେଉଁ ଶାନ୍ତିଯୋଗୁଁ ନାନା ସୁଖ ଭୋଗପାଇ ।
ସେ ଶାନ୍ତିକି ଭଜିଲେଯେ ଖେଦଯିବ ଦୂରେ
ଦ୍ରୋହ ତେଜି ଚିତ୍ତ ଶାନ୍ତି କରୁଥିବେ ନରେ ।
ଆସ୍ତେୟ ଲକ୍ଷଣ ଏବେ ଶୁଣ ପ୍ରାଣେଶ୍ୱର
ନକରିବ କାୟ ମନବାକ୍ୟେ ପରଦାର ।
ନ ହରିବ ପରଧନ କଦାପି ଆବର
ପରନାରୀ ପରଧନେ ଅନାସ୍ଥା ବେଭାର ।
ଏହାର ନାମ ଅସ୍ତେୟ ଜାଣ ବିପ୍ରମଣି
ଦମ ଲକ୍ଷଣ କହୁଛି ଶୁଣ ତୁମ୍ଭେ ପୁଣି ।
ଜ୍ଞାନୀହେବ ଇନ୍ଦ୍ରିକି ଯେ କରିବ ଦମନ
ବିକାର ଛାଡ଼ି ଦମନ କରୁଥିବ ମନ ।
ମନର ଉଦ୍ଧାର ପଣ ଦେବ ଯେ ଛଡ଼ାଇ
ଏହାର ନାମ ଯେ ଦମ ଜାଣ ପ୍ରାଣସାଇଁ ।
ଶୁଶ୍ରୁଷା ଲକ୍ଷଣ ଏବେ ମନଦେଇ ଶୁଣ
ଶାସ୍ତ୍ରେ ଯେହ୍ନେ କହିଛନ୍ତି ପୂର୍ବାଚାର୍ଯ୍ୟଗଣ ।
କାୟମନ ବଚନରେ ଗୁରୁଙ୍କୁ ସେବିବ
ସେବାରେ ଯେହ୍ନେ ଗୁରୁଙ୍କୁ ପ୍ରସନ୍ନ କରିବ ।
ଏହାର ନାମ ଶୁଶ୍ରୁଷା ଜାଣ ପ୍ରାଣପତି
ବୁଝାଇ କହିଲି ସବୁ ସାଙ୍ଗ ଧର୍ମ ରୀତି ।
ଏମନ୍ତେ ଧର୍ମ ଆଚାରେ ରହିଥିବ ନରେ
ପୁଣି ଜନମ ନପାଇ ଏ ପାପ ସଂସାରେ ।
ସ୍ୱର୍ଗସୁଖ ଭୋଗ ତାର କହୁଅଛି ସତ୍ୟ
ଏମନ୍ତ ବୁଝି ଧର୍ମକୁ ଆଶ୍ରାକର କାନ୍ତ ।
କିଛିହିଁ ଦୁର୍ଲ୍ଲଭ ନାହିଁ ଧର୍ମ ପରସାଦେ
ଧର୍ମ ନକଲେ ନିଶ୍ଚୟେ ପଡ଼ିବ ପ୍ରମାଦେ ।
ଧର୍ମ କର୍ମ କର ନରେ କହେ ଗୋପୀନାଥ
ଧର୍ମର ପ୍ରଭୁ କମଳା ଦେବୀଙ୍କର କାନ୍ତ ।

ଇତି ଶ୍ରୀ ପଦ୍ମ ପୁରାଣେ ଭୂମିଖଣ୍ଡେ
ସୁମନୋପାଖ୍ୟାନଂ ନାମ
ତ୍ରୟୋଦଶୋଽଧ୍ୟାୟଃ ।



# ଚତୁର୍ଦ୍ଦଶ ଅଧ୍ୟାୟ

## ସୁମନାର ପୂର୍ବ ବୃତ୍ତାନ୍ତ

ଭାରିଯାର କଥାଶୁଣି ସୋମଶର୍ମା ଦ୍ୱିଜ
ତୁମ୍ଭର କଥାତ ମୋତେ ଲାଗଇ ଆଶ୍ଚର୍ଯ୍ୟ ।
ଏ ଧର୍ମ କାହୁଁ ଜାଣିଲ ତୁମ୍ଭେ ହୋଇ ସ୍ତିରୀ
ଯାହା ନଜାଣନ୍ତି ଋଷି ମୁନି ତପଚାରୀ ।
ଏ ଉତ୍ତମ ଧର୍ମ ତତ୍ତ୍ୱ ଜାଣିଲ କେମନ୍ତେ
ଆଚମ୍ବିତ ପରି ଜଣାଯାଏ ଏହା ମୋତେ ।
କାହୁଁ ଶୁଣିଲ କିରୂପେ ଜାଣିଲ ତା କହ
ମୋ ମନରୁ ଫିଟିଯାଉ ଏ ଘୋର ସନ୍ଦେହ ।
ସୁମନା କହିଲା ଶୁଣ ଆହେ ମହାମତି
ମୋର ପିତା ଭୃଗୁଋଷି କୁଳେ ଉତପତ୍ତି ।
ମହାଜ୍ଞାନୀ ସର୍ବଜ୍ଞ ଯେ ସେ ଋଷି ଚ୍ୟବନ
ସେହି ମୋତେ କରିଥାନ୍ତି ଜୀବନର ଧନ ।
ପିତା ମୋର ତୀର୍ଥେଗଲେ ମୁଁ ଯାଇ ସଙ୍ଗତେ
ମୁନିଙ୍କ ସଭାକୁ ଗଲେ ସଙ୍ଗେ ନ୍ୟନ୍ତି ମୋତେ ।
ଦେବାଳୟକୁ ଗଲେ ସେ ମୋତେ ନଛାଡ଼ନ୍ତି
ଆନନ୍ଦେ ମୋ ଖେଳ କଉତୁକ ଦେଖୁଥାନ୍ତି ।
ଏକ ଦିନକର କଥା ଘଟିଲା ଯା ଶୁଣ
କଉଶିକ ବଂଶେ ଜାତ ଏକଇ ବ୍ରାହ୍ମଣ ।
ପିତାଙ୍କର ପ୍ରିୟ ସଖା ସେହି ମହାମତି
ତାଙ୍କ ନାମ ଦେବଶର୍ମା ଦୁଃଖେ ସେ ଭ୍ରମନ୍ତି ।
ଭ୍ରମି ଭ୍ରମି ଆସି ମୋର ପିତାଙ୍କୁ ଭେଟିଲେ
ଦଇବୀ ଘଟନା ଆନ କରିବ କେ ଭଲେ ।
ତାଙ୍କୁ ଦେଖି ମୋର ପିତା ବୋଇଲେ ସୁବ୍ରତ
ଜଣା ଯାଉଅଛ ତୁମ୍ଭେ ହୋଇଛ ଦୁଃଖିତ ।
ଦୁଃଖର କାରଣ ସଖା କହ ବିନା ମୋତେ
ବ୍ୟାକୁଳ ହୁଏ ମୋ ମନ ତୁମ୍ଭ ଚିନ୍ତାଗ୍ରସ୍ତେ ।
ମୋ ପିତା ମୁଖୁଁ ଏମନ୍ତ ଦେବଶର୍ମା ଶୁଣି
ବୋଇଲା କି କହିବି ମୁଁ ଦୁଃଖର କାହାଣୀ ।
ପତିବ୍ରତା ଘରଣୀ ମୋ ହରାଇଲା ପ୍ରାଣ
ପୁଅଝିଅ ନାହିଁ ମୁହିଁ ଅପୁତ୍ରିକ ଜାଣ ।
ମୁହିଁ ମଲେ ସଖା ମୋର ବୁଡ଼ିଯିବ କୁଳ
ଏ ମହାଦୁଃଖେ ମୋ ମନ ହୁଅଇ ବ୍ୟାକୁଳ ।
ଦଇବ ଯୋଗେ ଏମନ୍ତ କଥାହେବା ବେଳେ
ସିଦ୍ଧ ପୁରୁଷେକ କାହୁଁ ଆସି ତହିଁ ମିଳେ ।
ଜାଣନ୍ତି ସକଳ ଶାସ୍ତ୍ର ସେ ମହାପୁରୁଷ
ଦୂର କରିପାରନ୍ତି ସେ ସକଳ ସନ୍ଦେଶ ।
ମୋ ପିତା ଚ୍ୟବନଋଷି ଦେବଶର୍ମା ଦ୍ୱିଜ
ଭକତିରେ ପୂଜାକଲେ ତା ପାଦ ପଙ୍କଜ ।
ଭୋଜନାଦି ଉପଚାର ଦେଇ ତୋଷକରି
ମଧ୍ୟେ ତାଙ୍କୁ ବସାଇଲେ ବହୁତ ଆଦରି ।
ଆହେକାନ୍ତ ପୂର୍ବେମୋତେ ଆଗରେ ମୋହର
ଧନପୁତ୍ର ଚିନ୍ତାରେ ଯେ ହୋଇଣ କାତର ।
ପଚାରିଥିଲେ ଦୁଃଖିତେ ଯାହା ଯାହା ମୋତେ
ଜଣାଇଲେ ସେହି ମହାପୁରୁଷ ଅଗ୍ରତେ ।
ଅବିକଳ ତାହାସବୁ ନୋହେ କିଛି ଭିନ୍ନ
ସେ ମହାପୁରୁଷ ଶୁଣି ତାହାଙ୍କ ବଚନ ।
ସେ ବେନି ଦ୍ୱିଜଙ୍କୁ ସବୁ କହିଲେ ବୁଝାଇ
ଧର୍ମ ଏହାର ଯେ ମୂଳ ଜାଣ ତୁମ୍ଭେ ଦୁଇ ।
ଧର୍ମବଳେ ଧନଧାନ୍ୟ ସ୍ତରୀ ପୁତ୍ର ମିଳେ
ତାଙ୍କ ପାଖେ ବସି ସବୁ ଶୁଣେ ମୁଁ ନିଶ୍ଚଳେ ।
ସେ ସିଦ୍ଧପୁରୁଷ କଥାଯାକ ସବୁ ଶୁଣି
ମନେରଖି କାନ୍ତ ତୁମ୍ଭ ଆଗେର ବଖାଣି ।
ସେ ମହାପୁରୁଷ ଠାରୁଁ ଉପଦେଶ ପାଇ
ଦେବଶର୍ମା ଦ୍ୱିଜବର ଧର୍ମେ ମନ ଦେଇ ।
ନାନା ପୁଣ୍ୟକରି ପୁତ୍ର ଘେନି କଲେ ସୁଖ
ଏଣୁ କହୁଛି ଭୋ ନାଥ ଛାଡ଼ି ମନ ଦୁଃଖ ।
ମନର ବାଞ୍ଛା ପ୍ରଦାନକରେ ଯେଉଁଧର୍ମ
ତାହାର ଆଶ୍ରାରେ ରହି କର ପୁଣ୍ୟକର୍ମ ।
ସଂସାର ବନ୍ଧନୁ ନାଥ ହୋଇବ ମୁକତ
ସୋମଶର୍ମା ଦ୍ୱିଜବୋଲେ ଶୁଣିଣ ଏମନ୍ତ ।
ସନ୍ଦେହ ଉପୁଜେ ପ୍ରିୟେ ଏଥିରେ ମୋହର
ଧର୍ମ ଆଚରଣ ପୁଣ୍ୟ କର୍ମ କରି ନର ।
ତାର ଜନମ କିରୂପେ କହ ତା ବୁଝାଇ
ଆବର ମୃତ୍ୟୁ କେମନ୍ତେ ସେ ଜନ ଲଭଇ ।
କିରୂପେ ତାର ଜନମ ମରଣ ଲକ୍ଷଣ
ଏ ସକଳ ମୋ ଆଗରେ କହ ବିସ୍ତାରିଣ ।
ସୁମନା କହିଲା ନାଥ ଶୁଣ ମନଦେଇ
ସର୍ବଦା ଯେ ସତ କହେ ଶଉଚ ହୁଅଇ ।

ସବୁ ସହଇ ଶାନ୍ତିକି ଭଜଇ ଆବର
ତୀର୍ଥବ୍ରତ ପୁଣ୍ୟକର୍ମ କରୁଥାଇ ନର ।
ତାର ମୃତ୍ୟୁର ଲକ୍ଷଣ ଶୁଣ ପ୍ରାଣନାଥ
ତାହାରଦେହରେ ରୋଗପୀଡ଼ା ନୋହେଜାତ ।
ପରିଶ୍ରମ ନ ବାଧଇ ତାହାକୁ ଆବର
ମନରେ କିଞ୍ଚିତ ଗ୍ଲାନି ନଥାଇ ତାହାର ।
ଦେହୁଁ ଝାଳ ନ ବହଇ ଭ୍ରମ ନ ହୁଅଇ
ଉତ୍ତମ ସ୍ୱରରେ ଗୀତଗାଇ ସେ ପାରଇ ।
ଗାନ୍ଧର୍ବ ବେଦ ପଢ଼ିଣପାଇ ତାର ତତ୍ତ୍ୱ
ନୃତ୍ୟ ଗୀତ ବାଦ୍ୟ ତାନମାନ ସ୍ୱରେ ରତ ।
ବଇଦିକ ବିପ୍ରେ ତାକୁ ଥାନ୍ତି ଅନୁସରି
ଗନ୍ଧର୍ବେ ଥାନ୍ତି ତାହାର ଚାରିପାଖେ ଘେରି ।
ପ୍ରଶଂସା କରି ତାହାର ହରୁଥାନ୍ତି ମନ
ନିରତେ ସେ ଜନମନ ଆନନ୍ଦ ପ୍ରସନ୍ନ ।
ଦିବ୍ୟ ଆସନରେ ବସି ଦେବତା ପୂଜଇ
ପୁଣ୍ୟତୀର୍ଥ ପୁଣ୍ୟକ୍ଷେତ୍ର ପୁଣ୍ୟସ୍ଥାନ ପାଇ ।
ନିତ୍ୟ ପବିତ୍ର କର୍ମରେ ସରଇ ତା ଦିନ
ଯେତେବେଳେ ମୃତ୍ୟୁ ତାକୁ କରେ ଆଲିଙ୍ଗନ ।
ସେତେବେଳେ ସେ ଜନ ରହିଥାଇ ଅଗ୍ନି ଗୃହେ
କିବାଗୋଗୋଷ୍ଠେ ଦେବତା ଆୟତେ ଆଳୟେ ।
ବଗିଚା ପୋଖରୀ କୂଳେ ବଟ ଓସ୍ତ ମୂଳେ
ବେଲ ମୂଳେ ଗଜ ଶାଳେ କିବା ଅଶ୍ୱ ଶାଳେ ।
ଅଶୋକ ବୃକ୍ଷର ତଳେ ଚୂଳ ତରୁତଳେ
ରାଜାର ମନ୍ଦିରେ କିବା ବ୍ରାହ୍ମଣ ମଣ୍ଡଳେ ।
ସଂଗ୍ରାମ ଭୂମିରେ ଅବା ଗୋ ଗ୍ରହ ଭୂମିରେ
କିବା ଅମର କଣ୍ଟକ ନାମ ତୀର୍ଥବରେ ।
ଏହି ସ୍ଥାନମାନଙ୍କରେ ମରଣ ତାହାର
ସେକାଳେ ସେ ମାତା ପିତା ବନ୍ଧୁ ସହୋଦର ।
ପବିତ୍ର ମଙ୍ଗଳମୟ ଦେଖଇ ଏହାଙ୍କୁ
ମରିଥିବା ପିତା ମାତା ଆବର ବନ୍ଧୀଙ୍କୁ ।
ଏହାଙ୍କ ପ୍ରଶଂସାମାନ ଶୁଣୁଥାଇ କର୍ଣ୍ଣେ
ସେ ଶବଦ ନ ପଶଇ ପାପୀର ଶ୍ରବଣେ ।
ପାପୀଏ ପାପ ନୟନେ ତାକୁ ନ ଦେଖନ୍ତି
ପୁଣ୍ୟକାରୀ ଜନଙ୍କୁ ସେ ଆସି ଦେଖା ଦ୍ୟନ୍ତି ।
ଗନ୍ଧର୍ବେ ଗୀତ ଗାଇଣ ତୋଷନ୍ତି ତା ମନ
ସ୍ତୁତି କରୁଥାନ୍ତି ଆଗେ ସ୍ତବକାରୀ ଜନ ।

ବେଦମନ୍ତ୍ର ପଢ଼ୁଥାନ୍ତି ବିପ୍ରେ ତାର ଆଗେ
ଜ୍ଞାତି ଭାଇବନ୍ଧୁ ଥାନ୍ତି ସ୍ନେହ ଅନୁରାଗେ ।
ଏମନ୍ତେ ସେ ଧର୍ମ ଆତ୍ମା ପୁଣ୍ୟକାରୀ ଜନ
କହିଲି ନାଥ ଉତ୍ତମ ମରଣ ଲକ୍ଷଣ ।
ସ୍ନେହେ ତାକୁ ଯମଦୂତେ ନିଅନ୍ତି ଆଦରେ
ସ୍ୱପ୍ନ ମୋହ କ୍ଲେଶ ପାଉଥିବା ଅବସ୍ଥାରେ ।
ନଦେଖଇ ଯମଦୂତ ପୁଣ୍ୟବନ୍ତ ଜନ
କହୁଥାନ୍ତି ତାକୁ ନେଲାବେଳେ ଦୂତଗଣ ।
ତୁମ୍ଭଙ୍କୁ ଯେ ଡାକିଛନ୍ତି ଯମରାଜା ଆସ
ଆଦର କରି ନିଅନ୍ତି ଜନ୍ତୁପତି ପାଶ ।
ମୋହ ଭ୍ରମ ଗ୍ଲାନି ସ୍ମୃତି ଭ୍ରଂଶ ତାର ନାହିଁ
ପ୍ରସନ୍ନ ଚିତ୍ତେ ସର୍ବଦା ସେହି ରହିଥାଇ ।
ସେ ଜନ ଜ୍ଞାନୀ ଆବର ବିଜ୍ଞାନୀ ହୁଅଇ
ଦେବ ଜନାର୍ଦ୍ଦନଙ୍କୁ ସେ ନିତ୍ୟ ସୁମରଇ ।
ହରି ହରି କହିଯାଏ ଯମଦୂତ ସଙ୍ଗେ
ନାନା ପ୍ରେମ କଥାଳାପେ ହାସ୍ୟ ରସରଙ୍ଗେ ।
ଧର୍ମ ଆତ୍ମାରେ ତା ଆତ୍ମା ମିଳିତ ହୁଅଇ
ଦଶମ ଦ୍ୱାରକୁ ଆଶ୍ରା କରିଣ ସେ ଯାଇ ।
ତାହାର ନିମନ୍ତେ ଖଞ୍ଜା ଉତ୍ତମ ବିମାନ
ଅଶ୍ୱ ଗଜ କିମ୍ବା ହଂସ ଯୋଚା ମନୋରମ ।
ସେ ଦିବ୍ୟ ବିମାନ ଚଢ଼ି ସେ ଜନ ଗମଇ
ବିଚିତ୍ର ସୁନ୍ଦର ଛତା ତାକୁ କରେ ଛାଇ ।
ଚଅଁର ଯେ ପଡୁଥାଇ ପଙ୍ଖା ପଡୁଥାଇ
ପଣ୍ଡିତ ମଙ୍ଗଳ କଥା ଶୁଣି ଶୁଣି ଯାଇ ।
ବେଦ ପାରଗ ବ୍ରାହ୍ମଣ ଆବର ଚାରଣ
ସିଦ୍ଧ ସାଧୁ ବିଦ୍ୟାଧର ସ୍ତୁତି ପାଠଗଣ ।
ଏହାଙ୍କ ମଣ୍ଡଳେ ରହି ମହାସୁଖ ପାଇ
ଦାନପୁଣ୍ୟ ଫଳ ଯୋଗୁଁ ଜାଣ ପ୍ରାଣସାଇଁ ।
ଆରାମ ବଗିଚା ବାଟ ଦେଇ ସୁଖେ ଯାଏ
ସ୍ୱର୍ଗ ଅପସରା ଖଟିଥାନ୍ତି ତାର ପାଏ ।
ଦେବତାଙ୍କ ସ୍ତୁତି ଶୁଣି ଶୁଣି ଧୀରେ ଧୀରେ
ଧର୍ମରାଜ ଯମକୁ ସେ ଦରଶନ କରେ ।
ଧର୍ମ ସହିତ ଦେବତା ଆସି ତା ଅଗ୍ରତେ
ଧର୍ମ ତାହାକୁ କୋମଳେ ବୋଲନ୍ତି ଏମନ୍ତେ ।
ଆସ ଆସ ମନ ଅନୁସାରେ ଭୋଗ କର
ସ୍ୱର୍ଗ ସୁଖ ଭୋଗକରେ ପୁଣ୍ୟବନ୍ତ ନର ।

ଭୋଗଶେଷେ ପୁଣ୍ୟକ୍ଷୟେ ପୁଣି ଜନମଇ
ଧର୍ମବଳେ ଆସି ପୁଣ୍ୟବଂଶେ ଉପୁଜଇ ।
ପୁଣ୍ୟବନ୍ତ ବିପ୍ର କିବା କ୍ଷତ୍ରି ବୈଶ୍ୟ ଧନୀ
ଏସବୁ କୁଳେ ଜନମି ପୁଣ୍ୟବନ୍ତ ପ୍ରାଣୀ ।
ଧର୍ମେ ଥାଇ ସୁଖପାଇ କରେ ପୁଣ୍ୟକର୍ମ
ଗୋପୀନାଥ ବୋଲେ କେହି ନଛାଡ଼ଏ ଧର୍ମ ।
ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ସୁମନୋ
ପାଖ୍ୟାନଂ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ।



## ପଞ୍ଚଦଶ ଅଧ୍ୟାୟ

### ପାପୀ-ମରଣ ଲକ୍ଷଣ

ସୋମଶର୍ମା କହିଲେ ଗୋ ଜାଣିଥିଲେ କହ
ପାପୀ ମରଣ ଲକ୍ଷଣ ଫିଟୁ ମୋ ସନ୍ଦେହ ।
ବିସ୍ତାରି କହିବ ପାପୀ ମରଇ କେମନ୍ତେ
ମରଣ ଲଭଇ ପାପୀ ପୁଣି ଯେଉଁ ମତେ ।
ଏମନ୍ତ ଶୁଣି ସୁମନା କହିଲେ ଭୋ କାନ୍ତ
ସେ ସିଦ୍ଧ ମହାପୁରୁଷ କହିଲେ ଯେମନ୍ତ ।
ତାହା ତୁମ୍ଭ ଅଗ୍ରତରେ କହୁଅଛି ଶୁଣ
ଆଗ କହୁଅଛି ମହାପାପୀର ଲକ୍ଷଣ ।
ତାହାଙ୍କର ଚେଷ୍ଟା ପୁଣି ସ୍ଥାନ ତାହାଙ୍କର
ଅତି ଦୁଷ୍ଟପଣ କରେ ମହାପାପୀ ନର ।
ବିଷ୍ଠା ମୁତ୍ର ଅମେଧରେ ପୂରିଛି ଯେ ଭୂମି
ଚାଣ୍ଡାଳ ଭୂମି ଆବର ଗଧ ବନ୍ଧାଭୂମି ।
ହାଡ଼ ଚମ ନଖ ବାଳ ଭୂରିଥିବା ସ୍ଥାନେ
ବେଶ୍ୟାର ମନ୍ଦିରେ ଅବା ଚମାର ସଦନେ ।
ଏଥିରୁ ଆନ ଯେତେକ ଅଛି ପାପସ୍ଥାନ
ଏ ସବୁସ୍ଥାନେ ମରଇ ଜାଣ ପାପୀ ଜନ ।
ଅତିକଷ୍ଟେ ଅତି ଦୁଃଖେ ଯାଏ ତା ଜୀବନ
ଯମଦୂତେ ଆସି ତାକୁ କରନ୍ତି ବନ୍ଧନ ।
ମହା ଭଇରବ ରୂପ ଧରି ଯମଗଣ
ବେଢ଼ନ୍ତି ଆସି ନେବାକୁ ତାହାର ଜୀବନ ।
ତାଙ୍କରୂପ ଅତିକଳା ନିଦାରୁଣ ଘୋର
ପେଟ ବଡ଼ ବଡ଼ ଆଖି କପିଳା ତାଙ୍କର ।
ହଳଦିଆ ନେଳିଆ କେ ଦିଶେ ଅତି ଶେତା
ଅତି ଦୀର୍ଘ ଭୟଙ୍କର ଅତି ଉନମତ୍ତା ।

ଶୃଙ୍ଖିଳା ବସା ପରାୟ ଶୁଷ୍କ ତାଙ୍କ ମାଂସ
ଦନ୍ତ ମହାଭୟଙ୍କର ବିକରାଳ ହାସ୍ୟ ।
ସିଂହମୁଖା ସର୍ପହସ୍ତା ପାଶହସ୍ତା କେହି
ଏରୂପେ ଯମଦୂତଙ୍କୁ ଦେଖେ ପାପୀଦେହୀ ।
ଡରେ ଥରଥର ହୋଇ କମ୍ପେ ବରମ୍ବାର
ଦୂତେ କାନମୂଳେ ତାର କରନ୍ତି ପ୍ରହାର ।
ଶୃଗାଳ ରାବିଲା ପ୍ରାୟ ରାବି କର୍ଣ୍ଣମୂଳେ
ପାଶ ପକାଇ ଦିଅନ୍ତି ସେ ପାପୀର ଗଳେ ।
ଉଦର ଅଷ୍ଟାକୁ ଦୃଢ଼େ ବାନ୍ଧନ୍ତି ତାହାର
ବଳେ ଧରି ଓଟାରନ୍ତି ତାକୁ ବାରମ୍ବାର ।
ନିର୍ଘାତିଆ ମାଡ଼ମାରି ତାକୁ ଯାନ୍ତେ ଘେନି
ପାପୀ ରୋଦନ କରଇ ଅନେକ ବାହୁନି ।
ବାପଲୋ ମାଆଲୋ କହି କାନ୍ଦି ଉଚ୍ଚସ୍ୱରେ
ଭାଇବନ୍ଧୁ ଆସି ମୋତେ ରକ୍ଷାକର ବାରେ ।
ଏମନ୍ତ ସେ କାନ୍ଦୁଥାଇ ଦୂତେ ଘେନିଯାନ୍ତି
ତାର କୁଟୁମ୍ବଙ୍କ କଥାଶୁଣ ପ୍ରାଣପତି ।
ପରଧନ ପରସ୍ତିରୀ ହରିଥିବା ଜନେ
ସର୍ବସ୍ୱ ହରି ଆଣି ଯେ ରଖନ୍ତି ସଦନେ ।
ଋଣନେଇ ନ ଶୁଝନ୍ତି ଦିଅନ୍ତି ବୁଡ଼ାଇ
ବଳେ ପର ଭାରିଯାକୁ ଧରି ଓଟାରଇ ।
କୁଦାନ ଆଣି ସଞ୍ଚଇ ବହୁତ ଯେ ଧନ
ନଖାଇ ନଦେଇ ରଖେ କରିଣ ଯତନ ।
ଏ ଆଦି ପାପ କରିବା ପାପୀ କାନମୂଳେ
ଫାଶ ଦେଇଣ ଦଉଡ଼ି ଲଗାଇ ତା ଗଳେ ।
କର୍ଣ୍ଣ କଣ୍ଠମୂଳେ ସବୁ ପାପ ଯାକ ରହି
କଫ ରୂପରେ ତାହାର ଗଳାକୁ ରୁନ୍ଧଇ ।
ଦାରୁଣ କଷ୍ଟ ଦାରୁଣ ପୀଡ଼ାଦିଏ ପୁଣି
ଘଡ଼ଘଡ଼ି ହୁଏ ମୁଖେ ନ ଆସଇ ବାଣୀ ।
କଣ୍ଠ ଘୂରଇ ପାପୀର କରଇ ରୋଦନ
ପିତା ମାତା ଭାଇବନ୍ଧୁ କରେ ସୁମରଣ ।
ବାରମ୍ବାର ଡାକୁଥାଏ ଦେହଯାକ ଥରେ
ମହାପାପେ ମୋହଯାଇ ସକଳ ପାଶୋରେ ।
ବହୁତ ପୀଡ଼ାପାଇ ସେ ନଯାଇ ତା ପ୍ରାଣ
ପଡ଼ଇ ଉଠଇ ମୂର୍ଚ୍ଛାଯାଇ ଘନ ଘନ ।
ଏରୂପେ ତାହାକୁ ମୋହ ଗ୍ରାସଇ ଯେ ଆସି
ପ୍ରାଣ ସକଳ ତାହାର ଏକ ଯୋଗେ ମିଶି ।

ଅପାନ ବାୟୁକୁ ଆଶ୍ରାକରି କଷ୍ଟେ ଯାଏ
ଯମଦୂତେ ବାନ୍ଧିଘେନି ଯାନ୍ତି ଯମାଳୟେ ।
ପାପୀର ମୃତ୍ୟୁ କହିଲି ଶୁଣିଲତ କାନ୍ତ
ହରି ହରି ବୋଲ ଉଚ୍ଚେ କହେ ଗୋପୀନାଥ ।
ଇତି ଶ୍ରୀ ପଦ୍ମପୁରାଣେ ପାପୀ-ମରଣ-
ଲକ୍ଷଣ ନାମ ପଞ୍ଚଦଶୋଽଧ୍ୟାୟଃ ।



## ଷୋଡ଼ଶ ଅଧ୍ୟାୟ

## ପାପୀର ମୃତ୍ୟୁପର କ୍ଲେଶ ନିର୍ଣ୍ଣୟ

ପୁଣି ସୁମନ କହଇ କାନ୍ତ ସମ୍ମୁଖରେ
ଦୁରାତ୍ମା ପାପୀକି ଘେନି ଯମର କିଙ୍କରେ ।
ତତଲା ଅଙ୍ଗାର ସାତତାଳ ବହଳର
ଏମନ୍ତ ବାଟେ ଚାଲଇ ସେହି ପାପୀନର ।
ଯମଦୂତେ ତାକୁ ଧରି ନିଅନ୍ତି ଘୋଷାଡ଼ି
ତପତ ଅଙ୍ଗାରେ ପାପୀଦେହ ଯାଏ ପୋଡ଼ି ।
ମାଆଲୋ ବାପାଲୋ କହି ହୁଏ ଛଟପଟ
ଯମଦୂତେ ପିଟୁଥାନ୍ତି କରେ ଧରି ଛାଟ ।
ମଲି ମିଲି ରଖ ରଖ ମୁଁ ତୁମ୍ଭ ଶରଣ
ଏମନ୍ତେ ପାପୀ କରଇ ବହୁତ କାରୁଣ୍ୟ ।
ଘୋର ପ୍ରଖର ଖରାରେ ଯାଉଥାଏ ଜଳି
ଛାଇନାହିଁ ସେ ଦୁର୍ଗମ ପଥ ତୁଛାବାଲି ।
କ୍ଷୁଧା ତୃଷାର ବ୍ୟାକୁଳ ହେଉଥାଇ ସେହି
ଢୋକେ ପାଣିପେଜ ଦିଅ ମାଗୁଅଛି ମୁହିଁ ।
ଶରଣ ପଶୁଛି ଦୟାକର କିନା ବାରେ
ଏମନ୍ତେ ଘୋର ବିଳାପ ବାଟେ ପାପୀକରେ ।
ଗଦା ଖଡ଼ଗ ପରଶୁ ଧରି ଯମଦୂତେ
ହାଣନ୍ତି କୋପେ ପାପୀକି ଦୟାନାହିଁ ଚିତ୍ତେ ।
ବହୁତ ରୂପେ ତାହାକୁ ଗାଳିମନ୍ଦ ଦ୍ୟନ୍ତି
ଅତି ଶୀତଳ ବାଟରେ ପୁଣି ତାକୁ ନ୍ୟନ୍ତି ।
ଶୀତଳ ପବନେ ପାପୀ ସର୍ବାଙ୍ଗ ଥରଇ
ସେ ଦାରୁଣ କଷ୍ଟ ଭୋଗକରି କରି ଯାଇ ।
ଓଟାରି ଘୋଷାରି ଦୂତେ ନେଉଥାନ୍ତି ବାଟେ
ପାପୀକି ନେଇ ପକାନ୍ତି ଯମର ନିକଟେ ।
ଅଞ୍ଜନ ପର୍ବତ ପ୍ରାୟ ଯମ ଦିଶେ କଳା
ଗଳାରେ ଲମ୍ବି ଅଛଇ ରକ୍ତ ପୁଷ୍ପମାଳା ।
ଦନ୍ତ କରାଳ ବଦନ ଅତି ବିକଟାଳ
ପ୍ରଚଣ୍ଡ ଉଗ୍ରମୂରତି ଯେସନେ ଶାଇଳ ।
ଚଉଷଠି ବ୍ୟାଧି ପାଖେ ବେଢ଼ି ରହିଛନ୍ତି
ମହାଭୟଙ୍କର ଯମ କିଙ୍କରେ ଦିଶନ୍ତି ।
ଆଗେ କାଳ ବିକାଳ ଏ ବେନି ସେନାପତି
ହସ୍ତେ କାଳଦଣ୍ଡ ଶୋହେ ପ୍ରଚଣ୍ଡ ମୂରତି ।
ବସିଛି ଚିତ୍ରଗୁପତ ପାଞ୍ଜିକି ଫିଟାଇ
ଦିବ୍ୟ ସିଂହାସନେ ବିଜେ ରାଜା ଜନ୍ତୁସାଇଁ ।
ସର୍ବାଙ୍ଗେ ବୋଳି ହୋଇଛି ରକତ ଚନ୍ଦନ
ପିନ୍ଧିଅଛି ସରୁଝୀନ ପୀତ ଯେ ବସନ ।
ଅତି ଭୟଙ୍କର କଳା ମଇଁଷି ଛାମୁରେ
ମୃତ୍ୟୁ ବିରାଜଇ ଯମ ନୃପତିର କରେ ।
ଚକ୍ଷୁ ରଙ୍ଗବର୍ଣ୍ଣ ଦିଶେ ବାଳସୂର୍ଯ୍ୟ ପରି
ଯମ ରାଜାକୁ ଏରୂପେ ପାପୀ ଦେଖିକରି ।
ଭୟରେ ବୁଜି ପକାଇ ବେନିଚକ୍ଷୁ ତାର
ସର୍ବାଙ୍ଗ ଯାକ ତାହାର କମ୍ପେ ଥରହର ।
ଧର୍ମ କଣ୍ଟକ ପାପୀକି ଦେଖି ଜନ୍ତୁପତି
ସଭା ମଧ୍ୟରେ ଦିଅଇ ନାନାରୂପେ ଶାସ୍ତି ।
ପାଞ୍ଜି ଫିଟାଇ କହନ୍ତି ସେ ଚିତ୍ରଗୁପତେ
ବିଚାରି ଦଣ୍ଡ ପାପୀକି ଦିଅନ୍ତି ତୁରିତେ ।
କାହାକୁ ସହସ୍ରଯୁଗ କାହାକୁ ବା ଶତ
କାହାକୁ ବା କୋଟି କୋଟି ଯୁଗ ପରିଯନ୍ତ ।
ନରକେ ପଡ଼ିବାପାଇଁ ଆଜ୍ଞା ଦେଲାକ୍ଷଣି
ଯମଦୂତେ ବାନ୍ଧିକରି ତାର ପାଦ ପାଣି ।
ଘୋର ନରକ କୁଣ୍ଡରେ ଦିଅନ୍ତି ପକାଇ
ନାନା ନର୍କ ଭୋଗ ପୁଣି ପୁଣି ଯେ କରାଇ ।
କୋଟି କୋଟି କୃମି ଯୋନି ପାଇ ସେହି ପୁଣି
ହା ହା ହୋଇକରି ପାପୀ ହୁଅଇ ଅଜ୍ଞାନୀ ।
ଅମେଧ ମଧ୍ୟରେ ପଡ଼ି ପଚୁଥାଏ ନିତି
ଏରୂପେ ପାପୀ ମୃତ୍ୟୁର ଲକ୍ଷଣହେ ପତି ।
ପାପୀ ଯେ ଯୋନିରେ ପୁଣି ଜନମଇ ଯାଇ
ଆହେ ନାଥ ଶୁଣ ତାହା କହୁଛି ବୁଝାଇ ।
ପାପୀଲୋକ ଶତଜନ୍ମ ହୁଅଇ କୁକୁର
ତହୁଁ ଶତଜନ୍ମ ବାଘ ହୁଏ ପାପୀ ନର ।
ତହୁଁ ପୁଣି ଶତଜନ୍ମ ଗଧ ଜନ୍ମ ପାଇ
ତହୁଁ ଶତଜନ୍ମ ଯାଏ ମାର୍ଜାର ହୁଅଇ ।

ତହୁଁ ପୁଣି ଶତଜନ୍ମ ହୁଅଇ ଘୁଷୁରି
ଶତଜନ୍ମ ସାପହୋଇ ବିଳେ ବାସକରି ।
ତହୁଁ ସବୁ ପକ୍ଷୀଯୋନି ଭ୍ରମି ଭ୍ରମି ଯାଇ
ଚଣ୍ଡାଳ ଭିଲ୍ଲ ପୁଳିନ୍ଦ ହୋଇ ଜନମଇ ।
ଏରୂପେ ପାପୀ ନାନାଦି ଯୋନି ଭ୍ରମି ପୁଣି
ନରକ କୁଣ୍ଡରେ ପଡେ ପାଇ କୃମିଯୋନି ।
ବୁଝାଇ କହିଲି ନାଥ ପାପୀର ଜନମ
ଆଉ ଯାହା ପଚାରିବ ହେ ଦ୍ୱିଜ ସତ୍ତମ ।
ବୁଝାଇ କହିବି ନାଥ ଜାଣିଥିଲେ ତାହା
ଦୀନ ଗୋପୀନାଥ ଭଜେ ନିତ୍ୟ ଚଉବାହା ।
ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ଧର୍ମାଧର୍ମ
ମୃତ୍ୟୁ ଲକ୍ଷଣଂ ନାମ ଷୋଡ଼ଶୋଽଧ୍ୟାୟଃ ।



## ସପ୍ତଦଶ ଅଧ୍ୟାୟ

### ସୁମନା ଉପଦେଶେ ସୋମଶର୍ମାର ପୁତ୍ରାର୍ଥେ ବଶିଷ୍ଠ ପାଶେ ଗମନ

ସୋମଶର୍ମା କହିଲେ ଯେ ଶୁଣିଲି ସକଳ
ଯେବେଜଣାଯାଏ ପ୍ରିୟେତାହା ମୋତେବୋଲ ।
ଗୁଣବନ୍ତ ପୁତ୍ର ମୁହିଁ ପାଇବି କେମନ୍ତେ
ତାହାର ଉପାୟ କହିଦିଅ ପ୍ରିୟା ମୋତେ ।
ଦାନ ଧର୍ମକଲେ ଇହ ପର ସୁଖ ପାଇ
ଏଥିରେ ସଂଶୟ ନାହିଁ କହିଲ ବୁଝାଇ ।
ସୁମନା କହିଲା କାନ୍ତ ମୋର ବୋଲକଲେ
ଉତ୍ତମପୁତ୍ର ପାଇବ ନିଶ୍ଚେ ତୁମ୍ଭେ ଭଲେ ।
ବଶିଷ୍ଠ ମୁନି ସକଳ ଧର୍ମଜ୍ଞ ଅଟନ୍ତି
ତାହାଙ୍କ ପାଖକୁ ତୁମ୍ଭେ ଯାଇ ପ୍ରାଣପତି ।
ସେ ମହାମୁନିଙ୍କି ମାଗ ପ୍ରସନ୍ନ କରାଇ
ତାଙ୍କ କୃପାହେଲେ ପୁତ୍ର ନିଶ୍ଚେ ତୁମ୍ଭେପାଇ ।
ସୂତ କହନ୍ତି ଶୁଣନ୍ତି ମୁନିମାନେ ବସି
ଯହିଁ ଅଛନ୍ତି ବଶିଷ୍ଠ ନାମେ ମହାଋଷି ।
ଭାରିଯା କଥାରେ ସୋମଶର୍ମା ଦ୍ୱିଜ ଗଲା
ସେ ମୁନି ଆଶ୍ରମେ ଯାଇଁ ପ୍ରବେଶ ହୋଇଲା ।
ଆଶ୍ରମ କରି ଅଛନ୍ତି ଗଙ୍ଗାତୀରେ ଋଷି
ବ୍ରହ୍ମତେଜ ବିକାଶଇ ଯେହ୍ନେ ଅଗ୍ନିରାଶି ।

ମହାଜ୍ଞାନୀ ପବିତ୍ର ସେ ତପିକୁଳବର
ସୂର୍ଯ୍ୟତେଜ ପ୍ରାୟତେଜ ଅତ୍ୟନ୍ତ ପ୍ରଖର ।
ସୋମଶର୍ମା ଦ୍ୱିଜ ତାଙ୍କୁ ଦୂରରୁ ଦେଖିଲା
ଭକତିରେ ବାରମ୍ବାର ଦଣ୍ଡବତ କଲା ।
ବ୍ରହ୍ମା ନନ୍ଦନ ବଶିଷ୍ଠ ବିପ୍ରକୁ ବୋଲନ୍ତି
ଏହି ପବିତ୍ର ଆସନେ ବସ ମହାମତି ।
ଯୋଗୀନ୍ଦ୍ର ବଶିଷ୍ଠ ଏହିକଥା କହି ପୁଣି
ବୋଇଲେ ତୁମ୍ଭ କୁଶଳ କହ ବିପ୍ରମଣି ।
ଗୃହ ପୁତ୍ର ଦାରା ଭୃତ୍ୟ ପୁଣ୍ୟ କର୍ମମାନ
କୁଶଳେ ଅଛିତ ତୁମ୍ଭ ଅଗ୍ନିହୋତ୍ର ସ୍ଥାନ ।
ନିରୋଗୀହୋଇ ଧର୍ମକୁ ପାଳୁଛତ ନିତ୍ୟ
ବଶିଷ୍ଠଋଷି ପଚାରି କୁଶଳ ଏମନ୍ତ ।
ପୁଣିହିଁ ହୋଇଲେ କହ ଆହେ ଦ୍ୱିଜବର
କି ପ୍ରିୟ କାର୍ଯ୍ୟ କରିବି ମୁହିଁ ଯେ ତୁମ୍ଭର ।
ବଶିଷ୍ଠଋଷି ଏ କଥା କହି ହେଲେ ତୁନି
ସୋମଶର୍ମା ବୋଇଲେ ହେ ଶୁଣ କୁମ୍ଭଯୋନି ।
ପ୍ରସନ୍ନ ଚିତ୍ତେ ମୋ କଥା କରନ୍ତୁ ଶ୍ରବଣ
ମୋ ପ୍ରିୟକାର୍ଯ୍ୟ କରିବା ପାଇଁ ଯେବେ ମନ ।
ସନ୍ଦେହ ଛେଦନ କର ଆହେ ମୁନିବର
କି ପାପେ ମୁହିଁ ଦରିଦ୍ର ହୋଇଲି ଆବର ।
ପୁତ୍ରମୁଖ ନଦେଖିଲି କି ପାପରେ ତାତ
ଏ ସଂଶୟ ନିବାରଣ କର କହି ସତ୍ୟ ।
ମହାମୋହେ ମୋହିତ ମୁଁ ହୋଇ ରାତିଦିନ
ଏଚିନ୍ତାରେ ମୋରଦେହ ହେବାରୁଯେ କ୍ଷୀଣ ।
ଭାରିଯା ମୋର ପ୍ରବୋଧି ଦେଇଛି ପଠାଇ
ତବପାଶେ ଆସିଅଛି ଚିନ୍ତାଭାରେ ଧାଇଁ ।
ଯହିଁରେ ମୋର ସନ୍ଦେହ ଯିବ ତାହା କହ
ସଂସାର ବନ୍ଧନ ମୋକ୍ଷଦାତା ମୋର ହୁଅ ।
ବଶିଷ୍ଠ କହିଲେ ତୁହେ। ଶୁଣ ଦ୍ୱିଜବର
ସମ୍ବନ୍ଧ ଭେଦରେ ପୁତ୍ର ମିତ୍ର ସହୋଦର ।
ବନ୍ଧୁ ବାନ୍ଧବ ସହିତେ ଏ ପାଞ୍ଚ ପ୍ରକାର
ପୂର୍ବେ କହିଛି ଭାରିଯା ସୁମନା ତୋହର ।
ଚାରିପ୍ରକାର ସମ୍ବନ୍ଧୀ କହିଛି ବୁଝାଇ
ଋଣ ସମ୍ବନ୍ଧୀ ଯେ ନ୍ୟାସ ଅପରାହୀ ଦୁଇ ।
ରିପୁ ସମ୍ବନ୍ଧୀ ଆବର ଉଦାସ ଏ ଚାରି
ଏସବୁ କୁପୁତ୍ର ଜାଣ ତୁହୋ ତପଚାରୀ ।

ସୁପୁତ୍ର ଲକ୍ଷଣ ସେହି କହିନାହିଁ ତୋତେ
ଏକ୍ଷଣି ଆମ୍ଭେ କହିବା ତାହା ତୋ ଅଗ୍ରତେ ।
ଯାହାର ମନ ନିରତେ ପୂଣ୍ୟ ଆସକତ
ସତ୍ୟଧର୍ମ କର୍ମେ ନିତ୍ୟ ଯେ ସର୍ବଦା ରତ ।
ସଦଜ୍ଞାନୀ ବିଜ୍ଞାନୀ ଯେ ତପେ ରତଥାଇ
କଥା କହିବା ଚାତୁରୀ ଯାହାର ଅଛଇ ।
ଧଇର୍ଯ୍ୟ ଧରି ସେ ସବୁ କାର୍ଯ୍ୟ କରିପାରେ
ଶ୍ରଦ୍ଧା ଭକତିରେ ନିତ୍ୟ ବେଦପାଠ କରେ ।
ପୁରାଣ ଆଦି ସକଳ ଶାସ୍ତ୍ର ଯେ ଜାଣଇ
ଦେବଦ୍ୱିଜ ପୂଜାରେ ଯେ ନିତ୍ୟ ରତ ଥାଇ ।
ସକଳ ଯଜ୍ଞ ସଜାଇ ପାରଇ ଆବର
ମଧୁର କୋମଳ କରି କହେ ନିରନ୍ତର ।
ଦାତା ଆବର ସନ୍ନ୍ୟାସୀ ବିଷ୍ଣୁଧ୍ୟାନେ ରତ
ମନକୁ ଦମନକରେ ସର୍ବଦା ଯେ ଶାନ୍ତ ।
ମିତ୍ର ବନ୍ଧୁ ବାନ୍ଧବଙ୍କୁ ଯେହୁ ଭଲପାଇ
ପିତା ମାତା ଆଦି ଗୁରୁଜନେ ଭକ୍ତିଥାଇ ।
ସ୍ୱଜନ ବାସଲ୍ୟ କୁଳ ପାରଇ ଉଦ୍ଧାରି
ପାଠପଢ଼ି ତା ମରଣ ଯେହୁ ବୁଝିପାରି ।
କୁଟୁମ୍ବଙ୍କୁ ଯେହୁ ପୋଷି ପାରଇ ଆବର
ସୁଖ ଦିଅଇ ସେ ପୁତ୍ର ଜାଣ ଦ୍ୱିଜବର ।
ଏମନ୍ତ ଗୁଣବନ୍ତ ଯେ ପୁତ୍ର ସେ ସୁପୁତ୍ର
ସମ୍ବନ୍ଧୀ ପୁତ୍ର ଯେତେକ ସେ ସବୁ କୁପୁତ୍ର ।
ନିରତେ ଶୋକ ସନ୍ତାପ ଦିଅନ୍ତି କେବଳ
ସେ ସବୁ ପୁତ୍ର ଜନମ ହେବାହିଁ ନିଷ୍ଫଳ ।
ସେ ସବୁ ପୁତ୍ରାଦି ରୂପେ ଆସନ୍ତି ସଂସାରେ
ଦାରୁଣ ସନ୍ତାପ ଦେଇଯାନ୍ତି ବାରେ ବାରେ ।
ତୋର ପୂର୍ବଜନ୍ମ କଥା ଶୁଣି ଦ୍ୱିଜବର
ଅତି ଆଶ୍ଚର୍ଯ୍ୟ ଅଟଇ ସେ ଜନ୍ମ ତୁମ୍ଭର ।
ବଶିଷ୍ଠ କହନ୍ତି ସୋମଶର୍ମା ଯେ ଶୁଣନ୍ତି
ଅତି ପବିତ୍ର ଅଟଇ ଯାର ଫଳଶ୍ରୁତି ।
ପୂର୍ବଜନ୍ମେ ଶୁଦ୍ରଘରେ ତୁମ୍ଭର ଜନମ
ଜୀବିକା ତୁମ୍ଭର ଥିଲା କୃଷି ଆଦି କର୍ମ ।
ଅତି ଲୋଭୀ ଅଜ୍ଞାନୀ ଯେ ଥିଲା ତୁମ୍ଭେ ପୁଣି
ଗୋଟିଏ ଭାରିଯା ତୋର ସେ ଅତି ଘରଣୀ ।
ସବୁବେଳେ ଦ୍ୱେଷ ହିଂସାଥାଇ ତୋରମନେ
ବହୁତ ପୁତ୍ର ସେ ଥାନ୍ତି ତୋହର ସଦନେ ।

କାହାକୁ କିଛିହିଁ ଦ୍ରବ୍ୟ ନଦେଉ ତୁ ଲୋଭେ
ଧର୍ମ କାହାକୁ କହନ୍ତି ନ ଜାଣୁ ତା କେଭେ ।
ସତକଥା ଶୁଣିଲେ ତୁ ହେଉ ବିରକତ
ଶାସ୍ତ୍ର ନଶୁଣି କାନରେ ଦେଉ ପୁଣି ହାତ ।
ଆହୋ ମହାମତି ତୁହି ସେ ଜନମେ ପୁଣି
ତୀର୍ଥବ୍ରତ କରିନାହୁଁ ତୁହୋ ଦ୍ୱିଜମଣି ।
କେବଳ କୃଷି କାର୍ଯ୍ୟରେ ହରୁତାଉ ଦିନ
ଆବର ତୁ କରୁଥାଉ ପଶୁଙ୍କୁ ପାଳନ ।
ଗୋରୁ ଘୋଡ଼ାଛେଳି ମେଣ୍ଢାପାଳି ବିକୁକିଣୁ
ଧନ ସମ୍ପାଦିବା ଛଡ଼ାକିଛି ତୁ ନଜାଣୁ ।
ଲୋଭରେ ସଞ୍ଚିଲୁ ତୁହି ବହୁତ ଯେ ଧନ
ସେ ଧନେ ତୁ କରିନାହୁଁ କେବେ କିଛିପୁଣ୍ୟ ।
ସତପାତ୍ରେ ନ କରିଛୁ ସେ ଧନ ତୁ ଦାନ
ସତକର୍ମେ ନ ଲାଗିଛି ସେ ତୋହର ଧନ ।
ଦୁର୍ବଳ ଦରିଦ୍ରେ ଦୟା ନଥିଲା ତୋହର
ଘୋଳଦହି ବସା ଦହି ଛେନା ଘୃତ କ୍ଷୀର ।
ଗୋମଇଁଷି ଛେଳି ମେଣ୍ଢା ଅଣ୍ଡିରାବାଛୁରୀ
ଏମାନେ ବିକି ସେ ଧନ ସଞ୍ଚି ରଖି କରି ।
ଶ୍ରୀବିଷ୍ଣୁର ମାୟା ମୋହେ ପଡ଼ି ଦିନରାତି
ଧନ କେମନ୍ତେ ବଢ଼ିବ ଏ ଚିନ୍ତାତୋ ଅତି ।
ଦୁର୍ଭିକ୍ଷ ପଡ଼ିଲେ ଧନ ହୁଅନ୍ତା ବହୁତ
ପୁତ୍ରନାତି ଖାଇକରି ହୁଅନ୍ତେ ଆନନ୍ଦିତ ।
ଏମନ୍ତ ଚିନ୍ତାରେ ଭାଳି ଭାଳି ଯାଏ ଦିନ
ଦୁର୍ଭିକ୍ଷରେ ଅନ୍ନକଷ୍ଟେ ମରୁଥିଲେ ଜନ ।
ନଦେଇ ଅନ୍ନ ତୁ ପୁଣି ଅତିସସ୍ତା ପାଇ
ଦ୍ରବ୍ୟକିଣି ଧନସଞ୍ଚୁ ସଞ୍ଚୁ ଦିନଯାଇ ।
ଅତି ନିର୍ଦ୍ଦୟ ତୁ ଧନ ନ ଦେଉ କାହାକୁ
ଦିନେମାତ୍ର ପୂଜିନାହୁଁ ତୁହିଁ ଦେବତାଙ୍କୁ ।
ବିପ୍ରହସ୍ତେ ଦେଇନାହୁଁ ଦିନେ ତୁହି ଦାନ
ପର୍ବ ପର୍ବାଣୀରେ ତାଙ୍କୁ ନଦେଉ ଭୋଜନ ।
ଶ୍ରଦ୍ଧାରେ ଶ୍ରାଦ୍ଧ ନ କରୁ ପିତୃଦିନ ଜାଣି
ସାଧବୀ ଯେ ପତିବ୍ରତା ତୋହର ଘରଣୀ ।
ବୋଲଇ ଯେ ଆଦି ପୁଣି ଶ୍ୱଶୁରଙ୍କ ଦିନ
ଶ୍ରାଦ୍ଧକର ଦେଉଛି ମୁଁ ରାନ୍ଧିବାଢ଼ି ଅନ୍ନ ।
ନଶୁଣୁ ତାହାର କଥା ତୁ ଅତି କୃପଣ
ଶାଶୁର ଦିନ ପଡ଼ିଲେ କହଇ ସେ ପୁଣ ।

ଧନ ସରିଯିବା ଭୟେ ନଶୁଣୁ ତା କଥା
ଘରୁ ତୁ ପକାଇଯାଉ ପାଇ ମନେ ବ୍ୟଥା ।
ଧର୍ମହିଁ ନକରୁ ଧର୍ମ କଥାହିଁ ନଶୁଣୁ
ଧର୍ମଛାଡ଼ି ଲୋଭେ ପଡ଼ି କିଛି ହିଁ ନଜାଣୁ ।
କେବଳ ଧନ ସଞ୍ଚିବା ଧନ ବଢ଼ାଇବା
ଏହାଭିନ୍ନ ଆଉ କିଛି ନଜାଣୁରେ ବାବା ।
ଲୋଭ ତୋର ପିତାମାତା ଭାଇବନ୍ଧୁ ଥିଲା
ଏ ଜନମେସେହିଲୋଭ ତୋତେ ପୀଡ଼ାଦେଲା ।
ଦୁଃଖୀ ଦରିଦ୍ର କରାଇ ଦେଉଅଛି କଷ୍ଟ
ତୃଷ୍ଣାରେ ତୋର ହୃଦୟ ହୋଇ ପରିପୁଷ୍ଟ ।
ଧନ ବଢ଼ିଲେ ସେ ଆଶା ନ ତୁଟି ଆବର
ବେଳକୁବେଳ ବଢ଼ଇ ସେ ଆଶା ତୋହର ।
ରାତିଦିନ ପୁଣି ନିଦ ନ ମାଡ଼ଇ ତୋତେ
ଶତ ସୁବର୍ଣ୍ଣ ମୁଦ୍ରା ମୁଁ ପାଇବି କେମନ୍ତେ ।
ଶତମୁଦ୍ରାପତି ଯହୁଁ ବୋଲାଇଲୁ ତୁହି
ବିଚାରିଲୁ ସେ ସହସ୍ରପତି ହେବି ମୁହିଁ ।
ସହସ୍ର ସୁବର୍ଣ୍ଣ ମୁଦ୍ରା ଯହୁଁ ତୁ ସଞ୍ଚିଲୁ
ଲକ୍ଷପତି ହେବାପାଇଁ ପୁଣି ମନାସିଲୁ ।
ଲକ୍ଷେକ ସୁବର୍ଣ୍ଣମୁଦ୍ରା ସଞ୍ଚିଲୁତୁ ଯହୁଁ
କୋଟିପତି ହେବାପାଇଁ ବିଚାରିଲୁ ତହୁଁ ।
କୋଟିଏ ମୁଦ୍ରା ରଖିଲୁ ଯହୁଁ ତୁ ଯତନେ
ଅର୍ବୁଦପତି ହେବାକୁ ପାଞ୍ଚିଲୁ ତୁ ମନେ ।
ଅର୍ବୁଦେ ସୁବର୍ଣ୍ଣମୁଦ୍ରା ରଖନ୍ତେ ତୁ ଘରେ
ଖର୍ବପତି ହେବାପାଇଁ ପାଞ୍ଚିଲୁ ମନରେ ।
ଖର୍ବେକ ସୁବର୍ଣ୍ଣମୁଦ୍ରାହେଲା ତହୁଁ ତୋର
ନିଖର୍ବପତି ହେବାକୁ ବାଞ୍ଛିଲୁ ଆବର ।
ଏସବୁ ସୁନା ମୋହର ପାଇ ପୁଣି ତୁହି
ତହିଁରେ ତୋହର ଆଶା ପୂରିଲା ଯେ ନାହିଁ ।
ତୋ ଦେହକୁଛାଡ଼ି ସେହି ଆଶା ବେଳୁଁ ବେଳ
ନିତି ବଢ଼ିଲା ତାହାର ନାହିଁ ଅଟକୂଳ ।
ଦାନହିଁ ନକଲୁ କିଛି ବିପ୍ରଙ୍କୁ ନଦେଲୁ
ଅଗ୍ନିମୁଖେ ବିପ୍ରମୁଖେ ନଦେଇ ସଞ୍ଚିଲୁ ।
ଭୂମି ଖୋଳିଣ ପୋତିଲୁ ପୁତ୍ରଙ୍କୁ ଲୁଚାଇ
କେହି ନଜାଣିଲେ ଅତି ଗୁପତେ ତା ଥୋଇ ।
ଅଜ୍ଞାତ ସାର ହୋଇଲା ସେ ଧନ ତୋହର
ହାତ ନଦେବି ଏ ଧନ ରହିଲା ମୋହର ।

ଏମନ୍ତ ଭାଳି ନିଶ୍ଚିନ୍ତ ହୋଇ ନପାରିଲୁ
ଧନ ଅରଜିବା ପାଇଁ ପୁଣି ମନ କଲୁ ।
ଥୟକରି ନଦେଲା ସେ ଆଶାକାଣ ତୋତେ
ଉପାୟ ପାଞ୍ଚିଲୁ ଧନ ପାଇବା ନିମନ୍ତେ ।
ଲୋକ ଦେଖିଣ ପଚାରୁଥାଉ ତୁହିଁ ନିତି
କି ଉପାୟ କଲେ ମୋର ବଢ଼ିବ ସମ୍ପତ୍ତି ।
ଖଣତି ଗୋଟାଏ ଧରି କଲୁ ତୁ ଗମନ
ସିଦ୍ଧାଞ୍ଜନ ସ୍ୱର୍ଣ୍ଣ ଆଦି ଧାତୁଦ୍ରବ୍ୟ ମାନ ।
ପଚାରି ପଚାରି ଯାଉ ଯାଉ ତୁ ଏକାକେ
ଭ୍ରମାଇ ପକାଇତୋତେ ତୃଷ୍ଣା ମୋହ ପଙ୍କେ ।
ସ୍ପରଶମଣି ପାଇବା ଆଶା ତୋ ଅନ୍ତରେ
ସିଦ୍ଧିପ୍ରଦ ସ୍ୱର୍ଣ୍ଣ ଆଦି ପାଇବା ଚିନ୍ତାରେ ।
ବହୁମୂଲ୍ୟ ଦ୍ରବ୍ୟ ଯେଣେ ନିର୍ମାଣି ପାରିବି
ଯହିଁରେ କି ମୁହିଁ ଭୂମି ବିବରେ ପଶିବି ।
ଏହାର ଉପାୟ ଭାଳୁଥାଉ ତୁ କେବଳ
ତୋତେ ଦୁଃଖଦିଏ ପୋଡ଼ାସେ ତୃଷ୍ଣାଅନଳ ।
ପାଇବା ତତ୍ତ୍ୱ ପଚାରୁ ଲୋକ ଦେଖିକରି
କିଞ୍ଚିତ ସୁଖ ନଥାଏ ମନରେ ତୋହରି ।
ପୋଡ଼ିଯାଇ ତୃଷ୍ଣାନଳେ ହାହାହାହା ହୋଇ
କାଳକବଳରେ ପଡ଼ି ଚେତା ହଜିଯାଇ ।
ତୋହରଯେ ସ୍ତରୀପୁତ୍ର ଆଦି ଥିଲେ ଯେତେ
ପଚାରିଥିଲେ ରଖିଛ ଧନ ତୁମ୍ଭେ କେତେ ।
କାହିଁ ରଖିଛ ସେ ଧନ କହିଥା ଆମ୍ଭଙ୍କୁ
ନକହି ତୁମ୍ଭେ ଚଳିଲ ଯମ ସଦନକୁ ।
ଏହି ଯେ ପୂର୍ବ ବୃତ୍ତାନ୍ତ କହିଲୁଁ ତୁମ୍ଭର
ପୂର୍ବଜନ୍ମ କର୍ମଫଳ ଏବେ ଭୋଗ କର ।
ଦରିଦ୍ର ନିର୍ଦ୍ଧନୀ ହୋଇ ପାଉଛ କଷଣ
ଶ୍ରୀବିଷ୍ଣୁ ଦେବ ଯାହାକୁ ହୁଅଇ ପ୍ରସନ୍ନ ।
ସେ ଭକତ ଶତପୁତ୍ର ପାଏ ଏ ସଂସାରେ
ପୁତ୍ରନାତି ଧନ ଧାନ୍ୟ ଘେନି ଘରକରେ ।
ଶ୍ରୀବିଷ୍ଣୁ ପ୍ରସନ୍ନ ବିନେ ସୁଜନ୍ମ ନପାଇ
ସୁପୁତ୍ର ସୁଭାରିଯା ସେ ପାଇବ ବା କାହିଁ ।
ଉତ୍ତମକୁଳେ ଜନମ ହୋଇବ କେମନ୍ତେ
ଶ୍ରୀବିଷ୍ଣୁପଦ ନପାଇ ସେହି କଦାଚିତେ ।
ଗୋପୀନାଥ ଦିନରାତି ଶ୍ରୀବିଷ୍ଣୁ ଶରଣ
ଘୋର କଷଣୁ ଉଦ୍ଧାର ପାଇବା କାରଣ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ
ସୁମନୋପାଖ୍ୟାନଂ ନାମ
ସପ୍ତଦଶୋଽଧ୍ୟାୟଃ ।



## ଅଷ୍ଟାଦଶ ଅଧ୍ୟାୟ

### ସୋମଶର୍ମା ବିପ୍ରଜନ୍ମ କାରଣ

କହିଲେ ସେ ସୋମଶର୍ମା ଆହେ ମହାମୁନି
କହିଲ ମୋ ପୂର୍ବଜନ୍ମ ପାପର କାହାଣୀ ।
ଏ ଜନମେ ବିପ୍ରହୋଇ କହ ମୁଁ କେମନ୍ତେ
ଜ୍ଞାନୀ ବିଜ୍ଞାନୀ ହୋଇଲି କହ କି ନିମନ୍ତେ ।
ବଶିଷ୍ଠମୁନି କହିଲେ ଆହୋ ଦ୍ୱିଜବର
ପୂର୍ବେ କିଛି ଧର୍ମ କର୍ମ ଥିବାରୁ ତୁମ୍ଭର ।
ସେ ଧର୍ମ ଗୋଟା କହୁଛି ମୁଁ ତୁମ୍ଭ ଅଗ୍ରତେ
ଏକ ଦିନକର କଥା ଶୁଣ ଏକଚିତ୍ତେ ।
ଏକ ସଦାଚାରୀ ବିପ୍ର ଶ୍ରୀହରି ଭକତ
ଆବର ସେ ମହାଜ୍ଞାନୀ ନିତ୍ୟ ଧର୍ମେ ରତ ।
ତୀର୍ଥଯାତ୍ରା ଛଳେ ମହୀମଣ୍ଡଳ ଭ୍ରମଇ
ଭ୍ରମି ଭ୍ରମି ତୋର ଘରେ ପହୁଞ୍ଚିଲା ଯାଇ ।
ରହିବା ପାଇଁ ମାଗିଲା ବଖରାଏ ଘର
ପୁତ୍ର ଭାରିଯାକୁ ଘେନି ତୁହୋ ଦ୍ୱିଜବର ।
ବୋଇଲ ଯେ ଆସ ଆସ ବୈଷ୍ଣବ ଗୋସାଇଁ
ଏ ଘରେ ରହି ପବିତ୍ର କର ଏହି ଭୂଇଁ ।
ଏ ଘରଗୋଟା ତୁମ୍ଭର ନୋହେକି ସୁବ୍ରତ
ତୁମ୍ଭ ପାଦ ଯୁଗ୍ମ ସେବି ହୋଇବୁ ପବିତ୍ର ।
ଆଜି ପୁଣ୍ୟ ତୀର୍ଥ ଯାତ୍ରା ହୋଇଲା ଆମ୍ଭର
ତୀର୍ଥର ଫଳ ପାଇବୁ ସେବି ତୋ ପୟର ।
ଏମନ୍ତ କହି ରଖିଲ ପବିତ୍ର ଗୋ ଗୃହେ
ତଇଳ ମର୍ଦ୍ଦନକରି ଅତିଥିର ଦେହେ ।
ଉତ୍ତମ ଜଳେ ସର୍ବାଙ୍ଗ କରାଇଣ ସ୍ନାନ
ବିପ୍ର ପାଦୋଦକ କଲ ଭକତିରେ ପାନ ।
ସଜମରା ଘିଅ ଦହି ଦୁଧ ଅନ୍ନ ଦେଇ
ଜ୍ଞାନୀ ବଇଷ୍ଣବଙ୍କୁ ଯେ ସନ୍ତୋଷ କରାଇ ।
ଉତ୍ତମ ଶଯ୍ୟାରେ ତାଙ୍କୁ କରାଇ ଶୟନ
ସକୁଟୁମ୍ବେ କଲ ବିପ୍ର ପାଦ ମଞ୍ଚାଳନ ।
ନିଦ୍ରାଗଲା ସୁଖେ ଯହୁଁ ବିପ୍ର ଚୂଡ଼ାମଣି
ନିଶ୍ଚିନ୍ତେ ଶୋଇଲ ତୁମ୍ଭେ ସପୁତ୍ର ଘରଣୀ ।
ରାତି ପାହିଗଲା ଉଦେ ହେଲେ ଦିନକର
ଶୁକ୍ଳପକ୍ଷ ଏକାଦଶୀ ଆଷାଢ଼ ମାସର ।
ବଡ଼ ଏକାଦଶୀ ପର୍ବ ପାତକ ନାଶିନୀ
ପୁଣ୍ୟଦିନ ବୋଲି ତାକୁ ବୋଲନ୍ତି ଯେ ଜ୍ଞାନୀ ।
ସର୍ବ ସଉଭାଗ୍ୟ ଦିଏ ସେହି ପୁଣ୍ୟତିଥି
ସବୁ ଛାଡ଼ି ପଣ୍ଡିତେ ସେ ବ୍ରତକୁ ପାଳନ୍ତି ।
ଶ୍ରୀବିଷ୍ଣୁ ଧ୍ୟାନରେ କାଳ କାଟନ୍ତି ସେଦିନ
ଶ୍ରୀବିଷ୍ଣୁ ନାମ କୀର୍ତ୍ତନ ନୃତ୍ୟ ବାଦ୍ୟ ଗାନ ।
ଏମନ୍ତେ ମୁହାଉଛବେ ସେ ବ୍ରତ କରନ୍ତି
ବିପ୍ରେ ବସି ବେଦସ୍ତୁତି ସେଦିନ ପଢ଼ନ୍ତି ।
ଏକାଦଶୀ ବ୍ରତ ଯହୁଁ ପଡ଼ିଲା ସେଦିନ
ଜ୍ଞାନୀ ବଇଷ୍ଣବ ବିପ୍ରକରି ପ୍ରାତଃ ସ୍ନାନ ।
ଏକାଦଶୀ ବ୍ରତ କଲା ରହି ଉପବାସେ
ଏକାଦଶୀର ମାହାତ୍ମ୍ୟ ପଢ଼ିଲ ହରଷେ ।
ଭାରିଯା ପୁତ୍ର ଘେନି ତୁ ଶୁଣିଲୁ ଶ୍ରଦ୍ଧାରେ
ବ୍ରତ କରିବାକୁ ବିପ୍ର ଅନୁରୋଧ କରେ ।
ଏକାଦଶୀ କଲ ତୁମ୍ଭେ କୁଟୁମ୍ବ ସହିତେ
ନଦୀଜଳେ ସ୍ନାନକରି ଅଇଲ ତୁରିତେ ।
ଗନ୍ଧପୁଷ୍ପ ଆଦି ନାନା ଉପହାର ଦେଇ
ମଧୁସୂଦନ ପୁଜିଲ ବିପ୍ର ପାଶେ ରହି ।
ନୃତ୍ୟଗୀତ ସଂକୀର୍ତ୍ତନେ ପୁହାଇଲ ରାତି
ନଦୀଜଳେ ସ୍ନାନକଲ ହୁଅନ୍ତେ ପାହାନ୍ତି ।
ଗନ୍ଧପୁଷ୍ପ ଧୂପ ଦୀପ ନଇବେଦ୍ୟ ଦେଇ
ଦେବଦେବ ଗୋବିନ୍ଦଙ୍କୁ ପୂଜାକଲ ଯାଇଁ ।
ହରିଙ୍କି ସ୍ନାନ କରାଇ ଶ୍ରଦ୍ଧା ଭକତିରେ
ପିତୃଙ୍କ ନିମନ୍ତେ ଦାନଦେଇ ବିପ୍ରକରେ ।
ପ୍ରଣାମ କରି ବ୍ରତର ଦକ୍ଷିଣା ଯେ ଦେଲ
ସମସ୍ତେ ବିପ୍ର ପାରଣାବିଧି ଆଚରିଲ ।
ଶ୍ରୀବିଷ୍ଣୁ ପ୍ରସାଦେ ଏକାଦଶୀ ବ୍ରତ ଫଳେ
ସାଧୁସଙ୍ଗ ଗୁଣେ ସେହି ମହା ପୁଣ୍ୟବଳେ ।
ଏ ଜନମେ ବିପ୍ର ଘରେ ଜନମ ହୋଇଲ
ସେ ବ୍ରତର ଫଳେ ସତ୍ୟ ଧର୍ମେ ମନ ଦେଲ ।
ବିପ୍ରେ ଅନ୍ନଦେବା ଫଳେ ପାଇଲ ମିଷ୍ଟାନ୍ନ
ପୂର୍ବେ ମହାମାୟା ମୋହେ ପଡ଼ିହୋଇ ଛନ୍ନ ।

ତୃଷ୍ଣାର ଆକୁଳେ ମନ ଚଞ୍ଚଳ ତୋହର
ଆଜୀବନ ଧନ ସଞ୍ଚି ନୋହିଲୁ ତୁ ସ୍ଥିର ।
କାହାକୁ ନଦେଇ ମଲୁ ସେ ପାପର ଫଳେ
ଏ ଜନ୍ମେ ଦରିଦ୍ର ହେଲେ ଧନହିଁ ନମିଳେ ।
ଅପୁତ୍ରିକ ହେଲୁ ସେହି ପାପ ଫଳେ ତୋର
ଶ୍ରୀବିଷ୍ଣୁ ସେବା ପୁଣ୍ୟର ମୂଳ ଦ୍ୱିଜବର ।
ଶ୍ରୀବିଷ୍ଣୁର ମହିମାରେ ସାଧୁ ପୁତ୍ର ପାଇ
ଶ୍ରୀବିଷ୍ଣୁ ପ୍ରସାଦେ ବିପ୍ର ସତ୍କୁଳ ମିଳଇ ।
ଶ୍ରୀବିଷ୍ଣୁ ସେବାରେ ହୁଏ ଧନଧାନ୍ୟ ଜନ
ଉତ୍ତମ ସ୍ତିରୀ ମିଳଇ କଲେ ମହାପୁଣ୍ୟ ।
ଉତ୍ତମ ଜନ୍ମ ଉତ୍ତମ ମରଣ ଆବର
ଉତ୍ତମ ଭୋଗ ଉତ୍ତମ ସୁଖ ରାଜ୍ୟଭାର ।
ସ୍ୱର୍ଗ ମୋକ୍ଷ ଆଦି କିଛି ନୁହଇ ଦୁର୍ଲଭ
ଏସବୁ ବିଷ୍ଣୁ ପ୍ରସାଦେ ହୁଏ ସିନା ଲାଭ ।
ଏଣୁ ତୁମ୍ଭେ ଶ୍ରୀ ବିଷ୍ଣୁର ପୂଜାକର ଯାଇ
ନାରାୟଣ ପୂଜାକଲେ ସବୁ ଦ୍ରବ୍ୟପାଇ ।
ଶ୍ରୀ ଗୋବିନ୍ଦ ପୂଜା ଫଳେ ମିଳେ ବିଷ୍ଣୁପଦ
ପୁତ୍ରଧନ ଧାନ୍ୟ ଆଦି ସକଳ ସମ୍ପଦ ।
ତୋର ପୂର୍ବଜନ୍ମ ବିପ୍ର କହିଲି ବୁଝାଇ
ଏହାଜାଣି ନାରାୟଣ ପୂଜାକର ଯାଇ ।
ବ୍ରହ୍ମା ନନ୍ଦନ ବଶିଷ୍ଠ ମୁଖୁଁ ଏହା ଶୁଣି
ପ୍ରଣମି ମୁନି ଚରଣ ଯୁଗେ ବିପ୍ରମଣି ।
ମେଲାଣି ଘେନି ଆପଣା ଗୃହକୁ ଅଇଲା
ଭାରିଯା ସୁମନା ଆଗେ ସକଳ କହିଲା ।
ପୁଣି ତୋହର ପ୍ରସାଦେ ବଶିଷ୍ଠ କୃପାରେ
ପୂର୍ବ ଜନମର କଥା ଜାଣିଲି ଗୋ ଧୀରେ ।
ମୋହର ବିସ୍ତାର ମୋହଜାଲ ଗଲା ଛିଡ଼ି
ମଧୁସୂଦନ ସେବିବି ସବୁ କଥା ଛାଡ଼ି ।
ପାଇବି ପରମ ପଦ ବିଷ୍ଣୁ ପରସାଦେ
ପୁତ୍ର ଧନ ଧାନ୍ୟ ଆଦି ସକଳ ସମ୍ପଦେ ।
ପୂରିବ ମୋହର ଘର ଆଗୋ ସୁଲକ୍ଷଣୀ
ସ୍ୱାମୀର ମୁଖୁ ମଙ୍ଗଳମୟ ସାଧୁବାଣୀ ।
ଶୁଣି ସେ ସୁମନା ପୁଣି ସ୍ୱାମୀକି କହିଲା
ବଶିଷ୍ଠ ଦର୍ଶନେ ସବୁ ପାପ ଛାଡ଼ିଗଲା ।
ଏବେ ତାଙ୍କ କଥାମାନି ବିଷ୍ଣୁ ପୂଜାକର
ଦୀନ ଗୋପୀନାଥ ଭଜେ ଶ୍ରୀବିଷ୍ଣୁ ପୟର ।

ଇତି ଶ୍ରୀପଦ୍ମ ପୁରାଣେ ଭୂମିଖଣ୍ଡେ ସୋମଶର୍ମା
ଦ୍ୱିଜ ପୂର୍ବଜନ୍ମ ବର୍ଣ୍ଣନଂ ନାମ
ଅଷ୍ଟାଦଶୋଽଧ୍ୟାୟଃ ।



## ଊନବିଂଶ ଅଧ୍ୟାୟ

## ସୁମନା ସହିତ ସୋମଶର୍ମାର ରେବା କପିଳ ସଙ୍ଗମ ତୀର୍ଥେ ତପସ୍ୟା

ସୂତମୁନି କହୁଛନ୍ତି ଶୁଣନ୍ତି ଋଷିଏ
ସୁମନାକୁ ସଙ୍ଗେଘେନି ସୋମଶର୍ମା ଯାଏ ।
କପିଳା ସଙ୍ଗମ ରେବତୀର ପୁଣ୍ୟତୀର୍ଥ
ତହିଁ ସ୍ନାନକଲା ସେହି ବିପ୍ର ବୁଦ୍ଧିମନ୍ତ ।
ଦେବତା ପିତୃ ତର୍ପଣ କଲା ତୀର୍ଥଜଳେ
ଧ୍ୟାନରେ ବସିଲା ବିପ୍ର ମନର ନିଶ୍ଚଳେ ।
ବାସୁଦେବଙ୍କର ମନ୍ତ୍ର ଦ୍ୱାଦଶ ଅକ୍ଷର
ଜପ କଲା ଆସନରେ ବସି ଦ୍ୱିଜବର ।
ଶୟନେ ପାନେ ସ୍ୱପନେ କେଶବ ଦେଖଇ
କାମ କ୍ରୋଧ ଆଦି ସବୁ ଦୂରକୁ ପକାଇ ।
ନିଶ୍ଚଳେ କଲା କେଶବ ଦେବ ଦରଶନ
ବାର ଅକ୍ଷର ମନ୍ତ୍ରକୁ ଜପେ ପ୍ରତିଦିନ ।
ସୁମନା ଭାରିଯା ତାର ପବିତ୍ରତା ସତୀ
ପତିର ସେବା କରଇ ରହି ଦିନରାତି ।
ଧ୍ୟାନରେ ବସନ୍ତେ ଦ୍ୱିଜ କିଛିଦିନ ଅନ୍ତେ
ନାନାଦି ବିଘ୍ନ ଘଟିଲା ତାହାର ସାକ୍ଷାତେ ।
ଅନେକ କାଳିଆସାପ ବେଢ଼ିଲେକ ଆସି
ଘୋର ଗରଜନ କଲେ ତହିଁ ଦିବାନିଶି ।
ଫଣାଟେକି ଘୋର ବିଷ ପକାନ୍ତି ଉଦ୍‌ଗାରି
ମହା ଭୟଙ୍କର ସର୍ପେ ଫୁତ୍କାର କରି ।
ବିଷର ଜ୍ୱାଳା ପ୍ରଖର କିରଣ ପରାୟ
ତହିଁପାଖ ଜୀବଜନ୍ତୁ କଲେ ମହାଭୟ ।
ରହି ନପାରି ଦୂରକୁ ପଳାଇଲେ ତ୍ରାସେ
ଧ୍ୟାନଯୋଗେ ବିପ୍ରଚିତ୍ତେ ଭୟନାହିଁ ଲେଶେ ।
ଅଭୟ ଚରଣେ ଦୃଢ଼େ ଲଗାଇଛି ଲୟ
ନ ଜାଣଇ କାଳସର୍ପ ମହାବିଷ ଭୟ ।
ତପ ତେଜେ ସର୍ପେ ତହିଁ ନପାରିଲେ ରହି
ମହାବଳ ସିଂହ ଆସି ଗର୍ଜନ କରଇ ।

ସେ ଘୋର ଗର୍ଜନ ବିପ୍ର କର୍ଣ୍ଣେ ନ ପଶିଲା
ସିଂହ ଗର୍ଜି ଗର୍ଜି ତହୁଁ ଡ଼ରେ ପଳାଇଲା ।
ମହାବଳ ବାଘ ଆସି ଗର୍ଜିଲା ବହୁତ
ତହିଁରେ ଯେ ନ ଟଳିଲା ଦ୍ୱିଜବର ଚିତ୍ତ ।
ଦେଖି ଡରେପଳାଇଲା ବ୍ୟାଘ୍ର ଗୋରବନେ
ମତ୍ତଗଜ ଗରଜିଲା ଦ୍ୱିଜ ସନ୍ନିଧାନେ ।
ନ ଭାଙ୍ଗିଲା ଯହୁଁ ସେହି ଦ୍ୱିଜବର ଧ୍ୟାନ
ଭୟେ ଛାଡ଼ି ପଳାଇଲା ମତ୍ତଗଜ ବନ ।
ଗଜ ପଳାନ୍ତେ ବେତାଳେ ମିଳିଲେକ ଆସି
ଭୂତ ପ୍ରେତ ପିଶାଚ ଯେ ରାକ୍ଷସ ରାକ୍ଷସୀ ।
କୁଷ୍ମାଣ୍ଡ ଭୈରବଗଣ ଅତି ନିଦାରୁଣ
ମହାଭୟଙ୍କର ରୂପ କରିଣ ଧାରଣ ।
ନାନାଭୟ ଦେଖାଇଲେ ନାନାଧ୍ୱନି କରି
ବିପ୍ର ନିଶ୍ଚଳେ ବସିଛି ତହିଁକି ନ ଡ଼ରି ।
ବିଷ୍ଣୁ ପାଦେ ଅତି ଦୃଢ଼େ ଲଗାଇଛି ଲୟ
ଭଇରବ ଡାକକୁ ଯେ ନାହିଁ ତାର ଭୟ ।
ଝଞ୍ଜାବାତ ଖରା ଶୀତ ବରଷା କାକର
ସହି ପୁଣି ଅତି କଷ୍ଟେ ସେହି ଦ୍ୱିଜବର ।
ଧ୍ୟାନଯୋଗେ ବିଷ୍ଣୁପାଦେ ଲଗାଇଛି ଲୟ
ମନ ସହିତ ନିଶ୍ଚଳ ସକଳ ଇନ୍ଦ୍ରିୟ ।
ଏତେ ମତେ ଯହୁଁ ତାର ଧ୍ୟାନ ନ ଭାଙ୍ଗିଲା
ମନ ତାର ଶ୍ରୀବିଷ୍ଣୁର ପାଦୁଁ ନ ଟଳିଲା ।
ଘୋର ଗରଜନ କରି ଏକ ମହାସିଂହ
ଦେଖି ଡରେ ଦ୍ୱିଜକହେ ରଖହେ ନୃସିଂହ ।
ନୃହରିଙ୍କି ସୁମରିବା ମାତ୍ରେ ଦ୍ୱିଜବର
ଶ୍ରୀବିଷ୍ଣୁ ହେଲେ ତାହାର ନୟନ ଗୋଚର ।
ଇନ୍ଦ୍ର ନୀଳମଣି ତୁଲ୍ୟ ସୁନ୍ଦର ବରନ
କଟୀରେ ପୀତବସନ କରି ପରିଧାନ ।
ଶଙ୍ଖ ଚକ୍ର ଗଦା ପଦ୍ମ ଶୋହେ ଚାରିକରେ
ଧବଳ ମୁକ୍ତାହାର ଝୁଲଇ ଗଳାରେ ।
ବକ୍ଷସ୍ଥଳେ ବିରାଜଇ କଉସ୍ତୁଭ ମଣି
ଶ୍ରୀବତ୍ସ ପାଦ ବିରାଜେ ହୃଦୟରେ ପୁଣି ।
ପଦ୍ମ ପତ୍ରପ୍ରାୟ ମୁଖ ଅପୂର୍ବ ସୁନ୍ଦର
ଶ୍ୱେତ ପଦ୍ମପ୍ରାୟ ନେତ୍ର ଗଳେ ରତ୍ନହାର ।
ସର୍ବ ଅଙ୍ଗେ ଶୋଭାପାଏ ସର୍ବ ଆଭରଣ
ଇଷତହାସ-ବଦନ ସର୍ବଦା ପ୍ରସନ୍ନ ।

ବିଷ୍ଣୁର ଏ ରୂପଧ୍ୟାନ କରି କହେ ପୁଣି
ଶରଣାଗତ ବତ୍ସଳ କୃଷ୍ଣ ଜମ୍ବୁପାଣି ।
ଶରଣ ଶରଣ ନାଥ ଚରଣେ ତୋହର
ଦେବଦେବ ଶ୍ରୀପୟରେ ମୋର ନମସ୍କାର ।
ଅଭୟ ଚରଣେ ଯେବେ ଥିବ ମୋର ମନ
ଭୟଛାର କି କରିବ ହେ ଭୟ ମୋଚନ ।
ତିନିପୁର ସପ୍ତଲୋକେ ଯେ ପ୍ରଭୁ ଉଦରେ
ସର୍ବଦା ଶରଣ ପଶେ ସେ ପ୍ରଭୁ ଭୟରେ ।
କିବା ଡର ଅଛି ମୋର ତାର ପରସାଦେ
ଯୁଗେ ଯୁଗେ ସବୁ ଭୟ ହରେ ଅପ୍ରମାଦେ ।
ସତ୍ୟ ତ୍ରେତା ଦ୍ୱାପର ଯେ କଳିଯୁଗ ଚାରି
ଏସବୁ ଯୁଗର ଉପଦ୍ରବ ଯାକୁ ଡ଼ରି ।
ସେ ସକଳ ଭୟ ହର ପାଦେ ମୁଁ ଶରଣ
ଯେ ପ୍ରଭୁ ସକଳପାପ କରଇ ହରଣ ।
ଯେ ପ୍ରଭୁକୁ ଦେଖି ଭୟେ ପଳାନ୍ତି ଦାନବେ
ନିରତେ ଶରଣ ଯାର ପଦ୍ମପାଦେ ଦେବେ ।
ତାର ଅଭୟ ଚରଣେ ପଶିଲି ଶରଣ
ଯେ ଭକତଜନ ରକ୍ଷାକରେ ଅନୁକ୍ଷଣ ।
ଦେବ ଦାନବ ମାନବ ମହାତମା ଯେତେ
ହରି ଭକତଙ୍କୁ ଆଶ୍ରା କରିଥାନ୍ତି ନିତ୍ୟେ ।
ସେ ଭକତଜନ ପାଦେ ପଶିଲି ଶରଣ
ସେ ପ୍ରଭୁ ଏକା ଏ ଭବ ଭୟ ନିବାରଣ ।
ଭୟ ବିନାଶିବାପାଇଁ ଯେ ସଦା ଅଭୟ
ପାପ ତିମିରି ନାଶନେ ଯେ ଜ୍ଞାନ ଆଲୁଅ ।
ସେ ପାଦ ଆଶ୍ରାକରି ମୁଁ ପଶିଲି ଶରଣ
ଇନ୍ଦ୍ରରୂପେ ପାଳଇ ଯେ ଚଉଦ ଭୁବନ ।
ତାର ଶରଣ ମୁଁ ଭୟ କି କରିବ ମୋର
ସେ ହରି ବ୍ରହ୍ମଣ୍ୟ ବ୍ରହ୍ମ ବ୍ରହ୍ମଦ ଆବର ।
ବ୍ରହ୍ମ ଜ୍ଞାନମୟ ପାଦେ ପଶିଲି ଶରଣ
ଭୟକୁ ମୋ ଡ଼ରନାହିଁ ଦେବ ନାରାୟଣ ।
ଜଗତର ଅଭୟ ଯେ ପ୍ରଭୁ ଭୟ ହର
ଭୟରୂପୀ ସେହି ଭୟ ଦିଅଇ ଆବର ।
ତା ପାଦେ ଶରଣ ଗଲି କି କରିବ ଭୟ
ସର୍ବଲୋକ ତାରଇ ଯେ ପାପକରେ କ୍ଷୟ ।
ସେହି ଧର୍ମ ଜନାର୍ଦ୍ଦନ ଚରଣେ ଶରଣ
ରଣେ ଯେ ଅସୁର ଦେହ କରଇ ଧାରଣ ।

ଶରଣ ପଶିଲି ସେହି ଅଭୟ ପୟରେ
ପବନ ତହୁଁ ଅଧିକ ଯେ ଗମନ କରେ ।
ଝଞ୍ଜାବାତରୂପେ ପୀଡ଼ା ହେଲାତହୁଁ ମୋତେ
ନିରତେ ଶରଣ ମୁହିଁ ତାର ପାଦଗତେ ।
କାଳେ କାଳେ ସେହି ପ୍ରଭୁ ମୋହରଯେଗତି
ଯେ ଶୀତରୂପରେପୀଡ଼ାଦେଲେ ମୋତେଅତି ।
ବରଷାରୂପେ ଯେ ମୋର ଶିରେଢ଼ାଳି ପାରି
ଖରାରୂପେ ତାପଦେଲେ ମୋଦେହରେ ଆଣି ।
ସେ ନାଥ ଚରଣତଳେ ପଶିଲି ଶରଣ
ଡରାଇଲେ ବ୍ୟାଘ୍ରଭାଲୁ ରୂପକୁ ଧରିଣ ।
ଶରଣ ଗଲି ସେ କାମରୂପୀ ହରିପାଦେ
ମନ ମୋହର ନିଶ୍ଚଳେ ଥାଉ ଅପ୍ରମାଦେ ।
ଶରଣ ଶରଣ ନାଥ ସର୍ବ ଦେବମୟ
ପରମ ଈଶ୍ୱର ପ୍ରଭୁ ସର୍ବ ଜ୍ଞାନମୟ ।
ଆଦି ଯେ ଅନାଦି ସିଦ୍ଧଦେବ ନାରାୟଣ
ସେ ପ୍ରଭୁ ଚରଣ ତଳେ ପଶିଲି ଶରଣ ।
ଶରଣଗଲି ମୁଁ ସିଦ୍ଧେଶ୍ୱର ଦେବପଦେ
ଚଞ୍ଚଳ ଚିତ୍ତ ଅଟଇ ହେଉ ଅପ୍ରମାଦେ ।
ଏରୂପେ ସେ ସୋମଶର୍ମା କଲା ବିଷ୍ଣୁସ୍ତୁତି
ଧ୍ୟାନକରେ ଏମନ୍ତେ ସେ ପୁଣି ନିତି ନିତି ।
ଭକତିବଳେ ରଖିଲା ହୃଦୟେ ଶ୍ରୀହରି
ବିପ୍ର ଉଦ୍ୟମ ବିକ୍ରମ ଦେଖି ଚକ୍ରଧାରୀ ।
ତା ଛାମୁରେ ବିଜେକଲେ ହୋଇ ସୁପ୍ରସନ୍ନ
ବୋଇଲେରେ ସୋମଶର୍ମା ଶୁଣମୋ ବଚନ ।
ଜ୍ଞାନ ଧ୍ୟାନ ବୁଦ୍ଧି ସିଦ୍ଧି ଭକତିର ବଳେ
ବାନ୍ଧି ରଖିଲୁ ତୁ ମୋତେ ତୋହୃଦକମଳେ ।
ତୋ ସ୍ତିରୀ ସହିତେ ଶୁଣ ମୋରକଥା ଏବେ
ଦ୍ୱିଜ ତୁହି ପୂଜାକରୁ ଯେଉଁ ବାସୁଦେବେ ।
ମୁହିଁ ସେହି ଆସିଅଛି ବର ଦେବାପାଇଁ
ଶୁଣି ଆଖି ମେଲି ଦ୍ୱିଜ ଉପରକୁ ଚାହିଁ ।
ଘନଶ୍ୟାମ ମୁରତିଙ୍କି ଦେଖିଲା ଆଗରେ
ବିରାଜନ୍ତି ବିଶ୍ୱେଶ୍ୱର ଦେବ ଗଗନରେ ।
ସର୍ବ ଆଭରଣ ସର୍ବ ଅଙ୍ଗରେ ଶୋଭଇ
ସକଳ ଆୟୁଧ ଧରି ବିଜୟ ଗୋସାଇଁ ।
ସର୍ବାଙ୍ଗରେ ବିରାଜଇ ସବୁ ସୁଲକ୍ଷଣ
ପୁଣ୍ଡରୀକ ନେତ ପୀତ ବସ୍ତ୍ର ପରିଧାନ ।
ଗରୁଡ଼ ଚଢ଼ି ଦେବାଧିଦେବ ଦେବରାୟ
କରନ୍ତି ଯେ ଜଗତର ସୃଷ୍ଟି ସ୍ଥିତିଲୟ ।
ବିଶ୍ୱରୁ ଯେହୁ ଅତୀତ ରୂପର ଅତୀତ
ଜଗତ ଜନରଗୁରୁ ସେ ପ୍ରଭୁ ଅଚ୍ୟୁତ ।
ସୋମଶର୍ମା ଦ୍ୱିଜଦେଖି ଆନନ୍ଦ ମନରେ
ଦଣ୍ଡବତକରି ଉଠି କରଯୋଡ଼ି ଶିରେ ।
ଭାରିଯା ସୁମନାକୁ ସେ ସଙ୍ଗତରେ ଘେନି
ସ୍ତୁତିକଲା କପାଳରେ ରଖି କର ବେନି ।
ଜୟ ଜୟ ଲକ୍ଷ୍ମୀକାନ୍ତ ଜୟ ଭଗବାନ
ଜୟ ଜୟ କୋଟିସୂର୍ଯ୍ୟ ସମ ତେଜିୟାନ ।
ଜୟ ଜୟ ମାନବ ହେ ମାଧବ ଯୋଗୀଶ
ଜୟ ଜୟ ନାଗ ଅଙ୍କଶାୟୀ ହୃଷୀକେଶ ।
ଜୟ ଜୟ ଯୋଗୀନ୍ଦ୍ର ହେ ଯଜ୍ଞର ଈଶ୍ୱର
ଜୟ ଜୟ ଯଜ୍ଞଅଙ୍ଗ ସକଳ ଈଶ୍ୱର ।
ଜୟ ଜୟ ଯଜ୍ଞରୂପ ସର୍ବଗ ଶାଶ୍ୱତ
ତୁମ୍ଭଙ୍କୁ ମୋ ନମସ୍କାର ତୁ ଦେବ ଅନନ୍ତ ।
ଜୟ ଜୟ ଜ୍ଞାନବୀର ଜ୍ଞାନର ନାୟକ
ସର୍ବଜ୍ଞ ସର୍ବଦା ସର୍ବଭାବନା ତୁ ଏକ ।
ତୁ ଜୀବସ୍ୱରୂପ ଈଶ ମହାଜୀବ ତୁହି
ତୋରପାଦେ ନମସ୍କାର କରୁଅଛି ମୁହିଁ ।
ତୁମ୍ଭେ ପ୍ରଜ୍ଞା ଅଙ୍ଗପୁଣି ତୁମ୍ଭେ ପ୍ରଜ୍ଞାଦାତା
ପୁଣ୍ୟେଶ୍ୱର ପାପହନ୍ତା ତୁମ୍ଭେ ପ୍ରାଣଦାତା ।
ତୁମ୍ଭେ ପୁଣ୍ୟପତି ହରି ଜ୍ଞାନଗମ୍ୟ ଈଶ
ତୋ ପାଦେ ମୋ ନମସ୍କାର ଅହେ ପୀତବାସ ।
ଅହେ ପଦ୍ମନାଭ ପଦ୍ମପଳାଶନୟନ
କୃପାକରି ବାରେ ମୋର ନମସ୍କାର ଘେନ ।
ଶଙ୍ଖକର ଅମଳହେ ଗୋବିନ୍ଦ ଗୋପାଳ
ବାରେ ଘେନାକର ନାଥ ମୋର ନମସ୍କାର ।
ଅବ୍ୟକତାରୂପୀ ଚକ୍ରବର ହେ ବ୍ୟକତ
ମୋର ନମସ୍କାର ହେଉ ତୋର ପାଦଗତ ।
ଜୟ ବିକ୍ରମନାୟକ ବିକ୍ରମ ଶୋଭାଙ୍ଗ
ଜୟ ଜୟ ବେଦମୟ ଲକ୍ଷ୍ମୀ ବିଳାସାଙ୍ଗ ।
ହେ ଉଦ୍ୟମଦାତା ତୋତେ ମୋରନମସ୍କାର
ସ୍ୱୟଂ ତୁମ୍ଭେ ଉଦ୍ୟମ ଯେ ଉଦ୍ୟମର କାଳ ।
ଆହେ ଉଦ୍ୟମଶକତ ନମସ୍କାର ତୋତେ
ଉଦ୍ୟମକ୍ରୟ ଧାରକ ତୁମ୍ଭଙ୍କୁ ନମସ୍ତେ ।

ଯୁଦ୍ଧ ଉଦ୍ୟମ ପ୍ରବୃତ୍ତ ଧର୍ମପାଦେ ନମେ
ତୁମ୍ଭେଯେହିରଣ୍ୟରେତା ତେଜୋମୟଧାମେ ।
ଅତି ତେଜ ସ୍ୱରୂପୀ ଯେ ସର୍ବ ତେଜମୟ
ଦୈତ୍ୟ ତେଜନାଶି କର ପାପତେଜ କ୍ଷୟ ।
ଗୋ ବ୍ରାହ୍ମଣ ହିତକାରୀ ପରମାତ୍ମା ପାଦେ
ମୋହର ଏ ନମସ୍କାର ରହୁ ଅପ୍ରମାଦେ ।
ଆହୁତିଭୋଜୀ ହେ ତୁମ୍ଭେ ପୁଣି ହବ୍ୟବାହ
ତୁମ୍ଭପାଦେ ନମସ୍କାର ମୋର କବ୍ୟବାହ ।
ସ୍ୱାହାରୂପ ଯଜ୍ଞରୂପ ତୁମ୍ଭେ ଯେ ପାବନ
ହସ୍ତେ ତୁମ୍ଭର ଶାରଙ୍ଗ ନାମେ ଶରାସନ ।
ସତ ଅସତ ଚୋଦନାମୟ ତୁମ୍ଭେ ହରି
ପବିତ୍ରଜ୍ଞାନ ବିଜ୍ଞାନମୟ ପାପହାରୀ ।
ବେଦରୂପୀ ହରିକେଶ ସର୍ବ କ୍ଳେଶହର
କେଶବ ହେ ବିଶ୍ୱଧାରୀ ପର କୃପାକର ।
ଆନନ୍ଦମୟ ଅନନ୍ତ ଶୁଦ୍ଧ କ୍ଳେଶନାଶି
ହରଷମୟ କେବଳ ଶୁଦ୍ଧ ତମନାଶି ।
ରୁଦ୍ରନମିତ ଚରଣ ବିରଞ୍ଚି ନମିତ
ନମସ୍ତେ ନମସ୍ତେ ଦେବ ଅନାଦି ଅଚ୍ୟୁତ ।
ସୁରାସୁର ଇନ୍ଦ୍ର ତୋର ପାଦେ ପ୍ରଣମନ୍ତି
ପରେଶ ଅଜିତ ତୁମ୍ଭେ ଜଗତର ପତି ।
ତୁମ୍ଭେ ଯେ ଅମୃତ ଆତ୍ମା କ୍ଷୀରସିନ୍ଧୁବାସୀ
ତୁମ୍ଭେ ପଦ୍ମାଦେବୀ ପ୍ରିୟ ଓଁକାର ନିବାସୀ ।
ସକଳ ବ୍ୟାପିରହିଛ ତୁମ୍ଭେ ଯେ ଅଚଳ
ସବୁ ବ୍ୟସନ ବିନାଶକର ଆଦିମୂଳ ।
ନମସ୍ତେ ନମସ୍ତେ ପ୍ରଭୁ ଜଗତ ବ୍ୟାପକ
ତୁମ୍ଭର ଯେ ରୂପ ପୁଣି ଅଛଇ ଅନେକ ।
ବରାହରୂପି ଚରଣେ ମୋର ନମସ୍କାର
ମହାକୂର୍ମ ରୂପୀଙ୍କର ମୁଁ ପାଦ କିଙ୍କର ।
ଶରଣ ଶରଣ ବିପ୍ର ବାମନ ଚରଣ
ନରସିଂହ ପାଦପଦ୍ମେ ପଶିଲି ଶରଣ ।
କ୍ଷତ୍ରିବଧକାରୀ ବିପ୍ର ପର୍ଶୁରାମ ପାଦେ
ମୋର ଏହି ନମସ୍କାର ରହୁ ଅପ୍ରମାଦେ ।
ଦିବ୍ୟରାମ ରୂପଧର ଚରଣେ ଶରଣ
ତୁମ୍ଭେ ବ୍ରହ୍ମଜ୍ଞାନମୟ ଅନାଦିକାରଣ ।
ନମସ୍ତେ ନମସ୍ତେ ଦେବ ମୀନରୂପୀ ହରି
ନମୋ ନମୋ ରାମକୃଷ୍ଣ ବଉଦ୍ଧାବତାରୀ ।

ନମସ୍ତେ କଳ୍କି ହରି ମେଳଚ୍ଛ ନାଶନ
ନମସ୍ତେ କପିଳରୂପୀ ଦେବ ଭଗବାନ ।
ହୟଗ୍ରୀବ ପାଦପଦ୍ମେ ମୋର ନମସ୍କାର
ଯେଉଁ ପ୍ରଭୁ ସର୍ବମୟ ବ୍ୟାସରୂପଧର ।
ନମସ୍ତେ ସେ ହୃଷୀକେଶ ଦେବ ଜନାର୍ଦ୍ଦନ
ବ୍ରହ୍ମା ନଜାଣେ ତୋ ଗୁଣ ମହିମା ପାବନ ।
ସର୍ବଜ୍ଞ ହେଲେ ହେଁ ରୁଦ୍ର ସହସ୍ର ଲୋଚନ
ତୋର ସ୍ତବ କରିବାକୁ ଅଟନ୍ତି ଅକ୍ଷମ ।
କେହି ପୁଣି ତୋର ଗୁଣବର୍ଣ୍ଣି ନ ପାରଇ
କିଞ୍ଚିତ ଅଳପ ଟିକେ ମୋ ବୁଦ୍ଧି ଅଟଇ ।
ଏତିକି ପ୍ରାର୍ଥନା ତୋତେ କେଶବହେମୋର
କେଉଁ ସ୍ତୁତିକଲି ମୁହିଁ ଆଜି ଏ ତୁମ୍ଭର ।
ଗୁଣହୀନ ଗୁଣବନ୍ତ ହେଉ ବା ନ ହେଉ
ସାଧୁ ଶବଦକି ଅପଶବଦ ବା ହେଉ ।
ସେ ଦୋଷ ମୋହର କ୍ଷମାକର ହେ ସୁବ୍ରତ
ମୁହିଁ ତୋର ପାଦତଳ ଭୃତ୍ୟର ଯେ ଭୃତ୍ୟ ।
ତୋର ଦାସର ମୁଁ ଦାସ ଲୋକେଶ ପାବନ
ଜନ୍ମେ ଜନ୍ମେ ମୋତେ ଦୟାଥିବ ଜନାର୍ଦ୍ଦନ ।
ଏରୂପେ ସେ ସୋମଶର୍ମା ଦ୍ୱିଜକଲା ସ୍ତୁତି
ଦ୍ୱିଜ ଗୋପୀନାଥ ନିତ୍ୟ ଭଜେ ଶିରୀପତି ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ
ସୁମନୋପାଖ୍ୟାନଂ ନାମ
ଏକୋନବିଂଶୋଽଧ୍ୟାୟଃ ।



## ବିଂଶ ଅଧ୍ୟାୟ

## ସୋମଶର୍ମାଙ୍କୁ ଶ୍ରୀ ବିଷ୍ଣୁଙ୍କର ବରଦାନ

ଶ୍ରୀହରି କହିଲେ ତୁହୋ ଶୁଣ ଦ୍ୱିଜବର
ତପ ପୁଣ୍ୟ ସତ୍ୟେ ନିଷ୍ଠାଥିବାରୁ ତୋହର ।
ଅବର ତୋର ପବିତ୍ର ସ୍ତବେ ହେଲି ତୋଷ
ଏଣୁ ବର ଦେବାପାଇଁ ଆସିଛିତୋ ପାଶ ।
ତୁ ଯାହା ମାଗିବୁ ତାହାଦେବି ମୋର ସତ୍ୟ
ତୋର କାମନା ପୂରଣ ହୋଇବ ନିଶ୍ଚିତ ।
ସୋମଶର୍ମା ବୋଲେ କୃଷ୍ଣଦୟା ଯେବେ ତୋର
ମୋର ମନବାଞ୍ଛା ପୂର୍ଣ୍ଣକର ଦେଇ ବର ।

ଜନ୍ମେଜନ୍ମେ ଥିବ ମୋର ତୋପାଦେଭକତି
ମୋକ୍ଷଦାତା ନିତ୍ୟସ୍ଥାନ ଦେଖା ଶିରୀପତି ।
ମୋର ଦାରିଦ୍ର୍ୟହରଣ କର ହେ କେଶବ
ପୁତ୍ର ଏକ ଦେବ ମୋର ବଂଶ ଉଦ୍ଧାରିବ ।
ଦେଖିବାକୁ ହେବ ସେହି ପୁତ୍ର ସୁଲକ୍ଷଣ
ଶ୍ରୀବିଷ୍ଣୁ ଭକତ ହେବ ଘେନି ସଦଗୁଣ ।
ସର୍ବଜ୍ଞ ଆବର ହେବ ସର୍ବଦାତା ଦାନ୍ତ
ତପୋବନ୍ତ ତେଜୋବନ୍ତ ଦେବତା ଭକତ ।
ଦେବତା ଦ୍ୱିଜ ପୂଜିବ ପାଳିବ ଆବର
ଦେବମିତ୍ର ପୁଣ୍ୟଆତ୍ମା ଦାତା ନିରନ୍ତର ।
ପଣ୍ଡିତ ଜ୍ଞାନୀ ହେବ ମୋ କୁଳର ଉଜ୍ଜ୍ୱଳ
ମାଗଇ ଏ ବର ମୋତେ ଦିଅ ଆଦିମୂଳ ।
ଶ୍ରୀହରି ବୋଇଲେ ହେଉ ହେଉ ଦ୍ୱିଜବର
ମାଗିଲୁ ତୁ ଯାହାସବୁ ସିଦ୍ଧହେବ ତୋର ।
ମୋର ପରସାଦେ ତୋର ସୁପୁତ୍ର ହୋଇବ
ନିଶ୍ଚୟ ସେ ପୁତ୍ର ତୋର ବଂଶ ଉଦ୍ଧାରିବ ।
ମନୁଷ୍ୟର ଯେ ଉତ୍ତମ ଭୋଗ ତା ପାଇବୁ
ପୁତ୍ରଲାଗି ନାନା ସୁଖ ପୁଣ୍ୟ ଅରଜିବୁ ।
ଦୁଃଖ ମୁଖ ନ ଦେଖିବୁ ତୁହି ତା ଭିତରେ
ଗୁଣଗ୍ରାହୀ ଦାତା ହେବୁ ତୁହୋ ଦ୍ୱିଜବରେ ।
ସୁତ ଏକା ହେବ ତୋର ମରଣ କାରଣ
ତହିଁରେ ପରମଗତି ପାଇବୁ ତୁ ଜାଣ ।
ବର ଦେଇ ତହୁଁ ହରି ଗଲେ ଅନ୍ତର୍ଦ୍ଧାନେ
ସୋମଶର୍ମା ଦେଖଇ କି ଏସବୁ ସ୍ୱପନେ ।
ଭାରିଯାକୁ ସଙ୍ଗେ ଘେନି ଦ୍ୱିଜ ରେବାତୀରେ
ଅମର କଣ୍ଟକ ତୀର୍ଥେ ଦାନ ପୁଣ୍ୟ କରେ ।
ଏମନ୍ତେ ବହୁତ ଦିନ ତହୁଁ ଗଲା ବହି
ରେବା କପିଳା ସଙ୍ଗମେ ସ୍ନାନକଲେ ରହି ।
ସୋମଶର୍ମା ସ୍ନାନସାରି ଆସନ୍ତେ କୂଳକୁ
ସମ୍ମୁଖେ ଦେଖିଲା ଏକ ଦିବ୍ୟ ପୁରୁଷକୁ ।
ବସିଛି ସୁନ୍ଦର ମତ୍ତ ଗଜର ପିଠିରେ
ଉତ୍ତମ ଲକ୍ଷଣମାନ ବିରାଜେ ଶରୀରେ ।
ନାନା ଆଭରଣେ ଶୋଭା ପାଉଛି ତା ଅଙ୍ଗ
କୁଙ୍କୁମ୍ ସିନ୍ଦୂରେ ଗଜକୁମ୍ଭ ଦିଶେ ରଙ୍ଗ ।
ଉତ୍ତମ ପ୍ରଭାରେ ଶୋଭାପାଏ ଗଜବର
ପତାକା ଦଣ୍ଡ ବିରାଜେ ପିଠିରେ ତାହାର ।
ଏମନ୍ତ ଗଜ ପିଠିରେ ଯେ ପୁରୁଷ ବିଜେ
ଦିବ୍ୟ ଲକ୍ଷଣମାନ ତା ଅଙ୍ଗରେ ବିରାଜେ ।
ପିନ୍ଧିଅଛି ଦିବ୍ୟବସ୍ତ୍ର ଗଳେ ଦିବ୍ୟମାଳା
ଦିବ୍ୟ ସୁଗନ୍ଧ ଚନ୍ଦନ ତା ଦେହରେବୋଳା ।
ହେବାରୁ ଅତି ସୁନ୍ଦର ଦିଶେ ସେ ପୁରୁଷ
ସିଦ୍ଧ ଚାରଣ ଗନ୍ଧର୍ବ ଅଛନ୍ତି ତା ପାଶ ।
ଚଉପାଖେ ବେଢ଼ି ତାକୁ କରୁଛନ୍ତି ସ୍ତୁତି
ଦେଖିବାକୁ ଦିଶେ ଅତି ସୁନ୍ଦର ମୂରତି ।
ଛତ୍ର ଚାମର ଦିଶଇ ପୂର୍ଣ୍ଣ ଚନ୍ଦ୍ରପାୟ
ସୋମଶର୍ମା ଦେଖି ତାକୁ ହୋଇଲା ବିସ୍ମୟ ।
କିଏ ଏ ବୋଲି ମନରେ କରଇ ବିଚାର
କେଣିକି ଯାଉଛି ଏକ ପୁରୁଷ ସୁନ୍ଦର ।
ଏମନ୍ତ ଭାଳନ୍ତେ ଦେଖେ ପଶିଲା ତା ଘରେ
ତା ଘରକୁ ଯିବା ଦେଖି ଦ୍ୱିଜ ଆନନ୍ଦରେ ।
ତୁରିତେ କଲା ଆପଣା ଗୃହକୁ ଗମନ
ଦ୍ୱାରେ ପ୍ରବେଶି ନ ଦେଖେ ପୁରୁଷ ରତନ ।
ଗୃହ ପ୍ରାଙ୍ଗଣେ ପଡ଼ିଛି ଦେଖିଲା କେବଳ
ସୁଗନ୍ଧି କୁସୁମ ଗୁଚ୍ଛା ଦିବ୍ୟ ମାଳଫୁଲ ।
ଚନ୍ଦନ କୁଙ୍କୁମେ ଲିପା ହୋଇଛି ଆବର
ଦୁର୍ବା ଅକ୍ଷତରେ ପୁଣି ଦିଶୁଛି ସୁନ୍ଦର ।
ତାହାଦେଖି ସୋମଶର୍ମା ହୋଇ ଆଚମ୍ଭିତ
ନାନାକଥା ଭାଳିଭାଳି ହୋଇଣ ଚକିତ ।
ଦେଖିଲା ତହୁଁ ସୁମନା ଭାରିଯାକୁ ଯାଇ
ଦିବ୍ୟ ଆଭରଣ ଗନ୍ଧପୁଷ୍ପେ ଶୋଭା ପାଇ ।
ଦେଖି ଶୋମଶର୍ମା କହେ ପ୍ରିୟେ କହ ସତ
ଏହି ଦିବ୍ୟ ଆଭରଣ ସମ୍ଭୋଗେ ଉଚିତ ।
ଏହିରୂପ ସଉଭାଗ୍ୟ କେ ଦେଲା ତୁମ୍ଭଙ୍କୁ
ବସ୍ତ୍ର ଅଳଙ୍କାର ଆଦି ଶୋହେ ସେ ରୂପକୁ ।
ଏହା ପାଇବା କାରଣ କହ କି ନିମନ୍ତେ
ଲାଜ ଛାଡ଼ି କହ ପ୍ରିୟେ ଆମ୍ଭର ଅଗ୍ରତେ ।
ଏହାକହି ଦ୍ୱିଜବର ହୋଇଲାକ ତୁନୀ
ସୁମନା ବୋଇଲା କାନ୍ତ ଶୁଣ ସେ କାହାଣୀ ।
କାହୁଁ ଏକ ଦେବରାଜ ପଶି ମୋର ଘରେ
ବସିଥିଲେ ଶ୍ୱେତଗଜ ରାଜର ଉପରେ ।
ଦିବ୍ୟ ଆଭରଣେ ତାଙ୍କ ସର୍ବାଙ୍ଗ ମଣ୍ଡଣି
ଦିବ୍ୟ ସୁଗନ୍ଧ ଚନ୍ଦନ ଲିପାହୋଇ ପୁଣି ।

ଦିବ୍ୟ ଆଚମ୍ଵିତ ରୂପ ଉପମା ଯେ ନାହିଁ
ଦିବ୍ୟ ଗନ୍ଧର୍ବେ ତାହାଙ୍କ ସେବାରେ ଯେ ରହି ।
ଦେବ ଗନ୍ଧର୍ବ ଚାରଣେ କରୁଛନ୍ତ ସ୍ତୁତି
ନଜାଣେ ସେହି କେବଣ ଦେବତା ହେ ପତି ।
ତାଙ୍କ ସଙ୍ଗେ ଥିଲେ ପୁଣି କେତେକ ରମଣୀ
ସମ୍ଭୋଗ ଉଚିତରୂପେ ସେ ସବୁ ମଣ୍ଡଣୀ ।
ସଉନ୍ଦର୍ଯ୍ୟ ସମ୍ପଦରେ ସକଳେ ମଣ୍ଡନ
ତାଙ୍କ ସର୍ବାଙ୍ଗରେ କାନ୍ତ ସର୍ବ ଆଭରଣ ।
ମନୋରଥ ପରିପୂର୍ଣ୍ଣ ହେବାପରି ଦିଶେ
ସେ ମହାପୁରୁଷ ଗୋଟି ଏହି ରୂପେ ଦିଶେ ।
ଏ ଗୃହ ସକଳ ଶୋଭା କରି ସମ୍ପାଦନ
ତାହାଙ୍କ ସଙ୍ଗତେ ଥିଲେ ଯେତେକ ବ୍ରାହ୍ମଣ ।
ଏ ପବିତ୍ର ଆସନରେ ବସାଇଣ ମୋତେ
ବସ୍ତ୍ର ଅଳଙ୍କାର ଦେଲେ ପିନ୍ଧିବା ନିମନ୍ତେ ।
ଶାସ୍ତ୍ର ଗୀତ ବେଦ ମନ୍ତ୍ର ଗୀତ ଗାଇ ଗାଇ
ଅଭିଷେକ କଲେ ମୋର ଶିରେ ଜଳଦେଇ ।
ଅନ୍ତର୍ଦ୍ଧାନ ହେବାବେଳେ କହିଗଲେ ମୋତେ
କଲ୍ୟାଣି ଗୋ ସ୍ଵାମୀସଙ୍ଗେ ରହ ଶୁଦ୍ଧଚିତ୍ତେ ।
ସର୍ବଦା ମୁଁ ରହିଥିବି ଏ ତୋହର ଘରେ
ଦେଖୁଦେଖୁ କେଣେଗଲେ ମୋର ଅଗୋଚରେ ।
ମହାମତି ସୋମଶର୍ମା ସବୁକଥା ଶୁଣି
କିଛିକ୍ଷଣ ମନମଧ୍ୟେ ଭାଳି ଭାଳି ପୁଣି ।
ବୋଇଲା ଏହିକି ଅଟେ ଦଇବ ଅଧୀନ
ଏହାଭାଳି ବ୍ରହ୍ମକର୍ମେ ଦେଲା ପୁଣି ମନ ।
ପବିତ୍ର ଆଚାର ଧର୍ମେ କର୍ମ କଲା ଦ୍ଵିଜ
ବ୍ରତ ଆଚରି ସୁମନା କଲା ସ୍ଵାମୀ କାର୍ଯ୍ୟ ।
ସ୍ଵାମୀ ସହବାସେ ସତୀ ହେଲା ଗର୍ଭବତୀ
ସୁନ୍ଦର ଦିଶିଲା ବେଳୁଁବେଳ ରୂପବତୀ ।
ଗର୍ଭେଥିବା ତେଜୋବନ୍ତ ପୁତ୍ର ତେଜପାଇ
ଅତି ଉଜ୍ଜ୍ଵଳ ଦିଶିଲା ବେଳୁଁ ବେଳ ସେହି ।
ଦେବତା ପ୍ରାୟ ପୁତ୍ରେକ ପ୍ରସବିଲା କାଳେ
ଦେବ ଦୁନ୍ଦୁଭି ବାଜିଲା ଗଗନ ମଣ୍ଡଳେ ।
ଗନ୍ଧର୍ବେ ଲଳିତ ଗୀତ ଗାଇଲେ ସୁସ୍ଵରେ
ଅପସରାଗଣ ନୃତ୍ୟକଲେ ଆନନ୍ଦରେ ।
ସୁରଗଣ ଘେନି ବ୍ରହ୍ମା ମିଳିଲେକ ତହିଁ
ପୁତ୍ରର ନାମ ସୁବ୍ରତ ହେଲା ବୋଲି କହି ।

ନାମଦେଇ ଦେବଗଣେ ତହୁଁ ଚଳିଗଲେ
ସୋମଶର୍ମା ପୁତ୍ର ଜାତ କର୍ମ ଆଦି କଲେ ।
ଦେବତା ଗଠିତ ପୁତ୍ର ମହା ଭାଗ୍ୟଧର
ଜନମନ୍ତେ ମହାଲକ୍ଷ୍ମୀ ତହିଁ କଲେ ଘର ।
ଧନ ଧାନ୍ୟ ଗୋମହିଷ ଗଜ ଅଶ୍ଵ ସ୍ଵର୍ଣ୍ଣ
ରତ୍ନମଣି କାଞ୍ଚନରେ ଗୃହ ହେଲା ପୂର୍ଣ୍ଣ ।
ଦିଶିଲା କୁବେର ପୁର ପ୍ରାୟ ଦ୍ଵିଜ ଘର
ତୋଷେ ନିତି ଦାନ ପୁଣ୍ୟ କଲା ଦ୍ଵିଜବର ।
ନାନାପୁଣ୍ୟ ଅରଜିଲା ତୀର୍ଥ ଯାତ୍ରାକରି
ଦାନ ପୁଣ୍ୟ ଜ୍ଞାନ ଧର୍ମ ସଞ୍ଚ ତପଚାରୀ ।
ପୁତ୍ରର ଯେ ବିଭାଘର କଲା ସମାରୋହେ
ବନ୍ଧୁ ପୁତ୍ର ଘେନି ଘର କରି ସୁଖେ ରହେ ।
ବହୁତ ଲକ୍ଷଣବନ୍ତ ନାତି ମୁଖ ଦେଖି
ସଂସାରେ ବିହରିଲା ସେ ହୋଇ ମହାସୁଖୀ ।
ପଚିଶ ବର୍ଷୀୟ ଯୁବା ପ୍ରାୟ ସେ ଦିଶିଲା
ସୂର୍ଯ୍ୟ ତେଜ ପ୍ରାୟ ତାର ତେଜ ବିକଶିଲା ।
ସୁମନା ଷୋଳବୟସୀ ତରୁଣୀ ପରାୟ
ସୁନ୍ଦର ଦିଶିଲା ଅତି ପ୍ରଫୁଲ୍ଲ ହୃଦୟ ।
ପୁତ୍ର ନାତି ଘେନି ଦାନବ୍ରତ ପୁଣ୍ୟକରି
ପତିସହିତେ ଆନନ୍ଦମନରେ ବିହରି ।
କହିଲି ସୁମନା ସୋମଶର୍ମାର ଆଖ୍ୟାନ
ସୁବ୍ରତ ଚରିତ ଶୁଣ ହୋଇ ସାବଧାନ ।
ନାରାୟଣ ପୂଜା ସେହି କରଇ ଯେମନ୍ତେ
ଦୀନ ଗୋପୀନାଥ ନାରାୟଣ ପଦ ଚିନ୍ତେ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ
ସୁବ୍ରତୋତ୍ପତ୍ତି ନାମ ବିଂଶୋଽଧ୍ୟାୟଃ ।

## ଏକବିଂଶ ଅଧ୍ୟାୟ

### ସୁବ୍ରତ ଚରିତ

ସୁତମୁନି କହିଲେ ହେ ଶୁଣ ଋଷିଗଣ
ବ୍ୟାସମୁନି ଯେ କି ସତ୍ୟବତୀର ନନ୍ଦନ ।
ଦିନେ ସେ ଅତି ବିସ୍ମୟେ ବ୍ରହ୍ମାପାଶେ ଗଲେ
ସୁବ୍ରତ ଚରିତ ତାଙ୍କୁ ଯାଇଁ ପଚାରିଲେ ।
ବ୍ୟାସବୋଇଲେହେ ଦେବଦେବ ଲୋକତାତ
କୃପାକରି କହ ମୋତେ ସୁବ୍ରତ ଚରିତ ।

ମହାମହିମା ବୋଲାଅ ଯେଣୁ ପଦ୍ମାସନ
ତେଣୁ ତୁମ୍ଭମୁଖୁଁ ଶୁଣିବାକୁ ମୋର ମନ ।
ବ୍ରହ୍ମା କହିଲେ ହୋ ଶୁଣ ପରାଶର ସୁତ
ସୁବ୍ରତ ବିପ୍ରଚରିତ୍ର ଅତି ଆଚମ୍ବିତ ।
ତାହାର ତପ ପବିତ୍ର ଉତ୍ତମ ତା ଶୁଣ
ଅତି ବୁଦ୍ଧିମନ୍ତ ଥିଲା ସୁବ୍ରତ ବ୍ରାହ୍ମଣ ।
ନାରାୟଣ ନାରାୟଣ ଭଜେ ଗର୍ଭେଥାଇ
ବାଲ୍ୟବୟସେ ସେ ବିପ୍ର ବିଷ୍ଣୁଙ୍କୁ ଚିନ୍ତଇ ।
ସବୁବେଳେ କରଇ ସେ ବିଷ୍ଣୁ ଦରଶନ
ପୂର୍ବକର୍ମ ଅଭ୍ୟାସରେ କରେ ବିଷ୍ଣୁଧ୍ୟାନ ।
ଶ୍ରୀବିଷ୍ଣୁର ଗୁଣ ଗୀତ ଗାଉଥାଏ ନିତି
ପଢ଼ଇ ଶ୍ରୀ ବିଷ୍ଣୁପାଦେ ଲଗାଇ ଭକତି ।
ଜ୍ଞାନର ବଳେ ଦେଖଇ ଶଙ୍ଖ ଚକ୍ରଧାରୀ
ଧ୍ୟାନଯୋଗେ ପଦ୍ମନାଭ ରୂପ ଚିନ୍ତାକରି ।
ଏରୂପେ ସର୍ବଦା ଦ୍ୱିଜ ହରିଧ୍ୟାନେ ରତ
ବାଳକକାଳେ ସେ ବିପ୍ର ଭକତ ସୁବ୍ରତ ।
ଯେତେକ ସଙ୍ଗି ବାଳକ ତାହାଙ୍କର ନାମ
ନାରାୟଣ ବିଷ୍ଣୁ କୃଷ୍ଣ ହରି ଜନାର୍ଦ୍ଦନ ।
ଏରୂପେ ବିଷ୍ଣୁର ନାନା ନାମଦେଇ ଡାକେ
ମିତ୍ରଙ୍କୁ ଡାକଇ କୃଷ୍ଣ କୃଷ୍ଣ ଏକେ ଏକେ ।
ହେ କେଶବ ହେ ମାଧବ ଆରେ ଚକ୍ରଧର
ଆସହେ ପୁରୁଷୋତ୍ତମ ହେଲାଣି ଉଛୁର ।
ଶ୍ରୀ ମଧୁସୂଦନ ଆସ ଆସ ହେ ଖେଳିବା
ହେ ଗୋବିନ୍ଦ ଆସ ଆସ ଧୂଳିରେ ଗଡ଼ିବା ।
ଆସହେ ରାମ ବିଳମ୍ବ କର କାହିଁପାଇଁ
ଖେଳସଙ୍ଗୀ ବାଳକଙ୍କୁ ଏମନ୍ତେ ଡାକଇ ।
ଖେଳ ଖେଳୁଥାଇ ହରି ହରି ବୋଲୁଥାଇ
ପଢ଼ିବାବେଳେ ହରିଙ୍କି ହୃଦପଦ୍ମେ ଧ୍ୟାୟି ।
ହସୁଥାଇ ନାଚୁଥାଇ ବୋଲୁଥାଇ ହରି
ଶୋଇଲାବେଳେ ଶ୍ରୀହରି ନାମକୁ ସୁମରି ।
ପିଇଲାବେଳେ ହରିଙ୍କି ଦେଇ କରେ ପାନ
ଭଜନ କରେ ହରିଙ୍କି କରି ନିବେଦନ ।
ହରି ହରି ବୋଲି ତାଳିମାରି ମାରି ଯାଏ
ଆସନେ ବସିଲାବେଳେ ହରିନାମ ଗାଏ ।
ହରି ଦରଶନ କରେ ଧ୍ୟାନକରେ ହରି
ମନ୍ତ୍ରଣା କରଇ ହରିନାମ ମୁଖେ ଧରି ।

ଜ୍ଞାନଯୋଗେ ହରିରୂପ କରେ ଦରଶନ
ସବୁକର୍ମେ ସବୁବେଳେ ଭଜେ ଜନାର୍ଦ୍ଦନ ।
ଜଗତନାଥଙ୍କୁ ଦେଖୁଥାଇ ଡାକୁଥାଇ
ଏକମନ୍ତେ ମହେଶ୍ୱର ବିଶ୍ୱନାଥ ଧ୍ୟାୟି ।
ତୃଣକାଷ୍ଠ ପାଷାଣରେ ଦେଖେ ଜନାର୍ଦ୍ଦନ
ଶୁଖିଲାଦ୍ରବ୍ୟେ ଗୋବିନ୍ଦ କରେ ଦରଶନ ।
ପଦ୍ମପତ୍ର ନେତ୍ର ଦେଖେ ସକଳ ପଦାର୍ଥେ
କେଶବଙ୍କ ଦରଶନ କରେ ଦିବାରାତ୍ରେ ।
ସୁମନାସୁତ ସୁବ୍ରତ ଗଗନେ ଭୂତଳେ
ଅନ୍ତରୀକ୍ଷେ ଜଳେସ୍ଥଳେ କାନନେ ଶଇଳେ ।
ପାଷାଣେ ସକଳ ଜୀବଜନ୍ତୁଙ୍କ ଶରୀରେ
ନୃସିଂହଦେବଙ୍କୁ ନିତ୍ୟ ଦରଶନ କରେ ।
ବାଳକାଳେ ଖେଳଖେଳେ ଏରୂପେସେ ନିତି
ତାଳ ଲୟ ସ୍ୱର ମୂର୍ଚ୍ଛା ସହିତ ସଙ୍ଗୀତି ।
କୃଷ୍ଣ ପ୍ରୀତିଅର୍ଥେ କୃଷ୍ଣ ଗୁଣକରେ ଗାନ
କହିଛନ୍ତି ସେ ସୁବ୍ରତ ଭକତ ପ୍ରଧାନ ।
ବେଦ ପଢ଼ିଥିବା ଜାଣିଥିବା ଜନେ ନିତି
ଚାରିବେଦରେ ଯେ ପ୍ରଭୁ ରୂପ ମନେ ଚିନ୍ତି ।
ବେଦର ଯେତେକ ଅଙ୍ଗ ଶ୍ରୀବିଷ୍ଣୁର ରୂପ
ବିରାଜୁଥାନ୍ତି ତା ମଧ୍ୟେ ଦେବ ବିଶ୍ୱରୂପ ।
ସେହି ଯୋଗେଶ୍ୱର ହରି ସର୍ବ ପାପହାରୀ
ମୁକୁନ୍ଦ ମଧୁସୂଦନ ଗୋବିନ୍ଦ ମୁରାରି ।
ଶରଣ ଶରଣ ନିତ୍ୟ ମୁଁ ତାଙ୍କ ଚରଣେ
ଯେ ସକଳ ବ୍ରହ୍ମାଣ୍ଡରେ ଥାଏ ଅନୁକ୍ଷଣେ ।
ଯା ଲୋମକୂପେ ବ୍ରହ୍ମାଣ୍ଡ ମାଳମାଳ ହୋଇ
ନିର୍ଦ୍ଦୋଷୀ ପରମେଶ୍ୱର ପାଦପଦ୍ମ ଧ୍ୟାୟି ।
ସେ ପ୍ରଭୁର ସେହି ପାଦତଳେ ନମସ୍କାର
ବେଦାନ୍ତିମାନେ କହନ୍ତି ଯାକୁ ନିରାଧାର ।
ଗୁଣନିଧାନ ଅନନ୍ତ ବୀର୍ଯ୍ୟ ନାରାୟଣ
ମୁହିଁ ସେ ପ୍ରଭୁଚରଣେ ନିରତେ ଶରଣ ।
ଅଗାଧ ଅଥଳ ଏହି ସଂସାର ସାଗର
ଅକୂଳ ଅନନ୍ତ ପୁଣି ଅଟଇ ଅପାର ।
ସେ ଘୋର ଭବସିନ୍ଧୁକୁ ତରିବା ନିମନ୍ତେ
ଶରଣ ପଶଇ ରଙ୍ଗାଚରଣେ ନିରତେ ।
ଯେ ଯୋଗୀନ୍ଦ୍ର ଜନମନ ସରୋବର ହଂସ
ସର୍ବତ୍ର ଯାର ଅଶେଷ ମହିମା ପ୍ରକାଶ ।

ସେ ଅସୁରର ରିପୁଦେବ ଦେବ ନାରାୟଣ
ବିମଳ ବିଶାଳ ଶୁଷ୍କ ଯୁଗଳ ଚରଣ ।
ମୋ ସମାନ ଦୀନଜନେ ରଖୁ ନିରନ୍ତର
ଯେ ପ୍ରଭୁ ଦୁଃଖ ତିମିରି ନାଶେ ନିଶାକର ।
ଲୋକ ରକ୍ଷାର ନିମନ୍ତେ ଯେ ଧର୍ମ ଥାପଇ
ଅଖିଳ ଭୁବନପତି ଯେ ପ୍ରଭୁ ଅଟଇ ।
ସତ୍ୟବନ୍ତ ଯେ ସକଳ ଲୋକଙ୍କର ଗୁରୁ
ସେହି ସୁରେଶ୍ୱର ଦେବଦେବ ମହାମେରୁ ।
ସେ ପ୍ରଭୁ ରୂପକୁ ନିତ୍ୟ କରଇ ମୁଁ ଧ୍ୟାନ
ଯେ ସ୍ୱାମୀ ଭୁବନ ଦେବ ଭୁବନମୋହନ ।
ଦିନେଶ ତୁଲ୍ୟ ଯେ ଜ୍ଞାନ କମଳ ବିକାଶେ
ଆନନ୍ଦକନ୍ଦ ଗୋବିନ୍ଦ ମୁକୁନ୍ଦଯେ ଦାସେ ।
ସେ ଶିରୀରଙ୍ଗ ମହିମା ଅପାରୁ ଅପାର
ରସ ତାଳମାନ ଯୋଗେ ଗାଏ ନିରନ୍ତର ।
ଯେ ପ୍ରଭୁ ଅମୃତଭାଣ୍ଡ ସର୍ବ କଳାନିଧି
ଗୀତ କଉଶଳମୟ ରସର ଉଦଧି ।
ତାର ନାମେ ଗୀତଗାଏ ମୁଁ ନିତ୍ୟ ସୁସ୍ୱରେ
ଚରାଚର ବିଶ୍ୱକୁ ଯେ ଦେଖେ ନିରନ୍ତରେ ।
ପାପୀଲୋକେ ଦରଶନ ନପାନ୍ତି ଯାହାର
ନିତ୍ୟ ମୁଁ ଶରଣ ସେହି କେଶବ ପୟର ।
ଏମନ୍ତ କହି ସୁବ୍ରତ କରତାଳି ଦେଇ
ଲୟ ତାଳ ଯୋଗେ ତାଳି ବାଦ୍ୟକୁ ବଜାଇ ।
ଶ୍ରୀକୃଷ୍ଣ ମହିମା ଗାଇ ଗାଇ ସଙ୍ଗୀ ସଙ୍ଗେ
ଆମୋଦପ୍ରମୋଦକରେ ନାଚେନାନାରଙ୍ଗେ ।
ବାଲ୍ୟକାଳେ ଏରୂପେ ସେ କରେ ବିଷ୍ଣୁଧ୍ୟାନ
ସୁମନାସୁତ ସୁବ୍ରତ ଖେଳର ବିଧାନ ।
ଏହିରୂପେ କୃଷ୍ଣନାମ ରସେ ରସି ନିତ୍ୟ
ଦିନେଯେ ମାତାତାହାର ବୋଲେରେ ସୁବ୍ରତ ।
ଭୋକ କରୁଥିବ ବାବୁ ଖାଇବୁ ଆ ବେଗେ
ଆସ ଆସ ବୋଲି ମାତା ଡାକେ ଅନୁରାଗେ ।
ମାତା ଡାକନ୍ତେ ସୁବ୍ରତ କହେ ବାରମ୍ବାର
ହରି ନାମାମୃତେ ମାତା ପୂରିଛି ଉଦର ।
ଯେବେ ମା ଡାକୁଛୁ ଚାଲ ଯାଉଛିତୋ ସଙ୍ଗେ
ଏମନ୍ତ କହି ସୁବ୍ରତ ଗଲା ତହୁଁ ବେଗେ ।
ଭୋଜନ କରିବାପାଇଁ ବସିଲା ଆସନେ
କ୍ଷିରୀ ପିଠା ଅଷ୍ଟଅନ୍ନ ଦେଖିଣ ନୟନେ ।

ମନେ ବିଚାରିଲା କୃଷ୍ଣଯୋଗ୍ୟ ଏହି ଅନ୍ନ
ଅନ୍ନରୂପୀ ଅଟନ୍ତି ତ ସ୍ୱୟଂ ଭଗବାନ ।
ଅନ୍ନ ଆଶ୍ରାକରି ଆତ୍ମାଥାଇ ଯେ ନିରତେ
ଏ ଅନ୍ନେ ତୃପତ ଆତ୍ମାରୂପୀ ପ୍ରଭୁ ନିତ୍ୟେ ।
କ୍ଷୀର ସମୁଦ୍ର ମଧ୍ୟରେ ଯେ ପ୍ରଭୁର ଘର
ତୃପତ ହୁଅନ୍ତୁ କୃଷ୍ଣ ପାଇଁ ପୁଣ୍ୟ ନର ।
ମନୋହର ଗନ୍ଧପୁଷ୍ପ ତାମ୍ବୁଳ ଚନ୍ଦନ
ଏସବୁ ଦ୍ରବ୍ୟ କରୁଛି କୃଷ୍ଣେ ସମର୍ପଣ ।
ଆତ୍ମରୂପୀ ହରି ତୋଷ ହୁଅ ଖାଇ ପିଇ
ଗନ୍ଧ ପୁଷ୍ପ ଆଦି ଘେନ ତାମ୍ବୁଳ ଚୋବାଇ ।
ଏମନ୍ତ କୃଷ୍ଣଙ୍କୁ ଦେଇ କରଇ ଶୟନ
ଶୋଇଲାବେଳେ ଚିନ୍ତଇ ଦେବ ଭଗବାନ ।
ବୋଲଇଯୋଗନିଦ୍ରାରେ ଯେ ଶୋଇ ଥାଇ
ସେ ପ୍ରଭୁ କୃଷ୍ଣ ପାଦେ ମୁଁ ଶରଣ ପଶଇ ।
ଭୋଜନେ ଶୟନେ ବସ୍ତ୍ର ପିନ୍ଧିବାର ବେଳେ
ଗୋବିନ୍ଦ ନାମ ଜପଇ ହୃଦୟ କମଳେ ।
ବସିଲାବେଳେ ଆସନେ ନିଦ୍ରାରେ ସ୍ୱପନେ
ସବୁବେଳେ ହରିହରି ବୋଲେ ମନେ ମନେ ।
ଏମନ୍ତେ ଗୋବିନ୍ଦ ନାମ ଜପି ନିରନ୍ତର
ସବୁ ଅରପଣ କରେ ଗୋବିନ୍ଦ ପୟର ।
ଯୁବାବୟସ ହୁଅନ୍ତେ କାମଚେଷ୍ଟା ତେଜି
ଗୋବିନ୍ଦ ନାମ ମନରେ ନିରନ୍ତର ଭଜି ।
ନର୍ମଦା ନଦୀ ଦକ୍ଷିଣ ତୀରେ ପ୍ରବେଶିଲା
ବଇଦୁର୍ଯ୍ୟ ପରବତେ ଆଶ୍ରମ ଥାପିଲା ।
ତହିଁ ବସି କେଶବଙ୍କ ପାଦେ ଦେଲା ଲୟ
ଏହି ବଇଦୁର୍ଯ୍ୟ ଗିରି ପାପକରେ କ୍ଷୟ ।
ବଇଷ୍ଣବ ସିଦ୍ଧେଶ୍ୱର ଥିବାରୁ ଆବର
ଓଁକାରେ ଶିବନାମରେ ମହାଶମ୍ଭୁ ହର ।
ତାଙ୍କୁ ସେହି ବ୍ରହ୍ମପଦ ବ୍ରହ୍ମା ଦେଇଥିଲେ
ସୁମନାସୁତ ତାହାଙ୍କ ଆଶ୍ରୟେ ରହିଲେ ।
ବିଷ୍ଣୁପାଦେ ଲୟ ରଖି କଲା ଘୋରତପ
ଗୋପୀନାଥ ବୋଲେ ହରିବୋଲ ଛାଡୁପାପ

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ
ସୁମନୋପାଖ୍ୟାନଂ ନାମ
ଏକବିଂଶୋଽଧ୍ୟାୟଃ ।

# ଦ୍ୱାବିଂଶ ଅଧ୍ୟାୟ

## ସୁବ୍ରତର ପୂର୍ବଜନ୍ମ ବୃତ୍ତାନ୍ତ

ବୋଇଲେଯେବେଦବ୍ୟାସ ଆହେ ବେଦବର
କଥାଏକ ପଚାରିବି ଦେବ ତା ଉତ୍ତର ।
ପୂର୍ବେ କହିଥିଲ ମୋତେ ସୁମନା ବ୍ରାହ୍ମଣ
ପୂର୍ବର ଅଭ୍ୟାସବଳେ ଭଜେ ନାରାୟଣ ।
ପୂର୍ବଜନମର କଥା କହିବା ବୁଝାଇ
ଜନମିଥିଲା କି କୁଳେ ଆହେ ଦେବସାଇଁ ।
ସେ ଜନମେ କିରୂପେ ସେ କଲା ହରିସେବା
କେମନ୍ତେ ପୁଣ୍ୟ ଭାଜନ ହେଲା ତା କହିବା ।
ବ୍ରହ୍ମା ବୋଇଲେରେ ଶୁଣ ବ୍ୟାସ ମୁନିବର
ବିଦିଶା ନାମରେ ଥିଲା ଏକଇ ନଗର ।
ପୁଣ୍ୟସ୍ଥାନ ଗୋଟା ସର୍ବ ସିଦ୍ଧି ସେ ଦିଅଇ
ଋତୁଧ୍ୱଜ ନାମେ ତହିଁ ଏକ ନରସାଇଁ ।
ଅତି ତେଜୋବନ୍ତ ତାର ପୁତ୍ରନାମ ବଳୀ
ତାର ପୁତ୍ର ରୁକ୍ମାଙ୍ଗଦ ମହା ବଳଶାଳୀ ।
ସନ୍ଧ୍ୟାବଳୀ ନାମେ ସେହି ରାଜା ମହାଦେଈ
ତା ଗର୍ଭରେ ରୁକ୍ମାଙ୍ଗଦ ପୁତ୍ର ଉପୁଜାଇ ।
ବଳ ବୁଦ୍ଧି ତେଜ ବୀର୍ଯ୍ୟେ ଆପଣା ସମାନ
ଧର୍ମାଙ୍ଗଦ ନାମ ତାର ରଖିଲା ରାଜନ ।
ସର୍ବଗୁଣେ ସୁଲକ୍ଷଣ ହେଲା ସେ କୁମର
ଭଗବତୀ ହେଲା ପିତୃଭକତ ଆବର ।
ରାଜ୍ୟଭାର ଆପଣାର ମୁଣ୍ଡରେ ମୁଣ୍ଡାଇ
ପିତାକୁ ସୁଖେ ରଖିଲା ତା ଚିନ୍ତା ଛଡ଼ାଇ ।
ବଇଷ୍ଣବ ଧର୍ମବଳେ ପିତୃଭକ୍ତି ଗୁଣେ
ସୁପ୍ରସନ୍ନ କରାଇଲା ବିଷ୍ଣୁଙ୍କୁ ଆପଣେ ।
ଜ୍ଞାନ ବିଜ୍ଞାନ ଆବର ଧର୍ମ ବୁଦ୍ଧି ବଳେ
ସଶରୀରେ ବଇଷ୍ଣବ ଧାମେଗଲା ହେଳେ ।
ସେହି ବଇକୁଣ୍ଠପୁରେ ଥାଇ ରୁକ୍ମାଙ୍ଗଦ
ମନ ଅନୁସାରେ କରି ଆମୋଦ ପ୍ରମୋଦ ।
ଯୁଗ ସହସ୍ର ଅନ୍ତେ ତା ପୁଣ୍ୟଯାନ୍ତେ କ୍ଷୟ
ସ୍ଥାନ ଭ୍ରଷ୍ଟ ହୋଇ ହେଲା ସୁମନା ତନୟ ।
ସୋମଶର୍ମାର ଆନନ୍ଦ ବର୍ଦ୍ଧନ ନନ୍ଦନ
ଜନମିଲାମାତ୍ରେ କଲା ଗୋବିନ୍ଦ ଭଜନ ।
ମହା ଭାଗ୍ୟବାନ ହେଲା ସେ ଦ୍ୱିଜ ସୁବ୍ରତ
କାମ କ୍ରୋଧ ଆଦି ସବୁ ଦୋଷ ବିବର୍ଜିତ ।
ଇନ୍ଦ୍ରିୟ ନିରୋଧି ତପେ ବସି କଲା ଧ୍ୟାନ
ବଇଦୂର୍ଯ୍ୟ ପରବତ ଯହିଁ ପୁଣ୍ୟସ୍ଥାନ ।
ସିଦ୍ଧେଶ୍ୱର ସନ୍ନିଧାନେ ଲଗାଇଲା ଲୟ
ବିଷ୍ଣୁପାଦେ ମନ ଚଇତନ କରି ଥୟ ।
ଏରୂପେ ଶଏ ବରଷ ତପ କଲା ବସି
ଜଗତଜନର ନାମ ବଇକୁଣ୍ଠବାସୀ ।
ଶଙ୍ଖ ଚକ୍ର ଗଦା ପଦ୍ମ ଧରି ଲକ୍ଷ୍ମୀ ଘେନି
ବିଜେକଲେ ଯହିଁ ରୁଦ୍ର ସିଦ୍ଧେଶ୍ୱର ବେନି ।
ପ୍ରସନ୍ନେ ଯାଚିଲେ ତାକୁ ଦେବାପାଇଁ ବର
ବୋଇଲେତୁ ହୋ ସୁବ୍ରତ ଧର୍ମବନ୍ତ ନର ।
ମହାଜ୍ଞାନୀ ପଣ୍ଡିତ ତୁ ଶୁଭ ହେଉ ତୋର
ଆମ୍ଭେ କୃଷ୍ଣ ବିଜେକଲୁଁ ଦେବାପାଇଁ ବର ।
ଶ୍ରୀକୃଷ୍ଣ ଶ୍ରୀମୁଖ ବାକ୍ୟ ଶୁଣି ସେ ସୁବ୍ରତ
ଅତି ଆନନ୍ଦ ମନରେ ହୋଇ କୃତ୍ୟ କୃତ୍ୟ ।
ଚର୍ମ ନେତ୍ରେ ଦରଶନ କରି ଜନାର୍ଦ୍ଦନ
ପ୍ରଣମି ଚରଣେ ବୋଲେ ଶରଣ ଶରଣ ।
କରକୁ ଆଞ୍ଜୋଳିକରି କହେ ଭାବଗ୍ରାହୀ
ଅନ୍ତର୍ଯ୍ୟାମୀନାଥ କହେ କ୍ଷୀରାର୍ଣ୍ଣବଶାୟୀ ।
ଏ ସଂସାର ସାଗର ଯେ ମହାଭୟଙ୍କର
ତହିଁରେ ଦୁଃଖ ଲହରୀ ଉଠେ ଘୋରତର ।
ନାନାଦି ମୋହତରଙ୍ଗେ ହୋଇଛି ଆଚ୍ଛନ୍ନ
ମୁହିଁ ମୋର ଦୋଷଗୁଣେ ତହିଁ ନିମଗନ ।
ମୁଁ ଅତିଦୀନ ତୁ ମୋତେ ଉଦ୍ଧରିଣ ଧର
ଘୋର ମେଘରୂପେ ଘୋଟି କର୍ମଫଳମୋର ।
ଗର୍ଜନକରି ପାତକ ଧାରା ବରଷଇ
ତମତିମିରି ଯେ ଘୋଟି ବିଜୁଳି ମାରଇ ।
ମୋହ ଅନ୍ଧାର ପଟଳେ ପଡ଼ି ମୁହିଁ ଅନ୍ଧ
ତୁମ୍ଭେ ଯେ ମଧୁସୂଦନ ଅନାଦି ମୁକୁନ୍ଦ ।
କର ପ୍ରସାରି ଉଦ୍ଧରି ଧର ପ୍ରଭୁ ମୋତେ
ଶରଣ ଶରଣ ନାଥ ତୋର ପାଦଗତେ ।
ନିବିଡ଼ ଘୋର କାନନ ଏଛାର ସଂସାର
ବହୁତ ଦୁଃଖ ବୃକ୍ଷରେ ହୋଇଛି ଅନ୍ଧାର ।
ମୋହମୟ ସିଂହ ବ୍ୟାଘ୍ରେ ଭୟଙ୍କର ଅତି
ଦାବାନଳେ ସନ୍ତାପିତ ହୁଏ ମୋର ମତି ।

ରଖ ରଖ ଜଗନ୍ନାଥ ମୁଁ ତୋର ଶରଣ
ଏ ସଂସାର ବୃକ୍ଷ ଗୋଟା ବଡ଼ ଜରାଜୀର୍ଣ୍ଣ ।
ମାୟା ଏ ବୃକ୍ଷର ମୂଳ କରୁଣା ଯେ ଶାଖା
ଦୁଃଖ ଏ ସଂସାର ବୃକ୍ଷେ ବହୁତ ପ୍ରଶାଖା ।
ସ୍ତିରୀସଙ୍ଗ ଆଦି ଡାଳପତ୍ର ଯେ ଏହାର
ଚାରିଆଡ଼େ ମେଲି ଦିଶେ ମହାଭୟଙ୍କର ।
ଚନ୍ଦ୍ର ସୂର୍ଯ୍ୟର କିରଣ ଭେଦ ନପାରଇ
ବହଳ ଡାଳ ପତ୍ରରୁ କରିଅଛି ଛାଇ ।
ତେଣୁ ତିମିରି ଘୋଟୁଛି ନ ପାଉଛି ବାଟ
ବୃକ୍ଷେ ଚଢ଼ି ଖସିପଡ଼ି ହୁଏ ଛଟପଟ ।
ରଖ ରଖ ଜଗନ୍ନାଥ ମୁଁ ତୋର ଶରଣ
ହେ ମୁରାରି ତୁମ୍ଭେ ଅଟ ଅନାଦି କାରଣ ।
ନାନା ମୋହମୟ ଦୁଃଖ ଅନଳ ସଂକୁଳେ
ବିଯୋଗ ମରଣ ଶୋକେପଡ଼ି କାଳେକାଳେ ।
ଦଗଧ ହୋଇ ମୁଁ ଉଚ୍ଚେ ଡାକେ କୃଷ୍ଣହରି
ମଧୁସୂଦନ ଗୋବିନ୍ଦ ମୁକୁନ୍ଦ ମୁରାରି ।
ତ୍ରାହି ତ୍ରାହି ଭାବଗ୍ରାହୀ ଶରଣ ତୋହର
ଜ୍ଞାନ ଜଳଧାରା ଢ଼ାଳି ମୋତେ ରକ୍ଷାକର ।
ଏ ସଂସାର ଗର୍ତ୍ତ ଘୋର ଅନ୍ଧକାରେ ପୂର୍ଣ୍ଣ
ଏ ଗର୍ତ୍ତେ ପଡ଼ି ମୁଁ ଭୟେ ହୁଏ ଛନ୍ନଛନ୍ନ ।
କୃପାକର କୃପାନିଧି ମୁଁ ତୋର ଶରଣ
ଏ ଗର୍ତ୍ତ ଉଦ୍ଧରି ଧର ଦେବ ନାରାୟଣ ।
ଏ ସଂସାରେ ବିରକତି ଜନ୍ମିବାରୁ ମୋର
ଶରଣ ପଶିଲି ନାଥ ଚରଣେ ତୋହର ।
ଶୁଣିଛି ପଢ଼ିଛି ନାଥ ଦେଖିଛି ନୟନେ
ମନ ଚଇତନ ଦୃଢ଼ କରିଣ ଯେ ଜନେ ।
ଜ୍ଞାନ ନେତ୍ରେ ଧ୍ୟାନକରେ ପାଏ ତବସ୍ଥାନ
ପବିତ୍ର ତୋର ଚରଣ ସଦା ଭଗବାନ ।
ଦେବତା କିନ୍ନର ସିଦ୍ଧ ସାଧ ଯୋଗିଜନେ
ସର୍ବଦା ତୋ ପାଦପଦ୍ମ ଚିନ୍ତି ମନେ ମନେ ।
ତୁମ୍ଭସ୍ଥାନ ପାଇଛନ୍ତି ଏଣୁ ମୁଁ ଶରଣ
କାରଣକର ହେ ନାଥ ଅନାଦି କାରଣ ।
ତୁମ୍ଭ ନାମ ବିନା ଅନ୍ୟ ନାମ ନ ଧରଇ
ତୁମ୍ଭଙ୍କୁ ଭଜଇ ଅନ୍ୟ ଦେବ ନ ଭଜଇ ।
ତେଣୁ ମୁଁ ଶରଣ ମାଗେ ହେ ଦୀନବାନ୍ଧବ
କରୁଣା ସାଗର ତୁମ୍ଭେ କମଳା ବଲ୍ଲଭ ।

ତୋ ପାଦପଦ୍ମ ଯୁଗଳେ ନମସ୍କାର ମୋର
ହେ କୃଷ୍ଣ ମୋ ମନବାଞ୍ଛା ବେଗେ ପୂର୍ଣ୍ଣକର ।
ମୋ ପାପରାଶି ତୁରିତେ ଦୂର ହୋଇଯାଉ
ଶରଣ ଶରଣ ନାଥ ଆହେ ମହାବାହୁ ।
ମୁଁ ତୋହର ଦାନ ପୁଣି ମୁଁ ତୋର କିଙ୍କର
ଜନ୍ମେ ଜନ୍ମେ ହେବି ଯେହ୍ନେ ଦିଅ ଏହିବର ।
ତୋ ପାଦପଦ୍ମ ଯୁଗଳ ଧ୍ୟାନେ ଯିବଦିନ
ହେକୃଷ୍ଣ ଯେବେକି ମୋତେ ହୋଇଲ ପ୍ରସନ୍ନ ।
ଏ ଉତ୍ତମ ବର ମୋତେ ଦିଅ ଦେବରାୟ
ମାତା ପିତା ଘେନି ଯିବି ତୁମ୍ଭର ଆଳୟ ।
ଏହି ଶରୀରେ ବସିବୁ ଯାଇଁ ଆମ୍ଭେ ତିନି
ଶ୍ରୀକୃଷ୍ଣ ବୋଇଲେ ତୁହୋ ଶୁଣ ମହାଜ୍ଞାନୀ ।
ତୋହର ଯେ ମନବାଞ୍ଛା ପୂରିବ ନିଶ୍ଚୟ
ପରମଧାମ ମୋହର ଯେବଣ ଆଳୟ ।
ଏରୂପେ ଶ୍ରୀହରି ତୋଷ ଭକତିର ଗୁଣେ
ବର ପାଇଲା ମାତ୍ରରେ ସୁବ୍ରତ ତକ୍ଷଣେ ।
ସୋମଶର୍ମା ସୁମନାକୁ ସଙ୍ଗତରେ ଘେନି
ଦାହ ପ୍ରଳୟ ନିବାରି ଗଲେ ସେହି ତିନି ।
ଦୁଇ କଳପ ରହିଲେ ବଇକୁଣ୍ଠ ପୁରେ
ବିଷ୍ଣୁ ଦରଶନ ନିତି କରି ଆନନ୍ଦରେ ।
ଦିବ୍ୟ ଭୋଗପାଇ ତହିଁ ସେ ତିନି ପରାଣୀ
ଦେବଙ୍କ ନିମନ୍ତେ ବିଷ୍ଣୁ ଆଜ୍ଞାପାଇ ପୁଣି ।
କଶ୍ୟପ ଋଷିର ଗୃହେ ହେଲେ ଅବତାର
ଶ୍ରୀବିଷ୍ଣୁ ପ୍ରସାଦେ ଇନ୍ଦ୍ରହେଲା ସୁର ପୁର ।
ବସୁଦତ୍ତ ନାମ ତାର ବିଖ୍ୟାତ ଜଗତେ
ସବୁବେଳେ ଖଟିଥାନ୍ତି ତାର ପାଦଗତେ ।
ଇନ୍ଦ୍ରପଦ ଭୋଗକରେ ସୁବ୍ରତ ବ୍ରାହ୍ମଣ
ବୁଝାଇ କହିଲି ପୂର୍ବଜନ୍ମ ବିବରଣ ।
ଆଉ ଯାହା ପଚାରିବ କହିବଇଁ ତାହା
ବ୍ୟାସମୁନି ବୋଇଲେହେ ସାବିତ୍ରୀର ନାହା ।
ଏକ ସଂଶୟ ମୋ ମନେ ଉପୁଜି ଅଛଇ
ସତ୍ୟଯୁଗେ ରୁକ୍ମାଙ୍ଗଦ ନାମେ ନରସାଇଁ ।
ତାହାର ପୁତ୍ର ଅଟଇ ଧର୍ମାଙ୍ଗଦ ରାୟ
ସତ୍ୟଯୁଗ ଆଦ୍ୟର ଏ କଥାଟା ନିଶ୍ଚୟ ।
ବାସବ ସେ ହୋଇଥିଲା ସୃଷ୍ଟି ଆଦ୍ୟକାଳେ
ଏହି ସେହି ଧର୍ମାଙ୍ଗଦ ଅମର ମଣ୍ଡଳେ ।

କିବା ଧନ୍ୟ ଧର୍ମାଙ୍ଗଦ ହୋଇଅଛି ଇନ୍ଦ୍ର
ଧର୍ମାଙ୍ଗଦ ନାମଧାରୀ ଅପର ନରେନ୍ଦ୍ର ।
ଏ ସଂଶୟ ନିବାରଣ କର ଦେବବର
ବ୍ରହ୍ମା ବୋଇଲେ କହୁଛି ଶୁଣ ଦ୍ୱିଜବର ।
ଦେବଦେବଙ୍କର ଲୀଳା ସୃଷ୍ଟିର ନିମନ୍ତେ
ବାର ପକ୍ଷ ମାତ୍ର ଋତୁ ବତ୍ସର ଯେମନ୍ତେ ।
ସବୁ ଯୁଗ ସବୁ ମନୁ ହୁଏ ପୁଣ ପୁଣ
ଯୁଗର ପରେ କଳପ ହୁଏ ପୁଣି ଜାଣ ।
ତହୁଁ ମୁଁ ଯାଇ ପଶଇ ବିଷ୍ଣୁର ଉଦରେ
ଚରାଚର ବିଶ୍ୱରହେ ହୋଇ ଆଶ୍ରୟରେ ।
ଯୋଗନିଦ୍ରା ବଶେ ଥାଇ ଦେବଦେବ ହରି
ବିଶ୍ୱସୃଷ୍ଟି କରଇ ସେ ପୁଣି ପୂର୍ବପରି ।
ବେଦ ସୃଷ୍ଟି ଦେବସୃଷ୍ଟି ଦ୍ୱିଜ ଆଦିସୃଷ୍ଟି
ପୂର୍ବର ପ୍ରାୟ ଗଢ଼ଇ ପୁଣି ପରମେଷ୍ଠୀ ।
ଭୂତ ପ୍ରେତ ଆଦିଗଣ ଏରୂପେ ହୁଅଇ
ଛପନକୋଟି ଯେ ଜୀବଜନ୍ତୁ ମୁଁ ଭିଆଇ ।
ଏଣୁ ଜାଣ ମାୟାମୋହେ ନପଡ଼ନ୍ତି ଜ୍ଞାନୀ
ରୁକ୍ମାଙ୍ଗଦ ରାଜା ଥିଲା ଯେରୂପେ ଜନମି ।
ସେରୂପେ ଏ ଧର୍ମାଙ୍ଗଦ ଜନମି ଅଛଇ
ରାମଚନ୍ଦ୍ର ଆଦିକରି ଯେତେ ନରସାଇଁ ।
ଯଯାତି ନହୁଷ ମନୁ ଆଦି କରି ଯେତେ
କଳ୍ପେ କଳ୍ପେ ଜନମନ୍ତି ମରନ୍ତି ଏମନ୍ତେ ।
ଧର୍ମବନ୍ତ ରାଜାମାନେ ଇନ୍ଦ୍ରପଦ ପାଇ
ଯେମନ୍ତେ କି ଏହି ଧର୍ମାଙ୍ଗଦ ନରସାଇଁ ।
ଇନ୍ଦ୍ରପଦ ଭୋଗକରେ କରୁଥିଲା ପୁଣି
କହିଲି ତୋ ଆଗେ ଏହି ସୁବ୍ରତ କାହାଣୀ ।
ପରମ ପବିତ୍ର ଏହି ସୁବ୍ରତ ଚରିତ
ଦୀନ ଗୋପୀନାଥ ନିତ୍ୟ ଭଜଇ ଅଚ୍ୟୁତ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ
ସୁବ୍ରତୋପାଖ୍ୟାନଂ ନାମ
ଦ୍ୱାବିଂଶୋଽଧ୍ୟାୟଃ ।



## ତ୍ରୟବିଂଶ ଅଧ୍ୟାୟ

### ସୃଷ୍ଟି ସଂହାର

ପଚାରିଲେ ଋଷିଗଣେ ହେ ସୂତ ବକତା
କହିଲ ତୁମ୍ଭେ ଆମ୍ଭଙ୍କୁ ଯେ ବିଚିତ୍ର କଥା ।
ପୁଣ୍ୟଯଶ କାରିଣୀ ସେ ପାପବିନାଶିନୀ
ଆବର କହିବା ପୂର୍ବ ସୃଷ୍ଟିର କାହାଣୀ ।
କିରୂପେ ଏ ସୃଷ୍ଟିଥିଲା ସମ୍ବନ୍ଧ କେମନ୍ତେ
ବିସ୍ତାରି କହିବ ସବୁ ଆମ୍ଭର ଅଗ୍ରତେ ।
ଏମନ୍ତ ଶୁଣି ବୋଇଲେ ସୁତ ମୁନିବର
ଶୁଣିଲାମାତ୍ରେ ସର୍ବଜ୍ଞ ହୁଏ ଯାହା ନର ।
କହିବି ମୁହିଁ ସେ ସୃଷ୍ଟି ସଂହାର କାରଣ
ହିରଣ୍ୟ କଶିପୁ ନାମେ ଦୈତ୍ୟ ନୃପରାଣ ।
ଆକ୍ରମଣ କରିଥିଲା ଏ ତିନି ଭୁବନ
ବ୍ରହ୍ମାର ବରେ ଅସାଧ ଦନୁଜ ରାଜନ ।
ଅମରତ୍ୱ ପାଇଥିଲା ବ୍ରହ୍ମାତହୁଁ ସେହି
ଦେବନରଲୋକେ ତାର ପ୍ରଭୁପଣ ରହି ।
ଯାକୁ ପାଏ ତା ଉପରେ ରଖେ ପ୍ରଭୁପଣ
ମହା ପ୍ରତାପୀ ଅସୁର ଭୟଙ୍କର ପୁଣ ।
ଅସୁର ପ୍ରତାପ ସହି ନପାରି ଅମରେ
ନାଗ ମୁନି ସିଦ୍ଧ ଯକ୍ଷ ଗନ୍ଧର୍ବ କିନ୍ନରେ ।
ବ୍ରହ୍ମାଙ୍କୁ ଆଗ କରିଣ ଗଲେ ବିଷ୍ଣୁପାଶେ
ନାରାୟଣ ଶୋଇଛନ୍ତି କ୍ଷୀର ସିନ୍ଧୁ ଦେଶେ ।
ଯୋଗନିଦ୍ରା ଯାଇଛନ୍ତି ଦେବ ନାରାୟଣ
ସେ ସ୍ଥାନରେ ମିଳି ବ୍ରହ୍ମା ଆଦି ଦେବଗଣ ।
କରଯୋଡ଼ି ଡାଙ୍ଗିଯାନ୍ତେ କମଳାର ପତି ।
ଉଠି ବସିଣ ଶୁଣିଲେ ଦେବଙ୍କ ଜଣାଣ
ଅସୁର ପ୍ରତାପ ଶୁଣି ଦେବ ନାରାୟଣ ।
ନୃସିଂହରୂପେ ହିରଣ୍ୟ କଶିପୁ ସଂହାରି
ବରାହରୂପେ ସେ ହରି ହିରଣ୍ୟାକ୍ଷ ମାରି ।
ଧରଣୀ ଉଦ୍ଧାର କଲେ ଏରୂପେ ସକଳ
ଘୋର ଦରଶନ ଯେତେ ଦାନବ ମଣ୍ଡଳ ।
ବଡ଼ ବଡ଼ ଦାନବଙ୍କୁ ଏରୂପେ ସଂହାରି
ଦେବଙ୍କୁ ସ୍ୱର୍ଗେ ଥାପିଲେ ପୁଣି ନରହରି ।

ଧର୍ମ କର୍ମ କରି ଲୋକେ ସୁଖ ହେଲେ ପୁଣି
ପୁତ୍ରଶୋକେ ଦିତିରଯେ ହୃଦ ହୋଏ ହାଣି ।
ହାହାକାର କରି କାନ୍ଦି କାନ୍ଦି ତହୁଁ ଗଲା
ସ୍ୱାମୀ କଶ୍ୟପ ଋଷିଙ୍କ ନିକଟେ ମିଳିଲା ।
ତପ ତେଜେ ସୂର୍ଯ୍ୟତୁଲ୍ୟ ମୁନି ତେଜୋବନ୍ତ
ଦିତି ତାହାଙ୍କ ଚରଣେ କରି ପ୍ରଣିପାତ ।
ଭୋ ସ୍ୱାମୀ ବୋଲି ଭକତିଭରେ ସେ କହିଲା
ଅପୁତ୍ରିକୀ ହେଲି ମୋର ପୁତ୍ର ନାଶଗଲା ।
ଚକ୍ରପାଣି ଚକ୍ରକରି ମାଇଲେ ସକଳ
ନରଖିଲେ ସେ ଦାନବ ଦଇତ୍ୟଙ୍କ କୁଳ ।
ପୁତ୍ର ଶୋକାନଳ ମୋର ହୃଦ ଦିଏ ପୋଡ଼ି
କର୍ମକୁ ଭୋ ସ୍ୱାମୀ କେହି ନପାରନ୍ତି ଏଡ଼ି ।
କର୍ମକୁ ଭୋ ସ୍ୱାମୀ ମୋତେ ପୁତ୍ର ଦାନକର
ସୁଲକ୍ଷଣ ହୋଇଥିବ ସେ ପୁତ୍ର ମୋହର ।
ଇନ୍ଦ୍ର ତେଜହାରୀ ପୁତ୍ର ହେବ ବଳବନ୍ତ
ଦେବରାଜ ତୁଲ୍ୟ ଶୋଭା ସୁନ୍ଦର ପଣ୍ଡିତ ।
ବୁଦ୍ଧିମନ୍ତ ଗୁଣୀ ଜ୍ଞାନୀ ତପୀ ସେହିପରି
ଇନ୍ଦ୍ର ରୂପଗୁଣ ସୁଲକ୍ଷଣେ ସମସରି ।
ଦେବଦ୍ୱିଜ ସେବକ ସେ ତିନିପୁର ଜିଣି
ମୋର ଆନନ୍ଦ ବର୍ଦ୍ଧନ କରୁଥିବ ପୁଣି ।
ଏମନ୍ତ ପୁତ୍ରେକ ସ୍ୱାମୀ ଦିଅ ବେଗେ ମୋତେ
ଶରଣ ପଶିଲି ନାଥ ତବ ପାଦଗତେ ।
କଶ୍ୟପ ଶୁଣି ଦିତିର ଏ କରୁଣ ବାଣୀ
କୃପାକରି ଦିତି ଶିରେ ଦେଇ ନିଜ ପାଣି ।
ବୋଇଲେ ପ୍ରେମ ଗଦ୍‌ଗଦ ବଚନ ତାହାଙ୍କୁ
ଶୋକ ତୁ ନକର ପ୍ରିୟେ ଯାଅଗୋ ଗୃହକୁ ।
ତୋର ମନବାଞ୍ଛା ପୂର୍ଣ୍ଣ ହୋଇବ ନିଶ୍ଚୟ
ପାଇବୁ ନିଶ୍ଚେ ବାସବ ସମାନ ତନୟ ।
ଦିତି ସହବାସକରି ଗଲେ ସେନିକର
ମେରୁ ପରବତ ଶିଖେ କଲେ ତପ ଘୋର ।
ଏ ସମୟେ ଦିତି ଦେବୀ ହେଲେ ଗର୍ଭବତୀ
ଶତ ବରଷ ଧଇଲେ ସେ ଗର୍ଭକୁ ସତୀ ।
ପ୍ରସବକଲେସେ ଏକ ତେଜୋବନ୍ତ ପୁତ୍ର
ତା ଶୁଣି କଶ୍ୟପମୁନି ହୋଇ ଆନନ୍ଦିତ ।
ଘରକୁ ଆସି ପୁତ୍ରର ନାମ ଦେଲେ ବଳ
ନାମ ଅନୁସାରେ ଦିତି ପୁତ୍ର ମହାବଳ ।

ଦଶକର୍ମେ ମୁନି ତାକୁ କରାଇ ସଂସ୍କାର
ପୁତ୍ରକୁ ଚାହିଁ ବୋଇଲେ ଶୁଣରେ କୁମର ।
ବ୍ରହ୍ମଚର୍ଯ୍ୟ ବ୍ରତକର ଆରେ ପୁତ୍ରମଣି
ପିତା ବଚନରେ ବଳ କହେ ଯୋଡ଼ି ପାଣି ।
ବ୍ରହ୍ମଚାରୀ ହେବି ବେଦ ପଢ଼ିବି ଭୋ ତାତ
ଏମନ୍ତ କହି ଗୃହରୁ ଗଲା ସେହି ପୁତ୍ର ।
ଶତ ବରଷ ତପସ୍ୟା କଲା ଘୋରବନେ
ତପସିଦ୍ଧହୋଇ ଆସେ ମାତା ସନ୍ନିଧାନେ ।
ପୁତ୍ରମୁଖ ଦେଖି ଦିତି ଆନନ୍ଦ ମନରେ
ବୋଇଲାରେ ବାବୁ ଅଛି ମୁଁ ଅତି କଷ୍ଟରେ ।
ହିରଣ୍ୟ କଶିପୁ ଆଦି ତୋର ବଡ଼ଭାଇ
ବଳବନ୍ତ ପଣେ ତାଙ୍କୁ ସରି କେହି ନାହିଁ ।
ଇନ୍ଦ୍ରପଦ ବଳ ଘେନି ଥିଲା ସେ କୁମର
ସ୍ୱର୍ଗଛାଡ଼ି ପଳାଇଲେ ସକଳ ଅମର ।
ବିଷ୍ଣୁଙ୍କ ଛାମୁରେ ଯାଇ ଦୁଃଖ ଜଣାଇଲେ
ଚକ୍ରପାଣି ଚକ୍ରକରି ପୁତ୍ରଙ୍କୁ ମାଇଲେ ।
ତୋ ମୁଖଦେଖି ସେ ଦୁଃଖ ଦୂରହେଲା ମୋର
ସ୍ୱର୍ଗସୁଖ ଭୋଗକରେ ଅଦିତି କୁମର ।
ଭ୍ରାତୃ ବଇରି ଶୋଧନ କରିପାରୁ ଯେବେ
ମୋ ମନରୁ ସବୁ କଷ୍ଟ ଯିବସିନା ତେବେ ।
ତପ ବଳ ବିନା ବାବୁ ନପାରିବୁ ମାରି
ପୁଣ୍ୟବଳେ ପାଇ ସିନା ସ୍ୱର୍ଗପୁର ଶିରୀ ।
ଦନୁ ବୋଇଲାରେ ପୁତ୍ର କର ଯାଇ ତପ
ଦେବଙ୍କୁ ଜିଣି ଆମ୍ଭର ଦୁଃଖ ହର ବାପ ।
ସ୍ୱର୍ଗପୁର ଘେନି ପଛେ ବିଷ୍ଣୁଙ୍କୁ ସଂହାର
ଯେତେ ଶୀଘ୍ରବାରୁ ବାବୁ ତପଯାଇଁ କର ।
ଅଦିତି ଦେବୀ ଏସବୁ କଥାଯାକ ଶୁଣି
କାନ୍ଦି କାନ୍ଦି ଗଲେ ଯହିଁ ବିଜେ ବଜ୍ରପାଣି ।
ବୋଇଲେ କୁମରମଣି ରଖ ତୋ ଜୀବନ
ତୋପାଇଁ ବାବୁରେ ବଳଗଲା ଘୋରବନ ।
ଦିତି ଦନୁ ବଚନରେ କରିବ ସେ ତପ
ତପବଳେ ନେବ ତୋର ଇନ୍ଦ୍ରପଦ ବାପ ।
ଯେମନ୍ତେ ତୋର ମଙ୍ଗଳ ହେବ ତାହା କର
ମାତାର ବଚନ ଶୁଣି ଦେବ ପୁରନ୍ଦର ।
ଏ ଧର୍ମ ଦେବଦ୍ୱେଷୀକି ମାରିବି କେମନ୍ତେ
ନାନାଦି ଉପାୟ ଚିନ୍ତା କରଇ ଚକିତେ ।

ଦିନେ ସେ ଇନ୍ଦ୍ର ଦେଖିଲା ସିନ୍ଧୁନଦୀ ତୀରେ
ଆଶ୍ରମ ଥାପି ତପସ୍ୟା ବଳ ତହିଁ କରେ ।
ସନ୍ଧ୍ୟା ଉପାସନା କରେ ସେ ଦିତୀ ନନ୍ଦନ
ବିରାଜଇ ଦଣ୍ଡ କୃଷ୍ଣ ଅଜିନ କୌପୀନ ।
ସନ୍ଧ୍ୟା ଉପାସନାକରେ ଆସନରେ ବସି
ଗାୟତ୍ରୀ ଦେବୀ ଚରଣେ ଚିତ୍ତକୁ ନିବେଶି ।
ଏହି ଅବସରେ ବଜ୍ର ପ୍ରହାରିଲେ ଶିରେ
ପ୍ରାଣହାରି ବଳ ଢଳି ପଡ଼ିଲା ମହୀରେ ।
ଆନନ୍ଦେ ବାସବ ତହୁଁ ଫେରିଲେ ଗୃହକୁ
ସବୁ ବିସ୍ତାରି କହିଲେ ଆସିଣ ମାତାଙ୍କୁ ।
ସୁଖେ ସ୍ୱର୍ଗସୁଖ ଭୋଗକଲେ ପୁରନ୍ଦର
ଦ୍ୱିଜ ଗୋପୀନାଥ ଭଜେ ଅଚ୍ୟୁତ ପୟର ।
ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବଳଦୈତ୍ୟ
ବଧୋ ନାମ ତ୍ରୟବିଂଶୋଽଧ୍ୟାୟଃ ।



## ଚତୁର୍ବିଂଶ ଅଧ୍ୟାୟ

### କ୍ରୋଧେ କଶ୍ୟପଙ୍କର ଅଗ୍ନିକୁଣ୍ଡେ ଜଟା ନିକ୍ଷେପ ଓ ବୃତ୍ରାସୁରୋତ୍ପତ୍ତି

ସୁତମୁନି କହିଲେ ଯେ ଏଥୁ ଅନନ୍ତରେ
ପୁତ୍ରମଲା ବାର୍ତ୍ତାଶୁଣି ଦିତୀ ଶୋକଭରେ ।
କଶ୍ୟପମୁନିଙ୍କ ଆଗେ କହିଲେ ଭୋ ନାଥ
ମୋ ପୁତ୍ର ବଳକୁ ବଧ କଲା ଶଚୀକାନ୍ତ ।
ସିନ୍ଧୁତୀରେ ବସି ସନ୍ଧ୍ୟା କରୁଥିଲା ବଳ
ବଜ୍ରଶିରେ ପ୍ରହାରିଲା ଦେଖ ଆଖଣ୍ଡଳ ।
କେମନ୍ତେ ଏହି ଅନୀତି ସହିଛି ତାହାକୁ
ଏରୂପେ ମାଇଲା ଇନ୍ଦ୍ର ମୋ ସବୁ ପୁତ୍ରଙ୍କୁ ।
ମରୀଚି ଋଷିର ପୁତ୍ର କଶ୍ୟପ ତା ଶୁଣି
କ୍ରୋଧେ ପ୍ରଜ୍ୱଳିତ ଅଗ୍ନିତୁଲ୍ୟ ହେଲେ ମୁନି ।
ମୁଣ୍ଡରୁ ଜଟା ଗୋଟିଏ ଛିଣ୍ଡାଇଲେ ରୋଷେ
ଅଗ୍ନିକୁଣ୍ଡେ ପକାଇଲେ ଇନ୍ଦ୍ରର ଉଦ୍ଦେଶ୍ୟେ ।
ବୋଇଲେ ଇନ୍ଦ୍ର ବିଜୟୀ ପୁତ୍ର ହେଉ ଜାତ
ତକ୍ଷଣେ ଅନଳକୁଣ୍ଡୁ ଉପୁଜିଲା ପୁତ୍ର ।
ପିଙ୍ଗଳଚକ୍ଷୁ ତାହାର ମହାଭୟଙ୍କର
ଅଞ୍ଜନ ପର୍ବତ ପ୍ରାୟ ରୂପ ତା ଆକାର ।

ଦନ୍ତ କରାଳ ବଦନ ଦିଶେ ବିକରାଳ
ତେଜରେ ନିନ୍ଦା କରଇ ଆଦିତ୍ୟମଣ୍ଡଳ ।
ହସ୍ତେ ଶୋହେ ଖଡ୍‌ଗଚର୍ମ ବଳବନ୍ତ ଅତି
କଶ୍ୟପଋଷିଙ୍କ ପାଦେ କରିଣ ପ୍ରଣତି ।
ବୋଇଲା କି କରିବି ତା ଆଜ୍ଞାଦିଅ ତାତ
କି ନିମନ୍ତେ ମୋତେ ପିତାକଲ ତୁମ୍ଭେ ଜାତ ।
ଅସାଧ୍ୟ ହେଲେ ହେଁ ସାଧ କରିବି ମୋ ପଣ
କଶ୍ୟପବୋଇଲେ ପୁତ୍ର ମୋ ବଚନ ଶୁଣ ।
ଏ ଦିତି ତୋହର ମାତା ଅଟଇରେ ଜାଣ
ଏହାଠାରେ ଭକ୍ତିକରି ହୁଅ ସୁନନ୍ଦନ ।
ମନକାମନା ପୂରଣ କରିବୁ ଏହାର
ଦୁରାତ୍ମା ଇନ୍ଦ୍ର ଅଟଇ ଅଦିତି କୁମର ।
ତାକୁ ମାରି ଇନ୍ଦ୍ରପଦ ବଳେ ତୁରେ ଘେନ
ଆଜୁଁ ତୋର ନାମ ବୃତ୍ର ହେଲାରେ ନନ୍ଦନ ।
କଶ୍ୟପମୁଖୁଁ ଏମନ୍ତ ଶୁଣି ବୃତ୍ରାସୁର
ଧନୁର୍ବେଦ ପଢ଼ାକଲା ହେଲା ମହାବୀର ।
ବୃତ୍ରାସୁର ବଳବୀର୍ଯ୍ୟ ତେଜ ଦେଖିକରି
ମନରେ ଭାଳି ଉପାୟ କଲା ବଜ୍ରଧାରୀ ।
ସପତ ଋଷିଙ୍କି ଡାକି କହିଲା ଏମନ୍ତ
ଦୈତ୍ୟପତି ବୃତ୍ରାସୁର ଅଟେ ବଳବନ୍ତ ।
ସନ୍ଧି କରାଇଣ ଦିଅ ତାହାର ମୋହର
ସ୍ୱର୍ଗ ସମ୍ପଦରୁ ଅଧେ ନେଉ ବୃତ୍ରାସୁର ।
ଦୁଇଭାଇ ମିଳି ସୁଖେ ସ୍ୱର୍ଗକୁ ପାଳିବା
ଅକାରଣେ ଯୁଦ୍ଧ ଆମ୍ଭେ କିପାଇଁ କରିବା ।
ଏରୂପେ କହିଣ ଇନ୍ଦ୍ର ପଠାଇଲା ତାଙ୍କୁ
ସପ୍ତର୍ଷି ଏସବୁ କଥା କହିଲେ ବୃତ୍ରକୁ ।
ଆମ୍ଭଙ୍କୁ ଇନ୍ଦ୍ର ପଠାଇ ଅଛି ଦୈତ୍ୟେଶ୍ୱର
ଅଧେ ରାଜ୍ୟନେଇ ତାର ସଙ୍ଗେ ପ୍ରୀତିକର ।
ସୁରଙ୍କର ଅଧେ ବାବୁ ଅସୁରଙ୍କ ଅଧେ
ମିଳିମିଶି ଭୋଗକର ଦାନବେ ବିବୁଧେ ।
ବୃତ୍ର ବୋଇଲା ଭୋ ମୁନି ଆମ୍ଭେ ତା କରିବା
ବଡ଼ କପଟୀ ଅଟଇ ସେ ଦୁଷ୍ଟ ମଘବା ।
ସନ୍ଧିକରି ଦ୍ରୋହ ଯେବେ ପଛେ ସେ ପାଅଇ
ତହିଁରେ କେହ୍ନେ ଆମ୍ଭର ପ୍ରତେ ଉପୁଜଇ ।
ଋଷିଏ ଆସି ସେ କଥା ଇନ୍ଦ୍ରକୁ କହିଲେ
ସପତଋଷିଙ୍କି ତାହିଁ ବାସବ ବୋଇଲେ ।

ତୁମ୍ଭ ସପକ୍ଷରେ ମୁହିଁ କରୁଛି ଶପଥ
ସତ୍ୟକରି ଯେବେ ପୁଣି ହୁଅଇ ଅସତ୍ୟ ।
ବ୍ରହ୍ମହତ୍ୟା ପାପ ମୋତେ ଲାଗିବ ନିଶ୍ଚୟେ
ଅସତକଥା ନକହେ କେଭେ ଦେବରାୟେ ।
ଇନ୍ଦ୍ରମୁଖୁଁ ଏହା ଶୁଣି ସପ୍ତର୍ଷି ଅଇଲେ
ବୃତ୍ର ଆଗରେ ସକଳ ବୁଝାଇ କହିଲେ ।
ତହିଁରେ ସମ୍ମତି କଲା ବୀର ବୃତ୍ରାସୁର
ଋଷିଏ ବୃତ୍ରକୁ ଘେନିଗଲେ ସ୍ୱର୍ଗପୁର ।
ଇନ୍ଦ୍ର ଆସନରୁ ଉଠି ବୃତ୍ର ହାତ ଧରି
ଆପଣାପାଖେ ବସାଇ ସମାଦର କରି ।
ଅର୍ଘ୍ୟଦେଇ ସିଂହାସନେ ବସାଇ ବୋଇଲା
ଆଜିଠାରୁ ଅଧେରାଜ୍ୟ ତୋହର ହୋଇଲା ।
ଭାଇରେ ଭାଇରେ କିମ୍ପା ଲଗାଇବା କଳି
ସ୍ୱର୍ଗସୁଖ ଭୋଗ ଆମ୍ଭେ କରିବା ନା ମିଳି ।
ଏମନ୍ତେ ପୀରତି କଲା ବିଶ୍ୱାସ ଦେଖାଇ
ଆପଣା ଆପଣା ସ୍ଥାନେ ଗଲେ ବେନିଭାଇ ।
ଦୁଷ୍ଟପଣେ ବୃତ୍ର ଛିଦ୍ର ଖୋଜେ ସୁନାସୀର
ସର୍ବଦା ସତର୍କେ ଥାଏ ସେ ବୃତ୍ର ଅସୁର ।
ଛିଦ୍ର ନପାଇ ବାସବ ମହାଚିନ୍ତା ପାଇ
ଦିନେ ସେ ଇନ୍ଦ୍ର ରମ୍ଭାକୁ ଦେଲାକ ପଠାଇ ।
ବୋଇଲା ତୁଯାଇ ତୋର ଯେ କିଛି ଉପାୟେ
ମୋହିତ କରଗୋ ଯାଇଁ ବୃତ୍ରଦୈତ୍ୟରାୟେ ।
ଯେଣେ କି ତାକୁ ମୁଁ କରିପାରିବି ନିଧନ
ସେ ମଲେ ସୁଖେ ରହିବ ଏ ସ୍ୱର୍ଗ ଭୁବନ ।
ସେ ଚାରୁ ହାସିନୀ ରମ୍ଭା ଇନ୍ଦ୍ର ଆଜ୍ଞାପାଇ
ନନ୍ଦନକାନନେ ଗଲା ବେଶଭୁଷା ହୋଇ ।
ପବିତ୍ର ବୃକ୍ଷେ ଶୋଭିତ ସେ ନନ୍ଦନ ବନ
ଫୁଲ ଫଳେ ହୋଇଛନ୍ତି ତରୁଏ ମଣ୍ଡନ ।
ମୃଗ ପକ୍ଷୀରେ ଦିଶୁଛି ଅପୂର୍ବ ସୁନ୍ଦର
ସର୍ବତ୍ର ଅତି ସୁନ୍ଦର ବିମାନ ମନ୍ଦିର ।
ଗନ୍ଧର୍ବେ ମିଳି ସଙ୍ଗୀତ ଗାଉଛନ୍ତି କାହିଁ
ଭ୍ରମରଙ୍କ ଗୁଣୁ ଗୁଣୁ ଗାନ ଶୁଭେ ତହିଁ ।
କୋକିଳ ମଧୁର ଧ୍ୱନି ଜନ ମନୋହର
କାହିଁ ଶାରଙ୍ଗ ନାଦରେ ପ୍ରମତ୍ତ ମୟୁର ।
ସବୁ ଦିଗରେ ଚନ୍ଦନବନ ବିରାଜଇ
ଜଳପୂର୍ଣ୍ଣ ବାପୀ କୂପ ତଡ଼ାଗ ଅଛଇ ।

ଶତଦଳ କମଳରେ ଶୋଭା ସରୋବର
ଅଛନ୍ତି ଗନ୍ଧର୍ବ ସିଦ୍ଧ ଚାରଣ କିନ୍ନର ।
ମୁନିଗଣେ ଶୋଭାପାଉଛନ୍ତି ସ୍ଥାନେ ସ୍ଥାନେ
କେଳି କଉତୁକେ ମତ୍ତ ଅପସରା ଗଣେ ।
କାହିଁ ଦଣ୍ଡ ଛତ୍ର ଧ୍ୱଜ କଳଶ ଚାମର
କାହିଁ ସୁବର୍ଣ୍ଣ ପ୍ରାସାଦ ଜ୍ୟୋତିର ପ୍ରଖର ।
କାହିଁ ବେଦଧ୍ୱନି କାହିଁ ହୁଏ ଗୀତଧ୍ୱନି
ଏରୂପେ ନନ୍ଦନ ବନେ ରମ୍ଭା ବିଳାସିନୀ ।
ଅପସରାଙ୍କ ସଙ୍ଗତେ ଯାଏ ଖେଳି ଖେଳି
ସୂତ କହନ୍ତି ଶୁଣନ୍ତି ଋଷିଗଣ ମିଳି ।
ଦିନେ ବୃତ୍ରାସୁର ଘେନି ସଙ୍ଗେ ଦାନବଙ୍କୁ
କାଳଯମ ଆକର୍ଷଣ କରିବାରୁ ତାକୁ ।
ଆନନ୍ଦମନେ ନନ୍ଦନ ବନକୁ ଯେ ଗଲା
ଗୋପନେ ତା ପାଖେ ପାଖେ ବାସବ ରହିଲା ।
ସବୁବେଳେ ଶତ୍ରୁଛିଦ୍ର ସେହି ଖୋଜୁଥାଇ
ସବୁ କାର୍ଯ୍ୟରେ ବିଶ୍ୱାସ କରେ ଦୈତ୍ୟସାଇଁ ।
ଇନ୍ଦ୍ରକୁ ପରମ ମିତ୍ର ଜାଣି ବୃତ୍ରାସୁର
ତେଣୁ ତାହାର ଚିତ୍ତରେ ନାହିଁ କିଛି ଡ଼ର ।
ଏରୂପେ ବୃତ୍ର ନିର୍ଭୟେ ବନରେ ଭ୍ରମଇଁ
ଯାଉଁ ଯାଉଁ ସେ ବନିତାଗଣଙ୍କୁ ଦେଖଇ ।
ସୁରମ୍ୟ ଅତି ସୁନ୍ଦର କଉତୁକ ବନ
ଚନ୍ଦନ ବୃକ୍ଷର ଛାଇ ଶୀତଳ ଯେ ଘେନ ।
ବିଶାଳାକ୍ଷୀ ରମ୍ଭା କ୍ରୀଡ଼ା କରୁଛି ତା ତଳେ
ଦୋଳି ଉପରେ ବସିଛି ସହଚରୀ ମେଳେ ।
ଗୀତ ଗାଉଅଛି ଦୋଳି ଖେଳୁଛି ତରୁଣୀ
ବିଶ୍ୱମୋହନ ମଧୁରସ୍ୱର ପିକ ଜିଣି ।
ଦେଖି କାମରେ ପୀଡ଼ିତ ହୋଇ ବୃତାସୁର
ଦୀନ ଗୋପୀଡ଼ାଥ ଭଜେ ଅଚ୍ୟୁତ ପୟର ।

ଇତି ଶ୍ରୀପଦ୍ମପୁରାଣେ ଭୂମିଖଣ୍ଡେ
ବୃତ୍ରବଞ୍ଚନଂ ନାମ ଚତୁର୍ବିଂଶୋଽଧ୍ୟାୟଃ ।

## ପଞ୍ଚବିଂଶ ଅଧ୍ୟାୟ

### ରମ୍ଭାସକ୍ତ ବୃତ୍ରାସୁରର ମଧୁପାନ ଓ ଇନ୍ଦ୍ରହସ୍ତେ ବୃତ୍ରବଧ

ସୁତ ମୁନି କହିଲେ ଯେ ଶୁଣ ଏଥୁଅନ୍ତେ
ବୃତ୍ର ଅସୁର ଭାଳଇ ଆପଣାର ଚିତ୍ତେ ।
ଏ ଚାରୁ ଲୋଚନା ମନୋହାରିଣୀ କାହାର
କି ମଧୁର ଗୀତଗାଏ ସ୍ୱର କି ସୁନ୍ଦର ।
ବିଳାସ ବିଭବେ ମୋହି ପାରଇ ଜଗତ
ଶୋଭାରେ ମୋହି ପାରଇ ପୁରୁଷର ଚିତ୍ତ ।
ପଦ୍ମ ଆୟତ ଲୋଚନା ଏହି ପୀନସ୍ତନା
କୁଙ୍କୁମଲଗାଙ୍ଗୀ ସଜ ସରୋଜ ବଦନା ।
ହାବ ଭାବ କାମକଳା ଶିଳାଏ ଚତୁରୀ
ପରମ ରୂପବତୀଏ ଅପୂର୍ବ ସୁନ୍ଦରୀ ।
ଏରୂପେ ମନରେ ଭାଳୁ ଭାଳୁ ଦୈତ୍ୟପତି
କାମେ ମୋହିତ ପୀଡ଼ିତ ହେବାରୁ ସେ ଅତି
ପୁଣି ମନରେ ଭାଳଇ ଏ କାମ ମନ୍ଦିର
ମନମଥ ପତ୍ନୀ ରତି ଏ ଯୁବତୀ ସାର ।
ମୋ ମନୋହାରିଣୀ ନିଶ୍ଚେ ଏ ସୁନ୍ଦର ନାରୀ
ନିଶ୍ଚେ ଏହା ବଶ ହେବି କାମେହୋଇଘାରି ।
ଏରୂପେ ବହୁତ ଭାଳି ଭାଳି ସେ ଅସୁର
ରମ୍ଭାର ପାଖକୁ ଗଲା ହୋଇଣ କାତର ।
ମଧୁର କୋମଳ ସ୍ୱରେ କହିଲା ସୁନ୍ଦରୀ
କିଏ ତୋତେ ପଠାଇଛି କାହାର ତୁ ନାରୀ ।
ତୋରପୁଣ୍ୟବଳ କେତେକହ ତାହାମୋତେ
ତୋରୂପ ଲାବଣ୍ୟ ଦେଖିନାହିଁ ତ୍ରିଜଗତେ ।
ଯେଣୁ ମୋହର ଚିତ୍ତକୁ କରଇ ହରଣ
ତୁ ନାରୀ ହୁଅନ୍ତୁ ମୋର ଗୃହକୁ ଭୂଷଣ ।
ବୃତ୍ର ଏକଥା କହନ୍ତେ ହୋଇ କାମାତୁର
ବିଶାଳନୟନା ରମ୍ଭା ଦେଲା ପ୍ରତ୍ୟୁତ୍ତର ।
ଆହେ ମହାରାଜ ମୁହଁ ରମ୍ଭା ଅପସରୀ
ଖେଳିବାପାଇଁ ଆସିଛି ଘେନି ସହଚରୀ ।
ପରମ ସୁନ୍ଦର ଏହି ନନ୍ଦନ କାନନ
ତୁମ୍ଭେ କିଏ କି ନିମନ୍ତେ ଆସିଲ ଏ ବନ ।

ବୃତ୍ର ବୋଇଲାଗୋ ବାଳେ କହୁଛି ତା ଶୁଣ
ଅଗ୍ନିରୁ ଜାତ ମୋ ପିତା କଶ୍ୟପଯେ ଜାଣ ।
ଇନ୍ଦ୍ରର ମଇତ୍ର ମୁହିଁ ଜାଣ ବରାନନେ
ସ୍ୱର୍ଗ ସୁଖ ଭୋଗକରେ ବସି ଅର୍ଦ୍ଧାସନେ ।
ମୁଁ ଜାଣେ ବିଖ୍ୟାତଲୋକ ବୃତ୍ର ନାମ ମୋର
ତୁ ମୋତେ ଚିହ୍ନି ନପାରୁ ଏ ତ ଚମତ୍କାର ।
ତିନି ଭୁବନ ମୋହର ବଶେ ଏହିକ୍ଷଣି
ମୁହିଁ ତୋ ବଶେ ରହିଲି ଗୋ ବରବର୍ଣ୍ଣିନୀ ।
କାମବାଣୁ ରଖ ମୋତେ ମୁଁ ତୋର ଶରଣ
ରମ୍ଭା ଅପସରା ବୋଲେ ଶୁଣ ଦୈତ୍ୟରାଣ ।
ଆଜହୁଁ ନିଶ୍ଚେ ରହିବି ମୁହିଁ ତୁମ୍ଭ ବଶେ
ଆଉ ଏକ ନିବେଦନ ଅଛି ତବ ପାଶେ ।
ମୁଁ ଯାହା କହିବି ତାହା ନକରିବ ଆନ
ଏହି ସତ୍ୟପାଶେ ରାୟେ ରହିବ ବନ୍ଧନ ।
ବୃତ୍ରକହିଲାଗୋ ବାଳେ ଏ ସତ୍ୟ ମୋହର
ତୋ ବଚନ ମୋର ଶିରୋଧାର୍ଯ୍ୟ ରାମାବର ।
ଏମନ୍ତେ ସମ୍ବନ୍ଧ ଥାପି ରମ୍ଭା ବୃତ୍ର ବେନି
କ୍ରୀଡ଼ାରେ ହରିଲେ ତହିଁ ଦିବସ ରଜନୀ ।
କାମିନୀ ଲଳିତ ଗୀତ ନୃତ୍ୟ ହାସ୍ୟ ରତେ
ଯାମୀନୀ ହରଇ ସୁଖେ ଦାନବ ନିରତେ ।
ଦିନେ ସେ ରମ୍ଭା ଦାନବରାଜକୁ କହିଲା
ସବୁହେଲା ଏକା ସୁରାପାନ ଯେ ରହିଲା ।
ମଧୁ ମାଧବୀ ଯେ ମଦ ସମ୍ଭୋଗର ହେତୁ
କହିଛନ୍ତି କାମଶାସ୍ତ୍ରେ କାମୁକ ଯେ କ୍ରତୁ ।
ସୁରାପାନ କର ନାଥ ନକର ବିଳମ୍ବ
ଏମନ୍ତ ଶୁଣି ରମ୍ଭାକୁ କହିଲା ଦାନବ ।
ବ୍ରାହ୍ମଣର ପୁତ୍ର ପୁଣି ବିପ୍ର ମନ୍ତ୍ର ବଳେ
ଅନଳରୁ ଉପୁଜିଲି ବଢ଼ି ଦ୍ୱିଜକୁଳେ ।
ବେଦ ବେଦାଙ୍ଗ ଆଦି ମୁଁ ସକଳ ପଢ଼ିଲି
ବଳବନ୍ତ ପଣେ ସ୍ୱର୍ଗୁ ଅଧେଭାଗ ନେଲି ।
ଏ ନିନ୍ଦିତ କାର୍ଯ୍ୟ ମୁହିଁ କରିବି କେମନ୍ତେ
ସତ୍ୟପାଶେ ବାନ୍ଧିଛି ଏ ନାରୀ ପୂର୍ବୁମୋତେ ।
ସତ୍ୟ ଭଗ୍ନ ପାପେ ନର୍କଭୋଗ ମୋ ନିଶ୍ଚୟ
ଏମନ୍ତେ ବସି ଭାବନା କରେ ଦୈତ୍ୟରାୟ ।
ଅଳପ ଅଳପ ହସି ରମ୍ଭା ଅପସରୀ
ଦାନବକୁ ମୋହିଲାଯେ ନେତ୍ରକୋଣେ ଠାରି ।

ସୁରାପାତ୍ର ନେଇ ଦେଲା ଦାନବର ହସ୍ତେ
ଦାନବ ରହିଛି ରମ୍ଭା ପ୍ରେମର ଆୟତ୍ତେ ।
ମଦଖାଇ ମତ୍ତହୋଇ ହରାଇଲା ଜ୍ଞାନ
ଲୁଚି ରହିଛି ଦେଖୁଥିଲା ସହସ୍ର ଲୋଚନ ।
ଶିରେ ବଜ୍ର ପ୍ରହାରିଲା ମଲା ସେ ଦଇତ
ବ୍ରହ୍ମହତ୍ୟା ପାପେ ଲିପ୍ତ ହେଲା ପୁରୁହୂତ ।
ତକ୍ଷଣେ କଳା ଦିଶିଲା ତାହାର ଶରୀର
ବିପ୍ରେ ଆସି ବୋଇଲେରେ ଶୁଣ ପୁରନ୍ଦର ।
ବ୍ରହ୍ମହତ୍ୟା ମହାପାପ କଲୁଁ ଆଜୁଁ ତୋତେ
ଛୁଇଁ ନ ଯୋଗାଇ ଯାଇଁ ରହ ତୁ ଏକାନ୍ତେ ।
ବିଶ୍ୱାସଘାତକା ତୋର ବଦନ ନ ଚାହିଁ
ଇନ୍ଦ୍ରବୋଇଲେ ଏରୂପେ ନୀତିଶାସ୍ତ୍ରେ କହି ।
ଯେ କଉଣସି ଉପାୟେ ଶତ୍ରୁ ସଂହାରିବ
ତହିଁରେ ତାହାର କିଛି ପାପ ନ ଲାଗିବ ।
ଦେବ ଦ୍ୱିଜ ଯଜ୍ଞ ଧର୍ମ କଣ୍ଟକ ଅସୁର
ତ୍ରିଭୁବନ ବିନାଶନ ଦୁଷ୍ଟ ଦୁରାଚାର ।
ସେ ମରନ୍ତେ ତୁମ୍ଭେମାନେ କିମ୍ପାକରି କୋପ
ବୋଲୁଛ ଲାଗିଲା ତୋତେ ବ୍ରହ୍ମହତ୍ୟା ପାପ ।
ବିଚାର କରନ୍ତୁ ଆଗେ ପଛେ ଦେବ ଦୋଷ
ଏଥିରେ ମୋର ଅନ୍ୟାୟନାହିଁ ପୁଣି ଲେଶ ।
ଏହାଶୁଣି ବ୍ରହ୍ମା ଆଦି ଦେବଗଣ ତୋଷେ
ଯେଝାସ୍ଥାନେଗଲେ ଦ୍ୱିଜ ଗୋପୀନାଥଭାଷେ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ
ବୃତ୍ରାସୁର ବଧୋ ନାମ
ପଞ୍ଚବିଂଶୋଽଧ୍ୟାୟଃ ।



## ଷଡ୍‌ବିଂଶ ଅଧ୍ୟାୟ

### କଶ୍ୟପ ସହିତ ଦିତିର ମେରୁ ପର୍ବତେ ତପସ୍ୟାରମ୍ଭ

କହିଲେ ଯେ ସୂତମୁନି ଶୁଣ ଦ୍ୱିଜଗଣେ
ପୁତ୍ର ନିଧନ ବାରତା ଶୁଣିଣ ଶ୍ରବଣେ ।
ପୁତ୍ରଶୋକେ ଅତି ଦୁଃଖ ସନ୍ତାପିତ ଦିତୀ
କଶ୍ୟପଙ୍କୁ ଚାହିଁବୋଲେ ହେ ଜୀବନପତି ।
ତୁମ୍ଭେ ଦ୍ୱିଜବର ମୋର ପ୍ରଭୁ ପୁଣି କାନ୍ତ
ମୋତେ ଅପୁତ୍ରିକୀ କଲା ଅଦିତିର ପୁତ୍ର ।
ତୁମ୍ଭ ଦତ୍ତ ବଳ ବୃତ୍ର ପୁତ୍ରକୁ ମାଇଲା
ତୁମ୍ଭ ଉପରୋଧକୁ ସେ ଇନ୍ଦ୍ର ନ ଚାହିଁଲା ।
ସେ ଦୁରାତ୍ମା ଦୁଷ୍ଟ ଇନ୍ଦ୍ର ବଧର ନିମନ୍ତେ
ଆଉ ଏକ ପୁତ୍ର ଦାନକରେ ନାଥ ମୋତେ ।
କଶ୍ୟପ ଋଷିବୋଇଲେ ଆଗୋ ଯଶସ୍ୱିନି
ଦୁରାତ୍ମା ଇନ୍ଦ୍ର ମାଇଲା ମୋର ପୁତ୍ର ବେନି ।
ମହାବଳ ବଳ ବୃତ୍ର ମାଇଲା କପଟେ
ଏଣୁ ସତ୍ୟ କରୁଅଛି ମୁଁ ତୋର ନିକଟେ ।
ଇନ୍ଦ୍ରହୁଁ ଅଧିକ ଏକ ପୁତ୍ର ମୁଁ ଦେବଇଁ
ମାରି ନପାରିବ ତାକୁ କେଭେ ଶଚୀସାଇଁ ।
ମାଇଲେ ସେ ନ ମରିବ ଏ ମୋହର ପଣ
ଜଗତ ଜନର ସେହି ହୋଇବ ପରାଣ ।
ତୁମ୍ଭେ ଯେ ଶଏବରଷ ରହି ଶୁଚି ହୋଇ
ଦିତି ଶିରେ ସେ ଯୋଗୀନ୍ଦ୍ର ମୁନି ହାତଦେଇ ।
ତପ ନିମନ୍ତେ ଚଳିଲେ ମେରୁ ତପୋବନେ
ଦିତିଦେବୀ ତପକଲେ ରହି ଶୁଦ୍ଧ ମନେ ।
ସହସ୍ର ଲୋଚନ ଜାଣି ଦିତିର ଉଦ୍ୟମ
କୂଟେବିପ୍ର ହୋଇଲାସେ ଦିଶେ ଦେବୋପମ ।
ପଚିଶ ବରଷ ଦ୍ୱିଜ ତନୟ ସୁନ୍ଦର
ତପସ୍ୱିନୀ ଦିତିପାଦେ କଲା ନମସ୍କାର ।
କିଏ ତୁହି ଦ୍ୱିଜପୁତ୍ର କାହାର କୁମର
ଇନ୍ଦ୍ର ବୋଇଲେ ମୁଁ ମାତ କୁମର ତୋହର ।
ଚାରିବେଦ ଧର୍ମ କର୍ମ ତତ୍ତ୍ୱ ମୁଁ ଜାଣଇ
ତୋର ତପରେ ସାହାଯ୍ୟ କରିବି ମୁଁ ଥାଇ ।
ଏହାକହି ଦିତି ସେବାକଲେ ପୁରନ୍ଦର
ଦିତି ଜାଣି ନପାରିଲେ କପଟ ତାହାର ।
ସେବାକାରୀ ଧର୍ମପୁତ୍ର ବୋଲି ମନେ କଲେ
ଏଣୁ ସେ ଦିତି ତାହାଙ୍କୁ ପାଖରେ ରଖିଲେ ।
ଇନ୍ଦ୍ର ନିତି ଘଷିମୋଡ଼ି ଦିଅଇ ତାହାଙ୍କୁ
ପାଦ ଧୋଇଦେଇ ଜଳ କ୍ଷେପଇ ଗର୍ଭକୁ ।
ଯୋଗାଇ ଦିଅନ୍ତି ନିତି ପତ୍ର ଫଳ ମୂଳ
ଫୁଲ ଚନ୍ଦନ ଆବର ଅଜିନ ବକଳ ।
ଏରୂପେ ଭକତିକରି ପ୍ରୀତି ଉପୁଜାଇ
ସନ୍ତୋଷେ ଦିତି ତାହାକୁ ଏମନ୍ତ ବୁଝାଇ ।
ବଳମନ୍ତ ପୁଣ୍ୟବନ୍ତ ପୁତ୍ର ହେଲେ ମୋର
ଇନ୍ଦ୍ରକୁ ମାରି ଛଡ଼ାଇନେବ ସ୍ୱର୍ଗପୁର ।

ଦେବରାଜ୍ୟ ଭୋଗିବୁ ତୁ ପୁତ୍ରସଙ୍ଗେ ରହି
କପଟବେଶୀ ବାସବ ହେଉ ବୋଲି କହି ।
ତୋରପୁତ୍ର ହେବ ମାତ ମୁଁ ତାହା ପ୍ରସାଦେ
ସ୍ୱର୍ଗ ସମ୍ପଦ ପାଇବି ସିନା ଅପ୍ରମାଦେ ।
ଏରୂପେ ବରଷ ଅଠାନବେ ବହିଗଲା
ଅନେଶ୍ୱତ ବରଷ ଯେ ଆସି ପ୍ରବେଶିଲା ।
ଦିତିଛିଦ୍ର ଖୋଜୁଥାଇ ଇନ୍ଦ୍ର ଦିନରାତି
ଦେଖିଲା ଦିନେ ଯେ ପାଦ ନଧୋଇ ସେ ଦିତି ।
ନିଦ୍ରା ଘାରିବାରୁ ଯାଇ ଶେଯରେ ଶୋଇଲା
ବିଭଳେ ଶୋଇଛି କେଶ ପାଶ ଯେ ମୁକୁଳା ।
ଏ ଅଶୁଚି କର୍ମ ଛିଦ୍ରପାଇ ଶଚୀସାଇଁ
ଶତ୍ରୁକୁ ମାରିବା ଯୋଗ ଘଟାଇଲା ବିହି ।
ପଶିଲେ ପ୍ରସବ ଦ୍ୱାରେ କରେ ବଜ୍ରଧରି
ଗର୍ଭରେ ଥିବା ଶିଶୁକୁ ସାତଖଣ୍ଡ କରି ।
ଉଚ୍ଚେ କାନ୍ଦିଲା ସେ ଶିଶୁ ଗର୍ଭମଧ୍ୟେ ଥାଇ
କାନ୍ଦନା କାନ୍ଦନା ବୋଲି କହେ ଶଚୀସାଇଁ ।
ଖଣ୍ଡକୁ ଯେ ସାତଖଣ୍ଡ ବଜ୍ରେ ପୁଣି କଲେ
ସେ ଶିଶୁ କେଭେ ନମଲା କଶ୍ୟପଙ୍କବୋଲେ ।
ଯେଉଁ ଯେଉଁ ନାମଧରି ବାସବ ଡାକିଲେ
ରହିଲା ତାଙ୍କର ସେହି ନାମ କାଳେ କାଳେ ।
ଅଣଞ୍ଚାଶ ମରୁତ ସେ ଗର୍ଭୁହେଲେ ଜାତ
ଜନମ ମାତ୍ରେ ସେ ହେଲେ ଅତି ବଳବନ୍ତ ।
ମହାବୀର୍ଯ୍ୟ ମହାକାୟ ମହା ପରାକ୍ରମୀ
ତାଙ୍କପରି ନପାରିଲେ ତ୍ରିପୁରେ କେ ଗମି ।
ଇନ୍ଦ୍ର ଆଶ୍ରାରେ ରହିଲେ ସେ ମରୁତ ଗଣ
ପ୍ରଜାପତି ଦେଲେ ତାଙ୍କୁ ସବୁରି ସଦନ ।
ପାର୍ଥିବ ଆଦି ସମସ୍ତ ରାଜ୍ୟ ଦେଲେ ତାଙ୍କୁ
ପ୍ରାଣରୂପେ ଆଶ୍ରାକଲେ ସେ ସବୁ ଜୀବଙ୍କୁ ।
ସେହି ଜାଣ ଅଣଞ୍ଚାଶ ପବନ ବୋଲାଇ
ସେ ଜଗତବ୍ୟାପୀ କୃଷ୍ଣ କମଳାର ସାଇଁ ।
ସେହି ତପୋବିଷ୍ଣୁ ଗୁରୁ ଜଗତ ଜନର
ମହା ତେଜୋବନ୍ତ ସର୍ବ ରୂପ ଜଗତର ।
ବ୍ରହ୍ମା ସେହି ମେଘ ସେହୁ ଅଗ୍ନିସେହି ଜାଣ
ସେହି ସମୀରଣ ସେହି ଜଗତର ପ୍ରାଣ ।
ଚରାଚର ଜଗତର ସବୁ ପୁଣ୍ୟ ସେହି
ଏ ଭୂତ ସୃଷ୍ଟିକି ଭଲକରି ଜାଣେ ଯେହି ।
ପରଲୋକ ଭୟ ତାର କିଛି ନ ରହଇ
ଏ ସଂସାରେ ଆଉ ପୁଣି ସେ ଜାତ ନୁହଇ ।
ଏ ଶୁଭ ସୃଷ୍ଟି ବାରତା ପାତକନାଶିନୀ
ମହାପାତକହାରିଣୀ ପୁଣ୍ୟର ଜନନୀ ।
ଭକତିଭରେ ଯେ ଜନ ଏ କଥା ଶୁଣଇ
ସକଳ ପାପରୁ ନିଶ୍ଚେ ମୁକତ ହୁଅଇ ।
ସତ୍ୟବନ୍ତ ପୁଣ୍ୟବନ୍ତ ଧନ ସେ ସଂସାରେ
ଏ ଶୁଭ ସୃଷ୍ଟି ବାରତା ଶୁଣୁଥିବା ନରେ ।
ପରମଗତି ଲଭଇ ସବୁ ପାପୁ ତରି
ଅନ୍ତେ ଯାଏ ବିଷ୍ଣୁଲୋକ ବଇକୁଣ୍ଠ ପୁରୀ ।
ଦୀନ ଗୋପୀନାଥ ଦାସ ଗୋପୀନାଥ ପାଦେ
ପାପ ପାରାବାର ତରି ଯିବ ଅପ୍ରମାଦେ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ
ମରୁଦୁତ୍ପତ୍ତିନାମ ଷଡ୍‌ବିଂଶୋଧ୍ୟାୟଃ ।



## ସପ୍ତବିଂଶ ଅଧ୍ୟାୟ

## ପୃଥୁ ରାଜ୍ୟାଭିଷେକ

ସୁତମୁନି କହିଲେ ଯେ ଶୁଣ ଋଷିଗଣ
ଏଥୁ ଅନନ୍ତରେ କଥା ହେଲା ଯାହା ଶୁଣ ।
ସର୍ବଲୋକ ପିତାମହ ପ୍ରଭୁ ପ୍ରଜାପତି
ବେନନନ୍ଦନ ପୃଥୁକୁ ଦେଲେ ଏହି ପୃଥ୍ୱୀ ।
ଅଭିଷେକ କଲେ ତୀର୍ଥଜଳେ ବେଦବର
ମହାବାହୁ ମହାକାୟ ପୃଥୁ ନରବର ।
ମହୀରେ ସେ ଦେବରାଜ ପ୍ରାୟ ବିରାଜିଲା
ବ୍ରହ୍ମା ତହୁଁ ଆନ ଆନ ରାଜ୍ୟ ବିସ୍ତାରିଲା ।
ଯେ ଯେଉଁ ରାଜ୍ୟକୁଯୋଗ୍ୟ ତାକୁଦେଲା ତାହା
ଏମନ୍ତେ ସ୍ଥାପନକରି ରାଜ୍ୟେ ନରନାହା ।
ବୃକ୍ଷ ବ୍ରାହ୍ମଣ ନକ୍ଷତ୍ର ଗ୍ରହ ତପ ରାଜ୍ୟେ
ସୋମଦେବଙ୍କୁ ସ୍ଥାପନକରି ବିଶ୍ୱସୃଜେ ।
ଧର୍ମାଧର୍ମ ଯଜ୍ଞ ପୁଣ୍ୟାପୁଣ୍ୟ ତେଜ ନୀର
ସକଳ ତୀର୍ଥ ସକଳ ରତ୍ନ ଯେ ଆବର ।
ଏସବୁ ରାଜ୍ୟର ରାଜା ହୋଇଲେ ବରୁଣ
କୁବେରଙ୍କୁ ଯକ୍ଷ ରାଜ୍ୟେ ନୃପତି କରିଣ ।
ଆଦିତ୍ୟ ଗଣଙ୍କ ରାଜ୍ୟେ ବିଷ୍ଣୁ ରାଜା ହେଲେ
ଯମହିତପାଇଁ ବ୍ରହ୍ମା ମନରେ ଭାଳିଲେ ।

ଦକ୍ଷ ପ୍ରଜାପତି ହସ୍ତେ ଦେଲେ ପୁଣ୍ୟରାଜ୍ୟ
ପ୍ରହ୍ଲାଦ ଯେ ବହିବାର ଶ୍ରୀବିଷ୍ଣୁ ର ତେଜ ।
ଆବର ସେ ପ୍ରଜାପତି ଗଣଙ୍କ ଈଶ୍ୱର
ସବୁ ଧର୍ମର ତା ଜ୍ଞାନ ଥିବାରୁ ଆବର ।
ମହା ଶକତି ତା ଦେହେ ଥିବାରୁ ବହୁତ
ଦୈତ୍ୟ ଦାନବଙ୍କ ରାଜ୍ୟ ଦେଲେ କୁଶହସ୍ତ ।
ସବୁ ପିତୃରାଜ୍ୟେ ରାଜା କରି ଜନ୍ତୁପତି
ଶୁଳପାଣି ଗିରିଶଙ୍କୁ କଲେ ଭୂତପତି ।
ଭୂତ ପ୍ରେତ ଯକ୍ଷ ରକ୍ଷ ରାକ୍ଷସ ବେତାଳ
ପିଶାଚ ଉରଗ ତାଳ କୁଷ୍ମାଣ୍ଡ କଙ୍କାଳ ।
ଡାକିନୀ ଶାକିନୀ ପୁଣି ଯୋଗ୍ନୀଗଣ ଯେତେ
ଏ ସକଳ ରାଜ୍ୟ ଦେଇ ସଦାଶିବ ହସ୍ତେ ।
ଶିବଙ୍କୁ ପାର୍ଥିବ ରାଜ୍ୟେ ଅଧିକାରୀ କରି
ପର୍ବତ ରାଜ୍ୟରେ ରାଜାକଲେ ହିମଗିରି ।
ସବୁ ପର୍ବତର ପତି ହେଲେ ହିମାଳୟ
ଯେତେକ ନଦୀ ପୋଖରୀ ବାମ୍ପୀ ଜଳାଶୟ ।
କୁଣ୍ଡ କୂପତଡାଗାଦି ଜଳ ରାଜ୍ୟ ଯେତେ
ସମର୍ପିଣ ତୀର୍ଥମୟ ସମୁଦ୍ରର ହସ୍ତେ ।
ଗନ୍ଧର୍ବଙ୍କ ରାଜ୍ୟେ ରାଜା କରି ଚିତ୍ରରଥ
ବାସୁକିଙ୍କି ନାଗରାଜ୍ୟେ କଲେ ଅଧିନାଥ ।
ନାଗଙ୍କର ରାଜା ଯହୁଁ ବାସୁକି ହୋଇଲେ
ତକ୍ଷକ ନାଗକୁ ତହୁଁ ସର୍ପରାଜ୍ୟ ଦେଲେ ।
ସର୍ପଙ୍କ ଉପରେ ରାଜା ହୁଅନ୍ତେ ରାଜନ
ତହୁଁ ମନରେ ବିଚାରି କମଳ ଆସନ ।
ହସ୍ତୀରାଜ୍ୟେ ରାଜାକଲେ ଗଜ ଐରାବତ
ହସ୍ତୀଙ୍କ ଉପରେ ତାର ରହିଲା ରାଜତ୍ୱ ।
ଅଇରାବତକୁ ବ୍ରହ୍ମା ଗଜରାଜ କରି
ଅଶ୍ୱରାଜ୍ୟ ଉଚ୍ଚୈଃଶ୍ରବା ଅଶ୍ୱକରେ ଢ଼େରି ।
ଉଚ୍ଚୈଃଶ୍ରବା ରାଜାହେଲେ ଅଶ୍ୱଙ୍କ ଉପରେ
ତହୁଁ ପିତାମହ ବ୍ରହ୍ମା ବିଚାରି ମନରେ ।
ସବୁ ପକ୍ଷିରାଜ୍ୟ ରଜା ଗରୁଡ଼କୁ କଲେ
ପକ୍ଷିରାଜନ ଗରୁଡ଼ ହେବାର ଦେଖିଲେ ।
ସବୁ ପଶୁରାଜ୍ୟେ କଲେ ସିଂହକୁ ରାଜନ
ବନପତି ପଶୁପତି ହୁନ୍ତି ପଞ୍ଚାନନ ।
ତହୁଁ ପୁଣି ଆପଣାର ମନରେ ବିଚାରି
ଗୋରୁଗୋଠେ ବୃଷଭକୁ କଲେ ଅଧିକାରୀ ।
ବୃଷକୁ ଗୋପତି ହେବାଦେଖି ପ୍ରଜାପତି
ବନସ୍ପତି ରାଜ୍ୟେକଲେ ପ୍ଲକ୍ଷକୁ ନୃପତି ।
ପ୍ଲକ୍ଷ ବୃକ୍ଷଶିରେ ଢାଳି ଅଭିଷେକ ଜଳ
ଏରୂପେ ସକଳ ରାଜ୍ୟେ ଥାପିଣ ଭୂପାଳ ।
ଚାରିଦିଗେ ଦିଗପାଳ କଲେକ ସ୍ଥାପନ
ପୂର୍ବେ ରହିଲେ ସୁଧନ୍ୱା ବୈରାଜ ନନ୍ଦନ ।
ଶଙ୍ଖପଦ୍ମ ଯେ କର୍ଦ୍ଦମ ପ୍ରଜାପତି ସୁତ
ଦକ୍ଷିଣ ଦିଗପାଳିଲେ ହୋଇ ଅଧିନାଥ ।
ପ୍ରଜାପତି ବରୁଣଙ୍କ ପୁତ୍ର ଯେ ପୁଷ୍କର
ପଶ୍ଚିମ ଦିଗ ରଖିଲେ ହୋଇ ଅଧୀଶ୍ୱର ।
ନଳ କୁବେର ଉତ୍ତରଦିଗ ପତି ହେଲେ
ବ୍ରହ୍ମା ଏରୂପେ ତାହାଙ୍କୁ ଅଭିଷେକ କଲେ ।
ଦ୍ୱୀପ ପତ୍ତନ ସହିତ ପୃଥିବୀ ଯେତେକ
ପାଳିଲେ ସେ ଦିଗପାଳେ ବାଣ୍ଟି ଚାରିଦିଗ ।
ଧର୍ମରେ ପୃଥ୍ୱୀ ପାଳିବା ଦେଖି ବେଦବର
ପୃଥୁରାଜା ଶିରେ ଢ଼ାଳି ଅଭିଷେକ ନୀର ।
ସବୁ ନରଙ୍କ ଉପରେ ରାଜା ତାଙ୍କୁ କଲେ
ଯଶସ୍ୱୀ ହୁଅ ବୋଲିଣ କଲ୍ୟାଣ ବାଞ୍ଛିଲେ ।
ପୃଥୁରାଜା ହେଲେ ନରରାଜ୍ୟେ ଅଧୀଶ୍ୱର
ରାଜସୂୟ ଆଦି ଯଜ୍ଞକରି ନୃପବର ।
ଏକାଙ୍ଗ ଚକ୍ରବର୍ତ୍ତୀ ସେ ବୋଲାଇଲେ ପୁଣି
ରାଜରାଜେଶ୍ୱର ହେଲେ ସେହି ନୃପମଣି ।
ଚାକ୍ଷୁଷ ମନୁ ଅନ୍ତେଯେ ମନୁ ବୈବସ୍ୱତ
ତହିଁରେ ନୃପତି ହେଲେ ପୃଥୁ ନୃପନାଥ ।
ହେ ଦ୍ୱିଜବର ଯେବେକି ହୋଇ ସାବଧାନ
ପୃଥୁଚରିତ ଶୁଣିବାପାଇଁ ଥାଏ ମନ ।
ସବୁ ପୁରାଣରେ ସାର ଯେ ପୃଥୁ ଚରିତ
ପୁଣ୍ୟ ଯଶ ଆୟୁଷ ଯେ ସ୍ୱର୍ଗ ଭୋଗ ସୁତ ।
ବୁଦ୍ଧିକି ପାଇ ଶୁଣିଲେ ଯେଉଁ ପୃଥୁ କଥା
ପବିତ୍ର ଆବର ଧନ୍ୟ ଶୁଭପ୍ରଦ କଥା ।
ଭାବ ବୁଝି ଲୟ ରଖି ଯେ ଜନ ଶୁଣଇ
ଅଶ୍ୱମେଧ ଯଜ୍ଞ କଲା ଫଳ ସେହୁ ପାଇ ।
ହରି ହରି ବୋଲ ଭାଇ ଭବୁ ଯିବ ତରି
ଦ୍ୱିଜ ଗୋପୀନାଥ ବୋଲେ ହରିନାମ ତରି ।
ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ପୃଥୁଚରିତ
ପ୍ରସ୍ତାବୋ ନାମ ସପ୍ତବିଂଶୋଽଧ୍ୟାୟଃ ।

## ଅଷ୍ଟାବିଂଶ ଅଧ୍ୟାୟ

### ପୃଥୁଚରିତ ଓ ବେନର ଉଦ୍ଧାର

ପଚାରିଲେ ଋଷିଗଣ ଆହେ ମୁନିସୁତ
ଶୁଣିବାକୁ ଇଚ୍ଛାକରୁଁ ପୃଥୁର ଚରିତ ।
ସେ ରାଜାର ଜନ୍ମକଥା କହିବା ବିସ୍ତାରି
ଯେମନ୍ତ ପୃଥ୍ୱୀ ଦୋହନ କଲେ ଦଣ୍ଡଧାରୀ ।
ଦେବତା ପିତୃ ଯେତେକ ମୁନିଦୈତ୍ୟନାଗ
ଯକ୍ଷ ରକ୍ଷ ଶଇଳ ଯେ ପିଶାଚ ଉରଗ ।
ଗନ୍ଧର୍ବ ଗୁହ୍ୟକ ସିଦ୍ଧ ଚାରଣ ବ୍ରାହ୍ମଣ
ଶୂନ୍ୟବାସୀ ଜଳବାସୀ ସ୍ଥଳବାସୀ ଜନ ।
ପୃଥ୍ୱୀକି ଦୋହନ କଲେ କହ ଯେଉଁପରି
ଦୋହନ ପାତ୍ରର ନାମ କହିବା ବିସ୍ତାରି ।
କ୍ଷୀରର ବିଧି ବିଧାନ କହିବା ଆବର
ବ୍ରାହ୍ମଣଗଣ କିମ୍ପାଇଁ ହୋଇ କୋପଭର ।
ମହାତ୍ମା ବେନର କଲେ ହସ୍ତକୁ ମନ୍ଥନ
ଏସବୁ କଥା କହିବା ହେଉ ତପୋଧନ ।
ପବିତ୍ର ପାପନାଶିନୀ କଥା ଆଚମ୍ବିତ
ଶୁଣିବାକୁ ମନହୁଏ ଆହେ ମୁନିସୁତ ।
ଯେତେ ଶୁଣିଲେ ଆମ୍ଭର ନୁହଇ ତୃପତି
ପୁଣିପୁଣି ଶୁଣିବାକୁ ଜନମେ ପ୍ରବୃତ୍ତି ।
ଏମନ୍ତ ଶୁଣି ବୋଇଲେ ସୁତ ମୁନିବର
ବେନ ନନ୍ଦନ ପୃଥୁର ଜନ୍ମ ସମାଚାର ।
ଅତି ପବିତ୍ର ସକଳ ପାତକ କରଇ
କହୁଅଛି ଏବେ ଶୁଣ ତୁମ୍ଭେ ମନଦେଇ ।
ଅତ୍ରିକୁଳେ ଉପୁଜିଲେ ଏକ ପ୍ରଜାପତି
ତାଙ୍କ ନାମ ଅଙ୍ଗ ଅତ୍ରିପ୍ରାୟ ସେ ଅଟନ୍ତି ।
ଧର୍ମବନ୍ତ ପ୍ରାଣୀସେହି ତାର ପୁତ୍ର ବେନ
ଧର୍ମଛଡ଼ା ହେଲେ ବେନ ହୋଇଣ ରାଜନ ।
ମୃତ୍ୟୁର ଦୁହିତା ନାମ ସୁନୀଥା ଅଟଇ
ସେ କନ୍ୟାକୁ ବିଭାହେଲେ ଅଙ୍ଗ ନରସାଇଁ ।
ତାର ଗର୍ଭୁ ଉପୁଜିଲା ଧର୍ମଛଡ଼ା ବେନ
କାଳ ଦୁହିତାର ଯହୁଁ ହେଲା ସେ ନନ୍ଦନ ।
ମାତୃଦୋଷେ ବେନରାଜା ଧର୍ମଛଡ଼ା ହେଲା
ଆପଣାର ଧର୍ମଛାଡ଼ି ଅଧର୍ମକୁ ଗଲା ।
କାମକ୍ରୋଧ ଲୋଭ ମୋହେ ପଡ଼ି ସେହିବେନ
ବେଦ ଧର୍ମ ଛାଡ଼ିଦେଲା ପାପକର୍ମେ ମନ ।
ମଦମତ୍ସରେ ମୋହିତ ହୋଇ ବେନରାୟ
ନିରତେ ପାପପଥରେ ଚାଲେ ଛାଡ଼ିଭୟ ।
ତାହାର ରାଜ୍ୟରେ ଥିଲେ ଜନପ୍ରଜା ଯେତେ
ବେଦ ନ ପଢ଼ିଲେ ପୋଥି ନଛୁଇଁଲେ ହସ୍ତେ ।
ସ୍ୱାହା ସ୍ୱଧା ବଷଟ୍‌କାର ଛାଡ଼ିଲେ ସକଳ
ଯାଗଯଜ୍ଞହିଁ ନକଲା ବେନ ମହୀପାଳ ।
ସୋମରସ ବିନେ ଦେହେ ଦୁର୍ବଳ ହୋଇଲେ
ଦୁଷ୍ଟଆତ୍ମା ବେନ ବିପ୍ରଗଣ ଡାକି ବୋଲେ ।
ତୁମ୍ଭେ ବେଦ ନ ପଢ଼ିବ ହୋମ ନ କରିବ
ଦାନବ ନ୍ଦ୍ୱେନିବ ଦାନ କାହାକୁ ନ ଦେବ ।
ଯାଗଯଜ୍ଞ ନକରିବ ମୋର ବୋଲେ ଆଉ
କଲେ ସେ ଦଣ୍ଡପାଇବ ଜୀବ ଥାଉ ଥାଉ ।
ନ ଜାଣ କି ମୋର ନାମ ବେନ ମହୀପତି
ମୁହିଁ ବ୍ରହ୍ମା ମୁହିଁ ବିଷ୍ଣୁ ମୁହିଁ ପଶୁପତି ।
ଚନ୍ଦ୍ର ସୂର୍ଯ୍ୟ ଦେବତା ମୁଁ ଅନଳ ଅନିଳ
ମୁହିଁ ଯେ ପିତୃଦେବତା କାଳପରେ କାଳ ।
ମୁଁ ମନକଲେ ସ୍ୱର୍ଗକୁ ପାତାଳେ ରଖିବି
ପାତାଳକୁ ନେଇ ସ୍ୱର୍ଗଭୁବନେ ଥାପିବି ।
ମାଇଲେ ମାରିବି ମୁହିଁ ରଖିଲେ ରଖିବି
ମୁଁ ମନକଲେ କ୍ଷଣକେ ପ୍ରଳୟ କରିବି ।
ସୃଜଇ ପାଳଇ ମୁହିଁ ତାରଇ ମାରଇ
ମୋକଥା ଆନକରିବା ପୁଅଜଣେ ନାହିଁ ।
ଏମନ୍ତେ ଗର୍ଜନକରି କହନ୍ତେ ସେ ବେନ
ଶୁଣି କ୍ରୋଧେ ଜରଜର ହେଲେ ବିପ୍ରଗଣ ।
କାଳଗ୍ରାସିବାରୁ ବେନ କହେ ଗର୍ବକରି
ଏକାଳେ ତହିଁ କେତେକ ମୁନି ତପଚାରୀ ।
ମହାବଳ ମହାକ୍ରୋଧୀ ସମସ୍ତ ଯେ ଶୂର
ଉଚ୍ଚରେ ବୋଇଲେ ତୁହି ପୃଥିବୀ ଈଶ୍ୱର ।
ପ୍ରଜାପାଳିବାର ଧର୍ମ ତୋହର ଅଟଇ
ସାକ୍ଷାତେ ଧର୍ମମୁରତି ତୁହୋ ନରସାଇଁ ।
ଏକଯଜ୍ଞରେ ଯେ ଆମ୍ଭେ ହୋଇଛୁ ଦୀକ୍ଷିତ
ବାରବରଷରେ ସେହି ହେବ ସମାପତ ।
ଏଣୁ ଆଚାର ଅଧର୍ମ ନ କରିବ ତୁମ୍ଭେ
ଆଗଆସି ଜଣାଉଛୁ ତୁମ୍ଭଆଗେ ଆମ୍ଭେ ।

ସାଧୁଜନଙ୍କର ଧର୍ମ ଏକମାତ୍ର ଗତି
ତୁମ୍ଭେ ଯେ ପୂର୍ବୁ ପ୍ରତିଜ୍ଞା କରିଛ ନୃପତି ।
ଯାଗଯଜ୍ଞ ଦାନଧର୍ମ ନ କରିବେ କେହି
ରାଜାର ଆଜ୍ଞା ମେଣ୍ଟନ୍ତି ଯେବେ ପ୍ରଜାହୋଇ ।
ମହାଭୟଙ୍କର ନର୍କକୁଣ୍ଡେ ତାର ବାସ
ଋଷିଏ କହିଲେ ଯହୁଁ ଏକା ରାଜାପାଶ ।
ବୁଦ୍ଧି ସେ ହୁଡ଼ଇ ଯାକୁ କାଳ ଗ୍ରାସେ ଆସି
ବେନରାଜା ତାଙ୍କୁ କହେ ଅଳ୍ପ ହସି ହସି ।
ଧର୍ମର ସୃଷ୍ଟି କରତା ଅଟଇକେ ପୁଣି
ମୁଁ କାହା କଥା ଶୁଣିବି କହ ତୁମ୍ଭେ ମୁନି ।
ଶ୍ରୁତବୀର୍ଯ୍ୟ ସତ୍ୟ ତପନିଷ୍ଠା ଧର୍ମବଳେ
ମୋ ସମାନ ଆଉ ଜଣେ ଅଛିକି ଭୂତଳେ ।
ବୀର୍ଯ୍ୟବନ୍ତ ଜ୍ଞାନବନ୍ତ ସତ୍ୟବନ୍ତ ମୁହିଁ
ତପବଳ ନିଷ୍ଠାସବୁ ମୋର ଅଛି ତହିଁ ।
ସବୁପ୍ରାଣୀ ସବୁଧର୍ମ ସବୁକର୍ମ ଯାକ
ସୃଜଇ ମୁହଁ ପାଳଇ ଲୟ ମୋହ ତର୍କ ।
ତୁମ୍ଭେ ଯେ ମୂଢ଼ଅଜ୍ଞାନୀ ନପାରୁଛ ଚିହ୍ନି
ମନକଲେ ଚରାଚର ସହିତ ଧରଣୀ ।
ଜଳେ ମୁଁ ବୁଡ଼ାଇପାରେ ଜଳ ଶୋଷିପାରେ
ଗଗନପଥ ମୁଁ ରୋଧିପାରେ କ୍ଷଣକରେ ।
ଏଥିରେ କିଛି ସନ୍ଦେହ ନରଖିବ ମନେ
ବେନର ଏ ଗର୍ବକଥା ଶୁଣି ମୁନିଜନେ ।
କ୍ରୋଧରେ ଅଧୀରହୋଇ ଦେଲେତାକୁ ଗାଳି
ବୋଇଲେ କଲୁଣି ତୁହି ମୃତ୍ୟୁକୁ ସଙ୍ଗାଳି ।
ତେଣୁ ତୁ କହୁ ଏମନ୍ତ ଆରେ ବେନରାୟ
କ୍ଷଣକରେ ଗର୍ବ ମୋକ୍ଷ ସବୁଯିବ କ୍ଷୟ ।
କହୁ କହୁ ଅଗ୍ନିପ୍ରାୟ ଉଠିଲେ ସେ ଜଳି
ମାଡ଼ି ବସିଲେ ରାଜାକୁ ବଳେ ସର୍ବେ ମିଳି ।
ମନ୍ଥିଲେ ରାଜାର ବାମଉରୁକୁ ଯେ ରୋଷେ
ଉପୁଜିଲା କୃଷ୍ଣବର୍ଣ୍ଣ ଏକଇ ପୁରୁଷେ ।
କଳାଅଜନ ପର୍ବତ ପ୍ରାୟ ସେ ଦିଶଇ
ଅତି ହସ୍ୱକାୟ ଦୀର୍ଘ ମୁଖ ସେ ଦିଶଇ ।
ନୀଳକଞ୍ଚୁକ ପରାୟ କେଶ ତା ମୁକୁଳା
ଭୟଙ୍କର ଦିଶଇ ତା ନୟନର ଡ଼ୋଳା ।
ଚେପଟାକର୍ଣ୍ଣ ଚେପଟା ନାସା ସେ ଅଟଇ
ନିଷୀଦ ନିଷୀଦ ବୋଲି ଋଷିଗଣ କହି ।

ଋଷିଙ୍କ ବାକ୍ୟେ ପୁରୁଷ କାହିଁ ଯେ ନଗଲା
ଭୟପାଇ ସେହିସ୍ଥାନେ ସ୍ଥକିତ ହୋଇଲା ।
ତେଣୁ ସେ ପୁରୁଷଗୋଟି ନିଷାଦ ବୋଲାଇ
ଋଷିଙ୍କ ବୋଲେ ବନରେ ରହିଲା ଯେ ଯାଇଁ ।
ଗିରିକନ୍ଦରେ ରହିଲା ବଢ଼ିଲା ତା ବଂଶ
ସମସ୍ତେ କଲେ ସେ ଗିରି ବନମଧ୍ୟେ ବାସ ।
ତା ବଂଶର ନାମ ଶୁଣ କହେ ଏକ ଏକ
ନିଷାଦ କିରାତ ହୁନ ଭିଲ୍ଲ ନାହ ନକ ।
ଭ୍ରମର ପୁଲିନ୍ଦ ମ୍ଳେଚ୍ଛ ଶବର ବର୍ବର
ଏ ଆଦି ନାମେ ତା ବଂଶ ପାଇଲେ ବିସ୍ତାର ।
ବେନରଅଙ୍ଗୁ ଏସବୁ ପାପୀଷ୍ଟେ ହୋଇଲେ
ଏମନ୍ତେ ବେନକୁ ଋଷି ନିଷ୍ପାପ ଯେ କଲେ ।
ପାପ ଛାଡ଼ିଗଲା ଶୁଦ୍ଧ ହେଲା ରାଜାକାୟ
ଗତ କଲ୍ମଷ ହୁଅନ୍ତେ ସେହି ବେନରାୟ ।
ତହୁଁ ଋଷିଏ ତାହାର ଦକ୍ଷିଣ ଯେ ହସ୍ତ
ମନ୍ଥନକଲେ ସକଳେ ହୋଇଣ ମିଳିତ ।
ପୁରୁଷେକ ଉପୁଜିଲା ତହିଁରୁ ଯେ ପୁଣି
ତେଜ ତାହାର ଯେ ବାର ଆଦିତ୍ୟକୁ ଜିଣି ।
ତପତକାଞ୍ଚନ ପ୍ରାୟ ବର୍ଣ୍ଣ ତା ସୁନ୍ଦର
ଦିବ୍ୟ ଆଭରଣେ ଅଙ୍ଗ ଭୂଷଣ ତାହାର ।
ଦେବଯୋଗ୍ୟ ମାଲ୍ୟ ତାର କଣ୍ଠରେ ଲମ୍ବଇ
ଦେବାଙ୍ଗ ବସନେ ତାର କଟି ଶୋଭାପାଇ ।
ଚନ୍ଦନ ବୋଳାହୋଇଛି ସର୍ବାଙ୍ଗେ ତାହାର
ଉଜ୍ଜ୍ୱଳ ମୁକୁଟେ ଶୋଭାପାଉଛି ତା ଶିର ।
ଆଦିଙ୍କର ବର୍ଣ୍ଣପ୍ରାୟ ମୁକୁଟର ବର୍ଣ୍ଣ
କୁଣ୍ଡଳେ ଯୁଗଳେ ଶୋହେ ତାର ବେନିକର୍ଣ୍ଣ ।
ବିଶାଳକାୟ ବିଶାଳ ବାହୁ ସେ ଅଟଇ
ଅପ୍ରମିତରୂପ ତାକୁ ଉପମା ଯେ ନାହିଁ ।
ଧନୁ ଖଡ଼୍‌ଗବାଣସେ ଧରିଅଛି କରେ
ଦିବ୍ୟକବଚ ବିରାଜୁଅଛି ତା ଶରୀରେ ।
ସର୍ବଲକ୍ଷଣେ ଲକ୍ଷିତ ସେ ପୁରୁଷବର
ସର୍ବ ଅଳଙ୍କାରେ ସେହି ମଣ୍ଡିତ ଆବର ।
ରୂପବର୍ଣ୍ଣ ତେଜରେ ସେ ସବୁହୁଁ ଅଧିକ
ସେହି ବେନିପୁତ୍ର କିବା ସ୍ୱର୍ଗର ନାୟକ ।
ଭୂମିତଳେ ବିରାଜିଲା ବୁଦ୍ଧିମନ୍ତ ଅତି
ବେନିଅଙ୍ଗରୁ ନନ୍ଦନ ହୁଅନ୍ତେ ଉତ୍ପତ୍ତି ।

ଦେବେଟଣେ ଋଷି ଗଣେ ଉତ୍ସବେ ମାତିଲେ
ଆନନ୍ଦରେ ଅପସରାଗଣ ଯେ ନାଚିଲେ ।
ଅଗ୍ନିପ୍ରାୟ ତେଜୋବନ୍ତ ବେନର ନନ୍ଦନ
ସେହି ମହାତମା ନାମ ପୃଥୁବୋଲି ଜାଣ ।
ଆଦ୍ୟ ଅଜଗବ ନାମ ଧନୁ ତାର କରେ
ଦିବ୍ୟଶର ଦେବଶର ତାହାର ତୂଣୀରେ ।
ତା ଦେହ ରକ୍ଷା କବଚ ମହାପ୍ରଭାଶାଳୀ
ଭୂମିରେ ଜାତ ହୁଅନ୍ତେ ପୃଥୁ ମହାବଳୀ ।
ସକଳ ପ୍ରାଣୀ ଆନନ୍ଦ ହୋଇଲେ ତା ଶୁଣି
ସବୁ ତୀର୍ଥରୁ ଯେ ନାନା ତୀର୍ଥ ଜଳ ଆଣି ।
ବିପ୍ରଙ୍କୁ ଦେଲେ ସକଳ ଦ୍ୱିଜବଳେରେ ମିଳି
ଅଭିଷେକ କରିବାକୁ ଗଲେ ତହୁଁ ଚଳି ।
ତେତିଶକୋଟି ଦେବତା ଘେନି ବେଦବର
ଚରାଚର ଜୀବଜନ୍ତୁ ଅଛନ୍ତି ଆବର ।
ଅଭିଷେକୀ କଲେ ସେହି ପୃଥୁରାଜା ଶିରେ
ନୃପତି ହେଲେ ସେ ପୃଥୁ ସବୁରି ଉପରେ ।
ପରଜା ପାଳକ ସେହି ମହାବୀର ରାୟେ
ପିତା ତାହାର ଦୁରାତ୍ମା ବେନ ମହାରାୟେ ।
ପ୍ରଜା କଣ୍ଟକ ଥିବାରୁ ସକଳ ପରାଣୀ
ଭୟରେ ତା ଆଗେ କହି ନକହନ୍ତି ପୁଣି ।
ପଛରେ ତାହାକୁ ଗାଳି ବନ୍ଦ ଦେଉଥାନ୍ତି
ଯହୁଁ ଏହି ପୃଥୁରାଜା ହୋଇଲେ ନୃପତି ।
ସମସ୍ତ ପ୍ରାଣୀ ଆନନ୍ଦେ ଗାଇଲେ ତା ଗୁଣ
ପ୍ରଜାପ୍ରିୟ ବୋଲାଇଲେ ପୃଥୁ ମହାରାଣ ।
ପ୍ରଜାରଞ୍ଜନ ହେବାରୁ ପୃଥୁ ବୀରବର
ରାଜାନାମ ବୋଲାଇଲେ ବେନର କୁମର ।
ସମୁଦ୍ର ଆଡ଼କୁ ଯେବେ ଯାଏ ପୃଥୁରାୟେ
ନିସ୍ତବଧେ ରହେ ସିନ୍ଧୁଜଳ ତାର ଭୟେ ।
ଜଳୁ ଲହରୀ ନ ଉଠେ ନକରେ ଗର୍ଜନ
ପର୍ବତ ଜାଣଇଁ ଯେବେ ତାହାର ଆଗମ ।
ତାର ଦୁର୍ଗମ ମାର୍ଗକୁ ଲୁଚାଇ ଦିଅଇ
ସୁଗମ ମାର୍ଗ ଭୟରେ ଦିଅଇ ଦେଖାଇ ।
ଯେ ବାଟରେ କଣ୍ଟାଝଟା ନାହିଁ ଢିପଖାଲ
ସେ ବାଟ ଦେଖାଇଦିଏ ପୃଥୁଙ୍କୁ ଶଇଳ ।
ପର୍ବତ ସମୁଦ୍ର ତାର ଆଜ୍ଞା ନ ଲଙ୍ଘନ୍ତି
ଏମନ୍ତେ ରାଜ୍ୟଶାସନ କରେ ସେ ନୃପତି ।

ଚଷାଏ ଉତ୍ତମ ରୂପେ ଭୂମିକି ଚଷନ୍ତି
ବେଳକାଳ ଜାଣି ମେଘେ ଜଳ ବରଷନ୍ତି ।
ମାଟି ପଚିବାରୁ ଶସ୍ୟ ଫଳଇ ବହୁତ
ମୃତ୍ତିକାରବଳ ଘେନି ବୃକ୍ଷେ ବଳବନ୍ତ ।
ଧେନୁଙ୍କ ପାଇଁ ବହୁତ ଗୋଚର ପଡ଼ିଆ
ଚରି ବୁଲିବାରୁ ଗାଈ ସବୁ ଦୁହାଁଳିଆ ।
ତା ରାଜ୍ୟରେ କାମଧେନୁ ପ୍ରାୟ ସବୁ ଗାଈ
ପ୍ରଜାଜନ ମନ ଜାଣି ମେଘ ବରଷଇ ।
ବେଦମନ୍ତ୍ର ପଢ଼ି ବିପ୍ରେ ହେଲେ ବଇଦିକ
ଯଜ୍ଞ ଉତ୍ସବେ କ୍ଷତ୍ରିୟେ ହୋଇଲେ ଧାର୍ମିକ ।
ବୃକ୍ଷମାନଙ୍କରେ ଫଳ ଫଳିଲା ବହୁତ
ଅକାଳ ମୃତ୍ୟୁରୁ ପ୍ରାଣୀ ହୋଇଲେ ରହିତ ।
ଚୋରଭୟ ବ୍ୟାଧିଭୟ ଶତ୍ରୁଭୟ ନାହିଁ
ଦୁର୍ଭିକ୍ଷ ମଡ଼କ ଆଦି ନଜାଣନ୍ତି କେହି ।
ଧର୍ମ କର୍ମ କରି ପ୍ରାଣୀ ରହିଲେ ନିଶ୍ଚିନ୍ତେ
ପିତାମହ ଯଜ୍ଞୁ ଜାତ ମାଗଧ ସେ ସୂତେ ।
କହୁଅଛି ଶୁଣ ଏବେ ସୂତର ଲକ୍ଷଣ
ଶିଖା ସୁତ୍ରରେ ଯେ ସୂତ ସର୍ବଦା ଭୂଷଣ ।
ସବୁବେଳେ ବେଦମନ୍ତ୍ର ପଢ଼ା ତାହାଙ୍କର
ସବୁ ଶାସ୍ତ୍ରର ଯେ ତତ୍ତ୍ୱ ଜାଣନ୍ତି ଆବର ।
ଅଗ୍ନିହୋତ୍ରୀ ବିପ୍ର ସେହି ଦାନପରାୟଣ
ଆଚାରନିଷ୍ଠ ସେ ଦେବ ପୂଜକ ବ୍ରାହ୍ମଣ ।
ଯାଜକପଣ ଜୀବିକା ଅଟଇ ତାଙ୍କର
ସ୍ତୁତି ପ୍ରଶଂସା ସେ କରୁଥାନ୍ତି ଲୋକଙ୍କର ।
ବେଦମନ୍ତ୍ର ପଢ଼ିଣ ସେ ଲୋକଙ୍କୁ ଯଣାନ୍ତି
ବ୍ରାହ୍ମଣଙ୍କ ଗୃହେ ସେହି ସମ୍ବନ୍ଧ ବାନ୍ଧନ୍ତି ।
ସୂତର ଭାଇ ମାଗଧ ବେଦପାଠ ଶୂନ୍ୟ
ବନ୍ଦୀଚାରଣ ଯେତେକ ବେଦାଚାର ହୀନ ।
ସ୍ତୁତି ଜୀବିକା ସବୁରି ତେଣେ ପୋଷିହ୍ୱନ୍ତି
ସ୍ତୁତିମାଗଧଙ୍କୁ ଡାକି ଋଷିଏ ବୋଲନ୍ତି ।
ଏ ରାଜାର କର୍ମରୂପେ ସ୍ତୁତି ତୁମ୍ଭେ କର
ସ୍ତୁତି ମାଗଧେ ଋଷିଙ୍କି ଦେଲେ ଏ ଉତ୍ତର ।
ଆପଣା ଆପଣା କର୍ମ ଅନୁସାରେ ଆମ୍ଭେ
ଦେବତା ଋଷିଙ୍କି ଦୋଷ କରୁଥାଉଁ ସ୍ତବେ ।
ଏହାଙ୍କର କର୍ମ ଯଶ ଲକ୍ଷଣ ନ ଜାଣି
କି ସ୍ତବ କରିବୁଁ ଆମ୍ଭେ କହ ତୁମ୍ଭେ ପୁଣି ।

ଏମନ୍ତ ଶୁଣି କହିଲେ ତାଙ୍କୁ ମୁନିଗଣ
ମହାରାଜା ପୃଥୁଙ୍କର କର୍ମ ଯଶଗୁଣ ।
ଏହି ପୃଥୁ ସତ ବିନା ମିଛ ନକହଇ
ଜଗତରେ ମହାଜ୍ଞାନୀ ଏ ରାଜା ବୋଲାଇ ।
ବୁଦ୍ଧିମନ୍ତପଣେ ଜଣେ ନାହିଁ ଏହା ପ୍ରାୟ
ବିଖ୍ୟାତ ବିକ୍ରମବୋଲି ବୋଲାଇ ଏ ରାୟ ।
ଦାନଶୂନ ମାନଶୂନ ଏ ରାଜା ବୋଲାଇ
ଶଉର୍ଯ୍ୟପଣ ଏହାର ଜଗତ ଘୋଷଇ ।
ଗୁଣଗ୍ରାହୀ ଗୁଣବନ୍ତ ଧାର୍ମିକ ଆବର
ପୁଣ୍ୟବନ୍ତ ନାହିଁ ଜଣେ ସମାନ ଏହାର ।
ସତ୍ୟବାଦୀ ଯଜ୍ଞକାରୀ ଏ ରାଜା ଅଟଇ
ପ୍ରିୟ ଭାଷଇ ଅପ୍ରିୟ କଥା ନ କହଇ ।
ଧନ ଧାନ୍ୟରେ ପୂରିଛି ଏହାର ଭଣ୍ଡାର
ସବୁ ସ୍ଥାନକୁତ ଯାଇ ପାରଇ ଏ ନର ।
ସବୁ ଜାଣିପାରିବାରୁ ସର୍ବଜ୍ଞ ବୋଲାଇ
ଚାରିବେଦରେ ଯେ ତତ୍ତ୍ୱ ଏ ଏକା ଜାଣଇ ।
ସୁଧୀ ବ୍ରହ୍ମଣ୍ୟ ଏରାୟ ପ୍ରଜ୍ଞାବନ୍ତ ଅତି
ସୁସ୍ୱରେ ବେଦବେଦାଙ୍ଗ ପଢ଼ଇ ଏ ନିତି ।
ଧାତା ବିଧାତା ପ୍ରଜାର ପାଳନ କରତା
ଯୁଦ୍ଧରେ ଜୟୀ ହୁଅଇ ସର୍ବଜନ ନେତା ।
ରାଜସୂୟ ଆଦି ସବୁ ଯାଗଯଜ୍ଞ କରି
ଭୂମିତଳେ ବୋଲାଇଛି ଏହା ପୁଣ୍ୟକାରୀ ।
ପୃଥୁର ଦେହେଁ ଏସବୁ ଗୁଣଅଛି ରହି
ଭବିଷ୍ୟତ ଗୁଣ ଦେଲୁ ତୁମ୍ଭ ଆଗେ କହି ।
ଋଷିଏ ଏମନ୍ତ କହି ସୁତ ମାଗଧଙ୍କୁ
ବୋଇଲେ ଏରୂପେ ସ୍ତୁତିକର ଏ ପୃଥୁଙ୍କୁ ।
ଋଷିର ମୁଖୁଁ ପୃଥୁର ଭବିଷ୍ୟତ ଗୁଣ
ନିରତେ ସୂତ ମାଗଧେ କଲେ ଯେ ବଖାଣ ।
ଗ୍ରାମେ ଗ୍ରାମେ ଦେଶେ ଦେଶେ ବୁଲିବୁଲି ଭାଟେ
ପୃଥୁର ଗୁଣ ଗାଇଲେ ହାଟେ ବାଟେ ଘାଟେ ।
ଶୁଣିଣ ପୃଥୁର ଗୁଣ ଲୋକେହେଲେ ତୋଷ
ପୃଥୁରାୟେ ତାଙ୍କୁ ଖଣ୍ଡେ ଖଣ୍ଡେ ଦେଲେଦେଶ ।
ହଇହୟ ଦେଶ ଦେଲେ ସୁତ ମାଗଧଙ୍କୁ
ତଇଲଙ୍ଗଦେଶ ଦେଲେ ବନ୍ଦୀଚାରଣଙ୍କୁ ।
ସେ ନୃପନନ୍ଦନ ପୃଥୁ ରେବାନଦୀ ତୀରେ
ନିର୍ମାଣିଲେ ଆପଣାର ନାମେ ଏକ ପୁରେ ।
ବ୍ରାହ୍ମଣଙ୍କୁ ଡାକିଆଣି ପୁର କଲେ ଦାନ
ତାଙ୍କୁ ନିତି ଆସି ତପସିଦ୍ଧା ମୁନିଜନ ।
ଦାନୀ ଜ୍ଞାନୀ ପୁଣ୍ୟକାରୀ ଜନ ମନେକରି
ଦରଶନ କରୁଥାନ୍ତି ପ୍ରଜା ସେହିପରି ।
କୁହାକୁହି ହେଉଥାନ୍ତି ଆପଣା ଭିତରେ
ଦେବ ଦ୍ୱିଜ ପ୍ରଜାଙ୍କୁ ଏ ପାଳେ ନିରନ୍ତରେ ।
ଏମନ୍ତେ ରାଜ୍ୟପାଳଇ ସେ ପୃଥୁ ନୃପତି
ଧାନ ଯବ ଆଦିବୀଜ ପ୍ରଜାଏ ବୁଣନ୍ତି ।
ବହୁତ ଚାଷ କରନ୍ତେ ପୃଥ୍ୱୀ ବହି ରୋଷ
ବୁଣିଥିବା ବୀଜ ଯାକୁ ସବୁ କଲା ଗ୍ରାସ ।
ଯେତେଥର ବୁଣନ୍ତି ତା ସବୁ ଯାଏ ଖାଇ
ପ୍ରଜାଏ ଗୁହାରି କଲେ ରାଜାଆଗେ ଯାଇ ।
ବହୁତ କଷ୍ଟରେ ଆମ୍ଭେମାନେ କଲୁ ଚାଷ
ସହିଲୁ ଶୀତ ବରଷା ଖରାର ସେ ତ୍ରାସ ।
ଶସ୍ୟର ବୀଜ ବୁଣିଲୁ ପୃଥ୍ୱୀ ଦେଲା ଖାଇ
କି ଖାଇ ବଞ୍ଚିବୁଁ ଆମ୍ଭେ କହ ନୃପସାଇଁ ।
ପ୍ରଜାଙ୍କ ବିକଳ ସହି ନପାରି ରାଜନ
ମହାଋଷିଗଣଙ୍କୁ ସେ ଡାକି ସନ୍ନିଧାନ ।
ପଚାରିଲା କି କରିବି କହ ତା ଉପାୟ
ଋଷିଏ ବୋଇଲେ ଆହେ ପୃଥୁ ମହାରାୟ ।
ଧରିତ୍ରୀ ଶାସନ କଲେ ଉପୁଜିବ ଶସ୍ୟ
ଏରୂପେ ମୁନିଙ୍କ ଠହୁଁ ପାଇ ଉପଦେଶ ।
ଶରଯୋଚା ଧନୁଧରି ଉଠିଲା ରାଜନ
କ୍ରୋଧେ ବୋଇଲେ ପୃଥ୍ୱୀକି କରିବି ଶାସନ ।
ଏହିବାଣେ ବିଦାରିବି ପୃଥ୍ୱୀର ଛାତି
କାହିଁକି କରଇ ସେହି ଏ ଘୋର ଅନୀତି ।
ପ୍ରଜା କେମନ୍ତେ ବଞ୍ଚିବେ ନପାଇଲେ ଅନ୍ନ
ଏହା ତା ଯୋଗୁଁ ମରିବେ ଜୀବଜନ୍ତୁ ଗଣ ।
ଦେଖିବା ତାକୁ ରଖିବ କିଏ ତିନିପୁରେ
ଏମନ୍ତ କହି ଧାଇଁଲେ ରାୟେ କ୍ରୋଧଭରେ ।
ଭୟେ ମେଦିନୀ କୁଞ୍ଜର ରୂପକୁ ଧଇଲା
ଦୁର୍ଗମ ଘୋର କାନନ ଭିତରେ ଲୁଚିଲା ।
ଦେଖି ନପାରିଲେ ତାକୁ ପୃଥୁ ମହାରାୟ
ମହା ବୁଦ୍ଧିମନ୍ତ ସେହି ବେନର ତନୟ ।
ତପସିଦ୍ଧା ମୁନିଙ୍କି ଯେ ପଚାରିଲା ଯାଇ
ତୋହର ବାଣକୁ ପୃଥ୍ୱୀ ମହାଭୟ ପାଇ ।

ହସ୍ତିନୀ ରୂପରେ ବଣେ ଲୁଚିଛି ହେ ରାୟ
ମୁନିଙ୍କ ମୁଖୁଁ ଶୁଣିଣ ବେନର ତନୟ ।
ଘୋରବନେ ପଶି ଖୋଜେ ଧରି ଧନୁଶର
ଭୟରେ ତହୁଁ ଯେ ପୃଥ୍ୱୀ ହୋଇଣ କାତର ।
ଚିହ୍ନିପାରି ପୃଥୁ ତାକୁ ମାଇଲେକ ବାଣେ
ବାଣଖାଇ ସିଂହରୂପ ଧଇଲା ତକ୍ଷଣେ ।
ପୃଥୁ ସିଂହରୂପଧରି ଧାଇଁଲେ ପଛରେ
ଆଗେ ଆଗେ ସିଂହୀଧାଏଁ ନିବିଡ଼ ବନରେ ।
ଖାଲ ଢ଼ିପ ନ ମାନଇ ପଛକୁ ନ ଚାହେଁ
ସିଂହହିଁ ତେମନ୍ତେ ତାର ପଛେ ପଛେ ଧାଏଁ ।
କ୍ରୋଧେ ରଙ୍ଗବର୍ଣ୍ଣ ଆଖିକରି ନରପତି
ଶାଣଦିଆ ବାଣ ଏକ ବିନ୍ଧିଲେ ତଡ଼ତି ।
ସେ ବାଣଖାଇ ମେଦିନୀ ବ୍ୟାକୁଳେ ପଳାଇ
ପୁଣ ପୁଣ ବାଣ ତାକୁ ବିନ୍ଧେ ନରସାଇଁ ।
ସିଂହୀରୂପ ଛାଡ଼ି ତହୁଁ ମଇଁଷି ହୋଇଲା
ପୃଥୁରାଜା ଆଗେ ଆଗେ ବେଗେ ପଳାଇଲା ।
ଧନୁଶର ଧରି ପଛେ ପଛେ ନୃପବର
ଚକ୍ଷୁ ରଙ୍ଗବର୍ଣ୍ଣ କରି ଧାଏଁ ନିରନ୍ତର ।
ତହୁଁ ସେ ପୃଥ୍ୱୀଭୟରେ ଗୋରୂପ ଧଇଲା
ପୃଥୁରାଜା ଦେଖୁ ଦେଖୁ ଶୂନ୍ୟମାର୍ଗେ ଗଲା ।
ଅମରାବତୀ କଟକେ ପଶିଲା ସେ ଯାଇଁ
ଶରଣ ଶରଣବୋଲି ଉଚ୍ଚେ ଫୁକାରଇ ।
ଆହୋ ଇନ୍ଦ୍ରଦେବତା ତୋ ଚରଣେଶରଣ
ମୁହିଁ ଧରଣୀକରିଛି ଗୋରୂପ ଧାରଣ ।
ବେନ ନନ୍ଦନ ପୃଥୁର ମହାଭୟ ପାଇ
ରଖରଖ ବାରେ ମୋତେ ତୁହୋ ସୁରସାଇଁ ।
ଇନ୍ଦ୍ରଦେବତା ଗୁରୁଙ୍କ ମୁଖକୁ ଚାହିଁଲେ
ସୁଧର୍ମା ସଭାରେ ସବୁ ଦେବେ ବସିଥିଲେ ।
ଚନ୍ଦ୍ର ସୂର୍ଯ୍ୟ ଯମ ଆଦି ସବୁ ଦିଗପାଳ
ବୃହସ୍ପତି ବୋଇଲେହୋ ଶୁଣ ଆଖଣ୍ଡଳ ।
ପୃଥ୍ୱୀକି ତୁମ୍ଭେଯେ କେହି ରଖି ନପାରିବ
ପୃଥୁରାଜ ବାଣେ ନିଶ୍ଚେ ସନ୍ତାପିତ ହେବ ।
ଅଧର୍ମ କରିଛି ଏହି ଗୋରୂପା ଧରଣୀ
ପୃଥୁରାଜା ଅଟଇ ଯେଧର୍ମବନ୍ତ ପ୍ରାଣୀ ।
ଏହାକୁ ତା ବିନା କେହି ରଖି ନପାରିବେ
ବୃହସ୍ପତି ମୁଖଁ ଶୁଣି ଡ଼ରେ ସର୍ବ ଦେବେ ।

ବୋଇଲେ ପୃଥ୍ୱୀଗୋରଖିନପାରିବୁଁ ତୋତେ
ଶରଣ ପଶ ତୁ ଯାଇଁ ପୃଥୁ ପାଦଗତେ ।
ଦେବଙ୍କ ମୁଖୁଁ ଏସନ ପୁଣି ସେ ଧରଣୀ
ତହୁଁ ବେଗେ ପଳାଇଲା ଯହିଁ କୁଶପାଣି ।
ଦୂରୁ ଦେଖି ଉଚ୍ଚେବୋଲେ ଶରଣ ଶରଣ
ତୁହୋ କୁଶଧାରୀ ବ୍ରହ୍ମା ଜଗତ କାରଣ ।
ମୁହିଁ ଯେ ପୃଥିବୀ ବେନ ରାଜାସୁତ ଭୟେ
ଶରଣ ପଶିଲି ଗୋରୁରୂପେ ତୋର ପାୟେ ।
ସାକ୍ଷାତରେ ଦେଖ ମୋର ଦେହଯାକ ବାଣ
ନିଶ୍ଚେ ପୃଥୁରାଜା ଆଜି ଘେନିବ ମୋ ପ୍ରାଣ ।
ବ୍ରହ୍ମା ବୋଇଲେ ଅନୀତି କଲୁ କାହିଁପାଇଁ
ପୃଥୁବିନା ତୋତେ ରଖି ନପାରିବେ କେହି ।
ବେଗେ ଯାଇଁ ପୃଥୁପାଦେ ପଶ ଯା ଶରଣ
ଏମନ୍ତ ବ୍ରହ୍ମା ମୁଖରୁ ଶୁଣି ଭୟେ ପୁଣ ।
କଇଳାସପୁରେ ରୁଦ୍ରପାଶରେ ମିଳିଲା
ହରହର ଦୁଃଖ ମୋର ହରହେ ବୋଇଲା ।
ଗୋରୂପଧାରିଣୀ ମୁହିଁ ଧରଣୀ ଅଟଇ
ବେନପୁତ୍ର ପୃଥୁଭୟେ ଶରଣ ପଶଇ ।
ପ୍ରଳୟ କରତା ତୁମ୍ଭେ ଯୋଗୀନ୍ଦ୍ର ପୁରୁଷ
ତୋହର ମହିମା ନାଥ ଅଶେଷ ଅଶେଷ ।
ରଖ ରଖ ମୋର ପ୍ରାଣ ତୁହୋ ପଞ୍ଚମୁଖ
ସର୍ବାଙ୍ଗେ ଲାଗିଛି ପୃଥୁବାଣ ଦେଖ ଦେଖ ।
ରୁଦ୍ରବୋଇଲେ ମୁଁ ତୋତେ ରଖିନପାରଇ
ଅଧର୍ମକାରିଣୀ ତୁହିଁ ବୀଜ ଯାଉ ଖାଇ ।
ଜଗତଜନ ବଇରି ଅଟୁତୁ ଧରଣୀ
ରଖିଲେ ରଖିବ ଏକା ପୃଥୁ ବୀରମଣି ।
ଏମନ୍ତ ଶୁଣି ରୁଦ୍ରଙ୍କ ମୁଖୁ ସେ ମେଦିନୀ
ଭୟେ ତହୁଁ ପଳାଇଲା ଯହିଁ ଚକ୍ରପାଣି ।
କ୍ଷୀରାର୍ଣ୍ଣବଶାୟୀ ହରି ଶୋଇଛି ନିଶ୍ଚିନ୍ତେ
ପାଦ ମଞ୍ଜାଳନ୍ତି ଲକ୍ଷ୍ମୀଦେବୀ ଆସ୍ତେ ଆସ୍ତେ ।
ଉଚ୍ଚରେ ରୋଦନକରି ବୋଲଇ ଧରଣୀ
ଶରଣସୋଦର ନାଥ ଶଙ୍ଖ ଚକ୍ରପାଣି ।
କରୁଣାସାଗର ହରି ଭୟ ନିବାରଣ
ଶରଣ ଶରଣ ନାଥ ତୋର ଶ୍ରୀଚରଣ ।
ମୁହିଁ ଯେ ଧରଣୀ ତୋର ପାଦତଳେ ଦାସୀ
ମୋତେ ରକ୍ଷାକର ମୁହିଁ ଅଟଇ ନିର୍ଦୋଷୀ ।

ବିନାଦୋଷେ ବେନସୁତ ପୃଥୁ ମହାରାୟ
ଶରେ ଛାଇ ଦେଇଅଛି ଦେଖମୋର କାୟ ।
ଡରେ ଗଜ ସିଂହ ପୁଣି ମଇଁଷି ହୋଇଲି
ତଥାପି ତା ବାଣୁ ମୁହିଁ ରକ୍ଷା ନପାଇଲି ।
ଭୟେ ପୁଣି ଗୋରୁରୂପ ଧରିବାରୁ ମୋତେ
ଗୋବଧ ପାପକୁ ଡରି ରହିଲା ଚକିତେ ।
ପୃଥୁର ବିକଳ ଦେଖି ଅନ୍ତର୍ଯ୍ୟାମୀ ନାଥ
ବୋଇଲେ ଶରଣ ପଶ ପୃଥୁ ପାଦଗତ ।
ପୃଥୁବିନା ତୋତେ ରଖି ନପାରିବେ କେହି
ଏମନ୍ତ ଯହୁଁ କହିଲେ ଦେବ ଭାବଗ୍ରାହୀ ।
ତହୁଁ ସେ ମେଦିନୀ ଆସି ପୃଥୁରାଜା ପାଦେ
ଶରଣ ପଶି ବୋଇଲା ରଖ ରଖ ହାଦେ ।
ପାଦତଳେ ପଡ଼ି ପୁଣି ଉଠି ଯୋଡ଼ିକର
ବୋଇଲା ନିରେଖ ମୁହିଁ ରଖ ନୃପବର ।
ସଚରାଚର ବ୍ରହ୍ମାଣ୍ଡ ମୁହିଁ ଅଛି ଧରି
ସବୁରି ଆଧାର ମୋର ନାମ ବସୁନ୍ଧରୀ ।
ମୋତେ ମାଇଲେସକଳେ ମରିବେ ତକ୍ଷଣେ
ଚଉଦ ଭୁବନେ କେହି ନରହିବେ ପ୍ରାଣେ ।
ସ୍ତିରୀହତ୍ୟା ମହାପାପ ନକର ରାଜନ
ଶିଶୁହତ୍ୟା ବ୍ରହ୍ମହତ୍ୟା ଗୋହତ୍ୟା ସମାନ ।
ଏ ମହାପାପ କିମ୍ପାଇଁ କରିବ ନୃପତି
ଅବଧସ୍ତିରୀ ସଂସାରେ ସକଳେ କହନ୍ତି ।
ମୋତେମାରି ତୁ ପ୍ରଜାଙ୍କୁ ପାଳିକୁ କେମନ୍ତେ
ମୁଁ ହଲିଲେ ହଲନ୍ତି ଯେ ସକଳେ ଜଗତେ ।
ମୁହିଁ ସ୍ଥିର ହୋଇଥିଲେ ଜଗତ ସୁସ୍ଥିର
ଚରାଚର ଜଗତର ମୁହିଁ ଯେ ଆଧାର ।
ତୁମ୍ଭେ ଯେବେ ପ୍ରଜାଙ୍କର ମଙ୍ଗଳ ଚାହିଁଛ
ନମାର ମୋତେ କଦାପି ବେନରାଜା ବସ ।
ମୁଁ ଯାହା କହୁଛି ଶୁଣ ଆହେ ମହୀପାଳ
ସବୁ ଆରମ୍ଭର ମୂଳ ଉପାୟ କେବଳ ।
ତୋର ପ୍ରଜାଜନ ଯେହ୍ନେ ରହିବେ ଜୀବନେ
ତାହାର ଉପାୟ ତୁମ୍ଭେ କର ସାବଧାନେ ।
ମୋତେ ବିନାଶିଲେ ପ୍ରଜା ନ ବଞ୍ଚିବେତୋର
କାହାକୁ ଘେନି କାହିଁରେ ହେବୁ ନୃପବର ।
କୋପତେଜି ସୁଖେ କର ପ୍ରଜାଙ୍କୁ ପାଳନ
ମୋତେ ମାରି ମହାପାପୀ ନହୁଅ ରାଜନ ।

ପଶୁପକ୍ଷୀ ନାରୀ ମାରି ଏ ସଂସାର ଜନେ
ପ୍ରାୟଶ୍ଚିତ୍ତ କରନ୍ତି ଯେ ଶାସ୍ତ୍ରର ବଚନେ ।
ଧର୍ମଛଡ଼ା ନହୁଅ ତୁ ଆହେ ନୃପମଣି
ଏରୂପେ ନାନାକଥାରେ ପ୍ରବୋଧି ଧରଣୀ ।
ବୋଇଲା ତୁମ୍ଭେ ପ୍ରସନ୍ନ ହେବ ହେବି ସ୍ଥିର
ଦୀନ ଗୋପୀନାଥ ଭଜେ ଅଚ୍ୟୁତ ପୟର ।
ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ପୃଥୁଚରିତଂ
ନାମ ଅଷ୍ଟାବିଂଶୋଽଧ୍ୟାୟଃ ।



## ଉନବିଂଶ ଅଧ୍ୟାୟ

## ପୃଥିବୀ ଦୋହନ

ପୃଥିବୀ ମୁଖୁଁ ଏମନ୍ତ ଶୁଣି ପୃଥୁରାଜା
ବୋଇଲା ଆଗୋ ଧରଣୀ କଶ୍ୟପ ଆତ୍ମଜା
ମାଇଲେ ଯେବେକି ଏକ କଦାଚାରି ଜନ
ସୁଖରେ ଯାଇ ଅନେକ ସାଧୁଙ୍କ ଜୀବନ ।
ତେବେ ସେହି ପାପାତ୍ମାକୁ ମାରିବା ଉଚିତ
ଏଥିରେ ଦୋଷ ନହେବନାହିଁ ପ୍ରାୟଶ୍ଚିତ ।
ସର୍ବପ୍ରାଣୀ ବିନାଶିନୀ ଯେଣୁ ତୁ ଧରଣୀ
ତୋତେ ମାରିବାକୁ କଥା ଉଚିତ ମୁଁ ମଣି ।
ତୁ ଯେଣୁ ସକଳ ଶସ୍ୟ ବୀଜକରୁ ଗ୍ରାସ
ତୋ ଯୋଗୁଁ ଏ ଚରାଚର ପ୍ରାଣୀଯାଏ ନାଶ ।
ପ୍ରଜାକ୍ଷୟକାରିଣୀ ତୁ ଯେଣୁ ଗୋ ଧରଣୀ
ମହାପାପିନୀ ଆବର ତୁ ଦୁରାଚାରିଣୀ ।
ଆପଣା ଅର୍ଥେ ପରାର୍ଥେ ପାପୀ ଦୁରାଚାରୀ
ନମାରି ସାଧୁଲୋକ କି ଥୟ ହୋଇପାରି ।
ପାପିକି ବଧିଲେ ପାପ ନଲାଗଇ କେଭେ
ସ୍ତିରୀ ଗୋରୁ ବିପ୍ର ପାପୀ ଦୁରାଚାରୀ ଯେବେ ।
ତାହାକୁ ବଧି ସାଧୁଙ୍କୁ ପାଳିବାହିଁ ଧର୍ମ
ଏ ମୋର ନୁହଇ କେଭେ ଧର୍ମଛଡ଼ା କର୍ମ ।
ଦୁଷ୍ଟମାରି ଶିଷ୍ଟରକ୍ଷା କର୍ମହିଁ ମୋହର
ମୋର କଥା ନକଲେ ତୁ ଯିବୁ ଯମଘର ।
ଜଗତର ହିତପାଇଁ ଆଗୋ ବସୁମତୀ
ନିଶିତ ଶରେ କରିବି ତୋତେ ବିନଶ୍ୟତି ।
ମୋର ଧର୍ମବଳେ ମୁହିଁ ରଖିବି ଜଗତ
ପାପପାଇଁ ଏହି ପୃଥୁରାଜା ନୋହେ ଭୀତ ।

ଚରାଚର ଜଗତକୁ ପାଳିବୁ ତୁ ଯେବେ
ମୋ ବାଣରୁ ତ୍ରାହିପାଇ ରହିବୁ ତୁ ତେବେ ।
ମୋହର ଏକଥା କଲେ ହୋଇବି ପ୍ରସନ୍ନ
ରକ୍ଷା କରୁଥିବି ମୁହିଁ ତୋତେ ପ୍ରତିଦିନ ।
ସେପ୍ରାୟଅନ୍ୟରାଜାଏ ତୋତେ ଗୋ ରଖିବେ
ପୃଥୁକଥା ଆନ କରିବାକୁ ନାହିଁ ଭବେ ।
ବାଣପୀଡ଼ିତା ମେଦିନୀ ଗୋ ରୂପଧାରିଣୀ
ଧର୍ମ ଅବତାର ପୃଥୁରାଜା କଥା ଶୁଣି ।
ବୋଇଲା ହେ ମହାରାଜ ତୋର ଏ ବଚନ
ସତ୍ୟ କହୁଅଛି ନିଶ୍ଚେ କରିବି ପାଳନ ।
ଯଥାର୍ଥ କଥା ତୁମ୍ଭର ଧର୍ମେ ଥାଏ ମତି
ଉପାୟ ଉଦ୍ୟମ ବିନେ ଆହେ ନରପତି ।
କେହି କିଛି କାର୍ଯ୍ୟକରି ନପାରନ୍ତି ଜାଣ
ଯେଣେ ତୁମ୍ଭେ ସତ୍ୟବନ୍ତ ହେବ ନରରାଣ ।
ସେ ଉପାୟ ସ୍ଥିରକର ତୁମ୍ଭ ବୁଦ୍ଧିବଳେ
ସବୁ ପ୍ରଜାଙ୍କୁ ପାଳିବ ଯେଉଁ କଉଶଳେ ।
ତୁମ୍ଭ ଶାଣଦିଆ ବାଣ ମୋ ଦେହରେ ରହି
ବେଳୁଁ ବେଳଯେ ବିକଳକରେ ମୋରଦେହୀ ।
ତୁମ୍ଭେ ତାହା କାଢ଼ିନେଲେ ସୁସ୍ଥ ମୁଁ ହୋଇବି
ପାଣି ଢ଼ାଳିଲେ ମୁଁ ସ୍ଥିର ହୋଇଣ ରହିବି ।
ପୀଡ଼ା ଦୂରକର ମୋର ଆହୋ ନୃପବର
ମୁନିଙ୍କ ଆଗେ କହନ୍ତି ସୁତ ମୁନିବର ।
ମେଦିନୀ ମୁଖୁଁ ଏମନ୍ତ ଶୁଣି ମହୀପତି
ଧନୁହୁଳେ ଖାଲଢ଼ିପ ସମକଲେ ଧାତି ।
ଶଇଳକୁଳ ବେଢ଼ିଲେ ସେଦିନୁ ହେ ଜାଣ
ପୃଥ୍ୱୀଅଙ୍ଗୁ ପୃଥୁରାଜା କାଢ଼ିନେଲେ ବାଣ ।
ପର୍ବତକନ୍ଦର ଗୁହା ଗର୍ତ୍ତଥିଲା ଯେତେ
ସମତୁଲକଲେ ସବୁରାଜା ବାଣାଘାତେ ।
ଏମନ୍ତେ ପୃଥିବୀଯାକ ସମତୁଲ କରି
ବାଛୁରୀ ଏକ କଳ୍ପନାକଲେ ଦଣ୍ଡଧାରୀ ।
ବିଷମଭୂମି ଯେ ଥିଲା ଗତ ମନ୍ୱନ୍ତରେ
ଯିବା ଆସିବାର ପଥ ନଥିଲା ତହିଁରେ ।
ବହୁତ ସମ ବିଷମ ଥିଲା ମୁନିଗଣ
ଧରାତଳ ଗ୍ରାମପୁର ଦେଶ ଯେ ପତ୍ତନ ।
ଏଥିରେ ଯେ କିଛିମାତ୍ର ମର୍ଯ୍ୟାଦା ନଥିଲା
କୃଷି ବାଣିଜ୍ୟ ଗୋରକ୍ଷା ବିଧାନ ନଥିଲା ।

ମିଛହିଁ ନଥିଲା ପୁଣି ଗତ ମନ୍ୱନ୍ତରେ
ଅଭିମାନହିଁ ନଥିଲା କାହାରି ମନରେ ।
ପୃଥୁଜନ୍ମ ପୂର୍ବେ କିଛି ପାପହି ନଥିଲା
ସେ ସମୟେ ଜନପ୍ରଜା ସୃଷ୍ଟି ଜାଣ ହେଲା ।
ସମସ୍ତେ ଘର କରିବା ପାଇଁ କଲେ ମନ
ଭୂମିର ଉପରେ ଘରକଲେ ପ୍ରଜାଜନ ।
ପର୍ବତ ଉପରେ କେହି କେହି ନଦୀତୀରେ
ନିକୁଞ୍ଜ କାନନେ ତୀର୍ଥେ ସମୁଦ୍ରକୂଳରେ ।
ଫଳ ମୂଳ ମହୁ ଥିଲା ତାହାଙ୍କ ଆହାର
ଅତିକଷ୍ଟେ କରୁଥିଲେ ସଂଗ୍ରହ ତା ନର ।
ପ୍ରଜାଙ୍କ କଷ୍ଟ ଦେଖିଣ ପୃଥୁ ଦଣ୍ଡଧାରୀ
ସ୍ୱାୟମ୍ଭୁବ ମନୁଙ୍କୁ ସେ କଲେକ ବାଛୁରୀ ।
ଆପଣାହସ୍ତକୁ ପାତ୍ର କଳପନା କରି
ପୁରୁଷସିଂହ ସେ ପୃଥୁ ପୃଥ୍ୱୀ ଚିରଧରି ।
ସର୍ବ ଶସ୍ୟମୟ କ୍ଷୀର ଦୁହିଁଲେ ବହୁତ
ଆବର ସବୁପ୍ରକାର ଅନ୍ନ ତା ସହିତ ।
ସୁଧାକଳ୍ପ ଅନ୍ନଖାଇ ପ୍ରଜାଏ ତୃପତି
ହେବାର ଦେଖି ଆନନ୍ଦ ହେଲେ ମହୀପତି ।
ଦେବତା ଦ୍ୱିଜପିତୃଙ୍କୁ କରାଇଲେ ତୋଷ
ପୃଥୁପ୍ରସାଦେ ସନ୍ତୋଷ ସବୁ ଗ୍ରାମଦେଶ ।
ଦେବତା ପିତୃବ୍ରାହ୍ମଣ ଅତିଥି ଆବର
ଅନ୍ନଦେଇଣ ସନ୍ତୋଷ କଲେ ନୃପବର ।
ଯଜ୍ଞେ ପ୍ରଜା ତୋଷକଲେ ଦେବ ଜନାର୍ଦ୍ଦନ
ବିଷ୍ଣୁତୃପତେ ତୃପତ ଚରାଚର ଜନ ।
ଦେବତା ଆଦି ଯେତେକ ଖେଚର ଭୂଚର
ସମସ୍ତଙ୍କୁ ତୋଷକରି ପୃଥୁ ନରବର ।
ସନ୍ତୋଷେ ବିଷ୍ଣୁମେଘଙ୍କୁ ଦେଲେଯେ ପଠାଇ
ଭୂମିର ଉପରେ ଜଳ ବରଷିଲେ ଯାଇଁ ।
ତହିଁ ନାନାଦି ଔଷଧବୃକ୍ଷ ଉପୁଜିଲା
ପୃଥୁଯୋଗୁଁ ନାନାଶସ୍ୟ ଭୂମିରେ ଫଳିଲା ।
ଆଜିଯାଏ ଯାହାଖାଇ ବଞ୍ଚୁଛନ୍ତି ଜନେ
ଏଥୁଅନ୍ତେ ଯାହାହେଲା ଶୁଣ ଋଷିଗଣେ ।
ସତ୍ୟନିଷ୍ଠ ବିପ୍ର ଋଷି ଗଣ ଦେବଗଣ
ବସୁନ୍ଧରାକୁ ତହିଁରେ କହୁଛି ଯେସନ ।
ଗୁରୁ ବୃହସ୍ପତି ହେଲେ ଦୋହନ କରତା
ବାଛୁରୀହେଲେ ତହିଁରେ ସୋମଯେଦେବତା ।

ଦୁଗ୍ଧତୁଲ୍ୟ ଉର୍ଜରୀର କଲେ ସେ ଦୋହନ
ଦେବଗଣଙ୍କର ହେଲା ସେ କ୍ଷୀର ଜୀବନ ।
ତାଙ୍କ ସତ୍ୟ ପୁଣ୍ୟବଳେ ପ୍ରାଣୀଏ ବଞ୍ଚନ୍ତି
ଶୁଣ ପିତୃଗଣଙ୍କର ଦୁହିଁବାର ରୀତି ।
ଅନ୍ତକ ଦୁହିଁଲା କରି ଯମକୁ ବାଛୁରୀ
ରଜତ ପାତ୍ରରେ ସ୍ୱାଧା କ୍ଷୀର ଦୁହିଁ ଧରି ।
ତହୁଁ ନାଗସର୍ପେ ମିଳି ଧରାକୁ ଦୁହିଁଲେ
ଦୋହନକରତା ଧୃତରାଷ୍ଟ୍ର ନାଗ ହେଲେ ।
ଅତି କଷ୍ଟ ନାଗ ମହା ପ୍ରତାପୀ ଅଟଇ
ତକ୍ଷକ ନାଗ ବାଛୁରୀ କରି ବିଷ ଦୁହିଁ ।
ସବୁ ନାଗସାପଙ୍କର ଏ ବିଷ ଜୀବନ
ବିଷଯୋଗୁଁ ଭୟଙ୍କର ହେଲେ ସର୍ବଗଣ ।
ମହାକାୟ ମହାବଳ ମହାବୀର୍ଯ୍ୟ ହେଲେ
ତହୁଁ ଅସୁରେ ଦାନବେ ଯେରୂପେ ଦୁହିଁଲେ ।
ତାହା କହୁଅଛି ଶୁଣ ଏବେ ମନ ଦେଇ
ମହାବଳବନ୍ତ ମଧୁଦୈତ୍ୟ ଯେ ଅଟଇ ।
ଦୋହନକରତା ହେଲା ସେ ମଧୁଦଇତ
ବାଛୁରୀ ହେଲା ତହିଁରେ ବିରୋଚନ ଦୈତ୍ୟ ।
ଦୁହିଁଲେ ଲୁହାରେ ଏକ ପାତ୍ର ଗଢ଼ିକରି
ସବୁ କାମନା ସେ ଲୋହପାତ୍ରେ ଅଛି ପୂରି ।
ଦୁହିଁଲେ ସକଳେ ମିଳି ମାୟାମୟ କ୍ଷୀର
ସକଳ ଶତ୍ରୁ ନାଶନକାରୀ ସେହି କ୍ଷୀର ।
ସେ ମାୟାକ୍ଷୀର ଯୋଗେସେ ହୋଇଲେ ଚତୁର
ପରାକ୍ରମୀ ମହାକାୟ ବଳିଷ୍ଠ ଆବର ।
ତାଙ୍କ ବଳ ପଉରୁଷ ଜୀବନହିଁ ମାୟା
ସେ ମାୟାଯୋଗୁଁ ସେ ସବୁ ଅଟନ୍ତି ନିର୍ଦ୍ଦୟ ।
ଆଜିଯାଏ ରହିଅଛି ସେ ମାୟା ତାଙ୍କର
କହୁଛି ଶୁଣ ଦୋହନ ବିଧି ଯକ୍ଷଙ୍କର ।
ରଜତନାଭ ନାମରେ ଯକ୍ଷ ରାଜା ସୁତ
ବୁଦ୍ଧିମନ୍ତ ତପୋବନ୍ତ ମହା ତେଜୋବନ୍ତ ।
ଆଠଗୋଟା ବାହୁ ତାର ଦୁଇଗୋଟା ଶିର
ପୁଣ୍ୟାତ୍ମା ସେ ପୁଣି ମଣିନାଭର ପିଅର ।
ଦୋହନକରତା ହେଲା ସେହି ଯକ୍ଷପତି
ବଇଶ୍ରବଣଙ୍କୁ ବତ୍ସ କରିଣ ଦୁହନ୍ତି ।
ଅନ୍ତର୍ଦ୍ଧାନମୟ କ୍ଷୀର ଲୁହାପାତ୍ରେ ଦୁହିଁ
ସେ ଲୁହାପାତ୍ର ଅତ୍ୟନ୍ତ ବିସ୍ତାର ଅଟଇ ।
ସେହି କ୍ଷୀର ହେଲା ଜାଣ ତାଙ୍କର ଜୀବନ
ତହୁଁ ରାକ୍ଷସେ ପିଶାଚେ କଲେକ ଦୋହନ ।
ମହାକ୍ରୋଧୀ ପରାକ୍ରମୀ ପିଶାଚେ ରାକ୍ଷସେ
ସୁପ୍ରଜାଗଣ ସହିତେ ଭୋଗ ଅଭିଳାଷେ ।
ଦୋହନ ପାତ୍ର ସେ ନରକପାଳକୁ କରି
ସୁମାଳି ରାକ୍ଷସ ହେଲା ତାମଧ୍ୟେ ବାଛୁରୀ ।
ରଜତନାଭ ରାକ୍ଷସ ଗାଈକି ଦୁହିଁଲା
ଶୋଣିତ କ୍ଷୀର ଦୁହିଁଣ ପାତ୍ରରେ ଭରିଲା ।
ରାକ୍ଷସ ପିଶାଚ ଯକ୍ଷ ଭୂତ ପ୍ରେତ ଯେତେ
ଜୀବନ ଧାରଣକଲେ ସେ କ୍ଷୀର ଶୋଣିତେ ।
ତହୁଁ ଗନ୍ଧର୍ବେ ଦୁହିଁଲେ ଅପସରା ଘେନି
ସୁରୁଚି ନାମେ ଗନ୍ଧର୍ବ ଦୁହିଁଲା ମେଦିନୀ ।
ଚିତ୍ରରଥ ଗନ୍ଧର୍ବକୁ କରିଣ ବାଛୁରୀ
ଗୀତ ଦୁହିଁଲେ ପଦ୍ମରେ କ୍ଷୀର ପାତ୍ରକରି ।
ଅପସରା ଗନ୍ଧର୍ବଙ୍କ ଜୀବନ ସେ ଗୀତ
ତହୁଁ ପୃଥ୍ୱୀକି ଦୁହିଁଲେ ସକଳ ପର୍ବତ ।
ଶିଳାଜତୁପାତ୍ରେଧରି କଲେକ ଦୋହନ
ମେରୁ ଦୁହିଁଲା ବାଛୁରୀ ହେଲା ହିମବାନ ।
ଦୁହିଁଲେ ସୁଧା ଔଷଧି ନାନାରତ୍ନ କ୍ଷୀର
ସେ କ୍ଷୀର ସେଦିନହେଲା ଜୀବନ ତାଙ୍କର ।
ତହୁଁ କଳ୍ପଦ୍ରୁମ ଆଦି ବୃକ୍ଷଗଣେ ମିଳି
ଦୋହନ ପାତ୍ର ପଳାଶ ପତ୍ରକୁ ଯେ କରି ।
ଶାଳୁଆ ଗଛ ଦୁହିଁଲା ଧରି ବସୁନ୍ଧରୀ
ବଟବୃକ୍ଷ ହୋଇଲା ଯେ ତହିଁରେ ବାଛୁରୀ ।
ଛିନ୍ନ ଦଗ୍ଧ ପ୍ରରୋହଣ କ୍ଷୀରକୁ ଦୁହିଁଲେ
ସେ କ୍ଷୀର ଖାଇ ସେସବୁ ଜୀବନେ ରହିଲେ ।
ତହୁଁ ଗୁହ୍ୟକ ଚାରଣ ସିଦ୍ଧ ବିଦ୍ୟାଧରେ
କାମନା କ୍ଷୀର ଦୁହିଁଲେ ସୁବର୍ଣ୍ଣ ପାତ୍ରରେ ।
ଯେଯାହା କାମନାକଲେ ତହୁଁ ସେ ଦୁହିଁଲେ
ଯେତେ ଜୀବଜନ୍ତୁ ଏହି ପୃଥିବୀରେ ଥିଲେ ।
ସର୍ବକାମ ପ୍ରଦାୟିନୀ ଧାତ୍ରୀ ଏ ବିଧାତ୍ରୀ
ବସୁନ୍ଧରା ବସୁମତୀ ପୃଥିବୀ ଧରିତ୍ରୀ ।
ସର୍ବକାମଦୁଘା ଧେନୁ ଜ୍ୟେଷ୍ଠା ଏ ପ୍ରତିଷ୍ଠା
ସର୍ବଶସ୍ୟ ପ୍ରଦାୟିନୀ ସର୍ବମାତୃ ଶ୍ରେଷ୍ଠା ।
ସର୍ବବୀଜ ପ୍ରରୋହିଣୀ ପୁଣ୍ୟଦା ପାବନୀ
ସର୍ବ ଚରାଚର ଜୀବ ଜନ୍ତୁଙ୍କର ଜନି ।

ସର୍ବ ମଙ୍ଗଳ ଜନନୀ ସର୍ବ ଲୋକଧରା
ସର୍ବବିଶ୍ୱମୟୀ ମହାଲକ୍ଷ୍ମୀ ବିଶ୍ୱମ୍ଭରା ।
ପୁଣ୍ୟମୟୀ ପ୍ରଜା ସୃଷ୍ଟି ପଞ୍ଚଭୂତମୟୀ
ମଧୁ କଇଟଭ ମେଦରୂପା ଏହି ମହୀ ।
ପୃଥୁରାଜା ଦୁହିଁବାରୁ ପୃଥ୍ୱୀନାମ ହେଲା
ସେହି ପୃଥୁରାଜ ଏହି ପୃଥ୍ୱୀକି ପାଳିଲା ।
ଗ୍ରାମ ଗୃହ ପୁର ଦେଶ ମଣ୍ଡଳ ପତ୍ତନ
ବସାଇ ଏ ପୃଥ୍ୱୀକି କଲାକ ଶୋଭନ ।
ଶସ୍ୟମୟୀ ଦୁଗ୍ଧମୟୀ ତୀର୍ଥମୟୀ କଲା
ସର୍ବଲୋକମୟୀ କରି ପୃଥ୍ୱୀ ପାଳିଲା ।
ସର୍ବକର୍ମକାରୀ ପୃଥୁ ବେନର ନନ୍ଦନ
ରାଜେନ୍ଦ୍ର ନାମେ ପୁରାଣ ହୋଇଛି ବଖାଣ ।
ସନାତନ ବିଷ୍ଣୁ ବ୍ରହ୍ମା ରୁଦ୍ର ଦେବ ପ୍ରାୟେ
ବିପ୍ର ଋଷିଗଣଙ୍କର ପୂଜ୍ୟ ପୃଥୁ ରାୟେ ।
ବର୍ଣ୍ଣ ଆଶ୍ରମ ସ୍ଥାପନ କରିବାରୁ ମୂଳ
ରାଜା ବୋଲନ୍ତି ଏହାକୁ ସର୍ବଲୋକପାଳ ।
ପାର୍ଥିବ ନାମ ବହିଲେ ସେ ଦିନୁ ରାଜାଏ
ଧନୁର୍ବେଦ ପଢ଼ିବାକୁ ଯାର ମନଥାଏ ।
ସେ ଯୋଦ୍ଧାଗଣ ଆବର ଜୟକାମୀ ନରେ
ପ୍ରଣାମ କରିବେ ଆଗ ପୃଥୁର ପୟରେ ।
ଶୁଣିଲତ ଦ୍ୱିଜଗଣ ପୃଥୁର ଚରିତ
ଶୁଣିବା ଲୋକେ ପାପରୁ ହୁଅନ୍ତି ମୁକତ ।
ପ୍ରତିଦିନ ଗଙ୍ଗାସ୍ନାନ ଫଳ ସେ ପାଆନ୍ତି
ମରଣାନ୍ତେ ବିଷ୍ଣୁଲୋକେ ଯାଇ ସେ ବସନ୍ତି ।
ଯେଉଁ ବିଷ୍ଣୁଲୋକ ଯୋଗ ମୁନିଙ୍କ ଦୁର୍ଲଭ
ଗୋପୀନାଥକୁ ସେ ଲୋକ ଦିଅ ଶ୍ରୀ ମାଧବ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ
ପୃଥୁପାଖ୍ୟାନଂ ନାମ
ଊନବିଂଶୋଽଧ୍ୟାୟଃ ।



## ତ୍ରିଂଶ ଅଧ୍ୟାୟ

### ବେନରାଜା ଚରିତ

ପଚାରିଲେ ଋଷିଗଣ ଆହେ ଦ୍ୱିଜବର
କହିଲ ଯେ କଥା ପାପାଚାରୀ ସେ ବେନର ।
ସେ ପାପୀର ବୃତ୍ତି ଆଉ ଚରିତ୍ର କେମନ୍ତ
ପାପର ଫଳ କିରୂପେ ପାଇଲା ଦୁର୍ଦ୍ଦାନ୍ତ ।
ବିସ୍ତାର କରି କହିବା ହେଉ ଆମ୍ଭ ଆଗେ
ଏମନ୍ତ ଶୁଣି କହନ୍ତି ସେ ସୂତ ସରାଗେ ।
ପୃଥୁଜନ୍ମ ପୂର୍ବେ ଶୁଣିଥିଲ ତୁମ୍ଭେ ଯାହା
କହୁଛି ବେନି ଚରିତ୍ର ଏହିକ୍ଷଣି ତାହା ।
ପୁଣ୍ୟଆତ୍ମା ପୃଥୁରାଜା ଜନମିବା ମାତ୍ରେ
ବେନର ଯେ ଧର୍ମ ଉଦେ ହେଲା ହୃଦଗତେ ।
ସକଳ ପାପ ଅରଜିଥିଲା ନରାଧମ
ତୀର୍ଥ ସଙ୍ଗ ପ୍ରସଙ୍ଗରୁ ହେଲା ଉପଶମ ।
ସତସଙ୍ଗୀ ସଙ୍ଗଯୋଗୁଁ ପୁଣ୍ୟହୋଏ ଉଦେ
ପାପୀସଙ୍ଗ ସଂସର୍ଗରେ ପଡ଼ନ୍ତି ପ୍ରମାଦେ ।
ତୀର୍ଥସ୍ନାନ କରି ପାପୀ ପାପକୁ ଛଡ଼ାଇ
ତୀର୍ଥସ୍ଥାନ ମାଡ଼ି ମହା ପୁଣ୍ୟଫଳ ପାଇ ।
କହିଲେ ସେ ଋଷିଗଣ ଆହେ ଦ୍ୱିଜବର
କିରୂପେ ପରମ ସିଦ୍ଧି ପାଏ ପାପୀ ନର ।
ଆମ୍ଭଆଗେ ସେ ସକଳ କହିବା ବିସ୍ତାରି
ଶୁଣିବାକୁ ଶରଧାତ ବଳିଛି ଆମ୍ଭରି ।
ସୂତମୁନି କହିଲେ ଯେ ଶୁଣ ଋଷିଗଣ
ଶବର ଦାସ ଧୀବର ଆଦି ପାପୀଜନ ।
ଗଙ୍ଗାଜଳେ ସ୍ନାନକରି ଜ୍ଞାନେ ବା ଅଜ୍ଞାନେ
ସଦଗତି ପାଇଛନ୍ତି ଶୁଣିଛୁଁ ପୁରାଣେ ।
ମହାନଦୀ ପୁଣ୍ୟତୋୟା ପ୍ରସଙ୍ଗେ ସେ ଜନ
ପାପଛଡ଼ାଇ ଅରଜିଛନ୍ତି ମହାପୁଣ୍ୟ ।
ଏଥିରେ ଅଛଇ ଏକ ଇତିହାସ କଥା
ପାପହାରିଣୀ ସେ ପୁଣ୍ୟଦାୟିନୀ ସର୍ବଥା ।
ସୁଲୋଭ ନାମରେ ବ୍ୟାଧ ଥାଏ ମହାବନେ
ତାସଙ୍ଗେ ଥାନ୍ତି ବହୁତ ମାଂସଲୋଭୀ ଶ୍ୱାନେ ।
ବାଗୁରି ଜାଲ ଆବର କରେ ଧନୁଶର
ଜାଲ ବେଢ଼ାରେ କୁକୁର ଘେରାଇ ଶବର ।
ବାଣମାରି ମୃଗପରି ମାରି ଖାଏ ନିତି
ସେ ପାପିଚାଣ୍ଡାଳ ବ୍ୟାଧକରେ ଏ ଅନୀତି ।
ଏକଦିନକର କଥା ଶୁଣ ଋଷିଗଣ
ଢାମଣା କାଠର ଧନୁ ବାଉଁଶର ଗୁଣ ।
ଫିରିଖି ନାରାଚ ଧରି ସେ ଚାଣ୍ଡାଳ ଗଲା
ଜାଲ କାନ୍ଧରେ ପକାଇ କୁକୁରଙ୍କୁ ନେଲା ।

ମୃଗ ରୁରୁ ବାରା ବାରେ ବିନ୍ଧ୍ୟବନେ ପଶି
ଏକାଳେ ଏକ ଧୀବର ରେବାତୀରେ ଆସି ।
ବହୁତ ମୀନ ମାରିଣ ଜଳୁ ବାହାରଇ
ମୃଗୁଣୀ ଏକ ସୁଲୋଭ ବ୍ୟାଧଭୟେ ଧାଇଁ ।
ତ୍ରସ୍ତବ୍ୟସ୍ତେ ଧାଇଁ ଧାଇଁ ହୋଇ ହତଜ୍ଞାନ
କରୁଣସ୍ୱରେ ଡାକଇ ରଖ ମୁଁ ଶରଣ ।
ପଳାଇ ପଳାଇ ଯାଇଁ ଜୀବନ ବିକଳେ
ଆର୍ତ୍ତନାଦ କରି ପଡ଼ିଗଲା ରେବାକୂଳେ ।
କାମୁଡ଼ି ଅଛନ୍ତି ତାକୁ ଗୋଡ଼ାଇ କୁକୁରେ
ଶବର ବିନ୍ଧିବା ବାଣ ଫୁଟିଛି ଶରୀରେ ।
ରୁଧିରରେ ଜର ଜର ସର୍ବାଙ୍ଗ ତାହାର
ଜଳରୁ ଉଠି ଆସନ୍ତେ ଦେଖିଲା ଧୀବର ।
ମୃଗୀକି ଦେଖିଣ ମାଂସ ଲୋଭେ ସେ ଧାଇଁଲା
ମୁନିଆ ଶର ଗୋଟାଏ ଧନୁରେ ଯୋଚିଲା ।
ମୃଗୁଣୀ ଆସେ ପଳାଇ ସୁଲୋଭ ଗୋଡ଼ାଇ
କୁକୁରମାନେ ତା ପଛେ ପଛେ ଛୁଟିଯାଇ ।
ଧୀବର ବାଣ ବିନ୍ଧିବା ଦେଖି ସେ ଶବର
ବୋଇଲା ଏହି ମୃଗୁଣୀ ଅଟଇ ମୋହର ।
ମୃଗୟା କରି ପାଇଛି ଏ ମୃଗୀକି ମୁହିଁ
ମୋର ବାଣଖାଇ ଡ଼ରେ ଆସିଛି ପଳାଇ ।
ତୁ ଏହାକୁ ନମାର ମୁଁ କହୁଅଛି ତୋତେ
ଦେଖ ମୋହର କୁକୁରେ ଅଛନ୍ତି ପଶ୍ଚାତେ ।
ତା କଥା ନଶୁଣେ ମାଂସଲୋଭୀ ସେ ଧୀବର
ବାଣ ବିନ୍ଧିଲା ଫୁଟିଲା ମୃଗୀର ଶରୀର ।
ବ୍ୟାଧବାଣେ ସୁକ୍ରୁ ସୁକ୍ରୁ ମୃଗୀ ହେଉଥିଲା
ଧୀବର ବାଣ ଫୁଟନ୍ତେ ପ୍ରାଣ ଛାଡ଼ିଗଲା ।
ଦନ୍ତେ ଓଟରା ଓଟରି ହୁଅନ୍ତେ କୁକୁରେ
ଏ ଘଟଣା ରେବାକୂଳ ପର୍ବତ ଶିଖରେ ।
କୁକୁରୀମାନଙ୍କ ଦାନ୍ତୁ ଖସି ସେ ମୃଗୁଣୀ
ଗିରି ଶିଖୁଁ ଯାଇଁ ପଡ଼େ ରେବାର୍ନଦୀ ପାଣି ।
ରେବାର ସେ ପୁଣ୍ୟହ୍ରଦ ନାମ ପାପହର
ତହିଁ ମୃଗୁଣୀ ପଡ଼ନ୍ତେ ଯେତେକ କୁକୁର ।
ରାଗେ ଧରିବା ନିମନ୍ତେ ପଡ଼ିଲେକ ଡ଼େଇଁ
ବ୍ୟାଧ ଧୀବରକୁ କହେ କୋପଭର ହୋଇ ।
ମୋର ମୃଗୁଣୀକି କିମ୍ପା ବିନ୍ଧିଲୁ ତୁ ଶର
ମୀନଘାତୀ ଧୀବର ତୁ ଏଡ଼େ ଦୁରାଚାର ।

ଧୀବର ବୋଇଲା କିମ୍ପା କରୁଛୁ ପ୍ରଳାପ
ମୋ ମୃଗକୁ ମୁଁ ମାଇଲି ଆରେ ନୀଚପାପ ।
ଗାଳିଦିଆଦେଇ ହୋଇ ଦୁହେଁ ରୋଷଭରେ
ଧରାଧରି ମରାମରି ହେଲେ ନାନା ଶରେ ।
ମରିପଡ଼ିଲେ ସେ ଦୁହେଁ ରେବା ହ୍ରଦେ ଯାଇ
ସେ ଦିନରେ ଅମାବାସ୍ୟା ଯୋଗଥିଲା ପାଇ ।
ସେ ମହାପର୍ବ ଦିବସେ ରେବାନଦୀ ତୀରେ
ବେଳା ଭୂମିରେ ଯେ ବସି ଜପ ଧ୍ୟାନକରେ ।
ମିଛ ନକହି କରଇ ରେବାଜଳେ ସ୍ନାନ
ମହା ପୁଣ୍ୟର ଯେ ଫଳ ପାଇ ସେହି ଜନ ।
ଆବର ପରମ ଗତି ତାହାକୁ ମିଳଇ
ଶବର ଧୀବର ମୃଗୀ ଶ୍ୱାନ ମରି ତହିଁ ।
ସକଳ ପାପରୁ ତରି ପାଇଲେ ସୁଗତି
ଅଗ୍ନିଲାଗି କାଠଗଦା ଯେହ୍ନେ ପୋଡ଼ିଯାନ୍ତି ।
ତେସନ ତୀର୍ଥ ପ୍ରଭାବେ ପାପୀ ପାପ ଯାଏ
ଋଷିଗଣଙ୍କ ଆଗରେ ସୁତମୁନି କହେ ।
ମହାଋଷି ସାଙ୍ଗପାଇ ପାପୀ ରାଜା ବେନ
ଆବର କଥା ବାରତା ସ୍ୱରଶ ଦର୍ଶନ ।
ପାଇବାରୁ ବେନର ଯେ ପାପ ଛାଡ଼ିଗଲା
ସେ ବେନ ରାଜାର ମାତାମହ ଦୋଷ ଥିଲା ।
ତେଣୁ ପାପାଚାରୀ ହେଲା କଲା ଦୁଷ୍ଟପଣ
ପଚାରିଲେ ସୁତଙ୍କୁ ଯେ ପୁଣି ଋଷିଗଣ ।
ବେନ ମାତାମହର କି ଦୋଷଥିଲା କହ
ସୁତମୁନି କହିଲେ ଯେ ତାର ମାତାମହ ।
ସେହି ମୃତ୍ୟୁ ସେହି କାଳ ସେହି ଯମଧର୍ମ
ସେହିଂସ୍ରକ ହିଂସ୍ରକସେ ନୋହେ ତାରକର୍ମ ।
ନିଜ କର୍ମ ଭୋଗକରେ ଚରାଚର ପ୍ରାଣୀ
କର୍ମର ଫଳେ ମରନ୍ତି ଜୀଅନ୍ତି ଯେ ପୁଣି ।
କର୍ମଫଳେ ପାପୀ ଲୋକ ନର୍କ ଭୋଗକରେ
ତାଙ୍କ କର୍ମଫଳେ ଜାଣ ପୁଣ୍ୟବନ୍ତ ନରେ ।
ନର୍କେ ପକାନ୍ତି ପ୍ରାଣୀଙ୍କି ତାଡ଼ନା କରନ୍ତି
ପୁଣ୍ୟକାରିଙ୍କି ପୁଣ୍ୟରେ ନିଯୁକ୍ତ କରାନ୍ତି ।
ମୃତ୍ୟୁର କିଞ୍ଚିତ ଦୋଷେ ଜନମି ସେ ବେନ
ଦୁଷ୍ଟଚେତା ମୃତ୍ୟୁକରେ ପାପିଙ୍କି ଶାସନ ।
କାମରୂପେ ବିରାଜଇ କେହି ନ ଜାଣନ୍ତି
ଶୁଭାଶୁଭ କଲା କର୍ମ ବିଚାର କରନ୍ତି ।

ପାପିର ପାପ ବିଚାରି ଦିଅଇ ସେ ଦଣ୍ଡ
ପୁଣ୍ୟକଲା ପ୍ରାଣିକି ସେ ଦିଏ ସ୍ୱର୍ଗଖଣ୍ଡ ।
ମୃତ୍ୟୁ ଯେ ଧରି ଅଣାଇ ଦୂତ ବରଗାଇ
ଦୂତଙ୍କ ହସ୍ତରେ ଦଣ୍ଡ ସୁଖ ଭୋଗ ଦେଇ ।
ସ୍ୱର୍ଗ ସୁଖ ଭୋଗକରେ ପୁଣ୍ୟକାରୀ ଜନ
ଗୀତରସ ବିନୋଦରେ ଯାଏ ତାର ଦିନ ।
ପାପିକି ଦେଖିଲା କ୍ଷଣି ମୃତ୍ୟୁ କ୍ରୋଧଭରେ
ନାନା ପୀଡ଼ା କଷ୍ଟ ଦିଏ ଦାରୁଣ ପ୍ରହାରେ ।
ସେ ମୃତ୍ୟୁର କନ୍ୟାନାମ ସୁନୀଥା ଅଟଇ
ବାଳକାଳେ ସେହିକନ୍ୟା ଖେଳି ଖେଳି ଯାଇ ।
ପ୍ରାଣିଙ୍କର ପାପପୁଣ୍ୟ କରିବା ବିଚାର
ଏହି ଦୁଇଗୋଟି କାର୍ଯ୍ୟ ମୋର ପିତାଙ୍କର ।
ଦିନେ ସେ ମୃତ୍ୟୁ ଦୁହିତା ସୁନୀଥା ସୁନ୍ଦରୀ
ବନେଗଲା ଦେଖିବାକୁ ଘେନି ସହଚରୀ ।
ସୁଶଙ୍ଖ ନାମେ ସୁନ୍ଦର ଗନ୍ଧର୍ବ କୁମର
ଘୋର ତପକରେ ରହି ସେ ବନ ଭିତର ।
ଗାନ ବିଦ୍ୟାରେ ନିପୁଣ ହେବାର ନିମନ୍ତେ
ସରସ୍ୱତୀ ପାଦେ ଲୟଲଗାଇ ନିଶ୍ଚିନ୍ତେ ।
ତା ଦେଖି ସୁନୀଥା ନିତି ସେ ବନକୁ ଯାଇ
ତାହାର ତପେ ବହୁତ ବିଘ୍ନ ସେ ଘଟାଇ ।
ଯାଆ ଯାଅ କହି ତାକୁ ସୁଶଙ୍ଖ ନିବାରେ
ନମାନି ସୁନୀଥା ରହିଥାଏ ସେ ସ୍ଥାନରେ ।
ତପଭାଙ୍ଗିବା ମାନସେ ତହୁଁ ସେ ନଯାଇ
ସୁଶଙ୍ଖ ବହୁତରୂପେ ତାହାକୁ ବୁଝାଇ ।
କ୍ରୋଧଭରେ ସୁଶଙ୍ଖକୁ ସୁନୀଥା ପିଟିଲା
କୋପେ ସୁଶଙ୍ଖ ତାହାକୁ ଏମନ୍ତ କହିଲା ।
ଆଲୋ ଦୁଷ୍ଟା ପାପିନୀ ତୁ ଆସି କି ନିମନ୍ତେ
ମୋର ତପଭାଙ୍ଗୁ ପୁଣି ମାଡ଼ମାରୁ ମୋତେ ।
ସାଧୁ ମାଡ଼ଖାନ୍ତି ପଛେ ତାକୁ ନ ମାରନ୍ତି
ଆକ୍ରୋଶହିଁ ନକରନ୍ତି କୋପ ନ କରନ୍ତି ।
ବିନାଦୋଷେ ତୁଲୋ ମୋର ତପକରୁ ନାଶ
ମୁଁ ତପେ ବସିଛି ମାରୁ କରିଣ ଆକ୍ରୋଶ ।
ପାପାଚାରୀ ସେ ଦୁଷ୍ଟା ସୁନୀଥାକୁ ଚାହିଁ
ଧର୍ମଆତ୍ମା ସେ ସୁଶଙ୍ଖ ଏହିରୂପେ କହି ।
କୋପହିଁ ନକଲା ତାର କ୍ଷତିହିଁ ନକଲା
ଗାଳି ନଦେଲା ତାହାକୁ ମାଡ଼ ନମାଇଲା ।

ଏମନ୍ତ ଶୁଣି ସନୀଥା ସୁଶଙ୍ଖକୁ କହେ
ସବୁରି ପ୍ରାଣ ମୋହର ପିତାହାତେ ରହେ ।
ତିନିପୁର ପ୍ରାଣି ନାଶକାରୀ ସେ ଅଟଇ
ନିତି ପାପିଙ୍କି ବିଚାରି ଦଣ୍ଡ ସେ ଦିଅଇ ।
ନାନାସୁଖ ଭୋଗେ ରଖି ପାଳଇ ସାଧୁଙ୍କୁ
ମୁଁ ଯାଇଁ ଏକଥାଗୋଟା କହିବି ତାହାଙ୍କୁ ।
ପାପେକିବା ମୋହି ବାଳଭାବେ କେହିଯେବେ
ଏକାର୍ଯ୍ୟକଲେତାହାର ଦୋଷନୋହେକେବେ ।
ମହାପୁଣ୍ୟ ଆଚାରୀ ଯେ ମୋହର ପିଅର
କହି ସୁନୀଥା ଯେ ତହୁଁ ହୋଇଲା ଅନ୍ତର ।
ପିତାର ପାଖକୁ ଯାଇ ବୋଇଲା ଭୋ ତାତ
ଖେଳିବା ନିମନ୍ତେ ବନେ ଯାଇ ମୁହିଁ ନିତ୍ୟ ।
ଏକ ଗନ୍ଧର୍ବ ତନୟ କରୁଥିଲା ତପ
ତାହାକୁ ମୁହିଁ ମାଇଲି ହେଲା କି ମୋ ପାପ ।
ମାଡ଼ହିଁ ମାଇଲି ତାର ତପହିଁ ଭାଙ୍ଗିଲି
କାମକ୍ରୋଧ କିଛି ତାର ନାହିଁ ମୁଁ ଦେଖିଲି ।
ଏକମନେ ଏକଲୟ ବସି ତପକରେ
ସେହି ଧର୍ମଆତ୍ମା କ୍ରୋଧବହି ତା ମନରେ ।
କହିଲା ମୋତେ ସାଧୁଏ କ୍ରୋଧ ନକରନ୍ତି
ମାଡ଼ଖାଆନ୍ତି ପଛକେ ମାଡ଼ ନମାରନ୍ତି ।
ଆକ୍ରୋଶ କରିବା ଜନେ ଆକ୍ରୋଶହିଁ ନାହିଁ
ଏହାର କାରଣ ବୁଝି ନପାରିଲି ମୁହିଁ ।
ବୁଝାଇଦିଅ ଭୋ ତାତ ପଚାରୁଛି ତୋତେ
ମୃତ୍ୟୁକୁ ଦୁହିତା ତାର ଏହା ପଚାରନ୍ତେ ।
କିଛିହିଁ ପ୍ରତିଉତ୍ତର ନଦେଲେ ତାହାର
ସୁନୀଥା ପିତାର ତହୁଁ ନପାଇ ଉତ୍ତର ।
ସୁଶଙ୍ଖ ତପୋବନକୁ ତହୁଁ ପୁଣି ଗଲା
ତପୀବର ସୁଶଙ୍ଖକୁ ଚାପୋଡ଼େ ମାଇଲା ।
ସ୍ୱଭାବ ଯାର ଯେମନ୍ତ ମଲେ ସେହି ଯାଇ
କ୍ରୋଧେ ତାହାକୁ ସୁଶଙ୍ଖ ଅଭିଶାପ ଦେଇ ।
ବୋଇଲା ଲୋ ଦୁଷ୍ଟ ତୁହି ଯମର ଦୁଲଣୀ
ବିନାଦୋଷେ ବାରମ୍ବାର ଆସି ମାରୁପୁଣି ।
ଏଣୁ ଶାପ ଦେଉଅଛି ଆଦି ମୁହିଁ ତୋତେ
ତୁ ବିଭାହୋଇଣ ସ୍ୱାମୀସଙ୍ଗ ଯେ କରନ୍ତେ ।
ତୋ ଗର୍ଭରୁ ଜନମିବ ଯେବଣ କୁମର
ଦେବ ଦ୍ୱିଜ ନିନ୍ଦକ ସେ ହେବ ପାପାଚାର ।

ସୁଶଙ୍ଖ ଏରୂପେ ଶାପଦେଇ କଲା ତପ
ସୁନୀଥା ଗୃହକୁ ଗଲା ମନେବହି ତାପ ।
ପିତାର ଆଗେ କହିଲା ଶାପ ବିବରଣ
ଦୁହିତା ମୁଖରୁ ସବୁ ଶୁଣି ଜନ୍ତୁରାଣ ।
ବୋଇଲା କିମ୍ପା ନିର୍ଦ୍ଦୋଷୀ ତପୀକୁ ମାଇଲୁ
ତୋର କଲା କର୍ମଫଳ ଏବେ ତୁ ପାଇଲୁ ।
ତାକୁ ନମାରି ସତ୍ୟକୁ ମାଇଲୁ ଯେ ତୁହି
ଦୁହିତାକୁ ଧର୍ମଆତ୍ମା ମୃତ୍ୟୁ ଏହା କହି ।
ଶାପକଥା ଭାଳି ଭାଳି ହୋଇଲେ ଦୁଃଖିତ
ଦ୍ୱିଜଗଣେ ଶୁଣନ୍ତି ଯେ କହୁଛନ୍ତ ସୂତ ।
ଏକଦିନେ ଅଙ୍ଗନାମେ ଅତ୍ରିମୁନି ପୁଅ
ପ୍ରତାପୀ ତେଜୋବନ୍ତଯେ ସୂର୍ଯ୍ୟଦେବ ପ୍ରାୟ ।
ନନ୍ଦନବନରେ ଯାଉଁ ଯାଉଁ ସେ ଦେଖିଲା
ଦେବରାଜା ଇନ୍ଦ୍ରର ଯେ ଲାଗିଅଛି ଲୀଳା ।
ଚାରିପାଖେ ବେଢ଼ିଛନ୍ତି ଗନ୍ଧର୍ବ କିନ୍ନରେ
ଅପସରାଗଣ ନୃତ୍ୟ କରନ୍ତି ଛାମୁରେ ।
ଗାୟନେ ଗାଉଅଛନ୍ତି ସୁନ୍ଦର ଯେ ଗୀତ
ସ୍ୱର୍ଗ ମୂର୍ଚ୍ଛନା ଦେଇଣ ଅତି ସୁଲଳିତ ।
ସୁଗନ୍ଧପବନ ବହେ ଚାମର ଢାଳନ୍ତେ
କାମିନୀଗଣେ ବ୍ୟଜନ ଧରିଛନ୍ତି ହସ୍ତେ ।
ରୂପଲାବଣ୍ୟ ସୁନ୍ଦରୀ ସେ ହଂସଗାମିନୀ
ଚନ୍ଦ୍ରବିମ୍ବ ତୁଲ୍ୟ ଛତ୍ର ଧରିଛନ୍ତି ପୁଣି ।
ପୁଲୋମ ରାକ୍ଷସ କନ୍ୟା ଶଚୀ ଠାକୁରାଣୀ
ଯାକୁ ଉପମାଦେବାକୁ ସ୍ୱର୍ଗେନାହିଁ ପୁଣି ।
ଇନ୍ଦ୍ରାଣୀ ବୋଲି କହନ୍ତି ଯାହାକୁ ସକଳେ
ସେ ଦେବୀ ବସିଅଛନ୍ତି ଦେବ ଇନ୍ଦ୍ରକାଳେ ।
ସବୁ ଆଭରଣେ ଇନ୍ଦ୍ର ପାଉଛନ୍ତି ଶୋଭା
ଅପ୍ରମିତ ଯାହାଙ୍କର ଅଟଇ ପ୍ରତିଭା ।
କାମକେଳି କ୍ରୀଡ଼ାରତ ଯେହୁ ନିରନ୍ତରେ
ପୁଲୋମନନ୍ଦିନୀ ଶୋଭା କହିଲେ ନସରେ ।
ସଉଭାଗ୍ୟ ମନ୍ଦିର ଯେ ଚାରୁ ରୂପବତୀ
ଇନ୍ଦ୍ରର କ୍ରୀଡ଼ା ମନ୍ଦିର ପତିବ୍ରତା ସତୀ ।
ଅଙ୍ଗରାଜା ସେହି ଲୀଳା ଦେଖି ବାସବର
ମନେ ବିଚାରିଲା ଧନ୍ୟ ଧନ୍ୟ ପୁରନ୍ଦର ।
ଏ ଲୀଳାତୋର କେବଳ ତପୋବଳେସିନା
ଏ ମହାପଦ ପାଇଲୁ ତୁହୋ ମହାମନା ।
ଏମନ୍ତ ପୁତ୍ର ଯେକାଳେ ହୋଇବ ମୋହର
ନିଶ୍ଚେ ଏହି ମହାସୁଖ ଦେବ ସେ କୁମର ।
ଏମନ୍ତ ଭାଳି ଭାଳି ସେ ଘରକୁ ଫେରିଲା
ଗୋପୀନାଥ ହରି ରସାମୃତକୁ ପିଇଲା ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନଂ ନାମ ତ୍ରିଂଶୋଽଧ୍ୟାୟଃ ।



## ଏକତ୍ରିଂଶ ଅଧ୍ୟାୟ

### ମେରୁ ପର୍ବତେ ଅଙ୍ଗରାଜାର ତପସ୍ୟା

ସୂତ କହିଲେ ସେ ଅଙ୍ଗରାଜା ଏଥୁଅନ୍ତେ
ଇନ୍ଦ୍ରର ଭୋଗବିଳାସ ସମ୍ପଦ ଦେଖନ୍ତେ ।
ଭାଳିଲା ଏମନ୍ତ ପୁତ୍ର କେମନ୍ତେ ପାଇବି
ପିତା ଅତ୍ରିଋଷି ପାଦବେନି ସେହି ସେବି ।
ବୋଇଲା ଭୋ ତାତକହ କରି କେଉଁପୁଣ୍ୟ
ଇନ୍ଦ୍ରପଦ ଭୋଗକରେ ସହସ୍ର ଲୋଚନ ।
କି ତପସ୍ୟା କି କି ଧର୍ମ ପୁଣ୍ୟ କର୍ମବଳେ
କିବା କେଉଁ ଦେବତାର ଆରାଧନା ଫଳେ ।
ମୋଆଗେ ଏସବୁ କଥା ବହିବା ବିସ୍ତାରି
ଏମନ୍ତ ଶୁଣି ବୋଇଲେ ଅତ୍ରି ତପଚାରୀ ।
ତୁ ଯେ ଏହା ପଚାରିଲୁ ଏଣୁ ତୁହି ଧନ୍ୟ
ଇନ୍ଦ୍ରର ଚରିତ ବାବୁ କହୁଅଛି ଶୁଣ ।
ସୁବ୍ରତ ନାମେ ଏକଇ ବ୍ରାହ୍ମଣ ଯେ ଥିଲା
ତପକରି ହୃଷୀକେଶ କୃଷ୍ଣଙ୍କୁ ତୋଷିଲା ।
ବିଷ୍ଣୁ ପରସାଦେ ସେହି ବ୍ରାହ୍ମଣ ସୁବ୍ରତ
କଶ୍ୟପବୀର୍ଯ୍ୟେ ଅଦିତି ଗର୍ଭୁହେଲା ଜାତ ।
ସୁରରାଜ ହୋଇ ଇନ୍ଦ୍ରପଦ ଭୋଗ କରେ
ଅଙ୍ଗ ଯେ କହିଲା ପୁଣି ପିତାର ଛାମୁରେ ।
କି କଲେ ମୁଁ ଇନ୍ଦ୍ରତୁଲ୍ୟ ପୁତ୍ରେକ ପାଇବି
ତାହାର ଉପାୟ ମୋତେ କହ ତୁମ୍ଭେ ଭାବି ।
ଅତ୍ରି ମୁନି କହିଲେରେ ମହାମତି ଶୁଣ
ମହାତମା ସୁବ୍ରତର ଯେଉଁରୂପେ ପୁଣ୍ୟ ।
ସଂକ୍ଷେପି କହୁଛି ତାର ଆଗରେ କୁମର
ସୁବ୍ରତ ଦ୍ୱିଜ ଅଟଇ ବୁଦ୍ଧିମନ୍ତ ନର ।
ହରି ଆରାଧନା କଲା ଘୋରତପେ ବସି
ଜଗତର ପତି ହରି ବଇକୁଣ୍ଠବାସୀ ।

ଭାବ ଭକତି ତାହାର ଧ୍ୟାନଲୟ ଜାଣି
ଇନ୍ଦ୍ରପଦ ଯାଚିଦେଲେ ଆରେ ପୁତ୍ରମଣି ।
ବିଷ୍ଣୁପରସାଦେ ହେଲା ତ୍ରିଭୁବନପତି
ସଂକ୍ଷେପି କହିଲି ବାବୁ ବାସବ ସମ୍ପତ୍ତି ।
ଭାବ ଭକତି ଧ୍ୟାନରେ ଗୋବିନ୍ଦ ପ୍ରସନ୍ନ
ସେ ହରି ଦେଇପାରଇ ସଉଭାଗ୍ୟ ଧନ ।
ଇନ୍ଦ୍ରପଦଠାରୁ ବଡ଼ ପଦ ପାରେ ଦେଇ
ଇନ୍ଦ୍ରଭୋଗହୁଁ ଆହୁରି ଅଧିକ ଅଛଇ ।
ହରି ମନକଲେ ଏହା ସବୁ ଦେଇପାରେ
ମନ ଲୟ ଲଗା ବାବୁ ଗୋବିନ୍ଦ ପୟରେ ।
ଜଗତ ଜନର ମାତା ମୋକ୍ଷ ଦାତା ହରି
ଆରେ ବାବୁ ତାଙ୍କ ପାଦପଦ୍ମ ସେବାକରି ।
ଇନ୍ଦ୍ରତୁଲ୍ୟ ପୁତ୍ର ତୁହି ପାଇବୁ ନିଶ୍ଚୟ
ବ୍ରହ୍ମାତୁଲ୍ୟ ଅତ୍ରିଋଷି ବ୍ରହ୍ମାର ତନୟ ।
ତାଙ୍କମୁଖୁଁ ଶୁଣି ଅଙ୍ଗ ପଡ଼ିଲା ଚରଣେ
ରତନଖଞ୍ଜା କାଞ୍ଚନ ରଥରେ ତକ୍ଷଣେ ।
ମେରୁ ପରବତେ ଯାଇଁ ତପକଲା ବସି
ଦ୍ୱିଜ ଗୋପୀନାଥ ଭଜେ ବଇକୁଣ୍ଠବାସୀ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ
ବେନୋପାଖ୍ୟାନଂ ନାମ
ଏକତ୍ରିଂଶୋଽଧ୍ୟାୟଃ ।



## ଦ୍ୱାତ୍ରିଂଶ ଅଧ୍ୟାୟ

### ଗଙ୍ଗାତଟେ ଅଙ୍ଗରାଜାର ବିଷ୍ଣୁସ୍ତୁତି

ସୁତମୁନି କହିଲେ ସେ ଅଙ୍ଗ ନୃପବର
ସୁମେରୁ ନାମେ ଯେବଣ ମହା ଗିରିବର ।
କିରଣମାଳାରେ ସୂର୍ଯ୍ୟପ୍ରାୟ ବିରାଜଇ
ନାନାରତନ ସୁବର୍ଣ୍ଣେ ଉଜ୍ଜ୍ୱଳ ଦିଶଇ ।
କାହିଁ ସୁଶୀତଳ ଛାୟା ମନକୁ ହରଇ
ତହିଁ ଯୋଗୀଜନେ ଦୃଢ଼ ଆସନରେ ଥାଇ ।
ଲୟ ଲଗାଇ ଅଛନ୍ତି ଜ୍ଞାନ ଧ୍ୟାନ ଯୋଗେ
ମୁନିମାନେ ବସିଛନ୍ତି କାହିଁ ତପଯୋଗେ ।
କାହିଁ ଗୀତ ଗାଉଛନ୍ତି ସୁସ୍ୱରେ କିନ୍ନରେ
କାହିଁ ଯେ ଋଷି ଗନ୍ଧର୍ବେ ସନ୍ତୋଷ ମନରେ ।

ବୀଣା ବଜାଇ ନାଚନ୍ତି କରତାଳି ଦେଇ
କାହିଁ ଚନ୍ଦନ ବନର ସୁବାସିତ ଛାଇ ।
ଗାନବିଦ୍ୟା ଜାଣିଥିବା ଗନ୍ଧର୍ବେ ଯେ ବସି
ଗୀତର ଭାବ କରନ୍ତି ମନ୍ଦ ମନ୍ଦ ହସି ।
ସପତ ସ୍ୱର ମୂର୍ଚ୍ଛନା ତାଳ ଲୟ ମାନ
ଅରତ୍ନିଯୋଗେ କରନ୍ତି ମନୋହର ଗାନ ।
କାହିଁ ଦେବବାଳା ମିଳି ନୃତ୍ୟ କରୁଛନ୍ତି
ଠାବେ ଠାବେ ବେଦଧ୍ୱନି ଶୁଭେ ଚଉକତି ।
ଚନ୍ଦନ ଅଶୋକ ତାଳ ଶାଳ ପିଆଶାଳ
ପୁନାଙ୍ଗ ସନ୍ତାନ ବୃକ୍ଷ ବଟ ଯେ ତମାଳ ।
ଫୁଲ ଫୁଟିଥିବା ସୁରତରୁ ଯେ କଦଳୀ
ଫୁଲଫୁଟିଥିବା ବୃକ୍ଷେ ଗିରିଶୋଭା ଝଳି ।
ନାନାଧାତୁ ଦ୍ରବ୍ୟକାହିଁ ନାନାରତ୍ନ କାହିଁ
କାହିଁ ନାନା କଉତୁକ କଥା ଦୃଶ୍ୟହୋଇ ।
ଦେବଗଣ ଅପସରାଗଣ ଋଷିମୁନି
ସିଦ୍ଧ ଗନ୍ଧର୍ବ ଚାରଣ ଅମର କାମିନୀ ।
ଶୋଭା ପାଉଅଛି ସେହି ସୁମେରୁ ଶିଖର
ଠାବେ ଠାବେ ପର୍ବତରେ ଶୋହେ ଗଜବର ।
ଗଜରାଜ ମତ୍ତସିଂହ କାହିଁ ଶୋଭାପାଇ
ବ୍ୟାଘ୍ର ଭଲ୍ଲୁକ ବରାହ ଗର୍ଜୁଛନ୍ତି ତହିଁ ।
ଉଭୟଙ୍କର ସିଂହନାଦ ଶୁଭେ ଚାରିଆଡ଼େ
ଶିକାରୀ ନେପାଳୀ ବ୍ୟାଘ୍ରେ ଛକିଛନ୍ତିଝାଡ଼େ ।
ମହାବଳ ବାଘ କରେ ଘୋର ଗରଜନ
ବଳିଆକୁକୁର ପଲ କରନ୍ତି ଗମନ ।
ଶରଭ ମତ୍ତ ଶାର୍ଦ୍ଦୂଳ ମୃଗ ପଲପଲ
ଶୃଗାଳେ ଯାଉଅଛନ୍ତି ହୋଇ ଦଳଦଳ ।
ବିମଳ ଜଳରେ ପୂରି ରହିଛି ପୋଖରୀ
ହଂସ କାରଣ୍ଡବେ ଯାନ୍ତି ପହଁରି ପହଁରି ।
ବାମ୍ପୀ କୂପ ତଡ଼ାଗ ଯେ ଅଛଇ ବହୁତ
କନକ ଶ୍ୱେତ ରକତ ଉତ୍ପଳେ ଶୋଭିତ ।
ନଦୀ ପ୍ରସ୍ରବଣ ଝର ନୀର ସୁଶୀତଳ
ସ୍ଫଟିକ ପଥର ପ୍ରାୟ ଦିଶଇ ନିର୍ମଳ ।
କେବଣ ଶିଳା କାଞ୍ଚନ ପ୍ରାୟ ବିରାଜଇ
କେହି କେହି ସୂର୍ଯ୍ୟ ଅଗ୍ନିପ୍ରାୟ ଝଟକଇ ।
ସମତଳ ଶିଳା କାହିଁ ଅଛଇ ବହୁତ
ଚନ୍ଦ୍ରପାୟ ହଂସରାଜି କାହିଁ ବିରାଜିତ ।

ଦେଉଳ ସବୁ ଅଛଇ ତହିଁରେ ଅନେକ
କେଉଁ ଦେଉଳେ ମଣ୍ଡନ ହୋଇଛି କନକ ।
ଦେବ ପ୍ରାସାଦ ବହୁତ ତହିଁ ବିରାଜଇ
ହଂସଯୋଚା ବିମାନ ସେ ପର୍ବତେ ଅଛଇ ।
କନକଦଣ୍ଡ କଳଶ ଚାମର ଯେ କେତେ
ଦେବତାଏ ବିହରନ୍ତି ଦେବୀଙ୍କ ସହିତେ ।
ଗନ୍ଧର୍ବ ଚାରଣଗଣେ ଶୋଭାପାଏ ଗିରି
ମହାପୁଣ୍ୟ ଜନନୀ ଯେ ପୁଣ୍ୟତୋୟା ଝରି ।
ମହାନଦୀ ଗଙ୍ଗା ବହି ଯାଉଛି ପ୍ରଖରେ
ବହୁତର ପୁଣ୍ୟତୀର୍ଥ ଅଛି ଯେ ନଦୀରେ ।
ଅସଂଖ୍ୟ ହଂସ ଅସଂଖ୍ୟ ପଦ୍ମଯେ ଶୋଭିତ
ଏମନ୍ତ ଯେ ଗୁଣବନ୍ତ ସୁମେରୁ ପର୍ବତ ।
ଅତ୍ରିନନ୍ଦନ ସେ ଅଙ୍ଗ ମିଳି ଗିରିବରେ
ଗିରିଶୋଭା ଦେଖି ଦେଖି ଗଲା ଗଙ୍ଗାତୀରେ ।
ତହିଁ ଦେଖିଲା ପବିତ୍ର ସୁନ୍ଦର ଗହ୍ୱର
ଏହା ରହି ତହିଁ କାମ କ୍ରୋଧକଲା ଦୂର ।
ସବୁ ଇନ୍ଦ୍ରିକି ଦମନ କରି ଅନାହାରେ
ଶୟନ ଧ୍ୟାନେ ଗମନେ ଶ୍ରୀହରି ସୁମରେ ।
ଚରାଚର ପ୍ରାଣୀଦେହେ ଦେଖଇ ଶ୍ରୀହରି
ସରସ ନୀରସ ଦ୍ରବ୍ୟେ ହରି ଚିନ୍ତାକରି ।
ଶଏ ବରଷ ଏରୂପେ ତପସ୍ୟା ସେ କଲା
ତାହାର ତପେ ବହୁତ ବିଘ୍ନଯେ ଘଟିଲା ।
ନୃସିଂହ ଦେବଙ୍କ ତେଜେ ସବୁଗଲା ଜଳି
ଅନଳ ଯେସନେ ଦିଏକାଠଗଦା ଜାଳି ।
ନିୟମ ସଂଯମ ଆଦି ଉପବାସେ ରହି
ଦେହକୁ କ୍ଷୀଣ କରନ୍ତେ ତେଜ ପ୍ରକଟଇ ।
ବେଳୁଁ ବେଳ ସୂର୍ଯ୍ୟ ଅଗ୍ନି ପ୍ରାୟ ସେ ଦିଶିଲା
ଏକମନେ ଜନାର୍ଦ୍ଦନ ପାଦେ ଲୟଦେଲା ।
ତୋଷେଆସିଦେଖାଦେଲେ ଦେବଜନାର୍ଦ୍ଦନ
ବୋଇଲେରେ ଅଙ୍ଗ ତୁହି ବରମାଗି ଘେନ ।
ତପ ତେଜି ଶ୍ରୀହରିଙ୍କି ନିରୀକ୍ଷି ଚାହିଁଲା
ଦଣ୍ଡବତ କରି ଉଠି ଶିରେ କର ଦେଲା ।
ସବୁ ପ୍ରାଣୀଙ୍କର ଗତି ହେ ଭୂତଭାବନ
ସବୁ ପ୍ରାଣୀଙ୍କର ଆତ୍ମା ପତିତପାବନ ।
ଗୁଣରୂପୀ ପ୍ରଭୁ ତୁମ୍ଭେ ସର୍ବ ଭୂତେଶ୍ୱର
ତୁମ୍ଭ ଶ୍ରୀଚରଣେ ମୁହିଁ କରେ ନମସ୍କାର ।

ଗୁରୁରୂପୀ ଗୁଣାଧାର ନମସ୍ତେ ନମସ୍ତେ
ଗୁଣାତୀତ ଗୁଣହୀନ ନମସ୍କାର ତୋତେ ।
ଭବ କର୍ତ୍ତା ଭବ ତୁମ୍ଭେ ଭବଭୟ ହର
ନମସ୍ତେ ନମସ୍ତେ ଭବନାଶୀ ଭବହର ।
ଭକତରଙ୍କ ଭବହାରୀ ତୋତେ ଯେ ନମସ୍ତେ
ଯଜ୍ଞରୂପୀ ଯଜ୍ଞେଶ୍ୱର ନମସ୍କାର ତୋତେ ।
ଯଜ୍ଞ ଫଳଦାତା ତୁମ୍ଭେ ଯଜ୍ଞ ଶଙ୍ଖଧର
ହିରଣ୍ୟ ତୁମ୍ଭେ ରଥାଙ୍ଗଧର ସତ୍ୟେଶ୍ୱର ।
ସତ୍ୟମୟ ସତ୍ୟଭବ ନମସ୍ତେ ନମସ୍ତେ
ଧର୍ମକର୍ତ୍ତା ସର୍ବକର୍ତ୍ତା ନମସ୍କାର ତୋତେ ।
ଧର୍ମାଙ୍ଗ ସୁଧିର ଧର୍ମ ତୁମ୍ଭେ ଧର୍ମାଧାର
ନମସ୍ତେ ନମସ୍ତେ ମାୟାମୟ ମାୟାଧର ।
ନମସ୍ତେ ନମସ୍ତେ ପୁଣ୍ୟ ପୁତ୍ର ହେ ଅପୁତ୍ର
ନମସ୍ତେ ନମସ୍ତେ ମୂର୍ତ୍ତି ତୁ ଦେବ ଅମୂର୍ତ୍ତ ।
ନମସ୍ତେ ନମସ୍ତେ ମାୟା ମୋହ ନାଶକାରୀ
ନମସ୍ତେ ନମସ୍ତେ ପ୍ରଭୁ ସର୍ବ ମୂର୍ତ୍ତି ଧାରୀ ।
ନମସ୍ତେ ନମସ୍ତେ ବ୍ରହ୍ମରୂପୀ ବଂଶକର
ନମସ୍ତେ ନମସ୍ତେ ସର୍ବ ଧାମ ଧାମଧର ।
ନମସ୍ତେ ନମସ୍ତେ ଠୁଳ ବ୍ରହ୍ମ ପରଂବ୍ରହ୍ମ
ନମସ୍ତେ ନମସ୍ତେ ସର୍ବ କର୍ମଚାରୀ କର୍ମ ।
ନମସ୍ତେ ନମସ୍ତେ ଶ୍ରୀନିବାସ ଶିରୀଧର
ନମସ୍ତେ ନମସ୍ତେ ମହା ଔଷଧି ତୁ ଘୋର ।
ନମସ୍ତେ ନମସ୍ତେ କ୍ଷୀର ସାଗର ନିବାସୀ
ନମସ୍ତେ ନମସ୍ତେ ପ୍ରଭୁ ଦନୁଜବିନାଶୀ ।
ନମସ୍ତେ ନମସ୍ତେ ଦେବ ମହା ପ୍ରଜ୍ଞାବନ୍ତ
ନମସ୍ତେ ନମସ୍ତେ ଦେବ ଅମୃତ ଅନନ୍ତ ।
ନମସ୍ତେ ନମସ୍ତେ ଦେବ ମେଧା ମେଧାପତି
ନମସ୍ତେ ନମସ୍ତେ ଦେବ ଅନନ୍ତ ମୂରତି ।
ନମସ୍ତେ ନମସ୍ତେ ଦେବ ଅନଘ ଅଶେଷ
ନମସ୍ତେ ନମସ୍ତେ ଦେବ ଆକାଶ ପ୍ରକାଶ ।
ନମସ୍ତେ ନମସ୍ତେ ପଶୁ ପକ୍ଷୀରୂପଧାରୀ
ନମସ୍ତେ ନମସ୍ତେ ଦେବ ହରିରୂପ ହରି ।
ନମସ୍ତେ ନମସ୍ତେ ଦେବ ହୁତଭୋଜୀ ହୁତ
ନମସ୍ତେ ନମସ୍ତେ ପୂଜକାରୀ ସଦାପୂତ ।
ନମସ୍ତେ ନମସ୍ତେ ବୁଧରୂପୀ ସଦା ବୁଦ୍ଧ
ନମସ୍ତେ ନମସ୍ତେ ଆଦି ଅନାଦି ବିଶୁଦ୍ଧ ।

ନମସ୍ତେ ନମସ୍ତେ ହବ୍ୟ କବ୍ୟ ସ୍ୱାହାକାର
ନମସ୍ତେ ନମସ୍ତେ ବୃଦ୍ଧ ଶୁଦ୍ଧ ସ୍ୱାଧାକାର ।
ନମସ୍ତେ ନମସ୍ତେ ବ୍ୟାସ ବାସବ ବାମନ
ନମସ୍ତେ ନମସ୍ତେ ବିଶ୍ୱରୂପୀ ଜନାର୍ଦ୍ଦନ ।
ନମସ୍ତେ ନମସ୍ତେ ବସୁ ବାସୁଦେବ କୃଷ୍ଣ
ନମସ୍ତେ ନମସ୍ତେ ନରସିଂହ ହୁତାଶନ ।
ନମସ୍ତେ ନମସ୍ତେ ଗୋପ ଗୋବିନ୍ଦ ମୁରାରି
ନମସ୍ତେ ନମସ୍ତେ ସତ୍ୟପାଳ ମଧୁହାରୀ ।
ନମସ୍ତେ ନମସ୍ତେ ହଂସରୂପୀ ଏକାକ୍ଷର
ନମସ୍ତେ ନମସ୍ତେ ପଞ୍ଚତତ୍ତ୍ୱ ସର୍ବାକ୍ଷର ।
ନମସ୍ତେ ନମସ୍ତେ ପଞ୍ଚବିଂଶ ମହାତତ୍ତ୍ୱ
ନମସ୍ତେ ନମସ୍ତେ ତତ୍ତ୍ୱ ଆଧାର ତ୍ରିତତ୍ତ୍ୱ ।
ନମସ୍ତେ ନମସ୍ତେ କୃଷ୍ଣରୂପ ଲକ୍ଷ୍ମୀକାନ୍ତ
ନମସ୍ତେ ନମସ୍ତେ ଜନ ଜଗତର ନାଥ ।
ନମସ୍ତେ ନମସ୍ତେ ପଦ୍ମ ପଳାଶ ନୟନ
ନମସ୍ତେ ନମସ୍ତେ ପ୍ରଭୁ ପାପ ବିନାଶନ ।
ନମସ୍ତେ ନମସ୍ତେ ସତ୍ୟ ଧର୍ମ ବିଶ୍ୱମ୍ଭର
ନମସ୍ତେ ନମସ୍ତେ ପୁଣ୍ୟ ସୁପୁଣ୍ୟ ଅକ୍ଷର ।
ନମସ୍ତେ ନମସ୍ତେ ପ୍ରଭୁ ତୁ ଆନନ୍ଦମୟ
ନମସ୍ତେ ନମସ୍ତେ ପ୍ରଭୁ ଅକ୍ଷୟ ଅବ୍ୟୟ ।
ନମସ୍ତେ ନମସ୍ତେ ପଦ୍ମନାଭ ମହେଶ୍ୱର
ନମସ୍ତେ ନମସ୍ତେ ଦେବ କେଶବ ଈଶ୍ୱର ।
ନମସ୍ତେ ନମସ୍ତେ ଦେବ ତୁ ଆନନ୍ଦକନ୍ଦ
ନମସ୍ତେ ନମସ୍ତେ ଆଦିକନ୍ଦ ଯେ ମୁକୁନ୍ଦ ।
ନମସ୍ତେ ନମସ୍ତେ ଦେବ କମଳାବିଳାସ
ନମସ୍ତେ ନମସ୍ତେ ମଧୁସୂଦନ ସର୍ବେଶ ।
ତୁମ୍ଭ ପାଦତଳ ଦାସ କରି ରଖ ମୋତେ
ହେ ଶଙ୍ଖପାଣି ଶରଣ ତୋର ପାଦଗତେ ।
ଜନ୍ମେ ଜନ୍ମେ ମୋହଠାରେ କୃପା ଥାଉ ତୋର
ଦାରୁଣ ସଂସାର ଅଗ୍ନି ତାପ ମୋର ହର ।
ଭାଇବନ୍ଧୁ ଶୋକ ତାପେ ମୁଁ ଅତି ବ୍ୟାକୁଳ
ବରଷିଣ ଜ୍ଞାନ ମେଘଜଳ ଶିରେ ଢ଼ାଳ ।
ହେ ଅନାଥ ନାଥ ମୋର ଆଶ୍ରାହୁଅ ତୁମ୍ଭେ
ମହାତମା ଅଙ୍ଗର ଯେ ଏହିରୂପେ ସ୍ତବେ ।
ପ୍ରସନ୍ନ ହୋଇଣ ଦେବଦେବ ହୃଷୀକେଶ
ଯେଉଁ ଘନଶ୍ୟାମ ରୂପ ଦେବଙ୍କୁ ଅଦୃଶ୍ୟ ।

ସେ ଅପୂର୍ବ ରୂପଗୋଟି ଦେଖାଇଲେ ତାଙ୍କୁ
ଯୋଗୀମୁନି ଚିନ୍ତୁଥାନ୍ତି ଯେବଣ ରୂପକୁ ।
ଶଙ୍ଖ ଚକ୍ର ଗଦା ପଦ୍ମ ଶୋହେ ଚାରିଭୁଜେ
କୋଟିସୂର୍ଯ୍ୟଙ୍କୁ ନିନ୍ଦନ୍ତି ଆପଣାର ତେଜେ ।
ନୀଳଜୀମୂତ ବରନ ଅପୂର୍ବ ସୁନ୍ଦର
କର୍ଣ୍ଣରେ ବେନିକୁଣ୍ଡଳ ଗଳେ ଗଳାହାର ।
ଅଙ୍ଗେ ସର୍ବ ଆଭରଣ ହସ୍ତରେ କଙ୍କଣ
ଉରେ ଶୋହେ ବନମାଳ ଶ୍ରୀବତ୍ସର ଚିହ୍ନ ।
କଉସ୍ତୁଭ ମଣି ତହିଁ ଝଟ ଝଟ ଦିଶେ
ଜଗତଜନ ମୋହନ୍ତି ଦର ଦର ହାସେ ।
ଗରୁଡ଼ ଉପରେ ବିଜେ ଦେବ ଜନାର୍ଦ୍ଦନ
କହିଲେ ମେଘ ଗମ୍ଭୀର ସ୍ୱରେ ଏ ବଚନ ।
ଆହେ ବିପ୍ର ତୋର ତପେ ମୁଁ ଅତି ସନ୍ତୋଷ
ବର ଦେବାପାଇଁ ଏବେ ଆସିଛି ତୋ ପାଶ ।
ଜଗତ ଜନର ନାଥ କମଳାର ପତି
ବିଶ୍ୱରୂପୀ ହୃଷୀକେଶ ଅଗତିର ଗତି ।
ଗରୁଡ଼ ଉପରେ ବିଜେ ଦେଖି ଦ୍ୱିଜବର
ଚରଣ କମଳତଳେ ପଡ଼ି ବାରମ୍ବାର ।
ଆନନ୍ଦଭରେ କହିଲା ଦେବ ଦେବ ରାୟ
ଶଙ୍ଖ ଚକ୍ର ଗଦା ପଦ୍ମ ଧରି ବିଶ୍ୱମୟ ।
ଆସିଛ ଯେବେକି ବରଦେବାପାଇଁ ମୋତେ
ବଂଶଧର ପୁତ୍ର ଏକ ମାଗୁଛି ମୁଁ ତୋତେ ।
ସ୍ୱର୍ଗପୁରେ ତେଜୋବନ୍ତ ବାସବ ଯେମନ୍ତ
ତେସନ ଲୋକପାଳକ ହେବମୋର ସୁତ ।
ଦେବ ଦ୍ୱିଜ ସେବାକାରୀ ଲୋକପ୍ରିୟ ହେବ
ରୂପ ଗୁଣରେ ଜିଣିବ ସ୍ୱର୍ଗର ବାସବ ।
ଦାନୀ ଜ୍ଞାନୀ ପଣ୍ଡିତ ସେ ହେବ ଯଜ୍ଞକାରୀ
ତ୍ରିଲୋକ ଭୂଷଣ ତିନିପୁର ରକ୍ଷାକାରୀ ।
ବ୍ରହ୍ମଣ୍ୟ ଦେବବିଦ୍ୟାରେ ହୋଇବ ନିପୁଣ
ଶ୍ରୀବିଷ୍ଣୁର ପ୍ରାୟ ହେବ ପ୍ରଭାବ ତା ଗୁଣ ।
ବଇଷ୍ଣବ ଶିରୋମଣି ବୋଲାଇବ ସେହି
ପୁଣ୍ୟ ଆତ୍ମା ଶାନ୍ତ ତପୀ ସୁଲକ୍ଷଣ ଦେହୀ ।
ଜିତେନ୍ଦ୍ରିୟ ସର୍ବଜୟୀ ଯୋଗୀବର ହେବ
ଗୁଣରେ ସେ ତୁମ୍ଭ ତୁଲ୍ୟ ହେବହେ କେଶବ ।
ଏମନ୍ତ ପୁତ୍ରେକ ଦିଅ ତୋଷ ହେଲ ଯେବେ
କହିଲେତାଙ୍କୁ ଏରୂପେ ଦେବ ବାସୁଦେବେ ।

ଯାହା ମାଗିଲୁ ପାଇବୁ ଆହୋ ମହାମତି
ଏ ଲକ୍ଷଣେ ପୁତ୍ର ତୋର ହେବ ଉତପତ୍ତି ।
ଅତ୍ରିକୁଳକୁ ଉଦ୍ଧାରି ବିଶ୍ୱ ଉଦ୍ଧାରିବ
ପୁଣ୍ୟ ଯଶ ସତ୍ୟ ତେଜେ ସକଳ ଜିଣିବ ।
ପିତା ପିତାମହ ତାରି ଆପେ ଯିବ ତରି
ମରଣାନ୍ତେ ପାଇବୁ ତୁ ବଇକୁଣ୍ଠପୁରୀ ।
ଏହାକହି କହିଲେକ ପୁଣି ଦେବରାୟ
ଆତ୍ମକଥା ମନେରଖ ଅତ୍ରିର ତନୟ ।
ପୁଣ୍ୟ ଆତ୍ମା ବଳବନ୍ତ ଜନର ଦୁଲଣୀ
ହାତ ଧରି ତାର ଗର୍ଭେ ଲଭ ପୁତ୍ରମଣି ।
ମୋର ପରସାଦେ ହେବ ସେ ପୁତ୍ର ଏମନ୍ତ
ବରଦେଇ ମହାପ୍ରଭୁ ହେଲେ ଅନ୍ତର୍ହିତ ।
ସେ ଦେବାଧି ଦେବଙ୍କର ଅଭୟ ଚରଣ
ଭଜି ଦ୍ୱିଜ ଗୋପୀନାଥ ପଶିଲା ଶରଣ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ଅଙ୍ଗ ବରଲାଭୋ ନାମ
ଦ୍ୱାତ୍ରିଂଶୋଽଧ୍ୟାୟଃ ।



## ତ୍ରୟତ୍ରିଂଶ ଅଧ୍ୟାୟ

## ସୁନୀଥା ଚରିତ୍ର

ପଚାରିଲେ ଋଷିଗଣ କହ ମୁନି ସୁତ
ମହାତମା ସୁଶଙ୍ଖ ଯେ ଗନ୍ଧର୍ବର ସୁତ ।
ଶାପଦେଲା ମୃତ୍ୟୁସୁତା ସୁନୀଥାକୁ ପୁଣି
କିରୂପେ ଶାପ ଭୋଗିଲା କହ ତୁହୋ ମୁନି ।
କି କି କର୍ମକଲା ପୁତ୍ର କିରୂପେ ପାଇଲା
ବିସ୍ତାରି କହିଲେ ଆମ୍ଭେ ଶୁଣିବା ତା ଭଲା ।
ଏମନ୍ତ ଶୁଣି ବୋଇଲେ ସୁତ ମୁନିବର
ଶାପ ଦିଅନ୍ତେ ସୁଶଙ୍ଖ ଗନ୍ଧର୍ବ କୁମର ।
ମନଦୁଃଖେ ଗଲା ତହୁଁ ସୁନୀଥା ସୁନ୍ଦରୀ
ପିତା ଛାମୁରେ କହିଲା ସବୁ ସତକରି ।
ସତ୍ୟବନ୍ତ ଧର୍ମଆତ୍ମା ମୃତ୍ୟୁ ସବୁ ଶୁଣି
ବୋଇଲା ଏ ହୋଇ ପୁଣି ମୋହର ଦୁଲଣୀ ।
ପାପ ଆଚରି ଆପଣା ଧର୍ମ ନାଶ କଲୁ
ସେହି ସୁଶାନ୍ତ ତପୀକି କିମ୍ପାଇଁ ମାଇଲୁ ।
ସକଳ ଲୋକ ବିରୁଦ୍ଧ କର୍ମକଲୁ ତୁହି
କାମକ୍ରୋଧ ତେଜି ତପମୟ ଯାର ଦେହୀ ।
ସତ୍ୟ ଧର୍ମେ ମତି ଯାର ଥାଇଟି ନିରତେ
ତାକୁ ମାରିବାର ଫଳ କହୁଛି ମୁଁ ତୋତେ ।
ପାପ ଆତ୍ମା ପୁତ୍ର ତାର ଗର୍ଭୁ ଉପୁଜଇ
ସେ ପୁତ୍ର ଗୋଟି ବହୁତ ପାପ ଅରଜଇ ।
ଯେ ମାରେ ତାକୁ ଓଲଟି ମାରଇ ଯେ ଜନ
ଯେ ଯାହାଠାରେ ଆକ୍ରୋଶ ରଖିଥାଇ ପୁଣ ।
ସେ ଯେବେ ତାପ୍ରତିରଖେ ସେରୂପେ ଆକ୍ରୋଶ
ତହିଁରେ ପୁଣି ତାହାକୁ ଲାଗେ ଯେଉଁ ଦୋଷ
ତାର ପୁତ୍ରକୁ ସେ ପାପଯାକ ଗୋ ଲାଗଇ
ମାଡ଼ଖାଇ ଯେହୁ ପୁଣି ତାକୁ ନ ମାରଇ ।
ଜିତେନ୍ଦ୍ରିୟ ଶାନ୍ତ ପୁଣି ହୁଏ ତାର ସୁତ
ନିର୍ଦ୍ଦୋଷୀକି ଅକାରଣେ ଯେ କରେ ଆଘାତ ।
ନିର୍ଦ୍ଦୋଷୀର ଦେହ ଥିବା ପାପ ସବୁ ଯାଇ
ତତକ୍ଷଣେ ସେ ମାରିବା ଜନକୁ ଗ୍ରାସଇ ।
ମାରିବାଜନେ ନିର୍ଦ୍ଦୋଷୀମାରେ ଉଠିଯେବେ
ଆଗ ମାରିଥିବା ଜନ ଦେହ ପାପ ଜବେ ।
ନିର୍ଦ୍ଦୋଷୀ ଜନକୁ ଯାଇ ଗ୍ରାସଇ ନିଶ୍ଚୟ
ଏକଥା ତୋତେ କହିଲା ଗନ୍ଧର୍ବ ତନୟ ।
ନବୁଝି ପୁଣି ତୁ ତାକୁ କଲୁ ଲୋ ପ୍ରହାର
ତେଣୁ ତୋତେ ଶାପଦେଲା ଗନ୍ଧର୍ବ କୁମର
ଏ ଅକର୍ମ କଲୁ ପୁତ୍ରି ଧର୍ମ କର୍ମ କର
ସତସଙ୍ଗ କଲେ ଶାପୁ ପାଇବୁ ଉଦ୍ଧାର ।
ସତସଙ୍ଗେ ମହାପୁଣ୍ୟ ହୁଅଇ ନନ୍ଦିନୀ
ସତସଙ୍ଗର ଯେ ଗୁଣ କହୁଅଛି ପୁଣି ।
ଦୃଷ୍ଟାନ୍ତର ଦେଖାଇଣ ଦେଉଛି ବୁଝାଇ
ଏହାକୁ ଲୋ ଭଲକରି ମନେରଖ ତୁହି ।
ମୁନିମାନେ ସ୍ନାନେ ପାନେ ଜଳର ସ୍ପରଶେ
ବାହାର ଅନ୍ତର ଧୋଇ ସିଦ୍ଧହୋନ୍ତି ଶେଷେ ।
ଚରାଚର ଲୋକେ ପୁଣ ତହିଁରେ ବଞ୍ଚନ୍ତି
ସେ ଜଳର ଗୁଣ ଏବେ ଶୁଣ ତୁଗୋ ପୁତ୍ରି ।
ଶାନ୍ତ ଶୀତଳ ନିର୍ମଳ ଲୋକ ପ୍ରିୟକାରୀ
ରସପ୍ରାୟ ପୁଣ୍ୟ ବୀର୍ଯ୍ୟ ମଳ ଅପହାରୀ ।
ସତସଙ୍ଗକୁ ଏରୂପେ ଜାଣିବୁ ନନ୍ଦିନୀ
ଯତ୍ନେ ସତସଙ୍ଗ କର ମୋର କଥା ମାନି ।

ମଳିଛଡ଼ାଏ ସୁବର୍ଣ୍ଣ ଯେହ୍ନେ ଅଗ୍ନି ସଙ୍ଗେ
ମାନବ ପାପ ଛଡ଼ାଏ ସତସଙ୍ଗ ଯୋଗେ ।
ସତ୍ୟରୂପୀ ଅଗ୍ନି ଯେହ୍ନେ ସ୍ୱଭାବେ ଉଜ୍ଜ୍ୱଳ
ଜଳି ଉଠଇ ସେ ପାଇ ପୁଣ୍ୟ ତେଜବଳ ।
ସତ ସେବାଯୋଗୁଁ ତାର ତେଜ ବୃଦ୍ଧିପାଏ
ଜ୍ଞାନ ଯୋଗବଳେ ପୁଣି ସୁନିର୍ମଳ ହୋଏ ।
ଅତି ଉଷ୍ଣ ତାପ ତାର ବଢ଼େ ଧ୍ୟାନବଳେ
ଡରେ ପାପୀ ନଛୁଅଁନ୍ତି ନପଶନ୍ତି ବଳେ ।
ଅଗ୍ନି ପ୍ରାୟ ସତସଙ୍ଗ ପାପଦିଏ ଜାଳି
ସତସଙ୍ଗ କର ମନେ କିଛି ତୁ ନଭାଳି ।
ଦେହରୁ ପାପ ଛଡ଼ାଇ ପୁଣ୍ୟ ଆଶ୍ରାକର
ମୁନିଙ୍କ ଆଗେ କହନ୍ତି ସୁତ ମୁନିବର ।
ପିତା ତହୁଁ ଜ୍ଞାନପାଇଁ ସୁନୀଥା ସୁନ୍ଦରୀ
ଦଣ୍ଡବତ କଲା ପିତା ପାଦ ଦୁଇ ଧରି ।
ପଶିଲା ଦୁଃଖିତ ମନେ ଗହନ ବନସ୍ତେ
କାମ କ୍ରୋଧ ବାଳଭାବ ନ ରଖିଲା ଚିତ୍ତେ ।
ମୋହ ଦ୍ରୋହ ମାୟାତେଜି ତପେଦେଲା ମନ
ଏକାନ୍ତ ବାସେ ରହିଲା ଉପୁଜିଲା ଜ୍ଞାନ ।
ଲୀଳାବତୀ ବିଶାଳାକ୍ଷୀ ଆଦି ସଖୀ ତାର
ଖେଳିବା ନିମନ୍ତେ ଗଲେ ଅରଣ୍ୟ ଭିତର ।
ଦେଖିଲେ ସୁନୀଥା ସଖୀ କ୍ଲେଶପାଏ ଅତି
ବସିଛି ସୁନ୍ଦରୀ ଧ୍ୟାନ ଯୋଗେ ରଖି ମତି ।
ସଖୀଗଣ ପଚାରିଲେ କହ ତୁଗୋ ଭଦ୍ରେ
କି ଚିନ୍ତା ବସି କରୁଛୁ ଦୁଃଖରଖି ହୃଦେ ।
ଆମ୍ଭ ଜାଣିବାରେ ଦୁଃଖନାହିଁ କିଛି ତୋର
ଅକାରଣେ କଷ୍ଟ ଦେଉ ମନକୁ ଆବର ।
ଚିନ୍ତାର କାରଣ ସଖି କହ ଆମ୍ଭଆଗେ
ଧର୍ମ ଚିନ୍ତାକରୁ ଯେବେ ତୁଗୋ ସଉଭାଗ୍ୟେ ।
ତେବେସେଚିନ୍ତା ତୋରଗୋସଫଳହୋଇବ
ନିଶ୍ଚେ ତାହା ଜାଣିଥାଅ ଅଟେ ଏହା ଧ୍ରୁବ ।
ଦ୍ୱିତୀୟ ଚିନ୍ତା ସାର୍ଥକ ଯୋଗିଜନଙ୍କର
ଏହାଛଡ଼ା ଆଉସବୁ ଚିନ୍ତା ଯେ ତୋହର ।
ନିରର୍ଥକ କିଛି ଫଳ ତହିଁରେ ଯେ ନାହିଁ
ସେ ଚିନ୍ତାଗୋଟା ତୋପକ୍ଷେ ଉଚିତ ନୁହଇ ।
ସେ ଚିନ୍ତା କରଇ ବଳ ବପୁ ତେଜ କ୍ଷୟ
ସର୍ବ ସଉଭାଗ୍ୟ କ୍ଷୟ ମୂଳୟା ନିଶ୍ଚୟ ।
ସେ ଚିନ୍ତାକଲେ ଦେହର ଶିରୀ ତୁଟିଯାଇ
ତୃଷ୍ଣା ଲୋଭ ମୋହ ଏହି ତିନିଙ୍କି ଆଣଇ ।
ଏ ତୃଷ୍ଣା ଦିନକୁଦିନ ବଢ଼ଇଗୋ ଯେବେ
ବେଳୁ ବେଳ ନାନା ପାପ ଉପୁଜାଇତେବେ ।
ସେହି ଚିନ୍ତା ବ୍ୟାଧିରୂପେ ଦେହକରେ କ୍ଷୀଣ
ହୁଅଇ ସେ ନର୍କଭୋଗ ଉତ୍ପତ୍ତି କାରଣ ।
ଏଣୁ ଚିନ୍ତା ଦୂରକର କହୁଛୁ ଶୋଭନେ
ପୂର୍ବଜନ୍ମ କର୍ମଫଳ ଭୋଗୁଥାନ୍ତି ଜନେ ।
ସେଥିପାଇଁ ଚିନ୍ତା କେଭେ ନକରଇ ଜ୍ଞାନୀ
ଏଣୁ ପଚାରୁଛୁଁ କହ ଚିନ୍ତାର କାହାଣୀ ।
କହିବାକୁ ଆରମ୍ଭିଲା ସୁନୀଥା ସୁନ୍ଦରୀ
ଦ୍ୱିଜ ଗୋପୀନାଥ ବୋଲେ ବୋଲ ହରି ହରି ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ
ବେନୋପାଖ୍ୟାନେ ସୁନୀଥା ଚରିତଂ
ନାମ ତ୍ରୟତ୍ରିଂଶୋଽଧ୍ୟାୟଃ ।



## ଚତୁତ୍ରିଂଶ ଅଧ୍ୟାୟ

### ସଖୀଆଗେ ସୁନୀଥାର ଦୁଃଖ ପ୍ରକାଶ

ସୁତମୁନି କହୁଛନ୍ତି ଋଷିଙ୍କ ଆଗରେ
ପୂର୍ବେ ସୁଶଙ୍ଖ ଗନ୍ଧର୍ବ କାନନ ଭିତରେ ।
ସୁନୀଥାକୁ ଅଭିଶାପ ଦେଇଥିଲା ଯାହା
ସଖୀଙ୍କ ଆଗେ ସୁନୀଥା କହିଲା ଯେ ତାହା ।
ସବୁ ଫିଟାଇ କହିଲା କିଛି ନ ଲୁଚାଇ
ପୁଣି ସୁନୀଥା କହିଲା ସଖୀଙ୍କି ଅନାଇ ।
ଆଉ ଏକ କଥା ଶୁଣ ସହଚରୀଗଣ
ରୂପ ସମ୍ପତ୍ତି ବୟସ ଆବର ମୋ ଗୁଣ ।
ଦେଖି ମୋର ପିତାକରେ ସବୁବେଳେଚିନ୍ତା
ଦେବତା କି ମୁନି ହସ୍ତେ ଦେବି ଏ ଦୁହିତା ।
ଏମନ୍ତକହି ମୋ ପିତା ମୋର କରଧରି
ଦେଖାଇ ତାହାଙ୍କ ଆଗେ କହନ୍ତି ଏପରି ।
ଏ ମୋର ଦୁହିତା ଦେଖ ସୁଚାରୁ ନୟନା
ତିନି ଭୁବନରେ ରୂପ ଗୁଣରେ ଏ ଧନ୍ୟା ।
ଏରୂପେ ସୁନ୍ଦର ଗୁଣବନ୍ତ ହସ୍ତେ ଦେବି
ଦେବ ଋଷିଗଣେ ଶୁଣି ମନମଧ୍ୟେ ଭାବି ।
ବୋଇଲେ ପିତାଙ୍କୁ ମୋର ପୁଣି ଏ ବଚନ
ଏ କନ୍ୟାର ରୂପଗୁଣ ସ୍ୱଭାବହିଁ ଧନ୍ୟ ।

ଏକମାତ୍ର ଦୋଷଅଛି ଏ କନ୍ୟାର ଜାଣ
ସୁଶଙ୍ଖ ଗନ୍ଧର୍ବ ଶାପ ଦେଇଅଛି ପୁଣ ।
ଏହା ଗର୍ଭୁ ଉପୁଜିବ ଯେବଣ କୁମର
ମହାପାପୀ ହେବ ପୁଣ୍ୟ ବଂଶ ନାଶକର ।
ଗଙ୍ଗାଜଳେ ପୂରିଥିବା ଘଟେ ଯେବେ କେହି
ବିନ୍ଦୁଏ ମଦ ପକାଇଦିଏ ପୁଣି ନେଇ ।
ସେ ଜଳଘଟ ଯେମନ୍ତେ ହୁଏ ମଦ ବାରି
ତେସନ କୁଳ ପାପୀର ପାପ ସଙ୍ଗକରି ।
କାଞ୍ଜି ଟୋପାକରେ କ୍ଷୀର ଅପେୟ ଯେସନ
ପାପୀପୁତ୍ର ବଂଶ ଧ୍ୱଂସ କରଇ ତେସନ ।
ଏ ଦୋଷେ ଏ ତୁମ୍ଭ କନ୍ୟା ହୋଇଛି ପାପିନୀ
ଏଣୁ ଏହି କନ୍ୟା ଧରୁ ଆନଜନ ପାଣି ।
ମୋ ପିତାକୁ ଏହିରୂପେ କହି ଦେବଗଣ
ଋଷି ଗନ୍ଧର୍ବଙ୍କୁ ଘେନି ଗଲେ ତତକ୍ଷଣ ।
ଦୁଃଖରେ ଅତି ପୀଡ଼ିତ ହେଲେମୋ ପିଅର
ସେଦିନୁ ନ ଧଇଲେତ କେହି ମୋର କର ।
ଶୋକେ ସନ୍ତାପିତା ହୋଇ ପଶିଲି ମୁଁ ବନେ
ତପ କରିବି ଏକଥା ପାଞ୍ଚିଅଛି ମନେ ।
ତପେ ଏ ବପୁକୁ କ୍ଷୀଣ କରିବି ମୋ ପଣ
କହିଲି ତୁମ୍ଭ ଆଗରେ ଦୁଃଖର କାରଣ ।
ମୃତ୍ୟୁ ଦୁହିତା ସୁନୀଥା କହି ହେବା ତୁନି
ସଖୀଗଣ କହିଲେ ଗୋ ଶୁଣ ତୁ ମାନିନୀ ।
ଦୁଃଖ ଚିନ୍ତାଛାଡ଼ି ଦେହ ନକର ଗୋ କ୍ଷୀଣ
ବୁଝିଲେ ସବୁରି କୁଳେ ଦୋଷଅଛି ପୁଣ ।
ଦେବେ ମଧ ରହିଛନ୍ତି ପାପ ଆଶ୍ରାକରି
ଯେ ବ୍ରହ୍ମାର ଚାରିମୁଖେ ଅଛି ବେଦଚାରି ।
ହରି ଆଗେ କୂଟକଥା କହିବାରୁ ସେହି
ଆଜିଯାଏ ପୂଜା ତାକୁ ନ କରନ୍ତି କେହି ।
ସବୁରି ପୂଜ୍ୟହେଲେହେଁ ଦେବେ ନ ପୂଜନ୍ତି
ବ୍ରହ୍ମହତ୍ୟା ମହାପାପ କରି ସୁରପତି ।
ଦେବଗଣ ଘେନି ଭୋଗକଲେ ତିନିପୁର
ଗଉତମ ଭାରିଯାକୁ ହରିଲା ଆବର ।
ସ୍ୱର୍ଗ ଭୋଗକରେ ଇନ୍ଦ୍ର ସୁଖ ଭୋଗକରି
ବ୍ରହ୍ମହତ୍ୟା ଗୋରୁହତ୍ୟା କଲେ ତ୍ରିପୁରାରି ।
ବ୍ରହ୍ମ କପାଳ ହସ୍ତରେ ଲାଗିଛି ତାଙ୍କର
ଦେବଋଷିଏ ସେବନ୍ତି ତାହାଙ୍କ ପୟର ।
ଆଦିତ୍ୟ ତିନିଭୁବନ ଅନ୍ଧାର ନାଶଇ
ତାହାର ଦେହରେ ପୁଣି କୁଷ୍ଠରୋଗ ହୋଇ ।
ଦେବତା ଆଦି ପ୍ରାଣୀଏ ତା ପାଦ ସେବନ୍ତି
ଜଗତଜନ କରତା ଯେ କୃଷ୍ଣ ଅଟନ୍ତି ।
ତାଙ୍କୁ ପୁଣି ଶାପଦେଲେ ଭୃଗୁ ମୁନିବର
ଚନ୍ଦ୍ର ଯେ ଗୁରୁ ପତ୍ନୀକୁ ହରିଲେ ଆବର ।
ତେଣୁ ଅମାବାସ୍ୟାଦିନ ଚନ୍ଦ୍ରକ୍ଷୟ ହେଲା
ସେ ମହାତେଜା ଯେ ଦ୍ୱିଜରାଜ ବୋଇଲା ।
ପାଣ୍ଡୁ ରାଜାର ନନ୍ଦନ ଧର୍ମ ଯୁଧିଷ୍ଠିର
ଗୁରୁବଧ ପାଇଁ ମିଛ କହିଲେ ଆବର ।
ଏ ସକଳ ମହାଜନେ ଘୋର ପାପକଲେ
ବଇଗୁଣ୍ୟ ନାହିଁ କାର ଅଛନ୍ତି ସେ ଭଲେ ।
କାହାର କିଛି ଲାଞ୍ଛନା ନାହିଁ ନ୍‌ବାରନ୍ତି
ଅଳପ ଦୋଷକୁ କିମ୍ପା ଚିନ୍ତା ତୋର ଅତି ।
ତୋ ଉପକାର କରିବୁଁ ଆମ୍ଭେ ବରାନନେ
ସର୍ବଦା ଭୂଷଣ ତୁହି ସାଧୁ ନାରୀଗୁଣେ ।
ତୋର ଏ ଯେ ଗୁଣଆମ୍ଭେ ଦେଖିନାହୁଁ କାହିଁ
ନାରୀର ପ୍ରଥମ ଗୁଣରୂପ ଗୋ ସୁମୁହିଁ ।
ଦ୍ୱିତୀୟ ଗୁଣ ସ୍ୱଭାବ ତୃତୀୟ ଯେ ସତ୍ୟ
ଚତୁର୍ଥଗୁଣ ତାହାର ଅଟେ ସରଳତ୍ୱ ।
ପଞ୍ଚମ ଗୁଣ ଯେ ଧର୍ମ ଷଷ୍ଠ ଯେ ମାଧୁରୀ
ସପତମ ଗୁଣକଥା ଶୁଣ କର୍ଣ୍ଣ ଡେରି ।
ସର୍ବଦା ପବିତ୍ରଥିବ ଅନ୍ତର ବାହାର
ପିତୃସେବା ଅଷ୍ଟମଯେ ଗୁଣ ତାହାଙ୍କର ।
ନବମ ଗୁରୁ ଶୁଶ୍ରୁଷା ଦଶମ ସହିବା
ଏକାଦଶ ଗୁଣ ରତି ପୁଣି ସ୍ୱାମୀସେବା ।
ଦ୍ୱାଦଶ ଅଟଇ ଜାଣ ପତିବ୍ରତା ଗୁଣ
ଏହି ଦ୍ୱାଦଶ ଗୁଣରେ ସଦା ତୁ ଭୂଷଣ ।
ଉତ୍ତମ ସ୍ୱାମୀ ପାଇବୁଯେ କେହି ଉପାୟେ
ଦୁଃସାହ ନକର ସନ୍ଧି ନକର ତୁ ଭୟେ ।
ଆମ୍ଭେ ତୋ ପାଇଁ କରିବୁ ନାନାଦି ଉପାୟ
ଏଥିରେ ତୁ କିଛି ମାତ୍ର ନକର ସଂଶୟ ।
ସୁନୀଥା କହିଲା ସଖୀମାନଙ୍କୁ ଅନାଇ
କି ଉପାୟ କଲେ ଭଲବର ମୁହିଁ ପାଇ ।
ଫିଟାଇ କହିଲେ ସିନା ଯିବଇଁ ପରତେ
ଶୁଣି ରମ୍ଭା ସଖୀ କହେ ସୁନୀଥା ଅଗ୍ରତେ ।

ତୁ ରୂପମାଧୁରୀମୟୀ ଅଟୁ ଲୋ ସଜନି
ବ୍ରହ୍ମଶାପ ଭୟେ ତୁଗୋ ହୋଇଛୁ ମାନିନୀ ।
ତାହା ଜାଣିପାରି ଆମ୍ଭେ ଆସିଛୁ ତୋପାଶେ
ପୁରୁଷ ମୋହିନୀବିଦ୍ୟା ଦେଉଛି ମୁଁ ତୋଷେ ।
ମାୟାବୀ ଲୋକର ଶୁଭ ଦାୟିନୀ ଏ ଜାଣ
ଏହାକହି ସୁନୀଥାକୁ କଲା ବିଦ୍ୟା ଦାନ ।
କହିଲା ଗୋ ବିଶାଳାକ୍ଷି ଏହି ବିଦ୍ୟାବଳେ
ଦେବତା ମୁନିଙ୍କି ମୋହିପାରୁ ଅବହେଳେ ।
ସେ ବିଦ୍ୟା ସିଦ୍ଧ ହୋଇଲା ଯହୁଁ ସୁନୀଥାର
ଆନନ୍ଦେ ସଖିଙ୍କସଙ୍ଗେ କଲା ସେ ବିହାର ।
ବିହରି ବିହରିଗଲେ ନନ୍ଦନ କାନନେ
ଦେଖିଲେ ଗଙ୍ଗାନଦୀର ତୀର ଉପବନେ ।
ସୂର୍ଯ୍ୟପ୍ରାୟ ତେଜୋବନ୍ତ ସର୍ବ ସୁଲକ୍ଷଣ
ତପକରେ ରୂପବନ୍ତ ଏକଇ ବ୍ରାହ୍ମଣ ।
ସୁନ୍ଦରପଣେ ସେ ମନମଥକୁ ନିନ୍ଦଇ
ଇନ୍ଦ୍ର ଚନ୍ଦ୍ର ବିଦ୍ୟାଧର ପ୍ରାୟ ଶୋଭାପାଇ ।
ସଉଭାଗ୍ୟର ସମ୍ପଦ ଅଟେ ଭାଗ୍ୟବାନ
ମହାତମା ତେଜରେ ସେ ବିଷ୍ଣୁର ସମାନ ।
ବିଷ୍ଣୁ ତୁଲ୍ୟ ପରାକ୍ରମୀ ବଇଷ୍ଣବମଣି
ସର୍ବ ପାପହନ୍ତା କାମକ୍ରୋଧ ରିପୁ ଜିଣି ।
ଅତ୍ରିକୁଳ ଭୂଷଣ ସେ ଜ୍ଞାନର ଚନ୍ଦ୍ରମା
ସୁନୀଥା ଦେଖି ସେ ରୂପବନ୍ତ ମହାତମା ।
ତପୋମୟ ଦିବ୍ୟପ୍ରଭା ରାଶି ସେ ପୁରୁଷ
ରମ୍ଭାକୁ ଚାହିଁ ବୋଇଲା ହୋଇ ହସ ହସ ।
କହ ସଖି ଏ ସ୍ୱର୍ଗୀୟ ପୁରୁଷ ଗୋ କିଏ
ଶରଣ ଶ୍ରୀ ଗୋପୀନାଥ ଶ୍ରୀଗୋବିନ୍ଦପାୟେ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ନାମ ଚତୁସ୍ତ୍ରିଂଶୋଽଧ୍ୟାୟଃ ।



## ପଞ୍ଚତ୍ରିଂଶ ଅଧ୍ୟାୟ

### ରମ୍ଭାମୁଖରୁ ସୁନୀଥାର ଅଙ୍ଗବୃତାନ୍ତ ଶ୍ରବଣ

ରମ୍ଭାସଖୀ କହୁଅଛି ସୁନୀଥାକୁ ଚାହିଁ
ଅନାଦି ଅବ୍ୟକତ ଯେ ଠୁଳଶୂନ୍ୟ ଦେହୀ ।
ତା ତହୁଁ ବ୍ରହ୍ମା ଉପୁଜି ସୃଷ୍ଟି କିଆଇଲେ
ପ୍ରଜାପତି ଅତ୍ରିମୁନି ତହୁଁ ଉପୁଜିଲେ ।
ମହାମନ ଅଙ୍ଗନାମେ ସେ ଅତ୍ରିକୁମର
ଏହି ସେହି ଅଙ୍ଗଦିନେ କରନ୍ତେ ବିହାର ।
ନନ୍ଦନବନେ ଦେଖିଲା ଇନ୍ଦ୍ର ରସଲୀଳା
ବିଳାସ ବିଭବ ଆଦି ସମ୍ପଦ ଦେଖିଲା ।
ମନରେ ଭାବିଲା ମୋର ଦେବ ଇନ୍ଦ୍ରପ୍ରାୟ
ପୁତ୍ରେକ ଯେମ୍ଭେ ହୋଇବ କରିବି ଉପାୟ ।
ତେଣେ ମୋ ଜନମଗୋଟା ସଫଳହୋଇବ
ଏହାଭାଳି ତୋଷିଲା ସେ ତପେ ବାସୁଦେବ ।
ପ୍ରସନ୍ନେ ଆସି ଶ୍ରୀହରି ଦେଲେ ତାକୁ ବର
ଇନ୍ଦ୍ରତୁଲ୍ୟ ପ୍ରଭାବନ୍ତ ପୁତ୍ରହେଉ ତୋର ।
ବିଷ୍ଣୁ ପ୍ରାୟ ତେଜୋବନ୍ତ ହେବ ପାପହାରୀ
ପରାକ୍ରମୀ ହୋଇବ ସେ ଯେସନ ଶ୍ରୀହରି ।
ବଇଷ୍ଣବ ଚୂଡ଼ାମଣି ହୋଇବ ସେ ପୁତ୍ର
ଏମନ୍ତେ ବରଦେଇଣ ଗଲେ ପଦ୍ମନେତ୍ର ।
ସେଦିନୁ କନ୍ୟାଗୋଟିଏ ଏ ଅଙ୍ଗ ଖୋଜଇ
ଉପୁଜିଥିବ ଧାର୍ମିକ ଜନଠାରୁ ସେହି ।
ରୂପଗୁଣ ସ୍ୱଭାବହିଁ ଭଲ ହୋଇଥିବ
ଆଗୋ ବରାରୋହା ତୁହି ମନମଧ୍ୟେ ଭାବ ।
ଯେ ଯେମନ୍ତ କନ୍ୟାଖୋଜେ ତୁଅଟୁ ତେମନ୍ତ
ମୋବିଚାରେ ଏହିଅଙ୍ଗ ତୋର ଯୋଗ୍ୟପାତ୍ର ।
ଏ ଅଙ୍ଗ ସଙ୍ଗମିଳନେ ଶାପୁଯିବୁ ତରି
ବିଷ୍ଣୁ ବରକୁ କି କେହି ଆନକରି ପାରି ।
ତୋ ଗର୍ଭରେ ଧର୍ମ ପ୍ରଚାରକ ପୁତ୍ରହେବ
ସୁଶଙ୍ଖର ଶପ ବୃଥାହେବ ମନେ ଭାବ ।
ଏହାକୁ ତୁ ବିଭାହେଲେ ନିଶ୍ଚେ ହେବୁ ସୁଖୀ
ମୁଁ ସତ କହୁଛି କେଭେ ନୋହିବୁ ବିମୁଖୀ ।
ସୁକ୍ଷେତ୍ରରେ ବୀଜବୁଣି କୃଷକ ଯେସନ
ବୀଜତୁଲ୍ୟ ଫଳ ଭୋଗକରଇ ତେସନ ।
ଏ ଅଙ୍ଗ ତୋ ଗର୍ଭେ ପୁତ୍ରପାଇବ ତା ପ୍ରାୟ
ପୁଣ୍ୟ ବୀର୍ଯ୍ୟବନ୍ତ ତପୀ ଏ ଅତ୍ରିତନୟ ।
ଏହାର ପୁତ୍ର ନିଶ୍ଚୟ ଏହାତୁଲ୍ୟ ହେବ
ମହାତେଜା ସର୍ବଶ୍ରେଷ୍ଠ ଯେସନେ ବାସବ ।
ତେସନ ସେ ପୁତ୍ର ଭାଗ୍ୟବନ୍ତ ଯୁକ୍ତଯୋଗୀ
ଏଥିରେ କିଛି ସଂଶୟ ନାହିଁ ହେବ ଭୋଗୀ ।

ରମ୍ଭାର ଏକଥା ଶୁଣି ସୁନୀଥା ସୁନ୍ଦରୀ
ସ୍ଥିରକଲା ଆପଣାର ମନରେ ବିଚାରି ।
ଦ୍ୱିଜ ଗୋପୀନାଥ ବୋଲେବୋଲ ହରିହରି
ଏ ଘୋର ଭବସାଗରୁ ହେଲେ ଯିବ ତରି
ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ନାମ ପଞ୍ଚତ୍ରିଂଶୋଽଧ୍ୟାୟଃ ।



## ଷଟ୍‌ତ୍ରିଂଶ ଅଧ୍ୟାୟ

## ସୁନୀଥା ବିଭା ଓ ବେନ ଜନ୍ମ

ସୁନୀଥା କହିଲା ସଖି କହିଲୁ ତୁ ସତ
ବିଦ୍ୟାବଳେ ବିପ୍ରଙ୍କୁ ମୁଁ କରିବି ମୋହିତ ।
ଯେମନ୍ତେ ଏକ୍ଷଣି ମୁହିଁ ଏଥୁଁ ପାରେ ଯାଇ
ଆଲୋ ସଖି ସାହାମୋତେ ହୁଅ ପାଶେଥାଇ ।
ସୁନୀଥା କହନ୍ତେ ରମ୍ଭା ତାହାକୁ କହିଲା
କିରୂପେମୁଁ ତୋରସାହା ହୋଇବିଗୋବାଳା ।
କହିଲେ ସିନା ସାହାଯ୍ୟ କରିବି ତୋହର
ସୁନୀଥାରମ୍ଭାକୁ ଦିଏ ଏ ପ୍ରତି ଉତ୍ତର ।
ତୁଗୋ ମୋର ଦୂତହୋଇ ଯାଆ ବିପ୍ରପାଶେ
ଦେବବାଳା ରମ୍ଭା ତାକୁ ହୋଇଲା ହରଷେ ।
ସତ୍ୟ କହୁଅଛି ତୋର କଥା ମୁଁ କରିବି
ପ୍ରାଣପଣେ ତୋର ନିଶ୍ଚେ ସାହା ହୋଇଥିବି ।
ସ୍ୱଭାବେତ ସେ ସୁନୀଥା ସୁନ୍ଦରୀ ଅଟଇ
ରୂପ ଯଉବନେ ତାକୁ ସରିସମ ନାହିଁ ।
ମାୟାବଳେ ସେ ଅଧିକ ହେଲା ରୂପବତୀ
ରୂପକୁ ତୁଳନାନାହିଁ ଏ ତିନିଜଗତୀ ।
ତିନିଭୁବନ ମୋହିନୀ ସୁନ୍ଦରୀ ହୋଇଲା
ସୁନ୍ଦର କନ୍ଦରମେରୁ ମନ୍ଦିରେ ମିଳିଲା ।
ମହାପୁଣ୍ୟମୟ ତାର ଶିଖର ସୁନ୍ଦର
ନାନାଧାତୁରେ ମଣ୍ଡନ ତାର କଳେବର ।
ନାନାଦି ରତ୍ନେରଞ୍ଜିତ ହୋଇଛି ସେ ପୁଣି
ଦେବବୃକ୍ଷରେ ଆହୁରି ହୋଇଛି ମଣ୍ଡଣୀ ।
ପୁଷ୍ପଭୂଷଣେ ଭୂଷିତ ହୋଇ ଦେବଗଣ
ସଙ୍ଗେ ଅପଶରାଗଣ ଗନ୍ଧର୍ବ ଚାରଣ ।
ଥିବାରୁ ସେ ମନୋହର ହୋଇଛି ଆହୁରି
ଚନ୍ଦନ ଅଶୋକବୃକ୍ଷ ଛାଇରେ ସେ ପୂରି ।
ସବୁକାମ ଉପଭୋଗ ଶୋଭା ଦେଖି ଦେଖି
ଚାରୁହାସିନୀ ସୁନୀଥାସୁନ୍ଦରୀ ସୁମୁଖୀ ।
ନୀଳ କଉଶେୟ ବାସ ପିନ୍ଧିଅଛି ବାଳା
କଞ୍ଚୁକ ତାର ବନ୍ଧକ କୁସୁମର ମାଳା ।
ଦୋଳା ଉପରେ ବସିଲା କରେ ବୀଣା ଧରି
ଗାଇଲା ବିଶ୍ୱମୋହନ ଗୀତ ସେ ସୁନ୍ଦରୀ ।
କୋକିଳଠାରୁ ଅଧିକ ସୁନ୍ଦର ତା ସ୍ୱର
ଚାରିପାଖ ଘେରି ସଖୀ ଅଛନ୍ତି ତାହାର ।
କାମକ୍ରୋଧ ଶୂନ୍ୟଅଙ୍ଗ ଥିଲା ଏକାନ୍ତରରେ
ହରିଧ୍ୟାନେ ବସିଥିଲା ସୁମେରୁକନ୍ଦରେ ।
ତାଳମାନ ଦିଆ ଗୀତ ପ୍ରାଣି ବିମୋହନ
ଅତିମଧୁର ସଙ୍ଗୀତ କରିଣ ଶ୍ରବଣ ।
ଧ୍ୟାନଭାଙ୍ଗି ଗଲା ମନ ବିଚଳିତ ହେଲା
ତେଜୋବନ୍ତ ତପୀହୋଇ ମାୟାରେ ବୁଲିଲା ।
ଆସନୁ ଉଠି ଚାହିଁଲା ତାକୁ ବାରମ୍ବାର
ସୁନୀଥାପାଖକୁଗଲା ହୋଇଣ ଅଧୀର ।
ସୁହାସିନୀ ସୁଗାୟିକା ସେ ବୀଣାବାଦିନୀ
ପୂର୍ଣ୍ଣଚନ୍ଦ୍ରବଦନୀ ଯେ ସୁନୀଥାକାମିନୀ ।
ଦୋଳିରେ ବସିଥିବାର ଦେଖି ଅଙ୍ଗଦ୍ୱିଜ
ରୂପସଙ୍ଗୀତେ ମୋହିତ ଅତ୍ରିର ତନୁଜ ।
ଲାବଣ୍ୟ ଲୀଳାମୟୀ ଏ ବିଚାରିଲା ମନେ
ଲାଜଭୟ ଛେଦିଲା ସେ ମନମଥ ବାଣେ ।
ଆକୁଳ ବ୍ୟାକୁଳେ ତାର ହଜିଗଲା ଜ୍ଞାନ
ପ୍ରଳାପ କରଇ ହାଇ ଉଠେ ପୁଣ ପୁଣ ।
ସ୍ୱେଦ କମ୍ପ ସନ୍ତାପ ତା ଦେହୁଁ ଉପୁଜିଲା
ମହାମୋହେ ମୋହ ଯାଇ ମଳିନ ଦିଶିଲା ।
ମନଚଞ୍ଚଳ ଅଙ୍ଗର କମ୍ପେ ଦେହଯାକ
ସୁନୀଥାକୁ ଚାହିଁ କହେ ସୁମଧୁର ବାକ୍ୟ ।
ବିଶାଳ ନୟନା ତୁଗୋ ସୁଚାରୁହାସିନୀ
କାହାର ନନ୍ଦିନୀ ତୁଗୋ ସଖିଗଣ ଘେନି ।
ଏ ସ୍ଥାନକୁ ଆସିଅଛୁ କହ କି ନିମନ୍ତେ
ଏ ବନକୁ ପଠାଇଛି କିଏ କହ ତୋତେ ।
ତୋ ସୁନ୍ଦର ରୂପ କରେ ଏ ବନଉଜ୍ଜ୍ୱଳ
ପ୍ରସନ୍ନମୁଖୀ ହୋଇ ତୁ କହ ଗୋ ସକଳ ।
ତା ମାୟାଜାଲରେ ପଡ଼ି ଅଙ୍ଗ ମହାମୁନି
ବୁଝି ନପାରିଲେ ଏହି ଅଟେ ମାୟାବିନୀ ।

ସୁନୀଥା ଶୁଣି କିଛିହିଁ ନଦେଲା ଉତ୍ତର
ସଖୀମୁଖ ଚାହିଁ ଠାରି ଦେଲା ରାମାବର ।
ରମ୍ଭାସଖୀ ବୋଇଲା ସେ ଦ୍ୱିଜକୁ ସାଦରେ
ଏ ମହାତମା ମୃତ୍ୟୁର ଭାରିଯା ଉଦରେ ।
ଜନମିଅଛି ଏହାର ନାମ ଯେ ସୁନୀଥା
ଏହି ଭାଗ୍ୟବତୀ ଯଥା ଗୁଣବତୀ ତଥା ।
ଏହାର ମନର କଥା କହୁଅଛୁଁ ଶୁଣ
ବର ଖୋଜୁଅଛି ଏହା ସମ ରୂପଗୁଣ ।
ବୁଦ୍ଧି ବିଦ୍ୟା ଥିବ ଚାରିବେଦ ପଢ଼ିଥିବ
ତପୀ ଶାନ୍ତ ଦାନ୍ତ ପୁଣ୍ୟବନ୍ତ ହୋଇଥିବ ।
ଏମନ୍ତ ବର ପାଇଲେ ଧରିବ ତା କର
ରମ୍ଭା ଅପସରା କଥା ଶୁଣି ମୁନିବର ।
ବୋଇଲେ ମୁଁ ତପେକଲି ବିଷ୍ଣୁଙ୍କ ପ୍ରସନ୍ନ
ମାଗିଲି ତାଙ୍କୁ ଦୁର୍ଲ୍ଲଭ ଉତ୍ତମ ନନ୍ଦନ ।
ସେ ମୋତେ ଯେ ବରଦେଇଗଲେ ନିଜପୁରେ
କହିଗଲେ ପୁଣି ମୋତେ ପ୍ରଭୁ ଆନନ୍ଦରେ ।
ଖୋଜ ପୁଣି ବୀର୍ଯ୍ୟବନ୍ତ ଜନର ଦୁହିତା
ତାଗର୍ଭେ ପୁତ୍ର ପାଇବ ସେ ହେଲେ ବନିତା ।
ସେ ଦିନୁ ଖୋଜୁଛି ଆଜିଯାଏ ପାଇ ନାହିଁ
ଧର୍ମକନ୍ୟା ବରାନନା ଅଟେ ଯେଣୁ ଏହି ।
ମତେ ପତିପଣେ ଭଜୁ ଆସିଲେମନକୁ
ଯାହା ମାଗିବ ମୁଁ ତାହା ଦେବଇଁ ଏହାକୁ
ଦୁର୍ଲ୍ଲଭ ଦ୍ରବ୍ୟ ମୁଁ ଦେଇପାରେ ଏହାପାଇଁ
ରମ୍ଭା କହିଲା ଶୁଣିମା ହେ ଦ୍ୱିଜ ଗୋସାଇଁ ।
ପ୍ରତିଜ୍ଞା କରିଛି ଯାର ଧରିବି ମୁଁ ପାଣି
ତ୍ୟାଗ ନ କରିବ ଭଲ ମନ୍ଦ କଲେ ପୁଣି ।
ଧର୍ମପତ୍ନୀ ହୋଇ ମୁହିଁ ଥିବି ତାର ଘରେ
ନ ଧରିବ ମୋର ଦୋଷଗୁଣ ସେ ମନରେ ।
ଏ ସତ୍ୟ ଯେବେ ତୁମ୍ଭର ଆହେ ଦ୍ୱିଜବର
ହସ୍ତ ବଢ଼ାଇ ଧରନ୍ତୁ ଏ ସଖୀର କର ।
ହେଉ କହି ଅଙ୍ଗମୁନି କର ବଢ଼ାଇଲା
ଗାନ୍ଧର୍ବ ବିଭା ବିଧିରେ ତା ପାଣି ଧଇଲା ।
ଆନନ୍ଦରେ ରମ୍ଭା ଧରି ସୁନୀଥାର କର
ସମର୍ପି ସଖୀଙ୍କି ଘେନିଗଲା ନିଜପୁର ।
ସର୍ବସଖୀ ତହୁଁ ଯହୁଁ ଅନ୍ତର ହୁଅନ୍ତେ
ଅଙ୍ଗ ସୁନୀଥାକୁ ଘେନି ରହିଲେ ଏକାନ୍ତେ ।

ସର୍ବ ସୁଲକ୍ଷଣ ପୁତ୍ର ହେଲା ତାର କାଳେ
ଅଙ୍ଗ ସେ ପୁତ୍ରକୁ ଦେଖି ବେନ ନାମଦେଲେ ।
ଦିନେ ଦିନେ ବଢ଼ିଲା ସେ ସୁନୀଥା ନନ୍ଦନ
ବେଦ ବିଦ୍ୟା ଧନୁର୍ବେଦ ଶିଖିଲା ସେ ପୁଣ ।
ଦ୍ୱିଜବର ବୋଲାଇଲା ଶିଷ୍ଟାଚାରେ ରହି
ଯୁଦ୍ଧ ଜାଣିବାରୁ କ୍ଷତ୍ରୀ ବୋଲି ତାକୁ କହି ।
ତେଜ ବୀର୍ଯ୍ୟବଳେ ସେହି ଦେବେନ୍ଦ୍ର ସମାନ
ମହାବଳ ବୁଦ୍ଧିମନ୍ତ ହେଲା ସେହି ବେନ ।
ଚାକ୍ଷୁସ ମନରେ ଶେଷ ହେଲା ଯେତେବେଳେ
ବୈବସ୍ୱତ ମନୁ ଆଦ୍ୟ ଅଧିକାର କାଳେ ।
ରାଜା ନଥିବା ଯୋଗୁଁ ଯେ ପ୍ରଜାଙ୍କର କଷ୍ଟ
ଯେତେ ଋଷିଥିଲେ ଧର୍ମନିଷ୍ଠ ତପୋନିଷ୍ଠ ।
ପ୍ରଜାଙ୍କ ରକ୍ଷା ନିମନ୍ତେ କରନ୍ତେ ଭାଳେଣି
ପ୍ରଜାଙ୍କୁ ପାଳିବ କେଉଁ ସତ୍ୟବନ୍ତ ପ୍ରାଣୀ ।
ବେନର ଦେଖି ଋଷିଏ ସକଳ ଲକ୍ଷଣ
ତୀର୍ଥଜଳେ ଅଭିଷେକ କରି ଋଷିଗଣ ।
ରାଜାହୋଇ ବେନ ଏହି ମହୀକି ପାଳିଲା
ଋଷି ଦେଖିଲେ ପ୍ରଜାଙ୍କୁ ସୁସ୍ଥରେ ରଖିଲା ।
ଋଷିଗଣ ନିଜ ନିଜ ତପେ ବନେ ଗଲେ
ମୁନିଙ୍କ ଆଗରେ ସୁତମୁନି ଯେ କହିଲେ ।
ପୁତ୍ରରାଜା ହେବା ଦେଖି ସୁନୀଥା ସୁନ୍ଦରୀ
ସୁଶଙ୍ଖର ଶାପକୁ ସେ ସବୁବେଳେ ଡ଼ରି ।
ବିଚାରଇ ଧର୍ମଦ୍ୱେଷୀ ହେବ ମୋ କୁମର
ଏହି ଦକାଗୋଟି ହୃଦେ ଥିବାରୁ ତାହାର ।
ଧର୍ମ ଉପଦେଶ ମାତା ଦେଉଥାଇ ନିତ୍ୟ
ମୁଁ ଧର୍ମ ଦୁହିତା ତୋର ମାତା ଆରେ ସୁତ ।
ଧର୍ମର ତତ୍ତ୍ୱ ତୋ ପିତା ଜଣାଇ ଆବର
ଏଣୁ ତୁ ସର୍ବଦା ମନଦେଇ ଧର୍ମକର ।
ମାତା ପିତା କଥା ମାନି ସେ ବେନ ରାଜନ
ଧର୍ମରେ ଥାଇ ପ୍ରଜାଙ୍କୁ କଲା ସେ ପାଳନ ।
ପ୍ରଜାମାନେ ସୁଖେ ରହି ଧର୍ମ କର୍ମ କଲେ
ଗୋପୀନାଥ ମନହରି ପାଦପଦ୍ମ ତଳେ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନ-
ଜନ୍ମୋପାଖ୍ୟାନଂ ନାମ
ଷଟତ୍ରିଂଶୋଽଧ୍ୟାୟଃ ।



## ସପ୍ତତ୍ରିଂଶ ଅଧ୍ୟାୟ

### ବେନର ବେଦଧର୍ମ ଧ୍ୱଂସ

ପଚାରିଲେ ଋଷିଗଣ ଆହେ ମୁନି ସୂତ
ମହାତମା ବେନ ଯେବେ ଏରୂପେ ସମ୍ଭୂତ ।
ବେଦଧର୍ମ ତେଜି କିମ୍ପା ପାପେଦେଲା ମତି
ସୁତମୁନି କହିଲେ ଯେ ଜ୍ଞାନୀମୁନି ଯତି ।
ଶୁଭ ବା ଅଶୁଭ ତାଙ୍କ ମୁଖଁ ଯା ବାହାରି
ସେ କଥାକୁ ଆନ କେହି ନ ପାରନ୍ତି କରି ।
ବ୍ରହ୍ମା ବିଷ୍ଣୁ ହର ଆଦି ଦେବଗଣ ଯେତେ
ଆନକରି ନପାରନ୍ତି ଯଥାସାଧ ମତେ ।
ତପ କଲାବେଳେ ଶାପ ଦେଇଛି ଗନ୍ଧର୍ବ
ସେ ଶାପବାଣୀ ତାହାର ବିଅର୍ଥ ନୋହିବ ।
ପାପ ଆଚରଣ କଥା କହୁଛି ବେନର
ସେ ରାଜ୍ୟ ପାଳିବାବେଳେ ଏକ ଦିନକର ।
କପଟ ବେଶରେ ଏକ ପୁରୁଷ ଅଇଲା
ଦେଖିବାକୁ ମୋଟାରୋଟା ସର୍ବାଙ୍ଗ ଲଙ୍ଗଳା ।
ମୁଣ୍ଡିତ ମୁଣ୍ଡ ତାହାର ପ୍ରଭାବ ପ୍ରବଳ
ଛାଞ୍ଚୁଣିମୁଠାଏ କାଖେ ଜାକିଛି କେବଳ ।
ଶିଖିପତ୍ରେ ସେ ଛାଞ୍ଚୁଣୀ ହୋଇଛି ତିଆରି
ପିଇବା ପାତ୍ର ନଡ଼ିଆ ସଢ଼େଇକି କରି ।
ଅସତପାଠ ଯେତେକ ସେ ମୁଖେ ଘୋଷଇ
ସେ ପାଠ ବେଦଧର୍ମର ଦୋଷକୁ ଦିଅଇ ।
ସଭାକରି ବସିଅଛି ମହାରାଜା ବେନ
କାହୁଁ ସେ ଆସି ସେ ସ୍ଥାନେ ମିଳିଲା ବହନ ।
ସମସ୍ତେ ସେ ବେଶ ଦେଖିହେଲେ ଆଚମ୍ବିତ
କେହି କେହି ହସିଲେ ଯେ ନାକେଦେଇ ହାତ ।
ସଭା ମଧରେ ବସିଲା କାହାକୁ ନ ଡ଼ରି
ଦେଖି ତାକୁ ପଚାରିଲେ ବେନ ଦଣ୍ଡଧାରୀ ।
କିଏ ତୁମ୍ଭେ ଏ ବେଶରେ ଆସିଲ କିମ୍ପାଇଁ
ସଭାକରି ରାଜ୍ୟକଥା ମୁଁ ବୁଝୁ ଅଛଇ ।
ଏ ସମୟେ ମୋ ଛାମୁକୁ ଆସ କି ନିମନ୍ତେ
କି ନାମ କି ବେଶ ଧର୍ମ କର୍ମ କହ ମୋତେ ।
କି ଦେବୀ କି ଅନୁଷ୍ଠାନ କିରୂପେ ଆଚାର
କି ଜ୍ଞାନ କି ତପ ଅଭିପ୍ରାୟ କି ତୁମ୍ଭର ।
କି ମହିମା ସତ୍ୟନିଷ୍ଠା ତୁମ୍ଭର କି ରୂପ
ମୋହର ଛାମୁରେ ସବୁ କହିବ ସ୍ୱରୂପ ।
ବେନରାଜା ମୁଖୁଁ ଶୁଣି ଏମନ୍ତ ବଚନ
ସେ ପାପପୁରୁଷ କହେ ରାଜାକୁ ଏସନ ।
ଜାଣିଲି ନିଶ୍ଚୟ ତୁହି ଅଟୁ ମହାମୂଢ଼
ବୃଥା ରାଜ୍ୟ କରୁ ଧର୍ମ କଥା ଅତି ଗୂଢ଼ ।
ମୁହିଁ ଧର୍ମର ସର୍ବସ୍ୱ ନଜାଣୁ ତୁ ମୋତେ
ସୁରଗଣ ଖଟିଥାନ୍ତି ମୋର ପାଦଗତେ ।
ମୁହିଁ ଧ୍ୟାନ ମୁହିଁ ଜ୍ଞାନ ମୁହିଁ ସନାତନ
ମୁହିଁ ଧାତା ମୁଁ ବିଧାତା ମୁହିଁ ଧର୍ମ କର୍ମ ।
ମୋକ୍ଷ ମୁହିଁ ସର୍ବ ଦେବମୟ ଜାଣ ମୋତେ
ବ୍ରହ୍ମ ଦେହରୁ ମୋହର ଉତ୍ପତ୍ତି ଜଗତେ ।
ନିଜରୂପ ଗୋଟି ଅଟେ ସତ୍ୟଧର୍ମ କାୟା
ଏ ସଂସାର ଗୋଟାଯାକ ଜାଣମୋର ମାୟା ।
ଜ୍ଞାନୀ ଯୋଗୀ ଭାବୁଥାନ୍ତି ମୋରୂପ ନିରତେ
ବେନ ବୋଇଲେ ତୁମ୍ଭର କର୍ମହୋ କେମନ୍ତେ ।
କହ କିରୂପେ ହୁଅଇ ତୁମ୍ଭ ଦରଶନ
କିରୂପେ ତୁମ୍ଭ ଆଚାର କିବା ଆଚରଣ ।
ଏସବୁ କଥା ଦିଅନ୍ତୁ ମୋତେ ଯେ ବୁଝାଇ
ପାତକ ବୋଇଲା ଶୁଣ ତୁହୋ ନରସାଇଁ ।
ଯେଉଁ ଶାସ୍ତ୍ରର ଦେବତା ଅଟନ୍ତି ଅର୍ହତ
ଭୋ ରାଜା ଯହିଁରେ ଗୁରୁ ଅଟନ୍ତି ନିର୍ଗ୍ରନ୍ଥ ।
ଦୟା ଯହିଁରେ ପରମ ଧର୍ମ ହେ ବୋଲାଇ
ଯହିଁରେ ମୋକ୍ଷ ସାଧନ ଜ୍ଞାନ ଯେ ଅଛଇ ।
ଆଚାର ସବୁ ବୁଝାଇ ଦେଉଛି ତା ଶୁଣ
ଯଜନ ତହିଁରେ ନାହିଁ ନାହିଁ ଯେ ଯାଜନ ।
ବେଦମନ୍ତ୍ର ପଢ଼ାନାହିଁ ସନ୍ଧ୍ୟା ପୂଜା ଯହିଁ
ତପ ତରପଣ ଦାନ ନାହିଁ ପୁଣି ନାହିଁ ।
ସ୍ୱାହା ସ୍ୱଧା ହବ୍ୟ କବ୍ୟ ଏ ଆଦି ସକଳ
ଯଜ୍ଞ ଆଦି କ୍ରିୟାକର୍ମ ଯେ କହେ ବିଫଳ ।
ପିତୃଶ୍ରାଦ୍ଧ ଯେ ଅତିଥି ସେବା ଆଦିକରି
ବୈଶ୍ୱଦେବ ହୋମଆଦି ନାହିଁ ଦଣ୍ଡଧାରୀ ।
କ୍ଷଣପକ ପୂଜା ଶ୍ରେଷ୍ଠ ଯହିଁରେ କେବଳ
ଅରହତ ଦେବତାର ଧ୍ୟାନ ଏକା ମୂଳ ।
ସେ ଶାସ୍ତ୍ରର ନାମ ଅଟେ ଜଇନ ପଦ୍ଧତି
ଧର୍ମ ସମାଚାର ଅଛି ଏରୂପେ ନୃପତି ।

ଧର୍ମ ଲକ୍ଷଣ ଆନ୍ତର କହିଲି ତୋ ଆଗେ
ଏଥି ମନଦେଇ ଦେବ ଦ୍ୱିଜ ପୂଜ ବେଗେ ।
ବେନ କହିଲେ ବେଦରେ ଲେଖାଅଛି ଯାହା
ପିତୃ ତରପଣ ଶ୍ରାଦ୍ଧ ଯଜ୍ଞ ଆଦି କ୍ରିୟା ।
ବୈଶ୍ୱଦେବ ଦାନ ତପ ଯେ ଧର୍ମରେ ନାହିଁ
ସେ ଧର୍ମର ଲକ୍ଷଣ କି ଅଛି କହ କାହିଁ ।
କି ଦୟା ଧର୍ମ ତୁମ୍ଭର କହ ସତ କରି
ପାପ ପୁରୁଷ କହିଲା ଶୁଣ ଦଣ୍ଡଧାରୀ ।
ପଞ୍ଚ ମହାଭୂତରେ ଯେ ବଢ଼େ ପ୍ରାଣୀଦେହ
ଆତ୍ମା ତହିଁରେ ଅଟଇ ଜାଣ ଗନ୍ଧବହ ।
ପବନ ରୂପରେ ଥାଇ ଭୂତ ସଙ୍ଗ ନାହିଁ
ଭୂତଙ୍କର ସଙ୍ଗ ଯେହ୍ନେ ଜଳମଧ୍ୟେ ଥାଇ ।
ଆତ୍ମାସଙ୍ଗେ ଭୂତଙ୍କର ସଙ୍ଗ ତେହ୍ନେ ଜାଣ
ପାଣିଫୋଟକା ହୁଅଇ ଜଳରେ ଯେସନ ।
ପାଣି ଫୋଟକାରେ ପୃଥ୍ୱୀ ରଜୋଗୁଣେଥାଇ
ଜଳ ଜ୍ୟୋତି ସଙ୍ଗପାଇଁ ଉଦୟ ହୁଅଇ ।
ଏ ତିନିଭୂତ ଭିତରେ ଥାଇ ଯେ ପବନ
ଏହି ଚାରିଭୂତ ପୁଣି ଶୂନ୍ୟରେ ଆଛନ୍ତି ।
ପାଣିଫୋଟକା ଜନମ ଏମନ୍ତେ ହୁଅଇ
ସେହି ଜଳର ଉପରେ ସେ ପୁଣି ରହଇ ।
ତେଜର ସଂଯୋଗପାଇ ହୁଅଇ ବର୍ତ୍ତୁଳ
ଦୃଶ୍ୟ ଅଦୃଶ୍ୟ ତାହାର କ୍ଷଣିକ କେବଳ ।
ଜଳୁ ଉପୁଜଇ ସେହି ଜଳରେ ମିଳାଇ
କ୍ଷଣମାତ୍ର ଦେଖାଦେଇ ପୁଣି କେଣେଯାଇ ।
ଏରୂପେ ଦୃଶ୍ୟ ଏ ଆତ୍ମା ଭୂତଙ୍କ ସଂଯୋଗେ
ମରଣକାଳରେ କେଣେ ଚାଲିଯାଏ ବେଗେ ।
କେହି ନ ଦେଖନ୍ତି ତାର ଯିବା ଆସିବାର
ପଞ୍ଚଭୂତେ ପଞ୍ଚଭୂତ ମିଶଇ ଆବର ।
ପାଣିସଙ୍ଗେ ମିଶିଯାଏ ଏ ଦେହର ପାଣି
ଶୂନ୍ୟରେ ଶୂନ୍ୟ ମିଶଇ କେହି ତା ନଜାଣି ।
ମାଟିସଙ୍ଗେ ମାଟିହୋଏ ମିଶିଯାଇ ମାଂସ
ଜ୍ୟୋତିସଙ୍ଗେ ଜ୍ୟୋତିମିଶେ ଜାଣତୁନରେଶ ।
ପବନ ସଙ୍ଗେ ଦେହର ପବନ ମିଶଇ
ଲୋଭ ମୋହେ ପଡ଼ି ବୃଥା ମାନବ କାନ୍ଦଇ ।
ମଲାପ୍ରାଣୀପାଇଁ ଶ୍ରାଦ୍ଧ କରନ୍ତି ଆବର
ବୃଥା ପିତୃ ତରପଣ କରନ୍ତି ଯେ ନର ।
ବିଚାର ସେ ମଲାପ୍ରାଣୀ କାହିଁ ପୁଣି ଥାଇ
ଏହାଙ୍କର ପିଣ୍ଡଅନ୍ନଯାକ ଦିଏଖାଇ ।
ରୂପ ତାର କେମନ୍ତ କାହିଁ ତାର ସ୍ଥାନ
କହ କାହିଁ ଦେଖିଛକି ତାର ବର୍ଣ୍ଣ ଚିହ୍ନ ।
ବ୍ରାହ୍ମଣେ ମିଷ୍ଟାନ୍ନ ଖାଇଯାନ୍ତି ତୋଷହୋଇ
ଶ୍ରାଦ୍ଧ କରିବା ବିଅର୍ଥ ଲୋକ ଦେଖାପାଇଁ ।
ବେଦର ଆଉ ଦାରୁଣ କର୍ମହିଁ ଯେତେକ
କହୁଛି ତାହା ବୁଝାଇ ସବୁ ନିରର୍ଥକ ।
ଅତିଥି ଯେବେ ବ୍ରାହ୍ମଣ ଗୃହକୁ ଆସଇ
ମହାବୃଷଭ ରାନ୍ଧିଣ ଭୁଞ୍ଜାଇ ତୋଷଇ ।
କିବା ଛାଗମାଂସ ରାନ୍ଧି ଦିଅଇ ତାହାକୁ
ଅତିଥି ଖାଇ ସନ୍ତୋଷ ଏମାରେ ପଶୁଙ୍କୁ ।
ଗୋରୁ ମରିବାର ଦୋଷ ଏହାକୁ ଲାଗଇ
ଅଶ୍ୱମେଧ ଯଜ୍ଞରେ ଯେ ଅଶ୍ୱ ହାଣଖାଇ ।
ଗୋମେଧ ଯଜ୍ଞରେ ହୁଏ ଗୋବୃଷଭ ବଧ
ନରମାରି କରନ୍ତି ଯେ ଯଜ୍ଞ ନରମେଧ ।
ବାଜପେୟ ଯଜ୍ଞରେ ଯେ ବଧୁହଏ ଅଜ
ଏକଦୁଇ ନୁହେଁ ବହୁତର ମହାରାଜ ।
ରାଜସୂୟ ଯଜ୍ଞେ ହୁଏ ପ୍ରାଣୀବଧ କେତେ
ପୁଣ୍ଡରୀକ ଯଜ୍ଞହୁଏ ଗଜର ରକତେ ।
ଗଜମେଧ ଯଜ୍ଞେ ପୁଣି ମରନ୍ତି କୁଞ୍ଜର
ସଉତ୍ରାମଣି ଯଜ୍ଞରେ ଲାଗେ ମେଷଶିର ।
ଏରୂପେ ନାନା ବ୍ୟାପାରେମରି ନାନାଜାତି
ମାରି ପୁଣି ତାଙ୍କ ମାଂସ ରାନ୍ଧିବାଢ଼ି ଖାନ୍ତି ।
ଜୀବବଧହିଁ କେବଳ ତା ମଧ୍ୟରେ ସାର
ଦୋଷରେ ଭାଗୀହୁଅଇ ଯୋଗକାରୀନର ।
ଦାନ ଲକ୍ଷଣ କେମନ୍ତ ଶୁଣ ନୃପବର
ତାହା କହୁଅଛୁଁ ଏବେ ମନକରି ସ୍ଥିର ।
ଉଚ୍ଛିଷ୍ଟ ହୁଅଇ ପୁଣି ଦାନଦେଲା ଅନ୍ନ
ବିପ୍ରର ଭୂରି ଭୋଜନ ହୁଅଇ ସେ ପୁଣ ।
ଯେଉଁ ଧର୍ମ ମହାଯଜ୍ଞେ ଦୋଷ କିଛିନାହିଁ
ପ୍ରାଣୀହିଂସା ନାହିଁ ଜାଣ ଧର୍ମଯଜ୍ଞ ସେହି ।
ବେଦ ପଣ୍ଡିତେ ବହୁତ ପଶୁବଧ ଲେଖି
ସେ କିରୂପ ଧର୍ମ ମନେ ବିଚାର ତା ଦେଖି ।
ସେ ଧର୍ମର ଫଳ କିଛି ଦେଖାଯାଉ ନାହିଁ
ସେ ନଷ୍ଟ ଧର୍ମରେ ପୁଣ୍ୟ ମୋକ୍ଷ ଅବାକାହିଁ ।

ଦୟାରହିତ ଯେ ଧର୍ମ ସେ ଧର୍ମ ବିଫଳ
ଯେ କର୍ମେ ଜୀବପାଳନ ସେ କର୍ମ ସଫଳ ।
ସେହି ଜାଣ ସାଧୁଧର୍ମ ଆହୋ ନୃପବର
ଦୟା-ବିନା ତପ ସତ୍ୟ ସ୍ୱାହା ସ୍ୱଧାକାର ।
ବିଫଳ ମାତ୍ର ଏଥିରେ ଧର୍ମ କିଛି ନାହିଁ
ଏ ସକଳ ବେଦକୁ ଯେ ବେଦହିଁ ନକହି ।
କାହିଁକିନା ଦୟାଧର୍ମ ନାହିଁ କିଛି ଯେଣୁ
ଦାନଦେଇ ନିତ୍ୟ ଜୀବରକ୍ଷା କର ତେଣୁ ।
ଚାଣ୍ଡାଳ ବା ଶୂଦ୍ରହେଉ କଲେ ଏହି ଦାନ
ତାହାକୁ ଜାଣିବ ସେହି ଉତ୍ତମ ବ୍ରାହ୍ମଣ ।
ନିର୍ଦ୍ଦୟ ହୋଇ ଯେ ବିପ୍ର ପଶୁଙ୍କୁ ମାରଇ
କ୍ରୁର ହିଂସ୍ରକ ଚଣ୍ଡାଳ ପାପୀ ସେ ବୋଲାଇ ।
ଜ୍ଞାନ ବର୍ଜିତ ଯେ ବେଦ ସେ ବେଦରବାଣୀ
ଠକ ବାଣୀ ମଧ୍ୟେ ତାକୁ ଗଣ ନୃପମଣି ।
ଯହିଁରେ ଜ୍ଞାନ ଅଛଇ ତାକୁ ବେଦ କହି
ଏ ବିଷୟ ଭଲକରି ମନେରଖ ତୁହି ।
ଦୟା ନଥିବା ବେଦରେ ଯାହା ମହାମତି
ସୁକ୍ରିୟା ନଥିବା ବିପ୍ରେ ଜାଣ ସେହି ମତି ।
ଏକଥା ଗୋଟା ଯେ ସତ୍ୟ ଜାଣ ନୃପବର
ସତ୍ୟଶୂନ୍ୟ ବେଦ ଦେବ ବ୍ରାହ୍ମଣ ଯେ ନର ।
ସେ ଦାନଦେବାରେ କିଛି ଫଳ ଯେଣୁ ନାହିଁ
ସେ ଦାନ ନିଶ୍ଚେ ଅଦାନ ଫଳନାହିଁ ତହିଁ ।
ଶ୍ରାଦ୍ଧର ଲକ୍ଷଣ ପୁଣି ଦାନର ଲକ୍ଷଣ
ସମାନ ଜାଣ ଏଥିରେ ନାହିଁ କିଛି ଭିନ୍ନ ।
ଶ୍ରାଦ୍ଧହିଁ ବିଫଳ ଦାନ ଯଜ୍ଞହିଁ ବିଫଳ
ଭୁକ୍ତି ମୁକ୍ତି ପ୍ରଦ ଜିନ ଧର୍ମହିଁ କେବଳ ।
ଯେ ଜିନ ଧର୍ମରେ ପୁଣ୍ୟ ଅଛଇ ବହୁତ
ତାହା କହୁଅଛି ଶୁଣ ତୁହୋ ନୃପନାଥ ।
ଚଞ୍ଚଳ ଚିତ୍ତକୁ ଆଗ କରିବ ଯେ ଶାନ୍ତ
ଜୀବେ ଦୟା ରଖିଥିବ କହୁଥିବ ସତ ।
ଚରାଚର ଜଗତରକୁ ଯେ ଜନ ସୃଜଇ
ତାରଇ ମାରଇ ତାକୁ ହୃଦମଧ୍ୟେ ଧ୍ୟାୟି ।
ଶୁଦ୍ଧମନେ ଜିନ ପୂଜା କରିବ କେବଳ
ବନ୍ଦିବ ଜିନ ଦେବର ଚରଣ ଯୁଗଳ ।
ଆନକଥା ଛାଡ଼ ଶୁଣ ହେ ରାଜାଧି ରାୟ
ନ ବନ୍ଦିବ କେବେ ପିତାମାତା ପାଦଦ୍ୱୟ ।
ଜିନ ପାଦଛଡ଼ା ଅନ୍ୟ ପାଦ ନ ଛୁଇଁବ
ଏମନ୍ତ କଲେ ବହୁତ ଧର୍ମ ଅରଜିବ ।
ଏମନ୍ତ ଶୁଣି ବୋଇଲେ ବେନ ନୃପବର
ଗୁରୁ ଆଚାର୍ଯ୍ୟ ଆଦି ଯେ ଋଷି ମୁନିବର ।
ଗଙ୍ଗାଆଦି ନଦୀକି ଯେ ପୁଣ୍ୟ ତୀର୍ଥ କହି
ଏଥେ ସ୍ନାନ ଦାନକଲେ ସ୍ୱର୍ଗେ ସୁଖେ ରହି ।
ତୁମ୍ଭ ଧର୍ମର କି ମତ କହ ମୋ ଆଗର
କରିବ ଏଠାରେ ଯେବେ ଧର୍ମର ପ୍ରଚାର ।
ତେବେ ମନହେଲେ କହ ନହେଲେ ନକହ
ପାପ ପୁରୁଷ କହିଲା ଶୁଣ ମହାରାୟ ।
ମେଘ ସବୁ ଗଗନରୁ ଜଳ ବରଷନ୍ତି
ଭୂମି ଜଳ ପର୍ବତରେ ସେ ଜଳ ପଡ଼ନ୍ତି ।
ସେ ଜଳେ ବୁଡ଼ି ସର୍ବତ୍ର ଦୟା ସେ କରିବେ
ଜଳ ବହିଯିବା ବାଟ ନଦୀ ସବୁ ଭବେ ।
ମଳମୂତ୍ର ଆଦି ସେହି ଜଳେ ଭାସିଯାଇ
ସେ ଜଳ କେମନ୍ତେ ପୁଣ୍ୟତୀର୍ଥଯେ ବୋଲାଇ ।
ବାପୀ ପୋଖରୀ ସାଗର କୂପ ହ୍ରଦ ଯେତେ
ଜଳ ରହିବାର ସ୍ଥାନ ପ୍ରାଣୀଙ୍କ ନିମନ୍ତେ ।
ତହିଁ ସ୍ନାନ କଲେଯେବେ ହୋଏ ମହାପୁଣ୍ୟ
ତହିଁରେ ଅଛନ୍ତି ଯେତେ ଜଳଜନ୍ତୁମୀନ ।
ସେ ସକଳେ ଶୁଦ୍ଧହୋଇ ସ୍ୱର୍ଗରେ ବସନ୍ତେ
ପୋକଯୋକ ଖାଇ କିମ୍ବା ଜଳରେ ରହନ୍ତେ ।
ଏଣୁ ଏ ତୀର୍ଥ ନୁହଇ ଜାଣ ନୃପବର
ଯହିଁ ଜିନ ତହିଁ ତୀର୍ଥ ତହିଁ ଧର୍ମସାର ।
ତପ ଦାନ ଆଦି ପୁଣ୍ୟ ସବୁ ଅଛି ତହିଁ
ସର୍ବମୟ ଏକା ସେହି ଜିନ ଯେ ଅଟଇ ।
ପରମ ଧର୍ମ ପରମ ଧର୍ମ ନାହିଁ ଆଉ
ପରମ ଲାଭ କେବଳ ହୁଅଇ ତା ତହୁଁ ।
ଏଣୁ ନିତ୍ୟ ତାକୁ ଧ୍ୟାନ କର ନୃପବର
ପରମସୁଖୀ ହେବାକୁ ଯେବେ ଇଚ୍ଛାକର ।
ପାପ ପୁରୁଷ ଏରୂପେ ନୃପତିକି କହି
ବେଦ ଦାନ ଯଜ୍ଞ ଧର୍ମ ନିନ୍ଦାକରି ସେହି ।
ବେନକୁ ପ୍ରବୋଧ ଦେଇ ବହୁତ ପ୍ରକାରେ
ଗୋପୀନାଥ ମନ ସଦା ଅଚ୍ୟୁତ ପୟରେ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନ ଜିନଧର୍ମ ବର୍ଣ୍ଣନଂ ନାମ
ସପ୍ତତ୍ରିଂଶୋଽଧ୍ୟାୟଃ ।

# ଅଷ୍ଟତ୍ରିଂଶ ଅଧ୍ୟାୟ

## ବେନର ନାସ୍ତିକ ବୁଦ୍ଧିବଳେ ବୈଦିକ ଧର୍ମ କର୍ମାଦି ତ୍ୟାଗ

ସୂତମୁନି କହିଲେ ସେ ବେନ ନୃପବର
ଏରୂପେ ଶୁଣି ଘୋଟିଲା ତାକୁ ପାପଭାର ।
ସେ ପାପପୁରୁଷ ପାଦେ ନମସ୍କାର କଲା
ବେଦ ସତ୍ୟ କ୍ରିୟା ଧର୍ମ ସବୁ ସେ ଛାଡ଼ିଲା ।
ବେଦ ପୁରାଣ ପୋଥି ଯେ ନ ଫିଟିଲା ଆଉ
ଦେଉଳ ଭିତରେ ବସାକଲେ ଆସି କାଉ ।
ଗ୍ରାମେ ଗ୍ରାମେ ବୁଲାଇଲା ତା ଆଜ୍ଞା ପତ୍ରିକା
ମୋହର ବଇରୀ ଦେବ ପୂଜକ ଯେ ଏକା ।
ଯାଗ ଯଜ୍ଞ ହୋମ ସବୁ ହୋଇଲା ରହିତ
ତା ରାଜ୍ୟଲୋକେପାପରେ ହୋଇଲେମୋହିତ ।
ବେଦବିହିତ ଯେ କର୍ମ ସବୁ ଲୋପ ହେଲା
ଦାନ ଧ୍ୟାନ ଆଦି ପୂଣ୍ୟ କିଛି ନରହିଲା ।
ଧର୍ମ ଲୋକ ପାନ୍ତେ ମାଡ଼ିବସେ ପାପଭାର
ବେନ ରାଜାର ଯେ ପିତା ଅଙ୍ଗ ମୁନିବର ।
ସେ ଯେତେ ନିଷେଧ କଲେ ନମାନିଲା ତାହା
ନ ଶୁଣିଲା ସୁନୀଥାର କଥା ଯାହା ଯାହା ।
ପିତା ମାତାଙ୍କୁ ପ୍ରଣାମ ନକଲା ସେ ବେନ
ତୀର୍ଥବ୍ରତହିଁ ନକଲା ନଦେଲାକ ଦାନ ।
ସମସ୍ତେ ଏକାଠି ହୋଇ କରନ୍ତି ବିଚାର
ପାପୀ କିପାଇଁ ହୋଇଲା ବେନ ନୃପବର ।
ଅଙ୍ଗ ପ୍ରଜାପତି ବଂଶେ କଳଙ୍କ ରଖିଲା
ମୃତ୍ୟୁସୁତା ସୁନୀଥାକୁ ଅଙ୍ଗ ପଚାରିଲା ।
ଆଗୋ ପ୍ରିୟେ ସତକରି କହ କାହାଦୋଷେ
ବେନପରା ପୁତ୍ରପାପୀ ହୋଇଲା ବିଶେଷେ ।
ପୂର୍ବେ କହିଥିଲି ମୋର ପିଲାକାଳ କଥା
ପାସୋରିଲ ନାଥ କି ତା କହିଲା ସୁନୀଥା ।
ମହାତମା ସୁଶଙ୍ଖ ଯେ ଗନ୍ଧର୍ବ କୁମର
ତପ କରୁଥିଲା ତାହା ଭାଙ୍ଗିଲି ମୁ ତାର ।
ମାଡ଼ ମାଇଲି ତାହାକୁ କଲା ତେଣୁ କୋପ
ତୋ ପୁତ୍ର ପାପୀହୋଇବ ବୋଲି ଦେଲାଶାପ ।
ଏହାବିନା ଆନ କିଛି ଦୋଷନାହିଁ ମୋର
ସେହି ଦୋଷେ ପାପୀହେଲା ଏ ଆମ୍ଭ କୁମର ।
ଏହାଶୁଣି ଅଙ୍ଗ ସଙ୍ଗେ ସୁନୀଥାକୁ ଘେନି
ବନକୁ ଗଲା ଚିନ୍ତିଲା ଦେବ ଚକ୍ରପାଣି ।
ସପତ ଋଷି ମିଳିଲେ ଆସି ବେନ ପାଶେ
ବୋଇଲେ ତୁ ଏହା କିମ୍ପା କରୁକି ସାହସେ ।
ପ୍ରଜାପାଳକ ହୋଇ ତୁ ଧର୍ମ କରୁ ନାଶ
ପାପକର୍ମ ଛାଡ଼ି ହୁଅ ପୁଣ୍ୟର ତୁ ବଶ ।
ସପତ ଋଷିଙ୍କ କଥା ଶୁଣି ହସେ ବେନ
ମୁହିଁ ଯେ ପରମ ଧର୍ମ ମୁହିଁ ସନାତନ ।
ମୁହିଁ ଧାତା ମୁଁ ବିଧାତା ମୁହିଁ ରକ୍ଷାକର୍ତ୍ତା
ବେଦର ଅର୍ଥ ମୁଁ ଜାଣ ମୋତେ କର ଚିନ୍ତା ।
ଜଇନ ଧର୍ମ ଯେ ମହାପୁଣ୍ୟ ସନାତନ
ଧର୍ମରୂପୀ ମୋତେ ତୁମ୍ଭେ କରହେ ଭଜନ ।
ଏମନ୍ତ ଶୁଣି ବୋଇଲେ ପୁଣି ଋଷିଗଣ
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଏହି ତିନିବର୍ଣ୍ଣ ।
ବେଦ ସନାତନ ଧର୍ମ ଅଟେ ଏହାଙ୍କର
ପ୍ରାଣୀମାନଙ୍କୁ ଚଳାଇ ବେଦର ଆଚାର ।
ପ୍ରାଣୀଏ ବଞ୍ଚନ୍ତି ବେଦ ଅନୁସାରେ ପୁଣି
ବିପ୍ରକୁଳେ ଜନମି ତୁ ହେଲୁ ନୃପମଣି ।
ରାଜ୍ୟପୁଣ୍ୟେ ଦେବ ଦ୍ୱିଜ ସୁଖରେ ରହନ୍ତି
ରାଜାପାପେ ରାଜ୍ୟଲୋକେ ଅକାଳେ ମରନ୍ତି ।
ଯେ ଧର୍ମ କରୁଛ ତୁମ୍ଭେ ଏ ଧର୍ମ ତୁମ୍ଭର
ସତ୍ୟଯୁଗର ଏ ନୋହେ କି ଅବା ତ୍ରେତାର ।
ଦ୍ୱାପର ଯୁଗରେ ଏହି ଧର୍ମ ନ ଚଳଇ
କଳିଯୁଗର ମାନବେ ଏ ଧର୍ମରେ ରହି ।
କଳି ପାପ ଗ୍ରାସିବାରୁ ହୋଇବେ ଜଇନ
ବେଦ ଧର୍ମ ଛାଡ଼ିହେବେ ଜାଣ ସବୁ ବର୍ଣ୍ଣ ।
ଜଇନ ଧର୍ମ ଅଟଇ ପାପର ଯେ ମୂଳ
ଏଥିରେ କିଛି ସନ୍ଦେହ ନାହିଁ ମହୀପାଳ ।
ଅପମୃତ୍ୟୁ ଅରଜିବେ ଆପେ ଆପେ କରି
ପାପହାରୀ ଗୋବିନ୍ଦ ଯେ କାଳେ ଅବତରି ।
ପାପୀ ମେଳଛଙ୍କୁ ବଳେ କରିବେ ସଂହାର
କଳିର ବେଭାର ଛାଡ଼ ତୁହୋ ନୃପବର ।
ବେଦ ଧର୍ମ ରହି କର ପ୍ରଜାଙ୍କୁ ପାଳନ
ମହାଜ୍ଞାନୀ ଅଟେ ମୁହିଁ ବୋଲଇ ସେ ବେନ ।

ସବୁମୋତେ ଜଣାକିଛି ନବୋଲହୋ ତୁମ୍ଭେ
ଯେ ମୋଧର୍ମେବାଧାଦେବସେମୋଶତ୍ରୁ ହେବେ ।
ତାଙ୍କୁ ବଳେ ଧରି ଦଣ୍ଡଦେବି ଏ ମୋ ସତ୍ୟ
ବେଶି କହିବା ତୁମ୍ଭର ନୁହଇ ଉଚିତ ।
ବ୍ରହ୍ମାର ନନ୍ଦନ ସେହି ସାତଗୋଟି ଋଷି
କ୍ରୋଧରେ ସପତଶିଖା ଅଗ୍ନିପ୍ରାୟ ଦିଶି ।
ଋଷିଙ୍କର କୋପଦେଖି ଭୟେ ରାଜା ବେନ
ଉଇହୁଙ୍କା ମଧ୍ୟେ ପଶି ହୋଇଲା ଗୋପନ ।
କ୍ରୋଧେ ଖୋଜିଲେ ରାଜାକୁ ସେ ସପତଋଷି
ଜାଣିଲେ ହୁଙ୍କା ଭିତରେ ଅଛି ସେହି ପଶି ।
ବଳେ ସାତ ଋଷି ତାକୁ ଆଣିଲେ ଓଟାରି
ମାଡ଼ି ବସିଣ ତା ବାମ ହସ୍ତକୁ ଯେପରି ।
ଅରଣି କାଠେ ମନ୍ଥିଲେ ମନ୍ତ୍ରପଢ଼ି କୋପେ
ପୁରୁଷେକ ଉପୁଜିଲା ହସ୍ତେଧରି ଚାପେ ।
ଅତି ଛୋଟ ନୀଳବର୍ଣ୍ଣ ମହାଭୟଙ୍କର
ନେତ୍ର ଦୁଇ ରଙ୍ଗବର୍ଣ୍ଣ ଦିଶଇ ତାହାର ।
ସେ ପାପ ପୁରୁଷ ହେଲା ମ୍ଳେଚ୍ଛଙ୍କର ରାଜା
ନିଷାଧ ବର୍ବର ଆଦି ଜାତିକଲେ ପୂଜା ।
ଦକ୍ଷିଣ ପାଣିକି ତାର ମନ୍ଥିଲେ ସେ ପୁଣି
ତହୁଁ ଉପୁଜିଲେ ପୃଥୁ ନାମେ ନୃପମଣି ।
ସେ ମହାରାଜା ଗୋରୂପା ପୃଥିବୀ ଦୁହିଁଲା
ରାଜାଧି ରାଜେଶ୍ୱର ସେ ପୃଥୁ ବୋଲାଇଲା ।
ତାର ପୂଣ୍ୟେ ବେନ ପୁଣି ହେଲା ଚକ୍ରବର୍ତ୍ତୀ
ବିଷ୍ଣୁ ପ୍ରସାଦେ ପାଇଲା ବଇଷ୍ଣବ ଗତି ।
ବଇକୁଣ୍ଠେ ଗଲା ସଙ୍ଗେ ମାତା ପିତା ଘେନି
ଦ୍ୱିଜ ଗୋପୀନାଥ ଭଜେ ବିଷ୍ଣୁପାଦ ବେନି ।
ଇତି ଶ୍ରୀ ପଦ୍ମ ପୁରାଣେ ଭୂମିଖଣ୍ଡେ
ବେନୋପାଖ୍ୟାନ ନାମ ଅଷ୍ଟତ୍ରିଂଶୋଽଧ୍ୟାୟଃ



## ଊନଚତ୍ୱାରିଂଶ ଅଧ୍ୟାୟ

## ରେବାତୀରେ ତୃଣବିନ୍ଦୁ ଆଶ୍ରମେ ବେନର ତପସ୍ୟା

ଋଷିଗଣ ବୋଇଲେ ହେ ସୂତ ମୁନିବର
ସତ୍ୟରେ ଅଧିକ ନିଷ୍ଠା ଥାଇ ଯେ ତୁମ୍ଭର ।
କେମନ୍ତେ ପାପ ଛଡ଼ାଇ ସେ ବେନ ରାଜନ
ସ୍ୱର୍ଗକୁ ଗଲା ବିସ୍ତାରି କହ ତପୋଧନ ।
ଏମନ୍ତ ଶୁଣି ବୋଇଲେ ମହାମୁନି ସୂତ
ସେ ସପତ ମହାଋଷି ସିଦ୍ଧି ତପୋବନ୍ତ ।
ତାଙ୍କ ସଙ୍ଗ ଯୋଗୁଁ ତାର ଦେହୁ ପାପଗଲା
ପୁରୁଷ ରୂପଧରି ସେ ମ୍ଳେଚ୍ଛ ରାଜା ହେଲା ।
ସପତଋଷି ତା ହସ୍ତ ମନ୍ଥିବାରୁ ତାର
ପାପ ପୁରୁଷ ନରହି ହୋଇଲା ବାହାର ।
ସେ ବେନକୁ ପୁଣ୍ୟଆତ୍ମା କରି ଦ୍ୱିଜବରେ
ପୁଣି ମନ୍ଥନେ ଜନ୍ମିଲା ପୃଥୁ ନୃପବରେ ।
ସଦଜ୍ଞାନ ପଶିବାରୁ ସେ ବେନ ତକ୍ଷଣେ
କାମ କ୍ରୋଧ ତେଜିଗଲା ରେବାତୀରେବନେ ।
ତୃଣବିନ୍ଦୁ ଋଷିଙ୍କର ଆଶ୍ରମେ ରହିଲା
ଶଏରୁ ଅଧିକବର୍ଷ ତପ ତହିଁ କଲା ।
ତା କଠୋର ତପବଳେ ବେଦ ଚକ୍ରଧର
ବୋଇଲେ ପ୍ରସନ୍ନ ହେଲି ମାଗ ତୁ ହେ ବର ।
ବେନବୋଇଲା ଯେବେକି ହୋଇଲେ ପ୍ରସନ୍ନ
ସ୍ୱଦେହେ ପାଇବି ମୁହିଁ ଶ୍ରୀ ବିଷ୍ଣୁ ଭୁବନ ।
ପିତା ମାତା ଘେନି ମୁହିଁ ତୁମ୍ଭ ତେଜବଳେ
ମୋ ଚିତ୍ତ ସର୍ବଦା ଚିର ତୋ ପାଦକମଳେ ।
ପରମଗତି ପାଇବୁ ଆମ୍ଭେ ତିନିଜଣ
ଏହିବର ଦିଅ ମୋତେ ଦେବ ଜନାର୍ଦ୍ଦନ ।
ବାସୁଦେବ ବୋଇଲେହୋ ବେନ ନୃପବର
ଧର୍ମ ତୋତେ ଛାଡ଼ିଗଲା ଶୁଣି କଥା ଯାର ।
ଲୋଭ ମୋହେ ପଡ଼ି ତୋର ଜ୍ଞାନଗଲା ହଜି
ସେ ପାପ ପୁରୁଷ କାହିଁଗଲା କହ ହେଜି ।
ବେନ କହିଲା ଯେ ତୁମ୍ଭେକର ତାହା ଦୂର
ମୁଁ ପାପୀ ସଦାଶରଣ ଚରଣେ ତୋହର ।
କୃପାକରି ଦିଅ ପ୍ରଭୁ ମନ୍ତ୍ର ଉପଦେଶ
ଯହିଁରେ କି ଛାଡ଼ିଯିବ କଲା କର୍ମଦୋଷ ।
ସାଧୁ ସାଧୁ ରାଜା ତୁହି ବୋଇଲେ ଶ୍ରୀହରି
ସିଦ୍ଧ ଶୁଦ୍ଧ ହୋଇଛୁ ତୁ ଘୋର ତପକରି ।
ପୁଣ୍ୟମନ୍ତ୍ର କହୁଅଛି ଶୁଣ ମନଦେଇ
ପୂର୍ବେ ସେ ପଚାରିଥିଲେ ମୋତେ ବେଦସାଇଁ ।
ତାଙ୍କୁ ଯାହା କହିଥିଲି କହୁଛି ମୁଁ ତାହା
ମୋ ନାହି କମଳୁ ଜାତ ହେଲା ଆଠବାହା ।

ମୁଁ ତାଙ୍କୁ ଦେବାକୁ ବର ହେଲି ଉତପତ୍ତି
ମୋତେ ଦେଖିଣ ବୋଇଲା ସେହି ପ୍ରଜାପତି ।
ବାସୁଦେବାଭିଧ ନାମେ ସ୍ତୋତ୍ର ଯେ ତୋହର
ସବୁ ସୁଖ ଦିଅଇ ସେ ସର୍ବ ପାପହର ।
ବିଷ୍ଣୁଠାରେ ସେ ପରମ ପ୍ରୀତି ଜନମାଇ
ସେସ୍ତୋତ୍ର ମୋତେ କହିବା ଜଗତ ଗୋସାଇଁ ।
ଶ୍ରୀ ବିଷ୍ଣୁ ବୋଇଲେ ମୁହିଁ ଅବ୍ୟକତ ରୂପେ
ସକଳ ବିଶ୍ୱ ସଂସାର ଜଗତକୁ ବ୍ୟାପେ ।
ସେକାଳେ ବିଷ୍ଣୁ ଭକତ ଯେତେ ମୁନିଗଣ
ଶ୍ରୀବିଷ୍ଣୁ ନାମ ମୋହର ଦେଇଥିଲେ ଜାଣ ।
ସର୍ବ ପ୍ରାଣୀଙ୍କ ହୃଦୟେ ବିଭୁ ରୂପେ ମୁହିଁ
ବାସ କରିବାରୁ ମୋତେ ବାସୁଦେବ କହି ।
ଏ ବିଶ୍ୱ ସଂସାରେ ଯେତେ ବିଭୁ ପ୍ରଣୀଗଣ
ଅବ୍ୟକତରୂପେ କରେ ତାଙ୍କୁ ବରକ୍ଷଣ ।
ସଂକର୍ଷଣନାମ ତେଣୁ ଦେଲେ ମୋ ଭକତେ
ପୁତ୍ର ପାଇବା ନିମନ୍ତେ ଯେତେକ ପଣ୍ଡିତେ ।
ଇଚ୍ଛାକଲେ ନାନାରୂପ ହୋଇପାରେ ମୁହିଁ
ପ୍ରଦ୍ୟୁମ୍ନ ନାମ ମୋହର ତେଣୁଦେଲେ ସେହି ।
ହର କେଶବ ବିନା ଏ ଜଗତରେ କେହି
ନିରୋଧି ନପାରେ ବଳେ ଯୋଗମାର୍ଗେ ରହି ।
ଅନିରୁଦ୍ଧ ନାମ ତେଣୁ ଦେଲେଟି ମୋହର
ସବୁ ଜଗତେ ଥିବାରୁ ବିଶ୍ୱ ନାମ ମୋର ।
ଜ୍ଞାନ ବିଜ୍ଞାନ ମୁଁ ଉଜାଗର ଅଭିମାନୀ
ଜ୍ଞାନକର୍ମରୁ ଇତର ବୋଲି ମୋତେ ମାନି ।
ମୁହିଁ ସ୍ୱପନ ମୁଁ ପ୍ରାଜ୍ଞ ମୁଁ ଅଧିଦେବତା
ଜଗତ ପ୍ରାଣୀ ଗୋଚର ମୁହିଁ ଅଧିଷ୍ଠାତା ।
ମୁହିଁ ସୁଷୁପ୍ତି ଅବସ୍ଥା ମୁହିଁ ଉଦାସୀନ
ତୁରୀୟ ଗୁଣାବସ୍ଥାମୁଁ ଗୁଣାବସ୍ଥାଶୂନ୍ୟ ।
ବିଶ୍ୱ ବିସ୍ମିତ ବିଗ୍ରହ ସାକ୍ଷୀ ମୁଁ ବୋଲାଇ
ଚିଦାଭାସ ଚିଦାନନ୍ଦ ମୋର ନାମଦେଇ ।
ଜ୍ଞାନମୟ ଜ୍ଞାନୀ ମୁହିଁ ଜ୍ଞାନର ସ୍ୱରୂପ
ମୁହିଁ ନିତ୍ୟ ମୁଁ ଅକ୍ଷର ମୁହିଁ ବ୍ରହ୍ମରୂପ ।
ଏରୂପେ ଆପଣା ନାମ ଅର୍ଥ କହି ହରି
ଜଗତ ବ୍ୟାପିବା କଥା ବ୍ରହ୍ମା ଜାଣିପାରି ।
ତକ୍ଷଣେ କୃତାର୍ଥ ହେଲେ ଜାଣିଣ ରାଜନ
ତୁମ୍ଭଦେହୁଁ ହେଲାବେଳୁଁ ପୃଥୁର ଜନମ ।

ସେବେଳୁ ପବିତ୍ର ହେଲା ଏ ତୁମ୍ଭ ଶରୀର
ଏବେ ଏହି ସ୍ତୋତ୍ରେ ବିଷ୍ଣୁ ଆରାଧନାକର ।
ପୁଣି ପ୍ରସନ୍ନେ ବୋଇଲେ ବରମାଗ ମୋତେ
ଏମନ୍ତ ଶୁଣି ସେ ବେନ କହେ ଯୋଡ଼ହସ୍ତେ ।
ଭୋ ପ୍ରଭୁ ସୁଗତି ଦିଅ ପାପରୁ ଉଦ୍ଧାରି
ଚରଣେ ଶରଣ ନାଥ ସର୍ବଦା ତୋହରି ।
ସଦଗତିର କାରଣ କହ ସ୍ୱାମୀ ମୋତେ
ଶ୍ରୀବିଷ୍ଣୁ ବୋଇଲେ ତୁହୋ ଶୁଣ ଏକଚିତ୍ତେ ।
ମହାତମା ଅଙ୍ଗମୁନି ପିଅର ତୋହର
ପୂର୍ବେ ସେବାକରି ମୋତେ ମାଗିଥିଲ ବର ।
ମୁଁ ତାହାକୁ କହିଥିଲି ନିଜକର୍ମ ଗୁଣେ
ବିଷ୍ଣୁଲୋକ ପାଇବୁ ତୁ ପୁତ୍ର ଦରଶନେ ।
ତାଙ୍କକର୍ମେ ପିତାମାତା ପାଇବେ ମୋ ପୁର
ତୋହର ନିମନ୍ତେ ତୁହି ମାଗ ଏବେ ବର ।
ଆହୋ ବେନ ତୋର ପୂର୍ବକଥା କହେ ଶୁଣ
ମହାତମା ସୁଶଙ୍ଖ ଯେ ଗନ୍ଧର୍ବ ନନ୍ଦନ ।
ଅରଣ୍ୟ ମଧ୍ୟରେ ବସି କରୁଥିଲା ତପ
ମୋ ମାତାକୁ କୋପେ ଦେଇଥିଲା ଅଭିଶାପ ।
ଖେଳ କଉତୁକ ବଶେ ବାଳକାଳେ ମାତା
ମୁନିର ତପ ଭାଙ୍ଗିଲା ସେହି ମୃତ୍ୟୁସୁତା ।
ସୁଶଙ୍ଖ ଏ ଶାପଦେଲା ସୁନୀଥାକୁ ଚାହିଁ
ଦୁରାତ୍ମା ପାପୀ ତୋ ପୁତ୍ର ହେବ ବୋଲିକହି ।
ତୋ ପିତା ଅଙ୍ଗକୁ ମୁହିଁ ଦେଇଥିଲି ବର
ସାଧୁପୁତ୍ର ପାଇବୁ ତୁ ଆହୋ ମୁନିବର ।
ସେ ପୁତ୍ର ଗୋଟି ନିଶ୍ଚୟ ଉଦ୍ଧାରିବ ତୋତେ
ପୁଣି ବୋଇଲି ସେ ରାଜା ହୋଇବ ଜଗତେ ।
ସକଳ ଲୋକ ପାଳିବ ଦେବଇନ୍ଦ୍ର ପ୍ରାୟ
ଭୂମିରେ ସେ ବୋଲାଇବ ପୁଣି ମହାରାୟ ।
ବେଦ କହେ ଆତ୍ମାହୋଏ ପୁତ୍ର ରୂପେ ଜାତ
ମୋର ବରେ ହେବ ତୋର ବୁଦ୍ଧିମନ୍ତ ସୁତ ।
ସଦଗତି ପାଇବୁ ତୁ ମୋର ବରେ ବେନ
ଆପଣା ସୁଗତି ପାଇଁ କର ତୁହୋ ଦାନ ।
ଯେବଣ ପୁରୁଷ ଆସି ସଭାରେ ତୋହର
ଜିନ କ୍ଷପଣକବେଶୀ ଲଙ୍ଗଳା ଆବର ।
ମୁହିଁ ସେ ପୁରୁଷ ତୋତେ ବିଧର୍ମୀ କଲାଇଁ
ସୁଶଙ୍ଖ ଗନ୍ଧର୍ବ ଶାପକଥା ରକ୍ଷାପାଇଁ ।

ମୁଁ ବିଧି ନିଷେଧ ମୁହିଁ କର୍ମଫଳଦାତା
ବୁଦ୍ଧିର ଅତୀତ ମୁହିଁ ସକଳ କରତା ।
ଗୁଣଗ୍ରାହୀ ବୋଲି ଏକା ଜାଣିବୁ ତୁ ମୋତେ
ଦାନହୁଁ ଅଧିକ କିଛି ନାହିଁ ଏ ଜଗତେ ।
ସବୁ ପ୍ରଭାବ ରହିଛି ଦାନରେ ରାଜନ
ଏଣୁ ମୋର କଥାମାନି କର ତୁ ଯା ଦାନ ।
ଦାନରୁ ହୁଅଇ ରାୟେ ପୁଣ୍ୟ ଉତପତ୍ତି
ଦାନସବୁ ପାପନାଶ କରଇ ଝଟତି ।
ଅଶ୍ୱମେଧ ଆଦି ନାମ ଯଜ୍ଞ ତୁ ଯା କର ।
ଭୂମିଦାନ ଆଦି ଦାନଦିଅ ବିପ୍ରବର ।
ଉତ୍ତମ ଦାନରୁ ନାନାସୁଖ ଭୋଗପାଇ
ଦାନରୁ ଉତ୍ତମ ଯଶ ପ୍ରାପତ ହୁଅଇ ।
ଉତ୍ତମ ଦାନରୁ ଜାଣ ଜନମେ କୀରତି
ଉତ୍ତମ ଦାନରୁ ହୁଏ ସୁଖ ପରାପତି ।
ଦାନକରି ଲୋକ ସ୍ୱର୍ଗଯାଇ ସୁଖପାଇ
କାଳେ ଯେ ଉତ୍ତମ ଦାନ ଶ୍ରଦ୍ଧାରେ ଦିଅଇ ।
କାଳେ ତୀର୍ଥ ଯାତ୍ରାକଲେ ମିଳେ ପୁଣ୍ୟଫଳ
ମୋ ତହିଁ ଚିତ୍ତ ନିବେଶି କରେ ଅନୁକୂଳ ।
ଶ୍ରଦ୍ଧାରେ ପବିତ୍ର ମନେ ମୋର ପ୍ରୀତିଅର୍ଥେ
ମହାଦାନ ଦିଏ ସତପାତ୍ର ବିପ୍ରହସ୍ତେ ।
ତା ମନ କାମନା ଯାଚି ତାକୁ ମୁଁ ଦିଅଇ
ଏମନ୍ତ ଶୁଣି ବୋଇଲା ବେନ ନରସାଇଁ ।
ଦାନର ଫଳ କିରୂପେ ଲକ୍ଷଣ କି ତାର
କୃପାକରି ଜଗନ୍ନାଥ କହ ମୋ ଆଗର ।
ଯେବେକି ମୋଠାରେ ଦୟା ତୋହର ଅଛଇ
ତୀର୍ଥ ପାତ୍ରର ଲକ୍ଷଣ କହିବା ବୁଝାଇ ।
ତୀର୍ଥ ବିଧି ପାତ୍ରବିଧି ଦାନର ଯେ ବିଧି
ବିସ୍ତାର କରି କହିବା ହେଉ ଗୁଣନିଧି ।
ଶ୍ରୀକୃଷ୍ଣ କହିଲେ ଶୁଣ ତୁହୋ ରାଜା ବେନ
ନତ୍ୟ ନୈମିତ୍ତିକ କାମ୍ୟ ମୋକ୍ଷପ୍ରଦ ଦାନ ।
ସୂର୍ଯ୍ୟୋଦୟ କାଳେ ସର୍ବପାପ ବିନାଶଇ
ତମନାଶ କଲା ପ୍ରାୟ ପାପ ନାଶଯାଇ ।
ମୋର ଅଂଶ ତେଜ ନିଧି ଶୂନ୍ୟବାସୀ ସୂର୍ଯ୍ୟ
ପାପତମ ପୋଡ଼ିଦିଏ ସୂର୍ଯ୍ୟର ସେ ତେଜ ।
ସୂର୍ଯ୍ୟଙ୍କୁ ଅନାଇ ଯେହୁ କରେ ଜଳଦାନ
ତାର ନିତ୍ୟ ପୁଣ୍ୟ ବୃଦ୍ଧି ହୁଅଇ ରାଜନ ।

ଉତ୍ତମବେଳା ପାଇଲେ ପୁଣ୍ୟଆତ୍ମା ନର
ସ୍ନାନକରି ପିତୃଦେବ ପୂଜି ଅନନ୍ତର ।
ପବିତ୍ର ଚିତ୍ତେ ଶ୍ରଦ୍ଧାରେ ଯଥା ଶକତିରେ
ଅନ୍ନ ଜଳ ଫଳପୁଷ୍ପ ବସ୍ତ୍ର ଦାନକରେ ।
ତାମ୍ବୁଳ ହେମ ରତ୍ନାଦି ଭୂଷଣ ଆବର
ହେ ନୃପ ଅନନ୍ତ ପୁଣ୍ୟ ହୁଅଇ ତାହାର ।
ମଧ୍ୟାହ୍ନକାଳେ ରାଜନ ମୋର ପ୍ରୀତି ଅର୍ଥେ
ମିଷ୍ଟ ଅନ୍ନ ପାନ ଆଦି ଭୁଞ୍ଜାଇ ସୁଚିତ୍ତେ ।
ଗନ୍ଧ କୁଙ୍କୁମ କର୍ପୂର କରାଇ ଲେପନ
ସୁଖ ସଉଭାଗ୍ୟ ତାକୁ ମିଳଇ ରାଜନ ।
ଅବଛିନ୍ନ ବସ୍ତ୍ର ଅଳଙ୍କାର ଦାନକରେ
ତାହାର ପୁଣ୍ୟ ଅନନ୍ତ ଜାଣ ନୃପବରେ ।
କହିଲୁଁ ଦାନ ପୂଜାର ଶୁଭ ନିତ୍ୟ କାଳ
ନୈମିତ୍ତିକ କାଳ ଶୁଣ ତୁହୋ ମହୀପାଳ ।
ତିନି କାଳରେ ନିଶ୍ଚୟ କରିବ ଯେ ଦାନ
ଦାନଶୂନ୍ୟ ନୋହିବ ଯେ ତାର ଏକଦିନ ।
ଆପଣାର ହିତବାଞ୍ଛା ପୂରିବ ତାହାର
ଯେକାଳେ ଯେ କିଛି ଦାନକରେ ପୁଣ୍ୟନର ।
ତାଫଳେ ସେ ହୁଏ ଦାତା ମହାବୁଦ୍ଧିମନ୍ତ
ଧନାଢ୍ୟ ଚତୁର ପୁଣି ବହୁତ ସାମର୍ଥ୍ୟ ।
ଦିନ ପକ୍ଷ ମାସ ମଧ୍ୟେ ଯେ ନଦିଏ ଅନ୍ନ
ମୁହିଁ ତାହାର ଆହାର କରେ ନିବାରଣ ।
ଅନ୍ନ ତାକୁ ନ ମିଳଇ ଜାଣ ନୃପବର
ଉତ୍ତମ ଦାନ ନଦେବା ଜନ ଖାଏ ମଳ ।
ତ୍ରିକାଳେ ଦାନ ନଦେଲେ ଜାଣ ମହୀପାଳ
ଇହଜନ୍ମେ ଦୁଃଖୀହୋଇ ଯାଏ ଯମଆଳ ।
ଦେବଦ୍ୱିଜ ଅସନ୍ତୋଷେ ଅସନ୍ତୋଷ ମୁହିଁ
ଏମନ୍ତ ବ୍ୟାଧି ତାହାର ଦେହେ ଉପୁଜାଇ ।
ବହୁତ ପୀଡ଼ା ଯେ ଦେବ ସୁଖଭୋଗ ଶୂନ୍ୟ
ମନ୍ଦାଗ୍ନି ବ୍ୟାଧିବ ଉଦରେ ହେଉ ଉତପନ୍ନ ।
ଜ୍ୱର ତାପେ ସନ୍ତାପିତ ହୋଇଥିବ ପୁଣ
ମିଷ୍ଟାନ୍ନ ଖାଏ କାହାକୁ ନଦେଇ ଯେ ଜନ ।
ମହାପାପ ଲାଗଇ ଯେ ତହିଁରେ ତାହାକୁ
ଉପବାସ ଆଦି ବ୍ରତ କରି ସେ ମନକୁ ।
କଠୋର ପ୍ରାୟଶ୍ଚିତ୍ତରେ ସେ ପାପ ଛାଡ଼ିବ
ତେବେ ଯାଇ ସେ ମାନବ ନିରୋଗୀ ହୋଇବ ।

ଯେମନ୍ତେ ମୋଚୀ ମନରେ ଘୃଣା ନକରଇ
ଚର୍ମ କୁଣ୍ଡର ଉପରେ ନିଶ୍ଚିନ୍ତେ ବସଇ ।
କଷା ପାଣିରେ ଚମକୁ ଫୁଟାଇ ଶୁଖାଇ
ତେସନ ବଇଦ ରୂପେ ପାପୀକି ଶୋଧଇ ।
କଟୁତିକ୍ତ ଉଷ୍ଣୋଦକ କଷାୟ ଦେଇଣ
ରୋଗିକି ଚିକିତ୍ସା କରି ବଇଦ୍ୟ ଯେସନ ।
ରୋଗୀର ଦେହୁଁ ରୋଗକୁ କରଇ ବିନାଶ
ତେସନ ପାପୀରଦେହୁ ପାପକରେ ନାଶ ।
ପାପୀ ଯାହା ଭୋଗ କରିବାକୁ ମନାସଇ
ସମର୍ଥ ଥିଲେ ହେଁ ତାହାକରି ନପାଇ ।
ପୁଣ୍ୟକାରୀ ଜନ ଭୋଗକରେ ପୁଣି ତାହା
ଉତ୍ତମଦାନ ନଦେବାଯୋଗୁଁ ନରନାହା ।
ମହାପାପ ରୂପେ ତାକୁ ମୁଁ ଦଣ୍ଡ ଦିଅଇ
ପାପୀ ଯେମନ୍ତେ ଶ୍ରଦ୍ଧାରେ ନିଜସ୍ୱାର୍ଥ ପାଇଁ ।
କାଳ ଉଚିତ ଯେ ଦାନ ନଦେଇ ସଞ୍ଚଇ
କଠୋର ଉପାୟେ ତାକୁ ମୁଁ ଦଣ୍ଡ ଦିଅଇ ।
ନୈମିତ୍ତିକ ଦାନ ଏବେ ଶୁଣ ସାବଧାନେ
ପୂର୍ଣ୍ଣିମା ସଂକ୍ରାନ୍ତି ପୁଣି ଅମାବାସ୍ୟା ଦିନେ ।
ବ୍ୟତିପାଦ ବଇଧୃତି ମହାମାଘୀ ଯୋଗେ
ଆଷାଢ଼ୀ ଯେ ବଇଶାଖୀ କାର୍ତ୍ତିକୀ ସୁଯୋଗେ ।
ଏକାଦଶୀ ସୋମବାର ଯୁଗାଦ୍ୟ ଆବର
ମନ୍ୱନ୍ତରା ଅମାବାସ୍ୟା ଯୋଗ ନୃପବର ।
ଗଜଚ୍ଛାୟା ଯୋଗଦିନ ମହାଳୟା ଦିନ
ଏଥି ଦାନଦେବା ନାନା ନୈମିତିକ ଦାନ ।
ଏକାଳ ଦାନର ଫଳ କହୁଅଛି ଶୁଣ
ମୋର ପ୍ରୀତିଅର୍ଥେ ଦାନଦିଏ ଯେଉଁ ଜନ ।
ତାକୁ ଗୃହସୁଖ ସ୍ୱର୍ଗ ମୋକ୍ଷଦିଏ ମୁହିଁ
କାମ୍ୟକାଳ ଦାନଫଳ ଶୁଣ ଏବେ ତୁହି ।
ସବୁ ବ୍ରତ କାଳସବୁ ଦେବପୂଜା କାଳ
କାମ୍ୟଦାନ କାଳବୋଲି ଜାଣ ମହୀପାଳ ।
ଏ ଦାନେ କାମନା ସିଦ୍ଧ କରଇ ତାହାର
ଅଭ୍ୟୁଦୟି କର କାଳ ଶୁଣ ନୃପବର ।
ସବୁ ଯଜ୍ଞ ଅନୁଷ୍ଠାନ ବିଭା ବ୍ରତଘର
ଜାତକର୍ମ ଚୂଡ଼ାକର୍ମ ଆଦି ଯେ ସଂସ୍କାର ।
ପ୍ରାସାଦ ପ୍ରତିଷ୍ଠା ପୁଣି ଧ୍ୱଜା ଆରୋପଣ
ଦେବତା ପ୍ରତିଷ୍ଠା ଆଦି ଦେଉଳ ନିର୍ମାଣ ।
ବାପୀକୂପ ତଡ଼ାଗାଦି ଉତ୍ସର୍ଗ ଯେତେକ
ଗୃହ ବାସ୍ତୁ ପ୍ରତିଷ୍ଠାଦି ସବୁ କର୍ମ ଯାକ ।
ଏଥିଯେ ଯେ ମାତୃଗଣ ପୂଜାକରି ସାରି
ଆଭ୍ୟୁଦୟିକ ଶ୍ରାଦ୍ଧକୁ କରନ୍ତି ବଚାରି ।
ଏ ଶ୍ରାଦ୍ଧକୁ ନନ୍ଦୀଶ୍ରାଦ୍ଧ ବୃଦ୍ଧି ଶ୍ରାଦ୍ଧ କହି
ଏ କାଳ ଦାନରେ ଜନ ସବୁ ସିଦ୍ଧିପାଇ ।
ଅନ୍ତ୍ୟକାଳ ଦାନଫଳ ଶୁଣ ନୃପମଣି
ମରଣ କାଳ ନିକଟ ହେବାକଥା ଜାଣି ।
ଦାନଦେବ ଯମଦ୍ୱାର ସୁଖର ନିମନ୍ତେ
ତୀର୍ଥ ଲକ୍ଷଣ କରୁଛି ଏବେ ତୋ ଅଗ୍ରତେ ।
ଉତ୍ତମ ତୀର୍ଥ ବୋଲାଇ ଗଙ୍ଗା ସରସ୍ୱତୀ
ରେବା ଯମୁନା ସରଯୂ ତାପୀ ଚର୍ମଣ୍ୱତୀ ।
ଘର୍ଘରା ବେଣା କପିଳା ବିଶାଳା କାବେରୀ
ତୁଙ୍ଗଭଦ୍ରା ନଦୀ ପୁଣି ନଦୀ ଗୋଦାବରୀ ।
ଏସବୁ ପାପହାରିଣୀ ସଂସାର ତାରିଣୀ
ଏହାଭିନ୍ନ ନଦୀ ଯେତେ ଜାଣ ନୃପମଣି ।
ପାପ ସମୂହର ନିତ୍ୟ ଭୟକୁ ଦିଅନ୍ତି
ତା ଭିତରେ ସରିଦ୍ୱରା ଏମାନେ ବୋଲନ୍ତି ।
ଭୀମରଥ୍ୟା କୃଷ୍ଣଗଙ୍ଗା ଦେବିକା ଏ ନିତି
ଆଉ ସବୁ ନଦୀ ପାପହରା ଯେ ବୋଲାନ୍ତି ।
ତା ଭିତରେ କେତେ ନଦୀ ପୁଣ୍ୟନାମ ବହି
ପୁଣ୍ୟକାଳେ ବହୁତୀର୍ଥେ ବିରାଜନ୍ତି ତହିଁ ।
ଗ୍ରାମରେ କିବା ଅରଣ୍ୟ ମଧ୍ୟେ ଥିବାନଈ
ପତିତପାବିନୀ ବୋଲି ସଂସାରେ ବୋଲଇ ।
ଏ ସବୁକାଳେ ସେ ନଦୀଜଳେ କଲେ ସ୍ନାନ
ଦେବତା ପିତୃ ତର୍ପଣ ଆଦି ନାନା ଦାନ ।
କଲେ ଯେ ପବିତ୍ରହେବ ଆହେ ମହାରାୟ
ଅଜଣା ନଦୀ ଯେତେକ ତାହାଙ୍କର ପୟ ।
ବିଷ୍ଣୁତୀର୍ଥ ତାକୁ କହି ବିଷ୍ଣୁ ବିଷ୍ଣୁ ବୋଲି
ପାଣିସିଞ୍ଚି ହୋଇ ଦେହେ ବୋଳିବ ତାବାଲି
ଯେଣୁ ମୁଁ ସବୁ ତୀର୍ଥର ଦେବତା ଅଟଇ
ତୀର୍ଥକ୍ଷେତ୍ରେ ମୋର ନାମ ଯେହୁ ଉଚ୍ଚାରଇ ।
ତାକୁ ପବିତ୍ର କରଇ ନିଶ୍ଚେ ଏ ମୋ ପଣ
ଧାତା ସବୁସ୍ଥାନେ ଥିବା ନଦୀକି ରାଜନ ।
ସବୁତୀର୍ଥ ସବୁପୁଣ୍ୟଧାତ୍ରୀ ବୋଲି ଥାପି
ତୋର ପରସାଦେ ନିଶ୍ଚେ ମୋକ୍ଷହୁଏ ପାପୀ ।

ଅକ୍ଷୟ ଫଳ ସେ ପାଇ ଜାଣ ନୃପମଣି
ସପତ ସାଗର ମାନସରୋବର ପୁଣି ।
ପୋଖରୀ ନିର୍ଝର ସବୁ ସଲ୍ଲିଳ ଆବର
ମହାପୁଣ୍ୟ ତୀର୍ଥବୋଲି ଜାଣ ନୃପବର ।
ଏହାଛଡ଼ା ଛୋଟଛୋଟ ନଈଅଛି ଯେତେ
ସେ ସମସ୍ତ ପୁଣ୍ୟତୀର୍ଥ ବୋଲାନ୍ତି ଜଗତେ ।
ଖ୍ୟାତ ଅଛନ୍ତି ସେ ସବୁ ପ୍ରତିଷ୍ଠିତ ତୀର୍ଥ
ମେରୁଆଦି ଏ ମହୀରେ ଯେତେକ ପର୍ବତ ।
ଯଜ୍ଞଭୂମି ଯଜ୍ଞ ଅଗ୍ନିହୋତ୍ର ଶ୍ରାଦ୍ଧଭୂମି
ଦେବଶାଳା ହୋମଶାଳା ବେଦପାଠ ଭୂମି ।
ସୋମରସ ପାନକରି ଜନଙ୍କର ସ୍ଥାନ
ଗୋଷ୍ଠ ଆବର ଆରାମ ବନ ଉପବନ ।
ଅଶ୍ୱତ୍ଥ ବୃକ୍ଷ ଯେ ବ୍ରହ୍ମବୃକ୍ଷ ବଟବୃକ୍ଷ
ପିତୃ ମାତୃଙ୍କର ଏହିସବୁ ତୀର୍ଥ ମୁଖ୍ୟ ।
ଯେ ସ୍ଥାନେ ପୁରାଣ ପାଠ ହୁଅଇ ଆବର
ଉତ୍ତମ ଭାରିଜାତାର ଗୁରୁଦେବ ଘର ।
ସୁପୁତ୍ରର ଘର ପୁଣି ଏ ସକଳ ସ୍ଥାନ
ତୀର୍ଥ ସ୍ଥାନ ବୋଲି କହିଛନ୍ତି ସାଧୁଜନ ।
ରାଜଭବନକୁ ପୁଣି ତୀର୍ଥ ବୋଲି କହି
ଶୁଣି ଶୁଣି ବେନ ପୁଣି ବୋଲେ ଭାବଗ୍ରାହୀ ।
ମାଧବହେ ସୁରୋତ୍ତମ କହିଲଯେ ଦାନ
ସେ ଦାନପାତ୍ର ଲକ୍ଷଣ କହ ଭଗବାନ ।
କୃପାକରି କୃପାନିଧି ପ୍ରସନ୍ନ ହୋଇବା
ପାତ୍ରର ଲକ୍ଷଣ ସବୁ ବୁଝାଇ କହିବା ।
ଏମନ୍ତ ଶୁଣି କହିଲେ ଦେବ ବାସୁଦେବ
କହୁଛି ପାତ୍ର ଲକ୍ଷଣ ଶୁଣ ନରଦେବ ।
ସାଧୁଏ ଶ୍ରଦ୍ଧାରେ ଦାନ ଦିଅନ୍ତି ଯାହାକୁ
ତାହା ବୁଝାଇ କହୁଛି ମୁଁ ଏବେ ତୁମ୍ଭଙ୍କୁ ।
ଶାନ୍ତ ଦାନ୍ତ କୁଳୀନ ଯେ ଦ୍ୱିଜ ବଇଦିକ
ପ୍ରଜ୍ଞାବନ୍ତ ଜ୍ଞାନବନ୍ତ ଦେବତା ପୂଜକ ।
ତପୀ ଜପୀ ଶୁଭ୍ରବର୍ଣ୍ଣ ସତ୍ୟଧର୍ମେ ରତ
ପୁଣ୍ୟବନ୍ତ ବଇଷ୍ଣବ ଲୋଭ ବିବର୍ଜିତ ।
ଏମନ୍ତ ପାତ୍ରର ହସ୍ତେ ଦେବ ଯାହା ଦାନ
ସଫଳ ସେ ଦାନ ନିଶ୍ଚେ ଜାଣିବ ରାଜନ ।
ଗୁଣବନ୍ତ ଭଣଜାକୁ ଦାନପାତ୍ର କହି
ଏମନ୍ତ ଦୁହିତାପୁତ୍ର ହସ୍ତେ ଦାନ ଦେଇ ।
ଜାମାତାହିଁ ଦାନପାତ୍ର ମନ୍ତ୍ରଦାତା ଗୁରୁ
ସୁପାତ୍ର ବୋଲି ଏ ସବୁ ବୋଲନ୍ତି ପୂର୍ବରୁ ।
ବଇଦିକ ହୋଇ ଯେବେ ସଦା ଅସନ୍ତୋଷ
କନ୍ୟା ପୁଣି ଅତି ଧୂର୍ତ୍ତ ଅତି କଳା କୃଶ ।
ପିଙ୍ଗଳବର୍ଣ୍ଣ ପାଟଳା ଟେରା ନୀଳବର୍ଣ୍ଣ
ଦାନର ଅଯୋଗ୍ୟବୋଲି ଜାଣହେ ରାଜନ ।
ଦାନ୍ତୁରା ନେଳିଆଦନ୍ତା ହଳଦିଆଦନ୍ତା
ଗୋଘାତୀ ଅତି ପାଂଶଳ କୃଷ୍ଣଶ୍ୟାମଦନ୍ତା ।
ହୀନାଙ୍ଗ ଅଧିକ ଅଙ୍ଗ କୁଷ୍ଠୀ ବ୍ୟାଧିମନ୍ତ
କୁନଖା କୁତ୍ସିତଚର୍ମା ଯାରୂପ କୁତ୍ସିତ ।
କୁଜା ଛୋଟା ଟାଙ୍ଗରା ଯେ ଏମନ୍ତ ଦ୍ୱିଜଙ୍କୁ
ଦାନର ଅପାତ୍ରବୋଲି ଜାଣିବ ଏହାଙ୍କୁ ।
ଯେ ଦ୍ୱିଜ ଭାରିଯା ନିତ୍ୟ କରଇ ଅନୀତି
ଦାନର ଅଯୋଗ୍ୟ ପାତ୍ର ଜାଣ ତାର ପତି ।
ସ୍ତିରୀଜିତ ଦ୍ୱିଜକରେ ନଦେବଯେ ଦାନ
ଶାଖାତ୍ୟାଗୀ ବିପ୍ରକୁ ଯେ କରିବ ବର୍ଜନ ।
ରୋଗୀ ଅତି ଚଞ୍ଚଳ ଯେ ବିପ୍ର କଦାଚାର
ଶବ ଜୀବିକା ଯାହାର ଅସନ୍ତୋଷ ଚୋର ।
ଦାନଯୋଗ୍ୟ ଶ୍ରାଦ୍ଧଯୋଗ୍ୟ ନୁହନ୍ତିଏ ରାୟେ
ପୁଣ୍ୟଦାୟକ ଯେ ଦାନ ଶୁଣ ଏବେ କହେ ।
ପୁଣ୍ୟ ତୀର୍ଥ ପୁଣ୍ୟକାଳ ସତପାତ୍ର ଦାନ
ଶ୍ରଦ୍ଧା ଭକତି ସଂଯୋଗେ ଦିଅ ମହାପୁଣ୍ୟ ।
ଶ୍ରଦ୍ଧା ତୁଲ୍ୟ ସୁଖ କିଛି ନାହିଁ ଏ ସଂସାରେ
ଶ୍ରଦ୍ଧା ତୀର୍ଥଠାରୁ ତୀର୍ଥ ନାହିଁ ଜଗତରେ ।
ଶ୍ରଦ୍ଧାବନ୍ତ ପ୍ରାଣୀ ନିତ୍ୟ ମୋହର ଶରଣ
ଯୋଗ୍ୟପାତ୍ର ହସ୍ତେ ଦେବ ଯାହାକିଛି ଧନ ।
ତହିଁର ଫଳ ଅନନ୍ତ ପାଏ ମୋ ପ୍ରସାଦେ
ଦ୍ୱିଜଗୋପୀନାଥ ଚିତ୍ତ ହୁଏ ହରିପାଦେ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ
ବେନୋପାଖ୍ୟାନେ ନାମ
ଊନଚତ୍ୱାରିଂଶୋଽଧ୍ୟାୟଃ ।



## ଚତ୍ୱାରିଂଶ ଅଧ୍ୟାୟ

### ନିତ୍ୟ ନୈମିତ୍ତିକ ଦାନଫଳ

ବେନ କହିଲେ ହେ ଦେବଦେବ ଜନାର୍ଦ୍ଦନ
ନିତ୍ୟ ଦାନର ଯେ ଫଳ କଲଇଁ ଶ୍ରବଣ ।

ନୈମିତ୍ତିକ ଦାନ ଫଳ କହ ପ୍ରଭୁ ମୋତେ
ଯାହା ଶୁଣିଲେ ସନ୍ତୋଷ ଜନମିବ ଚିତ୍ତେ ।
ଶ୍ରୀବିଷ୍ଣୁ ବୋଇଲେ ଶୁଣ ବେନ ନୃପବର
ନୈମିତ୍ତିକ ଦାନଫଳର ଯେ ସମାଚାର ।
ପର୍ବଦିନେ ସତପାତ୍ରେ ଦେବ ଯାହା ଦାନ
ତାର ପୁଣ୍ୟଫଳ ଏବେ ଶୁଣହୋ ରାଜନ ।
ଗଜ ରଥ ଅଶ୍ୱଦାନ ଯେ ଜନ ଦିଅଇ
ମୋର ଭୃତ୍ୟହୋଇ ପୁଣ୍ୟଦେଶେ ଜନମଇ ।
ଦିଗବିଜୟୀ ରାଜନ ହୁଅଇ ସେ ଜନ
ଧର୍ମ ଆତ୍ମା ବୁଦ୍ଧିମନ୍ତ ହୁଏ ଜ୍ଞାନବାନ ।
ଗୋରୁ ଦାନ ଭୂମିଦାନ ଦେଲେ ପର୍ବଦିନେ
ସର୍ବଭୋଗ ଅଧିକାରୀ ହୁଅନ୍ତି ସେ ଜନେ ।
ଅତି ପବିତ୍ର ବିପ୍ରର ହସ୍ତେ ଦେବ ଦାନ
ଦାନଯୋଗ୍ୟ ପାତ୍ର ହୋଇଥିବ ଯେଉଁଜନ ।
ବୁଝିସୁଝି ତାଙ୍କୁ ଦେବତୀର୍ଥେ ଦାନଦେବ
ପର୍ବଦିନେ ମହାଦାନ ଯେ ଜନ କରିବ ।
ଭୂପତି ହୋଇ ଜନମ ହୋଇବସେ ପ୍ରାଣୀ
ତୀର୍ଥରେ ଯେ ଦାନ ଦିଏ ପର୍ବଦିନ ଜାଣି ।
ଅକ୍ଷୟ ନିଧି ତାହାକୁ ମିଳଇ ତୁରିତେ
ଜନ୍ମ ସଫଳ ହୁଅଇ ସେ ସୁଖୀ ଜଗତେ ।
ପର୍ବଦିନ ଜାଣି ମହା ତୀର୍ଥକୁ ଯେ ଯାଇ
ବସନେ କାଞ୍ଚନ ଥୋଇ ଯେ ଦାନକରଇ ।
ତାରପୁଣ୍ୟ ଫଳ ଶୁଣ କହୁଛି ଭୁପତି
ବହୁତ ଉତ୍ତର ପୁତ୍ର ତାର ଜନମନ୍ତି ।
ଗୁଣବନ୍ତ ବେଦଶାସ୍ତ୍ର ସମସ୍ତେ କୁଶଳ
ଯଶୋବନ୍ତ ପୁଣ୍ୟବନ୍ତ ଯେ ପୁତ୍ର ସକଳ ।
ଆୟୁଷ ପୁତ୍ର ତାଙ୍କର ହୋଇବ ବହୁତ
ଦାନକାରିର ବିପୁଳ ଲକ୍ଷ୍ମୀ ସୁଖ ଜାତ ।
ଧର୍ମାତ୍ମା ହୋଇ ଜନମ ହୁଅଇ ମହୀରେ
ମହାପର୍ବଦିନଯାଇ ଯେହୁ ତୀର୍ଥବରେ ।
କାଇଁଆ କପିଳା ଗୋରୁ ଦିଏ ବିପ୍ର ହସ୍ତେ
ସେଦାନ ଫଳ କହୁଛି ଶୁଣ ତୋ ଅଗ୍ରତେ ।
ବ୍ରହ୍ମା ଜୀବନ ପର୍ଯ୍ୟନ୍ତ ତାହାର ଜୀବନ
ସବୁ ସୁଖ ଭୋଗ କରୁଥାଏ ଯେ ରାଜନ ।
ବସ୍ତ୍ର ଅଳଙ୍କାରେ ମଣ୍ଡି କାଞ୍ଚନ ସହିତ
ଗୋଦାନ ଦିଅଇ ପର୍ବଦିନେ ଯାଇଁତୀର୍ଥ ।

ତହିଁରେ ବିଫଳ ତାହା ଶୁଣ ମୁଁ କହଇ
ବିପୁଳ ଲକ୍ଷ୍ମୀ ସର୍ବଦା ତାହାକୁ ମିଳଇ ।
ବିଦ୍ୟାପତି ବୋଲାଇ ସେ ହୁଏ ବିଷ୍ଣୁଭକ୍ତ
ଭୂମଣ୍ଡଳ ଥିବାଯାଏ ବିଷ୍ଣୁଲୋକେ ସ୍ଥିତ ।
ତୀର୍ଥେ ଯାଇ ବ୍ରାହ୍ମଣକୁ ଯେ ଦିଏ ଭୂଷଣ
ଭୋଗପାଇ ଇନ୍ଦ୍ରସଙ୍ଗେ ଯାଏ ତାର ଦିନ ।
ପର୍ବଦିନେ ଅନ୍ନବସ୍ତ୍ର ଭୂମିଦାନ କରି
ବିଷ୍ଣୁତୁଲ୍ୟ ହୁଅଇ ସେ ବୈକୁଣ୍ଠବିହାରୀ ।
ବସ୍ତ୍ରକାଞ୍ଚନ ଯେ ଦିଏ ଶାନ୍ତ ବିପ୍ରକରେ
ତେଜୋବନ୍ତ ଅଗ୍ନିତୁଲ୍ୟ ହୁଅଇ ସଂସାରେ ।
ମରଣାନ୍ତେ ବଇକୁଣ୍ଠପୁରେ ତାର ବାସ
ବଞ୍ଚିଥିବା ଯାଏ ବ୍ରାହ୍ମଣଙ୍କୁ ଦେବ ଗ୍ରାସ ।
ଯେ ଜନ ସୁବର୍ଣ୍ଣକୁମ୍ଭେ ଘୃତ ପୂର୍ଣ୍ଣକରି
ରୂପାବସନେ ତାହାର ସର୍ବାଙ୍ଗ ଆବରି ।
ହାର ପୁଷ୍ପମାଳେ ତାକୁ କରିଣ ମଣ୍ଡଣି
ବେଦମନ୍ତ୍ରରେ ପ୍ରତିଷ୍ଠାକରି ତାକୁ ପୁଣି ।
ସେ କୁମ୍ଭକୁ ପୂଜାକରି ଷୋଳ ଉପଚାରେ
ଅଳଂକୃତକରି ପୁଣି ଦିଏ ବିପ୍ରକରେ ।
ତହୁଁ ଷୋଳ ଦୁଧବଢ଼ା କଂସାରେ ଯେ କରି
ଷୋଳଗୋଟି ଗୋରୁଦିଏ ବସ୍ତ୍ରରେ ଆବରି ।
କାଞ୍ଚନ ଦକ୍ଷିଣାଦେଇ ସେ ବିପ୍ର ହସ୍ତରେ
ପୁଣି ବାର ଗୋରୁ ମଣ୍ଡି ବସ୍ତ୍ର ଅଳଙ୍କାରେ ।
ଗୋଟିଏ ବିପ୍ରର ହସ୍ତେ ଦେବ ସବୁଦାନ
ଏରୂପେ ଦେବ ରାଜନ ଆନ ଦାନମାନ ।
ପୁଣ୍ୟତୀର୍ଥେ ପୁଣ୍ୟକାଳେ ଶରଧାରେ ନର
ବିପ୍ରହସ୍ତେ ଦାନଦେବ ତୋଳିଦେଇ ଘର ।
ଗୃହର ସାମଗ୍ରୀ ସବୁ ଥିବ ତହିଁ ପୁଣି
ଏ ଦାନରେ ମହାପୁଣ୍ୟ ଥାଇ ନୃପମଣି ।
ଶ୍ରୀବିଷ୍ଣୁ କହିଲେ ପୁଣି କାମନାଯେ କରି
ବିଷ୍ଣୁ ପ୍ରୀତିଅର୍ଥେ ଦାନଦିଏ ଦଣ୍ଡଧାରୀ ।
ସେ ଦାନେ କାମନା ସିଦ୍ଧ ହୁଅଇ ତାହାର
ଯଜ୍ଞ ଅଭ୍ୟୁଦୟ ଦାନ ଶୁଣ ନୃପବର ।
ଶରଧାରେ ଦାନଦେଲେ ପ୍ରଜ୍ଞାଯେ ବଢ଼ଇ
କେତେବେଳେ ଦୁଃଖଭୋଗ ସେହି ନକରଇ ।
ଅନ୍ତେ ଦିବ୍ୟ ଗତିପାଇ ସୁଖଭୋଗ କରେ
ସହସ୍ର କଳପ ରହେ ଇନ୍ଦ୍ର ସଙ୍ଗତରେ ।

କହୁଅଛି ଅନ୍ତକାଳେ କି କରିବେ ପ୍ରାଣୀ
ଜରାକାଳେ ଦେହକ୍ଷୀଣ ହେବାକଥା ଜାଣି ।
କାହିଁରେ ଆଶା ନରଖି କରିବ ସେ ଦାନ
ଭାବନା କରନ୍ତି ମଲା ପୂର୍ବୁ ପ୍ରାଣିଗଣ ।
ନିକଟ ହେଲାଣି ଆସି ମୋହର ମରଣ
ଏକାଳେ ମୁଁ କି କରିବି ଭାବେ ଅନୁଦିନ ।
ପୁତ୍ର ଭାଇବନ୍ଧୁ ଦାରା ବଞ୍ଚିବେ କେମନ୍ତେ
ମୁଁ ତାହାଙ୍କୁ ପୋଷୁଥିଲି ଅନ୍ନ ଜଳବସ୍ତ୍ରେ ।
ଏରୂପେ ଭାବନା କରୁ କରୁ ଦେହ କ୍ଷୀଣ
ଲୋଭମୋହେ ପଡ଼ିକରି ନପାରଇ ଦାନ ।
ଏ ଜୀବ ବାହାରିଯାଏ ତାର ବନ୍ଧୁ ଭାଇ
ପୁତ୍ର ଭାରିଯା ସମସ୍ତେ କାନ୍ଦି କାନ୍ଦି ରହି ।
ତାହାର ମୋକ୍ଷ ନିମନ୍ତେ କ୍ରିୟା କର୍ମକରି
ଲୋଭ ମୋହେ ତାହାସବୁ ପକାନ୍ତି ପାସୋରି ।
ଯମପଥେ ନାନା ଦୁଃଖ ପାଏ ମଲାପ୍ରାଣୀ
ନପାଇବାରୁ ସେ ତହିଁ କିଛି ଅନ୍ନପାଣି ।
କେ କାହାର ପୁଅ ନାତି କେ କାହାଭାରିଯା
ଦାନ ଦିଅ ହେ ରାଜନ ସବୁକରି ତ୍ୟଜ୍ୟା ।
ଜ୍ଞାନୀଜନ ଜୀବ ଥାଉ ଥାଉ ଦିଏ ଦାନ
ଅନ୍ନପାନ ଯେ ତାମ୍ବୁଳ ଜଳଯେ କାଞ୍ଚନ ।
ବସ୍ତ୍ର ଛତ୍ର ଜଳପାତ୍ର ବିଚିତ୍ର ବାହନ
ଯାନ ଗନ୍ଧ କର୍ପୂର ଯେ ପାଦୁକା ପ୍ରଦାନ ।
ଯେ ଜନ କରଇ ଯମପଥେ ସୁଖପାଇ
ଦ୍ୱିଜ ଗୋପୀନାଥବୋଲେ ହରିବୋଲ ଭାଇ

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ନୈମିତ୍ତିକ ଦାନ କଥନଂ
ନାମ ଚତ୍ୱାରିଂଶୋଽଧ୍ୟାୟଃ ।



## ଏକଚତ୍ୱାରିଂଶ ଅଧ୍ୟାୟ

### ଭାର୍ଯ୍ୟା ତୀର୍ଥ ବର୍ଣ୍ଣନ ଓ ପତିବ୍ରତା ସୁକଳାର ଚରିତ୍ର

ବେନରାଜା ବୋଇଲେହେ କହ ଦେବହରି
ପିତାମାତା ଗୁରୁ ଭାର୍ଯ୍ୟା ପୁତ୍ର ଏ କିପରି
ତୀର୍ଥ ମୋ ଆଗେ ବିସ୍ତାରି କହିବା ଭୋ ନାଥ
ଶ୍ରୀବିଷ୍ଣୁ ବୋଇଲେ ଶୁଣ ତୁହୋ ନରନାଥ ।
ବାରାଣସୀ ନାମେ ଅଛି ଏକ ଦିବ୍ୟପୁର
ଗଙ୍ଗାନଦୀ ଥିବାରୁ ସେ ପବିତ୍ର ଆବର ।
କୃକଳ ନାମରେ ବୈଶ୍ୟ ରହେ କରି ଘର
ଧର୍ମବନ୍ତ କର୍ମବନ୍ତ ଅତି ନିଷ୍ଠାପର ।
ତାହାର ଭାରିଯା ନାମ ସୁକଳା ଅଟଇ
ସୁଫଳା ସୁପୁତ୍ରା ଚାରୁ ମଙ୍ଗଳା ବୋଲାଇ ।
ସତୀ ସାଧ୍ୱୀ ପତିବ୍ରତା ସଉଭାଗ୍ୟବତୀ
କୃକଳ ବୈଶ୍ୟହିଁ ଜ୍ଞାନୀ ଧର୍ମବନ୍ତ ଅତି ।
ଗୁଣବନ୍ତ ସଦା ବେଦ ପୁରାଣ ଶୁଣଇ
ତୀର୍ଥ ଯାତ୍ରାକରି ବୈଶ୍ୟ ପୁଣ୍ୟଫଳ ପାଇ ।
ପୁଣ୍ୟକଥା ଶୁଣିବାରେ ଶରଧା ତାହାର
ତୀର୍ଥ କରିବାକୁ ଦିନେ ହୋଇଲା ବାହାର ।
ବ୍ରାହ୍ମଣଗଣ ବଣିକଗଣଙ୍କୁ ବାଟରେ
ଯିବା ଦେଖି ସେ ବଇଶ୍ୟ ତୀର୍ଥ ଯାତ୍ରାକରେ ।
ସ୍ୱାମୀ ତୀର୍ଥ ଯିବାଦେଖି ଭାରିଯା ସୁକଳା
ମୁଁ ତୀର୍ଥକୁ ଯିବି ତୁମ୍ଭ ସଙ୍ଗତେ ବୋଇଲା ।
ମୁହିଁ ତୁମ୍ଭ ଧର୍ମପତ୍ନୀ ଛାଡ଼ି ନପାରଇ
ତୁମ୍ଭେ ତୀର୍ଥେଗଲେ ମୁହିଁ ତୀର୍ଥକୁ ଯିବଇଁ ।
ଦେହକୁ ଛାଡ଼ି ନପାରେ ଯେମନ୍ତେ ତା ଛାଇ
ତେସନଥିବି ମୁଁ ତୁମ୍ଭ ସଙ୍ଗତେ ଗୋଡ଼ାଇ ।
ପତିବ୍ରତା ନାରୀଙ୍କର ଧର୍ମ ପତିସେବା
ସ୍ୱାମୀଛଡ଼ା ସ୍ତିରୀଙ୍କର ନାହିଁ ତୀର୍ଥଯିବା
ସ୍ୱର୍ଗସୁଖ ମୋକ୍ଷସବୁ ସ୍ତିରୀଙ୍କର ପତି
ପତିଛଡ଼ା ନାରୀଙ୍କର ନାହିଁ ଆନଗତି ।
ସ୍ୱାମୀର ଦକ୍ଷିଣପାଦ ପ୍ରୟାଗ ଅଟଇ
ପୁଷ୍କରତୀର୍ଥ ତା ବାମପାଦ ଯେ ବୋଲାଇ ।
ସ୍ୱାମୀ ପାଦୋଦକ ସ୍ନାନ ତାର ତୀର୍ଥସ୍ନାନ
ସ୍ୱାମୀସବୁ ତୀର୍ଥସବୁ ପୁଣ୍ୟ ନାଥ ଜାଣ ।
ସ୍ୱାମୀ ସେବାକଲେ ସବୁ ଯଜ୍ଞଫଳ ପାଇ
ସ୍ୱାମୀ ବିନା ରମଣୀର ଆନଧର୍ମ ନାହିଁ ।
ଶ୍ରୀବିଷ୍ଣୁ ବୋଇଲେ ଶୁଣି କୃକଳ ବଇଶ୍ୟ
ଭାରିଯାର ରୂପଗୁଣ ସ୍ୱଭାବ ବୟସ ।
ଅଙ୍ଗ ସଉନ୍ଦର୍ଯ୍ୟ ସବୁ ଦେଖି ବିଚାରଇ
ଏହାକୁ ଦୁର୍ଗମ ମାର୍ଗେ ଯେବେ ଘେନିଯାଇ ।
ଶୀତ ଖରାରେ ଦିଶିବ ଅତି ଅସୁନ୍ଦର
ପଦ୍ମଗର୍ଭ ପ୍ରାୟ ଅଙ୍ଗବର୍ଣ୍ଣ ଯେ ଏହାର ।

ଝଞ୍ଜାବାତ ଶୀତେ ଦେହ ପଡ଼ିଯିବ କଳା
ଗୋଡ଼ି କଣ୍ଟା ବାଟସମ ବିଷମ ଯେ ଶିଳା ।
ଏହାର ପାଦଯୁଗଳ ଅତ୍ୟନ୍ତ କୋମଳ
ଚାଲନ୍ତେ ଯେ ଫୁଟିଯିବ ଏହା ପାଦତଳ ।
ବାଟଚାଲି ନପାରିବ କରିବ ରୋଦନ
କ୍ଷୁଧା ତୃଷାରେ ବିକଳ ହେବ ଦିନୁଦିନ ।
ସୁନ୍ଦରପଣ ଏହାର ନିଶ୍ଚେ ଲୁଚିଯିବ
କିମ୍ଭୂତ କିମାକାର ଏ ଯୁବତୀ ଦିଶିବ ।
ଏ ସୁନ୍ଦରଅଙ୍ଗୀ ବରାନନା ପ୍ରିୟା ମୋର
ନିତ୍ୟଧର୍ମର ଆଶ୍ରୟସ୍ଥାନ ରାମାବର ।
ମୋହର ସବୁସୁଖର ସ୍ଥାନ ଏ ଯୁବତୀ
ଏହାର ବିହୁନେ ମୋର ସରିବ ସମ୍ପତ୍ତି ।
ଏ ବାଳା ମୋର ଜୀବିକା ପ୍ରାଣର ଈଶ୍ୱରୀ
ମୋର ସର୍ବ ସମ୍ପଦର ଅଟେ ସୁଖକାରୀ ।
ଏଣୁ ମୁଁ ଏହାକୁ ଘେନି ତୀର୍ଥକୁ ନଯିବି
ଏରୁପେ କୃକଳ ବୈଶ୍ୟ ମନେ ମନେଭାବି ।
ମଉନେ ରହନ୍ତେ ତାର ମନକଥା ଜାଣି
ପୁଣିହିଁ ତାକୁ କହିଲା ସୁକଳା ଘରଣୀ ।
ପୁରୁଷ ଅପାପୀ ନାରୀ ଛାଡ଼ିବାର ନୋହେ
ଧର୍ମର ମୂଳ ଭାରିଯା ସବୁଶାସ୍ତ୍ର କହେ ।
ଏହାଜାଣି ମୋତେଘେନି ଚାଲ ମହାମତି
କୃକଳ ବଇଶ୍ୟ ଶୁଣି ଭାରିଯା ଉକତି ।
ହସି ବୋଇଲାଗୋ ପ୍ରିୟେ କହିଲ ଯା ସତ
ପୁରୁଷ ଧର୍ମପତ୍ନୀକି ନକରେ ତ୍ୟକତ ।
ସୁନୀତି ଧର୍ମପତ୍ନୀକି ଯେଜନ ତେଜଇ
ଦଶାଙ୍ଗ ଧର୍ମ ତା ଦେହୁ ଛାଡ଼ି ଚାଲିଯାଇ ।
ଏଣୁ ବରାନନେ ହେଉ ମଙ୍ଗଳ ତୋହର
ତୋତେ ମୁଁ ଛାଡ଼ି ନଯିବି କେଭେ ତୀର୍ଥବର ।
ଶ୍ରୀବିଷ୍ଣୁ କହିଲେ ସେହି କୃକଳ ବଇଶ୍ୟ
ଏରୂପେ କହି ସେ କଲା ଭାରିଯାକୁ ତୋଷ ।
ଲୁଚିକରି ଗଲା ତହୁଁ ସଙ୍ଗୀଙ୍କ ସଙ୍ଗତେ
ସ୍ୱାମୀ ନଦେଖି ସୁକଳା ସେଦିନ ପ୍ରଭାତେ ।
ମନମଧ୍ୟେ ବିଚାରିଲା ସୁକଳା ସୁନ୍ଦରୀ
ଯହିଁଥିଲେହେଁ ଆସିବେ ଗୃହକୁ ସେ ଫେରି ।
ଦେବାର୍ଚ୍ଚନ କାଳଗଡ଼ି ନଯିବ ତାଙ୍କର
ଏମନ୍ତ ଭାଳି ସୁକଳା ମନକଲା ସ୍ଥିର ।
ଦେବାର୍ଚ୍ଚନ ବେଳାହେଲା ସ୍ୱାମୀକି ନଦେଖି
ମନର କଷ୍ଟେ ରୋଦନ କଲା ସେ ସୁମୁଖୀ ।
ସଖୀ ସହଚରୀ ଆସି ପଚାରିଲେ ତାକୁ
କି କଷ୍ଟ ହେଲା ତୋହର କହ ତୁ ଆମ୍ଭଙ୍କୁ ।
ଏମନ୍ତ ଶୁଣି ବୋଇଲା ସୁକଳା ସୁନ୍ଦରୀ
ତୁମେ ମୋ ସ୍ୱଜନ ବନ୍ଧୁ ସଖୀ ସହଚରୀ ।
ତୁମ୍ଭଆଗେ ନକହିବି କେମନ୍ତେ ମୋ ଦୁଃଖ
ସ୍ୱାମୀବିନା ରମଣୀର ନାହିଁ କିଛି ସୁଖ ।
ମୋତେ ଛାଡ଼ିଗଲେ ଆଜି ମୋ ପ୍ରାଣଈଶ୍ୱର
ତୁମ୍ଭେମାନେ ଦେଖିଥିଲେ କହ ମୋ ଆଗର ।
ଏମନ୍ତ ଶୁଣି ବୋଇଲେ ସହଚରୀଗଣ
ରୋଦନ କରୁଛୁ ତୁଗୋ ସଖି ଅକାରଣ ।
ଧର୍ମ କରିବା ନିମନ୍ତେ ତୀର୍ଥକୁ ସେ ଗଲେ
ସ୍ୱର୍ଗରେ ବସିବେ ତହିଁ ଦାନପୁଣ୍ୟ କଲେ ।
ବଡ଼ ବଡ଼ ତୀର୍ଥକରି ଫେରିବେ ଘରକୁ
ତୁମ୍ଭେ ଶୋକକର ଏହା କହିବା କାହାକୁ ।
ଶୁଭରେ ଅଶୁଭ ସଖି ମନାସ କିପାଇଁ
ଏମନ୍ତେ ପ୍ରବୋଧବାଣୀ ସଖୀମୁଖୁଁ ପାଇ ।
ଆପଣା ଘରକୁ ଗଲା ସୁକଳା ସୁନ୍ଦରୀ
ଏକାନ୍ତେ ବସି କାନ୍ଦଇ ପତିକି ସୁମରି ।
ମନେ ମନେ ସେ ସୁନ୍ଦରୀ କଲା ଏହା ସ୍ଥିର
ସ୍ୱାମୀ ଫେରି ନଆସିବାଯାଏ ମୋର ଘର ।
ଖଟ ପଲଙ୍କ ତେଜିଣ ଭୂମିରେ ଶୋଇବି
ଘୃତ ତଇଳ ଯେ ଦହି ଦୁଧ ନ ଖାଇବି ।
ଲୁଣ ପାନ ଗୁଡ଼ ଆଦି ମଧୁର ଯେତେକ
ନ ଖାଇବି ନ ଚାହିଁବି ପୁରୁଷର ମୁଖ ।
ବକତେ ଖାଇ ରହିବି କିବା ଅନାହାରେ
ଏମନ୍ତେ ରହିଲା ସତୀ ପତିବ୍ରତାଚାରେ ।
ସେହି ବେଣୀ ସେ କଞ୍ଚୁକ ନ ତେଜିଲା ଆଉ
ମଳିନା ଦିଶିଲା ସେହି ସତୀ ଚାହୁଁ ଚାହୁଁ ।
ମଳିନ ବସନ ପିନ୍ଧି ହାହାକାର କରି
ଦୀର୍ଘନିଶ୍ୱାସ ପକାଇ କହିଲା ସୁନ୍ଦରୀ ।
ଦିନୁଦିନ ଅତିକଷ୍ଟେ କଟାଇଲା କାଳ
ପୋଡ଼ିଦେବାରୁ ତାହାକୁ ବିରହ ଅନଳ ।
କଳା ଦିଶିଲା ତା ଦେହ ବେଳୁବେଳ କ୍ଷୀଣ
ଦିବାରାତ୍ର ଶୋକ କଲା ନକରି ଭକ୍ଷଣ ।

ନିଦ ନ ମାଡ଼ିଲା କ୍ଷୁଧା ତୃଷାରେ ବିହ୍ୱଳ
ସଖୀଏ ଆସି କହିଲେ ହୋଇ ପୁଣି ମେଳ ।
କିପାଇଁ ଶୋକ କରୁଛୁ ସୁଗାତ୍ରି ସୁକଳେ
ଦୁଃଖର କାରଣ କହ ଆମ୍ଭ ସଖି ମେଳେ ।
ସୁକଳା କହିଲା ସ୍ୱାମୀ ଛାଡ଼ିଗଲେ ମୋତେ
ଧର୍ମ ଅର୍ଥେ ପୃଥ୍ୱୀ ଭ୍ରମି ଭ୍ରମି ତୀର୍ଥେ ତୀର୍ଥେ ।
ନିର୍ଦ୍ଦୋଷୀଅପାପୀମୋତେ ସଙ୍ଗତେ ନନେଲେ
ସତୀ ସ୍ୱାଧ୍ୱୀ ପତିବ୍ରତା ଜାଣି ନାଥ ଭଲେ ।
ତୀର୍ଥବ୍ରତ ପୁଣ୍ୟଧର୍ମ କଲେ ଦେଶେ ଦେଶେ
ସେଦୁଃଖ ମୋ ହୃଦେ ରହି କଷ୍ଟଦିଏ ବାସେ ।
ସ୍ୱାମୀ ବିରହ ଅନଳେ ପୋଡ଼ିଯାଏ ମନ
କେମନ୍ତେ କଲେ ମୋ ସ୍ୱାମୀ ଏ ନିଷ୍ଠୁରପଣ ।
ବିଷଗ୍ରାସ ଜଳେ ଝାସ ଅଗ୍ନିରେ ପ୍ରବେଶ
ଯେ କେବଣ ଉପାୟରେ ଏ ଜୀବନ ନାଶ ।
କରିବା ମୋ ପକ୍ଷେ ଭଲ ଜାଣ ସଖୀଗଣ
ସ୍ୱାମୀ ଛଡ଼ା ରମଣୀର ପ୍ରାଣ ଅକାରଣ ।
ଦାରୁଣ ବିରହ ଦୁଃଖ ନପାରଇ ସହି
ଶୋକ କରୁଅଛି ସଖି ମନକଷ୍ଟେ ରହି ।
ଏମନ୍ତ ଶୁଣି ବୋଇଲେ ତାକୁ ସଖୀଗଣ
ବୃଥା ସନ୍ତାପରେ ଦେହ କରୁଛୁ ଶୋଷଣ ।
ତୀର୍ଥକରି ଗଲା ସ୍ୱାମୀ ଘରକୁ ଫେରିବ
ତୋହର ତାହାର ପୁଣି ଭେଟହିଁ ହୋଇବ ।
ବୃଥା ସନ୍ତାପିତ ହୋଇ ଦେହ କରୁକ୍ଷୀଣ
ବୃଥାରେ ନରୁଚେ ତୋତେ ଭୋଗପାନଅନ୍ନ ।
ଘରେ ଥିବା ଦ୍ରବ୍ୟ ସବୁ ଭୋଗକର ସଖି
ଏମିଛ ମାୟାସଂସାର ମୋହେ ନୋହଦୁଃଖୀ ।
କି ସ୍ୱାମୀ କାହାର ସଖୀ କି ପୁଅ କାହାର
କେ କାହା ବନ୍ଧୁ ବାନ୍ଧବ ସ୍ୱଜନ ସୋଦର ।
କାହାସଙ୍ଗେ କି ସମ୍ବନ୍ଧ କାହାର ଅଛଇ
ଏ ସଂସାରେ ଯେତେଦିନ ଥିବ ପୁଣି ରହି ।
ଖାଇବ ଭୋଗ କରିବ ଦେବ ନେଉଥିବ
ମଲେ କେ ଭୋଗକରିବ କିଛି ନଦେଖିବ ।
ପାନ ଭୋଜନ ଦାନହିଁ ଏ ସଂସାରେ ଫଳ
ଧର୍ମ ଏକା ସଖି ଜାଣ ଏ ସବୁର ମୂଳ ।
ଏମନ୍ତ ଶୁଣି ବୋଇଲା ସୁକଳା ସୁନ୍ଦରୀ
ତୁମ୍ଭେ ଯା କହୁଛ ବେଦ ନକହେ ଏପରି ।

ବେଦ ଯାହା କହେ ତାହା କହୁଅଛି ଶୁଣ
ଯେ ନାରୀ ସ୍ୱାମୀକି ଛାଡ଼ି ଏକାରହେ ଜାଣ ।
ପାପିନୀ ନାରୀ ବୋଲାଇ ସାଧୁଜନ ମେଳେ
ଏଣୁ ସ୍ୱାମୀ ନଛାଡ଼ିବ ନାରୀ କେତେବେଳେ ।
ଏ ବେଦ ବିଧି ବିଧାନ ଜାଣ ସହଚରୀ
ପୁଣ୍ୟସଙ୍ଗ କଲେ ନିଶ୍ଚେ ପୁଣ୍ୟହିଁ ସଞ୍ଚରି ।
ସ୍ୱାମୀ ଏକା ରମଣୀର ତୀର୍ଥ ଶାସ୍ତ୍ରମତେ
କାୟମନ ବଚନରେ ନାରୀ ଏଣୁ ନିତ୍ୟେ ।
ପତିକି ଡାକି ପତିର ସେବା କରୁଥିବ
ସ୍ୱାମୀ ମନଜାଣି ତାକୁ ଅନୁସରି ଥିବ ।
ସ୍ୱାମୀର ଦକ୍ଷିଣ ପାର୍ଶ୍ୱ ଅଟେ ମହାତୀର୍ଥ
ସେ ତୀର୍ଥ ଆଶ୍ରାରେ ରହି ରମଣୀ ଯେ ନିତ୍ୟ ।
ଗୃହୀର ଯେ ଧର୍ମ ଦାନ ପୂଜା କରୁଥିବ
ଏମନ୍ତ କଲେ ସେ ନାରୀ ଯେ ଫଳ ପାଇବ ।
ଗଙ୍ଗା ଗୟା ବାରାଣସୀ ତୀର୍ଥ ଯେ ପୁଷ୍କର
ଦ୍ୱାରକା ଅବନ୍ତୀ ତୀର୍ଥ ଆବର କେଦାର ।
ଏସବୁ ତୀର୍ଥ କରି ସେ ସେ ଫଳ ନପାଇ
ସ୍ୱାମୀ ପରସାଦେ ସିନାନାରୀ ଶୋଭାପାଇ ।
ବରବର୍ଣ୍ଣନୀ ବୋଲାଇ ବଦନ ଶୋଭନ
ପୁତ୍ର ସଉଭାଗ୍ୟ ସ୍ନାନ ଦାନହିଁ ଭୂଷଣ ।
ରୁପତେଜ ସଉଭାଗ୍ୟ ବସ୍ତ୍ର ଅଳଙ୍କାର
ଯଶ ଗୁଣ ସଉନ୍ଦର୍ଯ୍ୟ କୀରତି ଆବର ।
ଏ ସବୁ ମିଳଇ ସଖି ସ୍ୱାମୀଥିଲେ ସିନା
ଆନଧର୍ମ କରେ ନାରୀ ଯେବେ ସ୍ୱାମୀ ବିନା ।
ସେ ଧର୍ମଯାକ ତାହାର ବିଫଳ ହୁଅଇ
ଏ ସଂସାରେ ସେହିନାରୀ ପୁଂଶ୍ଚଳୀ ବୋଲାଇ ।
ନାରୀରୂପ ଯଉବନ ସ୍ୱାମୀର ନିମନ୍ତେ
ଯେ ନାରୀ ସ୍ୱାମୀର ମନ ତୋଷୁଥାଇ ନିତ୍ୟେ
ସୁପୁତ୍ର ସୁଯଶାବୋଲି ବୋଲନ୍ତି ତାହାକୁ
ପତିହିନା ନାରୀଦୁଃଖ କହୁଛି ତୁମ୍ଭଙ୍କୁ ।
ସୁଖ ଯଶ ପୁତ୍ର କୀର୍ତ୍ତି ତାର ଆଉ କାହିଁ
ଦୁର୍ଭାଗାବୋଲି ସଂସାରେ ସେନାରୀବୋଲାଇ ।
ମହାଦୁଃଖ ଭୋଗ କରୁଥାଇ ସେ ନିରତେ
ପାପଭାଗିନୀ ସେ ଦୁଃଖ ଭାଗିନୀ ଜଗତେ ।
ସ୍ୱାମୀର ସନ୍ତୋଷେ ସବୁ ଦେବତା ସନ୍ତୋଷ
ଦେବଋଷି ମାନବହିଁ ଆବର ରାକ୍ଷସ ।

ଏଣୁ ରମଣୀର ସ୍ୱାମୀ କେବଳହିଁ ନାଥ
ସ୍ୱାମୀ ଏକା ଗୁରୁ ସ୍ୱାମୀ ଏକମାତ୍ର ତୀର୍ଥ ।
ସ୍ୱାମୀକେବଳ ଦେବତା ସ୍ୱାମୀ ଏକାପୁଣ୍ୟ
ସ୍ୱାମୀବିନା ରମଣୀର ନାହିଁ ଆନଧର୍ମ ।
ରୂପ ବର୍ଣ୍ଣ ସଉଗନ୍ଧ ଶୃଙ୍ଗାର ଭୂଷଣ
ସ୍ୱାମୀଅଭାବେ ଏ ସବୁ କରିବ ବର୍ଜନ ।
ସ୍ୱାମୀଥିବା ନାରୀ ଶୋହେ ଶୃଙ୍ଗାର ଭୂଷଣେ
ଏ ସକଳ ଅକାରଣ ସ୍ୱାମୀର ବିହୁନେ ।
ସାପମୁଖୁ ବାହାରିବା କ୍ଷୀରପ୍ରାୟ ବୃଥା
ସ୍ୱାମୀଥିବା ନାରୀ ଜାଣ ବୋଲାଇ ସୁବ୍ରତା ।
ମହାଭାଗା ପୁଣି ଚାରୁମଙ୍ଗଳା ବୋଲାଇ
ସବୁମଙ୍ଗଳ କର୍ମରେ ସେହି ଲୋଡ଼ାହୋଇ ।
ସ୍ୱାମୀନାହିଁ ଯେ ରମଣୀ କରଇ ଶୃଙ୍ଗାର
ରୂପବର୍ଣ୍ଣ ସବୁ ଶବ ସ୍ୱରୂପ ତାହାର ।
ସେନାରୀକିବେଶ୍ୟାବୋଲି ବୋଲନ୍ତିସଂସାରେ
ସ୍ୱାମୀହୀନା ନାରୀ ଯେବେ ସୁଖ ଇଚ୍ଛାକରେ ।
ଜନ୍ମଜନ୍ମାନ୍ତରେ ନାହିଁ ସେ ସୁଖ ତାହାର
ସ୍ୱାମୀ ଯେ ପରମଧର୍ମ ସତୀ ରମଣୀର ।
ସନାତନଧର୍ମ ଛାଡ଼ି ନପାରେ ଭାରିଯା
ମୁହିଁ ସେହି ଧର୍ମକରି ନପାରଇ ତ୍ୟଜ୍ୟା ।
ସ୍ୱାମୀ କିମ୍ବା ଏକାକରି ଛାଡ଼ିଗଲେ ମୋତେ
ପୁରାତନ ଇତିହାସ ଶୁଣିଛି ଯେମନ୍ତେ ।
ସୁଦେବାର ପାପହାରୀ ସୁପୁଣ୍ୟ ଚରିତ
ହରି ପାଦତଳେ ରହୁ ଗୋପୀନାଥ ଚିତ୍ତ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ସୁକଳା ଚରିତଂ ନାମ
ଏକଚତ୍ୱାରିଂଶୋଽଧ୍ୟାୟଃ ।

## ଦ୍ୱିଚତ୍ୱାରିଂଶ ଅଧ୍ୟାୟ

## ପତିବ୍ରତା ସୁଦେବା ଚରିତ

ସଖୀକଣ ପଚାରିଲେ ସୁକଳାକୁ ଚାହିଁ
ତୁଗୋ ମହା ଭାଗ୍ୟବତୀ ତୋଷକଥା କହି ।
ସୁଦେବା କିଏ ତାହାର ଚରିତ କେମନ୍ତ
କିପରି ତା ଆଚରଣ କହ ସେ ବୃତ୍ତାନ୍ତ ।

ଏମନ୍ତ ଶୁଣି କହିଲା ସୁକଳାସୁନ୍ଦରୀ
ମନୁପୁତ୍ର ଯେ ଇକ୍ଷ୍ୱାକୁ ନାମେ ଦଣ୍ଡଧାରୀ ।
ଅଯୋଧ୍ୟାର ରାଜା ସବୁ ଧର୍ମ ତାକୁ ଜଣା
ବେଦବାଟରୁ ସେ ପୁଣି ତିଳେନୋହେବଣା ।
ନିତି ଦେବ ଦ୍ୱିଜ ପୂଜା କରଇ ନୃପତି
ତାହାର ନାରୀ ସୁଦେବା ଅଟେ ପତିବ୍ରତୀ ।
କାଶୀପତି ବେଦେ ରାଜନାମେ ବୀରବର
ସୁବେଦାସୁନ୍ଦରୀ ଅଟେ ଦୁହିତା ତାହାର ।
ତାକୁ ବିଭା ହୋଇଥିଲେ ଇକ୍ଷ୍ୱାକୁ ରାଜନ
ସୁଦେବା ସତ୍ୟ ଆଚରେ ରହିହରେ ଦିନ ।
ସତୀ ସାଧ୍ୱୀ ପତିବ୍ରତା ସର୍ବାଙ୍ଗ ସୁନ୍ଦରୀ
ଇକ୍ଷ୍ୱାକୁ ତାହାର ସଙ୍ଗେ ନିତ୍ୟ କ୍ରୀଡ଼ାକରି ।
ଏକଦିନକର କଥା ଶୁଣ ଦେଇମନ
ସୁଦେବାକୁ ସଙ୍ଗେଘେନି ରାଜାଗଲେ ବନ ।
ଗଙ୍ଗାତୀର ବନେ ପଶି କଲେ ସେ ମୃଗୟା
ପଶୁଙ୍କ ଉପରେ ତିଳେ ନାହିଁ ତାଙ୍କ ଦୟା ।
ମାଇଲେ ସିଂହଶୂକର ମହିଷ ବହୁତ
ଅଶ୍ୱଙ୍କୁ ମାଇଲେ ରାଜା ମୃଗକ୍ରୀଡ଼ା ରତ ।
ତାଙ୍କ ଛାମୁରେ ପଡ଼ିଲା ଗୋଟାଏ ଶୂକର
ବହୁତ ପୁତ୍ର ନାତି ଯେ ଅଛଇ ତାହାର ।
ଆବର ଶୂକରପଲ ଅଛନ୍ତି ସଙ୍ଗତେ
ସେ ଶୂକରପଲ ଘେନି ରହିଲା ପର୍ବତେ ।
ତାର ଭାରିଯା ଶୂକରୀ ପାଖେ ପାଖେ ଅଛି
ସେ ଶୂକର ରାଜା ତାକୁ ନପାରେ ମୂରୁଛି ।
ଦୁର୍ଜୟ ମୃଗୟାରତ ଇକ୍ଷ୍ୱାକୁ ରାଜନ
ଦେଖି ସେହି ଶୂକରୀକି କହିଲା ଏସନ ।
ଦେଖ ଏହି ମହାରାଜ ନିଜ ବୀର୍ଯ୍ୟବଳେ
ଏକାକେ ମୃଗୟାକରେ ଭୟନାହିଁ ତିଳେ ।
ଏହାଯୋଗୁଁ ମହାମାରୀ ହୋଇବ ଏ ବନେ
ପୁତ୍ର ନାତି ଗୁରୁ ଶିଶୁ ମରିବେ ଏକ୍ଷଣେ ।
ଏହି ମହାବଳ ବୀର ମନୁର ନନ୍ଦନ
ଇକ୍ଷ୍ୱାକୁ ଏହାର ନାମ କୋଶଳରାଜନ ।
ମୃଗୟା କ୍ରୀଡ଼ାରେରତ ହୋଇଛି ଏ ରାୟ
ମୋତେଦେଖିଲେ ମୋପାଶେ ଆସିବ ନିଶ୍ଚୟ ।
ଆନକେହି ବ୍ୟାଧମୋତେ ନପାରିବେ ମାରି
ମୋର ରୂପବପୁ ଦେଖି ଏହି ଧଣ୍ଡଧାରୀ ।

ନ ଛାଡ଼ିବ ନିଶ୍ଚେ ମୋତେ କରିବ ବିନାଶ
ତହିଁରେ ତାର ଆନନ୍ଦ ବଢ଼ିବ ଅଶେଷ ।
ଧନୁଶର କରେ ଧରି ଆସିବନାଧାଇଁ
ବହୁତ ଶ୍ୱାନ ତାପଛେ ଆସିବେ ଗୋଡ଼ାଇ ।
ଅନେକ ବ୍ୟାଧହିଁ ଥିବେ ପଛେ ପଛେ ତାର
ଯେଣୁ ମାଂସ ଭକ୍ଷଣରେ ଲୋଭ ତାହାଙ୍କର ।
ଅଗୋ ପ୍ରିୟେ ନିଶ୍ଚେ ମୋତେ ପଡ଼ିବଆଘାତ
ଏମନ୍ତ ଶୁଣି ଶୂକରୀ ବୋଇଲାହେ କାନ୍ତ ।
ଯେବେଳେ ତୁମ୍ଭଙ୍କୁ ଦେଖି ଧାଇଁବ ରାଜନ
ତୁମ୍ଭେ ତକ୍ଷଣେ ପଳାଇଯିବ ଆନ ବନ ।
ତୁମ୍ଭ ପଛଧରି ଆମ୍ଭେ ସବୁ ପଳାଇବୁ
ଗହନବନସ୍ତେ ପଶି ଲୁଚିଣ ରହିବୁ ।
ବଳ ପଉରୁଷ ଧୈର୍ଯ୍ୟ ଛାଡ଼ିକରି ନାଥ
ଦୁରୁ ନୃପତିକି ଦେଖି କିମ୍ପା ହୁଅ ଭୀତ ।
ଏହାର କାରଣ କିଛି ବୁଝିପାରୁ ନାହିଁ
ଭାରିଯା ବଚନ ଶୁଣି ଶୂକର କହଇ ।
ଆଗୋ ପ୍ରିୟେଯେକାରଣେଡ଼ରମାଡ଼େମୋତେ
ତାହା ବୁଝାଇ କହୁଛି ଏବେ ତୋ ଅଗ୍ରତେ ।
ବହୁତ ଶୂକରଥିବା ଶୁଣି ବ୍ୟାଧଗଣ
ନୃପତିକି ପ୍ରବର୍ତ୍ତାଇ ମାରିବେ ସେ ବାଣ ।
ଆଗୋକାନ୍ତେ ପାପକାରୀ ଶଠ ସେ ଅଟନ୍ତି
ଦୁର୍ଗମଗିରି କନ୍ଦରେ ଏ ଭ୍ରମିପାରନ୍ତି ।
କୁଟକପଟ ଉପାୟ ଜାଣନ୍ତି ବହୁତ
ଏ ଦୁଷ୍ଟବ୍ୟାଧେ ନିରତେ ପାପକର୍ମେ ରତ ।
ପାପୀକୁଳେ ଏହାଙ୍କର ଜନମଗୋ ପ୍ରିୟେ
ଏହାଙ୍କହସ୍ତେ ମରଣ ପାଇଁ କହେ ଭୟେ ।
ପାପୀହସ୍ତେ ମରି ପୁଣି ପାପରେ ବୁଡ଼ିବି
ଅପମୃତ୍ୟୁ ଭୟେ ଯେବେ ଏଥୁ ପଳାଇବି ।
ଦୂର ଗିରିଗୁହା ଆଶ୍ରେ ରଖିବି ଜୀବନ
ସମୟେ ଖୋଜିମାରିବେ ମୋତେ ବ୍ୟାଧଗଣ ।
ଅପମୃତ୍ୟୁହିଁ ପାଇବି ପାପୁଁ ନତରିବି
ଆଗୋସଖି ଏହିପାଇଁ ମନେଅଛି ଭାବି ।
ମରଣ ନିଶ୍ଚୟ ମୋର ବନବ୍ୟାଧ ବାଣେ
ଅତି ସୁଯୋଗ ଗୋଟା ମୁଁ ପାଇଛି ଏକ୍ଷଣେ ।
ଏ ସୁଯୋଗ ସଖି ମୋତେ ନ ମିଳିବ ଆଉ
ପାପୁ ନିସ୍ତାରିବା ପଥ ଛାଡ଼ଇ କି କେହୁ ।

ଦେଖ ସଖିଏ ନୃପତି ପରମ ପବିତ୍ର
ଦେବେ ପ୍ରଶଂସା କରନ୍ତି ଏହାର ଚରିତ୍ର ।
ସଂସାର ସାର ଏ ରାୟ ଶ୍ରୀବିଷ୍ଣୁ ସମାନ
ଏହାର ସଙ୍ଗେ ଆଜି ମୁଁ କରିବି ସଂଗ୍ରାମ ।
ପଉରୁଷ ବଳବୀର୍ଯ୍ୟ ବିକ୍ରମ ଆବର
ଥାଉଁ ଥାଉଁ ଡରେ କିମ୍ପା ଯିବି ବନଘୋର ।
କାପୁରୁଷ ପ୍ରାୟ କିମ୍ପା ପାପରେ ବୁଡ଼ିବି
ନିଜତେଜେ ଯେବେ ଆଜି ରାଜାକୁ ଜିଣିବି ।
ଅତୁଳ କୀରତି ଭୋଗ କରିବି ମହୀରେ
କିବା ବୀରରାୟ ହସ୍ତେ ମଲେ ମୁଁ ସମରେ ।
ନିଶ୍ଚେ ବିଷ୍ଣୁ ଭୁବନରେ ବସିବି ମୁଁ ଯାଇଁ
ଆନନ୍ଦରେ ବଇକୁଣ୍ଠ ଭୋଗିବି ଯେ ରହି ।
ମୋରମାଂସମେଦେ ରାଜାହୋଇବେ ତୃପତ
ଇନ୍ଦ୍ର ମୋମାଂସ ନିମନ୍ତେ ହେବେ ଉପଗତ ।
ମରିବି ସୁନ୍ଦରୀ ଯେବେ ଏ ନୃପତି ହସ୍ତେ
ମହୀରେ ମୋର କୀରତି ଘୋଷୁଥିବେ ନିତ୍ୟେ ।
ଯୁଗ ଯୁଗାନ୍ତର ଥିବ ଏ ଯଶ ମୋହର
ଏଥିରେ ଅଧିକ ଯଶ କିଅଛି ବିଚାର ।
ମୋର ଜାଣିବାରେ ତିନିଭୁବନରେ ନାହିଁ
ମଧୁସୂଦନ ସଦନ ପାଇବି ମୁଁ ଯାଇଁ ।
ଏଥିରେ କିଛି ସନ୍ଦେହ ନାହିଁ ମୋର ମନେ
ନ ପଶିବି ଘୋର ଗିରି ଗହ୍ୱର କାନନେ ।
ପାପକୁ ସଖି ମୋହର ଥାଏ ମହାଭୟ
ଧର୍ମକୁ ମୁଁ ନଛାଡ଼ିବି ଏକଥା ନିଶ୍ଚୟ ।
ପୂର୍ବଜନ୍ମକିବା ଜନ୍ମାନ୍ତର ପାପଫଳେ
ଲଭିଲି ଶୂକର ଯୋନି ଆଜି ପୁଣ୍ୟବଳେ ।
ଘୋର ତୀକ୍ଷ୍ଣ ଶତ ଶତ ଶାଣଦିଆ ବାଣେ
ଧୋଇବି ପୂର୍ବ ଅର୍ଜ୍ଜିତ ପାପ ଆଜି ରଣେ ।
ମୋର ସ୍ନେହ ଛାଡ଼ି ସଖି ପୁତ୍ର ନାତି ଘେନି
ବରାହପଲ ତୋ ସଙ୍ଗେ ଥିବେ ଗୋ କାମିନି ।
ଲୁଚି ପ୍ରାଣ ରଖ ଆନ ପର୍ବତ କନ୍ଦରେ
ଦେଖ ସିଂହରୂପୀ ନୃପ ଆସେ ଖରତରେ ।
ଏହା ହସ୍ତେ ମରି ବିଷ୍ଣୁ ପଦବୀ ପାଇବି
ସ୍ୱର୍ଗରଦ୍ୱାର କବାଟ ଫିଟିଛି ବାନ୍ଧବୀ ।
ଦଇବବଳେ ମୁଁ ହେଲେ ଯିବି ସ୍ୱର୍ଗପୁରେ
ସୁକଳା କହଇ ସଖୀମାନଙ୍କ ଛାମୁରେ ।

ଦୁଃଖମନେ କାନ୍ତମୁଖ ଅନାଇ ଶୂକରୀ
ଏକା ପ୍ରାଣନାଥ ତୁମ୍ଭେ ନୁହଁ ଯେ ମୋହରି ।
ଏ ବରାହ ଯୂଥଙ୍କର ଅଟ ପୁଣି ପତି
ଅଛନ୍ତି ତୁମ୍ଭର ଭାଇବନ୍ଧୁ ପୁତ୍ର ନାତି ।
ସବୁରି ଶିର ଭୂଷଣ ଅଟ ତୁମ୍ଭେ ନାଥ
ଶିର ବିହୁନେ ସବୁରି ସକଳ ବିଅର୍ଥ ।
ତୁମ୍ଭେ ମୂଳ ନାଥ ସବୁ ଡାଳ ସିନା ତୋର
ମୂଳ ସଙ୍ଗେ ସଙ୍ଗେ ଡାଳଯିବେ ଯମଘର ।
ତୁମ୍ଭବଳେ ଏ ବରାହ ମହା ବଳବନ୍ତ
ବଳ ଦେଖାଇ ଗର୍ଜନ କରନ୍ତି ସତତ ।
ତୋର ବଳେ ବାରାଛୁଆ ନିର୍ଭୟେ ଖେଳନ୍ତି
ପର୍ବତ କନ୍ଦରେ କନ୍ଦମୂଳାଦି ଭକ୍ଷନ୍ତି ।
ଆହେ ମହାବାହୁ ତୁମ୍ଭ ତେଜେ ଏ ସକଳେ
ଗିରି ଦୁର୍ଗବନ କୁଞ୍ଜ ଗ୍ରାମ ନଦୀକୂଳେ ।
ପୁର ନଗରେ ଭ୍ରମନ୍ତି ତିଳେ ନାହିଁ ଡର
ନକରନ୍ତି ମାନବଙ୍କୁ ସେ ପୁଣି ଖାତର ।
ମହାସିଂହକୁ ପର୍ବତେ ନଡ଼ରନ୍ତି ପୁଣି
ମୋର ଛୁଆ ତୁମ୍ଭ ସଙ୍ଗେ ଯାଇ ଗୁଣମଣି ।
ବନପଥ ଜାଣି ନିତି ସେ ବାଟେ ଗମନ୍ତି
ତୁମ୍ଭ ବିହୁନେ ସକଳସ୍ଥାନେ ପାଇ ଭୀତି ।
ଦୀନ ଜୀର୍ଣ୍ଣ ଶୀର୍ଣ୍ଣହୋଇ ହରାଇବେ ଚେତା
ଦିବ୍ୟ ସ୍ୱର୍ଣ୍ଣ ଅଳଙ୍କାର ରତ୍ନେ ବିଭୂଷିତା ।
ବସ୍ତ୍ର ଆଦି ଆଭରଣ ସର୍ବାଙ୍ଗରେ ଥାଇ
ପିତା ମାତା ସହୋଦର ଭଉଣୀ ଭିଣୋଇ ।
ଶାଶୁ ଶ୍ୱଶୁର ସ୍ୱଜନ ବାନ୍ଧବ ଚାକର
ଏ ସବୁଥାଇ ସଂସାରେ କୁଳ·ରମଣୀର ।
ପତି ବିହୁନେ କଦାପି ଶୋଭା ସେ ନପାଇ
ତେସନ ତୁମ ବିହୁନେ ହେବି ପ୍ରାଣସାଇଁ ।
ଏସବୁ ଥାଇହେ ନାଥ କିହେବ ମୋହର
ସିନ୍ଦୂର ବିନେ ଲଲାଟ ଯେହ୍ନେ ଅସୁନ୍ଦର ।
ଚନ୍ଦ୍ର ବିହୁନେ ରଜନୀ ଅଶୋଭା ଯେସନ
ପୁତ୍ର ବିହୁନରେ କୁଳ ହୁଏ ଯେହ୍ନେ ଶୂନ୍ୟ ।
ଦୀପ ବିହୀନେ ଅନ୍ଧାରଘର ଅସୁନ୍ଦର
ଆହେ ମାନ ଦାନକାରୀ ମୋର ପ୍ରାଣେଶ୍ୱର ।
ତୁମ୍ଭ ବିନେ ଏହି ଯୂଥ ପାଇବ ଅଶୋଭା
ଆଚାରହୀନ ମାନବ ଯେହ୍ନେ କ୍ଷୀଣପ୍ରଭା ।

ଅଜ୍ଞାନୀ ଯତିର ଯେହ୍ନେ ବିଫଳ ସକଳ
ଅବିଚାରକ ନୃପତି ତେସନ ବିହ୍ୱଳ ।
ତୁମ୍ଭ ବିହୂନେ ଏଯୂଥ ହୋଇବେ ତେସନ
ଦ୍ରବ୍ୟ ସମ୍ଭାରେ ନଉକା ପାରିଥାଇ ପୁଣ ।
ନାବିକ ନଥିଲେ ଶୋଭା ନପାଇ ସାଗରେ
ତେସନ ଅଶୋଭା ନାଥ ତୁମ୍ଭ ବିହୁନରେ ।
ବଣିକ ବିହୁନେ ଯେହ୍ନେ ବାଣିଜ୍ୟ ନଚଳେ
ଶୋଭା ନପାଇ ସେ ଦ୍ରବ୍ୟଯାକ ମହୀତଳେ ।
ଥାଟ ଅଶୋଭା ଯେସନ ସେନାପତି ବିନେ
ତୁମ୍ଭବିନେ ଏ ଶୂକରଥାଟ ହେବେ ତେହ୍ନେ ।
ବେଦହୀନ ଦ୍ୱିଜପ୍ରାୟ ହେବେ ଏ କ୍ରମରେ
ମରଣ ସୁଲଭ ଜାଣି ନାଥ ମୋର କରେ ।
କୁଟୁମ୍ବର ଭାର ଦେଇ ଯାଉଛ କିପରି
ତୁମ୍ଭେ ନାଥ ଯେଣୁ ମୋର ପ୍ରାଣ ଅଧିକାରୀ ।
ତୁମ୍ଭଙ୍କୁ ଛାଡ଼ି ମୁଁ ଦଣ୍ଡେ କ୍ଷଣେ ନରହିବି
ସତ୍ୟ ସତ୍ୟସତ୍ୟ ମୋର ନିଶ୍ଚୟ ତେଜିବି ।
ତୁମ୍ଭେ ଯେଣେ ଯିବ ନାଥ ମୁହିଁ ଯିବି ତେଣେ
ତୁମ୍ଭେ ରଣେ ମଲେ ମୁହିଁ ମରିବି ସେ ରଣେ ।
ତୁମ୍ଭେ ସ୍ୱର୍ଗେ ଗଲେ ତୁମ୍ଭ ସଙ୍ଗେ ସ୍ୱର୍ଗଯିବି
ତୁମ୍ଭେ ମର୍ତ୍ତ୍ୟେଥିଲେ ମୁହିଁ ମର୍ତ୍ତ୍ୟପୁରେ ଥିବି ।
ତୁମ୍ଭେ ନର୍କଭୋଗ କଲେ ନର୍କଭୋଗ ମୋର
ଆହେ ଯୂଥପତି ଡାଲବିଳମ୍ବ ନକର ।
ପୁତ୍ରନାତି ଯୂଥ ଘେନି ଆମ୍ଭେ ଏଥୁଁ ଯିବା
ଦୁର୍ଗମଗିରି କନ୍ଦର ଭିତରେ ପଶିବା ।
ରଣେ ମଲେ ତୁମ୍ଭର କି ଫଳ ତାହା କହ
ଏମନ୍ତ ଶୁଣି ବୋଇଲା ସେ ବୀର ବରାହ ।
ବୀରଧର୍ମ ସଖି ଯେଣୁ ତୁମ୍ଭଙ୍କୁ ଅଜଣା
ସେ ଧର୍ମ କହୁଛି ଶୁଣ ହୋଇ ଏକମନା ।
ଯୁଦ୍ଧର ନିମନ୍ତେ ବୀର ବୀର ଆଗେ ଯାଇଁ
ଆସିଛି ମୁଁ ତୁମ୍ଭସଙ୍ଗେ ଯୁଝିବାର ପାଇଁ ।
ଯୁଦ୍ଧ ଦେଇ ମୋର ମନ ତୋଷ ଆହେ ବୀର
ମୃତ୍ୟୁକୁ ଡ଼ରି ନକରେ ଯେବେ ସେ ସମର ।
କାମଲୋଭ ମୋହ ତାକୁ ଛାଡ଼ି ନ ଦିଅଇ
କୁମ୍ଭୀପାକ ନର୍କ କୁଣ୍ଡେ ପଡ଼ଇ ସେ ଯାଇଁ ।
ସହସ୍ରଯୁଗ ପର୍ଯ୍ୟନ୍ତେ ପଡ଼ି ପଚୁଥାଏ
ସଂଗ୍ରାମ ଭୂମିରେ ଯେଉଁ କ୍ଷତ୍ରୀ ପ୍ରାଣଦିଏ ।

କ୍ଷତ୍ରିର ପରମ ଧର୍ମ ଅଟେ ଯୁଦ୍ଧଦାନ
ଯୁଦ୍ଧ ନିମନ୍ତେ ଯେ ଜନ କରଇ ଗମନ ।
ଜିଣିଲେ ଯଶକୀରତି ରହେ କାଳେ କାଳେ
ମଲେ ବଇକୁଣ୍ଠପୁରେ ବସେ କୁତୁହଳେ ।
ସଖି ଗୋ ଶୁଣ କହୁଛି ପଉରୁଷ ଫଳ
ଯେ ବୀର ଯୁଦ୍ଧେ ଦେଖାଇ ରଣ କଉଶଳ ।
ଅବଶେଷେ ମରେଯେବେ ବୀରଲୋକେବସେ
ଦେବତାଏ ଖଟିଥାନ୍ତି ସଦା ତାର ପାଶେ ।
ଦିବ୍ୟଭୋଗ ସୁଖକରେ ତହିଁ ପୂଜା ପାଇ
ଏକୋଇଶସସ୍ର ବର୍ଷ ସୁଖେ ସେ କଟାଇ ।
ଏ ମନୁସୁତ ଇକ୍ଷ୍ୱାକୁ ଅଟେ ମହାବୀର
ଆସୁଅଛି ନିଶ୍ଚେ ମୋତେ ମାରିବ ସମର ।
ପଳାଇ ନଯିବି ମୁହିଁ ଯୁଝିବି ତା ତୁଲେ
ସନାତନ ବିଷ୍ଣୁରୂପୀ ରାଜା ଭୂମି ତଳେ ।
ସେ ଯେବେ ଯୁଦ୍ଧ ଅତିଥି ହେବ ମୋର ଘରେ
ଯୁଦ୍ଧ ଦେଇ ତୋଷିବଇଁ ନିଶ୍ଚୟ ସମରେ ।
ଫେରାଇ ନଦେବି ତାକୁ ମୁଁ ଫେରି ନ ଯିବି
ପାପ ନକରିବି ପୁଣ୍ୟ ଧର୍ମ ନ ଛାଡ଼ିବି ।
ଶୁକରୀ କହିଲା କାନ୍ତ ଯେବେ ଏହା ସତ୍ୟ
ଏକାନ୍ତ ବାସନା ଯେବେ ନୃପତି ସହିତ ।
ସଂଗ୍ରାମ କରିବ ଚାଲ ଦେଖିବି ମୁଁ ଯାଇଁ
ମଲେ ତୁମ୍ଭ ସଙ୍ଗେ ମୋର ମୃତ୍ୟୁ ପ୍ରାଣସାଇଁ ।
ତୁମ୍ଭ ପରାକ୍ରମ ବଳ ଦେଖିବି ସକଳ
ଶୂକରୀ କଥା କହି ପୁତ୍ରେ କରି କୋଳ ।
ବୋଇଲା ବାବୁରେ ତୁମ୍ଭେ ମୋରବୋଲକର
ବିଷ୍ଣୁରୂପୀ ଏଇକ୍ଷ୍ୱାକୁ ନୃପତି ଶେଖର ।
ଯୁଦ୍ଧ ଅତିଥି ହୋଇଛି ଏଣୁ ତୋ ପିୟର
ତୋଷିବ ତାହାକୁ ଆଜି ଦେଇଣ ସମର ।
ସ୍ୱାମୀକି ଛାଡ଼ିରେ ବାବୁ ନପାରଇ ରହି
ହାରିବା ଜିଣିବା କଥା ଜାଣେ ସିନା ବିହି ।
ତୁମ୍ଭେ ଦୁର ଗିରିଦୁର୍ଗ ଗୁହା ଆଶ୍ରାକର
ତୁମ୍ଭ ବଡ଼ଭାଇ ଅଟେ ବୁଦ୍ଧିରେ କୁମାର ।
ବଳ ବପୁ ପରାକ୍ରମ ଅଛି ତାର ସବୁ
ଯୂଥପତି ହୋଇ ସେହି ପାଳିବ ନା ବାବୁ ।
ଆବର ଖୁଡ଼ୁତାମାନେ ଅଛନ୍ତି ତୁମ୍ଭର
ଆମ୍ଭ ଦୁହିଙ୍କି ଛାଡ଼ିଣ ଯାଆରେ କୁମର ।

ପିତା ଯହିଁ ମାତା ତହିଁ ନୋହିବ ବିଚ୍ଛେଦ
ଏକଅଙ୍ଗ ଯେଣୁ ବାବୁ ନାହିଁ କିଛି ଭେଦ ।
ମଲେ ଜୀଇଲେ ସର୍ବତ୍ର ରହିବେ ସେ ଦୁଇ
ପୁତ୍ରେ କହିଲେ ଜନନୀ ବଦନ ଅନାଇ ।
ଏ ପର୍ବତ ମାତ ଦୀର୍ଘ ପ୍ରତିରେ ବୃହତ
ଫଳମୂଳ ଜଳ ଏଥେ ଅଛଇ ବହୁତ ।
ନିର୍ଭୟେ ଅଛୁଁ ଏଠାରେ ଭୟ କିଛି ନାହିଁ
ଜନମ ସ୍ଥାନ ଆମ୍ଭର ଅଟଇ ଏ ଭୂଇଁ ।
ଏହା ଛାଡ଼ି କିମ୍ପା ଯିବୁ ଆନ ପରବତେ
ଜନନୀ ଜନମଭୂମି ଗରିଷ୍ଠ ଜଗତେ ।
ଏଥୁ କି ଅଧିକ ସୁଖ ପାଇବୁ ଭୋ ମାତ
ଏଣୁ ଛାଡ଼ି ନପାରିବୁ ଆମ୍ଭେ ଏ ପର୍ବତ ।
ତୁମ୍ଭେ କିମ୍ପା ଅକାରଣେ କହିଲ ଏ କଥା
ସଂଶୟ ଲାଗିଲା ଫେଡ଼ି କହ ବେଗେ ମାତା ।
ଶୁକରୀ କହିଲା ଶୁଣ ଆରେ ପୁତ୍ରଗଣ
ଦେଖ ଆସୁଅଛି କରେ ଧରି ଧନୁବାଣ ।
କାଳରୂପୀ ରାଜା ସେହି ମହାଭୟଙ୍କର
ଏହାର ନାମ ଇକ୍ଷ୍ୱାକୁ ଅଯୋଧ୍ୟା ଈଶ୍ୱର ।
ମନୁର ପୁତ୍ର ଏହାର ବଳ ଅପ୍ରମିତ
କ୍ଷଣକେ ଜିଣି ପାରଇ ରଣେ ତ୍ରିଜଗତ ।
ମୃଗୟା କ୍ରୀଡ଼ାରେ ମାତି ବନପଶୁ ମାରେ
କାଳଯମ ପ୍ରାୟ ଦେଖ ଜୀବଙ୍କୁ ସଂହାରେ ।
କୋଳାହଳ ନାଦେ ପୂରିଅଛି ଏହି ବନ
କରୁଣ ଚିତ୍କାର ଧ୍ୱନି ଶୁଭେ ଘନ ଘନ ।
ଏଣୁ ତୁମ୍ଭେ ଦୂରେ ରହି ରଖ ତୁମ୍ଭ ପ୍ରାଣ
ହସି ମାତାକୁ କହିଲେ ଶୁଣି ପୁତ୍ରଗଣ ।
ପିତା ମାତା ଛାଡ଼ି ପୁତ୍ର ରହେ କି ଜୀବନେ
କୁପୁତ୍ର କେବଳ ଛାଡ଼ି ରହଇ ସଦନେ ।
ମନେ ବିଚାରଇ ମଲେ ପିତାମାତା ମୋର
ଭାରିଯା ଘେନି ମୁଁ ସୁଖେ କରିବଇଁ ଘର ।
ସେ ପାପମତି ପୁତ୍ରର ବଦନ ନ ଚାହିଁ
ଚାହିଁଲେ ବେନିଲୋକରେ ତାରସୁଖ କାହିଁ ।
ମହା ରଉଦ୍ର ଯେ ଘୋର ନର୍କେ ତାର ବାସ
ଜନମି ସେ ପୁତ୍ର କିମ୍ପା ନଯାଇ ବିନାଶ ।
ବୃଥାରେ ଜନନୀ କ୍ଷୀର କରଇ ସେ ପାନ
ମାତା ପ୍ରାଣ ଶୋଷୁଥାଏ ଧିକ ତା ଜୀବନ ।

ଦୁର୍ଗନ୍ଧ ପୂଯ ରକତ କୁଣ୍ଡ ତାହାପାଇଁ
କୃମି କୀଟ ତା ମାଂସକୁ ଖାଇବା ଯୋଗାଇ ।
ଏଣୁ ପିତା ମାତା ଛାଡ଼ି ନ ପାରିବୁଁ ମାତ
ବ୍ୟୁହ ଥାପିଣ ରହିଲେ ସେ ବରାହ ଯୂଥ ।
ଉତ୍ସାହ ସାହାସ ଧୈର୍ଯ୍ୟ ବୀର୍ଯ୍ୟ ଆଶ୍ରାକଲେ
ସଂଗ୍ରାମ କରିବୁଁ ବୋଲି ମନରେ ପାଞ୍ଚିଲେ ।
ପଉରୁଷ ପଣେ କଲେ ଘୋର ଗରଜନ
ଚାହିଁ ରହିଲେ ରାଜାର ଯୁଦ୍ଧ ଆଗମନ ।
ଥୋମଣୀରେ ମାଟିତାଡ଼ି ହୋଇଲେ ଆନନ୍ଦ
ଦୀନଗୋପୀନାଥବୋଲେ ଗୋବିନ୍ଦ ଗୋବିନ୍ଦ

ଇତି ଶ୍ରୀ ପଦ୍ମ ପୁରାଣେ ଭୂମିଖଣ୍ଡେ ସୁଦେବା
ଚରିତେ ଶୂପରୋପାଖ୍ୟାନଂ ନାମ
ଦ୍ୱିଚତ୍ୱାରିଂଶୋଽଧ୍ୟାୟଃ ।



## ତ୍ରିଚତ୍ୱାରିଂଶ ଅଧ୍ୟାୟ
## ମେରୁ ପର୍ବତେ ବରାହ ଯୂଥସଙ୍ଗେ ଇକ୍ଷ୍ୱାକୁ ସୈନ୍ୟର ଯୁଦ୍ଧ

ସଖୀଙ୍କ ଆଗେ କହଇ ସୁକଳା ସୁନ୍ଦରୀ
ବ୍ୟୁହକରି ରହିଲେ ସେ ଶୂପର ଶୂକରୀ ।
ମାଂସଲୋଭୀ ବ୍ୟାଧେଯାଇଁ ରାଜାର ଛାମୁରେ
କହିଲେ ହେ ମହାରାଜ ଦେଖ ପର୍ବତରେ ।
ଶୂକର ପଲ ଯୁଝିବାପାଇଁ ବ୍ରୁହ୍ୟ କରି
ରହିଛି ମହାବରାହ ଭୟ ପରିହରି ।
ସେ ମହାବରାହ ବର୍ଣ୍ଣ କପିଳ ଅଟଇ
ଦେହ ଗୋଟା ମୋଟା ତାର ଦୀର୍ଘସେ ନୁହଇ ।
ପୃଥୁଳ ଶରୀର ବଳ ବହୁତ ତାହାର
ମୁଖେ ତାର ବାରାଦାନ୍ତ ମହାଭୟଙ୍କର ।
ଦଂଷ୍ଟ୍ରା କରାଳ ବଦନ ଗର୍ଜନ ଭୀଷଣ
ବରାହଯୂଥ ମଧ୍ୟରେ ପାଉଛି ଭୂଷଣ ।
ଦେଖ ଆପଣଙ୍କୁ ସେହି ଚାହୁଁଚି ତରାଟି
ବଳବପୁ ଥିବାରୁ ସେ ନଯାଉଛି ହଟି ।
ପ୍ରତାପୀ ମନୁ ତନୟ ଇକ୍ଷ୍ୱାକୁ ରାଜନ
ବ୍ୟାଧଙ୍କ ମୁଖରୁ ଶୁଣି ଏମନ୍ତ ବଚନ ।
ଦେଖିଲେ ରହି ଅଛନ୍ତି ଶାଳ ତାଳ ବନେ
ଦିଶନ୍ତି ବରାହ ଯୂଥେ ପାଷାଣ ସମାନେ ।
ଶାଳତାଳ ବନ ପୂରି ରହିଛନ୍ତି ବଳ
ବୃଦ୍ଧ ବରାହର ବର୍ଣ୍ଣ ଦିଶଇ କପିଳ ।
ଯୁଦ୍ଧ କରିବା ମାନସ ସବୁରି ଅଛଇ
ଦେଖି ଆଶ୍ଚର୍ଯ୍ୟ ହୋଇଲେ ଅଯୋଧ୍ୟାର ସାଇଁ ।
କ୍ରୋଧ ତାଙ୍କର ଉଦୟ ହୋଇଲା ହୃଦୟେ
ନୟନ ଦୁଇ ଦିଶିଲା ରକ୍ତପଦ୍ମ ପ୍ରାୟେ ।
ବୋଇଲେରେ ବ୍ୟାଧଗଣ ଧନୁଶର ଧରି
ଗିରି ଦୁର୍ଗମମାର୍ଗଆଡୁ ଆସ ବେଗେ ଘେରି ।
ବଳ ଗର୍ବୀ ବୀର୍ଯ୍ୟବନ୍ତ ବରାହକୁ ବିନ୍ଧ
ଅନ୍ୟ ବରାହଙ୍କୁ ପାଶ ବସାଇଣ ବାନ୍ଧ ।
ନୃପତିର ଆଜ୍ଞାପାଇଁ ଆନନ୍ଦରେ ବ୍ୟାଧେ
ଓଷ୍ଠ କାମୋଡ଼ି ପଶିଲେ ବୀରମଦେ ଯୁଦ୍ଧେ ।
ସଙ୍ଗତେ ଘେନି ବହୁତ ଶିକାରୀ କୁକୁର
ଏଥୁଅନ୍ତେ ସୁଶିକ୍ଷିତ ସଇନ୍ୟ ଅପାର ।
ଚତୁରଙ୍ଗ ବଳ ଘେନି ଆପେ ନରପତି
ଅଶ୍ୱ ଉପରେ ବସିଲେ ଧରି ବୀରମୂର୍ତ୍ତି ।
ଅସ୍ତ୍ରଶସ୍ତ୍ର ଶୋଭାପାଏ ତାହାଙ୍କ ଶରୀରେ
ବୀରମୁକୁଟ ଦିଶଇ ଝଟ ଝଟ ଶିରେ ।
ବୀରନେତ ବାହେ ଶୋହେ ହସ୍ତରେ କଙ୍କଣ
ଜାହ୍ନବୀ ନଦୀ ତୀରକୁ କଲେକ ଗମନ ।
ତୀରେ ଥିବା ମେରୁ ଗିରି ଶୋହେ ତରୁବରେ
ରତ୍ନ ଧାତୁରେ ଉଜ୍ଜ୍ୱଳ ଶୋଭାରାଶି ଧରେ ।
ଘେରେ ପକାଇଲେ ରାଜା ଚାରିଆଡୁ ଜଗି
ସଖୀଙ୍କି କହେ ସୁକଳା ପତି ସଉଭାଗୀ ।
କି କହିବି ଗିରିରାଜ ସୁମେରୁର ଶୋଭା
କିରଣେ ନିନ୍ଦଇ ସୂର୍ଯ୍ୟକିରଣର ପ୍ରଭା ।
ଗଗନ ସ୍ପରଶ କରେ ଶିଖର ତାହାର
ତହିଁରେ ଅଛଇ ନାନା ଜାତିର ପଥର ।
ନାନାବର୍ଣ୍ଣର ରତନ ତହିଁ ବିରାଜଇ
ନାନା ବର୍ଣ୍ଣର ଧାତୁରେ ଗିରି ଶୋଭାପାଇ ।
ଗଙ୍ଗାର ତରଙ୍ଗମାଳା ଜଳବିନ୍ଦୁ ପଡ଼ି
ମୁକୁତା ଫଳ ସଦୃଶ ନିର୍ମଳ ସେ ଉଡ଼ି ।
ଧୋଇ ହୋଇଯିବା ଯୋଗୁଁ ପଥର ସୁନ୍ଦର
ଦେବ ଦାନବ ଗନ୍ଧର୍ବ ଚାରଣ କିନ୍ନର ।
ସିଦ୍ଧ ବିଦ୍ୟାଧର ଅପସରା ମୁନିଜନ
ଏ ସବୁରେ ଗିରିବର ହୋଇଛି ମଣ୍ଡନ ।

ଶ୍ରୀଖଣ୍ଡ ଚନ୍ଦନ ତରୁ ବକୁଳ ବହୁତ
ଶାଳ ତାଳ ତମାଳରେ ସେ ଗିରି ମଣ୍ଡିତ ।
ରୁଦ୍ରାକ୍ଷ କଳପ ବୃକ୍ଷ ଦେବଦାରୁ ବନ
ଥିବାରୁ ସେ ଗିରିବର ପାଉଛି ଶୋଭନ ।
ନାନାଧାତୁ ନାନାରତ୍ନେ ବିଚିତ୍ର ବିମାନ
କାଞ୍ଚନ ଦଣ୍ଡେ ଉଜ୍ଜ୍ୱଳ ନାନାବର୍ଣ୍ଣ ଯାନ ।
ଗିରିବର ଶୋଭାରାଶି ବଢ଼ାଇ ଦିଅନ୍ତି
ଗୁଆ ନାରିକେଳ ବୃକ୍ଷ ଯହିଁ ପନ୍ତି ପନ୍ତି ।
ପୁନାଙ୍ଗ କଦଳୀ ବୃକ୍ଷେ ହୋଇଛି ମଣ୍ଡଣି
ଯୂପତରୁ ଦେବଦାରୁ ତରୁ ଶ୍ରେଣୀ ଶ୍ରେଣୀ ।
ପୁଷ୍ପିତ ପାଟଳ ବଲ୍ଲୀ ବିତାନ ଅପାର
ନାଗେଶ୍ୱର ବୃକ୍ଷ ପୁଣି ସ୍ଫଟିକ ପଥର ।
ଯୋଗୀନ୍ଦ୍ର ସିଦ୍ଧ ନିର୍ଜର ଥିବାରୁ ବହୁତ
ଅତି ସୁନ୍ଦର ହୋଇଛି ସେ ମେରୁ ପର୍ବତ ।
ନଦୀଝର ପସ୍ରବଣ ସରିତ ସଙ୍ଗମ
ହ୍ରଦ ପଲ୍ୱଳ ପୋଖରୀ ଥିବାରୁ ସୁରମ୍ୟ ।
ବହୁତ ଶୃଙ୍ଗ ବହୁତ ସାନ ସେ ପର୍ବତେ
ଶରଭ ଶାର୍ଦ୍ଦୁଳ ମୃଗ ଗଜ ଯୂଥେ ଯୂଥେ ।
ମହିଷ ରୁରୁ ମୃଗରେ ଗିରି ଶୋଭାପାଇ
ସେ ଗିରିପାଖରେ ବିଜେ ଅଯୋଧ୍ୟାର ସାଇଁ ।
ଭାରିଯା ସହିତ ଚତୁରଙ୍ଗ ବଳ ଘେନି
ଯହିଁ ବିଜେ ମହାବୀର ନୃପ ଶିରୋମଣି ।
ଜାଣିପାରି ବୀରବର ଶୁକର ରାଜନ
ବିପୁଳ ଶୁକର ଥାଟ ସଙ୍ଗେ ଶିଶୁଗଣ ।
ତହିଁକି ଗଲା ମୃତ୍ୟୁକୁ ତାର ଭୟନାହିଁ
ଏକ ଦୃଷ୍ଟିରେ ନୃପତି ତାଙ୍କୁଛନ୍ତି ଚାହିଁ ।
ଝପରି ପାରନ୍ତି ଯେଉଁ ଶିକାରୀ କୁକୁରେ
ରୋଷେ ଗୋଡ଼ାଇ ଅଛନ୍ତି ତାହାଙ୍କ ପଛରେ ।
ଧନୁବାଣ କରେ ଘେନି ଧାଇଁଛନ୍ତି ବ୍ୟାଧେ
ଦୁଇପାଖେ ଯାଉଛନ୍ତି ବାରାଥାଟ ମଧ୍ୟେ ।
ପଛରେ କୁକୁର ଆଗେ ଇକ୍ଷ୍ୱାକୁ ନୃପତି
ବ୍ୟାଧେ ବାଣଘେନି ବେନିପାଖେ ଘେରିଛନ୍ତି ।
ପଳାଇ ଯିବାକୁ ବାଟ ନାହିଁ ତାହାଙ୍କର
କହଇ ସୁକଳା ସତୀ ସଖୀଙ୍କ ଛାମୁର ।
ଅତି ଆନନ୍ଦେ ଶୁକର ଶୁକରୀକି କହେ
ଦେଖ ପ୍ରିୟେ ବଳବନ୍ତ ରାଜାଆଗେ ରହେ ।

ମହା ବୁଦ୍ଧିମନ୍ତ ଏହି ଅଯୋଧ୍ୟା ନୃପତି
ମୋତେ ଲକ୍ଷ୍ୟକରି ବାଣ ବିନ୍ଧିବ ଏ ଘାନ୍ତି ।
ଆଜି ମୁହିଁ ଏହା ସଙ୍ଗେ କରିବି ସମର
ଦେଖାଇବି ଯୁଦ୍ଧ କଉଶଳ ଯେ ମୋହର ।
ତାର ସୈନ୍ୟବଳ ସବୁ ସଂହାରିବି ରଣେ
ଦେଖି ସନ୍ତୋଷ ହୋଇବେ ସୁରାସୁର ଗଣେ ।
ପାଶ ବସାଇ ଧରିବ ବୋଲି ପାଞ୍ଚେ ରାୟେ
ଦେଖିବ ଏ ବ୍ୟାଧେ ଯିବେ ଆଜି ଯମାଳୟେ ।
ମହାତେଜା ଧନୁର୍ଦ୍ଧାରୀ ଇକ୍ଷ୍ୱାକୁ ନୃପତି
ସୁଦେବା ସତୀକି ଚାହିଁ ଏମନ୍ତ ବୋଲନ୍ତି ।
ଦେଖ ପ୍ରିୟେ ଦଳବଳ ସାଜି ମହାବଳ
ଘୋର ଗରଜନ କରେ ଏ ଶୁକର ବର ।
ମୃଗଘାତୀ ତୀକ୍ଷ୍ଣବାଣେ ମାରିବି ଏହାକୁ
ଆସିଛି ଏ ମହାବୀର ଯୁଦ୍ଧ କରିବାକୁ ।
ରାଣୀକି ଏମନ୍ତ କହି ଇକ୍ଷ୍ୱାକୁ ରାଜନ
ଉଚ୍ଚେଡାକିବୋଇଲେରେ ବ୍ୟାଧେମାରବାଣ ।
ମହାବଳବନ୍ତ ବୀର ଯେମନ୍ତେ ଶୁକର
ତେସନ ଯେତେକ ଅଛ ତୁମ୍ଭେ ମହାବୀର ।
ଏହାର ଆଗେର ରହି କରିବ ସଂଗ୍ରାମ
ରାଜା ଆଜ୍ଞାପାଇ ବୀରେ ବିକାଶି ବିକ୍ରମ ।
ଗର୍ଜନ କରି ଧାଇଁଲେ ପବନହୁଁ ବେଗେ
ମିଳିଲେ ଯାଇଁ ପ୍ରତାପୀ ସେ ଶୁକର ଆଗେ ।
ବନଚର ବୀରେ କରେ ଧରି ଧନୁଶର
ପ୍ରହାରିଲେ ଶାଣଦିଆ ନାରାଚ ନିଜର ।
ଢାମଣା କାଠର ଧନୁ ବାଉଁଶର ଗୁଣ
ଫରିଖି ନାରାଚମାନ କଲେ ବରଷଣ ।
ବୀର ବରାହର ଦେହେ ପଡ଼ି ଉପୁଡ଼ନ୍ତି
ସଖୀଙ୍କ ଆଗେ ସୁକଳା ସୁନ୍ଦରୀ କହନ୍ତି ।
ମେଘ ଦଳବଳ ସାଜି ଗଗନେ ଯେସନ
ଗିରିଶିଖେ ବରଷନ୍ତି ବାରି ଘନଘନ ।
ତେସନ ବ୍ୟାଧଙ୍କ ବାଣ ପଡ଼େ ବାରମ୍ବାର
ଯୂଥପତି ମହାବୀର ଅଟେ ସେ ଶୁକର ।
ଶତଶତ ବାଣଖାଇ ଗର୍ଜି ଉଠି ରୋଷେ
ଧାଇଁଯାଇଁ ବ୍ୟାଧଙ୍କର ପଶି ମଧ୍ୟ ଦେଶେ ।
ଦନ୍ତ ଅଗ୍ରେ ବିଦାରିଲା ବପୁ ତାହାଙ୍କର
ବରାହ ଯୂଥ ପଶିଲେ କରି ଅହଙ୍କାର ।

ଥୋମଣିରେ କାହାଅନ୍ତ ପକାଇଲେ ଚିରି
ନଖରେ କାହାର ଛାତି ପକାଇ ବିଦାରି ।
କଦଳୀବନ ପବନ ଭାଙ୍ଗିଲା ପରାୟ
ମହାମାରି କରି କଲେ ବ୍ୟାଧଥାଟ କ୍ଷୟ ।
ମତ୍ତଗଜ ପଦ୍ମବନ ମନ୍ଥଇ ଯେସନ
ମହାବରାହ ମନ୍ଥିଲା ନୃପତିର ସୈନ୍ୟ ।
ଭୂମିରେ ପଡ଼ନ୍ତି ବ୍ୟାଧେ ଗରଜନ କରି
ତାଙ୍କର ଜୀବନଯାଏ ଶମନ ନଗରୀ ।
ହାତଛିଣ୍ଡି ଯିବାରୁ କେ ଶୋଇକରେ ବସି
ମୋର ପେଟକୁ ମୁହିଁ ନପାରଇ ପୋଷି ।
କେମନ୍ତେ କୁଟୁମ୍ବ ପୋଷା ହୋଇବ ମୋହର
ଏମନ୍ତ ବେଳେ ମିଳିଲା ଗୋଟାଏ ଶୁକର ।
ଦାନ୍ତରେ କାମୁଡ଼ି ତାର ପେଟ ଦେଲା ଚିରି
ଅନ୍ତବୁଜୁଳା ସେ ବାଟେ ପଡ଼ିଲା ବାହାରି ।
ମଲା ସେହି ଦୁଷ୍ଟ ବ୍ୟାଧ ଜୀବହିଂସାକାରୀ
ଦଣ୍ଡଦେଇ ଯମଦୂତେ ନେଲେ ବାନ୍ଧିକରି ।
ପାଦଛିଡ଼ି ଯିବାରୁ କେ କରଇ ଭାବନା
ଏବେଳେ ଏକ ସୁକର ହୋଇ କୋପମନା ।
ଆଖି ନାକ ପାଟିସବୁ ପକାଇଲା ଚାଟି
ନଖ ବଳେ ଧରି ଚିପିଦେଲା ତାର ତଣ୍ଟି ।
ତା ପ୍ରାଣକୁ ବଳେ ବାନ୍ଧିନେଲେ ଯମଦୂତେ
ପଥେ କଷ୍ଟଦେଇ ହେଲେ ଯମର ସାକ୍ଷାତେ ।
ଏମନ୍ତେ କେ ମଲେ କେହି ଗଲେକ ପଳାଇ
କେତେକ ଶୁକରମଲେ ବ୍ୟାଧବାଣ ଖାଇ ।
ବ୍ୟାଧ ଶୂନ୍ୟ ହେବାଦେଖି ଧାଇଁଲେ ରାଜନ
ଏବେଳେ ବରାହ ବୀର କରେ ଦରଶନ ।
ଇକ୍ଷ୍ୱାକୁ ନୃପତି ଆସେ ରୋଷଭର ହୋଇ
ବ୍ୟାଧ ରକତେ କର୍ଦ୍ଦମ ହୋଇଅଛି ମହୀ ।
ବହୁତ ମଡ଼ା ପଡ଼ିଛି ଦେଖି ନୃପବର
ମରିଅଛନ୍ତି ବହୁତ ଶିକାରୀ କୁକୁର ।
ଦୁଃଖ ପ୍ରକାଶ କରନ୍ତି ତାହାଙ୍କ ନିମନ୍ତେ
ଶୁକର ବର ମିଳିଲା ନୃପତି ଅଗ୍ରତେ ।
ଯୁଦ୍ଧ କରିବା ମାନସେ ବଢ଼ାଇଲା କାୟା
କ୍ରୋଧ ଯୋଗୁଁ ତେଜିଅଛି କୁଟୁମ୍ବଙ୍କ ମାୟା ।
ଇକ୍ଷ୍ୱାକୁ ନାଥର ଚିତ୍ତେ ଉପୁଜାଇ ଭୟ
ପୁଣି ପୁଣି ଗର୍ଜଇ ସେ ସିନ୍ଧୁ ଘୋଷପ୍ରାୟ ।

ଖୁରି ଖାଇ ଦଉଡ଼ଇ ରାଜା ଆଗେ ଯାଇ
ଥୋମଣିରେ ମାଟି କାଢ଼ି ଗଦା କରି ଦେଇ ।
ସୁତୀକ୍ଷ୍ଣ ଦନ୍ତ ଦେଖାଇ ଭୂମି ବିଦାରଇ
ହୁଁକାର କରି ଗର୍ଜିବା ଦେଖି ନରସାଇଁ ।
ମନେ ମନେ ବିଚାରଇ କାଳଯମ ନିଜେ
ବରାହ ରୂପ ଧରିକି ସଂଗ୍ରାମରେ ବିଜେ ।
ଇନ୍ଦ୍ର ଚନ୍ଦ୍ର ରୁଦ୍ର କିବା ଏରୂପେ ଯୁଝଇ
ପୂର୍ବେ ଯେ ଯଜ୍ଞବରାହ ରୂପେ ଲକ୍ଷ୍ମୀସାଇଁ ।
ଦନ୍ତଅଗ୍ରେ ପୃଥିବୀକି ଉଦ୍ଧାରିଣ ଥିଲେ
ହିରଣ୍ୟାକ୍ଷ ଅସୁରକୁ ଏରୂପେ ମାଇଲେ ।
ବିକ୍ରମ ସାହାସ ଧୈର୍ଯ୍ୟ ଶ୍ରୀବିଷ୍ଣୁ ପରାୟ
ବହୁତ ବୀରଙ୍କୁ ଯୁଦ୍ଧେ କରିପାରେ ଜୟ ।
ବଳବୀର୍ଯ୍ୟ କଉଶଳ ଅଛଇ ଏହାର
ଏହାର ସଙ୍ଗେ ଅଛନ୍ତି ଯେତେକ ଶୁକର ।
ସମସ୍ତେ ଶିକ୍ଷିତ ଯୁଦ୍ଧ ବିଦ୍ୟାହିଁ ଜାଣନ୍ତି
ସାକ୍ଷାତେ ଦେଖିଲେ ବ୍ୟାଧେ ମରିପଡ଼ିଛନ୍ତି ।
ବଳବନ୍ତ ପଣେ ପୁଣି ଏହାର ସମାନ
ଏମନ୍ତ ଭାଳି ମନରେ ଇକ୍ଷ୍ୱାକୁ ରାଜନ ।
ଗଜସୈନ୍ୟ ପଠାଇଲେ ଯୁଝିବା ନିମନ୍ତେ
ବୋଇଲେ ଶୁକରସୈନ୍ୟ ମାରଯାତୁରିତେ ।
ଏମନ୍ତ ଶୁଣି ମାହୁନ୍ତେ ହେଲେ ଆଗଭର
ବଡ଼ ବଡ଼ ଗଜ ସବୁ ମହାଭୟଙ୍କର ।
ବୀରେ ବସିଛନ୍ତି ପୃଷ୍ଠେ ଅସ୍ତ୍ର ଶସ୍ତ୍ରଧରି
ରଥୀଏ ହେଲେ ବାହାର ରଥ ଚଢ଼ିକରି ।
ଅଶ୍ୱ ଚଢ଼ିଣ ବାହାର ହୋଇଲେ ରାଉତେ
ବାଣ ଖଡ଼ଗ ଭୂଷଣ୍ଡି ମୁଦ୍ଗର ହସ୍ତେ ।
ପାଶଧରି ବ୍ୟାଧେ ପୁଣି ହୋଇଲେ ବାହାର
ସିଂହ ନାଦରେ କମ୍ପାଇ ପର୍ବତ ଶିଖର ।
ଗଜ ଅଶ୍ୱ ଘେରାଇଲେ ମାହୁନ୍ତ ରାଉତେ
ବୋଇଲେ ଯାଇ ନପାରେ ବରାହ ଯେମନ୍ତେ ।
ପାଇକେ ଯେ ଫରିକାରେ ପଛରେ ଅଛନ୍ତି
ରଣ ଦୁର୍ଜୟ ବରାହ ଦେଖିଣ ଏ ରୀତି ।
କ୍ଷଣେ ଦୃଶ୍ୟ ହୁଅଇ ସେ କ୍ଷଣକେ ଅଦୃଶ୍ୟ
ଯୁଝିବା ନିମନ୍ତେ ଆସି କରଇ ସାହସ ।
ଘୋର ଗରଜନକରି ଭୟ ଉପୁଜାଇ
ଅଶ୍ୱଙ୍କୁ ମର୍ଦ୍ଦନ କରି ଦଶନେ ଫୋଡ଼ଇ ।

ଗଜ ପାଦ କାମୁଡ଼ଇ ଦନ୍ତ ପ୍ରହାରଇ
ସେ ଆଘାତେ ହସ୍ତୀ ଅଶ୍ୱ ଭୂମିରେ ଲୋଟଇ ।
ସିଂହ ଯେସନେ ମର୍ଦ୍ଦନ କରେ ସିଂହପଲ
ତେସନ ମର୍ଦ୍ଦନ କଲେ ମଲ୍ଲ ମହାମଲ୍ଲ ।
ରାଉତ ମାହୁନ୍ତ ମାରି ପକାଏ ସେ ବଳେ
ପାଇକ୍ ଫରିକାରଙ୍କୁ ପେଷେ ଯମଆଳେ ।
ଏରୂପେ ନୃପତି ସୈନ୍ୟ ସଂହାରି ଶୂକର
ଗର୍ଜିଲା ଅଣୁଣନେତ୍ରେ ହୋଇ କୋପଭର ।
ମହାକାୟ ସେ ବରାହ ସଂଗ୍ରାମେ ଦୁର୍ଜ୍ଜୟ
ରଣେ ଆପଣାର ସୈନ୍ୟ ବଳକରେ କ୍ଷୟ ।
ମେଘପ୍ରାୟେ ଗରଜଇ ଦେଇ ଘୋର ରଡ଼ି
ଭୟେ ପଳାଉଅଛନ୍ତି ସୈନ୍ୟେ ରଣଛାଡ଼ି ।
ଦେଖି ଇକ୍ଷ୍ୱାକୁ ନୃପତି ଛାଡ଼ିଲେ ଗର୍ଜନ
ଧନୁ ଟଙ୍କାରି ସଂଗ୍ରାମେ ପଶିଲେ ରାଜନ ।
ସୈନ୍ୟଙ୍କୁ ଉତ୍ସାହଦେଇ ଆପଣାର ତେଜେ
ଦେଖିଲେ ଯେ ଗିରିପ୍ରାୟ ଶୂକର ବିରାଜେ ।
ଯମଦୂତ ପ୍ରାୟ ବିରାଜନ୍ତି ତାର ବଳ
ଶୂକର ମୁଖେ ବିରାଜେ ଦଶନ କରାଳ ।
ବିକଟାଳ ମୁଖ ତାର ମହାଭୟଙ୍କର
ବିଜୁଳି ପ୍ରାୟ ଝଟକେ ପାଟିଦନ୍ତ ତାର ।
ଇକ୍ଷ୍ୱାକୁ ବନ୍ଧକୁ ଡାକି ବୋଇଲେ ଏମନ୍ତ
ଏ ଶୂକର ବୀରବର ମହାବଳବନ୍ତ ।
ରଣ କଉଶଳେ ପୁଣି ନିପୁଣ ଅଟଇ
ଏକାବେଳେ ଅସ୍ତ୍ରଶସ୍ତ୍ର ମାରିବ ନିଠାଇ ।
ଧନୁରେ ଯୋଜିଲେ ଆପେ ଶାଣଦିଆ ଶର
ବିନ୍ଧନ୍ତେ ଗଗନମାର୍ଗେ ଗଲା ଖରତର ।
ଶୂକର ପିଠିରେ ପଡ଼ି ପଡ଼ିଲା ଉପୁଡ଼ି
କୋପରେ ଶୂକର ବୀର ଛାଡ଼ି ଘୋରରଡ଼ି ।
ଏକାବେଳେ ବୀରଗଣ ମାଇଲେକ ବାଣ
କେହି ତୋମର ମାରଇ କରି ଅତି ଟାଣ ।
କେହି ଖଣ୍ଡାକେହି ଶୂଳ କେହି ତରବାରୀ
କେ ବାଣ ବିନ୍ଧନ୍ତି ଧନୁ ଗୁଣକୁ ଓଟାରି ।
କେ ଗଦା ମାରଇ କେହି ମୁଦ୍‌ଗରେ ପିଟଇ
ଶୂଳ ତା ଦେହରେ ତିଳମାତ୍ର ନ ଭେଦଇ ।
ଗର୍ଜଇ ଶୂକର ବୀର କୋପେ ଘନ ଘନ
ଶର ମାରି ମାରି ଫୁଟି ରହିଲେ ରାଜନ ।

ସୈନ୍ୟଙ୍କୁ ଚାହିଁ ବୋଇଲେ ଆହେ ବୀରଗଣେ
ଶୂକର ଦେହ ଫୁଟାଇ ଅତି ତୀକ୍ଷ୍ଣବାଣେ ।
କିବା ବଳେ ଧରି ବାନ୍ଧିପକା ଯେ ଏହାକୁ
କୋପେ କହିଲେ ଏମନ୍ତ ଯହୁଁ ସେ ସୈନ୍ୟଙ୍କୁ ।
ବହୁ ସହସ୍ର ସଇନ୍ୟ ଚାରିପାଖ ଘେରି
ଶୂକର ଦେହେ ବିନ୍ଧିଲେ ବାଣ ବାଛିକରି ।
କେହିକେହି ଯୋଦ୍ଧା ଯୁଦ୍ଧ ବିଦ୍ୟାରେ ଚତୁର
ବାଣ ଜାଳେ ଲୁଚାଇଲେ ଶୂକର ଶରୀର ।
କେ ଚକ୍ର ମାରଇ କେହି ବଜ୍ର ପ୍ରହାରଇ
ଗଦା ମୁଦ୍‌ଗର ପରିଘ ଧରି କେ ପିଟଇ ।
ଯଷ୍ଟିରେ ପିଟଇ କେହି ଫୋଡ଼େ କୁନ୍ତଧରି
ଏକମୁନା ଦୁଇମୁନା ତ୍ରିମୁନାକେ ମାରି ।
ପାଶ ବସାଇ ବାନ୍ଧିବା ମାନସେ ବହୁତ
କେହି କେହି ଆଗଭର ହୋଇ ମାରେ କୁନ୍ତ ।
କେ ବୋଲଇ ରହ ରହ ଉପାୟେ କରିବା
ଦୁଷ୍ଟ ଶୂକରକୁ ରାଜାଆଗେ ବାନ୍ଧିଦେବା ।
କେ ବୋଲଇ କି ଉପାୟ କରିବାହୋତୁମ୍ଭେ
ପର୍ବତ ପରାୟ ଦେଖ ରହିଅଛି ଦମ୍ଭେ ।
ତିଳେ ମାତ୍ର ଶଙ୍କାଭୟ ନାହିଁ ତାର ଚିତ୍ତେ
ଅସ୍ତ୍ର ଶସ୍ତ୍ର ନ ଭେଦଇ ଏ ଶୂକର ଗାତ୍ରେ ।
ବଜ୍ରରେ କିବା ଲୁହାରେ ଗଢ଼ିଛି ଏହାକୁ
ବନଜୀବ ହୋଇ ଭୟ ନକରେ କାହାକୁ ।
ଜଣାଯାଏ ଏହି ଜୀବ ନୁହଇ ଶୂକର
ଏରୂପେ କେଉଁ ଦେବତା କରଇ ସମର ।
ଏମନ୍ତେ ଭାଳନ୍ତେ ବୀରେ ମହାବୀରେ ତହିଁ
ଦୁର୍ଜ୍ଜୟ ଶୂକର ବୀର ସବୁ ସହି ସହି ।
କୋପଭରେ ପାଶଯାକ ଛିଣ୍ଡାଇ ପକାଇ
ଥାଟ ଭିତରେ ପଶିଲା ଗର୍ଜି ଡ଼େଇଁ ଯାଇ ।
ମହା ଶୂକର ବହୁତ ଗଲେ ତାର ସଙ୍ଗେ
ଶୂକର ପଲ ମାତିଲେ ପଶି ରଣ ରଙ୍ଗେ ।
ବନ୍ଧ ଭାଙ୍ଗିଲେ ଯେସନେ ଗର୍ଜିପଶେ ପାଣି
ତେସନ ପେଲି ପଶିଲେ ଶସ୍ତ୍ରକୁ ନ ଗଣି ।
ଶୋଣିତରେ ସ୍ନାନକରି ଧାମନ୍ତି ଶୂକରେ
ଗଜ ଅଶ୍ୱ ବଧକଲେ ତୁଣ୍ଡର ପ୍ରହାରେ ।
ବୀର ମହାବୀର ଯେତେ ପଦାତି ସଇନ
ଦଂଷ୍ଟାଗ୍ର ପ୍ରହାରି ତାକୁ କଲେକ ନିଧନ ।

ପାଇକ ଫରିକାଙ୍କୁ ନଖେ ବିଦାରିଲେ
ରାଜାର ବହୁତ ସୈନ୍ୟ ସମରେ ପଡ଼ିଲେ ।
ହାତୀ ଘୋଡ଼ା ରଥରଥୀ ପଡ଼ିଲେ ଅପାର
ବୀରଙ୍କ ବଣେ ପଡ଼ିଲେ ବହୁତ ଶୂକର ।
ଗଜେ ଶୁଣ୍ଢେ ଧରି ବଳେ ମାଇଲେ ଘୁଷୁରୀ
ପାଦେ ମରଦିଲେ ବାରା ଗଲେ ଯମପୁରୀ ।
ଶୂକର ଶୁଆ ବହୁତ ପଡ଼ିଲେ ସମରେ
ଶୁଣ୍ଢ କାମୋଡ଼ ମାଇଲେ ଗଜଙ୍କୁ ଶୂକରେ ।
ଭାଟଙ୍କୁ ମାଇଲେ ପାଦ ନଖ ପ୍ରହାରିଣ
ବ୍ୟାଧଙ୍କ ସଙ୍ଗେ ଶୂକରେ କଲେ ଘୋରରଣ ।
ବହୁତ ଶୂକର ମଲେ ବ୍ୟାଧଙ୍କର ବାଣେ
ଏକମଲେ ଆନପଶେ ନ ଘୁଞ୍ଚନ୍ତି ରଣେ ।
ବ୍ୟାଧଙ୍କ ଶବରେ ରଣଭୂଇଁ ଦେଲେ ଛାଇ
ଶ୍ମଶାନ ପ୍ରାୟ ଦିଶିଲା ସେହି ରଣଭୂଇଁ ।
ଅସଂଖ୍ୟ ବ୍ୟାଧ ଅସଂଖ୍ୟ ପଡ଼ିଲେକୁକୁର
ପ୍ରାଣଭୟେ ଗୁହା ଆଶ୍ରାନେଲେ କେତେବୀର ।
କେତେ ବ୍ୟାଧ ଲୁଚିକରି ରହିଲେ ଜୀବନ
କେତେ ଶୂକର ପଳାଇ ପଶିଲେ ଅରଣ୍ୟ ।
ନ ସହିପାରି ନୃପତି ବାଣ ଖଡ୍‌ଗଘାତ
କେତେକ ଶୂକରଗଲେ ରଣେ ହୋଇ ଭୀତ ।
ଆଶ୍ରାନେଲେ ଗିରିକୁଞ୍ଜ କନ୍ଦର ଗହ୍ୱର
ଯେ ମଲେ ସେ ତତକ୍ଷଣେ ଯାନ୍ତି ସ୍ୱର୍ଗପୁର ।
କୋଟି କୋଟି ଲକ୍ଷ ଲକ୍ଷ ବିମାନ ଗଗନେ
ମଲା ପ୍ରାଣୀଙ୍କି ବସାଇ ବିମାନେ ବିମାନେ ।
ନାନାବାଦ୍ୟ କୋଳାହଳେ ଗୀତ ନୃତ୍ୟରସେ
ସ୍ୱର୍ଗ ଭୁବନେ ଚଳନ୍ତି ସକଳେ ହରଷେ ।
ନାଡ଼ୀ ପଞ୍ଜରା ହାଡ଼ରେ ପୂରିଗଲା ମହୀ
କେଶବାଳ ହାଡ଼ମାଳେ ପୂରିଲା ସେ ଭୂଇଁ ।
ବହିଲା ରୁଧିର ନଈ ଭାସେ ରଥ କାଠ
ଗୃଧ୍ର ଶୃଗାଳ ରାବରେ ହୋଇଲା ବିକଟ ।
ପାଞ୍ଚସାତ ପୁତ୍ର ନାତି ଘେନିଣ ଶୂକରୀ
ବର୍ତ୍ତିଛି ଏକା ସକଳେ ଗଲେ ଯମପୁରୀ ।
ଶୂକର ରାଜକୁ ଚାହିଁ ବୋଇଲେ ହେ କାନ୍ତ
ବଳଦର୍ପେ ରହିଅଛ ତୁମ୍ଭେ ଏକାମାତ୍ର ।
ପଳାଇ ଯାଇ ରହିବା ଚାଲ ଏ ଜୀବନ
ବଞ୍ଚିଛନ୍ତି ଏହି ପାଞ୍ଚ ସାତ ଯେ ନନ୍ଦନ ।

ସମସ୍ତେ ଯମଭୁବନେ ଗଲେଣି ନାହାନ୍ତି
ବରାହ ବୋଇଲେ ପ୍ରିୟେ ନକର ତୁ ଭୀତି ।
ଥାଟ ମରାଇ ରହିବି କାହାକୁ ମୁଁ ଘେନି
ଦେଖମୋପାଇଁ ଜୀବନଦେଲେ ଏତେ ପ୍ରାଣୀ ।
ରାଜାର ମଲେଣି କେତେ ହାତୀଘୋଡ଼ା ରଥୀ
ବ୍ୟାଧ କୁକୁର ରାଉତ ମାହୁନ୍ତ ପଦାତି ।
ମୁଁ ମଲେ ସବୁ ଶୂକର ଲଭିବେ ମରଣ
ଶୂକର ଜାତିର ଅଛି ଏମନ୍ତ ଲକ୍ଷଣ ।
ଦୁଇସିଂହ ମଧ୍ୟେ ପୁଣି ବଳେ ବଳେ ଯାଇ
ବାହୁଡ଼ି ଆସଇ ପୁଣି ଆଗ ଜଳପିଇ ।
ଜଳ ଯେବେ ପିଉଥିବେ ଦିଓଟି ଶୂକର
ବଳଗର୍ବେ ନପଶିବ ପଶୁଙ୍କ ଈଶ୍ୱର ।
ସିଂହ ନପାରିବ କେଭେ ଜଳପାନ କରି
ସିଂହବଳ ଆତ୍ମବଳ ସଙ୍ଗେନୋହେ ସରି ।
ଶୂକର ପଲରୁ ଗୋଟା ଗଲେ ବଣାହୋଇ
ସକଳେ ଖୋଜି ଆଣିବେ ନଛାଡ଼ିବେ କେହି ।
ତା ଲାଗି ପଛେ ସମସ୍ତେ ଦେବେ ନିଜ ପ୍ରାଣ
ଏଣୁ ନୃପତିର ସଙ୍ଗେ କରିବି ମୁଁ ରଣ ।
ପଳାଇଲେ ଶତ୍ରୁ ମୋତେ ଗୋଡ଼ାଇ ମାରିବ
ଚିରକି ହୁଅଇ ପ୍ରିୟେ ଏ ଆତ୍ମର ଜୀବ ।
ରଣତୀର୍ଥ ଛାଡ଼ି କିମ୍ବା ପାପରେ ବୁଡ଼ିବି
ପଛେ ମରି ଘୋର ନର୍କ କୁଣ୍ଡରେ ପଡ଼ିବି ।
ଯେ ଯୋଦ୍ଧା ନିଶିତ ଶସ୍ତ୍ର ବ୍ୟୁହ ଦେଖିକରି
ଆନନ୍ଦ ହୋଇଣ ରଣତୀର୍ଥେ ସ୍ନାନକରି ।
ମନ୍ଦାକିନୀ ତୀର୍ଥସ୍ନାନ କଲା ଫଳ ପାଇ
ବିଷ୍ଣୁ ଦୂତେ ଘେନିଯାନ୍ତି ବିମାନେ ବସାଇ ।
ପ୍ରୟାଗତୀର୍ଥର ଫଳ ନୋହେ ପୁଣି ସରି
ବଇଷ୍ଣବ ବୋଲଇ ସେ ପାଏ ବିଷ୍ଣୁପୁରୀ ।
ତହିଁରେ ପୂର୍ବ ପୁରୁଷେ-ପାଆନ୍ତି ଉଦ୍ଧାର
ଦେଖ ଆଗେ ଶତ୍ରୁ ଅଛି ଧରି ଧନୁଶର ।
ତାକୁ ଛାଡ଼ି ପଳାଇବି ରଣେ ଭଙ୍ଗଦେଇ
ଏକର୍ମ ଗୋଟାଗୋ ସଖି କରି ନ ଯୋଗାଇ ।
ବୀରବର ଯୋଦ୍ଧାର ଯେ ଉପୁଜାଏ ତୋଷ
ଯୁଦ୍ଧ ନ ଛାଡ଼ଇ ପୁଣି ନଛାଡ଼ଇ ରୋଷ ।
ତାର ପୁଣ୍ୟଫଳ ଶୁଣ କହୁଅଛି ପ୍ରିୟେ
ପଦେ ପଦେ ଗଙ୍ଗାସ୍ନାନ କଲା ଫଳ ପାଏ ।

ଲୋଭମୋହେ ପଡ଼ିପ୍ରିୟେ ରଣେଦେଲେ ଭଙ୍ଗ
ମାତାର ଦୋଷେ ଛାଡ଼ଇ ସେହି ରଣରଙ୍ଗ ।
ପୁରୁଷ ନକହି ତାକୁ ବୋଲୁଥାନ୍ତି ସ୍ତିରୀ
ଯେହୁ ପ୍ରାଣଭୟେ ରଣୁଯାଏ ଅପସରି ।
ସବୁ ତୀର୍ଥ ସବୁ ଯଜ୍ଞ ସବୁ ଦେବଗଣ
ସବୁ ମୁନି ସମୁ ସିଦ୍ଧ ସକଳ ଚାରଣ ।
ଆସନ୍ତି ଦେଖିବାପାଇଁ ରଣ କଉତୁକ
ବୀରର ବୀରତ୍ୱଦେଖେ ସକଳ ତ୍ରିଲୋକ ।
ରଣେ ଭଙ୍ଗ ଦେଲେ ତାକୁ ସମସ୍ତେ ହସନ୍ତି
ବହୁତ ନିନ୍ଦାକରନ୍ତି କରତାଳି ଦ୍ୟନ୍ତି ।
ସେ ପାପୀକି ଅଭିଶାପ ଦିଅନ୍ତି ଆହୁରି
ତାମୁଖ ନଚାହିଁ ଯମ ଦିଏ ଦୂର କରି ।
ତାହାର ଯେ ଦଣ୍ଡ କେତେ କହିଲେ ନସରେ
ସମ୍ମୁଖ ଯୁଦ୍ଧରେ ଯେଉଁ ଯୋଦ୍ଧା ଯୁଦ୍ଧେମରେ ।
ଅଶ୍ୱମେଧ ଯାଗ କଲା ଫଳକୁ ସେ ପାଇ
ଇନ୍ଦ୍ରଲୋକରେ ବସଇ ତତକ୍ଷଣେ ଯାଇ ।
ଯେ ବୀର ସଂଗ୍ରାମକରି ହୋଏ ଶତ୍ରୁଜୟୀ
ଆପଣା ଇଚ୍ଛାରେ ଲକ୍ଷ୍ମୀ ତା ଗୃହେ ମିଳଇ ।
ନାନାଭୋଗ ଉପଭୋଗ କରଇ ସେ ବୀର
ନିରାଶ୍ରିତ ଯୋଦ୍ଧାକରି ସମ୍ମୁଖ ସମର ।
ପ୍ରାଣଦେଲେ ପଦେ ପଦେ ତାର ପୁଣ୍ୟଫଳ
ଦେବକନ୍ୟା ଘେନି ସୁଖଭୋଗେ କାଟେକାଳ ।
ଧର୍ମ ଜାଣି ଶୁଣି ମୁହିଁ କେମନ୍ତେ ବରାଙ୍ଗୀ
ରଣ ଛାଡ଼ି ପଳାଇବି ଶତ୍ରୁଅଛି ଜଗି ।
ଏ ଇକ୍ଷ୍ୱାକୁ ରାଜାସଙ୍ଗେ ଯୁଦ୍ଧ ମୋର ପଣ
ପୁତ୍ରଘେନି ଏଥୁଯାଇଁ ରଖ ତୁଗୋ ପ୍ରାଣ ।
ସ୍ୱାମୀର ମୁଖୁଁ ଏମନ୍ତ ଶୁଣି ସେ ଶୁକରୀ
ତୁମ୍ଭ ସ୍ନେହ ବନ୍ଧନରେ ବନ୍ଧା ତୁମ୍ଭ ନାରୀ ।
ପୁତ୍ରଙ୍କୁ ଘେନି ମୁଁ ଆଗ ତେଜିବି ପରାଣ
ଏ ମୋହର ସଂକଳପ ଯୁଦ୍ଧ ମୋର ପଣ ।
ଏମନ୍ତେ ନିଶ୍ଚୟ କରି ଶୁକର ଦମ୍ପତୀ
ଉଭାହେଲେ ଯହିଁ ଅଛି ଇକ୍ଷ୍ୱାକୁ ନୃପତି ।
ବର୍ଷାକଲେ ମେଘକାଳେ ବିଜୁଳି ଯେସନେ
ଥାଇ ମେଘ ଗରଜଇ ଗର୍ଜିଲେ ତେସନେ ।
ପଉରୁଷ ଦେଖାଇଲେ ତା ଦେଖି ନୃପତି
ତାହାର ପାଖକୁ ଗଲେ ହୋଇ କୋପମୂର୍ତ୍ତି ।

ଦ୍ୱିଜ ଗୋପୀନାଥ ବୋଲେ ବୋଲହରିହରି
ଏ ଭବସାଗରୁ ଯେବେ ହେଳେଯିବ ତରି ।
ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ସୁକଳା ଚରିତ୍ରେ ଶୁକର
ସୈନ୍ୟ ସଂଗ୍ରାମେ ନାମ
ତ୍ରିଚତ୍ୱାରିଂଶୋଽଧ୍ୟାୟଃ ।



## ଚତୁଶ୍ଚତ୍ୱାରିଂଶ ଅଧ୍ୟାୟ

### ଇକ୍ଷ୍ୱାକୁ ବରାହ ଯୂଥପତିର ମୃତ୍ୟୁ

ସୁକଳା କହିଲେ ସେହିଁ ପ୍ରତାପୀ ଶୁକର
ମାରନ୍ତେ ଦୁର୍ଜୟ ଥାଟ ଦେଖି ନୃପବର ।
ଅଶ୍ୱଚଢ଼ି ଧନୁଧରି ଗଲେ କ୍ରୋଧଭରେ
କାଳାନଳତୁଲ୍ୟ ଶରଯୋଚି ସେ ଧନୁରେ ।
ଅଶ୍ୱ ଦଉଡ଼ାଇଦେଲେ ଶୁକର ଆଗକୁ
ମହାବରାହ ଦେଖିଣ ଅଶ୍ୱାରୋହୀ ତାଙ୍କୁ ।
ରଣ କରିବାକୁ ଗଲା ହୋଇ ଆଗୁସାର
ଅଶ୍ୱ ପାଦତଳେ ଚଳିଯାଇ ସେ ଶୁକର ।
ନୃପତିର ଶାଣଦିଆ ବାଣେ ହୋଇ ବିଦ୍ଧ
ପେଟ କାମୋଡ଼ି ଅଶ୍ୱକୁ କଲା ବେଗେ ବଧ ।
ଗର୍ଜନକରି ଭୂମିରେ ପଡ଼ିଲା ତୁରଙ୍ଗ
ଧନୁଧରି ରାଜା ଡ଼େଇଁଗଲେ ହୋଇ ବେଗ ।
ଆଖି ପିଛାଡ଼ିବାମାତ୍ରେ ରଥରେ ବସିଲେ
ଶୁକର ଦେଖିଲା ରଥେ ରାଜା ବିଜେକଲେ ।
ଗର୍ଜନକରି ଧାଇଁଲା ସେ ଶୁକରବୀର
ଧନ୍ୟଧନ୍ୟ ପ୍ରଶଂସିଲେ ନୃପତି ଶେଖର ।
ଏତେବଡ଼ ଥାଟ ମୋର ପକାଇଲୁ ମାରି
ପଶୁଜାତି ନୋହୁ ପୁଣି ତୁହି ଶାସ୍ତ୍ରଧାରୀ ।
ମୋସଙ୍ଗେ ସମରକରୁ ଧନ୍ୟ ତୋ ଜୀବନ
ଏମନ୍ତ କହି ନୃପତି କରିଣ ଗର୍ଜନ ।
ଲୁହାର ଗଦାଗୋଟିଏ ବେନିହସ୍ତେ ଧରି
ବୁଲାଇ ମାଇଲେ ବେଗେ ତାକୁ ଲକ୍ଷ୍ୟକରି ।
ଶିରେ ପଡ଼ନ୍ତେ ସେ ଗଦାବର ବେଗେଆସି
ଭୂମିରେ ପଡ଼ିଲା ବୀର ଚାରଣେ ପ୍ରଶଂସି ।

ବିଷ୍ଣୁଦୂତେ ରଥଘେନି ମିଳିଲେ ତକ୍ଷଣେ
ତହିଁରେ ବସାଇନେଲେ ଅମର ଭୁବନେ ।
ଦେବଗଣେ ପୁଷ୍ପବୃଷ୍ଟି କଲେ ରାଜା ଶିରେ
ସନ୍ତାନବୃକ୍ଷରେ ଫୁଲ ଫୁଟିଲା ପ୍ରକାରେ ।
ଦିଶିଲା ନୃପତିବର ପରମ ସୁନ୍ଦର
ତାର ସଉରଭେ ମନ ପ୍ରଫୁଲ୍ଲ ରାଜାର ।
କୁଙ୍କୁମଚନ୍ଦନ ବୃଷ୍ଟିକଲେ ଦେବେ ମିଳି
ଅପସରାଗଣ ନୃତ୍ୟକଲେ ଢ଼ଳିଢ଼ଳି ।
ଦେଖୁଦେଖୁ ନୃପତିର ସାକ୍ଷାତେ ଶୁକର
ଚତୁର୍ଭୁଜ ହେଲା ଅଙ୍ଗେ ଦିବ୍ୟ ଅଳଙ୍କାର ।
ଦେବାଙ୍ଗବସନ କଟିତଟେ ଶୋଭାପାଇ
ଦିବାକର ପ୍ରାୟ ଦିବ୍ୟତେଜ ବିକାଶଇ ।
ରୂପ ଦିଶିଲା ସୁନ୍ଦର ବିଦ୍ୟାଧର ପ୍ରାୟେ
ଦେବଲୋକେତାକୁ ପୂଜାକଲେ ଦେବରାୟେ ।
ପୂର୍ବଦେହ ତେଜି ହେଲା ଗନ୍ଧର୍ବ ସ୍ୱରୂପ
ଗୋପୀନାଥ ଦିନରାତି ଚିନ୍ତେ କୃଷ୍ଣରୂପ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ସୁକଳା ଚରିତ୍ରେ ନାମ
ଚତୁଶ୍ଚତ୍ୱାରିଂଶୋଽଧ୍ୟାୟଃ ।



## ପଞ୍ଚଚତ୍ୱାରିଂଶ ଅଧ୍ୟାୟ

### ଶୁକରୀ ଯୁଦ୍ଧ

ସୁକଳା କହଇ ପୁଣି ଏଥୁ ଅନନ୍ତରେ
ଶୁକରୀକିଦେଖି ବ୍ୟାଧେ ଧାଇଁଲେ ସତ୍ୱରେ ।
ଭୟଙ୍କର ବୀରଗଣ ପାଶ ଧରିକରେ
ଅଛନ୍ତି ଚାରୋଟିପୁତ୍ର ଶୁକରୀ ସଙ୍ଗରେ ।
ସକୁଟୁମ୍ବେ ସ୍ୱାମୀ ମୋର ରଣେ ପ୍ରାଣଦେଲା
ଋଷିଦେବଗଣଙ୍କର ପୂଜାଯୋଗ୍ୟ ହେଲା ।
ମନବାଞ୍ଛା ପୂର୍ଣ୍ଣକଲା ନିଜ କର୍ମବଳେ
ବୀର୍ଯ୍ୟଦେଖାଇ ବସିଲା ଅମର ମଣ୍ଡଳେ ।
ସ୍ୱାମୀ ଯିବାପଥେ ଯାଇ ସ୍ୱାମୀକି ଭେଟିବି
ଯୁଦ୍ଧଯଜ୍ଞେ ପ୍ରାଣଦେଇ ସ୍ୱର୍ଗରେ ବସିବି ।
ଏକଥା ନିଶ୍ଚୟକରି ପୁତ୍ରଙ୍କୁ ଅନାଇ
ବ୍ୟାକୁଳରେ ତାର ନେତ୍ରୁ ଅଶ୍ରୁଜଳ ବହି ।
ମନେ ବିଚାରିଲା ବଂଶ ରହିବ କେମନ୍ତେ
କି ଉପାୟେ ବଞ୍ଚିବେ ଏ ଚାରିଗୋଟି ପୁତ୍ରେ ।

ଏରୂପେ ଚିନ୍ତାକରି ସେ ବ୍ୟାକୁଳ ହୋଇଲା
ତହିଁରେ ଗିରିସଙ୍କଟ ତା ନେତ୍ରେ ପଡ଼ିଲା ।
ସେହିପଥେ ଯିବାପାଇଁ ବିଚାରିଲା ମନେ
ଚାରିପୁତ୍ରଙ୍କୁ କହିଲା କୋମଳବଚନେ ।
ଆରେ ପୁତ୍ରଗଣ ଏବେ ମୋର ବୋଲକର
ତୁମ୍ଭେ ଏ ସ୍ଥାନଛାଡ଼ିଣ ଯାଅରେ କୁମର ।
ଏ ଗିରିସଙ୍କଟ ବାଟେ ଯାଇ ରଖ ପ୍ରାଣ
ବଂଶ ରକ୍ଷାକର ବାବୁ ମୋର କଥାମାନ ।
ଚାରିଙ୍କ ମଧ୍ୟରେ ସବା ବଡ଼ଭାଇ କହେ
ମାତାକୁ ଛାଡ଼ି ମୋ ଯିବା ଉଚିତକି ହୋଏ ।
ମାତାକୁ ଶତ୍ରୁରମୁଖେ ଦେଇ ଯେ କୁମର
ଆପଣାଜୀବନ ରକ୍ଷାକରେ ସେ ପାମର ।
ଧିକଧିକ ସେ ଜୀବନ ରଖିବା ତାହାର
ଆଗୋ ମାତ ବଇରୀଯେ ଅଟଇ ପିତାର ।
ତାକୁ ନ ମାରି କେମନ୍ତେଯିବି କହୁ ମୋତେ
ମୋର କଥାମାନି ତୁଗୋ ଏଥୁ ଯା ତୁରିତେ ।
ଏ ସାନଭାଇ ତିନିଙ୍କି ସଙ୍ଗତରେ ଘେନି
ଗିରିଗୁହା ମଧ୍ୟେ ପଶି ରହ ଚାରିପ୍ରାଣୀ ।
ଯେ ପିତାମାତାଙ୍କୁ ଛାଡ଼ି ପାପବୁଦ୍ଧି ଧରେ
କୃମିକୀଟ ନର୍କକୁଣ୍ଡେ ପଡ଼ି ପଚିମରେ ।
ଦୁଃଖିନୀ ଶୁକରୀ ତାକୁ ବୋଇଲାରେ ବାବୁ
ତୁ ମୋହର ଧନରତ୍ନ ସମ୍ପଦ ଯେ ସବୁ ।
ତୋତେ ଛାଡ଼ିଦେଇବାକୁ ଯିବିମୁଁ କେମନ୍ତେ
କେତେକଷ୍ଟ ସହି ବାବୁ ପାଳିଛି ମୁଁ ତୋତେ ।
ତୋତେ ଛାଡ଼ି ଭାଇ ତିନି କରନ୍ତୁ ଗମନ
ଗିରିଗୁହା ମଧ୍ୟେ ଲୁଚି ରଖନ୍ତୁ ଜୀବନ ।
ବୁଝାଇକହି ତାହାଙ୍କୁ ଦେଲେ ସେ ପଠାଇ
ଦେଖିଲେ ଗିରିଗୁହାରେ ପଶିଲେ ଯେ ଯାଇ ।
ଶତ୍ରୁଭୟ ନାହିଁ ତହିଁ ଦୁର୍ଗମ ସେ ସ୍ଥାନ
ମାତାପୁତ୍ର ଦୁହେଁକଲେ ଯୁଦ୍ଧକୁ ଗମନ ।
ବ୍ୟାଧଙ୍କ ସମ୍ମୁଖେ ରହି ଗର୍ଜିଲେ ଅପାର
ଦେଖିଣ ବ୍ୟାଧେ ଧାଇଁଲେ ଘେନି ଧନୁଶର ।
ପବନହୁଁ ଅତିବେଗେ ଅଇଲେ ସେ ଧାଇଁ
ଯେବାଟେ ତିନିପୁତ୍ରଙ୍କୁ ଶୁକରୀ ପଠାଇ ।
ସେବାଟେ ଜଗିଅଛନ୍ତି ମାତା ପୁତ୍ର ବେନି
ଯେମନ୍ତେ ଶତ୍ରୁ ନଯାଇ ପାରିବେକ ପୁଣି ।

ଖଡ଼୍ଗବାଣ ଧନୁଧରି ବ୍ୟାଧେଆସି ବେଗେ
ତୋମର ଚକ୍ରମୁଷଳ ପୋପାଡ଼ିଲେ ରାଗେ ।
ମାତାକୁ ପଛକରିଣ ପୁତ୍ର ଆଗୁଁ ସାର
ବ୍ୟାଧଙ୍କ ସଙ୍ଗତେ କଲା ଯୁଦ୍ଧ ଘୋରତର ।
ବାପାପ୍ରାୟ ବଳବପୁ ଧଇର୍ଯ୍ୟ ସାହାସ
ଆୟୁଧ ତାର ଥୋମଣୀ ଦନ୍ତ ନଖ ରୋଷ ।
ଏ ଚାରି ଆୟୁଧ ବଳେ ମହାମାରୀ କଲା
ବ୍ୟାଧଙ୍କୁ ମାରି ଶମନ ଘରେ ପଠାଇଲା ।
ହାତଗୋଡ଼ ନାହିଁ କାର ଲଣ୍ଡାବୃକ୍ଷ ପ୍ରାୟ
କେହି ଯୁଦ୍ଧେ ମରି ପୁଣି ଗଲା ଯମାଳୟ ।
କାହାହାତ ନଥିବାରୁ ପଳାଉଛି ଲାଜେ
କାହାର ଗୋଡ଼ଛିଣ୍ଡି ବା ଯୋଗୁଁ ହରିଭଜେ ।
ଅନ୍ତନାହିଁ ମାଂସ ନାହିଁ କାହାର ଶରୀରେ
ଶିରନାହିଁ କେ ନାଚଇ କବନ୍ଧ ଆକରେ ।
ଏମନ୍ତେ ବହୁତ ବୀର ସଂଗ୍ରାମେ କଡ଼ନ୍ତେ
ଦୁଃଖିତହୋଇ ନୃପତି ଧାଇଁଲେ ତୁରିତେ ।
ଦେଖିଲେ ପିତାର ପ୍ରାୟ ପୁତ୍ରକରେ ରଣ
ବିଚାରିଲେ ପିତା ତହୁଁ ଏହା ଶିକ୍ଷା ଟାଣ ।
ଲାଘବଶରେ ଏହାକୁ ନପାରିବି ମାରି
ଏମନ୍ତ ଭାଳି ମନରେ ବିଚାରି ବିଚାରି ।
ଅର୍ଦ୍ଧଚନ୍ଦ୍ର ବାଣ ଗୋଟା ମନ୍ତ୍ରି ସାତଥର
ବିନ୍ଧିବାମାତ୍ରେ ସେ ଗର୍ଜି ଉଠେ ଗଗନର ।
ପ୍ରଳୟ ଅଗ୍ନି ପରାୟ ଦିଶେ ଝଟ ଝଟ
ସହି ନପାରିଲେ ଦେବେ ଛାଡ଼ିଦେଲେ ବାଟ ।
ପବନହୁଁ ଅତି ବେଗେ ଉଲ୍କାପ୍ରାୟ ଖସି
ଶୁକର ପୁତ୍ରର ପିଠି ବାଟେ ଗଲା ପଶି ।
ପେଟ ବାଟରେ ନିକିଳି ପ୍ରାଣ ଘେନିଗଲା
ନୃପତି ତୂଣୀର ମଧ୍ୟେ ଝସାଇ ପଶିଲା ।
ପୁତ୍ର ଭୂମିରେ ପଡ଼ିବା ଦେଖିଣ ଶୁକରୀ
ପିତାପାଶେ ଗଲୁ ପୁତ୍ର ମୋତେ ଛାଡ଼ିକରି ।
ପୁତ୍ରର ଉଚିତ ଧର୍ମ ରଖିଲୁ କୁମର
ସ୍ୱାମୀ ମୋତେ ଛାଡ଼ିକରି କଲେ ସ୍ୱର୍ଗପୁର ।
ଧିକ ଧିକ ମୋ ଜୀବନ ରହିଛି କେମନ୍ତେ
ମୁହିଁତ ପାପିନୀ ପାପ କରିଅଛି କେତେ ।
ତେଣୁ ଏ ଦେହକୁ ମୋର ନଛାଡ଼େ ପରାଣ
ସ୍ନେହେ ପୁତ୍ରର ଉପରେ ପଡ଼ି କିଛିକ୍ଷଣ ।

ତହୁଁ ଉଠି କ୍ରୋଧଭରେ ଥୋମଣୀ ପ୍ରହାରି
ବହୁତ ବୀର ମାଇଲା ରଣେ ପଶି କରି ।
ପୁତ୍ର ସ୍ୱାମୀ ଶୋକ କ୍ରୋଧେ ବହୁତ ମାଇଲା
ଜୀବନ ମୂର୍ଚ୍ଛାରେ ଅସ୍ତ୍ର ଅସ୍ତ୍ର ନ ଗଣିଲା ।
କେମଲେ କେ ପଳାଇଲେ କେବିନ୍ଧିଲେବାଣ
କେ ଭୂମିରେ ଲୋଟି ଗଡ଼ି ହରାଇଲେ ପ୍ରାଣ ।
ମହା ଭୟ ପ୍ରଦାୟିନୀ କୃତ୍ୟାର ପରାୟ
ଶୂକରୀକି ଦେଖି ସର୍ବେ କଲେ ମହାଭୟ ।
ଦାନ୍ତ ଦେଖି ତେଡ଼େ ବଡ଼ ସୈନ୍ୟଡରିକରି
ପଞ୍ଚଘୁଞ୍ଚା ଦେଇ ତହୁଁ ଗଲେ ଅପସରି ।
ସୁଦେବରାଣୀ ସେବେଳେ ବୋଇଲେରାଜାଙ୍କୁ
ଶୁକରୀ ମାରଇ ଦେଖ ଏ ତୁମ୍ଭ ସୈନ୍ୟଙ୍କୁ ।
ଏଡ଼େ ବଡ଼ ଥାଟଗୋଟା ଅସ୍ତ୍ର ଶସ୍ତ୍ର ପାଣି
ପଳାନ୍ତି ଏକା ଶୁକରୀ ଡରେ ନୃପମଣି ।
ଧନୁଶର ଥୋଇ କିମ୍ପା ରହିଲ ମଉନେ
ଏହାର ମୃତ୍ୟୁକି ନାହିଁ କି ବିଚାର ମନେ ।
ରାଣୀକି ପ୍ରତି ଉତ୍ତର ଦେଲେ ନରପତି
ସ୍ତିରୀବଧେ ମହାପାପ ବୋଲି କହିଛନ୍ତି ।
ଦେବେ କହନ୍ତି ଏଥିରେ ମହାଦୋଷ ଲାଗେ
ଏଣୁ ବାଣ ନ ବିନ୍ଧଇ ଆଗୋ ମହାଭାଗେ ।
ପାପକୁ ମୋହର ମହାଭୀତି ଥାଏ ସତୀ
ଏହା କହୁ କହୁ ରାଣୀଆଗେ ମହାପତି ।
ଝର୍ଝର ନାମରେ ବ୍ୟାଧ ବୀରେକ ଅଇଲା
ଶୁକରୀ ଯୁଦ୍ଧ କରିବା ନୟନେ ଦେଖିଲା ।
ମହା ଯୋଦ୍ଧାମାନେ ତାକୁ ଯୁଦ୍ଧେ ନପାରନ୍ତି
ତୀକ୍ଷ୍ଣ ବାଣେକ ବିନ୍ଧିଲା ଗର୍ବକରି ଅତି ।
ସେ ବାଣେ ଶୁକରୀ ଦେହ ରୁଧିରେ ଜର୍ଜ୍ଜର
ଝର୍ଝର ବ୍ୟାଧିକୁ କଲା ଦନ୍ତରେ ପ୍ରହାର ।
ପଡ଼ିଲାବେଳେ ଝର୍ଝର କରେ ଖଣ୍ଡାଥିଲା
ସେ ଖଣ୍ଡା ବାଜି ଶୁକରୀ ଦେହ କଟିଗଲା ।
ଭୂମିରେ ପଡ଼ି ସେ ଦୀର୍ଘ ନିଃଶ୍ୱାସ ଛାଡ଼ଇ
ମହାକଷ୍ଟ ପାଇ ତଳେ ପଡ଼ି ମୂର୍ଚ୍ଛାଯାଇ ।
ତେଡ଼େ ବଡ଼ ଆଘାତେ ତା ଜୀବନ ନଗଲା
କେବଳ ଅଚେତାହୋଇ ଶୁକରୀ ପଡ଼ିଲା ।
ଧନ୍ୟରେ ଶୁକରୀ ତୋର ଧନ୍ୟ ବୀରପଣ
ଖଡ଼୍ଗାଘାତେ ଛିନ୍ନହୋଇ ରଖିଛୁ ଜୀବନ ।

ଗୋପୀନାଥ ବୋଲେ ହରିହରି ବୋଲଭାଇ
ହରିନାମ ବିନା କିଛି ଏ ସଂସାରେ ନାହିଁ ।
ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ
ବେନୋପାଖ୍ୟାନେ ସୁକଳା ଚରିତ୍ରେ
ଶୂକରୀ ସଂଗ୍ରାମେ ନାମ
ପଞ୍ଚଚତ୍ୱାରିଂଶୋଽଧ୍ୟାୟଃ ।



## ଷଟ୍‌ଚତ୍ୱାରିଂଶ ଅଧ୍ୟାୟ

### ଶୂକରୀ ମୁଖେ ସୁଦେବାର ଜଳ ସେଚନ ଓ ଶୂକର ବୃତ୍ତାନ୍ତ

ସଖୀଙ୍କ ଆଗେ କହଇ ସୁକଳା ସୁନ୍ଦରୀ
ସୁଦେବା ରାଣୀ ହସ୍ତରେ ଜଳ ଘଟଧରି ।
ତୁରିତେ ରଣ ଭୂମିକି ଆସି ସେ ଦେଖିଲେ
ଶୀତଳ ଜଳ ଶୂକରୀ ମୁଖରେ ସିଞ୍ଚିଲେ ।
ତାର ସର୍ବାଙ୍ଗରେ ପୁଣି ଢ଼ାଳିଦେଲେ ଜଳ
ଶୂକରୀ କଥା କହିଲା କରିଣ କୋମଳ ।
ଉତ୍ତମ ମନୁଷ୍ୟବାଣୀ ଅତି ସୁମଧୁର
ବୋଇଲା ଭୋଦେବୀ ମୋର କଲ୍ୟାଣେତୁମ୍ଭର
ଚିର ସୁଖ ହେବ ଯେଣୁ ସୁଖଦେଲ ମୋତେ
ଆଜି ତୁମ୍ଭେ ଛୁଇଁବାରୁ ପାପଥିଲା ଯେତେ ।
ସବୁ ଛାଡ଼ି ପଳାଇଲା ହେଲଇଁ ପବିତ୍ର
ମନୁଷ୍ୟ ବାଣୀ ସୁଦେବା ଶୁଣି ଆଚମ୍ବିତ ।
ମନୁଷ୍ୟ ବାଣୀ କହଇ ପଶୁଜାତି ହୋଇ
ସ୍ୱର ବ୍ୟଞ୍ଜନ ଉଚ୍ଚାରି ସଂସ୍କୃତେ କହଇ ।
କଲ୍ୟାଣ ପୁଣି କରଇ ଜାତିରେ ଶୂକରୀ
ଏ ବଡ଼ ଅଦ୍ଭୁତ କଥା ଜାଣିବା କିପରି ।
ଏରୂପେ ସୁଦେବା ଦେବୀ ହରଷ ବିସ୍ମୟେ
ସ୍ୱାମୀଙ୍କି ବୋଇଲେତୁମ୍ଭେ ଅଯୋଧ୍ୟାରରାୟେ ।
ପୂର୍ବେ କାହିଁ ଦେଖିଛ କି ଏରୂପ ଶୂକରୀ
ପଶୁଜାତି ହୋଇ କହେ କଥା ଏ କିପରି ।
ମାନବ ପ୍ରାୟ ଏହାର ସବୁ ସାଧୁଭାଷା
ନୃପତିବୋଇଲେଆଗୋ ସୁଦେବା ସୁଯୋଷା ।
ଏମନ୍ତ ଅଦ୍ଭୁତ କଥା କାହିଁ ଶୁଣିନାହିଁ
ଆଜିଯାଏ ଏହା ମୁହିଁ ଦେଖିନାହିଁ କାହିଁ ।
ଶୂକରୀକି ତୁମ୍ଭେ ଯାଇଁ ପଚାର ଗୋ ରାଣୀ
ମହାଦେଈ ଶୁଣି ରାଜା ମୁଖୁ ଏହି ବାଣୀ ।
ଶୂକରୀକି ପଚାରିଲେ କିଏ ତୁମ୍ଭେ କହ
ପଶୁ କି କଥା କହଇ ମାନବ ପରାୟ ।
ବିଚିତ୍ର ଗୁଣ ବହୁତ ଅଛି ତୁମ୍ଭ ତହିଁ
ପଶୁଙ୍କର ଭାଷା ସାଧୁଭାଷା ହୋଏ କାହିଁ ।
ତୁମ୍ଭେ ତୁମ୍ଭ ପୂର୍ବଜନ୍ମ କଥା କହି ତୋଷ
ତୁମ୍ଭ ସ୍ୱାମୀ ପୂର୍ବଜନ୍ମ କହିକର ଶେଷ ।
ମହାବୀର ତୁମ୍ଭ ସ୍ୱାମୀ କଲା ଯେଉଁ ରଣ
ଜୀବେ ଦାନବେ ମାନବେ ଅଗୋଚର ପୁଣ ।
ବଡ଼ ପ୍ରତାପୀ ଅଟଇ ବୀର ଶିରୋମଣି
ରଣ ଯଜ୍ଞ କରି ସ୍ୱର୍ଗେ ବସିଲା ସେ ପୁଣି ।
ତାହାର ଏ କେଉଁ ଧର୍ମ କହିବୁ ବୁଝାଇ
ଶୂକରୀ ବୋଇଲା ତୁଗୋ ଶୁଣ ମହାଦେଈ ।
ଏ ମୋହର ସ୍ୱାମୀଥିଲେ ଅତି ବୁଦ୍ଧିମନ୍ତ
ଜାତିରେ ଗନ୍ଧର୍ବ ଏହି ଗୀତରେ ପଣ୍ଡିତ ।
ଏହାଙ୍କର ନାମଥିଲା ରଙ୍ଗ ବିଦ୍ୟାଧର
ସବୁ ଶାସ୍ତ୍ରର ଯେଂଅର୍ଥ ଜାଣନ୍ତି ଆବର ।
ଏକଦିନକର କଥା କହୁଅଛି ଶୁଣ
ମହାମୁନି ମହାତେଜା ପୁଲସ୍ତ୍ୟ ବ୍ରାହ୍ମଣ ।
ଯେ ମେରୁ ଗିରି ନିର୍ଝର କନ୍ଦରେ ସୁନ୍ଦର
ତହିଁ ବସି ତପ କରୁଥିଲେ ମୁନିବର ।
ଆପଣା ଇଚ୍ଛାରେ ରଙ୍ଗ ବିଦ୍ୟାଧର ଆସି
ଗୀତ ଗାଇଲା ପୁଲସ୍ତ୍ୟ ଋଷିପାଶେ ବସି ।
ବିଦ୍ୟାଧର କରତାଳି ଲୟ ଗୀତ ଶୁଣି
ମନ ବିଚଳିତ୍ ହେବାଯୋଗୁଁ ସେହି ମୁନି ।
ଗୀତ ବିଦ୍ୟାଧରକୁ ଯେ କହିଲେ ଏସନ
ତୁମ୍ଭେ ଯେ ଗୀତ ପଣ୍ଡିତ ଗନ୍ଧର୍ବ ରାଜନ ।
ତୁମ୍ଭ ଗୀତରେ ମୋହିତ ସକଳ ଅମରେ
ଗାଇପାର ତୁମ୍ଭେ ତାନ ମାନ ଦେଇ ସ୍ୱରେ ।
ତୁମ୍ଭର ଲୟ ମୂର୍ଚ୍ଛନା ସହିତ ଯେ ଗାନ
ଶୁଣିଲେ ତା ନ ଟଳିବ କହ କାହା ମନ ।
ମୋର ମନ ବିଚଳିତ ହେବାରୁ ତୁମ୍ଭଙ୍କୁ
କହୁଛି ଏ ବନୁ ତୁମ୍ଭେ ଯା ଆନ ବନକୁ ।
ଗୀତ ବିଦ୍ୟାଧର ଶୁଣି ବୋଇଲେ ଭୋ ମୁନି
କିପାଇଁ ଆନ ବନକୁ ଯିବି ମୁହିଁ ପୁଣି ।

ଆମ୍ଭଙ୍କାନ ତୁଲ୍ୟ ମୋର ଏହି ଗୀତଗାନେ
ଦୁଃଖ କଷ୍ଟ ନଦିଅଇ ମୁଁ କାହାରି ମନେ ।
ସୁଖ ଆନନ୍ଦ ଦିଅଇ ମୋ ଗୀତ ନିରତେ
ଦେବତା ତୋଷ ହୁଅନ୍ତି ମୋର ଏହିଗୀତେ ।
ମହା ଯୋଗୀନ୍ଦ୍ର ପୁରୁଷ ଶମ୍ଭୁ ତ୍ରିଜଗତେ
ଧ୍ୟାନଭଙ୍ଗ ହୋଇ ସେହୁ ଗଲେ ଇତସ୍ତତେ ।
ମୋଗୀତ ଧ୍ୱନି ତାହାଙ୍କକର୍ଣ୍ଣେ ଯେବେପଶେ
ମୋହିତହୋଇସେ ଆସି ପାରନ୍ତି ମୋପାଶେ ।
ଆନନ୍ଦ ଦାୟକ ରସମୟ ଗୀତ ମୋର
ଶୃଙ୍ଗାରାଦି ରସ ସବୁ ଥିବା ଯୋଗୁଁ ସାର ।
ବେଶିକି କହିବି ମୁନି ଏ ମୋହର ଗୀତେ
ଚାରିବେଦ ଶୋଭାପାଏ ବେଦାଙ୍ଗ ସହିତେ ।
ଗୀତ ଶୁଣି ଋଷି ମୁନି ହୁଅନ୍ତି ସନ୍ତୋଷ
ତୁମ୍ଭେ ଗୀତ ନିନ୍ଦା କର ନବସାଅ ପାଶ ।
ତୁମ୍ଭ ପରା ମୁନି କହ ଏରୂପେ ଅନୀତି
ପୁଲସ୍ତ୍ୟ ଶୁଣି କହିଲେ ଆହେ ମହାମତି ।
ସତ କହୁଅଛ ଯାହା ମୁଁ ତାହା ମାନଇ
ବହୁତ ପୁଣ୍ୟ ବହୁତ ସୁଖ ସେ ଦିଅଇ ।
ମୋର ବୋଲେ ଛାଡ଼ତୁମ୍ଭେ ଏହି ଅଭିମାନ
ନିନ୍ଦା ନକରି ପ୍ରଶଂସା କରେ ଶୁଣି ଗାନ ।
ଚଉଦ ପ୍ରକାରେ ବିଦ୍ୟା ଅଛଇ ଜଗତେ
ପଢ଼ିଲେ ଶୁଣିଲେ ତାହା ସବୁ ଏକ ଚିତ୍ତେ ।
ସେ ବିଦ୍ୟା ସାଧ ହୁଅଇ ସିଦ୍ଧିକି ଦିଶଇ
ମନ ନିଶ୍ଚଳ ସବୁରି ମୂଳ ଯେ ଅଟଇ ।
ମନ ବିଚଳିତ ହେଲେ ସବୁ ବିଚଳିତ
ତପ ଜପ ମନ୍ତ୍ର ଧ୍ୟାନ ଧାରଣା ସହିତ ।
ସବୁ ବିଦ୍ୟାହିଁ ବିଫଳ ହୁଅଇ ଜାଣିବ
ମନ ଇନ୍ଦ୍ରିଙ୍କି ଚଞ୍ଚଳ ନିଶ୍ଚୟ କରିବ ।
ଧ୍ୟାନ ଇନ୍ଦ୍ରିଙ୍କ ଚଳାଇ ମନ ବନେ ଆଣି
ବିଷୟରେ ଆସକତ କରାଇ ସେ ପୁଣି ।
ଯହିଁ ନାହିଁ ଶବ୍ଦରୂପ ଯୁବତୀ ଆବର
ସେ ସ୍ଥାନଗୋଟା ପ୍ରଶସ୍ତ ମୁନି ଜନଙ୍କର ।
ତପସିଦ୍ଧା ହୁଅନ୍ତି ସେ ତହିଁ କରି ତପ
ତୋ ଗୀତ ଅତି ପବିତ୍ର ଅଟେ ଏ ସ୍ୱରୂପ ।
ସୁଖଦେବା ଯୋଗୁଁ ଏହା ନଶୁଣିବି କେଭେ
ଅନ୍ୟ ବନେ ଯାଉଛି ମୁଁ ଥାଅତୁମ୍ଭେ ଏବେ ।

ତୁମ୍ଭେ ଗଲେ ଏସ୍ଥାନରେ ମୁଁ ରହିପାରଇ
ତୁମ୍ଭେ ରହିଲେ ଏ ସ୍ଥାନେ ମୁହିଁ ନରହଇ ।
ଗୀତ ବିଦ୍ୟାଧର ବୋଲେ ଆହେ ମହାମତି
ଯେ ଇନ୍ଦ୍ରିକି ଜିଣଇ ସେ ବୋଲାଇତ ଯତି ।
ସେହି ବିଜୟୀ ସେ ଯୋଗୀ ସାଧକସେଧୀର
ଯେ ରୂପକୁ ଦେଖି ପୁଣି ଶବଦ ତାହାର ।
ବିଚଳିତ ନହୁଅଇ ସେ ଧୀର ବୋଲାଇ
ତାହାକୁ ତପୀ ବୋଲନ୍ତି ହେ ମୁନିଗୋସାଇଁ ।
ତୁମ୍ଭେ ଇନ୍ଦ୍ରିୟ ବର୍ଜିତ ନିସ୍ତେଜ ଆବର
ଅମାନନା କରିବାକୁ ଏ ଗୀତ ମୋହର ।
କାହାରି ସାମର୍ଥ୍ୟ ନାହିଁ ସ୍ୱର୍ଗଭୁବନରେ
ବନକୁ ଛାଡ଼ି ପଳାନ୍ତି ହୀନବୀର୍ଯ୍ୟ ନରେ ।
ଅରଣ୍ୟ ଦେଶ ଯେହେତୁ ସର୍ବସାଧାରଣ
ଦେବ କିବା ଜୀବ କିବା ସକଳେ ସମାନ ।
ତୁମ୍ଭ ଆମ୍ଭ ଅଧିକାର ସମାନହିଁ ବନେ
ମୁଁ କିମ୍ପା ଛାଡ଼ିବି ମୁନି ତୁମର ବଚନେ ।
ଅପୂର୍ବ ସୁରମ୍ୟ ସ୍ଥାନ ଏ ଉତ୍ତମ ବନ
ତୁମ୍ଭେ ଛାଡ଼ି ଯାଅ କିବା ରହ ଏହି ସ୍ଥାନ ।
କିଛିହିଁ ଆପତ୍ତି ନାହିଁ ତହିଁରେ ମୋହର
ମୁନିଙ୍କି ଏ କଥା କହି ଗୀତ ବିଦ୍ୟାଧର ।
ସେ ସ୍ଥାନ ମାଡ଼ି ରହିଲା ଗୀତହିଁ ଗାଇଲା
ଏରୂପେ ଉତ୍ତର ଯହୁଁ ମୁନିଙ୍କିସେ ଦେଲା ।
କିକଲେ ମଙ୍ଗଳ ହେବ ବିଚାରିଲେ ମୁନି
କିଛିହିଁ ନକହି ଲକ୍ଷକାଳ ହୋଇ ତୁନି ।
ସେ ସ୍ଥାନ ଛାଡ଼ିରହିଲେ ଯାଇ ଅନ୍ୟସ୍ଥାନେ
କାମକ୍ରୋଧ ଲୋଭତେଜି ବସି ଯୋଗାସନେ ।
ସକଳ ଇନ୍ଦ୍ରି ନିରୋଧି କଲେ ବସି ତପ
ସୁକଳା ସଖୀଙ୍କି ଚାହିଁ କହଇ ଏରୂପ ।
ସେ ସ୍ଥାନକୁ ଛାଡ଼ି ଯହୁଁ ଗଲେ ମୁନିବର
ମୁନିଙ୍କି ନଦେଖି ତହିଁ ଗୀତ ବିଦ୍ୟାଧର ।
କାଳ ତାକୁ ଗ୍ରାସିବାରୁ ମନେ ବିଚାରଇ
ସ୍ଥାନ ଛାଡ଼ି ଗଲା ମୁନି ମୋର ଭୟପାଇ ।
କାହିଁଗଲା ପୁଣି କାହିଁ ଯାଇ ସେ ରହିଲା
ତପ ଭାଙ୍ଗି ଦେଲା କିବା ତପରେ ବସିଲା ।
ଏମନ୍ତ ଭାଳି ମୁନିଙ୍କି ଗଲା ଖୋଜି ଖୋଜି
ବନରେ ଏକାନ୍ତେ ବସିଛନ୍ତି ଆଖିବୁଜି ।

ଦେଖିପାରି ହୋଇଲା ସେ ବନର ଶୁକର
ମୁନିର ଆଶ୍ରମ ଭାଙ୍ଗି କଲା ଛାରଖାର ।
ମୁନିଙ୍କି ଆସନେ ଥିବା ଦେଖି ପାଶେ ଗଲା
ତୁଣ୍ଡ ଅଗ୍ରେ ତାହାଙ୍କୁ ସେ ଧରଷଣା କଲା ।
ମୁନି ତାକୁ ପଶୁ ଜାଣି ନ ଘେନିଲେ ଦୋଷ
ବାରୀ ମଳ ମୂତ୍ର କଲା ମୁନି ଚଉପାଶ ।
ନାଚିଲା କୁଦିଲା ମୁନି ଆଗରେ ଶୋଇଲା
ମୁନି ସେ ଦୋଷ ତାହାର ମନେ ନଘେନିଲା ।
ସେଦିନ ଗଲା ସେ ବାର ପୁଣି ଦିନେ ଆସି
ଉଚ୍ଚେ ହସିଲା କାନ୍ଦିଲା ଆଶ୍ରମରେ ପଶି ।
ସୁସ୍ୱରେ ଗାଇଲା ଗୀତ ଦେଖି ମୁନିବର
ଯୋଗରେ ବସି ଜାଣିଲେ ନୁହଇ ଶୁକର ।
ଗୀତ ବିଦ୍ୟାଧର ମୋର ଭାଙ୍ଗୁଅଛି ତପ
ପଶୁଙ୍କାନେ ଯାହା କରୁ ନଥିଲି ମୁଁ କୋପ ।
ଗନ୍ଧର୍ବ ଅଧମ କୂଟେ ଶୁକର ହୋଇଣ
ଦେଖାଉଅଛି ମୋଆଗେ ଆସି ଦୁଷ୍ଟପଣ ।
ବାରେବାରେ ଭାଙ୍ଗେ ଆସି ଏମୋହର ତପ
ଏମନ୍ତ ବୋଲି ତକ୍ଷଣେ ମୁନିଦେଲେ ଶାପ ।
ରେ ଦୁଷ୍ଟ ପାପୀ ଗନ୍ଧର୍ବ ଗୀତ ବିଦ୍ୟାଧର
ମୋର ତପ ଭାଙ୍ଗୁ କୂଟେ ହୋଇଣ ଶୁକର ।
ମୋର ଶାପେ ମର୍ତ୍ତ୍ୟପୁରେ ହୁଅଯା ଘୁଷୁରୀ
ବ୍ରହ୍ମଶାପକୁ ସେ ଗୀତ ବିଦ୍ୟାଧର ଡ଼ରି ।
ଥରି ଥରି ଯାଇ ଇନ୍ଦ୍ର ଛାମୁରେ କହିଲା
ଘୋର ଦୁଃଖ କହି ପୁଣି ବୋବାଳି ପାରିଲା ।
ମୁଁ ତୁମ୍ଭ ନିମନ୍ତେ ଯାଇ ସହସ୍ର ଲୋଚନ
ମେରୁ ପର୍ବତରେ କରୁ କରୁ ମୁଁ ଭ୍ରମଣ ।
ଦେଖିଲି ଏକ ବ୍ରାହ୍ମଣ କରୁଅଛି ତପ
ତାଙ୍କ ତପ ଭାଙ୍ଗନ୍ତେ ସେ କଲେ ମହାପାପ ।
ଦୁସ୍ତର ଶାପ ସେ ଦେଲା ବିଚାର ନକରି
ବୋଇଲା ତୁ ମର୍ତ୍ତ୍ୟେହୁଅ ଯାଇରେ ଘୁଷୁରୀ ।
ଶରଣ ପଶିଲି ଇନ୍ଦ୍ର ରଖ ରଖ ମୋତେ
ଏମନ୍ତ କହି ପଡ଼ିଲା ଇନ୍ଦ୍ର ପାଦଗତେ ।
ଗୀତ ବିଦ୍ୟାଧର କଥା ଶୁଣି ପୁରନ୍ଦର
ତାହାକୁ ଘେନି ଆସନ୍ତୁ ଉଠିଲେ ସତ୍ୱର ।
ମେରୁ ପରବତେ ଯାଇଁ ମୁନିଙ୍କି ଭେଟିଲେ
ବିନୟ କରି ସେ ପୁଣି ଏମନ୍ତେ ବୋଇଲେ ।
ଭୋ ନାଥ ସିଦ୍ଧ ପୁରୁଷ ତୁମ୍ଭେ ଦ୍ୱିଜବର
ତୁମ୍ଭର ଶରଣ ଏହି ଗୀତ ବିଦ୍ୟାଧର ।
କୃପାକରି କ୍ଷମାକର ଏ ପାପୀର ଦୋଷ
ତା ଲାଗି ଆସିଛି ମୁହିଁ ଇନ୍ଦ୍ର ତବ ପାଶ ।
ଶାପରୁ ମୁକତ ଏବେ କରିବା ଗୋସାଇଁ
ଦେବଇନ୍ଦ୍ର ବଚନେସେ ମୁନି ତୋଷହୋଇ ।
ବୋଇଲେହୋ ସୁରରାଜ ଶୁଣ ମୋରବାଣୀ
ଇକ୍ଷ୍ୱାକୁ ନାମରେ ହେବେ ଏକ ନୃପମଣି ।
ମନୁର ନନ୍ଦନ ସେହି ହେବ ବଳବନ୍ତ
ତାହାର ହସ୍ତେ ଏ ମଲେ ହୋଇବ ମୁକତ ।
ନିଜଦେହ ପାଇ ପୁଣି ସ୍ୱର୍ଗକୁ ଆସିବ
ଏ ଆମ୍ଭକଥା ଅନ୍ୟଥା କଦାପି ନୋହିବ ।
ଏ ବରାହ ପୂର୍ବଜନ୍ମ କହିଲି ଭୋ ରାଣୀ
ଜନ୍ମ ଜନ୍ମାନ୍ତରେ ମୁହିଁ ଅଟଇ ପାପିନୀ ।
ପୁର୍ବ ଜନ୍ମରେ ବହୁତ କରିଛି ମୁଁ ପାପ
ତେଣୁ ମୁଁ ଘୁଷୁରୀହେଲି ମୋଧୁଃଖ ଅମାପ ।
ଗୋପୀନାଥ ବୋଲେ ହରିହରି ବୋଲଭାଇ
ହରିନାମ ଧଇଲେ ଯେ ପାପ ଛାଡ଼ିଯାଇ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ସୁକଳା ଚରିତେ ଶୁକର
ପୂର୍ବଜନ୍ମ କଥନଂ ନାମ
ଷଟ୍‌ଚତ୍ୱାରିଂଶୋଽଧ୍ୟାୟଃ ।



## ସପ୍ତଚତ୍ୱାରିଂଶ ଅଧ୍ୟାୟ

### ଶୁକରୀ ପୂର୍ବ ଜନ୍ମ ବୃତ୍ତାନ୍ତ

କହିଲେ ସୁକଳା ସତୀ ଶୁଣ ସଖୀଜନେ
ଚାରୁ ସର୍ବାଙ୍ଗୀ ସୁଦେବା ରାଣୀ ହୃଷ୍ଟମନେ ।
ପଚାରିଲେ ଶୁକରୀକି ତୁମ୍ଭେ ଗୋ କେମନ୍ତେ
ଶୁକରୀ ଜନ୍ମ ପାଇଲ କହ ମୋ ଅଗ୍ରତେ ।
ସଂସ୍କୃତ ଭାଷାରେ କଥା କହୁଛ କିପରି
କି ପୁଣ୍ୟବଳେ ଏ ଜ୍ଞାନ ହୋଇଲା ତୁମ୍ଭରି ।
ତୁମ୍ଭ ପୂର୍ବଜନ୍ମ ତୁମ୍ଭ ସ୍ୱାମୀ ପୂର୍ବଜନ୍ମ
ଜାଣି ପାରିଲ କିରୂପେ କରି କିକି କର୍ମ ।

ଶୂକରୀ କହଇ ଶୁଣ ହେ ବରବର୍ଣ୍ଣିନୀ
ଏହି ଜନମରେ ମୁହିଁ ପାଇ ପଶୁଯୋନି ।
ଏ ରଣଭୂମିରେ ବାଣ ଖଡ଼ଗ ଆଘାତେ
ଜ୍ଞାନମୋର ହଜିଗଲା ପଡ଼ିଲି ଅଚେତେ ।
ତୁମ୍ଭ ପୁଣ୍ୟହସ୍ତ ମୋର ଦେହେ ଲାଗିବାରୁ
ପାପଛାଡ଼ି ପଳାଇଲା ଡ଼ରେ ମୋ ଦେହରୁ ।
ତହିଁରେ ପୁଣି ଶୀତଳ ଜଳ ଦେଲ ଢ଼ାଳି
ଅନ୍ଧାର ଯେହ୍ନେ ତୁଟଇ ଦେଲେ ନିଆଁ ଜାଳି ।
ତୁମ୍ଭ ପୁଣ୍ୟେ ପାପତାପ ଦେହରୁ ଶୀତଳ
ଚେତନା ମୋ ଦେହେଦେଲା ତୁମ୍ଭ ପୁଣ୍ୟଫଳ ।
ସତସଙ୍ଗେ ସଦଜ୍ଞାନ ହୁଅଇ ଯେମନ୍ତେ
ତୁମ୍ଭ ଯୋଗୁଁ ପୂର୍ବଜ୍ଞାନ ପାଇଲି ତେମନ୍ତେ ।
ଯେ ଦିବ୍ୟଗତି ପାଇବି ମୋତେ ଜଣାତାହା
ମୋର ପୂର୍ବଜନ୍ମ କଥା ଶୁଣଗୋ ସୁଦେହା ।
କଳିଙ୍ଗ ଦେଶରେ ଥିଲା ଶ୍ରୀପୁର ନଗର
ଚାରିବର୍ଣ୍ଣେ ରହିଥାନ୍ତି କରି ତହିଁ ଘର ।
ବସୁଦତ୍ତ ନାମେ ତହିଁ ବିପ୍ର ଏକ ଥିଲା
ସତ୍ୟବନ୍ତ ଆଚାରୀ ସେ ବେଦ ପଢ଼ିଥିଲା ।
ଧର୍ମ ଜ୍ଞାନ ଧନ ଧାନ୍ୟ ଗୁଣ ଥିଲା ତାର
ପୁତ୍ର ନାତି ଘେନି ସୁଖେ କରୁଥିଲା ଘର ।
ପୂର୍ବଜନ୍ମେ ଥିଲି ମୁହିଁ ତାହାର ଦୂହିତା
ବନ୍ଧୁବାନ୍ଧବ ସୋଦର ସ୍ୱଜନେ ଭୂଷିତା ।
ସର୍ବ ଅଳଙ୍କାରେ ମୁହିଁ ସର୍ବଦା ଭୂଷଣ
ସୁଦେହାମୋ ନାମଦେଲେ ପିତାସ୍ନେହେପୂର୍ଣ ।
ପିତାଙ୍କର ଅତି ସ୍ନେହଥାଏ ମୋର ପ୍ରତି
ସଂସାରେ ମୁଁ ଏକମାତ୍ର ଥିଲି ରୂପବତୀ ।
ରୂପ ଯଉବନ ଗର୍ବେ ସର୍ବଦା ମୁଁ ମତ୍ତ
ମୋହର ହସ ଜଗତ କରଇ ମୋହିତ ।
ମୋ ସୁନ୍ଦର ରୂପଦେଖି ବିଭା ହେବାପାଇଁ
ବହୁତ ଲୋକେ ମାଗିଲେ ପିତାପାଶେ ଯାଇଁ ।
କାହାରିକି ନଦେଲେ ସେ ପିତାସ୍ନେହବଶେ
ଗୋଟିଏ ଘରଜୋଇଁଆ କରିବା ମାନସେ ।
ବାଳକାଳ ଗଲା ମୁହିଁ ହୋଇଲି ଯୁବତୀ
ଦୁଃଖିତେ ଯାଇ ମୋ ମାତା ପିତାଙ୍କୁ କହନ୍ତି ।
କାହିଁକି ଏ କନ୍ୟାଗୋଟି ନଦିଅ କାହାକୁ
ମହାତମା ଦ୍ୱିଜ ଡାକିଆଣି ଦିଅ ତାକୁ ।
ଯୁବତୀ ହେଲାଣି ଝିଅ ରଖିଛି କେମନ୍ତେ
ଜଳ ନଖାଇବେ ପିତୃଲୋକେ ଆମ୍ଭହସ୍ତେ ।
ଏମନ୍ତ ଶୁଣି ମୋ ପିତା କହିଲେ ମାତାଙ୍କୁ
ମୋର ମନକଥା ଶୁଣ କହୁଛି ତୁମ୍ଭଙ୍କୁ ।
ବିଭାହୋଇ ଯେଉଁ ଦ୍ୱିଜ ରହିବ ମୋ ଘରେ
ଏ କନ୍ୟାଗୋଟି ସମର୍ପି ଦେବି ତାର କରେ ।
ଯେ ଆସି ମାଗିଲେ ଏଥେ ହୋଇଲି ଅମଙ୍ଗ
କନ୍ୟାପ୍ରତି ମୋରଅଛି ବଡ଼ ଅନୁରାଗ ।
ସବୁବେଳେ ଦେଖୁଥିବି ମୁଁ ତାହାର ସୁଖ
ଦୁଃଖ ମୁଁ ପାସୋରୁଥିବି ଚାହିଁ ତାର ମୁଖ ।
ଏହି ମୋ ମନର କଥା କହିଲି ତୋ ଆଗେ
ପ୍ରାଣୁ ଅଧିକ ସୁଦେହା ଜାଣ ମହାଭାଗେ ।
ତାହାର ବିଚ୍ଛେଦେ ମୋର ଜୀବନ ସଂଶୟ
ଏକଥା ଗୋଟାଗୋ ପ୍ରିୟେ କରିଛି ନିଶ୍ଚୟ ।
ପିତାର ବଚନେ ମାତା ରହିଲେ ମଉନେ
ଦିନାକେତେ ଗଲା ଦିନେ ଆମ୍ଭର ସଦନେ ।
ବିଦ୍ୟାବନ୍ତ କଉଶିକ ଗୋତ୍ରୀ ଦ୍ୱିଜ ଏକ
ପ୍ରବେଶ ହୋଇ ମାଗିଲା ଭିକ୍ଷାପାତ୍ରେ ଭିକ ।
ବେଦ ପଢ଼ିଲା ଉତ୍ତମସ୍ୱରେ ଆମ୍ଭ ଦ୍ୱାରେ
ରୂପଗୁଣ ଶୀଳ ସବୁ ଅଛି ତାହାଠାରେ ।
କୁଳଗୋତ୍ର ନାମ ତାକୁ ପଚାରିଲେ ପିତା
ସେ ବିପ୍ରବୋଇଲା ମୋରନାହିଁ ପିତାମାତା ।
କଉଶିକ ଗୋତ୍ରୀ ବେଦ ବେଦାଙ୍ଗ ଜାଣଇ
ପିତା ମାତା ମୋର ନାମ ଶିବଶର୍ମା ଦେଇ ।
ଅଛନ୍ତି ବେଦପାରଗ ମୋର ଚାରିଭାଇ
ଏଥୁଅନନ୍ତରେ କଥା ଶୁଣ ମହାଦେଈ ।
ତାର କୁଳଗୋତ୍ର ଶୁଣ ଶୀଳରୂପ ଦେଖି
ମୋର ପିତା ଦେବଦତ୍ତ ଦ୍ୱିଜହୋଇ ସୁଖୀ ।
ଶୁଭତିଥି ଶୁଭବାର ଶୁଭ ଲଗ୍ନ ଧରି
ତାର ଚନ୍ଦ୍ର ଶୁଦ୍ଧି ଆଦି ସବୁ ବୁଝିକରି ।
ଶିବଶର୍ମା ହସ୍ତେ କଲେ ମୋତେ ସମର୍ପଣ
ପିତା ଘରେ ରହିଲୁ ଆମ୍ଭେ ବେନିଜନ ।
ମୁଁ ପାପିନୀ ସ୍ୱାମୀସେବା କରିନାହିଁ ଦିନେ
ପିତା ମାତା ଅଇଶ୍ୱର୍ଯ୍ୟେ ଗର୍ବକରି ମନେ ।
ପ୍ରେମାଳାପ ସ୍ନେହ ରତିରସ ଭୋଗ ନାହିଁ
ଘୃଣା କରଇ ସ୍ୱାମୀକି ଦେଖିକରି ମୁହିଁ ।

ଗୋଡ଼ହାତ ଦେହତାର ମୋଡ଼ିନାହିଁ ଦିନେ
ତାକୁ ଦୂର କରିଦିଏ ନାନା କୁବଚନେ ।
ଭର୍ତ୍ସନାକରି କହଇ ଗାଳି ମନ୍ଦ ଦେଇ
କୋପ ଦୃଷ୍ଟିରେ ସ୍ୱାମୀକି ସର୍ବଦା ଦେଖଇ ।
ବେଶ୍ୟାସଙ୍ଗ କରି ମୁହିଁ ହୋଇଲି ପୁଂଶ୍ଚଳୀ
ମୋଇଚ୍ଛାରେ ଯେଣେତେଣେ ଯାଇଁ କରେ କେଳି ।
ଦିନେ କ୍ଷଣେ ରହିନାହିଁ ମୁଁ ସ୍ୱାମୀ ସହିତ
ପିତାମାତା ସ୍ୱାମୀ ଭାଇ କାହାରି ମୁଁ ହିତ ।
ସ୍ୱାମୀ କିଛି ନ କହଇ ଦେଖି ଆଚରଣ
ଶାଶୁ ଶ୍ୱଶୁରଙ୍କୁ ଭକ୍ତି କରିଥାଇ ପୁଣ ।
ନିଷେଧ କଲେ ମୋହର ଭାଇବନ୍ଧୁ ଯେତେ
ନ ଶୁଣିଲି ନ ମାନିଲି ଯଉବନ ମତ୍ତେ ।
ସ୍ୱାମୀ ସାଧୁ ଆଚରଣ ପିତା ମାତା ଦେଖି
ମୋର ପାପ ଆଚରଣେ ହୋଇ ଅତିଦୁଃଖୀ ।
ମନର ଦୁଃଖେ ରହନ୍ତି କିଛି ନ କହନ୍ତି
ଏଥୁ ଅନନ୍ତରେ ତୁଗୋ ଶୁଣ ମହାସତୀ ।
ସ୍ୱାମୀ ମୋର ଏ ସକଳ ସହି ନ ପାରିଲା
ଶାଶୁଘର ଛାଡ଼ି ବେଗେ ଲୁଚି ପଳାଇଲା ।
ନ ରହିଲା ସେ ଦେଶରେ ଆଗୋ ଗୁଣବତୀ
ଦୁଃଖିତ ହୋଇଲେ ପିତା ମାତା ମୋରଅତି ।
ରୋଗପୀଡ଼ା ଦେଲାପ୍ରାୟେ ପୀଡ଼ାଦେଲାତାଙ୍କୁ
ମୋ ଚିନ୍ତା ତାଙ୍କୁ ଖାଇଲା କହିବେ କାହାକୁ ।
ମାତା ମୋ ପିତାଙ୍କୁଚାହିଁ କହିଲେ ହେ କାନ୍ତ
କି ନିମନ୍ତେ ବସି ଚିନ୍ତା କରୁଛ ବହୁତ ।
ମୋରପିତା ବସୁଦତ୍ତ ବୋଇଲେଗୋପ୍ରିୟେ
ଝିଅକୁ ଛାଡ଼ି ମୋ ଜୋଇଁ ପଳାଇଲେଭୟେ ।
ପାପଚାରିଣୀ ନିର୍ଦ୍ଦୟା ହୋଇଲା ଦୁହିତା
ଅତି ବୁଦ୍ଧିମନ୍ତ ଶିବଶର୍ମା ମୋ ଜାମାତା ।
ଆତ୍ମ କୁଟୁମ୍ବଙ୍କ ପ୍ରତି ଥାଏ ତ ଭକତି
ସୁଦେବା ତାହାକୁ କଥା ନକହେଗୋ ସତୀ ।
ଜାମାତା ଅତି ପଣ୍ଡିତ ଅଟନ୍ତି ମୋହର
ଆତ୍ମଘରେ ଥାଇଁ କିଛି ନଦିଏ ଉତ୍ତର ।
ସୁଦେବାକୁ ଦିନେ ନିନ୍ଦା କରି କହି ନାହିଁ
ଗାଳିମନ୍ଦ ଦିଅଇ ସବୁ ଦେଖି ଚାହିଁ ।
ଏ ଦୁଷ୍ଟା ସୁଦେବା ହେଲା କୁଳକଳଙ୍କିନୀ
ଏମନ୍ତ ଶୁଣି ପିତାଙ୍କୁ କହିଲା ଜନନୀ ।
ତୁମ୍ଭଦୋଷେ ଝିଅହେଲା କୁଳବିଳାସିନୀ
ପାଞ୍ଚବର୍ଷ ଯାଏ ସ୍ନେହ କରୁଥିବ ପୁଣି ।
ବସ୍ତ୍ର ଆଚ୍ଛାଦନ ଖାଦ୍ୟ ଦେବଯେ ଯୋଗାଇ
ବିଦ୍ୟାବନ୍ତ ଜନ ପାଶେ ନିଯୁକ୍ତ କରାଇ ।
ଲୋଭ ମୋହ ଛାଡ଼ି ଗୁଣ ଶିଖାଇବ ପୁତ୍ରେ
ତା ଗୁଣ ପ୍ରଶଂସା ନ କରିବ କା ଅଗ୍ରତେ ।
ନିତି ଗାଳି ଦେଉଥିବ ଶିଖାଇବ ଗୁଣ
ମାରିପିଟି ପଢ଼ାଇବ ଆପଣା ସନ୍ତାନ ।
ସୁବିଦ୍ୟ ସୁଗୁଣବନ୍ତ ହୋଇବ ନା ସେହି
ଏରୂପେ ମାତା ଝିଅକୁ ଶିକ୍ଷା ସିନାଦେଇ ।
ଶାଶୁ ଯେ ପୁତ୍ରବଧୂଙ୍କୁ ଏହି ଶିକ୍ଷା ଦେବ
ଗୁରୁ ଶିଷ୍ୟକୁ ଏମନ୍ତେ ତାଡ଼ନ କରିବ ।
ସ୍ୱାମୀ ଭାରିଯାକୁ ରାଜା ଭୃତ୍ୟ ଅମାତ୍ୟଙ୍କୁ
ମାହୁନ୍ତ ଗଜକୁ ପୁଣି ସୁଆର ଅଶ୍ୱଙ୍କୁ ।
ତାଡ଼ନ ପାଳନକଲେ ସତଶିକ୍ଷାପାଇ
ଝିଅକୁ ତୁମ୍ଭେ ଏମନ୍ତ କଲ ମୁହଁ ଦେଇ ।
ରଖିଲ ଶିବଶର୍ମାକୁ ଆପଣାର ଘରେ
ଜାଣି ଶୁଣି ଭ୍ରଷ୍ଟା କଲ ଦୁହିତା ସ୍ନେହରେ ।
ଭୋନାଥ କହୁଛି ଶୁଣ ଏବେ ମନଦେଇ
ଆଠବରଷ ପର୍ଯ୍ୟନ୍ତ ବାପଘରେ ଥାଇ ।
ତହୁଁ ସେ କନ୍ୟା ପ୍ରବଳା ହୁଏ ଏଣୁ ତାକୁ
ପଠାଇଦେବ ତାହାର ଶ୍ୱଶୁର ଘରକୁ ।
ଯେଉଁ ପାପ କରେ କନ୍ୟାଥାଇ ବାପଘରେ
ସେ ପାପଯାକ ତାହାର ପିତା ଭୋଗକରେ ।
ସ୍ୱାମୀଗୃହେ କନ୍ୟାଥାଇ କରେ ପାପ ଯେତେ
ସେ ପାପ ତାହାର ପତିମୁଣ୍ଡେ ଯାଏ ନିତ୍ୟେ ।
ଆଠବର୍ଷ ଯାଏ କନ୍ୟା ପାଳିବ ତା ମାତା
ତହୁଁ ତା ଶାଶୁ ପାଳିବ ରଖିବ ଜାମାତା ।
ଗୁଣବତୀ ହେବ ନାନା ଶୁଶିକ୍ଷା ପାଇବ
ସ୍ୱାମୀ ସେବାକରି ସୁଖେ ସେ ଦିନ ହରିବ ।
ପୁତ୍ରନାତି କନ୍ୟା ଘେନି କରିବ ସେ ଘର
ତହିଁରେ ସୁଖୀହେବେ ତା ଜନନୀ ପିଅର ।
କନ୍ୟାର ଗୁଣେ କୀରତି ଅରଜଇ ପିତା
ତେଣେ ଯେ ପ୍ରଶଂଶା ପାଏ ଜନ୍ମକଲା ମାତା ।
ଏଣୁ ଝିଅ ଜୋଇଁ ଘରେ ନରଖିବ କାନ୍ତ
ତହିଁର ଯେ ଇତିହାସ ଶୁଣଦେଇ ଚିତ୍ତ ।

ଅଠେଶଯୁଗ ଦ୍ୱାପରେ ଯଦୁବଂଶ ବୀର
ଉଗ୍ରସେନ ନାମରେ ଯେ ଏକ ନୃପବର ।
ତାହାର ଚରିତ କହେ ଶୁଣ ଦ୍ୱିଜମଣି
ଦ୍ୱିଜ ଗୋପୀନାଥ ଭଜେ ଶଙ୍ଖ ଚକ୍ରପାଣି ।
ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ସୁକଳାଚରିତ୍ରେ ସୁଦେବାଚରିତଂ
ନାମ ସପ୍ତଚତ୍ୱାରିଂଶୋଽଧ୍ୟାୟଃ ।



## ଅଷ୍ଟଚତ୍ୱାରିଂଶ ଅଧ୍ୟାୟ

### ସୁଦେବାର ସ୍ୱାମୀ ଆଗରେ ବାପଘରେ ଥିବା କନ୍ୟାର ଦୋଷ କୀର୍ତ୍ତନ

ସୁକଳା କହଇ ସେହି ସୁଦେବା ବ୍ରାହ୍ମଣୀ
ସ୍ୱାମୀ ଆଗରେ କହଇ ଶୁଣ ବିପ୍ରମଣି ।
ମାଥୁର ଦେଶରେ ଅଛି ମଥୁରା ନଗର
ତହିଁର ନୃପତି ଉଗ୍ରସେନ ନାମେ ବୀର ।
ଯଦୁବଂଶେ ଜନ୍ମ ତାର ସେ ରାଜାଧିରାୟ
ପରବୀର ଘାତୀ ସେହି ଅଟେ ପ୍ରଜାପ୍ରିୟ ।
ଦାନଶୂର ମାନଶୂର ବଳବନ୍ତ ଅତି
ବେଦର ତତ୍ତ୍ୱ ଜାଣି ଧର୍ମେ ପାଳେକ୍ଷିତି ।
ସକଳଧର୍ମର ଅର୍ଥ ତତ୍ତ୍ୱ ସେ ଜାଣଇ
ମହାତେଜୋବନ୍ତ ମହା ପ୍ରତାପୀ ଅଟଇ ।
ତାହାର ରାଣୀର ନାମ ଅଟେ ପଦ୍ମାବତୀ
ସତ୍ୟକେତୁ ଯେ ବିଦର୍ଭ ନଗର ନୃପତି ।
ତାହାର ଦୁହିତା ସେହି କମଳ ନୟନୀ
ସତ୍ୟଧର୍ମରତା ସତୀ କମଳ ବଦନୀ ।
ସ୍ତିରୀଗୁଣେ ଲକ୍ଷ୍ମୀପ୍ରାୟ ସଉଭାଗ୍ୟବତୀ
ପ୍ରତାପୀ ଉଗ୍ରସେନର ପ୍ରାଣପ୍ରିୟା ଅତି ।
ତାକୁ ଘେନି ସୁଖଭୋଗ କରଇ ରାଜନ
ନିରତେ ତାହାର ପ୍ରେମେ ନୃପତି ବନ୍ଧନ ।
ତାଛଡ଼ା ଆନଭୋଗରେ ନଥାଇ ତା ମନ
ତାର ସମ୍ଭୋଗ ସୁଖରେ ହରୁଥାଇ ଦିନ ।
ଏମନ୍ତେ ପ୍ରୀତି ବଢ଼ିଲା ସେହି ଦୁହିଁଙ୍କର
ତା ପିତା ସେ ସତ୍ୟକେତୁ ବିଦର୍ଭ ଅସୁର ।
ତାର ରାଣୀ ସହିତେ ସେ କଲାକ ବିଚାର
କିପରି କନ୍ୟା ଆସିବ ଘରକୁ ମୋହର ।
ପଦ୍ମାବତୀ ଗୁଣ ମନୁ ପାସୋର ନଯାଇଁ
ଗୃହେ ଅଣାଇବା ତାକୁ ଦୂତ ବରଗାଇ ।
ଜୋଇଁକି କହି ରଖିବା ଆଣି କିଛିଦିନ
ଦେଖି ଚାହିଁ ଯାଉ ସେହି ତାହାର ଭୁବନ ।
ଏମନ୍ତ ଭାଳି ନୃପତି ଦୂତ ଡକାଇଲେ
ସକଳ କଥା ତା ଆଗେ କହି ପଠାଇଲେ ।
ମଥୁରା ପୁରକୁ ବେଗେ ଦୂତ ଚଳିଗଲା
ଉଗ୍ରସେନ ନୃପତିର ଚରଣେ ଲୋଟିଲା ।
କରଯୋଡ଼ି ଜଣାଇଲା ମୁଁ ବିଦର୍ଭ ଦୂତ
ସତ୍ୟକେତୁ ନୃପତି ଯେ ତୁମ୍ଭ ରାଣୀ ତାତ ।
ସ୍ନେହ ଶ୍ରଦ୍ଧା ଅନୁରାଗ ଥିବାରୁ ତାଙ୍କର
କଲ୍ୟାଣକରି ତୁମ୍ଭଙ୍କୁ ବୋଇଲେ ଅପାର ।
ଶେଷେ କହିଲେରେ ଦୂତ କହିବୁ ଏମନ୍ତ
ଆରେ ବାବୁ ଉଗ୍ରସେନ ତୁ ଅତି ପଣ୍ଡିତ ।
ଆମ୍ଭେ ତୋ ଶ୍ୱଶୁରପୁଣି ଶାଶୁ ଯେ ତୋହର
ଆମ୍ଭ ବେନିଙ୍କି ତୁ ବାବୁ କରିବୁ ଉଦ୍ଧାର ।
ଦୁହିତା ପଦ୍ମାବତୀକି ଦେଖିବାକୁ ମନ
ବଳିବାରୁ ଦୂତଗଲା ତୁମ୍ଭ ସନ୍ନିଧାନ ।
ତୁମ୍ଭେ ଆମ୍ଭ ପ୍ରୀତି ସ୍ନେହ ମନେ ମନେ କରି
ତୁମ୍ଭ ପ୍ରିୟାକୁ ପଠାଇଦେବ ଆମ୍ଭ ପୁରୀ ।
କିଛିଦିନ ଆମ୍ଭଘରେ ରହି ପୁଣି ଯିବ
ଦୂତ କହିବା କଥାକୁ ମିଛ ନ ବୁଝିବ ।
ଏମନ୍ତ ଶୁଣି ମଥୁରା ନୃପତି ତୁରିତେ
ରାଣୀକି ପଠାଇଦେଲେ ଦୂତର ସଙ୍ଗତେ ।
ହାନ୍ଦୋଳାରେ ବସି ରାଣୀଗଲେ ବାପଘରେ
ସଙ୍ଗରେ ଗୋଡ଼ାଇଗଲେ ସାଦୀ ପରିବାରେ ।
ପାଇକେ ଗଲେ ସଙ୍ଗରେ ଫରି ଖଣ୍ଡାଧରି
ପଦ୍ମାବତୀ ଯାଇଁ ପିତାଗୃହରେ ଉତୁରି ।
ପିତାମାତାଙ୍କ ଚରଣ ବନ୍ଦି ତହିଁ ଗଲେ
ଗୁରୁ ଗୁରୁଜନଙ୍କର ଚରଣେ ନମିଲେ ।
ପ୍ରିୟସଖୀ ସହଚରୀ ବନ୍ଧୁଆଦି ଯେତେ
ପ୍ରେମଆଳାପେ ରହିଲେ ତାହାଙ୍କ ସହିତେ ।
ପିତା ମାତାଙ୍କର ମନେ ଆନନ୍ଦ ଅପାର
ପାଇ ଦାନମାନ ପାନ ବସ୍ତ୍ର ଅଳଙ୍କାର ।
ସୁଖେ ବାପଘରେ ରହି ରାଣୀ ପଦ୍ମାବତୀ
ସଖୀଙ୍କସଙ୍ଗେ ଖେଳଇ ହୋଇଣ ନିର୍ଭୀତି ।

ଘରବନେ ପୋଖରୀରେ କୋଠାର ଛାତରେ
ନିର୍ଲଜା ବାଳିକାପରି ଆନନ୍ଦେ ବିହରେ ।
ମନମଧ୍ୟେ ବିଚାରିଲା ବାପଘର ସୁଖ
ଶାଶୁଘରେ ରହି ମୁହିଁ ପାଏ ନାନାଦୁଃଖ ।
ସଖୀ ଘେନି ଖେଳ କଉତୁକେ ହରେ ଦିନ
ବନଉପବନ କିଛି ନାହିଁ ତା ବାରଣ ।
ଯଥେଚ୍ଛାଚାରିଣୀହୋଇ ନିର୍ଭୟେ ଖେଳଇ
ଗୋପୀନାଥ ବୋଲେ ହରିହରି ବୋଲି ଭାଇ

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ସୁକଳା ଚରିତେ ବେନୋପାଖ୍ୟାନେ ପଦ୍ମାବତୀ ଚରିତଂ ନାମ ଅଷ୍ଟଚତ୍ୱାରିଂ-ଶୋଽଧ୍ୟାୟଃ ।

## ଊନପଞ୍ଚାଶ ଅଧ୍ୟାୟ

### ଗୋଭିଳ ଦୈତ୍ୟର ପଦ୍ମାବତୀ ହରଣ

ସୁକଳା କହେ ବ୍ରାହ୍ମଣୀ କହେ ସ୍ୱାମୀଆଗେ
ଦିନକରେ ପଦ୍ମାବତୀ ଏକ ବନଭାଗେ ।
ପର୍ବତେ କ୍ରୀଡ଼ା ନିମନ୍ତେ କରଇ ଗମନ
ଦେଖିଲା ତହିଁରେ ଏକ ରମଣୀୟ ବନ ।
ସୁନ୍ଦର କଦଳୀ ଖଣ୍ଡେ ହୋଇଛି ମଣ୍ଡଣି
ଶୋଭାପାଉଛି ତହିଁରେ ତାଳଶାଳ ଶ୍ରେଣୀ ।
ତମାଳ ନଡ଼ିଆଗୁଆ ନାରଙ୍ଗ ବହୁତ
ଟଭା ଲେମ୍ବୁ କମଳା ଯେ ନେଉଆ ଆଇତ ।
ଜାମୁ ବରକୋଳି ବଟ ଓଶସ୍ତ ବଉଳ
କୁଟଜ ହରିଡ଼ା ଚମ୍ପା ଟଗର ପାଟଳ ।
ଏ ଆଦି ନାନା ବୃକ୍ଷରେ ପାଉଅଛି ଶୋଭା
ନାନାଦି ଧାତୁଦ୍ରବ୍ୟରେ ବିରାଜେ ତା ପ୍ରଭା ।
ତଡ଼ାଗ ପୋଖରୀ କୂପ ପାପୀ ସ୍ଥାନେ ସ୍ଥାନେ
ମନ ହରଇ ପକ୍ଷୀଙ୍କ କୋଳାହଳ ସ୍ୱନେ ।
ନୀଳକଇଁ ରଙ୍ଗକଇଁ ଧଳା କଇଁଫୁଲ
ବହୁତ ପଦ୍ମ କହ୍ଲାର ହଂସ ପଲପଲ ।
ଜଳକୁକୁଡ଼ାଙ୍କ ଧ୍ୱନି ମନକୁ ହରଇ
ଅତିମଧୁର ସୁସ୍ୱର କୋକିଳ ରାବଇ ।
ଶାରୀ ଶୁଆଙ୍କର ଗୀତ ହରିନିଏ ଚିତ୍ତ
ନୃପନନ୍ଦିନୀ ଦେଖିଣ ସୁନ୍ଦର ପର୍ବତ ।
ସଖୀଗଣ ସଙ୍ଗେ ଘେନିଯାଏ ଖେଳିଖେଳି
ସ୍ତିରୀ ଚଞ୍ଚଳ ସ୍ୱଭାବେ ଫୁଲ ତୋଳିତୋଳି ।
ହାସ୍ୟରସ କ୍ରୀଡ଼ାରଙ୍ଗ ନାନା କଉତୁକେ
ସରୋବରେପଶି ଫୁଲତୋଳନ୍ତି ଯେ ଥୋକେ ।
ଜଳକେଳି କରିସାରି ଗାଇଲେ ଯେ ଗୀତ
ଶ୍ରୀବିଷ୍ଣୁ କହନ୍ତି ଶୁଣ ବେନ ନରନାଥ ।
ଏକାଳେ କୁବେର ଭୃତ୍ୟ ଗୋଭିଳ ଦଇତ୍ୟ
ବିମାନଚଢ଼ି ଯାଉଛି ଦେଇ ଶୂନ୍ୟପଥ ।
ନାରୀରାଜା ପଦ୍ମାବତୀ ବିଶାଳନୟନା
ଉଗ୍ରସେନ ମହାଦେଈ ସୁନ୍ଦର ବଦନା ।
ବିଦର୍ଭ ରାଜନନ୍ଦିନୀ ଲାବଣ୍ୟର ନିଧି
ରୂପ ସଉଭାଗ୍ୟେ ନାହିଁ ତାର ପ୍ରତିନିଧି ।
ସେ ବରାଙ୍ଗନା ଦଇତ୍ୟ ଦୃଷ୍ଟିରେ ପଡ଼ିଲା
କନ୍ଦର୍ପ ବାଣେ ତାହାର ସର୍ବାଙ୍ଗ ପୀଡ଼ିଲା ।
ମନେ ବିଚାରିଲା ସେହି ଗୋଭିଳ ଦଇତ୍ୟ
ଅପୂର୍ବ ବାଳାରେ ଶୋଭା ପାଉଛି ପର୍ବତ ।
ସାକ୍ଷାତେ କମଳା କିଏ କନ୍ଦର୍ପର ରତି
ଶଚୀ ଠାକୁରାଣୀ କିବା ଦେବୀ ଏ ପାର୍ବତୀ ।
ଏ ମହୀମଣ୍ଡଳେ ନାହିଁ ଏହା ତୁଲ୍ୟନାରୀ
ଏହାର ଶୋଭାରେ ଶୋଭା ପାଉଅଛି ଗିରି ।
ତାରାଗଣ ମଧ୍ୟେ ଯେହ୍ନେ ଶୋଭା ପୂର୍ଣ୍ଣଶଶୀ
ପୋଖରୀ ଭିତରେ ଚାରୁହାସିନୀ ଏ ହଂସୀ ।
ଏ ସୁନ୍ଦରୀବାଳା କିଏ କାହାର ଘରଣୀ
ଏମନ୍ତ ମନରେ ଭାବି ସ୍ଥିରକଲା ପୁଣି ।
ନିଶ୍ଚୟ ଏହି ବିଦର୍ଭ ରାଜାର ନନ୍ଦିନୀ
ଉଗ୍ରସେନ ନୃପତିର ଅଟେ ପାଟରାଣୀ ।
ପତିଗତପ୍ରାଣ ସତୀ ସାଧବୀ ଦୟିତା
ଆନପୁରୁଷର ଥାଉ ପାଇବାର କଥା ।
ଦେଖି ନପାରିବ ଏହି ଥାଇ ଅନ୍ତଃପୁରେ
ଉଗ୍ରସେନଠାରୁ ମୂର୍ଖ ନାହିଁ ଏ ସଂସାରେ ।
ଏ ବାଳାକୁ ପଠାଇଛି ଯେଣୁ ବାପଘର
ଭାଗ୍ୟହତ ହୋଇବାରୁ ସିନା ଯେ ତାହାର ।
ଏହା ବିଚ୍ଛେଦେ କିରୂପେ ରଖିଛି ଜୀବନ
କିବା ନପୁଂସକ ସେହି ରାଜା ଉଗ୍ରସେନ ।
ଗୋଭିଳ ଏରୂପେ ନାନାକଥା ଭାଳିଭାଳି
ରୋମେରୋମେ ତାର କାମଶର ଗଲା ଗଳି ।

ପର ପୁରୁଷକୁ ବାଳା ନ ଭଜିବ କେଭେ
କିରୂପେ ଭୋଗ କରିବି ମୁଁ ଏହାକୁ ଏବେ ।
କାମବାଣରେ ମୋଦେହ ନିତାନ୍ତ ଅସ୍ଥିର
ଏହାକୁ ଭୋଗ ନକଲେ ଆଜି ପ୍ରାଣ ମୋର ।
ନିଶ୍ଚେ ଯମଘରେ ଯିବ କି କରିବି ମୁହିଁ
ବଳେ ବା ହରନ୍ତି ଜାଣେ ପତିବ୍ରତା ଏହି ।
ଶାପଦେଲେ କି କରିବି ନାହିଁ ପରିତ୍ରାଣ
ଯେଣୁ ଅନିର୍ବାର୍ଯ୍ୟ ଅଟେ ଏହି କାମବାଣ ।
ଏମନ୍ତ ଭାଳି ଦଇତ ମାୟା ବିସ୍ତାରିଲା
ଉଗ୍ରସେନ ନୃପତିର ରୂପକୁ ଧଇଲା ।
ଅଙ୍ଗ ଉପାଙ୍ଗ ସକଳ ଉଗ୍ରସେନ ତୁଲ୍ୟ
ଗୋଭିଳ ଦଇତ୍ୟ ହେଲା ଜାଣ ଅବିକଳ ।
ସ୍ୱରଭାଷା ବସ୍ତ୍ରବେଶ ବୟସ ସମାନ
ଯେମନ୍ତେ ମଥୁରାପ୍ରତି ରାଜା ଉଗ୍ରସେନ ।
ଦିବ୍ୟ ମାଳଗନ୍ଧ ବେଶଭୂଷା ହୋଇଥାଇ
ଅବିକଳ ସବୁ କିଛି ଭିନ୍ନାଭିନ୍ନ ନାହିଁ ।
ରାଣୀ ପଦ୍ମାବତୀ ଦେଖି ମନେ ବିଚାରିଲା
ମୋର ପ୍ରାଣନାଥ କିମ୍ପା ଏଠାକୁ ଅଇଲା ।
ଧର୍ମତମା ମହାତମା ମଥୁରା ଈଶ୍ୱର
ରାଜ୍ୟଛାଡ଼ି କି ନିମନ୍ତେ ଆସେ ବନଘୋର ।
ଏମନ୍ତେ ମନେ ଭାଳନ୍ତେ ରାଣୀ ପଦ୍ମାବତୀ
ତକ୍ଷଣେ ବ୍ୟାକୁଳହୋଇ ଡାକେ ପାପମତି ।
ପଦ୍ମାବତୀ ମନେ ଭାଳେ ଚକିତେ ଶଙ୍କିତେ
ସ୍ୱାମୀ ମୋହର କିରୂପେ ବିଜେ ଏ ପର୍ବତେ ।
ଏମନ୍ତ ଭାଳି ଲଜ୍ଜିତା ଦୁଃଖିତା ଆବର
ତଳକୁ ମୁଖକରିଣ କରଇ ବିଚାର ।
ମୁଁ ପାପିନୀ ଦୁରାଚାରୀ ନିର୍ଭୟେ ଭ୍ରମଇ
ଏଣୁ ମୋଠାରେ କୁପିତହେବେ ପ୍ରାଣସାଇଁ ।
ବ୍ୟାକୁଳହୋଇ ଦଇତ୍ୟ ଡାକିଲାଗୋ ପ୍ରିୟେ
ବୃଥା କି ଭାବନା ସଖି କରୁଛ ହୃଦୟେ ।
ଆସ ଆସ ସଖି ଆଉ ବିଳମ୍ବ ନକର
ତୁମ୍ଭବିନା ଏ ଜୀବନଗୋଟା ମୋ ଅସାର ।
ତୋ ବିଚ୍ଛେଦ କୋଟିଯୁଗ ପ୍ରାୟ ମୁଁ ମଣଇ
ତୋ ପ୍ରେମ ଭିକାରୀ ଯେଣୁ ଛାଡ଼ି ନ ପାରଇ ।
ବ୍ରାହ୍ମଣୀ କହଇ ସ୍ୱାମୀ ତାହାର ଶୁଣଇ
ଏରୂପେ ମାୟାବୀ ଦୈତ୍ୟ ମାୟାକଥା କହି ।

ଲାଜେ ବସ୍ତ୍ରେ ପଦ୍ମାବତୀ ଘୋଡ଼ାଇଲା ମୁହଁ
ବଳେ ଦୈତ୍ୟକୋଳକଲାକାମେହୋଇମୋହ ।
ସୁକଳା କହଇ ସେହି ସତୀ ପଦ୍ମାବତୀ
ସମ୍ଭୋଗୁ ଜାଣିପାରିଲା ନୁହଇ ମୋ ପତି ।
ତକ୍ଷଣେ ବସନ ପିନ୍ଧି ମହା ଭୟ ପାଇ
କୋପ ଦୃଷ୍ଟିରେ ତାହାକୁ ଅନାଇ ବୋଲଇ ।
ସତ କହ କିଏ ତୁହି ପାପିଷ୍ଠ ପାମର
ଏମନ୍ତ କହି ଉଚ୍ଚରେ କାନ୍ଦି ରାମାବର ।
ଭୟେତାରଦେହଥରେ ବୋଲେପୁଣିକୋପେ
ନିଶ୍ଚେଁତୋତେ ଜାଳିଦେବି ଆଜି ଅଭିଶାପେ ।
ତୁ ମୋହର ସ୍ୱାମୀରୂପେ କାହୁଁ ତୁ ଅଇଲୁ
ମୋ ଉତ୍ତମ ପତିବ୍ରତା ଧର୍ମ ନାଶ କଲୁ ।
ମୋହର ଜୀବନଯାକ ରଖିଲୁ କଳଙ୍କେ
କି ବୁଦ୍ଧି କରିବି ବୁଡ଼ି ପଡ଼ି ପାପ ପଙ୍କେ ।
ଏମନ୍ତେ ରୋଦନ କରି ଦୈତ୍ୟକୁ କହିଲା
ମୋହର ପ୍ରଭାବ ଏବେ ଦେଖ ତୁରେ ଭଲା ।
ସଦାରୁଣ ଅଭିଶାପ ଦେଖି ନିଶ୍ଚେ ତୋତେ
ଦୀନ ଗୋପୀନାଥ ହରି ପାଦପଦ୍ମ ଚିନ୍ତେ ।
ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ସୁକଳାଚରିତ୍ରେ ପଦ୍ମାବତୀହରଣଂ
ନାମ ଏକୋନପଞ୍ଚାଶୋଽଧ୍ୟାୟଃ ।

## ପଞ୍ଚାଶ ଅଧ୍ୟାୟ

## ପଦ୍ମାବତୀ ପ୍ରତି *ଗୋଭିଳର ପୁଂଶ୍ଚଳୀ ଧର୍ମ କଥନ

ସକଳା କହଇ ସେହି ପଦ୍ମାବତୀ ରାଣୀ
ଶାପ ଦେବାକୁ ଉଦ୍ୟମ କରନ୍ତେ ତା ଜାଣି ।
ଦୈତ୍ୟ ଗୋଭିଳକହିଲା କି ଦୋଷ ମୋହର
ଶାପ ଦେବାକୁ ଉଦ୍ୟମ କରୁ ରାମାବର ।
ମୁଁ କୁବେର ଅନୁଚର ମୋ ନାମ ଗୋଭିଳ
ଦୈତ୍ୟ ଆଚରଣ ଯାକ ଆମ୍ଭର ସକଳ ।
ବେଦ ପଢ଼ିଛି ଉତ୍ତମ ବିଦ୍ୟା ମୁଁ ଜାଣଇ
ଆମ୍ଭ ଆଚରଣ ଶୁଣ ତୋଆଗେ କହଇ ।
ପରଧନ ପର ଦାର ବଳେ ହରୁ ଆମ୍ଭେ
ଦୈତ୍ୟଙ୍କର ଏହି ଧର୍ମ ଜାଣ ତୁ ଗୋ ଶୁଭେ ।

* ଦ୍ରୁମଳାସୁରର - ଅପରନାମ ଗୋଭିଳ

ଏ ଧର୍ମେ ମୁଁ ମତାଙ୍ଗନୀ ବୋଲଣଇ ଜଗତେ
ଏକଥା ସତ କହୁଛି ମୁଁ ତୋର ଅଗ୍ରତେ ।
ବିପ୍ରଙ୍କର ଛିଦ୍ର ଆମ୍ଭେ ଖୋଜୁଥାଉ ନିତି
ତାଙ୍କ ତପ ଜପ କର୍ମ ଭାଙ୍ଗୁ ଆଗୋ ସତୀ ।
ଯାଗ ଯଜ୍ଞ ନାଶକରୁ ଏ ଧର୍ମ ଆମ୍ଭର
ଦେବ ବେଦ ପରାୟଣ ଯେଉଁ ଦ୍ୱିଜବର ।
ଆବର ଯେ ପତିବ୍ରତା ଧର୍ମର ତା ନାରୀ
ଏହାଙ୍କ ତେଜକୁ ଆମ୍ଭେମାନେ ନୋହୁ ସରି ।
ଏହାଙ୍କ ପାଖେ ନ ପଶୁ ରହୁ ଖଣ୍ଡେ ଦୂରେ
ହରି ବୋଲନ୍ତି ମହାତ୍ମା ବ୍ରାହ୍ମଣ ସଂସାରେ ।
ପତିବ୍ରତା ନାରୀ ତେଜ ବିଷ୍ଣୁତେଜୁଁ ବଳି
ସହି ନପାରନ୍ତି ତାହା ଦୈତ୍ୟେହେଲେ ବଳୀ ।
ସୁବ୍ରାହ୍ମଣ ପତିବ୍ରତା ବିଷ୍ଣୁଙ୍କୁ ଯେ ଡ଼ରୁ
ଦୈତ୍ୟେ ଦାନବେ ରାକ୍ଷସେ ପଳାନ୍ତି ଯେ ଦୂରୁ ।
ଏ ମହୀତଳେଦାନବ ଧର୍ମ ଯେ ମୋହର
ତୁ ଶାପ ଦେବାକୁ କହୁ ମନରେ ବିଚାର ।
ଏଥିରେ କିଦୋଷ ମୋର ହେଲାଗୋ ସୁନ୍ଦରୀ
ପଦ୍ମାବତୀ କହିଲେ ଯେ ତାକୁ କୋପକରି ।
ମୋ ପବିତ୍ର ଦେହ ଧର୍ମ ନଷ୍ଟକଲୁ ତୁହି
ପତିକାମା ତପସ୍ୱିନୀ ପତିବ୍ରତା ମୁହିଁ ।
ତୁ ପାପିଷ୍ଠ ଧର୍ମ ନାଶକଲୁ ମାୟାକରି
ନିଶ୍ଚେ ଶାପଦେବି ତୋତେ ଏ ସତ୍ୟମୋହରି ।
ଗୋବିଳ ବୋଇଲା ତୁମ୍ଭେଯେବେ ଇଚ୍ଛାକର
କହୁଅଛି ମୁହିଁ ଏବେ ଧର୍ମ ତୋ ଆଗର ।
ଅଗ୍ନିହୋତ୍ରୀ ଦ୍ୱିଜର ଯେ ଏ ଧର୍ମ ଅଟଇ
ପ୍ରଭାତେ ହୋମକରଇ ଅଗ୍ନିଘରେ ଥାଇ ।
ଅଗ୍ନି ଗୃହକୁ ସେ ଛାଡ଼ି ନପାରଇ ଦିନେ
ଭୃତ୍ୟ ଧର୍ମ କହୁଅଛି ଶୁଣ ବରାନନେ ।
କାୟ ମନ ବାକ୍ୟେ ନିତ୍ୟ ପବିତ୍ର ଯେ ଜନ
ସ୍ୱାମୀ ଯାହା କହେ ତାହା କରଇ ପାଳନ ।
ପ୍ରଭୁ ଆଗେ ଥାଇ କିବା ପଛେ ପଛେ ଥାଇ
ପୁଣ୍ୟଭାଗୀ ଭୃତ୍ୟ ସେହି ଜଗତେ ବୋଲାଇ ।
କାୟ ମନ ବାକ୍ୟେ ଯେଉଁ ଗୁଣବନ୍ତ ପୁତ୍ର
ପିତା ମାତାଙ୍କୁ ପାଳଇ ସେ ଅତି ପବିତ୍ର ।
ଭାଗିରଥୀ ନଦୀ ସ୍ନାନ କଲାଫଳ ପାଇ
ଅନ୍ୟଥାକାରୀ ଯେ ପୁତ୍ର ପାପଭାଗୀ ହୋଇ ।

ଏଥିରେ ସନ୍ଦେହନାହିଁ ଜାଣିଥା ଭାମିନୀ
ପତିବ୍ରତା ଧର୍ମ ଶୁଣରେ ବରବର୍ଣ୍ଣିନୀ ।
କାୟ ବାକ୍ୟଧର୍ମେ ଯେଉଁ ନାରୀ ଦିନେ ଦିନେ
ସ୍ୱାମୀର ସେବା ଶୁଶ୍ରୁଷା କରେ ଏକମନେ ।
ସ୍ୱାମୀର ସନ୍ତୋଷେ ସେହି ସନ୍ତୋଷ ହୁଅଇ
ସ୍ୱାମୀ କ୍ରୋଧକଲେ ତାକୁ ଛାଡ଼ି ନ ଆସଇ ।
ସ୍ୱାମୀ ମାଇଲେ ତା ଦୋଷ ନ ଧରଇ ମନେ
ସ୍ୱାମୀର ସନ୍ତୋଷ ଉପୁଜାଇ ଦିନେ ଦିନେ ।
ସବୁ କାର୍ଯ୍ୟରେ ସ୍ୱାମୀର ହୁଏ ଆଗଭର
ସେହି ନାରୀ ପତିବ୍ରତା ନାରୀମଧ୍ୟେ ସାର ।
ପିତାଯେବେଦୋଷୀପାପିଖିଣକୋପିହୋଇ
ପୁତ୍ର ସେବା କରୁଥାଇ କ୍ଷଣେ ନ ଛାଡ଼ଇ ।
ବିଷ୍ଣୁର ପରମ ପଦ ପାଇ ଦେହ ଅନ୍ତେ
ଏରୂପେ ପ୍ରଭୁର ସେବା କରୁଥିବା ଭୃତ୍ୟେ ।
ଦେହ ଅନ୍ତେ ଏହି ଗତି ହୁଏ ତାହାଙ୍କର
ସ୍ୱାମୀ ସେବା କରୁଥିବା ନାରୀମାନଙ୍କର ।
ସ୍ୱାମୀ ପରସାଦେ ଶେଷେ ପତିଲୋକ ପାଇ
ଅଗ୍ନି ନ ତେଜିବା ବିପ୍ର ବ୍ରହ୍ମଲୋକ ଯାଇ ।
ବୃଷଳୀପତି ବୋଇଲା ଦ୍ୱିଜ ଅଗ୍ନିତ୍ୟାଗୀ
ପ୍ରଭୁ ଦୋରେହା ବୋଲାଇଭୃତ୍ୟ ପ୍ରଭୁତ୍ୟାଗୀ ।
ଏଣୁ ଏମାନେ ଏହାଙ୍କୁ ନତେଜିବେ କେଭେ
ତେଜିଲେ ଦେହାନ୍ତେ ନର୍କକୁଣ୍ଡରେ ପଡ଼ିବେ ।
ଇହ ପର ଲୋକ ସୁଖ ବାଞ୍ଛାକଲେ ନାରୀ
ସ୍ୱାମୀ ରୋଗୀ ହେଉ କିବା ହେଉ ପାପକାରୀ ।
ଖୋଡ଼ୀ କର୍ମକୋଢ଼ୀ ହେଉ ପତିତ ବିକଳ
ବିଧର୍ମୀ ହେଉ ସେ ଅବା ନିର୍ଧନୀ ଚାଣ୍ଡାଳ ।
ଯାହା ତାହା ହେଉ ତାକୁ ନତେଜିବ ସତୀ
ସ୍ୱାମୀ ସେବାରେସେ କାଟୁଥିବ ଦିବାରାତି ।
ସ୍ୱାମୀକି ତେଜି ହୁଏ ସେ ସ୍ୱଇଚ୍ଛାଚାରିଣୀ
ପୁଂଶ୍ଚଳୀ ତାକୁ ବୋଲନ୍ତି ଜଗତର ପ୍ରାଣୀ ।
ସବୁକର୍ମରୁ ବାହାର କରି ଦ୍ୟନ୍ତି ତାକୁ
ବେଦ ବେଦାନ୍ତର ଧର୍ମ କହିଲି ତୁମ୍ଭଙ୍କୁ ।
ଭର୍ତ୍ତା ନଥିବା ସମୟେ ଗୁପତେ ଯେ ନାରୀ
ପର ପୁରୁଷର ସଙ୍ଗେ ସୁଖ ଭୋଗ କରି ।
ସକଳ ଲୋକେ ତାହାକୁ ପୁଂଶ୍ଚଳୀ ବୋଲନ୍ତି
ଦାନବ ରାକ୍ଷସ ପ୍ରେତ ସୃଷ୍ଟି ପ୍ରଜାପତି ।

ଯହିଁ ପାଇଁ କରିଛନ୍ତି ଶୁଣ ତା କାରଣ
ଦାନବ ପିଶାଚ ପ୍ରେତ ରାକ୍ଷସ ବ୍ରାହ୍ମଣ ।
ଏ ସମସ୍ତେ ଧର୍ମ ଶାସ୍ତ୍ର ଅର୍ଥକୁ ଜାଣନ୍ତି
ତହିଁରେ ଯା ଲେଖାଅଛି ତାହା ନକରନ୍ତି ।
କେବଳ ବିପ୍ର କରନ୍ତି ବେଦ ବିଧିମାନ
ଦାନବ ଆଦି ଏମାନେ କରି ତା ବର୍ଜନ ।
ବିଧି ବିଧାନ ବର୍ଜିତ ମାନବହିଁ ଯେତେ
କିଛି ନମାନି ଗମନ୍ତି ଅନୀତିର ପଥେ ।
ତାଙ୍କୁ ଶାସନ କରିବାପାଇଁ ତାଙ୍କ ସୃଷ୍ଟି
ବେଦରେ ଲେଖା ହୋଇଛି ଯେଉଁ କର୍ମଇଷ୍ଟି ।
ନାନା ଦଣ୍ଡ ତାଙ୍କୁ ଆମ୍ଭେ ଦେଉଥାଉଁ ନିତି
ଦାରୁଣ କର୍ମ କରିଛୁ ତୁଗୋ ପଦ୍ମାବତୀ ।
ସ୍ୱାମୀକି ଛାଡ଼ି ରହିଲୁ ଆସି ବାପଘରେ
ସ୍ୱାମୀ ମୋହର ଦେବତା କହୁଛୁ ମୁହଁରେ ।
ତୁ ଯେଉଁ କର୍ମ କରୁଛୁ ବାପଘରେ ରହି
ଏଣେ ପତିବ୍ରତା ବୋଲି ନକହିବେ କେହି ।
ସ୍ୱାମୀକି ଛାଡ଼ି ବୁଲୁଚୁ କହ କି ନିମନ୍ତେ
ସଖୀଗଣ ଘେନି କ୍ରୀଡ଼ା କରୁଛୁ ବନସ୍ତେ ।
ସମ୍ଭୋଗର ଉପଯୁକ୍ତ ବେଶଭୁଷା ତୋର
ମୁହଁରେ କହୁ ଯେ ପତି ଦେବତା ମୋହର ।
କାର୍ଯ୍ୟ ତୋହର ସକଳ ଅସତୀଙ୍କ ପରି
ଏଣୁ ମୁଁ ତୋତେ ବୋଲଇ ପାପିନୀ ପାମରୀ ।
ଏବେଶଭୂଷା ତୋହର କହ କାହିଁପାଇଁ
ସଖୀଘେନି କହ ବନେ ବିହରୁ କିପାଇଁ ।
କହ ଦେଖି ନିର୍ଭୟରେ ହୋଇ ଉନମତ୍ତା
ଗିରି କାନନେ ବିହରୁ ନୋହୁ ପତିବ୍ରତା ।
ଏଣୁ ମୁହିଁ ଗୁରୁଦଣ୍ଡ ଦେଇଛିଲୋ ତୋତେ
ତୁ ଶାପ ଦେବାକୁ ପୁଣି ବିଚାରୁଛୁ ମୋତେ ।
ବେଦ ବିହିତ ସତୀର ଧର୍ମ ନାହିଁ ତୋର
ସ୍ୱାମିକି ନ ଛାଡ଼େ ପତି ଦେବତା ଯାହାର ।
ତୁ ଅନାଚାରିଣୀ ଦୁଷ୍ଟା ଅଟୁଲୋ ଅସତୀ
କେମନ୍ତେ ଦେବତା ତୋର ଅଟଇଲୋ ପତି ।
ଏକଥାଗୋଟାଦେଖାଇ ଦେଉକିନା ମୋତେ
ପୁଂଶ୍ଚଳୀ ବିନାକେ ସତୀ କହିବିଲୋ ତୋତେ ।
ବେଶ୍ୟାର ଯେ ଆଚରଣ ସେସବୁ ତୋହର
ଜଳକେଳି କରୁ ପଶି ପୋଖରୀ ଭିତର ।

ଫୁଲ ତୋଳୁ ହାର ଗୁନ୍ଥୁ ଗାଉପୁଣି ଗୀତ
ନାନାଖେଳ କଉତୁକ ସଖୀଙ୍କ ସହିତ ।
ସତୀ ଗର୍ବକରୁ ତୋତେ ଲାଜ ମାଡୁନାହିଁ
ନିର୍ଲ୍ଲଜ୍ଜା ବେଶ୍ୟା ପରାୟ ବୁଲ ସାଇ ସାଇ ।
ସ୍ୱାମୀ ଶେଯ ଛାଡ଼ି ନାରୀ କଲେ ଆନଶେଯ
ସ୍ୱଚ୍ଛାଚାରିଣୀ ହୋଇଲା ଚାଲିଗଲା ଲାଜ ।
ତେଣୁ ତାହାକୁ ପୁଂଶ୍ଚଳୀ ବୋଲନ୍ତି ଜଗତେ
ପତିବ୍ରତା ଧର୍ମ ଶୁଣ କହୁଛି ଲୋ ତୋତେ ।
ପତିଯେବେ ଛାଡ଼ିଯାଇ ରହଇ ବିଦେଶେ
ଲୁଖୁରା ରହିବ ତେଲ ନ ମାରିବ କେଶେ ।
ଅଳଙ୍କାର ନ ପିନ୍ଧିବ ଭୂମିରେ ଶୋଇବ
ପରପୁରୁଷକୁ ମୁଖ ଟେକି ନ ଚାହିଁବି ।
ଭଲଦ୍ରବ୍ୟ ଦେଖି ମନ ନକରିବ କେଭେ
ଏ ଧର୍ମ ତୋହର ନାହିଁ ଭ୍ରମୁ ମତ୍ତଗର୍ବେ ।
ତୁ ଶାପଦେଲେ କଦାପି ନ ଫଳିବ ମୋତେ
ଉଚିତ ଶାସ୍ତି ମୁଁ ଯେଣୁ ଦେଇଅଛି ତୋତେ ।
ତପବଳ ତେଜବଳ କିଛିନାହିଁ ତୋର
ତୁ ଶାପଦେଲେ ତହିଁରେ କିହେବ ବା ମୋର ।
ଧର୍ମବଳ ଥିଲେ ଶାପ ଦେଉ କିନା ତୁହି
ତହିଁପାଇଁ ତିଳେମାତ୍ର ମୋର ଭୟନାହିଁ ।
ପଦ୍ମାବତୀ ବୋଇଲେରେ ଅଧମ ଅସୁର
ସ୍ୱାମୀ ଆଦେଶେ ଆସିଛି ମୁହିଁ ବାପଘର ।
ନାହିଁରୋକି ପାପ ମୋର ହେଲା କହୁ ତୁହି
ଜଳକ୍ରୀଡ଼ା କରିବାକୁ ଆସିଥିଲି ମୁହିଁ ।
ପିତା ମୋତେ ଆଣିଛନ୍ତି ଦେଖିବା ନିମେନ୍ତ
କାମକ୍ରୋଧ ଲୋଭମୋହ ଗର୍ବ ଆଦି ଯେତେ ।
ଏ ସବୁ ଛାଡ଼ି ସ୍ୱାମୀରେ ତହିଁ ରଖି ମନ
କଉତୁକେ ଖେଳଖେଳେ ଘେନି ସଖୀଗଣ ।
ତୁ ପାମର କପଟରେ ସ୍ୱାମୀରୂପ ଧରି
ମୋର ଧର୍ମ ନାଶକରି କହୁ ସାଧୁପରି ।
ସ୍ୱାମୀ ମନେକରି ତୋତେ ଦେଲଇ ମୁଁ ଅଙ୍ଗ
ପାପିଷ୍ଠ ଦାନବ ତୋର କାହିଁ ସାଧୁ ସଙ୍ଗ ।
ବୁଝିପାରିଥିଲେ ତୋର ମାୟାରେ ପାମର
ହୁଁକାରେ କରିଥାନ୍ତି ମୁଁ ଭସ୍ମ ତୋ ଶରୀର ।
ମୋତେ ଅସତୀ କହୁଛୁ ତୋତେ ଲାଜନାହିଁ
ଦୈତ୍ୟଦାନବଙ୍କ ମୁଖେ ବେଦ ଧର୍ମକାହିଁ ।

ଧିକ୍ ପାମର ତୁ କହୁ ଦଣ୍ଡଦେଲି ତୋତେ
କୁବେରଦେବତା ଭୃତ୍ୟବୋଲି କହୁମୋତେ ।
ଗୋଭିଳ ବୋଇଲା ତୋର ଜ୍ଞାନ ଚକ୍ଷୁକାହିଁ
ଧର୍ମବଳ ତେଜୋବଳ ତପୋବଳ ନାହିଁ ।
ତେଣୁ ତୁହି ମୋତେ ଜାଣିପାରିବୁ କେମନ୍ତେ
ବାପଘରେ ଉପୁଜିଛି ଯେ ଭାବ ତୋ ଚିତ୍ତେ ।
କହୁଛି ତା ଶୁଣ ଏବେ ହୋଇ ସାବଧାନ
ସ୍ୱାମୀ ଛାଡ଼ିବାରୁ ଛାଡ଼ିଗଲା ସ୍ୱାମୀ ଧ୍ୟାନ ।
ଧ୍ୟାନ ଛାଡ଼ିବାରୁ ତୋର ଜ୍ଞାନଗଲା ହଜି
ଜ୍ଞାନ ହଜିବାରୁ ମାୟା ନପାରିଲୁ ବୁଝି ।
ମାତା ପିତା ଭାଇବନ୍ଧୁ ବାନ୍ଧବ କାହାର
ନାରୀର କେବଳ ସ୍ୱାମୀ ଜୀବନର ସାର ।
ଏହାକହି ସେ ଦାନବ ଅଧମ ଗୋଭିଳ
ହସି ବୋଇଲା ପୁଂଶ୍ଚଳୀ ନୁହ ତୁ ବିକଳ ।
ତୋ ଶାପକୁ ତିଳେମାତ୍ର ଭୟ ନାହିଁ ମୋର
ବୃଥା ଗପୁଛୁ କିପାଇଁ ବେଶ୍ୟା ନାରୀବର ।
ଥରୁଛୁ ଡରାଉ ଅଛୁ ନ ଡରଇ ମୁହିଁ
ମୋର କଥା ମାନି କର ମୋର ବୋଲତୁହି ।
ମୋ ସଙ୍ଗେଆସ ଘରକୁ ଯିବାଗୋ ମୋହର
ଆନନ୍ଦରେ ରହି ଭୋଗ ଉପଭୋଗ କର ।
ପଦ୍ମାବତୀ ବୋଲେ ଦୂରେ ରହ ପାପାଚାରୀ
ଲାଜ ମାଡୁନାହିଁ ଏହା କହୁଛୁ କିପରି ।
ପୁରୁଷ ହତ୍ୟା ଦୋଷକୁ ଡରୁଛିରେ ପାପ
ପୋଡ଼ି ଦିଅନ୍ତି ଏକ୍ଷଣି ଦେଇ ତୋତେ ଶାପ ।
ଏମନ୍ତ କହି ସୁନ୍ଦରୀ ବସେ ମୁଖପୋତି
ଗୋଭିଳ ଦଇତ୍ୟ କହେ ଶୁଣ ଆଗୋ ସତୀ ।
ତୋହର ଗର୍ଭେ ରହିଲା ଯେବଣ କୁମର
ଚଉଦ ବ୍ରହ୍ମାଣ୍ଡ ଜୟ କରିବ ସେ ବୀର ।
ପ୍ରତାପୀ ବଳିଷ୍ଠ ଦୈତ୍ୟ ହେବଏ ସଂସାରେ
ଦେବ ଦାନବେ ଖଟିବେ ତାହାର ପୟରେ ।
ତାହାର ମୁହଁରେ କେହି ନକହି ପାରିବେ
ତାହାକୁ ଦେଖିବାମାତ୍ରେ ସକଳେ ଡରିବେ ।
ଏମନ୍ତ କହି ଦାନବ ବେଗେ ତହୁଁ ଗଲା
ପଦ୍ମାବତୀ ରାଣୀ ବସି ତହିଁ ଶୋକ କଲା ।
ହରି ହରି ବୋଲ ଭାଇ ହରୁ ସର୍ବ ଦୁଃଖ
ଦ୍ୱିଜଗୋପୀନାଥ ସଦା ଭଜେ ପଦ୍ମମୁଖ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ
ବେନୋପାଖ୍ୟାନେ ସୁକଳାଚରିତ୍ରେ
ପଦ୍ମାବତୀ ହରଣଂ ନାମ
ପଞ୍ଚାଶୋଽଧ୍ୟାୟଃ ।



## ଏକପଞ୍ଚାଶ ଅଧ୍ୟାୟ

### କଂସଜନ୍ମ

ବ୍ରାହ୍ମଣୀ କହଇ ଶୁଣ ତହୁଁ ସଖୀଗଣ
ତହୁଁଯାନ୍ତେ ଦୁରାଚାର ଦାନବ ଅଧମ ।
ଅତି ଦୁଃଖେ ପଦ୍ମାବତୀ ଶୋକକଲା ବସି
ରୋଦନ ଶୁଣି ତହିଁକି ସଖୀଗଣ ଆସି ।
ରାଜକନ୍ୟାକୁ ପୁଚ୍ଛିଲେ କାହୁଁକି ନିମନ୍ତେ
ମଥୁରାଧିପତି କେଣେ ଛାଡ଼ିଗଲେ ତୋତେ ।
କି ଅମଙ୍ଗଳ ହୋଇଲା କହଲୋ ସଜନି
ପୁଣି ପୁଣି ଉଚ୍ଚେ କାନ୍ଦେ ପଦ୍ମାବତୀ ରାଣୀ ।
କହନ୍ତି ସଖୀଙ୍କି ଚାହିଁ ଗଦଗଦ ସ୍ୱରେ
ଘଟଣାଯାକ କହିଲେ ତାହାଙ୍କ ଆଗରେ ।
ପିତାର ଗୃହକୁ ଘେନିଗଲେ ସଖୀଗଣ
ଅନେକ ପ୍ରବୋଧକରି କହିଲେ ବଚନ ।
ତା ମାତାଆଗେ କହିଲେ ସଖୀଗଣ ଯାଇଁ
ରାଜାର ପାଶେ କହିଲେ ଯାଇ ମହାଦେଈ ।
ରାଜା ସତ୍ୟକେତୁ ଶୁଣି ହୋଇଲେ ଚକିତ
ସେକଥା କିଛି ନକହି କଲେ ତା ଗୁପତ ।
ଯାନ ଆଚ୍ଛାଦନ ଧନ ବସନ ଦେଇଣ
ଝିଅକୁ ପଠାଇଦେଲେ ମଥୁରା ଭୁବନ ।
ପିତାମାତା କନ୍ୟାଦୋଷ ରଖିଲେ ଗୁପତେ
ପଦ୍ମାବତୀରାଣୀ ସ୍ୱାମୀ ଗୃହରେ ମିଳନ୍ତେ ।
ଆନନ୍ଦହୋଇଲେ ଦେଖି ରାଜା ଉଗ୍ରସେନ
ବୋଇଲେଲୋ ବରାନନେ ରହିଲା ଜୀବନ ।
ପ୍ରିୟେ ତୋ ପତି ଭକତି ପତିବ୍ରତା ଗୁଣ
ସତ୍ୟ ସ୍ୱଭାବ ଆଦିରେ ଅଟୁଗୋ ନିପୁଣ ।
ରାଣୀକି ଏରୂପେ ଚାଟୁ କହିଣ ନୃପତି
ପଦ୍ମାବତୀ ସହବାସେ ହରିଲେସେ ରାତି ।
ସର୍ବଲୋକ ଭୟପ୍ରଦ ସେ ଗର୍ଭୁ ଦାରୁଣ
ବଢ଼ନ୍ତେ ରାଣୀରଦିଶେ ଗର୍ଭର ଲକ୍ଷଣ ।

ବେଳୁଁ ବେଳ ବଢ଼ନ୍ତେ ତା ଜାଣି ପଦ୍ମାବତୀ
ମନେ ବିଚାରିଲେ ପୁତ୍ର ହେବ ଉତପତ୍ତି ।
କୁବେର ଅନୁଚର ସେ ତାହାର ବଚନ
ଆନ ନୋହିବ ନିଶ୍ଚୟ ହୋଇବ ନନ୍ଦନ ।
ଲୋକ ନାଶକାରୀ ହେବ ଦୁଷ୍ଟପଣ କରି
ଏମନ୍ତ ପୁତ୍ର ଜନମେ କି ଫଳ ମୋହରି ।
ଏମନ୍ତ ଭଳି ଅନେକ ଔଷଧ ଖାଇଲା
ଗର୍ଭଭାଙ୍ଗି ଯିବାପାଇଁ ଯତନ ସେ କଲା ।
ଗର୍ଭଭାଙ୍ଗି ବା ଓଷଧି ଯେ ସବୁ ଜାଣନ୍ତି
ତାଙ୍କୁ ପଚାରି ଓଷଧି ଖାଏ ପଦ୍ମାବତୀ ।
ନାନାଦି ଉପାୟକଲା ଗର୍ଭ ନ ଭାଙ୍ଗିଲା
ବେଳୁଁବେଳ ସେ ଦାରୁଣ ଗର୍ଭଯେ ବଢ଼ିଲା ।
ସେ ଦାରୁଣ ଗର୍ଭୁ ସର୍ବଲୋକ ଭୟଙ୍କର
ଗର୍ଭରେ ରହିଛି ଯଉଁ ଦାରୁଣ କୁମର ।
ପଦ୍ମାବତୀ ଗର୍ଭେଥାଇ ବୋଇଲାଲୋ ମାତ
କିମ୍ପା ମୋଦେହେ ବହୁତ ବ୍ୟାଥାକରୁ ଜାତ ।
ନାନା ପ୍ରକାର ଓଷଧି ଖାଉପୁଣି ନିତି
ପ୍ରାଣୀର ଆୟୁଷ ପୁଣ୍ୟେ ବଢ଼ଇଲୋ ସତୀ ।
ପାପରେ ପ୍ରାଣିମାନଙ୍କ ଆୟୁଷ ତୁଟଇ
କର୍ମ ଅନୁସାରେ ପ୍ରାଣୀ ଜୀଅଇ ମରଇ ।
ଓଷଧି ମନ୍ତ୍ର ଦେବତା ଦାନ ପୁଣ୍ୟ ଯେତେ
ନିମିତ୍ତ ମାତ୍ର କେବଳ ଜାଣ ଏ ଜଗତେ ।
ମୁହିଁ ଯେ କିଏ ତୁମ୍ଭେଁ ବା ଜାଣିବ କେମନ୍ତେ
ଦେଖିଛ କି କାଳନେମି ଦାନବଙ୍କୁ ନେତ୍ରେ ।
ମହାବଳ ଦାନବ ସେ ବିଦିତ ସଂସାରେ
ତାକୁ ନଜାଣିବା ଲୋକ ନାହିଁ ତିନିପୁରେ ।
ମୁହିଁ ସେହି କାଳନେମି ଦାନବ ପ୍ରଧାନ
ବଳବୀର୍ଯ୍ୟ ପରାକ୍ରମେ ନାହିଁ ମୋ ସମାନ ।
ତ୍ରଇଲୋକ୍ୟ ଭୟପ୍ରଦ ମୁହିଁ ଯେ ଅଟଇ
ଦେବାସୁର ଘୋରଯୁଦ୍ଧ ଯେ କାଳେ ହୁଅଇ ।
ବିଷ୍ଣୁ ମୋତେ ମାରିଛନ୍ତି କରି ଘୋରରଣ
ପ୍ରାଣର ବଇରୀ ମୋର ଦେବ ନାରାୟଣ ।
ତୋ ଗର୍ଭେ ରହିଛି ଆସି ବିଷ୍ଣୁକୁ ମାରିବି
ତୁ ଓଷଧି ଖାଇଲେ କି ତହିଁରେ ମରିବି ।
ଏଣୁ ତୁ ମାତ ନକର ଏ ବୃଥା ସାହାସ
ଗର୍ଭେଥିବା ଶିଶୁର ଯେ ଶୁଣିଣ ଏ ଭାଷ ।

ଅତି ଦୁଃଖିତା ହୋଇଲା ପଦ୍ମାବତୀ ରାଣୀ
ଓଷଧି ନଖାଇ କଷ୍ଟ ସହିଲା ସେ ପୁଣି ।
ଦଶବର୍ଷ ଯାଏ ଗର୍ଭେ ସେ ଶିଶୁ ବଢ଼ିଲା
ମହାତେଜା ମହାବଳ କଂସ ଉପୁଜିଲା ।
ତ୍ରିଭୁବନବାସୀଙ୍କି ସେ ଦେଇଥିଲା ଭୟ
ଶ୍ରୀ ବାସୁଦେବଙ୍କ ହସ୍ତେ ଗଲା ପୁଣି କ୍ଷୟ ।
ଭବିଷ୍ୟତ ଘଟଣା ଏ ଶୁଣିଛି ହେ କାନ୍ତ
ସବୁ ପୁରାଣେ ରହିବ ଏ ସବୁ ବୃତ୍ତାନ୍ତ ।
ଝିଅକୁ ଘରେ ରଖିଲେ ନିଶ୍ଚେ ହୁଏ ଭ୍ରଷ୍ଟ
ନିର୍ବନ୍ଧେ ରଖିପାରିଲେ ନୁହଇ ସେ ନଷ୍ଟ ।
ଏଣୁ ମୁଁ କହୁଛି ନାଥ ଏ ଦୁଷ୍ଟଙ୍କୁ ବେଗେ
ବାହାରକରି ଦିଅନ୍ତୁ ଯାଉ ଏ କୁମାର୍ଗେ ।
ମହାଦୁଃଖ ମହାପାପ ଭୋଗିବ ନିଶ୍ଚୟ
ଏ ଦୁହିତା ଯୋଗୁଁ ସବୁପୁଣ୍ୟ ଯିବ କ୍ଷୟ ।
ତ୍ୟାଗକର ବେଗେ ନାଥ ବିଳମ୍ବ ନକର
ମୋତେ ଘେନି ନିଶ୍ଚିନ୍ତରେ ସୁଖେକର ଘର ।
ଶୁକରୀ କହିଲା ଶୁଣି ସେହି ବିପ୍ରମଣି
ଦୁହିତାକୁ ଆପଣାର ପାଖେ ଡାକିଆଣି ।
ବୋଇଲେ ତୋର ବସନ ଭୂଷଣ ତୁ ଘେନି
ମୋ ଘରୁ ବାହାରିଯାଅ କୁଳ କଳଙ୍କିନୀ ।
ଶିବଶର୍ମା ଦ୍ୱିଜପ୍ରାୟ ସ୍ୱାମୀକି ନଭଜି
ଆନ ପୁରୁଷର ସଙ୍ଗେ ଦିନରାତି ମଜ୍ଜି ।
ତୋର ଏହି ଆଚରଣ ଦେଖି ତୋର ପତି
କିଛି ନକହି ପଳାଇଗଲା ରାତାରାତି ।
ତୋ ସ୍ୱାମୀପାଖକୁ ତୁହି ଯାଅଲୋ ପାମରୀ
ତୋର ମୁଖ ନ ଚାହିଁବି ଏ ସତ୍ୟ ମୋହରି ।
ତୋର ଇଚ୍ଛା ଯହିଁ ତହିଁ ରହ ତୁଲୋ ଯାଇ
ନିର୍ଲଜ୍ଜା ପ୍ରାୟ ମୁଁ ତହୁଁ ଗଲଇ ପଳାଇ ।
ବନ୍ଧୁକୁଟୁମ୍ବହିଁ କେହି ପାଖେ ନରଖିଲେ
ଆଖପାଖ ଲୋକେ ମୋତେ ମାର ମାର କଲେ ।
ପୁଂଶ୍ଚଳୀବୋଲିସମସ୍ତେ ଡାକିଲେଯେମୋତେ
ପତିଥାଉ ବେଶ୍ୟାପଣ କରେ ଏହି ରାତ୍ରେ ।
ଏହାର ମୁଖ ଚାହିଁଲେ ହେବ ମହାଦୋଷ
କୁଳମାନ ତେଜି ମୁହିଁ ଛାଡ଼ିଲି ସେ ଦେଶ ।
ଗୁର୍ଜ୍ଜର ଦେଶରେ ଅଛି ସୌରାଷ୍ଟ୍ର ପ୍ରଦେଶ
ସମୃଦ୍ଧ ନାମେ ନଗର ଅଛି ତାର ପାଶ ।

ଏକଇ ଶିବମନ୍ଦିର ତହିଁରେ ଅଛଇ
କ୍ଷୁଧାରେ ବହୁତ କଷ୍ଟ ମୁହିଁ ପାଇ ଯାଇଁ ।
ସେ ଶିବମନ୍ଦିର ଆଶ୍ରା କରିଣ ରହିଲି
କ୍ଷୁଧାତୃଷାରେ ପୀଡ଼ିତ ହୋଇ ମୁଁ ପଡ଼ିଲି ।
ତହୁଁ କିହେଲା ତା ଶୁଣ ଆଗୋ ମହାଦେଈ
ଖପରା ଖଣ୍ଡିଏ ଧରି ଭିକମାଗି ଯାଇ ।
ଅତିକଷ୍ଟେ ଅତିଦୁଃଖେ ରହି ଦ୍ୱାରେ ଦ୍ୱାରେ
ମୋରୂପ ଦେଖିଣ ନିନ୍ଦା କରୁଥାନ୍ତି ନରେ ।
ଏ ପାପିନୀ ଆସିଅଛି ଭିକ ମାଗିବାକୁ
ଯାମୁଖ ନଚାହିଁ ଭିକ ନଦିଅ ଏହାକୁ ।
ଏରୂପେ ବହୁତ ଦୁଃଖ ବୁଲି ବୁଲି ପାଇ
ଏକ ଜଣକର ଘରେ ପହୁଞ୍ଚିଲି ଯାଇ ।
ଘର ବାହାରେ ପାଚେରୀ ଅତି ଉଚ୍ଚ ତାର
ବେଦ ଶବଦରେ ପୂରିଅଛି ସେହି ଘର ।
ବେଦପଢ଼ା ଦ୍ୱିଜେ ବେଦ ପଢୁଛନ୍ତି ବସି
ବହୁତ ଅଛନ୍ତି ତହିଁ ପୁଣି ଦାସ ଦାସୀ ।
ଧନ ଧାନ୍ୟରେ ପୂରିଛି ସେହି ଘର ଦ୍ୱାର
ସେ ସୁନ୍ଦର ଘର ଲକ୍ଷ୍ମୀ ଠାକୁରାଣୀଙ୍କର ।
ଏମନ୍ତ ଭାଳି ସେ ଗୃହ ଦ୍ୱାରକୁ ମୁଁ ଗଲି
ଦ୍ୱାରେ ଥାଇଁ ଭିକଦିଅବୋଲି ମୁଁ ବୋଇଲି ।
ମୋର ସ୍ୱାମୀ ଶିବଶର୍ମା ଦ୍ୱିଜର ସେ ଘର
ସାକ୍ଷାତେ ଲକ୍ଷ୍ମୀସ୍ୱରୂପା ଘରଣୀ ତାହାର ।
ତାନାମ ମଙ୍ଗଳା ପୁଣି ସେ ଅତି ସୁନ୍ଦରୀ
ଶିବଶର୍ମା ଭାରିଯାକୁ କହେ ହସି କରି ।
ଏହି ଦୁର୍ବଳା ଅବଳା ଭିକମାଗେ ଦ୍ୱାରେ
ଏହାକୁ ଡାକି ଭୋଜନ ଦିଅ ତୁଗୋ ବାରେ ।
ତାହାଶୁଣି ମଙ୍ଗଳାର ଦୟା ଉପୁଜିଲା
ଖାଇବାକୁ ଦେଉଛି ମୁଁ ସ୍ୱାମୀକି କହିଲା ।
ସ୍ୱାମୀକି କହି ମଙ୍ଗଳା ଗଲା ବେଗେ ଘରେ
ମିଷ୍ଟାନ୍ନ ପରଷିଦେଲା ମୋ ଭିକ୍ଷାପାତ୍ରରେ ।
ପେଟ ପୂରାଇଣ ତାହା ଖାଇହେଲି ତୋଷ
ଏଥୁଅନ୍ତେ ଶିବଶର୍ମା ଅଇଲେ ମୋ ପାଶ ।
ବୋଇଲେକି ଜାତି ତୁମ୍ଭେ ଅଟକାହା ନାରୀ
ଏଠାକୁ କିମ୍ପା ଆସିଲ କହ ସତ କରି ।
ସେ ମହାତମା ସ୍ୱାମୀର ବଚନ ଶୁଣିଲି
ତା ସ୍ୱରବାରି ମୋ ସ୍ୱାମୀବୋଲି ମୁଁ ଚିହ୍ନିଲି ।
ମୁଁ ପାପିନୀ ଲାଜେ କଲି ତଳକୁ ବଦନ
ସେ ଚାରୁଗାତ୍ରୀ ମଙ୍ଗଳା କରି ଦରଶନ ।
ଭୋସ୍ୱାମୀ ଏବାଳା କିମ୍ପା ଲଜ୍ଜାକଲା ତୋତେ
ଏ ନାରୀ କିଏ ତା କୃପାକରି କହ ମୋତେ ।
ଶିବ ଶିବ ହରି ହରି ଧର୍ମ ଧର୍ମ କହି
ଭଜେ ଦ୍ୱିଜ ଗୋପୀନାଥ ଦେବ ଭାବଗ୍ରାହୀ

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ସୁକଳାଚରିତ୍ରେ ଶୂକରୀ-
ପୂର୍ବଜନ୍ମ କଥନଂ ନାମ
ଏକପଞ୍ଚାଶୋଽଧ୍ୟାୟଃ ।



## ଦ୍ୱିପଞ୍ଚାଶ ଅଧ୍ୟାୟ

### ପତିଗୃହେ ସଉତୁଣୀର ପତିବ୍ରତ ଦର୍ଶନେ ସୁଦେବାର ପଶ୍ଚାତ୍ତାପ

ଶିବଶର୍ମା ଦ୍ୱିଜ କହେ ଆଗୋ ବରାନନେ
ଯାହା ପଚାରିଲ ତାହା ଶୁଣ ସାବଧାନେ ।
ଏହି ଯେ ଭିକ୍ଷାରୂପିଣୀ ବରାକୀ ଅଛଇ
ବସୁଦତ୍ତ ଦ୍ୱିଜର ଏ ଦୁହିତା ଅଟଇ ।
ଏହାର ନାମ ସୁଦେବା ଭାରିଯାଏ ମୋର
ମୋ ବିଚ୍ଛେଦ ଅନଳେ ଏ ଦଗ୍ଧ ନିରନ୍ତର ।
ମୁଁ ଏଠାରେ ଥିବା ଜାଣି ଆସିଅଛି ଏଥେ
ଭିକାରି ରୂପରେ ତୁମ୍ଭ ଗୃହେଗୋ ସୁବ୍ରତେ ।
ମୋହର ପ୍ରିୟ କାମନା ଯେବେ ଇଚ୍ଛାକର
ଉତ୍ତମରୂପେ ସତ୍କାର କରଗୋ ଏହାର ।
ପତିବ୍ରତା ସେ ମଙ୍ଗଳା ସ୍ୱାମୀକଥା ଶୁଣି
ଅତି ଆନନ୍ଦରେ ଯାଇ ସେଠାରୁସେ ପୁଣି ।
ସ୍ନାନ କରାଇଣ ଦେଲା ପିନ୍ଧିବାକୁ ବାସ
ଖାଇବାକୁ ଦେଲା ପୁଣି ଶୋଇବାକୁ ବାସ ।
ସ୍ୱାମୀ ତହୁଁ ଏହିରୂପେ ମାନ୍ୟ ମୁହିଁ ପାଇ
ଲାଜେ ପଙ୍କେ ବୁଡ଼ିମଲି ଆଗୋ ମହାଦେଈ ।
ମହାକଷ୍ଟ ଉପୁଜିଲା ମନରେ ମୋହର
ମଙ୍ଗଳାର ଦେଖି ଏହିରୂପେ ସମାଦର ।
ନିଜଦୁଃଖ ଅନୁଭବ କରି କରି ମୁହିଁ
ଦାରୁଣ ଚିନ୍ତା ଦହିଲା ଏମୋହର ଦେହୀ ।

ଚିନ୍ତାରେ ବାହାରିଗଲା ଏ ପିଣ୍ଡିରୁ ପ୍ରାଣ
ଭାବିଲି ହୃଦୟ ମୋର କେଡ଼େ ନିଦାରୁଣ ।
ଦୁଷ୍କୃତକାରିଣୀ ମୁହିଁ ଅଟଇ ପାପିନୀ
ନକହିଲି ଏ ଦ୍ୱିଜକୁ ଦିନେ ମିଠାବାଣୀ ।
ଏ ଦ୍ୱିଜ ପାଦ ଧଉତ କରିନାହିଁ ଦିନେ
ଏ ଦ୍ୱିଜକୁ ଦେଖୁଥାଇ ମୁଁ କୋପ ନୟନେ ।
ମୋଡ଼ିଦେବା ଥାଉ ଦିନେ ଦେଇନାହିଁ ହାତ
ଏହାକୁ ଦେଖି ମୁଁ ଘୃଣାକରେ ଅବିରତ ।
ଖାଇବାକୁ ଦେଇନାହିଁ ମୁଁ ଏହାକୁ ଥରେ
ଦିନେମାତ୍ର ଶୋଇନାହିଁ ମୁଁ ଏହା ପାଖରେ ।
ଏ ଦ୍ୱିଜମଣିକି କଥା କହିବି କେମନ୍ତେ
ଏ ସବୁ କଥା ମୋହର ହୃଦରେ ପଶନ୍ତେ ।
ସେ ଚିନ୍ତାରେ କଟିଗଲା ସେଦିନ ମୋହର
ରାତ୍ରକାଳେ ହୋଇଲା ସେ ପୁଣି ଗୁରୁତର ।
ବୁଡ଼ିଲି ଦୁଃଖସାଗରେ ଆଗୋ ବରାନନେ
ହୃଦ ଫୁଟିଗଲା ନିଦ ନଆସେ ନୟନେ ।
ସେକାଳେ ମୋ ପଞ୍ଚପ୍ରାଣ ଦେହ ଛାଡ଼ିଗଲା
କରଚରଣ ମୋହର କିଛି ନ ଚଳିଲା ।
ନିଦାରୁଣ ଯମଦୂତ ଅଇଲେକ ମାଡ଼ି
ଧରିଛନ୍ତି ସେ ଖଡ଼ଗ ଚକ୍ର ଗଦା ବାଡ଼ି ।
ଦୃଢ଼େବାନ୍ଧି ଘେନିଗଲେ ମୋତେ ଯମପୁରେ
ଡରେକାନ୍ଦି ମୁଁ ଓଟାଣି ହୁଅନ୍ତେ ସେ ବୀରେ ।
ଦୁର୍ଗମ ମାର୍ଗରେ ମୋତେ ନିଅନ୍ତି ଘୋଷାରି
ସେ ଦୁର୍ଗମ ମାର୍ଗକଥା କହିଲେ ନସରି ।
ପୋତା ହୋଇଅଛି ଲୁହାକଣ୍ଟା ବାଟଯାକ
ମୁନ ତାର ଉପରକୁ ଦିଶେ ଜକ ଜକ ।
ଖଣ୍ଡା ଦାଢ଼ ଉପରକୁ ଦାଢ଼ିଆ ସେ ଅତି
ମାଛିପଡ଼ି ବେନିଖଣ୍ଡ ହୁଅନ୍ତି ଝଟତି ।
ତତଲା ବାଲିରେ ପାଦ ଦେଲେ ଯାଏ ଜଳି
ମୁଦ୍‌ଗର ପିଟି ପିଟି ମୋହର ମଉଳି ।
ଘୋଷାରି ଘୋଷାରି ନେଇ ଯମର ଛାମୁରେ
ପକାଇ ଘେରିରହିଲେ ମୋ ଚାରିପାଖରେ ।
କି କହିବି ରାଣୀ ତାଙ୍କ ଗାଳି ମନ୍ଦବାଣୀ
ଯମଦୂତଙ୍କ ହସିବା ଚାଲିବାର ଠାଣି ।
ଯାମରାଜା ମୋତେ ଦେଖି କ୍ରୋଧେ ଜରଜର
ବୋଇଲେ ଏଠାରୁବେଗେ ନିଅ ଏହିଛାର ।
ଏହାର ମୁହଁ ଚାହିଁଲେ ହେବ ମହାପାପ
ଉଠାଉଠା ମୋଆଗରୁ କହି କଲା କୋପ ।
ତତଲା ଅଙ୍ଗାର କୁଣ୍ଡେ ଦିଅ ଫୋପାଡ଼ାଇ
ଦୂତେ ଡ଼ରିଲେ ଯମର କୋପମୁଖ ଚାହିଁ ।
ରାଗେ ମୋ ଦଉଡ଼ିଧରି ଘୋଷଡାଇନେଲେ
ତପତ ଅଙ୍ଗାରକୁଣ୍ଡେ ଫୋପଡ଼ାଇ ଦେଲେ ।
ଏମନ୍ତେ ନାନା ନରକକୁଣ୍ଡେ ପଡ଼ି ପଡ଼ି
ଯମଦୂତଙ୍କ ହାତରୁ ଖାଇ ଲୁହାବାଡ଼ି ।
ଅନଳ ଦଗଧ ଲୁହା ପୁରୁଷର ଦେହେ
ମୁହଁ ମାଡ଼ିପକାଇଲେ ମୋତେବାନ୍ଧିଲୌହେ ।
ସ୍ୱାମୀକି ବଞ୍ଚନା ଫଳଭୋଗ କର କହି
ମୁଁ ନରକେ ସନ୍ତାପିତ ପ୍ରତାପିତ ହୋଇ ।
ତତଲା ବାଲିରେ ପୁଣି ତଇଳ ଦ୍ରୋଣିରେ
ପଡ଼ି ବୋବାଳି ଛାଡ଼ିଲି ମୁହିଁ ଉଚ୍ଚସ୍ୱରେ ।
ହେ ନୃପନନ୍ଦିନୀ ମହାତମା ଯମରାୟ
ଅସିପତ୍ର ନର୍କେମୋର ଛିଣ୍ଡାଇଲେ କାୟ ।
କଣ୍ଟା ଶିମିଳି ବୃକ୍ଷରେ ପକାଇଲେ ବାନ୍ଧି
କଣ୍ଟାସବୁ ଗଳିଗଲା ମୋର ସନ୍ଧି ସନ୍ଧି ।
ପୂଯରକ୍ତ ବିଷ୍ଠାକୁଣ୍ଡେ ପକାଇଲେ ନେଇ
ବହୁତ ଦିନ ବଞ୍ଚିଲି ତାହା ଖାଇପିଇ ।
ଚଉରାଶୀ ନର୍କକୁଣ୍ଡ ମହାଭୟଙ୍କର
ତହିଁରେ ବୁଡ଼ାଇ ମୋତେ ଯମଙ୍କ କିଙ୍କର ।
କରବାଳ ପତ୍ରେ କାଟି କଲେ ଖଣ୍ଡ ଖଣ୍ଡ
ଶକତି ପିଟି ଫଟାଇଦେଲେ ମୋର ମୁଣ୍ଡ ।
ଯୋନିଗର୍ତ୍ତେ ପକାଇଲେ ତହୁଁ ପୁଣି ନେଇ
ହୁଙ୍କାହୋଇ ସୁଦାରୁଣ ଦୁଃଖ ତହିଁ ପାଇ ।
ନିଷ୍ଠୁର ଯମର ନାହିଁ ତିଳେହେଁ ବିଚାର
ଶୃଗାଳି ଜନ୍ମ ପାଇଲି ପିଇଲି ରୁଧିର ।
କୁକୁରୀ ହୋଇ ଖାଇଲି ପୁଣି ବିଷ୍ଠା ଯାଇଁ
କୁକ୍‌କୁଟୀ ମାର୍ଜରୀ ମୂଷା ଜନ୍ମ କ୍ରମେ ପାଇ
ଏମନ୍ତେ ନାନାଦି ପାପଯୋନି ଭ୍ରମି ଭ୍ରମି
ଶେଷେ ଶୁକରୀ ହୋଇଲି ହେ ନୃପନନ୍ଦିନୀ ।
ବହୁତ ତୀର୍ଥଥିବାରୁ ଏ ତୋହର ହସ୍ତେ
ତୋ ହସ୍ତ ତୀର୍ଥଉଦକ ପଡ଼ନ୍ତେ ମୋ ଗାତ୍ରେ ।
ତୋଯୋଗୁଁ ମୋ ଦେହୁଁ ସବୁପାପ ଛାଡ଼ିଗଲା
ତୋ ପୁଣ୍ୟତେଜେ ମୋହର ଜ୍ଞାନ ଉପୁଜିଲା ।

ନରକରେ ପଡ଼ି ପଡ଼ି ପଚୁଥିଲି ମୁହିଁ
ଏକ୍ଷଣି ଉଦ୍ଧାରକଲୁ ତୁଗୋ ମହାଦେଈ ।
ଯେବେ ସୁଦୟା କଲୁଣି ତୁ ବରବର୍ଣ୍ଣନୀ
ଦାରୁଣ କଷ୍ଟପାଉଛି ମୁଁ ଦୁଃଖଭାଗିନୀ ।
ମୁଁ ମହାପାପିନୀ ମୋର ଆଶ୍ରା କେହିନାହିଁ
ଶରଣ ପଶିଲି ପାଦେ କର ଏଥୁ ତ୍ରାହି ।
ସୁଦେବ ରାଣୀ କହିଲେ ସବୁ ଶୁଣିଶୁଣି
କି କି ପୁଣ୍ୟ ସଞ୍ଚିଅଛୁ ଏ ଜନମେ ପୁଣି ।
ସେକଥା ମୋତେକହିଲେ ଜାଣିବି ମୁଁ ସିନା
ଶୁକରୀ ବୋଇଲା ପୁଣି ହୋଇ ହୃଷ୍ଟମନା ।
ସାକ୍ଷାତରେ ବିଷ୍ଣୁ ଏହି ଇକ୍ଷ୍ୱାକୁ ନୃପତି
ସାକ୍ଷାତେ ତୁ ଶିରୀରୂପା ଅଟୁ ମହାସତୀ ।
ପତିବ୍ରତା ଶିରୋମଣି ସଉଭାଗ୍ୟବତୀ
ନିରତେ ତୁ ସର୍ବତୀର୍ଥମୟୀ ପୁଣ୍ୟବତୀ ।
ଏ ଜଗତେ ତୁହି ଏକା ମହା ପତିବ୍ରତା
ନିରତେ ସ୍ୱାମୀସେବାରେ ଥାଇ ତୋର ଚିନ୍ତା
ତୋର ଏ ପୁଣ୍ୟରୁ ଯେବେ ଦେବୁ ଦିନକର
ତେବେ ନରକକଷ୍ଟରୁ ପାଇବି ଉଦ୍ଧାର ।
ତୁ ମୋହର ପିତା ମାତା ଗୁରୁ ସନାତନ
ତୋ ବିନୁ ଉଦ୍ଧାରକର୍ତ୍ତା ନାହିଁ ଆନଜନ ।
ପାପିନୀ ଦୁରାଚାରିଣୀ ଅସତଭାଷିଣୀ
ମୋଠାରୁ ଜଣେ ଅଧିକ ଜାଣନାହିଁ ରାଣୀ ।
ଯମତାଡ଼ନାକୁ ପୁଣି ମୋର ମହାଡ଼ର
ତେଣୁ ଶରଣ ପଶିଲି ଚରଣେ ତୋହର ।
ସୁକଳା ସତୀ କହଇ ସେ ସୁଦେବା ରାଣୀ
ନୃପତିମୁଖକୁ ଚାହିଁ ବୋଇଲେ ଏ ବାଣୀ ।
ଏ ପଶୁ କି କହେ ମୁହିଁ କି କରିବି କୁହ
ରାଣୀକି ଚାହିଁ ବୋଇଲେ ସେ ଇକ୍ଷ୍ୱାକୁରାୟ ।
ଏହି ଦୁଃଖିନୀ କରାଳୀ ପାଇ ପାପଯୋନି
ଶରଣ ପଶିଛି ଧରି ତୁମ୍ଭ ପାଦବେନି ।
ତୁମ୍ଭେ ତୁମ୍ଭଗୁଣେ ତାକୁ କରଗୋ ଉଦ୍ଧାର
ତେଣୁ ତୁମ୍ଭର ମଙ୍ଗଳ ହୋଇବ ଅପାର ।
ଚାରୁମଙ୍ଗଳା ସୁଦେବା ବରାଙ୍ଗନା ସତୀ
ଉପଦେଶ ଦେଲେ ଯହୁଁ ଏରୂପେ ନୃପତି ।
ଶୁକରୀକି କହିଲେ ମୁଁ ଦେଲି ତୋତେ ପୁଣ୍ୟ
ମୋର ବରଷକ ପୁଣ୍ୟ ଘେନ ତୁ ବହନ ।

ଏରୂପେ ରାଣୀ କହିବାମାତ୍ରେ ସେ ଶୂକରୀ
ଦିବ୍ୟମାଳା ପିନ୍ଧି ଦିବ୍ୟଦେହ ତେଜ ଧରି ।
ସବୁଭୂଷଣେ ଭୂଷିତା ରୂପ ଯଉବନୀ
ନାନାରତ୍ନରେ ସର୍ବାଙ୍ଗଯାକ ତା ମଣ୍ଡଣୀ ।
ଦିବ୍ୟଗନ୍ଧ ବୋଳା ହୋଇଅଛି ତା ଶରୀରେ
ଦିବ୍ୟନାରୀ ହୋଇବସେ ଦିବ୍ୟ ବିମାନରେ ।
ବସିବା ପୂର୍ବୁ ରାଣୀକି କରି ନମସ୍କାର
ଅନ୍ତରୀକ୍ଷ ମାର୍ଗେ ରହି ବିମାନ ଉପର ।
ସୁଦେବାକୁ ଡାକି ଉଚ୍ଚେ ବୋଇଲା ଏମନ୍ତ
ତୋର ପ୍ରସାଦେ ପାପରୁ ହୋଇଲି ମୁକତ ।
ସ୍ୱର୍ଗକୁ ଯାଉଛି ହେଉ ତୋହର ମଙ୍ଗଳ
ଏମନ୍ତ କହି ସେ ଗଲା ଅମର ମଣ୍ଡଳ ।
ହରି ହରି ବୋଲ ଭାଇ ପାପୁଯିବ ତରି
ଦ୍ୱିଜ ଗୋପୀନାଥ ନିତ୍ୟ ବୋଲେ ହରିହରି ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ସୁକଳା ଚରିତେ ଶୁକରୀ
ସ୍ୱର୍ଗଗମନଂ ନାମ ଦ୍ୱିପଞ୍ଚାଶୋଽଧ୍ୟାୟଃ ।



## ତ୍ରିପଞ୍ଚାଶ ଅଧ୍ୟାୟ

### ଇନ୍ଦ୍ରଦ୍ୱାରା ସୁକଳାର ପତିବ୍ରତା ପରୀକ୍ଷା

ସୁକଳା ସତୀ କହଇ ଶୁଣ ସଖୀଗଣେ
ଏରୂପେ ମୁଁ ସତୀଧର୍ମ ଶୁଣିଛି ପୁରାଣେ ।
ଭୋଗ ଉପଭୋଗ ମୁହିଁ କରିବି କେମନ୍ତେ
ପ୍ରାଣ ନରଖିବି ସ୍ୱାମୀ ନଦେଖିଲେ ନେତ୍ରେ ।
ଶ୍ରୀବିଷ୍ଣୁ କହିଲେ ଶୁଣ ବେନ ନୃପମଣି
ଏରୁପେ ଧର୍ମ ବୁଝାନ୍ତେ ସୁକଳା ତରୁଣୀ ।
ଶୁଣି ଆନନ୍ଦହୋଇଲେ ସର୍ବ ସଖୀଗଣ
ସୁକଳାକୁ ସ୍ତୁତିକଲେ ଧରି ତା ଚରଣ ।
ତା ଗୁଣରେ ବଶହୋଇ ଦେବତା ବ୍ରାହ୍ମଣେ
ସକଳ ପାପ ଖଣ୍ଡିଲେ ପ୍ରାତଃ ସୁମରଣେ ।
ସୁକଳାର ଦୃଢ଼ବ୍ରତ ଦେଖି ସୁରପତି
ପରୀକ୍ଷା କରିବା ଏହା ପତି ଅନୁରକ୍ତି ।
ଭଙ୍ଗାଇବା ପତି ସ୍ନେହ ଧଇର୍ଯ୍ୟ ଏହାର
ଏମନ୍ତ ମନରେ ଭାବି ଦେବ ପୁରନ୍ଦର ।

ମନେମନେ ସୁମରଣା କଲେ ମନମଥ
ଯୋଗେ କାମ ଜାଣିହୋଇ ଫୁଲବାଣ ହସ୍ତ ।
ଇନ୍ଦ୍ରଛାମୁରେ ମିଳିଣ ଯୋଡ଼ି ବେନିକର
ବୋଇଲେ କିମ୍ପା ଚିନ୍ତିଲ କହ ପୁରନ୍ଦର ।
ଯାହା ତୁମ୍ଭେ କହିବ ତା କରିବି ଅବଶ୍ୟ
ଇନ୍ଦ୍ରବୋଇଲେହୋ କାମ ସମସ୍ତେତୋବଶ ।
କଥାଏ କରିବି ମୋତେ ସାହାହୁଅ ତୁହି
ସୁକଳାନାମେ ଅଛଇ ଏକଇ ସୁମୁହିଁ ।
ମହୀରେ ନାହିଁ ତା ତୁଲ୍ୟ ପତିବ୍ରତା ଜଣେ
ତୀର୍ଥ କରୁଛି ତା ସ୍ୱାମୀ ଏକା ସେ ସଦନେ ।
ସେ ପୁଣ୍ୟ ମଙ୍ଗଳା ମନ ପାରିବୁ କି ହରି
ମଦନ ବାସବ ମୁଖୁଁ ଏହା ଶୁଣିକରି ।
ବୋଇଲେ ହେ ଦେବଦେବ ସହସ୍ରଲୋଚନ
ନିଶ୍ଚେ ତୋତେ ସାହାହେବି ଏ ସତ୍ୟ ବଚନ ।
ଏମନ୍ତ କହି କନ୍ଦର୍ପ ଗର୍ବକରେ ପୁଣି
ଆହେ ଦେବ ଜିଣିପାରେ ମୁହିଁ ଋଷିମୁନି ।
ଗୋଟାଏ ଅବଳାକଥା କି କହୁଛ ମୋତେ
ପାଦ ନଖଠାରୁ ତାର କେଶ ପରିଯନ୍ତେ ।
ନାରୀଙ୍କ ଅଙ୍ଗପ୍ରତ୍ୟଙ୍ଗ ଅଟେ ମୋର ଘର
ନାରୀକି ଲୋକେ ବୋଲନ୍ତି କାମର ମନ୍ଦିର ।
ନାରୀର ନାମ ଅବଳା ବଳ ତାର କାହିଁ
ମୋରବାଣେ ସନ୍ତାପିତହୋଇ ତାର ଦେହୀ ।
ନ ମାନିବ ଭାଇବନ୍ଧୁ ପିତା ସହୋଦର
ଟଳିପଡ଼ିବ ଦେଖିଲେ ଯୁବକ ସୁନ୍ଦର ।
ଭଲଅଭଲ ଏଥିରେ ସେ କି ନବୁଝିବ
ନାରୀର ଧଇର୍ଯ୍ୟ ନାହିଁ ଜାଣିଥା ବାସବ ।
ନିଶ୍ଚେ ନାଶିବି ସୁକଳା ସତ୍ୟଧର୍ମ ପଣ
ଇନ୍ଦ୍ରବୋଇଲେ ମଦନ ମୋରକଥାଶୁଣ ।
ଧନୀ ପୁରୁଷ ହୋଇ ମୁଁ ଯିବି ତାରପୁରେ
ଅତି ସୁନ୍ଦରଯୁବା ମୁଁ ହେବି କପଟରେ ।
ସୁନ୍ଦର ବେଶଭୂଷାରେ ହୋଇବି ମଣ୍ଡଣି
ଆହେ କାମଦେବ ଶୁଣ ମୋ ଅନ୍ତରବାଣୀ ।
କାମରେ ତ୍ରାସରେ କିବା ଲୋଭରେମୋହରେ
କୋପରେ କିବା କାର୍ଯ୍ୟରେ କାୟମାନସରେ ।
ତା ପତିଧର୍ମ ନାଶିବା ଅର୍ଥେ ମୁଁ ନଯାଇ
କେବଳ ଯାଏ ଦୃଢ଼ତା ପରଖିବା ପାଇଁ ।

ସତରେ କି କରେ ସେହି କପଟରେ କରେ
ବୁଝିବା ସିନା ତୁଥିଲେ ମୋହର ସଙ୍ଗରେ ।
ତୁମ୍ଭର ସାହା ନହେଲେ ହେବ କାହୁଁକରି
କାମଦେବକୁ ଏରୂପେ କହି ବଜ୍ରଧାରୀ ।
ରୂପ ବଦଳାଇ ଯୁବା ସୁନ୍ଦର ହୋଇଲେ
କୃକଳ ନାରୀ ସୁକଳା ପାଖରେ ମିଳିଲେ ।
ନୋହିବ ଇନ୍ଦ୍ରରୂପକୁ କୋଟିକାମ ସରି
ସର୍ବାଙ୍ଗରେ ନାନାଦିବ୍ୟ ଅଳଙ୍କାର ଭରି ।
ହାବଭାବ ଦେଖାଇଲେ ସୁକଳାର ଆଗେ
ଗନ୍ଧଦ୍ରବ୍ୟ ବୋଳି ହୋଇଅଛନ୍ତି ସର୍ବାଙ୍ଗେ ।
ନଚାହିଁ ତାକୁ ସୁକଳା ମୁହଁଦେଲେ ମୋଡ଼ି
ପୁରୁଷବର ସୁକଳା ସଙ୍ଗକୁ ନ ଛାଡ଼ି ।
ସୁକଳା ଯେଣିକି ଯାନ୍ତି ଏ ତେଣିକି ଯାନ୍ତି
କାମର ଚେଷ୍ଟା ତାହାକୁ ବହୁତ ଦେଖାନ୍ତି ।
ଚତୁଷ୍ପଥ ଦାଣ୍ଡରେ ବା ତ୍ରିପଥ ଦାଣ୍ଡରେ
ଜଗି ରହିଥାନ୍ତି ତାକୁ ବାଟରେ ତୀର୍ଥରେ ।
ସୁକଳା ପାଖକୁ ଇନ୍ଦ୍ର ପଠାଇଲେ ଦୂତୀ
ଅତି ଚତୁରୀ ସେ ଦୁତୀ ଅତି ରୂପବତୀ ।
ଅଳପ ଅଳପ ହସି ଶୂନ୍ୟକୁ ଅନାଇ
ଆହାକି ସତ୍ୟ ଆହାକି ଧଇର୍ଯ୍ୟ ଅଟଇ ।
ଆହାକି ସୁନ୍ଦର କାନ୍ତି କି କ୍ଷମା ଏହାର
ଏ ସୁନ୍ଦର ରୂପ ଦେଖିନାହିଁ ନେତ୍ରମୋର ।
ସର୍ବାଙ୍ଗ ସୁନ୍ଦରୀ ସିନା କହନ୍ତି ଏହାକୁ
ଯେ ଧରି ଅଛଇ ପୁଣି ଏହାର ହାତକୁ ।
ଧନ୍ୟ ସେ ପୁରୁଷ ଏହି ବ୍ରହ୍ମାଣ୍ଡ ଭିତରେ
ଯେ ଜନନୀ ଧରିଥିଲା ଏହାକୁ ଗର୍ଭରେ ।
ସେସ୍ତିରୀଗୋଟାକୁ ଧନ୍ୟ ବୋଲିବାନାସିନା
ସୁକଳାକୁ ଡାକି କହେ ଶୁଣଗୋ ସୁମନା ।
କହଗୋ କଲ୍ୟାଣି ତୁହିଁ କାହାର ଭାରିଯା
କହାର ନନ୍ଦିନୀ ତୁହି କହ ତେଜି ଲଜ୍ଜା ।
ତାହାର ଏ କଥା ଶୁଣି ସୁକଳା କହଇ
ଯାହା ତୁମ୍ଭେ ପଚାରିଲ ଶୁଣ ମନଦେଇ ।
ସତ୍ୟବନ୍ତ ଧର୍ମଆତ୍ମା ବୈଶ୍ୟକୁଳେ ଜାତ
ଯାହାର ନାମ କୃକଳ ସେହି ମୋର କାନ୍ତ ।
କୃକଳ ବୈଶ୍ୟ ଭାରିଯା ସତ ମୁଁ କହଇ
ଜନମ ମୋର ବଇଶ୍ୟ କୁଳରେ ଅଟଇ ।

ତୀର୍ଥଯାତ୍ରା କରିବାକୁ ସ୍ୱାମୀଗଲେ ମୋର
ମୁହିଁ ଯିବାକୁ କହିଲି ତାଙ୍କ ସଙ୍ଗତର ।
ସ୍ୱାମୀ ଲୁଚି ଚାଲିଗଲେ ନନେଲେ ସଙ୍ଗରେ
ତିନିବରଷ ହେଲାଣି ନ ଆସନ୍ତି ଘରେ ।
ସେହି ମହାତମା ବିନା ଘୋରଦୁଃଖ ମୋର
ସତକଥା କହିଲି ଗୋ ମୁଁ ତୁମ୍ଭ ଆଗର ।
କିଏ ତୁମ୍ଭେ ପଚାରୁଛ ଆସି କାହିଁପାଇଁ
ମୋ ମନ ଆନନ୍ଦ କର ସତକଥା କହି ।
ସୁକଳା ବଚନ ଶୁଣି କହଇ ସେ ଦୂତୀ
ଯାହା ତୁମ୍ଭେ ପଚାରିଲ ମୋତେ ରୂପବତୀ ।
ସତ ମୁଁ କହୁଛି ଶୁଣ ହେ ବରବର୍ଣ୍ଣିନି
କିଛି କାର୍ଯ୍ୟଥିବାରୁ ମୁଁ ଆସିଅଛି ପୁଣି ।
ସାବଧାନହୋଇ ତାହା ଶୁଣ ବରାନନେ
ତୋ ସ୍ୱାମୀପ୍ରାୟ ନିର୍ଦ୍ଦୟ ନାହିଁ ତ୍ରିଭୁବନେ ।
ତୀର୍ଥ କରିବାକୁ ଗଲା ଛାଡ଼ି ଯେଣୁ ତୋତେ
ତାପରି ନିଷ୍ଠୁର ସ୍ୱାମୀ ନାହିଁ ଏ ଜଗତେ ।
ପ୍ରିୟାଘାତୀ ସ୍ୱାମୀଥିବା ନଥିବା ସମାନ
ସତୀନାରୀ ଛାଡ଼ିଯିବା ସ୍ୱାମୀ ପାପୀ ଜନ ।
ମରିଛି କି ବଞ୍ଚିଛି ସେ ତାହାକେବା ଜାଣେ
ତାହାପାଇଁ ଚିନ୍ତା ତୁହି କରୁ ଅକାରଣେ ।
ତାପାଇଁ ତୁ ବୃଥା ଖେଦକରୁ ହେମକାନ୍ତି
ସୁନାଦେହ ଚୂନାକରୁ ତୁଗୋ କୁନ୍ଦଦନ୍ତୀ ।
ବାଳକାଳେ ବାଳକେଳି ବିନା ସୁଖ ନାହିଁ
ବୃଦ୍ଧକାଳେ ଦୁଃଖ ବିନା ସୁଖ ଆଉ କାହିଁ ।
ସେକାଳେ ଜରା ଆସିଣ ଦେହକରେ ଧ୍ୱଂସ
ତରୁଣ ପୁଣି ହୁଅନ୍ତେ ଯୌବନ ପ୍ରବେଶ ।
ଇଚ୍ଛା ଅନୁସାରେ ନାନାସୁଖ ଭୋଗକରେ
ସେ ଗଲେ ଆଉକି ସୁଖଅଛି ଏ ସଂସାରେ ।
ବୟସଗଲେ ତା ସଙ୍ଗେ ସଙ୍ଗେ ସୁଖ ଯାଇ
ଯୁବା ତରୁଣ ବୟସ ଥାଇକି ହୁଅଇ ।
ସବୁରି ସୁଖ ଦେଖିଣ ବସି ବୁଢ଼ା ଲୋକ
ନାନାଚିନ୍ତା କରି କାହୁଁ ପାଇବ ସେ ସୁଖ ।
ପାଣିଗଲା ପରେ ବନ୍ଧ ବିଫଳ ଯେସନ
ଭୋଗବିଳାସ କି ଥାଏ ଗଲେ ଯଉବନ ।
ଏଣୁ ତରୁଣ ବୟସେ ସୁଖଭୋଗ କର
ଭୋଗର ମୂଳ ମଦିରା ମାଉଁସ ଆହାର ।

ଏଣୁ ତୁ ମଦିରାପାନ କର ଚାରୁନେତ୍ରୀ
କାମେ ଅଙ୍ଗ ଦଗ୍ଧ ହେଉଥିବ ଦିବାରାତି ।
ଏହିଦେଖ ରୂପଗୁଣ ପୁରୁଷ ସୁନ୍ଦର
ଧନୀପଣେ ସରିନୋହେ ଏହାକୁ କୁବେର ।
ତୋ ଆଶାରେ ରହିଅଛି ଦେଖ ତୁ ସୁନ୍ଦରୀ
ରୂପ ବୟସେ ଗୁଣରେ ସେ ତୋହର ସରି ।
ନାନା ସୁଖ ଭୋଗକର କହିଲେ ଡାକିବି
ଦାସ ପ୍ରାୟଥିବ ସେହି ତୋ ଚରଣ ସେବି ।
ସୁକଳା କହିଲା ଶୁଣ ମୋ ବଚନ ଦୂତୀ
କହିଲ ଯା ବାଳଯୁବା ବୃଦ୍ଧାବସ୍ଥା ଗତି ।
ସେ କଥା ସତ କେବଳ ଜୀବର ତା ନାହିଁ
ଜୀବ ଆପେ ଆପେ ସିଦ୍ଧସିଦ୍ଧି ସେ ଦିଅଇ ।
ବ୍ୟାପି ରହିଛି ସର୍ବଦା ଅଜର ଅମର
କାମୀ ସେ ପୁଣି ଅକାମୀ ସର୍ବଜ୍ଞ ଆବର ।
ଆତ୍ମା ସ୍ୱରୂପେ ବିରାଜେ ସବୁରି ଶରୀରେ
ନିର୍ଲେପ ପୁଣି ସର୍ବତ୍ର ଆକାଶ ରୂପରେ ।
ଗୃହ ଦେହ ଦୁହିଁଙ୍କର ଭେଦାଭେଦ ନାହିଁ
ଗୃହ ଯେମନ୍ତେ ତେମନ୍ତ ଏ ଦେହ ଅଟଇ ।
ସୂତାଧରି ଘର କରେ ବଢ଼େଇ ଯେସନ
ଏ ଦେହ ଗଢ଼ାହୋଇଛି ଜାଣିବ ତେସନ ।
ଘରେ ଲାଗେ ନାନାକାଠ ମାଟି ଜଳ ଲଇ
ଲୁହା ବାଉଁଶ ତହିଁରେ ବହୁତ ଲାଗଇ ।
ଚୂନମାଟି ଲିପି ଚିତ୍ର ବିଚିତ୍ର କରନ୍ତି
ଆଗ ସୂତାଧରି ଘର ରୂପକୁ ଗଢ଼ନ୍ତି ।
ପ୍ରତିଦିନ ଲିପି ତାକୁ କରନ୍ତି ସୁନ୍ଦର
ଧୂଳି ପକାଇ ମଳିନ କରଇ ସମୀର ।
ଆଗୋ ଦୂତୀ ଯୁବାବସ୍ଥା ସେକାଳ ଗୃହର
ଗୃହସ୍ୱାମୀ ଅସୁନ୍ଦର ଦେଖି ତାର ଘର ।
ଲିପି ଗୃହର ସୁନ୍ଦର ପୁଣି ସେ ବଢ଼ାଇ
ଏ ତରୁଣାବସ୍ଥା ଦୂତୀ ଗୃହର ଅଟଇ ।
କାଠ ବାଉଁଶ ଲଇରେ ଘୁଣ ସବୁ ଲାଗି
ବୁଢ଼ୀଆଣି ବସାକରେ ଗଳିପଡ଼େ ଭାଙ୍ଗି ।
କାନ୍ଥସବୁ ଜୀର୍ଣ୍ଣହୋଇ ଝରିପଡ଼େ ତଳେ
ଲିପନ୍ତେ ସେ କାନ୍ଥ ସହି ନପାରେ ତାତିଲେ ।
କେବଳ ସେ ରହିଥାଏ ଭଙ୍ଗାତୁଟା ହୋଇ
ଗୃହର ବୃଦ୍ଧ ଅବସ୍ଥା ଦୂତୀ ସେ ଅଟଇ ।

ଗୃହସ୍ୱାମୀ ଘରଭାଙ୍ଗି ପଡ଼ିବାର ଜାଣି
ତାକୁ ଛାଡ଼ି ନୂଆଘର ତୋଳି ରହେ ପୁଣି ।
ସେରୂପେ ପ୍ରାଣୀଗଣର ବାଲ୍ୟ ଯଉବନ
ତରୁଣ ବୃଦ୍ଧ ଅବସ୍ଥା ଦୂତୀ ତୁଗୋ ଜାଣ ।
ବାଲ୍ୟେ ଅଜ୍ଞାନୀ ବାଳକ ପ୍ରାଣୀଏ ବୋଲନ୍ତି
ତହୁଁ ବସ୍ତ୍ର ଅଳଙ୍କାରେ ଏ ଦେହ ମଣ୍ଡାନ୍ତି ।
ଚନ୍ଦନ ଆଦି ଲେପନ୍ତେ କରାନ୍ତି ସୁନ୍ଦର
ତାମ୍ବୁଳ ରାଗାଦି ଦ୍ରବ୍ୟେ ବଢ଼ାନ୍ତି ଶରୀର ।
ମନୋହର ରୂପ ତାର ସେ ଯୁବା ବୟସ
ବାହାର ଭିତର ହୃଷ୍ଟପୁଷ୍ଟ ପାଇ ରସ ।
ରସ ପାଇବାରୁ ପ୍ରାଣୀ କ୍ରମରେ ବଢ଼ଇ
ମାଂସବୃଦ୍ଧି ଯୋଗୁଁ ନୂଆ ମୂରତି ଧରଇ ।
ବିସ୍ତାର ପାଇ ଏକାଳେ ସବୁ ଅଙ୍ଗ ତାର
ରସ ସଞ୍ଚୟେ ହୁଅଇ ପ୍ରତ୍ୟଙ୍ଗ ସଞ୍ଚାର ।
ଦନ୍ତ ଓଠ ସ୍ତନ ବାହୁ କଟୀ ପିଠି ଉରୁ
ଜାନୁ ଜଙ୍ଘ ହାତ ପାଦ ନଖ ବେନି ଭୁରୁ ।
କ୍ରମରେ ବଢ଼ଇ ସବୁରସ ମାଂସ ଯୋଗେ
ଅଙ୍ଗ ପ୍ରତ୍ୟଙ୍ଗ ବଢ଼ଇ ଦେହ ସଙ୍ଗେ ସଙ୍ଗେ ।
ଯେ ଯେତିକି ବଢ଼ିବାର ତେତିକି ବଢ଼ଇ
ବଢ଼େଇ ଯେରୂପେ ଘରେ ସୂତା ଧରି ଥାଇ ।
ତେତିକ ଜାଣ ତାହାର ବଢ଼ିବା ପ୍ରମାଣ
ଏଣୁ ଦେହ ଗୃହରଯେ ନାହିଁ ଭିନ୍ନାଭିନ୍ନ ।
ଏହାକୁ କି ରୂପବନ୍ତ ବୋଲିବାଗୋ ଦୂତୀ
ସେଦେହ ଗୋଟା କେମନ୍ତେ ହେଲାପ୍ରିୟଅତି ।
ମଳମୂତ୍ର ରହିବାର ସ୍ଥାନ ସିନା ସେହି
ଦେଖିଲେ ଘୃଣା କରନ୍ତି ଅପବିତ୍ର ଯେହି ।
ପାଣି ଫୋଟକା ପରାୟ ଦେହ ଜାଣ ଦୂତୀ
ରୂପ ବର୍ଣ୍ଣନା ତାହାର କରୁଛୁ କେମିତି ।
ପଞ୍ଚାଶ ବରଷ ଯାଏ ଦୂତ ଏହି ଦେହ
ଦେହର ସଙ୍ଗେ ସମାନ ଅଟେ ଏହି ଗୃହ ।
ତହୁଁ ଦିନୁ ଦିନ ହାନି ହୁଅଇ ତାହାର
ମୁଖ ବାଟେ ଲାଳଧାର ହୁଅଇ ବାହାର ।
ଭଲରୂପେ ନଦିଶଇ ଦାନ୍ତ ତା ହଲଇ
କାନକୁ ତା ନଶୁଭଇ ଚାଲେ ଲଇଁ ଲଇଁ ।
ଜରା ଯେ ତାହାକୁ ପୀଡ଼ା ଦିଅଇ ବହୁତ
ଜରା ଅନଳ ତାହାର ଶୋଷଇ ଶୋଣିତ ।

ରସକ୍ଷୟ ପାନ୍ତେ ଦେହ ଅକ୍ଷମ ହୁଅଇ
ରୂପରେ ଲୋଭ ଲାଳସା ତାର ନ ରହଇ ।
ଯେମନ୍ତେ ପୁରୁଣା ଘର ଭାଙ୍ଗି ତୁଟି ଯାଏ
ବୁଢ଼ାହେଲେ କଳେବର ତେହ୍ନେଯାଇକ୍ଷୟେ ।
ଦିନୁ ଦିନୁ ରୂପ ଆସିଯାଏ ପୁଣି କ୍ଷୟ
ଯାପାଇଁ ଦୂତୀଗୋ ଆସି ମୋତେ ପୁଣି କହ ।
ସେ ପୁରୁଷ କିଏ ତାହା କହ ତୁଗୋ ଦୂତୀ
ମୋଅଙ୍ଗେ କିରୂପ ତୁମ୍ଭେ ଦେଖୁଚ ସଂପ୍ରତି ।
ତା ଅଙ୍ଗ ମୋ ଅଙ୍ଗହୀନ ଅଧିକବା ନୋହେ
ଭିନ୍ନ କିଛିନାହିଁ ତୋରତାର ମୋରଦେହେ ।
ଏ ମହୀମଣ୍ଡଳେ ଦୂତୀ ରୂପ ନାହିଁ କାର
କିଏ ରୂପବନ୍ତ ନୋହେ ସଂସାର ଭିତର ।
ବଢ଼ଇ ପୁଣି ଛିଡ଼ଇ ଜାଣ ଏ ସଂସାର
ଏହିରୂପେ ଘଟସୂତ୍ର ଅଟେ ବିଧାତାର ।
ତରୁଗିରି ପୀଡ଼ାପାଇ ଯେହ୍ନେ ଭାଙ୍ଗିଯାନ୍ତି
ପ୍ରାଣୀଏ ତେସନ ପୀଡ଼ା ପାଇ କ୍ଷୟ ଯାନ୍ତି ।
ସବୁ ଚରାଚର ଦୂତୀ ଏ ଆତ୍ମାର ଘର
ରୂପବନ୍ତ ସେହି ପୁଣି ରୂପ ନାହିଁ ତାର ।
ଦିବ୍ୟ ସର୍ବଗତ ଶୁଚି ପବିତ୍ର ଆବର
ଘଟସବୁ ଭାଙ୍ଗିଯାନ୍ତେ ମିଶେ ଯେହ୍ନେ ନୀର ।
ଏକରୂପେ ବିରାଜଇ ଏ ଆତ୍ମା ତେସନ
ବୁଝିପାରୁ ନାହିଁ ତୁମ୍ଭେ କେମନ୍ତେ ଏସନ ।
ସଂସାର ବାସିଙ୍କି ମୁହିଁ ଦେଖେ ଏକ କରି
ଗଢ଼ିଛି ବିଧାତା ସବୁ କରି ସମପରି ।
ତୁମ୍ଭେ ଯାହାପାଇଁ ଦୂତୀ ଆସିଛମୋ ପାଶେ
ସେ କିଏ ତାରପରିଚୟ ଦିଅଗୋ ସନ୍ତୋଷେ ।
ଭୋଗ ଇଚ୍ଛାଥାଏ ଯେବେ ସେ ପୁରୁଷ ମନେ
ସେ ଅପୂର୍ବ ପୁରୁଷଙ୍କୁ ଦେଖେ ମୁଁ ନୟନେ ।
ବ୍ୟାଧି ପୀଡ଼ାପାଇ ଯାର କର୍ଣ୍ଣ କଣ୍ଠରୁନ୍ଧି
ରୁଧିର ପୁଣି ତାହାର ରୁନ୍ଧି ଅଙ୍ଗ ସନ୍ଧି ।
ମାଂସ ପାଲଟି ଯାଇ ସେ ବଢ଼ଇ ଆବର
ଶେଷେ ନାଶଯାଏ କରି ରୂପ ପରିହାର ।
ଜୀବଗଲେ ଦେହ ବିଷ୍ଠାରୂପେ ପଡ଼ିଥାଇ
କୃମି ଉପୁଜନ୍ତି ବାସି ଯୋଗୁଁ ଗନ୍ଧ ପାଇ ।
ଏରୂପେ ଏ ଦେହଗୋଟା ନାନାଦୁଃଖପାଇ
ରୂପ ସୁଖ ଆଦି ତାର ଅଛି କହ କାହିଁ ।

କୃମି କୀଟ ଯୋଗୁଁ ଦେହ କୁଣ୍ଡାଇ ହୁଅଇ
ନଖ ଆଗେ କୁଣ୍ଡାଇଲେ ସୁଖ ଉପୁଜଇ ।
ପାଣି ଦେଇ ଫୁଲି ଯାଇ ହୁଅଇ ଫୁଟକା
ତାହାକୁ ଦେଖି ସେ ଲୋକ ହୁଅଇ ତାଟକା ।
ରତି ସଙ୍ଗ ରସ ଦୁତୀ ଅଟଇ ଏମନ୍ତ
ଉତ୍ତମ ଭୋଜନପାନେ ପାଣିହୋଏ ତୃପ୍ତ ।
ଯାହା ସେ ଭୁଞ୍ଜଇ ପୁଣି ଯାହାସେ ପିଅଇ
ପ୍ରାଣବାୟୁ ପାକସ୍ଥାନେ ତାହା ବଳେନେଇ ।
ପାକସ୍ଥଳିରେ ସଞ୍ଚିତହୁଏ ସବୁ ଦୁତୀ
ଜଳକୁ ପୃଥକ କରେ ପବନ ଝଟତି ।
ତହିଁର ଯେ ସାର ରସ ହୁଅଇ ରୁଧିର
ବୀର୍ଯ୍ୟ ହୁଅଇ ଗୋ ଦୁତୀ ଶୋଣିତର ସାର ।
ବ୍ରହ୍ମରନ୍ଧ୍ର ବାଟେ ସେହି କରଇ ଗମନ
ସମାନ ବାୟୁ ସହିତେ ହୁଅଇ ମିଳନ ।
ସେ ପବନ ତାକୁ ଘେନି ଭ୍ରମଣ କରଇ
ସ୍ଥିର ହୋଇ ସେହି ବୀର୍ଯ୍ୟ ରଖି ନ ପାରଇ ।
ପଦ୍ମପତ୍ର ନୀରପ୍ରାୟ ସଦା ଢ଼ଳ ଢ଼ଳ
ପାଞ୍ଚ କୃମି ଆଶାକରେ ପ୍ରାଣୀର କପାଳ ।
ଦୁଇକାନ ମୁଳେ ଦୁଇ ଦୁଇ ନେତ୍ରେ ଦୁଇ
କୃମି ପରିମାଣ ଦୁତୀ ଶୁଣ ମୁଁ କହଇ ।
ଦୀର୍ଘରେ ମୋଟାରେ କାଣିଆଙ୍ଗୁଳି ସମାନ
ଲହୁଣୀ ପ୍ରାୟ କୋମଳ ଏହାଙ୍କର ବର୍ଣ୍ଣ ।
କାହା କାହା ଲାଙ୍ଗୁଳ ଯେ ରଙ୍ଗବର୍ଣ୍ଣ ଦିଶେ
କାହାର ଲାଙ୍ଗୁଳ ଦୁତୀ କଳା କଳା ଦିଶେ ।
ନାମ ତାଙ୍କର କହୁଛି ଶୁଣ ମନଦେଇ
କର୍ଣ୍ଣମୂଳ କୃମି ନାମ ପିଙ୍ଗଳୀ ଅଟଇ ।
ଆରେକ ନାମ ଶୃଙ୍ଖଳୀ ଅଟଇଗୋ ଦୁତୀ
ନାସା ମୂଳରେ ଗୋ ଯେଉଁକୃମି ରହିଛନ୍ତି ।
ସେ ଦୁଇ କୃମିର ନାମ ଚତାଳ ପିପଳ
ଆଶ୍ରାକରି ରହିଥିବା କୃମି ନେତ୍ରମୂଳ ।
ସେ ଦୁଇ କୃମିର ନାମ ଶୃଙ୍ଗଳୀ ଜଙ୍ଗଳୀ
ଏମନ୍ତେ ବହୁତ କୃମି ଅଛି ଭଳି ଭଳି ।
ସେ ସବୁ କୃମିର ସଂଖ୍ୟା ଶତ ପଞ୍ଚାଶତ
ସୋରିଷ ପ୍ରମାଣେ କୃମି ଲଲାଟରେ ସ୍ଥିତ ।
ଏ କୃମି ଯୋଗୁଁ କପାଳେ ବ୍ୟାଧି ଉପୁଜଇ
ଏକ ପ୍ରକାରଯେ କୃମି ଆବର ଅଛଇ ।
ପୁତ୍ର ଉପୁଜାନ୍ତି ଯେହି ତାଙ୍କ କଥା ଶୁଣ
ଏ କୃମିର ଆକାର ଯେ ତଣ୍ଡୁଳ ପ୍ରମାଣ ।
ତଣ୍ଡୁଳ ପ୍ରାୟ ତା ବର୍ଣ୍ଣ ମୁଖେ ରୋମ ଦୁଇ
ଏମନ୍ତ କୃମି ଯାହାର ଦେହେ ରହିଥାଇ ।
ନିଶ୍ଚୟ ମୃତ୍ୟୁ ଦେହୀର ତକ୍ଷଣେ ଗୋ ଦୁତୀ
ସ୍ୱସ୍ଥାନରେ ରହିଥାନ୍ତି ଯେଉଁ ପ୍ରଜାପତି ।
ତାର ମୁଖ ବାଟଦେଇ ବୀର୍ଯ୍ୟ ଯେ ଖସଇ
ରସ ରୂପୀ ସେ ବୀର୍ଯ୍ୟକୁ ପ୍ରଜାପତି ପିଇ ।
ମତ୍ତହୋଇ ତାଳୁବାଟେ ବୀର୍ଯ୍ୟ ଉଠିଯାଇ
ଢଳ ହଳ ହୋଇ ତାଳୁ ଭିତରେ ରହଇ ।
ଇଳା ପିଙ୍ଗଳା ଯେ ସୁଷୁମ୍ନା ନାଡ଼ୀ ତିନି
ତାଳୁ ମଧ୍ୟରୁ ଖସଇ ବାୟୁବଳେ ପୁଣି ।
ସେ ନାଡ଼ୀ ଜାଳ ପଞ୍ଜରା ହାଡ଼ମଧ୍ୟେ ରହି
ପ୍ରାଣୀର ଯେ କାମକଣ୍ଡୁ ତହୁଁ ଉପୁଜଇ ।
ତହୁଁ ପୁରୁଷର ଚିହ୍ନ ହୁଅଇ ପ୍ରମତ୍ତ
ନାରୀର ଚିହ୍ନ କମ୍ପଇ ତହୁଁ ହୋଇ ମତ୍ତ ।
ତହୁଁ ଯେ ସ୍ତିରୀ ପୁରୁଷ ସଙ୍ଗମ ହୁଅଇ
ମଇଥୁନ ବଳେ ଦେହେ ଦେହ ଘଷିହୋଇ ।
କ୍ଷଣେ ସୁଖ ଉପୁଜଇ ତହିଁରେ ଗୋ ଦୁତୀ
କଣ୍ଡୁ ନାଶ ପରେ ଦୁଃଖ ହୁଏ ଉତପତ୍ତି ।
ଏଣୁ ତୁମ୍ଭେ କର ଦୁତୀ ସ୍ୱସ୍ଥାନେ ଗମନ
ତୁମ୍ଭେ ଯେ ପ୍ରସ୍ତାବ କଲ ମୋର ସନ୍ନିଧାନ ।
ତହିଁରେ କିଛି ଅପୂର୍ବ କଥାନାହିଁ ଦୁତୀ
ଅପୂର୍ବ କଥା ଥିଲେ ତୋ କଥା ମୁଁ କରନ୍ତି ।
ଅସାର କଥା ତୋହର କିଛି ନାହିଁ ସାର
ରୂପ ଯଉବନ ସବୁ ନିରତେ ଅସାର ।
ଅସାର ଦେହରେ ଦୁତୀ ସାର କିଛି ନାହିଁ
ଦ୍ୱିଜ ଗୋପୀନାଥ ବୋଲେ ହରିବୋଲ ଭାଇ

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନ୍ନୋ-
ପାଖ୍ୟାନେ ସୁକଳା ଚରିତେ ନାମ
ତ୍ରିପଞ୍ଚାଶୋଽଧ୍ୟାୟଃ ।



## ଚତୁଃପଞ୍ଚାଶତ ଅଧ୍ୟାୟ

### ରତି କନ୍ଦର୍ପ ସହିତ ଇନ୍ଦ୍ରର ସୁକଳା ସମୀପେ ଗମନ

ଶ୍ରୀବିଷ୍ଣୁ କହିଲେ ତୁହୋ ଶୁଣ ରାଜାବେନ
ସୁକଳା ତହୁଁ ସେ ଦୂତୀ ପାଇ ମହାଜ୍ଞାନ ।
ଇନ୍ଦ୍ର ଛାମୁରେ ସଂକ୍ଷେପି କହିଲା ବୁଝାଇ
ସୁକଳା କହିବା କଥା ଶୁଣି ଶଚୀସାଇଁ ।
ସାହସ ଧଇର୍ଯ୍ୟ ଜ୍ଞାନ ବିଚାରି ତାହାର
ବୋଇଲେ ଏନାରୀ ବିନା କେଉଁନାରୀ ସାର ।
ଏ ମହୀମଣ୍ଡଳେ କଥା କହିବ ଏପରି
ଯେଉଁ ବଚନ ଧଉତ ସଦା ନ୍ୟାୟ ବାରି ।
ଯୋଗ ଜ୍ଞାନରେ ପବିତ୍ର ହୋଇଛି ଆବର
ଧନ୍ୟ ଧନ୍ୟ ତୁ ଗୋ ପତିବ୍ରତା ନାରୀସାର ।
ତିନି ପୁରଭାର ବହି ପାରଇ ଏ ନାରୀ
ସତ୍ୟରେ ଅତି ପବିତ୍ର ଦେହ ଅଛି ଧରି ।
ସୁକଳା ଚରିତ୍ର ଇନ୍ଦ୍ର ମନେ ମନେ ଭାଳି
କନ୍ଦର୍ପ ପାଖକୁ ତହୁଁ ବେଗେଗଲେ ଚଳି ।
ଆହୋ କନ୍ଦର୍ପ ତୁମ୍ଭଙ୍କୁ ସଙ୍ଗତରେ ଘେନି
କୃତଳ ବୈଶ୍ୟ ଭାରିଯା ସୁକଳା କାମିନୀ ।
ରୂପଗୁଣ ଯଉବନେ ବ୍ରହ୍ମାଣ୍ଡରେ ସାର
ତାକୁ ଦେଖିବାକୁ ମନ ବଳିଛି ମୋହର ।
ବଳ ଦର୍ପିତ ସେ ମନମଥ କହେ ଶୁଣି
ଗର୍ବକରି କହୁଛି ଯା ଶୁଣ ବଜ୍ରପାଣି ।
ସେସ୍ଥାନେ ଗମନକର ଯହିଁ ସେ ଅଛଇ
ରତିକି ଘେନି ମୁଁ ତୁମ୍ଭ ସଙ୍ଗେ ସଙ୍ଗେ ଯାଇ ।
ମାନ ଗୁମାନ ଧଇର୍ଯ୍ୟ ନ ରଖିବି ତାର
ବଳବୀର୍ଯ୍ୟ ପତିବ୍ରତା ସତ ହିଁ ଆବର ।
ଭାଙ୍ଗିଦେବି ସବୁ ତାର ଆହେ ସୁରରାୟ
ମୋଆଗେ ସେ ନାରୀଗୋଟା କିଞ୍ଚିତପରାୟ ।
ମନମଥ କଥାଶୁଣି କହିଲେ ବାସବ
ହେ ଅନଙ୍ଗ ବୃଥା ତୁମ୍ଭେ କରୁଛ ଏ ଗର୍ବ ।
ସେ ନାରୀ ଛାମୁରେ ତୁମ୍ଭ ଗର୍ବହେବ ଚୂନା
ସତ୍ୟ ବୀର୍ଯ୍ୟ ଧଇର୍ଯ୍ୟରେ ସେ ନାରୀ ସୁମନା ।
ଧର୍ମ କର୍ମରେ ତାହାର ମନ ନ ଟଳଇ
ତାକୁ ଜିଣିବାକୁ ଜଣେ ମୁହିଁ ନ ଦେଖଇ ।
ଏଣୁ ସଂସାରେ ଅଜେୟ ସେ ରମଣୀ ଏକା
ସେନାରୀ ଦେହେତୋ ବାଣମୂନହେବ ବଙ୍କା ।
ତୋର ପଉରୁଷ ବଳ ସବୁ ଯିବ ହଜି
ଯେ ଜ୍ଞାନ କହିଲା ତହୁଁ ପାରିଛି ମୁଁ ବୁଝି ।
ଇନ୍ଦ୍ରକଥା ଶୁଣି କ୍ରୋଧେ କହେ ମନମଥ
ନଜାଣୁ କି ମୋର ବଳ ତୁହୋ ଶଚୀନାଥ ।
ଦେବତା ଦାନବେ ମହାବଳୀଯେ ବୋଲାନ୍ତି
ଜ୍ଞାନରେ ଯେ ବଳବନ୍ତ ଋଷି ମୁନି ଯତି ।
କ୍ଷଣକେ ତାହାଙ୍କ ବଳ ମୁଁ ଧ୍ୱଂସି ପାରଇ
ଏ ନାରୀ ଛାରର ବଳ କେତେ ଶଚୀରାୟ ।
ଯାହା ମୋତେ କହିବ ତା କରିବି ନିଶ୍ଚୟ
ଏ ଦୃଢ଼ ପ୍ରତିଜ୍ଞା ମୋର ଆହେ ସୁରସାଇଁ ।
କନ୍ଦର୍ପ ଦର୍ପ ଦଳିବା ଶକ୍ତି ନାହିଁ କାର
ସେ ନାରୀକି କରିବି ମୁଁ ନିଶ୍ଚେ ନାରଖାର ।
ଦେଖୁଥିବ ହସୁଥିବ ସାକ୍ଷାତରେ ତୁମ୍ଭେ
ଲହୁଣୀ ଯେହ୍ନେ ତରଳେ ଅନଳ ପ୍ରଭାବେ ।
ନିଜ ତେଜେ ତାର ମନ ଦେବି ତରଳାଇ
ଏହି ଶୁଭବେଳା ଧରି ଚାଲ ଶଚୀସାଇଁ ।
ବୃଥା କିମ୍ବା ନିନ୍ଦାକର ତେଜ ବୀର୍ଯ୍ୟ ମୋର
ତିନିଲୋକ ମୋହିପାରେ ଏମୋହରଶର ।
ଶ୍ରୀବିଷ୍ଣୁ କହନ୍ତି ବେନ ନୃପତି ଶୁଣନ୍ତି
ମନମଥ କଥା ଶୁଣି ବାସବ କହନ୍ତି ।
ଆହୋ କାମଦେବ ମୁହିଁ ଭଲରୂପେ ଜାଣେ
ସେକାମିନୀ ବିମୋହିତ ନୋହେ କାମବାଣେ ।
ବହୁତ ପୁଣ୍ୟ ଆଚାର କରିବାରୁ ତାର
ପୁଣ୍ୟରେ ଗଢ଼ା ହୋଇଛି ସେ ନାରୀ ଶରୀର ।
ଏଣୁ ପୁଣ୍ୟଦେହା ପୁଣ୍ୟ ପବିତ୍ର ବୋଲାଇ
ତୋର ଉଦ୍ୟମ ବିଫଳ ହେବ ମୁଁ ଜାଣଇଁ ।
ଯାହା ତାହା ହେଉବାରେ ପରଖିବା ସିନା
ତୋହର ଗର୍ବ ତା ତହିଁ କରିବା ନା ଚୂନା ।
ପଉରୁଷ ବଳବୀର୍ଯ୍ୟ ଦେଖିବା ତୋହର
ଏହାକହି ରତି କାମ ଘେନି ପୁରନ୍ଦର ।
ଦୂତୀକି ଘେନି ସୁକଳା ପାଖରେ ମିଳିଲେ
ଏକାହୋଇ ଗୃହମଧ୍ୟେ ଅଛି ସେ ଦେଖିଲେ ।
ଯୋଗୀପ୍ରାୟ ପତି ପାଦେ ଲଗାଇଛି ଲୟ
ସବୁ କଳପଣା ତେଜି ଚିନ୍ତେ ପାଦଦ୍ୱୟ ।

ପତି ପାଦ ଧ୍ୟାନ ବିନା ନାହିଁ ଆନ ଧ୍ୟାନ
ରତି ପୁରନ୍ଦର ଦୂତୀ ଘେନିଣ ମଦନ ।
ଅପୂର୍ବ ରୂପ ଅନନ୍ତ ପ୍ରଭାବ ଦେଖାଇ
ସୁକଳା ସତୀର ମନ ଭୁଲାଇବା ପାଇଁ ।
ହାବ ଭାବ ଭୋଗ ନାନା ବିଳାସ ଯେତେକ
ଦେଖାଇଲେ ପୁରନ୍ଦର ଅମର ନାୟକ ।
ତିଳେମାତ୍ର ନ ଟଳିଲା ସୁକଳାର ମନ
ସୁକଳା ସେ ପୁରୁଷକୁ କରି ଦରଶନ ।
ସୁନ୍ଦର ଗୁଣଜ୍ଞ ବୋଲି ମନେ ନ ଆଣିଲା
ହୀନ ପୁରୁଷଙ୍କ ମଧ୍ୟେ ତାହାକୁ ଗଣିଲା ।
ପଦ୍ମପତ୍ରରେ ଯେମନ୍ତେ ଜଳବିନ୍ଦୁ ରହି
ମୁକୁତା ଫଳ କୀରତି ଯଶକୁ ଲଭଇ ।
ତେସନ ଏ ପତିବ୍ରତା ସତୀ ଶିରୋମଣି
ଉଚ୍ଚ କୀରତି ଯଶକୁ ଲଭିକରି ପୁଣି ।
ମନ ମଧ୍ୟରେ ସୁକଳା କରଇ ବିଚାର
ଏ ପୁରୁଷ ଛାର ନୀଚ ପ୍ରକୃତି ଏହାର ।
ପୂର୍ବ ମୋହ ପାଖକୁ ଏ ପେଷିଥିଲା ଦୂତୀ
ଏହାର ପ୍ରଶଂସା ଗାଉଥିଲା ସେ ଯୁବତୀ ।
ଖଳ ସ୍ୱଭାବ ଏହାର ଏକାଦେଖି ମୋତେ
ରତି ମନମଥ ଦୂତୀ ଅଛନ୍ତି ସଙ୍ଗତେ ।
ମୋର ପତିବ୍ରତା ଧର୍ମେ ହୋଇବେ ମର୍ଦ୍ଦିତା
ଆସିଅଛି ଭାଙ୍ଗିବାକୁ ମୋର ପତିବ୍ରତା ।
କାନ୍ତ ବିନେ ଏ ମୋହର ଦେହ ଅତି କ୍ଷୀଣ
ମୃତକଳ୍ପ ହୋଇଅଛି ପୁଣି ଚେଷ୍ଟାହୀନ ।
କାମକଳ୍ପ ବିକାରହିଁ ଦେହେ ମୋର ନାହିଁ
ଏହାଙ୍କ ଚେଷ୍ଟାକୁ ବ୍ୟର୍ଥ କରିଦେବି ମୁହିଁ ।
ଆନନ୍ଦିତ ବଳବନ୍ତ ନୃତ୍ୟକାରୀ ଜନ
ଆଖିଆଗେ ମୃତହେଲେ ହୁଅଇ ଯେସନ ।
ତେସନ ଏହି ପୁରୁଷ ସମ୍ଭୋଗ ମାନସେ
ମୋ ଆଖି ଆଗେ ନାଚଇଆନନ୍ଦେ ହରଷେ ।
ମହସତୀ ସୁକଳା ଯେ ଏମନ୍ତ ବିଚାରି
ସତ୍ୟ ଦଉଡ଼ିରେ ମନବାନ୍ଧି ଦୃଢ଼କରି ।
ନିୟମବଳେ ପଶିଲା ଗୃହର ଭିତରେ
ଦୀନ ଗୋପୀନାଥ ମନ ଅଚ୍ୟୁତ ପୟରେ ।

ଇତି ଶ୍ରୀପଦ୍ମ ପୁରାଣେ ଭୂମିଖଣ୍ଡେ ସୁକଳା
ଚରିତ୍ରେ ନାମ ଚତୁଃପଞ୍ଚାଶୋଽଧ୍ୟାୟଃ ।

## ପଞ୍ଚପଞ୍ଚାଶ ଅଧ୍ୟାୟ

### ଇନ୍ଦ୍ର ମଦନ ବିବାଦ ଓ ମଦନର କ୍ରୀଡ଼ାଦୂତୀ ପ୍ରେରଣ

ଶ୍ରୀବିଷ୍ଣୁ କହିଲେ ଶୁଣ ବେନ ନରପତି
ସୁକଳାର ମନ ବୁଝିପାରି ଶଚୀପତି ।
କାମକୁ ଚାହିଁ କହିଲେ ଆହେ ମନମଥ
ଦେଖିଛୁତ ଛାଡୁନାହିଁ ଏହି ଧ୍ୟାନପଥ ।
ଏ ସୁକଳା ସତୀକି ତୁ ନପାରିବୁ ଜିଣି
ବଳଗର୍ବୀ ବୀରପ୍ରାୟ ଏହାର ଯେ ଠାଣି ।
ଧଇର୍ଯ୍ୟ ଧନୁରେ ଦେଇ ଧର୍ମ ରୂପଗୁଣ
ହସ୍ତରେ ଧରିଛି ଦେଖ ଜ୍ଞାନ ରୂପବାଣ ।
ରଣ କରିବା ଉଦ୍ୟମ ସାହସ ଅଛଇ
ପୁରୁଷାର୍ଥ ଜୟକୁ ଏ ମନରେ ପାଞ୍ଚଇ ।
ଆପଣାର ପଉରୁଷ ଦେଖାଉଛୁ ତୁହି
ଏ ସଂଗ୍ରାମେ କାମକେଭେ ନୋହିବୁ ତୁ ଜୟୀ ।
ଏଣୁ ଭବିଷ୍ୟତ ଚିନ୍ତାକର ତୁ ମଦନ
ପୂର୍ବେ ଶମ୍ଭୁକଲେ ନେତ୍ର ଅନଳେ ଦହନ ।
ମହାତମା ବିରୋଧର ଫଳ ତୁମ୍ଭେ ଜାଣ
ଅଙ୍ଗ ଜଳିଗଲା ଖାଇ ଶମ୍ଭୁ ନେତ୍ରବାଣ ।
ସେଦିନ ଅନଙ୍ଗବାଣ ହୋଇଲା ତୁମ୍ଭର
କଲାକର୍ମ ଭୋଗକଲ ଜାଣିଥା ହେ ସ୍ମର ।
ଆଜି ଏ ସାଧବୀ ସଙ୍ଗେ କଲେ ତୁ ବିରୋଧ
ନୀଚଯୋନି ପାଇବୁ ତୁ ପ୍ରାଣେହୋଇ ବଧ ।
ଜାଣିଶୁଣି ମହାତମା ବଇରୀ ହୋଇଲେ
ସେହି ଦୋଷକୃତ ଫଳ ଭୋଗକଲେ ଭଲେ ।
ନାନାହାନି ନାନାଦୁଃଖ ଭୋଗକରେ ପୁଣି
ଏଣୁ ଏଥୁଯିବି ମୁହିଁ ଛାଡ଼ି ଏ ରମଣୀ ।
ସତୀସଙ୍ଗ ଫଳ ପୂର୍ବେ ଭୋଗିଅଛି ମୁହିଁ
ଯେ ଫଳ ଭୋଗିଛି ସହି ନ ପାରିବେ କେହି ।
ସେକଥା ଗୋଟା ତୁମ୍ଭଙ୍କୁ ଅଛଇତ ଜଣା
ଜାଣିଶୁଣି କାହିଁପାଇଁ ହୋଇବି ମୁଁ ବଣା ।
ଗଉତମ ଭାରିଯା ଯେ ଅହଲ୍ୟା ସୁନ୍ଦରୀ
ତାହାକୁ ହରିଲି ମୁହିଁ ମୁନିରୂପ ଧରି ।
ଜାଣି ମୋତେ ଶାପଦେଲେ ଗଉତମ ମୁନି
ଇନ୍ଦ୍ର ତୋ ସର୍ବାଙ୍ଗଯାକ ହେଉ ସସ୍ରଯୋନି ।

ଭଗାଙ୍ଗ ଦେଖି ମୋହର ତୁହି ହୋ ମଦନ
ମୋତେ ଛାଡ଼ି ପଳାଇଲୁ ଆପଣା ସଦନ ।
ସତୀନାରୀଙ୍କ ତେଜକୁ ତୁଳନା ଯେ ନାହିଁ
ସହସ୍ର କିରଣ ସୂର୍ଯ୍ୟ ନ ପାରନ୍ତି ସହି ।
ପୂର୍ବେ ଅତ୍ରିର ଭାରିଯା ଅନସୂୟା ସତୀ
ମୁନିଶାପେ କୁଷ୍ଟହେବା ଦେଖି ନିଜପତି ।
ନିଜତେଜେ ରକ୍ଷାକଲେ ଶୁଣିଛି ପୁରାଣେ
ସୂର୍ଯ୍ୟ ଏବେ ଉଦେ ଯେହ୍ନୁ ସହସ୍ର କିରଣେ ।
ଆପଣାର ପତି ଅଟେ ବିପ୍ର କଉଣ୍ଡିନ୍ୟ
ମାଣ୍ଡବ୍ୟରଷିଙ୍କ ଅଭିଶାପ ଯେ ବଚନ ।
ଆପଣା ସ୍ୱାମୀର ମୃତ୍ୟୁ ନିବାରିଲା ସତୀ
ସୂର୍ଯ୍ୟଉଦେ ନହୋଇଲେ ନମଲା ତା ପତି ।
ଅତ୍ରି ପତ୍ନୀ ଅନସୂୟା ସତୀକି ବୁଝାଇ
ତାହାର ସ୍ୱାମୀକି ତାକୁ ସ୍ୱର୍ଗରେ ବସାଇ ।
ପୁତ୍ରରୂପେ ପାଇ ବ୍ରହ୍ମାବିଷ୍ଣୁ ମହେଶ୍ୱର
ସତୀର ତେଜ ପ୍ରଭାବ ମହିଁମା ଅପାର ।
କାମଦେବ ବୋଇଲେ ହେ ସ୍ୱର୍ଗର ମଘବା
ଏକଥାଗୋଟା ବିସ୍ତାରି ମୋଆଗେ କହିବା ।
ଇନ୍ଦ୍ରଦେବତା ବୋଇଲେ ଶୁଣହୋ ମଦନ
ବିପ୍ରେକ ଥିଲା ତାହାର ନାମ କଉଣ୍ଡିନ୍ୟ ।
ବହୁତ ଧନ ତାହାର ପିତାମାତା ନାହିଁ
ବିପ୍ର କନ୍ୟାଏକ ବିଭାହେଲା ଧନଦେଇ ।
ଅଳପ ଦିନରେ କନ୍ୟା ହେଲା ରଜୋବତୀ
ସ୍ୱଭାବେ ସୁନ୍ଦରୀ ଯହୁଁ ହୋଇଲା ଯୁବତୀ ।
ଗଣ୍ଡ ନକ୍ଷତ୍ରରେ ଋତୁ ହେବାରୁ ତାହାର
ଜଉତିଷେ ବୋଇଲେ ତୁ ଶୁଣ ଦ୍ୱିଜବର ।
ସଙ୍ଗମ ହେବ ଏହାର ଚଉଦ ମାସାନ୍ତେ
ବିପ୍ର ମହା ପୀଡ଼ାପାଇ କାମ ବାଣାଘାତେ ।
ନମାନି ସଙ୍ଗମକଲା ବଳେ ତାକୁ ଧରି
ପତିବରତୀ ଅଟଇ ସେ ବିପ୍ରକୁମାରୀ ।
ସ୍ୱାମୀରକଥା ଅବଜ୍ଞା କରି ନ ପାରିଲା
କିଛିଦିନେ ବିପ୍ର ଅଙ୍ଗେ ବ୍ୟାଧି ଉପୁଜିଲା ।
ଗଳିତ କୁଷ୍ଟ ରୋଗରେ ପାଇଲା କଷଣ
ବସି ଖାଇଲା ସରିଲା ଘରେ ଥିବା ଧନ ।
ଭାରିଯା ତାକୁ ପୋଷଇ ଭିକମାଗି ଆଣି
ପୂଯ ରକତ ତାହାର ଧୁଅଇ ରମଣୀ ।

ତିଳେମାତ୍ର ଘୃଣାକଷ୍ଟ ନାହିଁ ତାର ମନେ
ସ୍ୱାମୀସେବା କରୁଥାଇ ସତୀ ଦିନେ ଦିନେ ।
ସ୍ୱାମୀର ଉଚ୍ଛିଷ୍ଟ ଭୁଞ୍ଜେ ଶ୍ରଦ୍ଧା ଭକତିରେ
ସ୍ୱାମୀ ମନ ଜଗିଥାଇ ସତୀ ନିରନ୍ତରେ ।
ଛିଣ୍ଡାଲୁଗା ପିନ୍ଧିଥାଇ ନାହିଁ ଅଳଙ୍କାର
ଏକଦିନକର କଥା ଶୁଣ ତୁହୋ ସ୍ମର ।
ଗଣିକାଗଣ ସେବାଟେ ବେଶଭୂଷା ହୋଇ
ଯାଉଥିଲେ ବିପ୍ରଦେଖି ମନେ ବିଚାରଇ ।
ଧନ ନାହିଁ କାହୁଁ ଭୋଗ କରିବି ଏହାଙ୍କୁ
ଏମନ୍ତ ବିଚାରୁ ଚିନ୍ତା ଘୋଟିଲା ତାହାକୁ ।
ସ୍ୱାମୀର ମନ ବିରସ ଦେଖିଣ ବ୍ରାହ୍ମଣୀ
ବୋଇଲା କି ଚିନ୍ତା ତୁମ୍ଭେ କର ବସି ପୁଣି ।
କହିଲେ ମୁଁ ତାହାଆଣି ଦେବଇଁ ତୁମ୍ଭଙ୍କୁ
ଶୁଣି ସେ ବିପ୍ର ବୋଇଲା ଚାହିଁ ଭାରିଯାକୁ ।
ବେଶ୍ୟା ସମ୍ଭୋଗରେ ମନଥିବା ଜାଣି ସତୀ
ବେଶ୍ୟା ଘରେ ପହୁଞ୍ଚିଲା ନପାହୁଣୁ ରାତି ।
ଘରଦୁଆର ଖରକି ଲିପିଲାପି ଦେଇ
ଦାନ୍ତକାଠି ପାଣିଢ଼ାଳେ ଦ୍ୱାରେଦେଲା ଥୋଇ ।
ସୂର୍ଯ୍ୟଉଦେ ନହୋଇବା ପୂର୍ବୁ ସେ ଅଇଲା
ସ୍ୱାମୀର ସେବାରେ ରହି କାଳ କଟାଇଲା ।
ଏରୂପେ ନିତି କରଇ ବେଶ୍ୟା ଘରେ ଯାଇ
ବେଶ୍ୟା ଦେଖିକରି ଅତି ଆଶ୍ଚର୍ଯ୍ୟ ହୁଅଇ ।
ଦିନେ ଲୁଚିକରି ବିପ୍ର ପତ୍ନୀକି ଧଇଲା
କିମ୍ପା ତୁ ମୋହର ସେବା କରୁଲୋ ବୋଇଲା ।
ଯାହା ତୁ ମାଗିବୁ ତାହାଦେବି ମୋର ସତ୍ୟ
ବ୍ରାହ୍ମଣୀ ବିନୟେ କହେ ଯୋଡ଼ି ବେନିହସ୍ତ ।
ମୋହର ସ୍ୱାମୀ ଗଳିତ କୁଷ୍ଟରୋଗ ଗ୍ରସ୍ତ
ତୁମ୍ଭ ସମ୍ଭୋଗେ ବଳିଛି ତାହାଙ୍କର ଚିତ୍ତ ।
ତାପାଇଁ ମୁ ତୁମ ସେବା କରୁଛି ସୁନ୍ଦରୀ
ତୋଷକର ମୋତେ ତୁମ୍ଭେ ସ୍ୱାମୀ ଦାନକରି ।
ଗଣିକା ମନେ ଭାଳଇ କରିଛି ମୁଁ ସତ୍ୟ
ନାହିଁ କରିବି କେମନ୍ତେ ନୁହଇ ଏମନ୍ତ ।
ବ୍ରାହ୍ମଣୀକି କହିଲା ତୋ ସ୍ୱାମୀ ରାତ୍ରେ ଆଣ
ସତ୍ୟ କରିଛି କରିବି ଦେହ ସମର୍ପଣ ।
ଯାହା ତାହା ହେଉ ଅଛି ନ ବାରିବି ମୁହିଁ
ଏମନ୍ତ ଶୁଣି ବ୍ରାହ୍ମଣୀ ଆନନ୍ଦେ ଆସଇ ।

ଦିବସ ଗଲା ହୋଇଲା ରଜନୀ ପ୍ରବେଶ
ସ୍ୱଭାବେ ଉଆଁସ ରାତି ନ ଦିଶଇ ଦିଶ ।
ମେଘ ଘୋଟିବାରୁ ପୁଣି ଘୋର ଅନ୍ଧକାର
ସ୍ୱାମୀକି କନ୍ଧେ ବସାଇ ବ୍ରାହ୍ମଣୀ ବାହାର ।
ବାଟ ନ ଦିଶଇ ପୁଣି ଚାଲେ ଧୀରେ ଧୀରେ
ମାଣ୍ଡବ୍ୟଋଷି ଯେ ତପେ ବସିଥିଲେ ଚୋରେ ।
ରାଜାଘରୁ ଚୋରିକରି ବାଣ୍ଟି ଘେନିଗଲେ
କହିଦେବା ଭୟେ ହାର ଗୋଟିଏ ବାଛିଲେ ।
ଋଷିପାଶେ ଥୋଇଦେଇ ପଳାଇଲେବେଗେ
ଖୋଜାପଡ଼ନ୍ତେ ଦେଖିଲେ ହାର ମୁନିଆଗେ ।
ମୁନିକି ଧରିଣ ଘେନିଗଲେ ଦଣ୍ଡୁଆସି
ଶୂଳଦିଅ ବୋଲି ରାୟେ କୋପମନେ ଭାଷି ।
ସେଦିନ ସନ୍ଧ୍ୟାରେ ମୁନି ବସିଥିଲେ ଶୂଳେ
ବ୍ରାହ୍ମଣୀ ସ୍ୱାମୀକି ଘେନିଯାଏ ରାତ୍ରିକାଳେ ।
ଝୁଣ୍ଟିପଡ଼ିଲା ମାଣ୍ଡବ୍ୟ ମୁନିର ଉପରେ
ଶୂଳେଥାଇ ମୁନି ଶାପଦେଲେ କୋପଭରେ ।
କଷ୍ଟ ଉପରେ ଯେ କଷ୍ଟଦେଲା ମୋତେ ଆଣି
ରାତି ପାହିଗଲା ଉଦେ ହେଲେ ଦିନମଣି ।
ପୁରୁଷ ହୋଇଲେ ତାର ହେବ ଶିର ଛେଦ
ବ୍ରାହ୍ମଣୀ ଭାଳେ ସ୍ୱାମୀକି ପଡ଼ିଲା ପ୍ରମାଦ ।
ଏ ରାତି ପାହିଲେ ସିନା ମରିବ ମୋ ପତି
ନମରୁ ମୋ ପତି ଆଉ ନ ପାହୁ ଏ ରାତି ।
ଏମନ୍ତ ସତୀର ଶାପପାଇ ଦିନକର
ଉଦେ ନହୋଇଲେ କଷ୍ଟ ପାଇଲେ ଅମର ।
ଜନଜନ୍ତୁଙ୍କ କଷଣ ଦେଖି ତହୁଁ ଗଲେ
ବ୍ରହ୍ମାର ଛାମୁରେ ଯାଇଁ ସବୁ ଜଣାଇଲେ ।
ଅତ୍ରି ବୋଇଲେ ହୋ ଚାଲ ଅନସୂୟା ପାଶ
ବିଷର ଯେ ଔଷଧ ଅଟେ ସିନା ବିଷ ।
ତେଜ ତେଜକୁ ଯେସନ କରଇ ହରଣ
ମହାସତୀ ଅନସୂୟା କରିଣ କାରଣ ।
ଏମନ୍ତ ଭାଳି ସକଳେ ଗଲେ ସତୀପାଶ
ଶୁଣି ଅନସୂୟା ସତୀ ହୋଇଣ ହରଷ ।
ବ୍ରାହ୍ମଣୀକି କହିଲେ ସେ ଯହୁଁ ଆଜ୍ଞାଦେଲା
ସୂର୍ଯ୍ୟ ଦେବତା ଉଇଁଲେ ରାତି ପାହିଗଲା ।
ବ୍ରାହ୍ମଣ ବ୍ରାହ୍ମଣୀଗଲେ ସ୍ୱର୍ଗପୁରେ ଚଳି
ସବୁ ଦେବତାଏ ତହୁଁ ହୋଇ ଏକମେଳି ।

ଅନସୂୟାଙ୍କୁ ବୋଇଲେ ମାଗିଘେନ ବର
ଅତ୍ରି ଭାରିଯା ବୋଇଲେ ବ୍ରହ୍ମା ବିଷ୍ଣୁହର ।
ମୋଗର୍ଭେ ଉଦୟହୋଇ ହେବେମୋ କୁମର
ହେଉବୋଲି କହି ତହୁଁ ଗଲେ ଯେ ଅମର ।
କାମଦେବ ବୋଇଲେ ଯେ କୁହ ସୁରପତି
ଏ ଦଣ୍ଡ ପାଇଲେ କିମ୍ପା ମାଣ୍ଡବ୍ୟଯେ ଯତି ।
ଇନ୍ଦ୍ରବୋଇଲେ ସାମାନ୍ୟ ପାପେ ମୁନିବର
ଏ ଦଣ୍ଡପାଇଲେ କହେ ଶୁଣତୁହୋ ସ୍ମର ।
ଝିଣ୍ଟିକା ଗୋଟିଏ ଧରି ଆଣି ମୁନିମଣି
ଖେଳ କଉତୁକେ ଲୁହାକଣ୍ଟା ଗୋଟା ଆଣି ।
ତାର ମଳଦ୍ୱାରେ ଫୋଡ଼ି ଦେଖେ କଉତୁକ
ସେ ଦୋଷେ ଶୂଳପାଇଲା ହେ ରତିନାୟକ ।
ତୁମ୍ଭ କର୍ଣ୍ଣ ଗୋଚରକି ହୋଇନାହିଁ ଏହା
ଦ୍ୟୁମତସେନ ନାମରେ ଥିଲେ ନରନାହା ।
ତାହାଙ୍କ ନନ୍ଦିନୀ ନାମ ସାବିତ୍ରୀ ଅଟଇ
ଯମ ହାତରୁ ସ୍ୱାମୀକି ଆଣିଲା ଛଡ଼ାଇ ।
ସତି ମହିମା ଏମନ୍ତେ ଶୁଣିଛି ବହୁତ
ବିରୋଧ କରିବ କିଏ ସତୀର ସହିତ ।
ଜାଣୁ ଜାଣୁ ହାତଦେବ ଜଳନ୍ତା ଅନଳେ
ପଥର ବାନ୍ଧିବ କେଉଁ ମୂଢ଼ ନିଜଗଳେ ।
ସମୁଦ୍ର ପହଁରିଯିବା ଭରସା କାହାର
ସତୀକି ବଶ କରିବ କେଉଁ ମୂଢ଼ନର ।
ଇନ୍ଦ୍ର ଏମନ୍ତେ ବହୁତ ନୀତି କଥା କହି
ନାନା ପୁରାଣ ଦେଖାଇ କାମକୁ ଶିଖାଇ ।
ସବୁକଥା ଶୁଣି କାମ ଇନ୍ଦ୍ରକୁ କହିଲା
ତୁମ୍ଭ ଆଜ୍ଞାରେ ଆସିଛି ଆବର ବୋଇଲା ।
ଧଇର୍ଯ୍ୟ ସୁହୃଦ କଥା କହୁଛ ଏକ୍ଷଣେ
ପଉରୁଷ ଛଡ଼ାଉଛ ମୋର ସେ ବଚନେ ।
ଭକତି କଥା କହୁଛ ବହୁତ ଯେ ପୁଣି
ଯେବେ ଏଥୁଁ ଫେରିଯିବି ଆହେ ବଜ୍ରପାଣି ।
ନ ରହିବ ମୋର ଯଶ କୀରତି ଜଗତେ
ମାନହୀନ ହୋଇ ମୁଖ ଟେକିଛି କେମନ୍ତେ ।
ବୋଲିବେ ନାରୀ ଗୋଟାକୁ ନପାରିଲା ଜିଣି
ପୂର୍ବେ ମୁଁ ଜିଣି ଅଛଇ ଯୋଗୀ ତପୀମୁନି ।
ଦାନବ ମାନବ ନାଗ ଦେବତା କିନ୍ନର
ସହି ନପାରିବି ଉପହାସ ତାହାଙ୍କର ।

ନାରୀଗୋଟା ଭାଙ୍ଗିଦେଲା କନ୍ଦର୍ପ ତାହାକୁ
ଏଣୁ ମୁଁ ଫେରି ନଯିବି କଦାପି ଘରକୁ ।
ହେ ବାସବ ଆଜି ଦେଖ ତୁମ୍ଭ ସଙ୍ଗେ ଯାଇ
ସେ ନାରୀମାନ ଗୁମାନ ନିଶ୍ଚେ ଭାଙ୍ଗି ଦେଇ ।
ତେଜବଳ ଧଇର୍ଯ୍ୟ ମୁଁ ନ ରଖିବି ତାର
ଭୟ କିମ୍ପାଇଁ କରୁଛ ତୁମ୍ଭେ ପୁରନ୍ଦର ।
ସୁରପତିଙ୍କି ଏରୂପେ କହି ମନମଥ
କୋପେହୋଇ ଫୁଲଶର ଫୁଲ ଧନୁହସ୍ତ ।
ସମ୍ମୁଖରେ ଥିବା ରତିକି ବୋଇଲାଗୋ ପ୍ରିୟେ
ତୋର ମାୟାର ଆଶ୍ରିତ କୀଟୁ ବ୍ରହ୍ମଯାଏ ।
ସେ ମାୟାଜାଲ ବିସ୍ତାରି ଚାଲ ଆଗ ହୋଇ
ଏହି ଯେ ବଶ୍ୟ ଭାରିଯା ସୁକଳା ଅଟଇ ।
ସତୀ ସାଧ୍ୱୀ ପତିବ୍ରତା ଗୁଣ ଜ୍ଞାନବତୀ
ମୋତେ ସାହାହୁଅ ଯାଇଁ ଆଗ ତାହାକତି ।
ରତିକି ଏରୂପେ କହି କାମଦେବ ପୁଣି
ପାଖେ ଥିବା ପ୍ରୀତି ମୁଖ ଚାହିଁ ଏହାଭଣି ।
ଏତେବେଳେ ମୋତେ ସାହା ହୁଅ ତୁଗୋପ୍ରୀତି
ତୋହର ଅସାଧ କିଛିନାହିଁ ଏ ଜଗତି ।
ସୁକଳା ମନ ଭୁଲାଇ ଦିଅ ତୁଗୋ ଯାଇ
ସ୍ନେହ କରିବ ଯେମନ୍ତେ ଇନ୍ଦ୍ରମୁଖ ଚାହିଁ ।
ଇନ୍ଦ୍ରର ରୂପରେ ବଶ ହୋଇବ ଯେପରି
ରତିଦେବୀ ଦେଲା ମାୟା ଜାଲକୁ ବିସ୍ତାରି ।
ମକରନ୍ଦକୁ ଅନାଇ କହଇ ଏମନ୍ତ
ବିଳମ୍ବ ନକର ସଖେ ଯାଅଯା ତୁରିତ ।
ମାୟାରେ ନନ୍ଦନବନ ଦିଅ ତୁ ଭିଆଇ
ଫୁଲ ଫଳଭରେ ସବୁ ତରୁଥିବ ଲଇଁ ।
ମଧୁର ରବରେ ଉଡୁଥିବେ ମଧୁକର
ଗନ୍ଧଘେନି ବହୁଥିବ ମଳୟ ସମୀର ।
କୋକିଳ ପଞ୍ଚମସ୍ୱରେ କରୁଥିବ ଧ୍ୱନି
କାମ ତାହାକୁ ଏମନ୍ତ କହିକରି ପୁଣି ।
ରସାୟନକୁ କହିଲେ ଚାହିଁ କରି ଏହା
ତୁ ସଖା ବଳେ ମୋହର ହୋଇବୁନା ସାହା ।
ସ୍ୱାଦୁଗୁଣ ଘେନି ତୋର ସଙ୍ଗେ ସଙ୍ଗେ ଥିବୁ
ପବନ ଆଦି ସଖାଙ୍କୁ ସଙ୍ଗତରେ ନେବୁ ।
ତ୍ରିଲୋକ ମୋହନକାରୀ ସଇନି ପଠାଇ
କାମଦେବ ଗଲା ସଙ୍ଗେ ଘେନି ସୁରସାଇଁ ।
ଦୀନ ଗୋପୀନାଥ ବୋଲେ ବୋଲ ହରିହରି
ହରି ଆଶ୍ରାକଲେ ଯିବ ଦୁସ୍ତରୁ ନିସ୍ତରି ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ
ସୁକଳାଚରିତ୍ରେ ନାମ
ପଞ୍ଚପଞ୍ଚାଶୋଽଧ୍ୟାୟଃ ।



## ଷଟ୍‌ପଞ୍ଚାଶ ଅଧ୍ୟାୟ

### ସତ୍ୟ ଓ ଧର୍ମର ବାଦାନୁବାଦ

ଶ୍ରୀବିଷ୍ଣୁ ବୋଇଲେ ବେନ ଶୁଣ ସାବଧାନେ
ସୁକଳାର ପତିବ୍ରତ ସତ୍ୟ ବିନାଶନେ ।
ସୁରପତି ସଙ୍ଗେ ଘେନି ମନମଥ ଗଲା
ସତ୍ୟ ଯେ ଧର୍ମକୁ ଚାହିଁ ଏମନ୍ତ ବୋଇଲା ।
ବୁଦ୍ଧିମନ୍ତ ଧର୍ମ ତୁମ୍ଭେ ଜ୍ଞାନୀ ଯେ ଚତୁର
ଦେଖିଛୁ ଉଦ୍ୟମଯାକ ଏ ମନମଥର ।
ତୁମ୍ଭବଳେ ଆମ୍ଭବଳେ ପୁଣ୍ୟବଳେ ପୁଣି
ଧର୍ମ ଆତ୍ମା ବଇଶ୍ୟର ଏ ସତୀ ଘରଣୀ ।
ରହିଛି ସୁଦେବା ନାମେ ଖଣ୍ଡେ ଘରକରି
ଅତି ପ୍ରିୟ ସେହି ଘର ଆମ୍ଭରି ତୁମ୍ଭରି ।
ଏ ବାସ୍ତୁ ଖଣ୍ଡି ଆମ୍ଭର ମହା ପୁଣ୍ୟସ୍ଥାନ
ମହାସୁଖେ ଥାଉ ଆମ୍ଭେ କରି ଜଳପାନ ।
ପ୍ରମତ୍ତବୁଦ୍ଧି ଦୁରାତ୍ମା ଏ କାମଦେବର
ଭାଙ୍ଗିବାକୁ ଯାଏ ଆମ୍ଭ ସତ୍ୟରୂପ ଘର ।
ପ୍ରିୟଘର ଆମ୍ଭର ଏ ଯେବେକି ଭାଙ୍ଗିବ
ଏ ଦୁରାତ୍ମା କାମ ଆମ୍ଭ ବଇରୀ ହୋଇବ ।
ଆହେ ଧର୍ମ ନିତିଗୋଟି ଘର ମୋର ଜାଣ
ଏକଘର ତପୋଧନ ଯେବଣ ବ୍ରାହ୍ମଣ ।
ଦ୍ୱିତୀୟ ଘର ସୁମତୀ ପତିବ୍ରତା ମୋର
ତୃତୀୟ ଘର ସୁସତ୍ୟ ନୃପତି ଆବର ।
ଯହିଁଥାଇ ବଢ଼ଇ ମୁଁ ହୃଷ୍ଟପୁଷ୍ଟ ହୋଇ
ତହିଁ ସ୍ୱଇଚ୍ଛାରେ ଧର୍ମ ରହ ତୁମ୍ଭେ ଯାଇଁ ।
ଶ୍ରଦ୍ଧାସଙ୍ଗେ ପୁଣ୍ୟ ତହିଁ ଯାଇ କ୍ରୀଡ଼ାକରେ
ସ୍ୱଇଚ୍ଛାରେ ଶାନ୍ତି କ୍ଷମା ମିଳନ୍ତି ମୋ ଘରେ ।
ଯହିଁ ମୁହିଁ ରହେ ତହିଁ ରହେ ଦୟା ଦାନ
ପବିତ୍ର ସ୍ୱଭାବ ସେହି ସ୍ଥାନେ ବିଦ୍ୟମାନ ।

ସୁହୃଦ ପ୍ରଜ୍ଞା ନିର୍ଲୋଭ ନ ଛାଡ଼ନ୍ତି ତାହା
ଏ ସବୁ ମୋର ବାନ୍ଧବସଦା ମୋତେସାହା ।
କରୁଛି ଯା ଧର୍ମରାଜ ଶୁଣ ମନଦେଇ
ମୋଘରେ ହିଂସା ନଥାଇ ଚୋରୀଯେ ନଥାଇ ।
ଦେବା ବଢ଼ାଇବା ଦୁଇ ମୋ ଗୃହର ଧନ
ଗୁରୁଜନ ସେବା ଘର ପାଇଟି ମୋ ଜାଣ ।
ମହାଲକ୍ଷ୍ମୀ ଘେନି ବିଷ୍ଣୁ ମୋ ଘରେ ରହନ୍ତି
ଅଗ୍ନି ଆଦି ଦେବେ ମୋର ଘର ନ ଛାଡ଼ନ୍ତି ।
ଜ୍ଞାନ ଆସି ମୋକ୍ଷ ମାର୍ଗ କହି ଦେଉଥାଇ
ଏହାଙ୍କୁ ଘେନି ମୁଁ ସୁଖେ ଘରକରି ରହି ।
ସତୀ ପୁଣି ସାଧୁଲୋକ ଧର୍ମବନ୍ତ ଜନ
ଏମାନେ ଅଟନ୍ତି ଜାଣ ମୋହର ସଦନ ।
ମୋର କୁଟୁମ୍ବକୁ ଘେନି ମୁହିଁ ତହିଁ ଥାଇ
ତୁମ୍ଭେ ମୋତେ ଛାଡ଼ି ପୁଣି ନଯାଅଯେ କାହିଁ ।
ବିଧାତା ନିର୍ମାଣ କାହିଁ ହୁଅଇକି ଆନ
ମୋପାଇଁ ସର୍ଜିଅଛନ୍ତି ଏସବୁ ସଦନ ।
ଲୀଳାରେ ସେ ସବୁଘରେ କରେ ମୁଁ ବିହାର
ଜଗତ ଜନର ପ୍ରଭୁ ଦେବ ଦେବହର ।
ବୃଷଭ ପୁଣି ପାର୍ବତୀ ଦେବୀଙ୍କି ସେ ଘେନି
ମୋଘରେ ବାସ କରନ୍ତି ହୋଇ ଶୂଳପାଣି ।
ତେଣୁ ମୋଘର ଶଙ୍କର ବାସଯେ ବୋଲାଇ
ମୋ ଘର ଭାଙ୍ଗିବାପାଇଁ ମଦନ ଆସଇ ।
ମହାତମା ବିଶ୍ୱାମିତ୍ର ଗାଧିର ନନ୍ଦନ
କଠୋରତମ କଷ୍ଟରେ କଲା ଅରଜନ ।
ମେନକା ଅପସରାକୁ ଘେନି ଏହି ସ୍ମର
ଭାଙ୍ଗିଦେଲା ତେଡ଼େବଡ଼ ତପ ସେ ମୁନିର ।
ଗଉତମ ଭାରିଯା ଯେ ଅହଲ୍ୟା ସୁନ୍ଦରୀ
ମହାସତୀ ଗୁଣବତୀ ପ୍ରତିବ୍ରତା ନାରୀ ।
ଦୁରାତମା ମନମଥ ମନକୁ ତାହାର
ବିଚଳିତ କଲା ଘେନି ସଙ୍ଗେ ପୁରନ୍ଦର ।
ସତ୍ୟଧର୍ମେ ଥିବା ମୁନି ତପୀ ବ୍ରହ୍ମଚାରୀ
ଯୋଗୀ ଋଷି ଆବରଯେ ପତିବ୍ରତା ନାରୀ
ଏସବୁ ଘରକୁ ମୋର ଗର୍ବେ ସେ ଭାଙ୍ଗଇ
କାମ ଅନଳରେ ତାଙ୍କୁ ନାନା ପୀଡ଼ାଦେଇ
ଦୁର୍ଦ୍ଧର ଦୁଃସହ ମିଥ୍ୟା ଏ ମୋର ବଇରୀ
ଏହାଙ୍କୁ ଘେନି ମୋ ଘର ଭାଙ୍ଗେ ଦୁରାଚାରୀ ।

ମୁହିଁ ଯେ ସତ୍ୟ ଭୋଧର୍ମ ରହିବି ମୁଁ କାହିଁ
ମୋର ସର୍ବନାଶକଲା ଘର ଦ୍ୱାର ନାହିଁ ।
ଏ ପାପିଷ୍ଠ ବାଣାନଳେ ପୋଡ଼ଇମୋ ଘର
ମିଥ୍ୟାନାମେ ସେନାପତି ଅଛଇ ତାହାର ।
ପାପିଷ୍ଠ ଅହିତାଚାରୀ ପାଷାଣ୍ଡ ଯେ କ୍ରୂର
ଏମାନେ ସୈନ୍ୟଅଯନ୍ତି ସେ ଦୁଷ୍ଟ କାମର ।
ଏହାଙ୍କ ସାହାଯ୍ୟେ କାର୍ଯ୍ୟକରେ କଉଶଳେ
ଦୁରାତମା ପାପୀ କାମ ଆସେ ଦଳବଳେ ।
ଖଣ୍ଡଖଣ୍ଡ କରି ଦେବ ଭାଙ୍ଗି ଘରଦ୍ୱାର
ମହାବଳ ମହାପାପୀ ସେହି ପଞ୍ଚଶର ।
ବାଣମାରି ପୋଡ଼ିଦେବ ମୋର କଳେବର
କାମାନଳେ ପୋଡ଼ିଯିବ ସର୍ବାଙ୍ଗ ଆବର ।
ସ୍ତିରୀଜାତିଙ୍କର ପତି ଦେବତା ଅଟଇ
ସେ ନୂଆଘରେ ରହିବାପାଇଁ ମୁଁ ବାଞ୍ଛଇ ।
ପୁଣ୍ୟାଆତ୍ମା ଧର୍ମଶୀଳ କୃକଳ ବଇଶ୍ୟ
ତା ଭାରିଯା ସୁକଳାକୁ କରିବ ସେ ବଶ ।
ସେ ନାରୀ ଶିବମଙ୍ଗଳା ପତିବ୍ରତା ସତୀ
ସେହି ନୂଆଘର ଗୋଟି ମୋହର ବସତି ।
ପାପିଷ୍ଠ ମୋର ସେ ଘର ପୋଡ଼ିବାକୁଆସେ
ବଳବନ୍ତ ସହସ୍ରାକ୍ଷ ଅଛି ପାଶେ ପାଶେ ।
ପୂର୍ବର ଘଟନା ମନେ ନାହିଁକି ଇନ୍ଦ୍ରର
କାମ ସାହାପାଇ ସବୁ ଗଲାଣି ପାସୋର ।
ମେଷାଣ୍ଡ ହେଲା ଅହଲ୍ୟା ସତୀକି ଯେ ହରି
ଏହି କାମ ଦୋଷେ ଶାପଦେଲେ ତପଚାରୀ ।
କାମଯୋଗୁଁ ପଉରୁଷ ପଣ ଗଲା ତାର
ମୁନି ଦୟାକରି ପୁଣି ଦେଲା ତାକୁ ବର ।
ମେଷାଣ୍ଡହୋଇ ପାଳିଲା ଅମର ମଣ୍ଡଳ
ପୁଣି ସେ କାମକୁ ଘେନି ଆସେ ଆଖଣ୍ଡଳ ।
ପୁଣ୍ୟାଚାରିଣୀ କୃକଳ ଭାରିଯା ସୁକଳା
କାମ ସାହାପାଇ ଇନ୍ଦ୍ର ହୋଇ ମତିଭୋଳା ।
ତାର ବ୍ରତ ଭାଙ୍ଗିବାକୁ କରୁଛି ଉଦ୍ୟମ
ଭୋ ଧର୍ମଦେବତା ଯେହ୍ନେ ଏ ପାପିଷ୍ଠ କାମ ।
ଯେମନ୍ତେ ଆସି ନପାରେ ଇନ୍ଦ୍ର ସଙ୍ଗତରେ
ସେ ବୁଦ୍ଧିକର ନପଶୁ ବଳେସେ ମୋଘରେ ।
ସତ୍ୟର ମୁଖୁଁ ଏମନ୍ତ ଶୁଣି ଧର୍ମରାଜ୍
ବୋଇଲେ କିଛି ନଭାଳ ପାଇବ ଯେ ଲାଜ ।

କନ୍ଦର୍ପର ଦର୍ପତେଜ ବଳ ଭାଙ୍ଗିଦେବି
ଯେମନ୍ତେ ମରିବ ତାର ଉପାୟ ପାଞ୍ଚିବି ।
ଉପାୟେକ ପାଞ୍ଚିଅଛି କହୁଛି ତା ଶୁଣ
ପକ୍ଷୀରୂପକୁ ଏ ପ୍ରଜ୍ଞା କରିବ ଧାରଣ ।
ଗଗନ ମାର୍ଗରେ ରହି ଦେବ ଶୁଭବାର୍ତ୍ତା
ପତି ଆଗମନ କଥା ଶୁଣି ପତିବ୍ରତା ।
ଦୁଷ୍ଟ ଜନଙ୍କର ଚେଷ୍ଟା ସବୁ ଯିବ ଭାଙ୍ଗି
ସୁସ୍ଥହୋଇଣ ନିଶ୍ଚିନ୍ତେ ରହିବ ଶୁଭ୍ରାଙ୍ଗୀ ।
ସୁକଳା ଘର ଉପରେ ପକ୍ଷୀରୂପେ ଯାଇ
ଦଇବଜ୍ଞ ପ୍ରାୟ ସବୁ କହିବ ବୁଝାଇ ।
ସେକାଳେ ପୂଜାପାଇବ ପ୍ରଜ୍ଞା ଧୂପଦୀପେ
ଧର୍ମ କହନ୍ତେ ସେ ପ୍ରଜ୍ଞା ଗଲା ପକ୍ଷୀରୂପେ ।
ସୁକଳା ଘର ଉପରେ ଉଡ଼ିଣ କହିଲା
ସୁକଳା ତାହାର ଭାଷା ବୁଝି ନପାରିଲା ।
ଶକୁନ ଜାଣିବା ବିପ୍ର ପାଶକୁ ଯେ ଯାଇ
ପଚାରିଲା ଏହି ପକ୍ଷୀ କି କଥା କହଇ ।
ବିପ୍ର ବୋଇଲା ସୁଭଗେ ତୋସ୍ୱାମୀ ବାରତା
କହୁଛି ଏ ପକ୍ଷୀଗୋଟି ଜାଣ ପତିବ୍ରତା ।
ସାତଦିନେ ସ୍ୱାମୀ ତୋର ଘରକୁ ଆସିବ
ସୁକଳା ଆନନ୍ଦକଥା କେ କହିପାରିବ ।
ଧୂପ ଦୀପ ଦେଇ ସେହି ପକ୍ଷୀକି ପୂଜିଲା
ଭୋଜନ ଦକ୍ଷିଣା ଦେଇ ବିପ୍ରକୁ ତୋଷିଲା ।
ବାରତା କହି ସେ ପକ୍ଷୀ ଶୂନ୍ୟେଗଲା ଉଡ଼ି
ଗୋପୀନାଥ ପଦ୍ମପାଦେ ପଡ଼େ କରଯୋଡ଼ି ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ
ସୁକଳା ଚରିତ୍ରେ
ନାମ ଷଟ୍‌ପଞ୍ଚାଶୋଽଧ୍ୟାୟଃ ।



## ସପ୍ତପଞ୍ଚାଶ ଅଧ୍ୟାୟ

### କାମ ଦୂତୀ କ୍ରୀଡ଼ା ସଙ୍ଗେ ସୁକଳାର ଉପବନ ଗମନ

ଶ୍ରୀବିଷ୍ଣୁ କହିଲେ ଶୁଣ ବେନ ନୃପବର
କ୍ରୀଡ଼ା ଦୂତୀ ହୋଇଗଲା ସେ କାମଦେବର ।
ସୁନ୍ଦରୀ ଯୁବତୀ ରୂପ ଧରି ତହୁଁ ଯାଇ
ସୁକଳା ପାଖେ ମିଳିଲା ହସ ହସ ହୋଇ ।
ତାହାର ଆସିବା ଦେଖି ସୁକଳା ଉଠିଲା
ଆଦରକରି ପାଖରେ ବସାଇ କହିଲା ।
ମୋ ଘରକୁ ଆଗମନ କିମ୍ପାଇଁ ତୁମ୍ଭର
କ୍ରୀଡ଼ା ଦୂତୀ ସୁକଳାର ପାଇ ସମାଦର ।
ଅଳପ ଅଳପ ହସି କହିଲାଗୋ ସତୀ
ଗୁଣବନ୍ତ ବଳବନ୍ତ ଯୁବକ ମୋ ପତି ।
ବିଦ୍ୟାବନ୍ତ ସୁଚତୁର ପୁଣ୍ୟ ଆତ୍ମାଜନ
ପୁଣ୍ୟ କୀର୍ତ୍ତି ଲୋକମଧ୍ୟେ ହୁଅଇ ଗଣନ ।
ମୁଁ ମନ୍ଦଭାବିନୀ ମୋତେ ଗଲେ ଛାଡ଼ିକରି
ସୁକଳା ତାର କହିବା ଭଙ୍ଗି ବୁଝିପାରି ।
ଅବଳା ସ୍ୱଭାବେ ତାକୁ ପଚାରିଲା ପୁଣି
ତୁ ଅତି ସୁନ୍ଦରୀ ସର୍ବଗୁଣେ ସୁଲକ୍ଷଣୀ ।
ତୋ ସ୍ୱାମୀ ଛାଡ଼ି କିମ୍ପାଇଁଗଲା କହମୋତେ
ସ୍ୱାମୀର କଥା ବୁଝାଇ କହ ମୋ ଅଗ୍ରତେ ।
ଏମନ୍ତ କହି ସୁକଳା ଯୋଗେ ଲୟ ରଖି
ଜାଣିପାରିଲା କପଟ ନାରୀ ଏ ସୁମୁଖୀ ।
କାମ କ୍ରୀଡ଼ା ଦୂତୀ ସଖୀରୂପେ ଆସିଅଛି
ମୋର ବ୍ରତ ଭାଙ୍ଗିବାକୁ ମନରେ ପାଞ୍ଚିଛି ।
କ୍ରୀଡ଼ା ଦୂତୀ ବୋଇଲାଗୋ ଶୁଣ ସାବଧାନେ
ମୋସ୍ୱାମୀ ଚରିତ୍ରକହେ ତୋର ସନ୍ନିଧାନେ ।
ମୁଁ ଯାର ଭାରିଯା ତାର ସଦା ଅନୁଗତା
ସେ ଯାହା ଇଚ୍ଛଇ ଜାଣି ମୁଁ ତା ମନକଥା ।
ସେ କାର୍ଯ୍ୟ କରି ତାହାକୁ ପ୍ରବୋଧ କରଇ
ସର୍ବଦା ସ୍ୱାମୀରକଥା ମୁଁ ପ୍ରତି ପାଳଇ ।
ଆଗୋଦେବୀ ମୁଁ ତୋହରପ୍ରାୟ ସବୁବେଳେ
ଚିତ୍ତ ରଖିଥାଇ ସ୍ୱାମୀ ଚରଣ କମଳେ ।
ସ୍ୱାମୀ ସେବା ବିନା କିଛି ନ ଜାଣଇ ମୁହିଁ
ମୋର ମନ୍ଦ ଭାଗ୍ୟଯୋଗୁ ବାମହେଲା ବିହି ।
ବିନାଦୋଷେ ସ୍ୱାମୀମୋତେ ଗଲେଛାଡ଼ିକରି
ସ୍ୱାମୀବିନା ସତୀପ୍ରାଣ ରହିବ କିପରି ।
ସ୍ୱାମୀ ଜାଣ ରମଣୀର ରୂପ ସଉଭାଗ୍ୟ
ସୁଖ ସମ୍ପଦ ଆବର ସକଳ ସମ୍ଭୋଗ ।
ଏ ଶାସ୍ତ୍ର ବଚନ ଏହା ମାନନ୍ତି ସମସ୍ତେ
କ୍ରୀଡ଼ାଦୂତୀ କଥା ଯାକ ଶୁଣି ଭାଳି ଚିତ୍ତେ ।

ମନେ ବିଚାରିଲା ସତୀ କହୁଛି ଏ ସତ
ସ୍ୱାମୀ ଅଟେ ପତିବ୍ରତା ନାରୀ ଦଇବତ ।
ଏମନ୍ତ ଭାଳି ସୁକଳା ବିଶ୍ୱାସ ଯେ ଗଲା
ଆପଣାର କଥାଯାକ ତାହାକୁ କହିଲା ।
ସଂକ୍ଷେପି କହିଲା ସ୍ୱାମୀ ତୀର୍ଥ ଯାତ୍ର କଥା
ଶୁଣି କ୍ରୀଡ଼ାଦୂତୀ ମନେ ପାଇ ମହାବ୍ୟଥା ।
ପ୍ରବୋଧ କରି ବୁଝାଇ କହିଲା ବହୁତ
ତପେ ଅତି ଦୁଃଖ ପାଉ କରି ସତ୍ୟବ୍ରତ ।
ସୂତମୁନି କହନ୍ତି ଯେ ମୁନିଏ ଶୁଣନ୍ତି
ଏକଦିନେ ସୁକଳାକୁ କହେ କ୍ରୀଡ଼ାଦୂତୀ ।
ଦେଖ ସଖିଏ ସୁନ୍ଦର ଦିବ୍ୟ ଉପବନ
ନନ୍ଦନବନ ଏହାକୁ ନୋହିବ ସମାନ ।
ଫୁଲଫୁଲେ ତରୁ ଲତା ପାଉଛନ୍ତି ଶୋଭା
ଏ ବନ ଲତା ବିତାନ ଜନ ମନ ଲୋଭା ।
ପାପହାରୀ ପୁଣ୍ୟ ତୀର୍ଥ ଦେଖଗୋ ଅଛଇ
ଏ ବନକୁ ଯିବା ପୁଣ୍ୟ ଅରଜିବାପାଇଁ ।
କ୍ରୀଡ଼ା ଦୂତୀ କଥା ଶୁଣି ସୁକଳା ଉଠିଲା
ନନ୍ଦନ ବନକୁ ତାର ସଙ୍ଗେ ଚଳିଗଲା ।
ସବୁଦିନେ ଷଡ଼ଋତୁ ଥାଇ ସେହି ବନେ
ସବୁ ଋତୁ ଫୁଲ ତହିଁ ଫୁଟେ ସବୁଦିନେ ।
ଶତ ଶତ କୋକିଳଙ୍କ କୁହୁ କୁହୁ ଧ୍ୱନି
ମଧୁକରଙ୍କ ମଧୁର ଝଙ୍କାର ଯେ ପୁଣି ।
ଗୁଣୁ ଗୁଣୁ ନାଦ ଅତି ଶ୍ରୁତି ସୁଖକର
ପକ୍ଷୀଙ୍କର କଳରବ ପବିତ୍ର ଆବର ।
ଚନ୍ଦନାଦି ସଉରଭ ବୃକ୍ଷେ ବିରାଜଇ
ସବୁ ସୁଖ ଭୋଗ ସେହି ବନୁ ଉପୁଜଇ ।
ସୁକଳା ମନ ମୋହିବା ନିମନ୍ତେ ସେ ବନ
କାମଦେବ କରିଅଛି ମାୟାରେ ରଚନ ।
ସେ ମାୟାବନକୁ ନାହିଁ ବନ ପଟାନ୍ତର
କ୍ରୀଡ଼ା ଦୂତୀ ସଙ୍ଗେ ଘେନି ସୁକଳା ଆବର ।
ସୁଖପ୍ରଦ ପୁଣ୍ୟବନ ଗଲେ ଦେଖି ଦେଖି
ମାୟା କିଛି ବୁଝି ନ ପାରିଲା ସେ ସୁମୁଖୀ ।
ଶ୍ରୀବିଷ୍ଣୁ କହନ୍ତି ଶୁଣ ବେନ ଜନେଶ୍ୱର
ସୁକଳା କ୍ରୀଡ଼ା ଦୂତୀକି ଘେନି ସଙ୍ଗତର ।
ବନର ଶୋଭା ଦେଖଇ ଏଥୁଅନନ୍ତରେ
ଦିବ୍ୟରୂପ ଇନ୍ଦ୍ରଧରି ଦୂତୀ ସହିତରେ ।

ସେ ବନେଯାଇ ମିଳିଲେ କାମଅଛି ସଙ୍ଗେ
ସର୍ବ ଉପଭୋଗ ଘେନି ଇନ୍ଦ୍ର ଚାଲେ ରଙ୍ଗେ ।
କାମ ଲୀଳାରେ ଆକୁଳ ହୋଇ ପୁରନ୍ଦର
କାମକୁ ଚାହିଁ ବୋଇଲେ ଆହୋ ପଞ୍ଚଶର ।
ତୁମ୍ଭ ଆଗେ ଆଗେ ଦେଖ ସୁକଳା ସୁନ୍ଦରୀ
ତୋର କ୍ରୀଡ଼ା ଦୂତୀ ଅଛି ତାର ସଙ୍ଗଧରି ।
ବନ୍ଧୁ ତୋର ଫୁଲ ବାଣ ବିଳମ୍ବ ନକର
ତୋର ମାୟାଦୂତୀ ମାୟାଦେବେଅଗୋଚର ।
ମାୟାବଳେ ମାୟାବନେ ଆଣିଛି କଢ଼ାଇ
ପଉରୁଷ ପଣ ଥିଲେ ଦିଅ ତା ଦେଖାଇ ।
କାମଦେବ ବୋଇଲେ ହେ ଦେବ ପୁରନ୍ଦର
ତାଆଗେ ଦେଖାଅତୁମ୍ଭେ ହାବଭାବ ମୋର ।
ତାହା ସାହାପାଇ ପଞ୍ଚବାଣ ମୁଁ ମାରିବି
ଚିତ୍ତ ତରଳାଇ ଉନମତ୍ତା କରିଦେବି ।
ଇନ୍ଦ୍ରବୋଇଲେରେ ମୂଢ଼ ତୁ ଅତି ଅଜ୍ଞାନ
ଯେଣେ ଲୋକ ବିଡ଼ମ୍ବନା କରୁରେ ମଦନ ।
ତୋର ସେହି ପଉରୁଷ ପଣ କାହିଁ କହ
ନଜାଣିକି ଶମ୍ଭୁ ତୋତେ କଲେରେ ଅଦେହ ।
ମୋତେ ଆଗକରି ବାଣ ବିନ୍ଧି ଲୋଡୁ ତୁହି
କାମ ଦେବ ବୋଲଇ ଯେ ଇନ୍ଦ୍ରମୁଖ ଚାହିଁ ।
ମୋ ରୂପକୁ ଜାଳିଦେଲେ ପୂର୍ବେ ଶୂଳପାଣି
ସେଦିନୁ ମୁହିଁ ଅରୁପ ଜାଣ ବଜ୍ରପାଣି ।
ପୁରୁଷର କଳେବର ଆଶ୍ରା କରି ପୁଣ
ନାରୀ ଅଙ୍ଗେ ପ୍ରହାରଇ ମୋର ଫୁଲବାଣ ।
ବାଣ ବିନ୍ଧଇ ମୁଁ ଯେବେ ପୁରୁଷ ଦେହରେ
ସେକାଳେ ରହଇ ଯାଇଁ ନାରୀର ଅଙ୍ଗରେ ।
ପୁରୁଷ ପୂର୍ବେ ଦେଖିଛି ଯେ ସୁନ୍ଦର ନାରୀ
ତାର ରୂପ ବାରମ୍ବାର ମନରେ ସୁମରି ।
ଅଦୃଶ୍ୟଭାବେ ମୁଁ ଥାଇ କରେ ଉନମତ୍ତ
ତେଣୁ ମୋର ନାମ ସ୍ମର ଜାଣ ଶଚୀନାଥ ।
ନାରୀ ଅନୁରୂପେ ମୁହିଁ ପୁରୁଷ ହୁଅଇ
ପୁରୁଷର ଅନୁରୂପ ନାରୀ ହୋଇଥାଇ ।
ତହୁଁ ମୋର ତେଜେ ସ୍ତିରୀ ପୁରୁଷ ଏଦୁଇ
ମୋର ଶରେ ପୀଡ଼ାପାଇ ଉନମତ୍ତ ହୋଇ ।
ନାରୀ ଆଶ୍ରାକରି ଧୀର ପୁରୁଷକୁ ମୋହେ
ନାରୀକି ମୋହଇ ରହି ପୁରୁଷର ଦେହେ ।

ଅରୂପ ହେବାରୁ ମୁହିଁ ରୂପ ଆଶ୍ରାକରେ
ଏକ୍ଷଣି ରହିବି ଇନ୍ଦ୍ର ମୁଁ ତୁମ୍ଭ ଶରୀରେ ।
ଏ ନାରୀକି ତୁମ୍ଭ ଅନୁରାଗିଣୀ କରିବି
କ୍ରୀଡ଼ା ଦୂତୀ ସଙ୍ଗେ ସତୀ ମନକୁ ମୋହିବି ।
ମାଧବ ସଖା ମଦନ କହିଣ ଏମନ୍ତ
ବାସବର ଦେହ ଆଶ୍ରା କଲାକ ତୁରିତ ।
ସୁକଳାକୁ ବିନ୍ଧିବାକୁ କରନ୍ତେ ଉଦ୍ୟମ
ନେତ୍ରବାଣେ ଭେଦକରେ ତାରଦେହ ଲୋମ ।
ସୁକଳା ରୂପକୁ ଚାହିଁ ରହିଲେ ବାସବ
ଦୀନଗୋପୀନାଥ ବୋଲେ ମାଧବମାଧବ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ସୁକଳା
ଚରିତେ ସପ୍ତପଞ୍ଚାଶୋଽଧ୍ୟାୟଃ ।



## ଅଷ୍ଟପଞ୍ଚାଶ ଅଧ୍ୟାୟ

### ଇନ୍ଦ୍ର ଆଶାଭଙ୍ଗ

ଶ୍ରୀବିଷ୍ଣୁ ବୋଇଲେ ଶୁଣ ବେନ ନରପତି
ସଙ୍ଗେ କ୍ରୀଡ଼ା ଦୂତୀ ଘେନି ସେ ସୁକଳାସତୀ ।
ସୁନ୍ଦର ସୁରମ୍ୟ ବନ ଯାଏ ଦେଖି ଦେଖି
କ୍ରୀଡ଼ା ଦୂତୀକି ପଚାରେ କହ ଆଗୋ ସଖି ।
ଏ ସୁନ୍ଦର ବନ ଗୋଟି ଅଟଇ କାହାର
କ୍ରୀଡ଼ା ଦୂତୀ ବୋଇଲା ଏ ମକରଧ୍ୱଜର ।
ସୁକଳା ଶୁଣି ହରଷ ହୋଇ ମନେ ମନେ
ବିଚାରେ ଦୁରାତ୍ମା କାମଚେଷ୍ଟା ଦେଖକେହ୍ନେ ।
ନ ଘେନିଲା ବନ ସଉରଭର ବାସନା
ସୁଗନ୍ଧ ପବନ ଯହିଁ ନକଲା ସେ ଘେନା ।
ସୁଗନ୍ଧ ଫୁଲ ବାସନା ନ ସୁଙ୍ଘିଲା ସତୀ
ନ ଭୁଞ୍ଜିଲା ସ୍ୱାଦୁଫଳ ରସ କରି ଭୀତି ।
କାମର ସଖାଙ୍କ ଯହୁଁ ଗଲା ସତୀ ଜିଣି
ଲାଜେ ମଉଳି ପଡ଼ିଲେ କୁସୁମେ ଧରଣୀ ।
ବିନ୍ଦୁ ବିନ୍ଦୁ ହୋଇ ବହିପଡ଼େ ଫଳ ରସ
ଲାଜ ପାଇଣ ପବନ ହୋଇଲା ବିରସ ।
ଡେମ୍ଫ ଛିଡ଼ି ଝରିପଡ଼େ ଫଳ ସବୁତଳେ
ବହି ମକରନ୍ଦ ଧାରା ପଡ଼େ ମହୀତଳେ ।
ମାଛି ସବୁ ବେଢ଼ିଯାଇ କଲେ ତାହା ପାନ
ରଣେ ମଲା ପ୍ରାଣୀ ପ୍ରାୟ ଦିଶେ ଶୋଭାବନ ।
ମନ୍ଦ ମନ୍ଦ ବହିବାରୁ ମକରନ୍ଦ ଧାରା
ଯୁଦ୍ଧ ମୃତପ୍ରାଣୀ ରକ୍ତେ ଦିଶେ ଯେହ୍ନେ ଧରା ।
ହସରେ ଉଡ଼ାଇଦେଲେ ତାଙ୍କୁ କପିକୂଳ
ବୋଇଲେ କାମର ହେଲା ଏ ସବୁ ବିଫଳ ।
ହାରିଲେ ହାରିଲେ କହି କହି ଗଲେ ଉଡ଼ି
ଆନନ୍ଦ କୋଳାହଳରେ ଡେଣା ଝାଡ଼ିଝାଡ଼ି ।
ଖଣ୍ଡି ଉଡ଼ା ଦେଇ ରାବଦେଲେ ନାନାସ୍ୱରେ
ଉପହାସକଲେ ବସି ବୃକ୍ଷଙ୍କ ଉପରେ ।
ବୋଇଲେ ମକରନ୍ଦକୁ ସୁକଳା ଜିଣିଲା
ଲାଜେ ସେ ଏହାକୁ ପୁଣି ତଳମୁହାଁ କଲା ।
ନୀଚବାଟ ଆଶ୍ରାକଲେ ସୁକଳାକୁ ହାରି
କାମର ଭାରିଯା ରତିଦେବୀ ଯେ ସୁନ୍ଦରୀ ।
କାମ ସଖା ହାରିଯିବା ଦେଖି ନୟନରେ
ଧାଇଁ ଅଇଲା ପ୍ରୀତିକି ଘେନି ସଙ୍ଗତରେ ।
ସୁକଳା ପାଖକୁ ଯାଇଁ କହେ ହସିକରି
ଏ ତିନିଭୁବନ ମୋହିପାରୁ ତୁ ସୁନ୍ଦରୀ ।
ତୋର ଆଗମନ ଏବେ ଶୁଭହେଲା ଜାଣ
ଏହି ଯେ ପୁରୁଷ ବର ଅଟେ ସୁରଗଣ ।
ଅପୂର୍ବ ସୁନ୍ଦର ନେତ୍ରଦୁଇ ରହେ ଲାଖି
ସୁନ୍ଦର ଗୁଣରେ ଏହି ଜାଣ ତୋର ଲାକ୍ଷି ।
ପ୍ରୀତିକରି ଏହାତୁଲେ କର କ୍ରୀଡ଼ାଘର
ତୋର ମନ ହେଲେ ଆଣିଦେବିତୋ ଛାମୁର ।
ସୂତ କହୁଛନ୍ତି ବସି ମୁନିଏ ଶୁଣନ୍ତି
ରତି ପ୍ରୀତି ଏ ଦୁହିଙ୍କି ଦେଖି ମହାସତୀ ।
ଆବର ଶୁଣି ତାଙ୍କର ଏମନ୍ତ ବଚନ
ସୁକଳା ବୋଇଲେ ଶୁଣ ହୋଇ ସାବଧାନ ।
ମହାମତି ପତି ମୋର ରତି ଘେନି କରେ
ବିଦେଶେ ଯହିଁ ଅଛନ୍ତି ମୁଁ ତାଙ୍କ ସଙ୍ଗରେ ।
ତହିଁ ସ୍ୱାମୀ ଘେନି ଶୋଭା ପାଉଅଛି ଜାଣ
ମୋର କାମ ପ୍ରୀତି ଦୁହେଁ ସ୍ୱାମୀ ସନ୍ନିଧାନ ।
ଏ କଳେବର ମୋହର ଆଶ୍ରୟ ରହିତ
ରତି ପ୍ରୀତି ଦୁହେଁ ଶୁଣି ହୋଇଲେ ଲଜ୍ଜିତ ।
ମହାବଳ କାମପାଶେ ଅଇଲେକ ଫେରି
ଇନ୍ଦ୍ରଦେହେ ରହିଛି ସେ କରେ ଧନୁଧରି ।

ବୋଇଲେ ସେ ମହାବୀର କାମକୁ ଏମନ୍ତ
ଭଲରୂପେ ଜାଣୁ ଆମ୍ଭେ ତୁମ୍ଭେ ବୁଦ୍ଧିମନ୍ତ ।
ଏ ନାରୀକି କେଭେ ତୁମ୍ଭେ ନ ପାରିବ ଜିଣି
ଆପଣାର ପଉରୁଷ ଛାଡ଼ ଚାପ ପାଣି ।
ପତିବ୍ରତା ପତିକାମା ନିରତେ ସୁକଳା
ଏହାର ଜ୍ଞାନ ଅଚଳମତି ଯେ ଅଟଳା ।
ଗର୍ବକରି କାମଦେବ କହିଲେଗୋ ପ୍ରିୟେ
ରଣେ ବିଜେ ରହିଛନ୍ତି ଏହି ସୁରରାୟେ ।
ଏହାଙ୍କ ଉପରେ ଦୃଷ୍ଟି ପଡ଼ିଲେ ତାହାର
ଟାଣଭାଙ୍ଗି ଦେବି ମୁହିଁ ମାରି ପାଞ୍ଚଶର ।
ଏଥୁ ଅନନ୍ତରେ ବେଶ ହୋଇ ସୁରପତି
ହାବଭାବ ଦେଖାଇଲେ ଆଗେ ଆଗେ ରତି ।
ଅଙ୍ଗକୁ ଶୋଭା ପାଉଛି ସବୁ ଆଭରଣ
ପିନ୍ଧିଛନ୍ତି ସରୁ ଦିବ୍ୟ ଦେବାଙ୍ଗ ବସନ ।
ବାସନା ଦ୍ରବ୍ୟ ସର୍ବାଙ୍ଗେ ହୋଇଛନ୍ତି ବୋଳି
ରସିକ ପଣେ ତାହାଙ୍କ ତହୁଁ ନାହିଁ ବଳି ।
ସୁକଳା ପାଖେ ମିଳିଲେ ସଙ୍ଗେ ଅଛି ରତି
ବସିଅଛି ପତିବ୍ରତା ସୁକଳାଯେ ସତୀ ।
ଇନ୍ଦ୍ର ତାହାଙ୍କୁ ବୋଇଲେ ଆଗୋଶୁଭ୍ରକେଶି
ତୋହର ପ୍ରୀତି ନିମନ୍ତେ ପୂର୍ବେ ମୁହିଁ ଆସି ।
ଦୂତିକି ପଠାଇଥିଲି ନ ଭଜିଲୁ ବାଳା
ଏମନ୍ତ ଶୁଣି ବୋଇଲେ ତାହାଙ୍କୁ ସୁକଳା ।
ତୁମ୍ଭର ମଙ୍ଗଳ ହେଉ ହେ ପୁରୁଷ ବର
ନିରତେ ରଖନ୍ତି ମହାତମା ପୁତ୍ରେ ମୋର ।
ଏକାକିନୀ ନୋହେ ସାହା ଅଛନ୍ତି ଅନେକ
ଏଣୁ ନଡ଼ରେ କାହାକୁ ସର୍ବଦା ନିର୍ଭୀକ ।
ସବୁଠାରେ ଶୁରଗଣେ ପୁରୁଷ ଆକାରେ
ରକ୍ଷାକରୁଛନ୍ତି ମୋତେ ରହି ମୋ ପାଖରେ ।
ଯେବେଳେ ନେତ୍ର ଲୋତକ ବହିବ ମୋହର
ସେବେଳେ ତୁମ୍ଭ ପ୍ରସାଦେ ଦେଲଇଁ ଉତ୍ତର ।
ମୋସଙ୍ଗେ କ୍ରୀଡ଼ାକରିବା ଉଦ୍ୟମ ତୁମ୍ଭର
ଜଣାଯାଏ ମରଣକୁ ନାହିଁ ତୁମ୍ଭ ଡର ।
ତେଣୁ ଲାଜ ଭୟ ତ୍ୟାଗ କରିଛ ଆପଣ
ସୁକଳାମୁଖୁ ଏମନ୍ତ ଶୁଣି ସୁରରାଣ ।
ବୋଇଲେ ଏବନେ ଏକା ଦେଖୁଛି ମୁଁ ତୋତେ
ଭାଇପୁଅ ବୀରଗଣ ନାହାନ୍ତିତ ଏଥେ ।

ଦେଖାଇଦିଅ ମୁଁ ତାଙ୍କୁ ଦେଖଇ ନୟନେ
ସୁକଳା ସତୀ କହିଲେ ବାସବ ବଚନେ ।
ଧୃତି ମତି ଗତି ବୁଦ୍ଧିଆଦି ପରିଜନ
ତାଙ୍କ ଉପରେ କରିଛି ସତ୍ୟକୁ ରାଜନ ।
ସକଳ ଧର୍ମ ଯାହାର ଅଟଳ ଅଟଇ
ନିତ୍ୟ ସନାତନ ମହାତମା ଯେ ବୋଲାଇ ।
ସେ ଧର୍ମାତ୍ମାଶମ ଦମ ଘେନିରଖେ ମୋତେ
ସତ୍ୟଅଛି ଦେଖ ଶାନ୍ତି କ୍ଷମାର ସହିତେ ।
ବଳବନ୍ତ କୀର୍ତ୍ତିମନ୍ତ ଜ୍ଞାନ ନିରନ୍ତର
ମୋତେ ଛାଡ଼ି କ୍ଷଣମାତ୍ର ନୁହଇ ଅନ୍ତର ।
ଆପଣାଗୁଣରୁ ଜାତ ଯେ ଦୃଢ଼ବନ୍ଧନ
ତହିଁରେ ବନ୍ଧାହୋଇଛି ଏ ମୋହର ମନ ।
ସେ ଜ୍ଞାନବୋଧ ଅଛଇ ମୋ ନିକଟେଦେଖ
ସତ୍ୟ ଆଦିକରି ଧର୍ମ ଅଛଇ ଯେତେକ ।
ମୁଁ ତାଙ୍କୁ ରଖିଛି ମୋତେ ସେ ରଖିଅଛନ୍ତି
ଦମ ବୁଦ୍ଧି ପରାକ୍ରମ ଧର୍ମ ଜଗିଛନ୍ତି ।
ତୁମ୍ଭେ କିବଳେ ହରିବାପାଇଁ ଲୋଡ଼ମୋତେ
କେ ତୁମ୍ଭେ ଭୟକିନାହିଁ ଏ ତୁମ୍ଭରଚିତ୍ତେ ।
ନିଃସଙ୍କେ ଆସିଛ ସଙ୍ଗେ ଘେନି ଏକ ଦୂତୀ
ନିରତେ ସତ୍ୟ ଧର୍ମରେ ଥାଏ ମୋର ପତି ।
ତାଙ୍କ ଜ୍ଞାନ ପୁଣ୍ୟବଳ ସାହାହେବ ମୋତେ
ସେ ସବୁ ମୋଘରେ ଥାଇଁ ଜଗିଥାନ୍ତି ନିତ୍ୟେ ।
ଖଞ୍ଜି ଯାଇଛନ୍ତି ସ୍ୱାମୀ ମୋର ରଖୁଆଳ
ଦମ ଆଉ ଶାନ୍ତି ଏହି ଦୁହେଁ ମୋର ମୂଳ ।
ଏଣୁ ଜିଣି ନ ପାରିବେ ମୋତେ ଶଚୀପତି
ବଳବନ୍ତ ମନମଥ ଥିଲେ ତାଙ୍କ କତି ।
ସତ୍ୟଧର୍ମେ ସଜାହୋଇଅଛି ମୋ ଶରୀର
ଏଣୁ ବିଫଳ ହୋଇବ ତାହାଙ୍କର ଶର ।
ଧର୍ମଆଦି ମହାଭଟଗଣ ଯେ ତୁମ୍ଭଙ୍କୁ
ମାରିବେ ନିଶ୍ଚୟେ ରଖ ଏ ପ୍ରିୟପ୍ରାଣକୁ ।
ରହିବ ଯେବେ ଏସ୍ଥାନେ ପଳାଇ ନଯାଇ
ମନା ମୁଁ କରୁଛି ଜାଣ ତୁମ୍ଭ ହିତପାଇଁ ।
ମୋକଥା ନ ମାନି ଯେବେ ବଳେ ବଳେରହ
ନିଶ୍ଚେ ପୋଡ଼ିଯିବ ତୁମ୍ଭ ଏ ସୁନ୍ଦର ଦେହ ।
ଯେତେ ଯତ୍ନେ ରଖିଅଛ ଏଦେହକୁ ତୁମ୍ଭେ
ଅକାରଣେ ଜଳିଯିବ ତୁମ୍ଭ ମତ୍ତଗର୍ବେ ।

ତୁମ୍ଭ ସଙ୍ଗେ ସଙ୍ଗେ ତୁମ୍ଭ କାମଯିବ ଜଳି
ତମ ନାଶଯାଏ ଉଦେହେଲେ ଅଂଶୁମାଳୀ ।
ମୋର ପୁଣ୍ୟେ ନ ରହିବ ତୋ ପାପଶରୀର
ମୋ ସ୍ୱାମୀ ଦେଖଇ ଏକାମୋର କଳେବର ।
ତୁ ପରପୁରୁଷ ହୋଇ ଚାହୁଁ ଛୁ ନିରିକ୍ଷି
ତୋର ଏ ପ୍ରାଣକୁ ତୁହି ନପାରିବୁ ରଖି ।
ଅଗ୍ନିଯେସନେ କରଇ କାଷ୍ଠକୁ ଦହନ
ଭସ୍ମହେବୁ ମୋ ନୟନ ଅନଳେ ତେସନ ।
ସୁକଳାମୁଖୁ ଏକଥା ଶୁଣି ପୁରନ୍ଦର
ମନମଥ ବଦନକୁ ଚାହିଁ ବାରବାର ।
ବୋଇଲେ ଦେଖୁଛ ଏହି ନାରୀ ପଉରୁଷ
ତୋର ପଉରୁଷ ଦେଖା ବାନ୍ଧି ତୁ ସାହାସ ।
ଶ୍ରୀବିଷ୍ଣୁ କହିଲେ ଶୁଣ ମହାରାଜ ବେନ
ଶାପଭୟେ ଇନ୍ଦ୍ର ଆଦି ସବୁ ଦେବଗଣ ।
ଭୟବିହ୍ୱଳେ ପଳାଇଗଲେ ନିଜପୁରେ
କାମତାର ମାୟା ଭାଙ୍ଗି ପଳାଇଲା ନରେ ।
ସୁକଳାଘରକୁ ଗଲା କାହାକୁ ନଦେଖି
ମନ ଚଇତନ ସ୍ୱାମୀ ପାଦପଦ୍ମେ ରଖି ।
ହେ ରାଜନ ପତିବ୍ରତା ରମଣୀ ଆଳୟ
ସର୍ବତୀର୍ଥ ସର୍ବଯଜ୍ଞ ସର୍ବ ପୁଣ୍ୟମୟ ।
ସୁକଳା ରହିଲା ତାର ପବିତ୍ର ମନ୍ଦିରେ
ଦ୍ୱିଜ ଗୋପୀନାଥ ଚିତ୍ତ ଅଚ୍ୟୁତପୟରେ ।
ଇତିଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ସୁକଳା
ଚରିତେ ନାମ ଅଷ୍ଟପଞ୍ଚାଶୋଽଧ୍ୟାୟଃ ।



## ଉନଷଷ୍ଟି ଅଧ୍ୟାୟ

### ତୀର୍ଥବ୍ରତ କରି ଗୃହକୁ ଆସିବାବେଳେ କୃକଳର ବାଟରେ ପିତୃବନ୍ଧନ ଦର୍ଶନ

ଶ୍ରୀବିଷ୍ଣୁ କହିଲେ ତହୁଁ ବୃଇଶ୍ୟ କୃକଳ
ତିନିବର୍ଷେ ଶେଷକଲା ସେ ତୀର୍ଥ ସକଳ ।
ମହା ଆନନ୍ଦରେ ସଙ୍ଗଲୋକଙ୍କ ସଙ୍ଗରେ
ଘରକୁ ଆସିବାବେଳେ ଭାଳଇ ମନରେ ।
ସାଂସାରିକକର୍ମ ମୋର ହୋଇଲା ସଫଳ
ତୃପ୍ତହୋଇ ସ୍ୱର୍ଗେ ଗଲେ ମୋର ପିତୃକୁଳ ।
କୃକଳ ଏରୂପେ ଚିନ୍ତା କରିବାର ବେଳେ
ଅପୂର୍ବକଥାଏ ଦେଖେ ଗଗନ ମଣ୍ଡଳେ ।
ଏକ ବିରାଟ ପୁରୁଷ ଦିବ୍ୟରୂପେ ବିଜେ
ଆଦିତ୍ୟତେଜକୁ ନିନ୍ଦେ ଆପଣାର ତେଜେ ।
ତା ପିତୃଗଣଙ୍କୁ ବାନ୍ଧିଅଛି ଦୃଢ଼କରି
କୃକଳବୈଶ୍ୟଙ୍କୁ କହେ ଉଚ୍ଚେ ଡାକିକରି ।
ହେ କୃକଳବୈଶ୍ୟ ତୋର ପୁଣ୍ୟ କିଛିନାହିଁ
ବୃଥାରେ ତୀର୍ଥ ଭ୍ରମିଲୁ ଫଳନାହିଁ ତହିଁ ।
ଦେବପିତୃଲୋକେ ତୃପ୍ତନୋହିଲେ ତୋ କର୍ମେ
ଆପେ ଆପେ ତୋଷହେଉ ପଡ଼ି ତୁଚ୍ଛା ଭ୍ରମେ ।
ବଇଶ୍ୟ କୃକଳ ଶୁଣି ଦୁଃଖିତ ହୋଇଲା
ଆପଣ କିଏ ଏକଥା କହୁଛ ବୋଇଲା ।
ମୋ ପିତୃଲୋକ ବନ୍ଧନ କଲ କି କାରଣେ
ତୀର୍ଥବ୍ରତ କଲି ଫଳଗଲା ମୋର କେଣେ ।
ଯାତ୍ରାସିଦ୍ଧି କାହିଁପାଇଁ ନୋହିଲା ମୋହର
ଜାଣିଥିଲେ କହ ମୋତେ କାରଣ ଏହାର ।
ଧର୍ମଦେବତା ବୋଇଲେ ଶୁଣ ତୁ କୃକଳ
ଭାରିଯା ଛାଡ଼ି ଆସିଛୁ ନାହିଁ ତୋର ଫଳ ।
ପତିବ୍ରତା ସତୀନାରୀ ଯେ ଛାଡ଼ି ଆସଇ
ତାର ସବୁ ପୁଣ୍ୟଫଳ ବିଫଳ ହୁଅଇ ।
ସ୍ତିରୀଛଡ଼ା ଧର୍ମକର୍ମ କଲେ ନାହିଁ ଫଳ
ଯେ ସ୍ତିରୀ ସଦାଆଚାରେ ରତହେ କୃକଳ ।
ସତ୍ୟଧର୍ମେ ପତିବ୍ରତେ ନିଷ୍ଠାଯାର ଥାଇ
ସଦଜ୍ଞାନବଳେ ମହାପୁଣ୍ୟ ଆଚରଇ ।
ଏରୂପେ ଯେ ମହାସତୀ ପୁଣ୍ୟବତୀ ନାରୀ
ଯାହାର ଭାରିଯା ତାର ଘରଥାଇ ପୂରି ।
ଦେବଲୋକେ ରହିଥାନ୍ତି ତା ଗୃହେ ନିରତେ
ପିତୃଲୋକେ ତାରଘରେ ରହିଥାଇ ନିତ୍ୟେ ।
ଶୁଭବାଞ୍ଛା କରୁଥାନ୍ତି ନିରତେ ତାହାର
ଗଙ୍ଗାଆଦି ପୁଣ୍ୟ ନଦୀ ସହିତ ସାଗର ।
ସେହି ପୁଣ୍ୟନାରୀ ଗୃହେ ନିତ୍ୟଥାନ୍ତି ରହି
ସାଧୁଋଷି ସବୁ ଯାଗଯଜ୍ଞ ରକ୍ଷିଯାଇ ।
ବିରାଜୁଥାନ୍ତି ତାହାର ଗୃହେ ସବୁବେଳେ
ସବୁ ପୁଣ୍ୟତୀର୍ଥ ଫଳ ତା ଗୃହରୁ ମିଳେ ।
ଉତ୍ତମଭାରିଯା ଥିଲା ଯୋଗୁଁ ସେ ପବିତ୍ର
ଜଗତେ ତା ଯୋଗୁଁ ସେହି ବୋଲାଇ ଗେରସ୍ତ ।

ତାର ଧର୍ମ କର୍ମ ସବୁ ତା ଯୋଗୁଁ ସଫଳ
ଗୃହୀଧର୍ମ ଜାଣ ସବୁ ଧର୍ମର ଯେ ମୂଳ ।
ଏମନ୍ତ ଗୃହୀର ଗୃହ ସତ୍ୟ ପୁଣ୍ୟମୟ
ସର୍ବତୀର୍ଥମୟ ସର୍ବ ଦେବ ଯଜ୍ଞମୟ ।
ସବୁ ଜୀବଜନ୍ତୁ ଥାନ୍ତି ତାକୁ ଆଶ୍ରାକରି
ଗୃହୀ ଆଶ୍ରମ ଅଟଇ ଆଶ୍ରମ ସବୁରି ।
ମନ୍ତ୍ର ଅଗ୍ନିଦେବ ପୂଜା ଯେ ଗୃହୀର ଘରେ
ସେ ଗୃହରେ ସନାତନ ଧର୍ମ ନିରନ୍ତରେ ।
ନାନା ଦାନ ସଦାଚାର ତହିଁ ରହିଥାଇ
ପୁଣ୍ୟଆତ୍ମାବୋଲି ସେହି ଜଗତେ ବୋଲାଇ ।
ଭାରିଯା ଯାହାର ନାହିଁ ତା ଗୃହ ଅରଣ୍ୟ
ଯେତେ ଦାନଯେତେ ଯଜ୍ଞ କଲେଯେତେ ପୁଣ୍ୟ ।
ତୀର୍ଥବ୍ରତ ଯେତେ କଲେ ବିଫଳ ସକଳ
ଆଉ ଯେତେ ଯେତେ ଧର୍ମକରେ ସେ କୁକଳ ।
ଧର୍ମର ମୂଳ ଭାରିଯା ସେ ଯାହାର ନାହିଁ
ଜଗତରେ ଧର୍ମଛଡ଼ା ବୋଲାଇ ଯେ ସେହି ।
ଏଣୁ ଯେ ଭାରିଯା ତୁଲ୍ୟ ତୀର୍ଥ ନାହିଁ ଆନ
କହୁଅଛୁ ଶୁଣ ତୁହୋ ହୋଇ ସାବଧାନ ।
ଗୃହୀର ଯେ ଆନ ଧର୍ମ ନାହିଁ ତିନିପୁରେ
ପୁରୁଷର ଗୃହ ଜାଣ ଭାରିଯା ସଂସାରେ ।
ଏଣୁ ଭାରିଯାକୁ ଲୋକେ ବୋଲନ୍ତି ଘରଣୀ
ଭାରିଯା ଯହିଁ ପୁରୁଷ ଥାଇ ତହିଁ ପୁଣି ।
ଗ୍ରାମରେ କିବା ବନରେ ଥିଲେ ଯହିଁ ତହିଁ
ନଥାଇ ଯେବେ ଭାରିଯା ତାରସଙ୍ଗେ ରହି ।
ସବୁ ଧର୍ମ କର୍ମ ତାର ହୁଅଇ ବିଫଳ
ଏଣୁ ଭାରିଯା ପୁରୁଷ ଧର୍ମ କର୍ମ ମୂଳ ।
ସବୁ ଧର୍ମ କରିବ ଯେ ଭାରିଯାକୁ ଘେନି
ଭାରିଯା ତୀର୍ଥ ସମାନ ତୀର୍ଥନାହିଁ ପୁଣି ।
ଭାରିଯା ସବୁ ସୁଖର ଅଟେ ସିନା ମୂଳ
ଭାରିଯା ସମାନ ପୁଣ୍ୟ ନାହିଁ ଭୂମଣ୍ଡଳ ।
ଧର୍ମରତା ସତୀ ତୋର ଭାରିଯାକୁ ତୁହି
କି ପୁଣ୍ୟ କି ତୀର୍ଥକରୁ ଗୃହେ ଅଛି ରହି ।
ଏଣୁ ତୁହି ନରାଧମ ଅଟୁରେ କୁକଳ
ଗୃହୀଧର୍ମ ଛାଡ଼ି ଧର୍ମକରୁ ସେ ବିଫଳ ।
ଭାରିଯା ନାହିଁକି ପିଣ୍ଡଦେଉ ତୀର୍ଥେ ବୁଲି
ପୁଣ୍ୟଆତ୍ମାନୋହୁତୋତେ ଦୋଷକାରୀବୋଲି ।
ତୋ ପୂର୍ବ ପୁରୁଷେ ଦେଖ ସେଦୋଷେବନ୍ଧନ
ତୁହି ଯେ ଚୋର ଗୁପତେ କରୁ ପିଣ୍ଡଦାନ ।
ଲୋଭେ ପଡ଼ି ତା ଭକ୍ଷନ୍ତି ତୋ ପୂର୍ବ ପୁରୁଷେ
ଚୋରବୋଲିତାକୁଆମ୍ଭେ ବାନ୍ଧିଛୁସେଦୋଷେ ।
ତୋର ସବୁ ଧର୍ମକର୍ମ ବୃଥାରେ ପାମର
ଭାରିଯାଠାରେ ରହିଛି ରନ୍ଧା ବଢ଼ା ଭାର ।
ଭାରିଯା ରାନ୍ଧି ପରଷି ନଦେଲେ ପୁରୁଷ
ପିଣ୍ଡ କି ଦେଲେ ତହିଁରେ ପିତୃଏ ସନ୍ତୋଷ ।
ତୋ ଭାରିଯା ରାନ୍ଧିବାଢ଼ି ଦେଇନାହିଁ ତୋତେ
ତୁ କି ଶ୍ରାଦ୍ଧ କରିଅଛୁ ବୁଲି ତୀର୍ଥେ ତୀର୍ଥେ ।
ଭାରିଯା ଘେନି ଯେ ପୁତ୍ର ଶ୍ରାଦ୍ଧକରେ ବସି
ସେହି ସୁପୁତ୍ରର ପୁଣ୍ୟ ଜଗତରେ ଘୋଷି ।
ଅମୃତ ପିଇଲେ ଜନେ ଯେସନ ତୃପତ
ଯେ ପୁତ୍ର ଶ୍ରାଦ୍ଧ କରଇ ଭାରିଯା ସହିତ ।
ତେସନ ତୃପତ ତାର ପିଣ୍ଡ ପାଣି ପିଇ
ସୁଖ କରୁଥାନ୍ତି ଦେବଲୋକ ସଙ୍ଗେ ଥାଇ ।
ଏକଥା ଗୋଟା ତୁ ସତ୍ୟ ଜାଣିଥା ନିଶ୍ଚୟ
ଭାରିଯା ଅଟଇ ଜାଣ ଧର୍ମର ଆଳୟ ।
ଗୃହୀଲୋକ ଭାରିଯାକୁ ନ ଛାଡ଼ିବ ତିଳେ
ଭାରିଯାକୁ ଠକିଦେଇ ଗଲୁ ସଙ୍ଗ ମେଳେ ।
ଚୋରି କର୍ମକଲୁ ମୂଢ଼ ଏଣୁ ତୁହି ଚୋର
ଏ ପୂର୍ବ ପୁରୁଷ ତୋର ଚୋର ସରଦାର ।
ଚୋରପିଣ୍ଡ ପାଣିଖାଇ ପଡ଼ିଲେ ବନ୍ଧନେ
ସ୍ୱହସ୍ତେ ଯାହା ଭାରିଯା ରାନ୍ଧେ ଶ୍ରାଦ୍ଧଦିନେ ।
ସେ ଦ୍ରବ୍ୟ ଅମୃତ ତୁଲ୍ୟ ଜାଣରେ ପାମର
ଅନ୍ୟହସ୍ତ ପାକ ସବୁ ବିଷ ପରକାର ।
ତୋପିତୃଲୋକେଖାଇଲେ ଯେଣୁତୋଷହୋଇ
ଏଣୁ ବନ୍ଧନେ ପଡ଼ିଲେ ସେ ଅମେଧ ଖାଇ ।
ଜାଣିଥା ଭାରିଯା ବିନା ସବୁ ଧର୍ମ ବୃଥା
ଭରିଯା ଗୃହୀ ଲୋକର ସୁଖଭୋଗ ଦାତା ।
ଗତି ମୁକତି ଭାରିଯା ଦିଅଇ କେବଳ
ଭାରିଯା ଦିଅଇ ସବୁ ତୀର୍ଥବ୍ରତ ଫଳ ।
ଭାରିଯା ନଥାଇ ଧର୍ମକର୍ମ ନ ଯୋଗାଇ
ଗୋପୀନାଥ ବୋଲେ ହରି ହରି ବୋଲଭାଇ ।
ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ସୁକଳା
ଚରିତ୍ରେନାମ ଏକୋନଷଷ୍ଟି ତମୋଽଧ୍ୟାୟଃ ।

## ଷଷ୍ଟି ଅଧ୍ୟାୟ

### ଭାର୍ଯ୍ୟାହସ୍ତ ଅନ୍ନଦାନେ କୃକଳର ପିତୃମୁକ୍ତି

କୃକଳ ବୋଇଲା କହ ଆହେ ଧର୍ମରାଜ
ମୋର ତୀର୍ଥଫଳ ସବୁ ସିଦ୍ଧହେବ ଆଜ ।
କି କଲେ ମୋ ପିତୃଲୋକେ ପାଇବେ ମୁକତ
ଦୃପାକରି କହ ସବୁ ନକରି ଗୁପତ ।
ଧର୍ମ ବୋଇଲେରେ ଶୁଣ ବଇଶ୍ୟ କୃକଳ
ତୋର ଘରଣୀକି ଯାଇ ଏବେ ପ୍ରତିପାଳ ।
ତୋହର ବିହୁନେ ଘରେ ପାଉଛି କଷଣ
ତୁ ଏଥୁଁ ତୁରିତେ କର ଗୃହକୁ ଗମନ ।
ମହାସତୀ ପତିବ୍ରତା ସୁକଳା ଅଟଇ
ରାନ୍ଧିବାଢ଼ି ଦେଉ ପିତୃଶ୍ରାଦ୍ଧ କର ଯାଇଁ ।
ପୁଣ୍ୟ ତୀର୍ଥମାନସବୁ ମନରେ ସୁମରି
ବିଧିମତେ ଗୃହେ ରହି ଦେବାର୍ଚ୍ଚନା କରି ।
ତୀର୍ଥଯାତ୍ରା ଫଳ ସିଦ୍ଧି ହୋଇବ ତୋହର
ସଫଳି ଶ୍ରାଦ୍ଧ ତୁ ବେଗେ ଯାଇ ଗୃହେ କର ।
ଗୃହୀଧର୍ମ ଲୋପପାଏ ଭାରିଯା ବିହୁନେ
ତା ହାତେ ପାଣି ନପାନ୍ତି ଦେବ ପିତୃଗଣେ ।
ତା ହାତର ଅନ୍ନଜଳ ଅମେଧ ତାଙ୍କର
ଯାଗଯଜ୍ଞ ସବୁ ଜାଣ ବିଫଳ ତାହାର ।
ବିଷ୍ଣୁ କହିଲେ ବୈଶ୍ୟକୁ ଧର୍ମ ଏହାକହି
ଅଦୃଶ୍ୟ ହୋଇଲେ ବୈଶ୍ୟ ଶୂନ୍ୟେଅଛି ଚାହିଁ ।
ତହୁଁ କୃକଳ ଗୃହକୁ ଆସେ ଚିନ୍ତାକରି
ସଙ୍ଗୀଙ୍କ ସଙ୍ଗେ ଏସବୁ ବିଚାରି ବିଚାରି ।
ଗୃହେ ପ୍ରବେଶି ଦେଖିଲା ସୁକଳାକୁ ଘରେ
ଆନନ୍ଦ ହୁଅଇ ସବୁ ବିଚାରି ମନରେ ।
ସ୍ୱାମୀକି ଦେଖି ସୁକଳା ଉଠି ତରବରେ
ସ୍ୱାମୀ ପାଦକୁ ଧୋଇଲା ଶୁଦ୍ଧ ଉଦକରେ ।
ଗର୍ଭକୁ କ୍ଷେପି ପୋଛିଲା କାନି ପଣନ୍ତରେ
ଧୂପଦୀପ ଦେଇ ପୂଜାକଲା ସେ ପୟରେ ।
ଏଥୁଅନ୍ତେ ସେ ଧର୍ମାତ୍ମା ବଇଶ୍ୟ କୃକଳ
କହିଲା ପତ୍ନୀର ଆଗେ ତୀର୍ଥ କଲା ଫଳ ।
ଧର୍ମ ଯେମନ୍ତେ କହିଲେ ବାନ୍ଧି ପିତୃଲୋକ
ଭାରିଯା ଆଗେ ବିସ୍ତାରି କହେ ସବୁଯାକ ।
କୃକଳା ଶୁଣି ମନରେ ଆନନ୍ଦ ହୋଇଲା
ପିତୃଶ୍ରାଦ୍ଧ କରବୋଲି ସ୍ୱାମୀକି କହିଲା ।
ଶ୍ରୀବିଷ୍ଣୁ କହିଲେ ଏଥୁଅନ୍ତେ ସେ କୃକଳ
ସଂଗ୍ରହକଲା ଶ୍ରାଦ୍ଧର ସାମଗ୍ରୀ ସକଳ ।
ଦେବତାସ୍ଥାନେ ପତ୍ନୀକି ଘେନି ଶ୍ରାଦ୍ଧକଲା
ପିତୃ ଦେବତା ଗନ୍ଧର୍ବ ବିମାନେ ଦେଖିଲା ।
ମୁନିଜନେ ମିଳିକଲେ ସେ ଦମ୍ପତି ସ୍ତୁତି
ମୁହିଁ ପୁଣି ବ୍ରହ୍ମାହର ସହିତେ ପାର୍ବତୀ ।
ଆମ୍ଭ ଭିନ୍ନ ଅନ୍ୟଦେବ ଗନ୍ଧର୍ବ ଯେତେକ
ବିମାନ ଚଢ଼ି ସେ ସ୍ଥାନେ ରହି ଶୂନ୍ୟଲୋକ ।
କହିଲେ କୃକଳ ତୋର ସତ୍ୟ ଧର୍ମ ଯେଡ଼େ
ସୁକଳ ଧର୍ମ ଅଧିକ ତାର ମନ ଦୃଢ଼େ ।
ତୁମ୍ଭପତି ପତ୍ନୀଙ୍କର ହେଉ ଯେ ମଙ୍ଗଳ
ବର ଯାଚୁଅଛୁଁ ଘେନ ଧର୍ମାତ୍ମା କୃକଳ ।
ବଇଶ୍ୟ ବୋଇଲା ଆହେ ଦେବଗଣ ତୁମ୍ଭେ
କେଉଁ ତପ କେଉଁପୁଣ୍ୟ କଲୁ ଦୁହେଁ ଆମ୍ଭେ ।
ଆସିଛି ସ୍ତିରୀ ସହିତେ ବର ଦେବା ପାଇଁ
କହିଲେ ଯେ ଆଗଭର ହୋଇ ଶଚୀସାଇଁ ।
ଏହି ସତୀ ସୁକଳା ଯେ ମହାଭାଗ୍ୟବତୀ
ମଙ୍ଗଳ ଆଳୟ ପୁଣି ଏ ପତିବରତୀ ।
ଏହା ସତ୍ୟବଳେ ଆମ୍ଭେ ହୋଇଲୁ ପ୍ରସନ୍ନ
ତେଣୁ ବର ଦେବାପାଇଁ କଲୁ ଆଗମନ ।
ଏହା କହିସାରି ପୁଣି ଦେବ ପୁରନ୍ଦର
ସଂକ୍ଷେପି କହିଲେ ପୂର୍ବକଥା ସୁକଳାର ।
କୃକଳ ସତୀ ମହିମା ଚରିତ୍ରକୁ ଶୁଣି
ଆନନ୍ଦେ ପତୀ ପତ୍ନୀଙ୍କ ନେତ୍ରୁ ବହେ ପାଣି ।
ଦେବତାଙ୍କୁ ନମସ୍କାର କରି ବାରମ୍ବାର
ବୋଇଲେ ଆପଣ ବ୍ରହ୍ମା ବିଷ୍ଣୁ ମହେଶ୍ୱର ।
ତେତିଶକୋଟି ଦେବତା ଅଛନ୍ତି ସମସ୍ତେ
ପୁଣ୍ୟଜନ ଋଷିମୁନି ଆଦିଛନ୍ତି ଯେତେ ।
ଯେବେ କୃପାକଲ ଦିଅ ଆମ୍ଭଙ୍କୁ ଏ ବର
ଜନ୍ମେ ଜନ୍ମେ ଭକ୍ତହେବୁ ଦେବଲୋକଙ୍କର ।
ସତ୍ୟ ଧର୍ମେ ସ୍ନେହଥିବ ଆମ୍ଭ ଦୁହିଙ୍କର
ଆପଣଙ୍କ ପରସାଦେ ଏ ଦେହ ଆମ୍ଭର ।
ଛାଡ଼ି ଜୀବ ଆତ୍ମଯିବ ବଇଷ୍ଣବ ଲୋକେ
ଆମ୍ଭ ସଙ୍ଗତରେ ଥିବେ ଆମ୍ଭ ପିତୃଲୋକେ ।

ଯେବେ ସୁପ୍ରସନ୍ନ ହେଲ ଦିଅ ଏହି ବର
ଦେବେବୋଇଲେତା ସିଦ୍ଧ ହେଉରେ ତୋହର ।
ଆହୋ ବେନ ରାଜା ଶୁଣ ଏଥୁ ଅନନ୍ତରେ
ଦେବେ ପୁଷ୍ପବୃଷ୍ଟି କଲେ ଦୁହିଙ୍କ ଉପରେ ।
ଗନ୍ଧର୍ବେ ଗୀତ ଗାଇଲେ ସେକାଳେ ସୁସ୍ୱରେ
ପବିତ୍ର ଲଳିତ ତାନ ମାନ ସଂଯୋଗରେ ।
ଆନନ୍ଦରେ ନୃତ୍ୟକଲେ ଅପସରା ମିଳି
ଋଷିଏ ଦେବ ଗାଇଲେ ଦେଇ କରତାଳି ।
ବରଦେଇ ଦେବେ କଲେ ସୁକଳାର ସ୍ତୁତି
ନାରୀ ତୀର୍ଥ କଲା ତୋତେ କହିଲି ନୃପତି ।
ଏ ନାରୀତୀର୍ଥ ମହିମା ଅଟଇ ଏମନ୍ତ
ସବୁ ତୀର୍ଥ ମଧ୍ୟେ ସାର ଏହି ନାରୀ ତୀର୍ଥ ।
ଆହେ ବେନ ନାରୀ ତୀର୍ଥ କହିଲି ବୁଝାଇ
ଶୁଣିବା ନର ପାପରୁ ମୁକତ ହୁଅଇ ।
ଯେଉଁସ୍ତିରୀ ଶରଧାରେ ଶୁଣଇ ପଢ଼ଇ
ଦିନୁଦିନ ସଉଭାଗ୍ୟ ତାହାର ବଢ଼ଇ ।
ଭୂମିଖଣ୍ଡରେ ପବିତ୍ର ସୁକଳା ଚରିତ
ସତ୍ୟ ଧର୍ମ ପୁତ୍ର ନାତି ଦିଅଇ ତୁରିତ ।
ସ୍ୱାମୀ ସୁଖ ସଉଭାଗୀ ହୁଅଇ ରମଣୀ
ଘରେ ତାର ଧନ ଧାନ୍ୟ ପୂରିଥାଇ ପୁଣି ।
ଜନ୍ମେ ଜନ୍ମେ ପତିବ୍ରତା ହୁଅଇ ସେ ନାରୀ
ବ୍ରାହ୍ମଣ ଶୁଣଇ ଯେବେ ଏହା ଶ୍ରଦ୍ଧାକରି ।
ବେଦ ବିଦ୍ୟାରେ ନିପୁଣ ହୁଅଇ ସେ ଜନ
କ୍ଷତ୍ରିୟ ରଣେ ବିଜୟୀ ହୁଏ ପ୍ରତିଦିନ ।
ବଇଶ୍ୟ ଶୁଣିଲେ ପୂର୍ଣ୍ଣ ଧନ ଧାନ୍ୟ ପାଇ
ଶୂଦ୍ର ଶୁଣିଲେ ତାହାର ଶିରୀ ବଢ଼ିଯାଇ ।
ପୁତ୍ର ନାତି ଘେନି ସୁଖେ କରନ୍ତି ସେ ଘର
ଧନ ଧାନ୍ୟରେ ପୂରଇ ସକଳ ଭଣ୍ଡାର ।
ବିପୁଳ ଲକ୍ଷ୍ମୀ ମିଳଇ ପାପ କ୍ଷୟ ଯାଇ
ଦୀନ ଗୋପୀନାଥ ଭଜେ ଅଚ୍ୟୁତ ଗୋସାଇଁ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ସୁକଳା ଚରିତେ ନାମ ଷଷ୍ଟି ତମୋଽଧ୍ୟାୟଃ ।



## ଏକଷଷ୍ଟି ଅଧ୍ୟାୟ

### ପିତୃତୀର୍ଥ ବର୍ଣ୍ଣନ

ବେନ ବୋଇଲେ ଦେବାଧି ଦେବଙ୍କର ରାୟ
କହିଲି ଭାରିଯା ତୀର୍ଥ ଫିଟିଲା ସଂଶୟ ।
ପିତୃତୀର୍ଥ କଥା ଏବେ କହିବା ବୁଝାଇ
ଶ୍ରୀବିଷ୍ଣୁ କହିଲେ ଶୁଣ ବେନ ନରସାଇଁ ।
କରୁକ୍ଷେତ୍ର ନାମେ ଯେଉଁ କ୍ଷେତ୍ର ମହାକ୍ଷେତ୍ର
ପିଙ୍ଗଳା ନାମେ ଏକଇ ବ୍ରାହ୍ମଣ ପବିତ୍ର ।
ସୁକର୍ମା ନାମେ ତାହାର ଏକ ପୁତ୍ର ଥିଲା
ପିତା ମାତା ଅତିବୃଦ୍ଧ ହେବାର ଦେଖିଲା ।
ଉତ୍ତମ ରୂପରେ ଧର୍ମ ଶାସ୍ତ୍ର ସେ ଜାଣଇ
ଦେହେ ଜରା ଘୋଟିବାରୁ ମହା ପୀଡ଼ାପାଇ ।
ପ୍ରକୃତ ମହାତ୍ମା ଅଟେ ସେହି ଦ୍ୱିଜବର
ଭକ୍ତିରେ ସୁକର୍ମା ପୂଜେ ତାହାଙ୍କ ପୟର ।
ତାଙ୍କ ସେବା ସୁଶ୍ରୁଷାରେ ଥାଏ ରାତିଦିନ
ପିତାଠାରୁ କଲା ଚାରି ବେଦ ଅଧୟନ ।
ଆବର ବହୁତ ଶାସ୍ତ୍ର ପଢ଼ିଲା ସେ ପୁଣି
ତେଣୁ ସେ ସୁକର୍ମା ଦ୍ୱିଜ ହେଲା ମହାଜ୍ଞାନୀ ।
କ୍ରିୟା କୁଶଳ ଧର୍ମଜ୍ଞ ନିତ୍ୟ ସଦାଚାରୀ
ଆପେ ପିତା ମାତାଙ୍କର ପାଦ ସେବାକରି ।
ଘଷି ମୋଡ଼ିଦିଏ ନିତି ଦିଏ ପାଦ ଧୋଇ
ସ୍ନାନ କରାଇ ସ୍ୱହସ୍ତେ ଘଷି ମାଜିଦେଇ ।
ରାନ୍ଧି ବାଢ଼ି ମନଜାଣି ଦିଅଇ ଭୋଜନ
ଭକତିରେ ପୂଜେ ପିତା ମାତାଙ୍କ ଚରଣ ।
ପିତା ମାତା ଚିନ୍ତାତାର ରାତିଦିନ ଥାଇ
ପିତାମାତା ଭକତିରେ ତାର ଦିନ ଯାଇଁ ।
ସତ କହନ୍ତି ଶୁଣନ୍ତି ମୁନି ଶଉନକ
ବର୍ତ୍ତମାନ କାଳର ଯେ ଥିଲା ଦ୍ୱିଜଏକ ।
ମହାତମା କଶ୍ୟପର ଅଟଇ କୁମର
ଏହିରୂପେ ପିତୃ ମାତୃ ଭକତି ତାହାର ।
ସେ ଦ୍ୱିଜ ନାମ ପିପ୍‌ପଳ ଜୀବେଥାଇ ଦୟା
ଦାନ ଦିଅଇ ହୃଦୟେ ନଥାଇ ଯେ ମାୟା ।
ମଦ ମତ୍ସର ଜିଣିଛି ସର୍ବଦା ସେ ଶାନ୍ତ
ଦମନ କରି ରଖିଛି ଆପଣାର ଚିତ୍ତ ।

ଇନ୍ଦ୍ରିୟ ଜିଣି କରିଛି ଜ୍ଞାନ ଉପାର୍ଜନ
ଜିଣିଅଛି କାମ କ୍ରୋଧ ଲୋଭ ଯେ ଅଜ୍ଞାନ ।
ନିରାହାରେ ଦଶାରଣ୍ୟେ ରହିକରେ ତପ
ତାହାର ତପ ପ୍ରଭାବେ ପ୍ରାଣୀ ଏକରୂପ ।
ଏକ ଉଦରେ ରହିଲା ପରାୟ ରହିଲେ
ବିଗତ ବିଗ୍ରହ ପ୍ରାୟେ ସକଳେ ହୋଇଲେ ।
ତାର ତପେ ମୁନିଗଣ ହୋଇ ଆଚମ୍ବିତ
ବୋଇଲେ ତପ କରଇ ଏ ମୁନି ଯେମନ୍ତ ।
ଏରୂପ ତପ କେ ଆଜି ଯାଏ କରିନାହିଁ
ବିସ୍ମୟ ହୋଇଲେ ଦେବଗଣ ସୁରସାଇଁ ।
କି ଆଶ୍ଚର୍ଯ୍ୟ ଏ ମୁନିର କି କଠୋର ତପ
ଇନ୍ଦ୍ରି ସଂଯମ ଏହାର କି ଅପୂର୍ବ ରୂପ ।
କି ଅପୂର୍ବ ଶମ ପୁଣ ବହିଛି ଏ ମୁନି
ଉଦବେଗ ନାହିଁ ଏହି ମନରେ ଯେ ପୁଣି ।
ବିକାର ନାହିଁ ଆବର ଏ କି ଆଚମ୍ବିତ
ସହି ରହିଛି ବରଷା ଖରା ଶୀତ ବାତ ।
ପର୍ବତ ପ୍ରାୟ ଅଟଳ ଏହାର ଶରୀର
ବିଷୟ ଲାଳସା ପୁଣି ନାହିଁ ଯେ ଏହାର ।
ମନରେ ଏହାର ବଇକୁଲ୍ୟ କିଛି ନାହିଁ
କାହାରି ଶବଦ ଏହା କର୍ଣ୍ଣେ ନ ପଶଇ ।
ସମାଧିରେ ରହି ପୁଣି ଲଗାଇଛି ଲୟ
ସର୍ବଦା ଆନନ୍ଦମୟ ଏହାର ହୃଦୟ ।
ମୁଖ କମଳ ପ୍ରଫୁଲ୍ଲ ନିରତେ ଏହାର
ବ୍ରହ୍ମଜ୍ଞାନ ଚିନ୍ତାକରେ ବସି ନିରନ୍ତର ।
କାଠ ପଥର ପରାୟ ଚଇତନ୍ୟ ହୀନ
ଗିରି ପ୍ରାୟ ଅତି ଦୃଢ଼ ଏହାର ସମାନ ।
ସ୍ଥାଣୁ ପରାୟ ଦିଶୁଛି ସର୍ବଦା ସୁସ୍ଥିର
ଧର୍ମ ବସ୍ତଳ ଏହାର ତପ ଘୋରତର ।
ତପେ କ୍ଲେଶ ପାଉଅଛି ଏ ପୁଣି କେମନ୍ତେ
ତପେ ଶରଧା ଏହାର ଅଛି ପୁଣି କେତେ ।
ଏରୂପେ ସେ ତପ କଲା ସହସ୍ରେ ବରଷ
ଉଇ ଉଠି ହୁଙ୍କାକଲେ ତାର ଚଉପାଶ ।
ଉଇହୁଙ୍କା ହେଲା ଜାଣ ସେ ଦ୍ୱିଜର ଘର
ତହିଁରେ ବୁଡ଼ି ରହିଲା ତାହାର ଶରୀର ।
ହୁଙ୍କା ଭିତରେ ପିପଳ ରହି ହେଲା ଜଡ଼
ତପ ନଚେତେ ତାହାର ମନ ଏତେ ଦୃଢ଼ ।

ସାପେ ଗୁଡ଼ାଇ ହୋଇଣ କଲେ ତହିଁ ବାସ
କାଳସର୍ପ ଉଦ୍‌ଗାରଇ ପ୍ରତିଦିନ ବିଷ ।
ସାପେ ତା ଦେହଚର୍ମକୁ କାମୁଡ଼ିଲେ ଦାନ୍ତେ
ମୁନିତେଜେ ବିଷତେଜ ଲୀନହେଲା ଅନ୍ତେ ।
ତା ଦେହୁଁ ଅନଳ ଶିଖା ନାନାରୂପ ଧରି
ଉଜ୍ଜ୍ୱଳ ତେଜ ବିକାଶି ପଡ଼ିଲେ ବାହାରି ।
ଅନଳ ଶିଖା ପରାୟ ସହି ନ ହୁଅଇ
ବେଳୁଁ ବେଳ ବାହାରଇ ଖରତର ହୋଇ ।
ସୂର୍ଯ୍ୟ ଯେମନ୍ତେ ରହିଣ ମେଘର ଉଦରେ
ଆପଣା କିରଣ ପ୍ରଭା ବିସ୍ତାରେ ସଂସାରେ ।
ତେସନ ହୁଙ୍କା ଭିତରେ ଥାଇ ସେ ପିପଳ
ଆପଣା ତେଜ ପ୍ରଭାରେ ଦିଶିଲା ଉଜ୍ଜ୍ୱଳ ।
କ୍ରୋଧେ କାଳସର୍ପେ ଆସି ଦଂଶିଲେ ବହୁତ
ମୁନି ଚର୍ମେ ନଭେଦିଲା ସର୍ପଙ୍କର ଦାନ୍ତ ।
ଏରୂପେ ତପ କରନ୍ତେ ସେହି ମୁନିବର
ବହିଗଲା ପୁଣି ଏକ ସହସ୍ର ବତ୍ସର ।
ଖରା ବର୍ଷା ଶୀତ ବାତ ସହିଲାଣି କେତେ
ଆହାର ନାହିଁ ତାହାର ପୁଣି ଏ ପର୍ଯ୍ୟନ୍ତେ ।
ତିନି ସହସ୍ର ବରଷ ପିଇଲା ପବନ
ତାର ଶିରେ ଦେବେ କଲେ ପୁଷ୍ପ ବରଷଣ ।
ବୋଇଲେ ତୁହି ନିଶ୍ଚୟ ଧର୍ମ ବ୍ରହ୍ମଜ୍ଞାନୀ
ନିଜ କର୍ମବଳେ ସର୍ବଜ୍ଞାନୀ ତୁହି ମୁନି ।
ଯେ ବରମାଗିବୁ ତାହାଦେବୁଁ ଆମ୍ଭେତୋତେ
ତୋର ସର୍ବକାମ ସିଦ୍ଧି ହୋଇବ ତୁରିତେ ।
ଦେବଙ୍କ ମୁଖୁଁ ଏମନ୍ତ ଶୁଣି ସେ ପିପପଳ
ପ୍ରଣମିଲା ଆନନ୍ଦରେ ହୋଇଣ ବିହ୍ୱଳ ।
ସବୁ ଜଗତ ମୋହର ବଶରେ ରହିବ
ମୁହିଁ ବିଦ୍ୟାଧର ହେବି ଏହି ବରଦେବ ।
ସେ ବୁଦ୍ଧିମନ୍ତ ପିପଳ କହି ହେଲା ତୁନୀ
ହେଉବୋଲି କହିଲେ ସେ ଦେବଗଣେ ପୁଣି ।
ବର ଦେଇଗଲେ ସବୁ ଯେ ଯାହାର ପୁରେ
ବ୍ରହ୍ମଜ୍ଞାନୀ ହେଲା ବିପ୍ର ତପ ପ୍ରଭାବରେ ।
ବିଦ୍ୟାଧର ପଦପାଇ କାମଗାମୀ ହେଲା
ରୂପଗୁଣରେ ସକଳ ଜଗତ ମୋହିଲା ।
ଦେବଲୋକେ ଅଧିକାର ରହିଲା ତାହାର
ଦିନେ ପିପଳ ମନରେ କରଇ ବିଚାର ।

ବିଶ୍ୱ ବ୍ରହ୍ମାଣ୍ଡ ମୋହର ବଶରେ ରହିବ
ଏହିବର ଦେଇଗଲେ ମୋତେ ସର୍ବଦେବ ।
ସତ କି ମିଛ ପରଖ କରିବା ନ ବାରେ
ଏମନ୍ତ ଭାଳି ଉଦ୍ୟମ କାଲା ସେ ତହିଁରେ ।
ରହିଲେ ଜଗତଯାକ ବଶରେ ତାହାର
ବଶ କରିବା ଶକତି ପାଇ ଦ୍ୱିଜବର ।
ମନେ ମନେ ବିଚାରିଲା ମୋହର ସମାନ
ପୁରୁଷ ଉତ୍ତମ ନାହିଁ ତିନିଗୁଣେ ଆନ ।
ସୂତ କହନ୍ତି ଯେ ମୁନି ଶୌନକ ଶୁଣନ୍ତି
ଏମନ୍ତେ ମନେ ବିଚାର କରନ୍ତେ ସେ ଯଦି ।
ସାରସ ପକ୍ଷୀଏ ଥିଲା ସରୋବର ତୀରେ
ପିପଳର ମନଭାବ ଜାଣିପାରି ଧୀରେ ।
ବୋଇଲା ସୁସ୍ୱରେ ବ୍ୟଙ୍ଗ କରି ପିପଳକୁ
ତୋ ମନକଥା ନଆସେ ମୋହର ମନକୁ ।
ତୋହର ମନରେ ଗର୍ବ ହେଲାଣି ଉଦୟ
ତେଣେ ତପଫଳ ଯାକ ସବୁଯିବ କ୍ଷୟ ।
ବଶତା ସିଦ୍ଧି ହେଲାଣି ବୋଲି ଯାହା ଭାଳୁ
ସିଦ୍ଧି ହୋଇ ନାହି ତାହା ଯେଣୁ ଗର୍ବକଲୁ ।
ତୁ ମୁଢ଼ ବୁଦ୍ଧି ତୋହର ହୋଇନାହିଁ ଜ୍ଞାନ
ତିନି ସହସ୍ର ବରଷ କଲୁ ତୁ ଯେ ଧ୍ୟାନ ।
କଠୋର ତପସ୍ୟାପୁଣି କରିବାରୁ ତୁହି
ବୃଥା ଗର୍ବକରୁ ପୂର୍ବାପର ଜ୍ଞାନ ନାହିଁ ।
କୁଣ୍ଡଳ ପୁତ୍ର ସୁକର୍ମା ଅଟଇ ବିଜ୍ଞାନୀ
ଜଗତ ଯାକ ତାହାର ବଶରେ ଅଜ୍ଞାନୀ ।
କୁଣ୍ଡଳ ପୁତ୍ର ସୁକର୍ମା ତୁଲ୍ୟ ନୋହୁ ତୁହି
ଦାନ ଜ୍ଞାନ ଚିନ୍ତା ତାର କିଛି ପୁଣି ନାହିଁ ।
ହୋମ ଯଜ୍ଞ ଆଦି କର୍ମ ନାହିଁ କିଛି ତାର
ତୀର୍ଥ ବ୍ରତ ପୂଜା ଧର୍ମ ପୂଜା ବୈଶ୍ୱାନର ।
ଉତ୍ତମ ସେବା ଧର୍ମ ସେ କେବଳ ଜାଣଇ
ପୂର୍ବାପରଜ୍ଞାନ ଗୋଟା ତାହାର ଅଛଇ ।
ସର୍ବଦା ସ୍ୱଚ୍ଛନ୍ଦାଚାରୀ ସେହି ମହାଜ୍ଞାନୀ
ଚାରିବେଦ ସବୁ ଶାସ୍ତ୍ର ଅର୍ଥ ଅଛି ଜାଣି ।
ପିତୃ ମାତୃ ସେବାରେ ସେ ଥାଇ ରାତିଦିନ
ବାଳକ ହେଲେ ହେଁ ତାର ଅଛି ଯେଉଁ ଜ୍ଞାନ ।
ସେ ଜ୍ଞାନ ତୋହର ନାହିଁ ଜାଣିଥା ପିପଳ
ବୃଥା ଗର୍ବକରୁ ପାଇନାହୁଁ ଜ୍ଞାନ ମୂଳ ।
ଏମନ୍ତ ଶୁଣି ପିପଳ କହିଲା ତୁ କିଏ
ତୁ ପୁଣି ଦେଖାଯାଉଛୁ ମୋତେ ପକ୍ଷୀପ୍ରାୟେ ।
ଏରୂପେ ମୋହର ନିନ୍ଦା କର କାହିଁପାଇଁ
ମୋ ଜ୍ଞାନକୁ ନିନ୍ଦାକରୁ ବୁଝିପାରୁ ନାହିଁ ।
ପରାଚୀନ ଅର୍ବାଚୀନ ଜ୍ଞାନ କି ପ୍ରକାର
ବୁଝାଇ କହିଲ ତାକୁ ଜ୍ଞାନ ପୂର୍ବାପର ।
ବୁଝି ନପାରିଲି ମୋତେ ଦିଅ ତା ବୁଝାଇ
ତୁମ୍ଭେ କାହାଠାରୁ ଏହି ଜ୍ଞାନ ଥିଲ ପାଇ ।
ଅର୍ବାଚୀନ ପରାଚୀନ କର୍ମରେ କି ଗତି
ପକ୍ଷୀର ଏ ଜ୍ଞାନକାହିଁ ହୋଏ ଉତପତ୍ତି ।
କିବା ତୁମ୍ଭେ ବ୍ରହ୍ମା କିମ୍ବା ବିଷ୍ଣୁ କିବା ହର
ପକ୍ଷୀରୂପ ଧରି କହ ଜ୍ଞାନ ସମାଚାର ।
ଏମନ୍ତ ଶୁଣି କହିଲା ସେ ପକ୍ଷୀ ସାରସ
ତୁମ୍ଭେ ତପ କଲ ତିନି ସହସ୍ର ବରଷ ।
ତହିଁରେ ତୁମ୍ଭର କିଛି ଫଳ ନାହିଁ ଜାଣ
ସଦଗୁରୁଠାରୁ କର ସୁଜ୍ଞାନ ଗ୍ରହଣ ।
ବାଳକ କୁଶଳ ଗୁଣ ଜ୍ଞାନ ନାହିଁ ତାର
ଏ ଦ୍ୱିଜବରକୁ ଯାଇଁ ଏକଥା ପଚାର ।
ସେ ଧର୍ମ ଆତ୍ମା ସକଳ କହିବ ବୁଝାଇ
ସାରସପକ୍ଷୀ କହନ୍ତେ ସେ ଦ୍ୱିଜ ଗୋସାଇଁ ।
ଦଶାରଣ୍ୟ ଆଶ୍ରମରୁ ଅଇଲା ତୁରିତେ
ଦ୍ୱିଜ ଗୋପୀନାଥ ଚିତ୍ତ ବିଷ୍ଣୁ ପାଦଗତେ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ
ବେନୋପାଖ୍ୟାନ ପିପଳ ଚରିତ୍ରେ
ଏକଷଷ୍ଟିତମୋଽଧ୍ୟାୟଃ ।

## ଦ୍ୱିଷଷ୍ଟି ଅଧ୍ୟାୟ

### ପିପ୍‌ପଳ ସୁକର୍ମା ସମ୍ବାଦ

ଶ୍ରୀବିଷ୍ଣୁ ବୋଇଲେ ଶୁଣ ଏଥୁଅନନ୍ତରେ
ପିପଳ ବିପ୍ର ସେଠାରୁ ଗଲେ ଖରତରେ ।
କୁଣ୍ଡଳ ମୁନି ଆଶ୍ରମେ ହୋଇଲେ ପ୍ରବେଶ
ସୁକର୍ମାକୁ ଦେଖି ତହିଁ ହୋଇଲେ ହରଷ ।
ସେହି ମହାପିତା ପିତୃ ମାତୃ ସେବାରତ
ମହାଜ୍ଞାନୀ ମହାତେଜା ସତ୍ୟ ଧର୍ମବନ୍ତ ।

ମାତା ପିତା ପାଦତଳେ ରହି ସବୁବେଳେ
ଦ୍ୱାରେ ଥିବାପିପ୍‌ଳଙ୍କୁ ଦେଖିବେନି ଡ଼ୋଳେ ।
ବେଗେ ଆସନରୁ ଉଠି ନେଲେ ହାତଧରି
ଆସ ଆସ ବିଦ୍ୟାଧର ପିପ୍‌ପଳ ଆଚାରୀ ।
ଆସନ ପାଦ୍ୟ ଅର୍ଘ୍ୟରେ କଲେ ପାଦପୂଜା
ପଚାରିଲେ ବୁଦ୍ଧିମନ୍ତ ତୁମ୍ଭେ ମହାତେଜା ।
ବିଘ୍ନ କିଛି ନାହିଁ ସବୁ କୁଶଳ ତୁମ୍ଭର
କି ନିମନ୍ତେ ଆସିଅଛ କହ ଦ୍ୱିଜବର ।
ତିନି ସହସ୍ର ବରଷ ଘୋର ତପ କଲ
ଦେବତାମାନଙ୍କଠାରୁ ବର ଯେ ପାଇଲ ।
ଜଗତ ବଶ କରିବା ଅଧିକାର ପାଇ
ଇଚ୍ଛାକଲେ ଯହିଁ ତହିଁ ତୁମ୍ଭେ ପାର ଯାଇ ।
ତେଣୁ ମତ୍ତହୋଇ କିଛି ନପାରୁଛ ଜାଣି
ବୃଥାରେ ଗର୍ବ କରୁଛୁ ତାହା ମନେ ଗୁଣି ।
ମହାତ୍ମା ସାରସପକ୍ଷୀ ଜାଣି ତୁମ୍ଭ ମନ
ମୋପାଶେ ପଠାଇଦେଲା ବୁଝିବାକୁ ଜ୍ଞାନ ।
ପିପ୍‌ପଳ କହିଲେ ଦ୍ୱିଜ ସରୋବର ତୀରେ
ସେ ସାରସପକ୍ଷୀ କିଏ କହ ମୋ ଆଗରେ ।
ଦେଖିଲି ସେ ପକ୍ଷୀର ଯେ ଅଗୋଚର ଜ୍ଞାନ
ପ୍ରଭୁ କି ଈଶ୍ୱର ସେହି କହ ତା କାରଣ ।
ସୁକର୍ମା କହିଲେ ସେହି ପକ୍ଷୀକଥା ଶୁଣ
ମହାଜ୍ଞାନୀ ପରମେଶ ବ୍ରହ୍ମାବୋଲି ଜାଣ ।
ଆଉ ଯାହା ପଚାରିବ କହିବି ବୁଝାଇ
ଶ୍ରୀବିଷ୍ଣୁ ବୋଇଲେ ଶୁଣ ବେନ ନରସାଇଁ ।
ଧର୍ମାତ୍ମା ସୁକର୍ମା ଦ୍ୱିଜ ଏମନ୍ତ କହନ୍ତେ
ପିପ୍‌ପଳ ବୋଇଲେ ସବୁ ଜଗତ ତୋ ହସ୍ତେ ।
ଶୁଣିଛି ମୁଁ ସବୁବଶ କରିଅଛ ତୁମ୍ଭେ
ସେ କଉତୁକ ରହସ୍ୟ ଦେଖବାରେ ଏବେ ।
ସୁକର୍ମା ଦ୍ୱିଜ କହିଲା ଶୁଣହେ ପିପ୍‌ପଳ
ଦେଖାଉଅଛି ଜଗତ୍‌ବଶ କୁତୂହଳ ।
ପିପ୍‌ପଳ ପ୍ରତୀତି ପାଇଁ ସୁକର୍ମା ବ୍ରାହ୍ମଣ
ଦେବଗଣଙ୍କୁ ମନରେ କଲା ସୁମରଣ ।
ଇନ୍ଦ୍ର ଆଦି ଦଶଦିଗପାଳେ ଜାଣିପାରି
ତେତିଶକୋଟି ଦେବତା ସ୍ୱର୍ଗ ଅପସରୀ ।
ବିଦ୍ୟାଧର ଗନ୍ଧର୍ବଙ୍କୁ ଘେନି ସଙ୍ଗତରେ
ସୁକର୍ମାକୁ କହିଲେ ସେ ରହି ଗଗନରେ ।

ଆହୋ ଦ୍ୱିଜବର କିମ୍ପା କର ସୁମରଣ
ସୁକର୍ମା କହିଲେ ଶୁଣ ତାହାର କାରଣ ।
ଏ ପିପ୍‌ପଳ ବିଦ୍ୟାଧର ଆସି ମୋର ପାଶେ
ପରଖୁଛି ତ୍ରିଜଗତ କେହ୍ନେ ମୋର ବଶେ ।
ତାହାର ପ୍ରତୀତି ପାଇଁ ତୁମ୍ଭଙ୍କୁ ଡାକିଲି
ପ୍ରତୀତି ସେ ଦ୍ୱିଜଙ୍କର ମନେ ଜନ୍ମାଇଲି ।
ଏବେ ନିଜ ନିଜସ୍ଥାନେ ଚଳ ଦେବଗଣ
ଦେବଲୋକ ବୋଇଲେହେ ସୁକର୍ମା ବ୍ରାହ୍ମଣ ।
ଆମ୍ଭ ଦରଶନ କେଭେ ନୁହଇ ବିଫଳ
ବରଦେଇ ଯିବୁ ଆମ୍ଭେ ଅମର ମଣ୍ଡଳ ।
ତୁମ୍ଭେ ବେଗେ ବରମାଗ ଯିବୁ ଆମ୍ଭେ ଦେଇ
ଦେବଙ୍କ ବଚନେ ପୁଣି ସୁକର୍ମା କହଇ ।
ପିତା ମାତା ପାଦେ ରହିଥିବ ମୋ ଭକତି
ପିତା ମାତାଙ୍କର ହେବ ବଇଷ୍ଣବ ଗତି ।
ଶ୍ରୀବିଷ୍ଣୁ ପୁର ପାଇବେ ଦିଅ ଏହି ବର
ଦେବେବୋଇଲେ ତାନିଶ୍ଚେ ହୋଇବ ତୋହର ।
ଏହା ଭିନ୍ନ ଅନ୍ୟବର ମାଗୁ କିନା ଦ୍ୱିଜ
ସୁକର୍ମା ବୋଇଲା ଶୁଣ ତୁମ୍ଭେ ଦେବରାଜ ।
ପିତୃ ମାତୃ ଭକ୍ତିବିନା ଆନ ନ ମାଗଇ
ଧନ୍ୟ ଧନ୍ୟ ଦ୍ୱିଜ ତୁହି ଦେବଗଣେ କହି ।
ବୋଇଲେ ତୁ ପିତୃ ମାତୃ ଭକତିରେ ଗୁଣେ
ତ୍ରିଜଗତ ବଶ କରିଅଛୁ ଏକଜଣେ ।
ସର୍ବଦା ତୁମ୍ଭ ଆମ୍ଭର ଥାଉ ଏ ପୀରତି
ଦେବେ ସ୍ୱର୍ଗପୁରେ ଗଲେ ଶୁଣିଲୁ ନୃପତି ।
ଏହିରୂପେ ଦେଖାଇଲା ସବୁ ଅଇଶ୍ୱର୍ଯ୍ୟ
ଅଦ୍ଭୁତ କୌତୁକଦେଖି ସେ ପିପ୍‌ପଳ ଦ୍ୱିଜ ।
ପଚାରିଲା ପୁଣି ଦ୍ୱିଜ ସୁକର୍ମାକୁ ଚାହିଁ
ଅର୍ବାଚୀନ ପରାଚୀନ କାହାକୁ ଯେ କହି ।
ସେ ଦୁହିଁଙ୍କର ମହିମା ପ୍ରଭାବ ଯେ କେତେ
ବୁଝାଇ ସବୁ କହିବ ମୋହର ଅଗ୍ରତେ ।
ସୁକର୍ମା କହିଲେ ପରାଚୀନ ରୂପ ଚିହ୍ନ
କହୁଅଛି ଶୁଣ ତୁମ୍ଭେ ହୋଇ ସାବଧାନ ।
ଯେଣେ ଇନ୍ଦ୍ର ଆଦି ଦେବଗଣ ଚରାଚର
ସନ୍ତୋଷ ହୋଇବେ କର ତେମନ୍ତ ପ୍ରକାର ।
ଆମୋଦ ପ୍ରମୋଦ ପୁଣି ଯହିଁରେ ହୁଅନ୍ତି
ଯେ ଜଗତନାଥ ପ୍ରଭୁ ସର୍ବଜ୍ଞ ଅଟନ୍ତି ।

ସର୍ବ ବ୍ୟାପକଯେ କେହି ଯୋଗୀନ୍ଦ୍ର ପୁରୁଷ
ସେ ରୂପ ଚିହ୍ନ ତାହାଙ୍କୁ ନୁହଇଯେ ଦୃଶ୍ୟ ।
ଭୀତେ ଚକିତେ ବର୍ଣ୍ଣନକରେ ତାହା ଶ୍ରୁତି
ହାତ ପାଦ ନାହିଁ ତାର ସେ ଶୂନ୍ୟ ମୂରତି ।
କାନ ନାହିଁ ମୁଖ ନାହିଁ ନାହିଁ କଳେବର
ଶୁଣନ୍ତି ସବୁରି କଥା ସେ ପୁରୁଷ ବର ।
ଜଗତ ଜନର ସାକ୍ଷୀ ହୁଅଇ ସେ ଏକା
କାହାରିକି ନାହିଁ କରି ତିଳେମାତ୍ର ଶଙ୍କା ।
ଚକ୍ଷୁ ନାହିଁ ସବୁ ଦେଖି ପାରନ୍ତି ନିମିଷେ
ଦୃଶ୍ୟ ନହୁଅନ୍ତି ସେଯେ ଥାଆନ୍ତି ଅଦୃଶ୍ୟେ ।
ପାଦନାହିଁ ସବୁଠାରୁ ସେ ଯାଇ ପାରନ୍ତି
ତାହାର ମହିମା କେହି ଜାଣି ନପାରନ୍ତି ।
ସକଳ ବ୍ରହ୍ମାଣ୍ଡ ବ୍ୟାପି ରହିଛି ସେ ଏକା
ତତ୍ତ୍ୱଜ୍ଞାନୀ ମୁନିଙ୍କି ସେ ନଦିଅନ୍ତି ଦେଖା ।
ଦେବ ଇନ୍ଦ୍ରଗଣ ତାଙ୍କୁ ଦେଖି ନପାରନ୍ତି
ସତ ମିଛ କଥା ଯାକ ସବୁ ସେ ଜାଣନ୍ତି ।
ଶୂନ୍ୟ କି ଅଶୂନ୍ୟ ସବୁ କହିଛନ୍ତି ବ୍ୟାପି
ସିଦ୍ଧ ସିଦ୍ଧି ପ୍ରଦ ଦେହି ନିର୍ମଳ ନିଷ୍ପାପୀ ।
ସବୁରି ନାୟକ ପୁଣି ସେ ଠୁଳ ମୂରତି
ଶୂନ୍ୟ ଶୂନ୍ୟ ମହାଶୂନ୍ୟ ତାହାଙ୍କୁ ବୋଲନ୍ତି ।
ମହାଯୋଗୀ ବ୍ୟାସ ଏହା ତାହାକୁ ଜାଣନ୍ତି
ଜ୍ୟୋତିର ଉପରେ ମହାଜ୍ୟୋତିସେ ବୋଲାନ୍ତି ।
ବର୍ଣ୍ଣ ତାହାର ଅନନ୍ତ ପୁଣି ସକବର୍ଣ୍ଣ
ଶୂନ୍ୟରେ ଗତି ବାହାର ନାହିଁ ରୂପଚିହ୍ନ ।
ତାର ଏ ନିର୍ମଳ ରୂପ ଦେବ ଯେ କହଇ
ବ୍ୟାସମୁନି ମାରକଣ୍ଡ ଯତି ଏହି ଦୁଇ ।
ଜାଣନ୍ତି ତାହାର ପଦ ଆହୋ ଦ୍ୱିଜବର
ପରାଚୀନ ରୂପବର୍ଣ୍ଣ ଶୁଣିଲ ଏଥର ।
ଅର୍ବାଚୀନ ରୂପବର୍ଣ୍ଣ କହୁଅଛି ଶୁଣ
ମନକୁ ନିଶ୍ଚଳକରି ହୋଇ ସାବଧାନ ।
ଭୂତଆତ୍ମା ଜନାର୍ଦ୍ଦନଦେବ ଯେତେବେଳେ
ଆପେ ସକଳ ସଂହରି ଏକରୂପେ ଜଳେ ।
ଅନନ୍ତ ସର୍ପ ଉପରେ କରନ୍ତି ଶୟନ
ନିଦ୍ରାଆସିଣ ଘାରଇ ତାହାଙ୍କ ନୟନ ।
ଏରୂପେ ବହୁତ କାଳ ଜାଣ ବହି ଯାଇ
ଘୋର ଜଳ ଅନ୍ଧକାରେ ସନ୍ତାପିତ ହୋଇ ।
ମହାମୁନି ମାରକଣ୍ଡ ନପାଇଣ ସ୍ଥାନ
ନିର୍ବେଦହୋଇ ଜଳରେ କରନ୍ତି ଭ୍ରମଣ ।
ଭ୍ରମି ଭ୍ରମି ଯାଇ ଯାଇ ଜଳର ଭିତରେ
ମହାସର୍ପ ଶୋଇଅଛି ଭେଟିଲେ ବାଟରେ ।
ତା ଉପରେ ଶୋଇଛନ୍ତି ଦେବ ଜନାର୍ଦ୍ଦନ
କୋଟି ସୂର୍ଯ୍ୟ ନିନ୍ଦେ ତାଙ୍କ ଅଙ୍ଗର ଭୂଷଣ ।
ଦିବ୍ୟମାଲ୍ୟ ଦିବ୍ୟାମ୍ବର ଧାରୀ ଦେବହରି
ଯୋଗନିଦ୍ରା ଯାଇଛନ୍ତି ଶଙ୍ଖଚକ୍ରଧାରୀ ।
ଅତି ସୁନ୍ଦର ଅପୂର୍ବ ମୁରତି ଯାହାର
ତାଙ୍କପାଖେ ନାରୀ ଏକ କରଇ ବିହାର ।
ଅଞ୍ଜନ ପୁଞ୍ଜ ପରାୟ ବର୍ଣ୍ଣ ଅତିକଳା
ଦଂଷ୍ଟ୍ରା କରାଳ ବଦନା ଭୀମରୂପା ବାଳା ।
ମହାଯତି ମାର୍କଣ୍ଡେୟ ମୁନିଙ୍କି କହିଲେ
ଭୟନାହିଁ ଭୟନାହିଁ ଏ ପ୍ରଳୟ ଜଳେ ।
ସେହି ମହାଦେବୀ ତହୁଁ ମୁନିଙ୍କି ଯେ ନେଇ
ପଦ୍ମପତ୍ରର ଉପରେ ଦେଲେକ ଶୁଆଇ ।
ପଞ୍ଚଯୋଜନ ଆୟତ୍ତ ସେ ପଦ୍ମପତ୍ରର
ଶୁଆଇଦେଇ ବୋଇଲେ ଆହୋ ମୁନିବର ।
କେଶବ ଏଠାରେ ଦେଖ ନିଦ୍ରା ଯାଇଛନ୍ତି
ତେଣୁ ତୋର ଭୟ କିଛି ନାହିଁ ମହାଯତି ।
ଯୋଗିବର ମାରକଣ୍ଡ ମୁନି ଏହା ଶୁଣି
ସେ ମହାଦେବୀଙ୍କି ଚାହିଁ ବୋଇଲେ ଭାମିନୀ ।
ଆପଣ କିଏ ରହିଛ ଏକା ଉଜାଗରେ
ନିଦ୍ରା ଯାଇଛନ୍ତି ପୁଣି ଏ ପୁରୁଷ ବରେ ।
ମୁନି ପଚାରନ୍ତେ ଦେବୀ କହିଲେ ହେ ଯତି
କେଶବ ଶେଯ ଉପରେ ଦେଖ ଶୋଇଛନ୍ତି ।
ବଇଷ୍ଣବୀ ଶକତି ମୁଁ ଅଟଇ ଏହାର
ମୋରନାମ କାଳରାତ୍ରି ଜାଣ ଦ୍ୱିଜବର ।
ସର୍ବମାୟାମୟୀ ମୁହିଁ ଜଗତ ମୋହିନୀ
ମହାମାୟା ନାମ ମୋର ପୁରାଣରେ ଭଣି ।
ସୁକର୍ମା ଦ୍ୱିଜ କହଇ ପିପଳ ଶୁଣଇ
ଏମନ୍ତ କହି ସେ ଦେବୀ ଅନ୍ତର୍ଦ୍ଧାନ ହୋଇ ।
ମାରକଣ୍ଡ ଚାହିଁଛନ୍ତି ବିଷ୍ଣୁ ନାଭିସ୍ଥଳେ
ସୁନା ପଦ୍ମଫୁଲ ଏକ ଫୁଟିଲା ସେ କାଳେ ।
ସେ ପଦ୍ମଫୁଲରୁ ବ୍ରହ୍ମା ଅଇଲେ ବାହାରି
ସେ ବ୍ରହ୍ମାର ଚାରିମୁଖ ଘୋଷେ ବେଦଚାରି ।

ଇନ୍ଦ୍ର ଆଦି ଦେବଗଣ ବ୍ରହ୍ମା ଦେହୁଁ ଜାତ
ଭିଆଇଲେ ଚରାଚର ସକଳ ଜଗତ ।
କହିଲି ଏ ଅର୍ବାଚୀନ ସ୍ୱରୂପ ଲକ୍ଷଣ
ପରାଚୀନ ନିରାଶ୍ରୟ ହୋଇଥାଏ ଜାଣ ।
ଯେବେଳେ ସେ ଦେହଧାରୀ ହୁଅଇ ପିପିଳ
ବ୍ରହ୍ମାଆଦି ସର୍ବଲୋକ ଅର୍ବାଚୀନ ମୂଳ ।
ଏକମାତ୍ର ଭୂତ ଆତ୍ମା ସେହି ପରାଚୀନ
ତାହାକୁ ଦେଖିପାରନ୍ତି ଏକା ଯୋଗିଜନ ।
ପରମବ୍ରହ୍ମ ସ୍ୱରୂପ ମୋକ୍ଷରୂପ ସେହି
ଅବ୍ୟକତ ହଂସ ଶୁଦ୍ଧ ଅକ୍ଷୟ ବୋଲାଇ ।
ସେ ପରମ ପଦସିଦ୍ଧି ଜାଣ ବିଦ୍ୟାଧର
ପରାଚୀନର ଏ ରୂପ ଲକ୍ଷଣ ଆବର ।
କହିଲି ସବୁ ବୁଝାଇ ଆଉ କି ପଚାର
ପିପଳ କହେ ଏ ଜ୍ଞାନ ହେଲା କି ପ୍ରକାର ।
ଅର୍ବାଚୀନ ପରାଚୀନ ଜ୍ଞାନମଧେ ସାର
ଦେଖିଲି ନାହିଁ ପରମ ନିଷ୍ଠା ଯେ ତୁମ୍ଭର ।
ଯାଗ ଯଜ୍ଞ ପୂଜା ତପ ତୀର୍ଥବ୍ରତ ନାହିଁ
ଏ ଅଖିଳ ଜ୍ଞାନ ତୁମ୍ଭେ ପାଇଲ ବା କାହିଁ ।
ଏହାର କାରଣ କୁହ ଆହୋ ଜ୍ଞାନୀବର
ସୁକର୍ମା କହିଲେ ଶୁଣ ତୁହୋ ଦ୍ୱିଜବର ।
ତପକଲେ କାୟ ଶୁଦ୍ଧି ହୁଅଇ କେବଳ
ତା ସବୁ ମୁଁ କରିନାହିଁ ଜାଣ ତୁ ପିପଳ ।
ନ ଜାଣଇ ତପ କାୟ ଶୋଷଣ ଯଜନ
ଆବର ତୀର୍ଥଗମନ ଯାଜନ ସାଧନ ।
ଧ୍ୟାନ ଧାରଣା ଏ ଆଦି କିଛିନାହିଁ ମୋର
ପିତୃ ମାତୃ ସେବା ଏକା କରେ ଦ୍ୱିଜବର ।
ପିତା ମାତା ପାଦକୁ ମୁଁ ସ୍ୱହସ୍ତେ ଧୁଅଇ
ତ୍ରିକାଳ ସନ୍ଧ୍ୟାରେ ତାଙ୍କୁ ସେବା କରୁଥାଇ ।
ଘଷି ମାଜିଦିଏ ସ୍ନାନ ଭୋଜନ କରାଇ
ଭକତିରେ ପିତାମାତା ପାଦୋଦକ ପିଇ ।
ତାଙ୍କ ସେବା ପୂଜା ମୁହିଁ କରଇ ପିପଳ
ପିତା ମାତା ଜୀଇଥିଲେ ମୋର ସବୁ ଫଳ ।
ପିତା ମାତା ପାଦସେବା କରେ ଶୁଦ୍ଧ ମନେ
କି ପ୍ରୟୋଜନ ମୋହର ତପ ତୀର୍ଥଦାନେ ।
ଆଉ ପୁଣ୍ୟ ସଞ୍ଚିବାରେ କି ଫଳ ମୋହର
ଯଜ୍ଞ ଅନୁଷ୍ଠାନ ପିତା ମାତାର ପୟର ।
ଦାନ ପୁଣ୍ୟ ତୀର୍ଥ ବ୍ରତ ସବୁ ମୋର ତହିଁ
ପିତା ମାତା ସେବାକଲେ ସବୁ ଫଳ ପାଇ ।
ପିତା ମାତା ସେବାରୁ ଯେ ପୁତ୍ର ପାଏ ଗତି
ସବୁ ଧର୍ମ ସବୁ କର୍ମ ସାର ଯେ ଜଗତି ।
ମହାପୁଣ୍ୟ ଶୁଭଲୋକ ତହୁଁ ପୁତ୍ର ପାଏ
ପୁତ୍ରର ସେ ସବୁ ତୀର୍ଥ ପିତାମାତା ପାୟେ ।
ତପ ଜପ ଧ୍ୟାନ ସିଦ୍ଧି ଧାରଣା ଯେତେକ
ସବୁ ମିଳଇ ପିଇଲେ ତାଙ୍କ ପାଦୋଦକ ।
ପିତା ମାତା ସେବା ଧର୍ମଠାରୁ ଧର୍ମ ନାହିଁ
ସାଧୁପୁତ୍ର ବୋଲି ଜାଣ ସେ ପୁତ୍ରକୁ କହି ।
ପିତୃ ମାତୃ ସେବା ଇହ ପରକାଳ ଗତି
ସର୍ବ ଧନ ସର୍ବ କର୍ମ ସକଳ ସମ୍ପତ୍ତି ।
ପିତାମାତାଙ୍କୁ ତୋଷିଲେ ସମସ୍ତେ ସନ୍ତୋଷ
ଦେବ ଦ୍ୱିଜ ପିତୃ ଋଷି ସକଳେ ତା ବଶ ।
ପିତା ମାତା ପାଦ ଧୋଇଦିଅଇ ସେ ନିତି
ଗଙ୍ଗା ସ୍ନାନ ଫଳ ତାକୁ ମିଳେ ଦିବାରାତି ।
ମିଷ୍ଟ ଅନ୍ନ ପାନ ଦେଇ ଯେ ତାଙ୍କୁ ତୋଷଇ
ଅଶ୍ୱମେଧ ଯଜ୍ଞ କଲା ଫଳ ସେ ଭୁଞ୍ଜଇ ।
ବସ୍ତ୍ର ଆଚ୍ଛାଦନ ସ୍ନାନ ଭୋଜନ କରାଇ
ପିତା ମାତାଙ୍କର ପାଦପୂଜା କରୁଥାଇ ।
ସର୍ବଜ୍ଞାନୀ ମହାଜ୍ଞାନୀ ବ୍ରହ୍ମଜ୍ଞାନୀ ସେହି
ସ୍ୱଇଚ୍ଛାରେ ଅଷ୍ଟନିଧି ତା ଗୃହରେ ରହି ।
ଧନ ଜନ ଗୋପଲକ୍ଷ୍ମୀ ସର୍ବଦା ତା ଘରେ
ସବୁ ସୁଖ ଅଛି ପିତା ମାତାର ପୟରେ ।
ପିତା ମାତା ସେବାକାରୀ ପୁତ୍ର ଜାଣ ଧନ୍ୟ
ପୁତ୍ରର ସକଳ ତୀର୍ଥ ପିତାର ଚରଣ ।
ପିତା ମାତା ସେବା ଧର୍ମ ପୁତ୍ରର କେବଳ
ଗୋପୀନାଥର ଅଚ୍ୟୁତ ପାଦୁକା ଯୁଗଳ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ
ବେନୋପାଖ୍ୟାନେ ପିତୃମାତୃ
ତୀର୍ଥ ମହାତ୍ମ୍ୟେ ନାମ
ଦ୍ୱିଷଷ୍ଠିତମୋଽଧ୍ୟାୟଃ ।



## ତ୍ରିଷଷ୍ଟି ଅଧ୍ୟାୟ

### ମାତୃ ପିତୃ ମାହାତ୍ମ୍ୟ

ସୁକର୍ମା କହିଲେ ଆହେ ଶୁଣ ଦ୍ୱିଜବର
ସ୍ନାନ କରୁଥିବା ପିତା ମାତା ସ୍ନାନ ନୀର ।
ବିନ୍ଦୁମାତ୍ରେ ପୁତ୍ରଅଙ୍ଗେ ପଡ଼ଇଟି ଯେବେ
ସର୍ବ ତୀର୍ଥ ସ୍ନାନକଲା ଫଳ ପାଇ ତେବେ ।
ଯେ ପୁତ୍ର ପତିତ କିବା ବିକଳାଙ୍ଗ ବୃଢ଼ା
ଅଶକତ କିବା ରୋଗେ ପାଉଥାଇ ପୀଡ଼ା ।
କିବା କୁଷ୍ଠରୋଗୀ ହୋଇ ପାଉଥାଇ ଦୁଃଖ
ପିତା ମାତା ସେବାକଲେ ନୋହିଟି ବିମୁଖ ।
ତାର ପୁଣ୍ୟଫଳ ଯେତେ କହୁଛି ତା ଶୁଣ
ସ୍ୱୟଂବିଷ୍ଣୁ ତାହାଠାରେ ସର୍ବଦା ପ୍ରସନ୍ନ ।
ଯୋଗିଜନଙ୍କ ଦୁର୍ଲଭ ଅଟଇ ଯେ ପୁର
ସେହି ବଇଷ୍ଣବ ପଦ ପାଇବ ସେ ନର ।
ଯେଉଁ ପାପ ଆତ୍ମାପୁତ୍ର ବିକଳାଙ୍ଗଦୀନ
ମହା ରୋଗଗ୍ରସ୍ତ କିବା ବୃଦ୍ଧ ଜରାଜୀର୍ଣ୍ଣ ।
ପିତା ମାତା ପାଦସେବା ଛାଡ଼ି ପୁଣ୍ୟକରେ
ପଡ଼ଇ ସେ କୃମିପୂର୍ଣ୍ଣ ଘୋର ନରକରେ ।
ବୃଦ୍ଧ ପିତା ମାତା ଡାକ ନଶୁଣେ ଯେ ପୁତ୍ର
ପାଖକୁ ନଯାଏ ମନେକରି ଅପବିତ୍ର ।
ତାହାର ପାପରକଥା କହିଲେ ନସରେ
ଘୁଷୁରିହୋଇ ସେ ବିଷ୍ଠାଖାଇ ଦିନ ହରେ ।
ସହସ୍ରେ ଜନମଯାଏ ହୁଅଇ କୁକୁର
ଯେ ପୁତ୍ରର ବୃଦ୍ଧ ପିତାମାତା ଥାଇଁ ଘର ।
ତାଙ୍କୁ ଭୋଜନ ନଦେଇ ଆପଣେ ଭୁଞ୍ଜଇ
ସହସ୍ର ଜନମଯାଏ ମଳମୂତ୍ର ଖାଇ ।
ତହୁଁ ସେ ପାପିଷ୍ଠ ଦୁଇଶତ ଜନ୍ମଯାଏ
କାଳସାପ ହୋଇ ଦିନକାଳ ଦୁଃଖପାଏ ।
ବୃଦ୍ଧ ପିତାମାତା କଥା ନମାନି ଯେ ଜନ
ଆପଣା ଇଚ୍ଛାରେ କାର୍ଯ୍ୟକରେ ସମାଧାନ ।
ଶତକୋଟି ଜନ୍ମଯାଏ ହୋଏ ଦୁଷ୍ଟଗ୍ରାହ
ବିଷ୍ଣୁ କହନ୍ତି ଶୁଣନ୍ତି ବେନ ନରରାୟ ।
ପିତାମାତାଙ୍କୁ ଯେ କଟୁକହି ଗାଳିଦିଏ
ଆଗ ବାଘହୋଇ ପଛେ ଭାଲୁ ଜନ୍ମପାଏ ।
ପିତାମାତାଙ୍କୁ ଯେ ଜନ ଅଗ୍ରାହ୍ୟ କରଇ
ସହସ୍ରେ ଯୁଗଯାଏ ସେ ନର୍କରେ ପଡ଼ଇ ।
ପିତାମାତା ପାଦସେବା ପୁତ୍ରର ଯେ ତୀର୍ଥ
ସେ ତୀର୍ଥ ଏକା ପୁତ୍ରର ଉଦ୍ଧାର ଯେ ପଥ ।
ତା ସମାନ ତୀର୍ଥ ଆଉ ପୃଥିବୀରେ ନାହିଁ
ଆହେ ମହାପ୍ରାଜ୍ଞ ଜାଣ ଏଣୁ ନିତି ମୁହିଁ ।
ପିତୃଦେବତା ଆବର ମାତାଙ୍କୁ ପୂଜଇ
ତାଙ୍କ ପରସାଦେ ଯୋଗଯୋଗୀ ଅଛିହୋଇ ।
ତିନିପୁରର ମୋର ବଶ ତାଙ୍କ ପରସାଦେ
ଜନମିଲା ଏ ଉତ୍ତମଜ୍ଞାନ ମୋର ହୃଦେ ।
ମହାତମା ବାସୁଦେବ ଯେ ଦେବାଧିରାୟ
ତାଙ୍କ ଅର୍ବାଚୀନ ପରାଚୀନ ଗତି ଦ୍ୱୟ ।
ଜାଣିଲଇଁ ପିତୃମାତୃ ସେବା ପରସାଦେ
ସବୁଜ୍ଞାନ ଜନମିଲା ଏ ମୋହର ହୃଦେ ।
ପିତାମାତା ପାଦ ସେବା ନକରେ ଯେ ଜନ
ପଢ଼ାକରିଥିଲେହେଁ ସେ ବୋଲାଇ ଅଜ୍ଞାନ ।
ସାଙ୍ଗୋପାଙ୍ଗୋ ଚାରିବେଦ ପଢ଼ାତାର ବୃଥା
ହୋଇଥିଲେହେଁ ସକଳ ଶାସ୍ତ୍ରରେ ସେ ଜ୍ଞାତା ।
ପିତୃ ମାତୃ ପୂଜାବିନା ବୃଥା ସବୁ ଜ୍ଞାନ
ତପ ଜପ ଯାଗ ଯଜ୍ଞ ଦେବପୂଜା ଦାନ ।
ପିତୃ ମାତୃ ସେବା ପୂଜା ପୁତ୍ରଙ୍କର ଧର୍ମ
ସେହି ତୀର୍ଥ ସେହି ମୋକ୍ଷ ସେହି ଶୁଭକର୍ମ ।
ଯାଗଯଜ୍ଞ ଦାନ ସେହି ଜାଣିବ ପୁତ୍ରର
ଏଥିରେ କିଛି ସନ୍ଦେହ ନାହିଁ ଦ୍ୱିଜବର ।
ଶ୍ରଦ୍ଧା ଭକତିରେ ପିତୃ ପୂଜାକଲା ଜନ
ଆବର ମାତା ଚରଣ ପୂଜେ ପ୍ରତିଦିନ ।
ଦାନ ଯଜ୍ଞ ତୀର୍ଥକଲା ଫଳ ସବୁ ପାଇ
ପୁଣ୍ୟବନ୍ତ ମହାଜ୍ଞାନୀ ସିଦ୍ଧ ସେ ବୋଲାଇ ।
ଏକଥାଗୋଟା ଶୁଣିଛି ସକଳ ପୁରାଣେ
ଏକଥା ଗୋଟାକୁ ପୁଣି ଭଲକରି ଜାଣେ ।
ପୁତ୍ର ନିତ୍ୟ ପିତୃଭକ୍ତ ହୋଇବ ବିଫଳ
ଯଦୁରାଜା ପୂର୍ବେ ପାଇ ପିତୃସେବା ଫଳ ।
ବହୁତ ସୁଖ ପାଇଲେ ଇହ ପରଲୋକେ
ପିତାରୋଷେ ରୁରୁପାପୀ ରହି ମହାଦୁଃଖେ ।
ଏହି ସଦଜ୍ଞାନ ବଳେ ପିତୃମାତୃ ସେବି
ପାଉଛି ସୁଖପାଇବି ମୁଁ ଉତ୍ତମପଦବୀ ।

ଜଗତଜନର ପିତା ହରିହର ପାଦେ
ଦୀନ ଗୋପୀନାଥ ମନ ରହୁ ଅପ୍ରମାଦେ ।
ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନ ପିତୃମାତୃ ତୀର୍ଥ ମହାତ୍ମ୍ୟେ ନାମ
ତ୍ରିଷଷ୍ଠିତମୋଽଧ୍ୟାୟଃ ।



## ଚତୁଃଷଷ୍ଠି ଅଧ୍ୟାୟ

## ନହୁଷ ଯଯାତି ଚରିତ

ପିପଳ କହିଲେ ପିତା ପରସାଦେ ପୁଣି
କିରୂପେ ସୁଖପାଇଲେ ଯଦୂ ନୃପମଣି ।
ସେକଥା ସବୁ ମୋଆଗେ କହିବା ବିସ୍ତାରି
ରୁରୁ ପାପଫଳ ଭୋଗକଲେ ଯେ କିପରି ।
ତାହା ମୋଆଗେ କହିବା କୁଣ୍ଡଳନନ୍ଦନ
ସୁକର୍ମା କହିଲେ ଶୁଣ ହୋଇ ସାବଧାନ ।
ପୁଣ୍ୟତମା ନହୁଷ ଯେ ଯଯାତି ଆବର
କହିବା ତାଙ୍କ ଚରିତ ସର୍ବ ପାପହର ।
ମେଦିନୀ ପତି ନହୁଷ ଚନ୍ଦ୍ର ବଂଶୀରାୟ
ତୁଳନା ନାହିଁ ତାହାର ଦାନ ଧର୍ମ ପ୍ରାୟ ।
ଶତ ଅଶ୍ୱମେଧ ଯଜ୍ଞକଲା ସେ ନୃପତି
ବହୁତବାର ବହୁତ ଯଜ୍ଞକରି କ୍ଷିତି ।
ଶତ ବାଜପେୟ ଯଜ୍ଞ କରିଛି ଆବର
ନିଜ ପୁଣ୍ୟକର୍ମବଳେ ସେହି ନୃପବର ।
ସ୍ୱର୍ଗର ଇନ୍ଦ୍ର ହୋଇଲା ପୁଣି ଦିନାକେତେ
ତା ପୁତ୍ର ଯଯାତିରାଜା ହେଲା ସେ ଜଗତେ ।
ଧର୍ମବନ୍ତ ବଳବନ୍ତ ବୀର୍ଯ୍ୟବନ୍ତ ଅତି
ଗୁଣବନ୍ତ ହୋଇବାରୁ ସେହି ମହାମତି ।
ନହୁଷଅନ୍ତେ ହୋଇଲା ସେହି ମହାରାୟ
ଯଯାତି ନାମରେ ଶତ୍ରୁ ଶୁଣିକଲେ ଭୟ ।
ପ୍ରଜାଙ୍କର ଧର୍ମକର୍ମ ସ୍ୱଚକ୍ଷେ ଦେଖଇ
ସତ୍ୟଧର୍ମେ ରହି ଜନେ ପରଜା ପାଳଇ ।
କଲା ପୁଣି ଯଜ୍ଞତୀର୍ଥ ବ୍ରତ ଦାନ ପୁଣ୍ୟ
ଅଶୀସହସ୍ର ବରଷ ହେଲା ସେ ରାଜନ ।
ମହାତମା ଯଯାତିର ହେଲା ପୁତ୍ର ଚାରି
ବଳବୀର୍ଯ୍ୟ ବିକ୍ରମରେ ଏକୁ ଏକ ସରି ।
ବଡ଼ପୁଅ ନାମ ରୁରୁ ପୁରୁ ତାହା ତଳି
ତା ତଳିଭାଇର ନାମ କୁରୁ ମହାବଳୀ ।
ସବା ସାନଭାଇ ନାମ ଯଦୁ ଯେ ଅଁଟଇ
ତେଜ ପଉରୁଷେ ପିତା ତୁଲ୍ୟ ଚାରିଭାଇ ।
ଯଯାତି ଏରୂପେ ଧର୍ମେଥାଇ ରାଜ୍ୟକରେ
ତାର ଯଶଖ୍ୟାତି ବାନାଉଡ଼େ ତିନିପୁରେ ।
ଶ୍ରୀବିଷ୍ଣୁ ବୋଇଲେ ଶୁଣ ଦିନକର କଥା
ବ୍ରହ୍ମା ନନ୍ଦନ ନାରଦମୁନି ମହାଜ୍ଞାତା ।
ଦେଖା କରିବାକୁ ଗଲେ ପୁରନ୍ଦର ସଙ୍ଗେ
ବୀଣାଧରି ହରିନାମ ଗାଇ ନାନାରଙ୍ଗେ ।
ଇନ୍ଦ୍ରଲୋକେ ପହୁଞ୍ଚିଲେ ସେହି ମହାମୁନି
ମୁନିବର ନାରଦଙ୍କୁ ଦେଖି ସସ୍ର ଯୋନି ।
ମହାଜ୍ଞାନୀ ଅଗ୍ନିତୁଲ୍ୟ ତେଜୋବନ୍ତ ଜାଣି
ପବିତ୍ର ଆସନେ ତାଙ୍କୁ ବସାଇଲେ ଆଣି ।
ଭକତିରେ ପ୍ରଣମିଲେ ମୁନିର ପୟରେ
ମଧୁପର୍କ ଆଦିଦେଇ ପୂଜିଲେ ଆଦରେ ।
ପଚାରିଲେ କି ନିମନ୍ତେ ସମାଗତ ମୁନି
କି ପ୍ରିୟକାର୍ଯ୍ୟ ତୁମ୍ଭର କରିବିହୋ ଜ୍ଞାନୀ ।
ନାରଦ ବୋଇଲେ ଶୁଣ ତୁହୋ ପୁରନ୍ଦର
ସବୁ ପାଇଲିଣି ଦେଖି ଭକତି ତୋହର ।
ତୋର ଏସେବାରେ ଇନ୍ଦ୍ର ବୋଲି ମୁଁ ପ୍ରସନ୍ନ
ଇଦଂ ପ୍ରତିବାକ୍ୟ ଏବେ ଶୁଣ ମଘବାନ ।
ଭୂମିରୁ ଅଇଲି ମୁହିଁ ଦେଖିବାକୁ ତୋତେ
ତାହାର କାରଣ ଏହି ଶୁଣ ଏକ ଚିତ୍ତେ ।
ଭୂମଣ୍ଡଳେ ଦେଖିଲି ମୁଁ ଏକଇ ନୃପତି
ନହୁଷ ରାଜାର ପୁତ୍ର ତା ନାମ ଯଯାତି ।
ତାକୁ ଦେଖି ମନମଧ୍ୟେ କଲଇଁ ବିଚାର
ଏହାର ତୁଲ୍ୟ ହେବକି ଦେବ ପୁରନ୍ଦର ।
ଦେଖିଆସେ ବାରେ ମୁହିଁ ଇନ୍ଦ୍ରଲୋକେ ଯାଇ
ଏମନ୍ତ ଭାବି ଅଇଲି ଜାଣ ସୁରସାଇଁ ।
ଇନ୍ଦ୍ରବୋଇଲେ ଭୂଲୋକେ କେବଣ ରାଜନ
ସତ୍ୟଧର୍ମେ ରହିକରେ ପ୍ରଜାଙ୍କୁ ପାଳନ ।
ବେଦ ପଢ଼ିଛି ଆବର ଜାଣେ ସବୁକର୍ମ
ଜ୍ଞାନୀ ପୁଣି ଗୁଣବନ୍ତ ନ ଛାଡ଼ଇ ଧର୍ମ ।
ବ୍ରହ୍ମଣ୍ୟ ଆବର ବିପ୍ରପ୍ରିୟ ଯାଗ କର୍ତ୍ତା
ଶ୍ରଦ୍ଧା ଭକତିରେ ନିତ୍ୟ କରେ ବେଦଚିନ୍ତା ।

ଦାନ ଦିଅଇ ଆବର ଭକତିରେ ନିତି
ଏମନ୍ତ ରାଜାକେ ଅଛି କହ ତୁଗୋ ଯତି ।
ନାରଦ ବୋଇଲେ ଶୁଣ ସହସ୍ର ଲୋଚନ
ବଳବନ୍ତ ଯଯାତି ଯେ ନହୁଷ ନନ୍ଦନ ।
ଯାହା କହିଲ ଏସବୁ ଗୁଣ ତାର ତହିଁ
ସତ୍ୟବଳେ ସର୍ବଲୋକ ପ୍ରତିଷ୍ଠିତ ସେହି ।
ବିରାଜୁଅଛ ଯେସନ ତୁମ୍ଭେ ସ୍ୱର୍ଗପୁରେ
ତେସନ ଯଯାତି ଜାଣ ଭୂଲୋକ ଉପରେ ।
ଏତିକି ମାତ୍ର ପ୍ରଭେଦଅଛି ପୁରନ୍ଦର
ତୁମ୍ଭେ ଯେ ଉପରେ ସେହି ତଳେ ନୃପବର ।
ତୁମ୍ଭେ ଶତ ଅଶ୍ୱମେଧ କରି ଶତକ୍ରତୁ
ସେ କରିଛି ଶତଗୋଟା ଅଶ୍ୱମେଧ କ୍ରତୁ ।
ସତ ବାଜପେୟ ଯଜ୍ଞ କରିଛି ଆବର
ଯେ ସକଳ ଦାନଦିଆ ହୋଇଛି ତୁମ୍ଭର ।
ଭକତିରେ କରିଅଛି ସେ ସକଳ ଦାନ
ସହସ୍ରଲକ୍ଷ ଯେ ଶତକୋଟି ଗୋରୁଦାନ ।
କୋଟିଏ ହୋମ ଆହୁତି ଦେଇଛି ଅନଳେ
ଆହୁରି ଲକ୍ଷେ ଆହୁତି ଦେଲା ମନ୍ତ୍ରବଳେ ।
ଭୂମିଦାନ ଆଦି ଦାନ ଦେଇଛି ବହୁତ
ବିପ୍ର ଶାସନ ବସାଇ ଅଛି ନୃପନାଥ ।
ସବୁ ଧର୍ମକୁ ପାଳଇ ସେ ରାଜା ଯଯାତି
ଅଶୀ ସହସ୍ର ବରଷ ତାହାର ରାଜୁତି ।
ତୁମ୍ଭ ତୁଲ୍ୟ ସତ୍ୟଧର୍ମେ ଥାଏ ତାର ମନ
ଦେଖିଲିଯେ ତୁମ୍ଭେ ଦୁହେଁ ହୋଇବ ସମାନ ।
ସୁକର୍ମା କହିଲେ ସେହି ଦେବ ମଘବାନ
ତୁମ୍ଭ ସମାନ ଅଟଇ ଯଯାତି ରାଜନ ।
ମୁନିବର ନାରଦଙ୍କ ମୁଖୁଁ ଏହା ଶୁଣି
ବୁଦ୍ଧିମନ୍ତ ଇନ୍ଦ୍ର ପ୍ରୀତହେଲେ ମନେ ଗୁଣି ।
ବିଚାରିଲେ ତାର ପିତା ନହୁଷ ରାଜନ
ପୂର୍ବେ ଶତ ଅଶ୍ୱମେଧ କରି ଦେଇ ଦାନ ।
ସେ ପୁଣ୍ୟବଳେ ସେ ଇନ୍ଦ୍ରପଦ ନେଲା ମୋର
ଶଚୀଦେବୀ ବୁଦ୍ଧିବଳେ ପାଇକି ସେ ପୁର ।
ଇନ୍ଦ୍ର ପଦଚ୍ୟୁତ ପୁଣି ହୋଇଲା ତାହାର
ନାରଦ କହିଲେ ଯାହା ସବୁ ସେ ପ୍ରକାର ।
ଏ ପୁଣି ନିଅଇ କିନା ଇନ୍ଦ୍ରପଦ ଆସି
ଯେଣୁ ମୋ ସମାନ ତାକୁ କଲେ ଦେବରଷି ।

ଆଗରୁ ଏଥି ଉପାୟ କରିବା ନା ଆମ୍ଭେ
ନକଲେ ରହି ନପାରୁଁ ସ୍ୱର୍ଗପୁରେ ଦମ୍ଭେ ।
ଏଥିରେ କିଛି ସନ୍ଦେହ କରିବାର ନୋହେ
ଯଯାତିକି ଅଣାଇବା ଯେ କେହି ଉପାୟେ ।
ତାକୁ ସ୍ୱର୍ଗେ ନଆଣିଲେ ମଙ୍ଗଳ ତ ନାହିଁ
ଏହିରୂପେ ନାନାଚିନ୍ତା କରି ଶଚୀସାଇଁ ।
ମାତଳିକି କହିଲେ ତୁ ଦୂତପଣେ ଯିବୁ
ଆକାଶେ ଥାଇଁ ଯଯାତି ରାଜାଙ୍କୁ କହିବୁ ।
ଯେମନ୍ତେ ଏହି ବିମାନେ ଆଣିବୁ ବସାଇ
ସାରଥି ମାତଳି ଗଲା ବିମାନ ଆରୋହି ।
ଯଯାତି ଯହିଁ ଅଛଇ ମିଳିଲା ସେ ସ୍ଥାନେ
ବିମାନ ରଖିଲା ଆପେ ରହିଲା ଯେ ଶୂନ୍ୟେ ।
ଉଚ୍ଚେ ଡାକି ବୋଇଲା ହେ ଯଯାତି ନୃପତି
ମୁହିଁ ଅଟଇ ମାତଳି ଇନ୍ଦ୍ରର ସାରଥି ।
ମୁଁ ଯାହା କହୁଛି ଶୁଣ ମୋର କଥାଯାକ
ପଠାଇଛନ୍ତି ବିମାନ ଦେଇ ସହସ୍ରାକ୍ଷ ।
ଆବର ସେ ଯାହା ଯାହା କହିଛନ୍ତି ପୁଣି
ତାହାସବୁ କହୁଅଛି ଶୁଣ ନୃପମଣି ।
ସଭାମଧ୍ୟେ ବସି ଇନ୍ଦ୍ର ଯେହ୍ନେ ଶୋଭାପାଇ
ତେସନ ଶୋଭା ଦିଶିବ ତୁମ୍ଭେ ସ୍ୱର୍ଗେ ଯାଇଁ ।
ଗୁଣଗ୍ରାମେ ତୁମ୍ଭେ ଯେଣୁ ବାସବ ସମାନ
ତେଣୁ ତୁମ୍ଭଙ୍କୁ ଡକାଇ ଅଛି ମଘବାନ ।
ଇନ୍ଦ୍ରଲୋକେ ଆସ ବେଗେ ବିଳମ୍ବ ନକର
ବାସବ ବାକ୍ୟ ପାଳିବା ଉଚିତ ତୁମ୍ଭର ।
ଶୁଣ ଯଯାତି କହୁଛି ଦୃଷ୍ଟାନ୍ତର ଦେଇ
ମହାମତି ଅଟଇ ଯେ ଇଳା ନରସାଇଁ ।
ଆପଣାର ପୁତ୍ର ହସ୍ତେ ଦେଇ ରାଜ୍ୟଭାର
ସେ ପୁତ୍ର ଅନ୍ତ୍ୟେଷ୍ଟିକ୍ରିୟା କଲା ଯେ ତାହାର ।
ସ୍ୱର୍ଗେ ବାସକରି ରହିଅଛି ଏହିକ୍ଷଣେ
ବୀର୍ଯ୍ୟବନ୍ତ ପୁରରବା ଅଇଲେ ତେସନେ ।
ମହାମନା ବିପ୍ରଚିତ୍ତି ଦାନବ ଆବର
ଶିବ ନରପତି ପୁଣି ମନୁ ନୃପବର ।
ଇକ୍ଷ୍ୱାକୁ ରାଜାଙ୍କୁ ଆଦି କରି ରାଜା ଯେତେ
ସ୍ୱର୍ଗପୁର ସୁଖଭୋଗ କରନ୍ତି ସମସ୍ତେ ।
ମେଧାବୀ ସଗର ରାଜା ଅଛଇ ଆବର
ତୁମ୍ଭର ପିତା ନହୁଷ ନାମେ ନୃପବର ।

କୃତବୀର୍ଯ୍ୟ ରାଜା ପୁଣି କୃତଜ୍ଞ ନୃପତି
ଶାନ୍ତନୁ ରାଜା ଭରତ ରାଜା ମହାମତି ।
ଯୁବନାଶ୍ୱ ନରବର କାର୍ତ୍ତବୀର୍ଯ୍ୟ ରାଜା
ସତ୍ୟଧର୍ମେ ଯାଗ ଦାନ କରି ଦେବପୂଜା ।
ପୁତ୍ରହସ୍ତେ ରାଜ୍ୟଦେଇ ଛାଡ଼ି ଭୋଗଦେହ
ସ୍ୱର୍ଗେ ରହି ସୁଖଭୋଗ କରନ୍ତି ହେ ରାୟ ।
ଏହାଙ୍କ ଭିନ୍ନ ଆହୁରି ବହୁତ ନୃପତି
ଯଜ୍ଞ କର୍ମ ଧର୍ମବଳେ ଚାଡ଼ି ଏହି କ୍ଷିତି ।
ସ୍ୱର୍ଗପୁରେ ବନ୍ଧୁସଙ୍ଗେ କରନ୍ତି ବିହାର
ସବୁଧର୍ମ ଜାଣ ତୁମ୍ଭେ ବୁଦ୍ଧିରେ କୁବେର ।
ସ୍ୱର୍ଗେ ଆସି ଇନ୍ଦ୍ରସଙ୍ଗେ ବିହର ଆନନ୍ଦେ
ଯଯାତି କହିଲେ ଭାଳି ଆପଣାର ହୃଦେ ।
ଏମନ୍ତ କି ଧର୍ମକର୍ମ ପୁଣ୍ୟଅଛି ମୋର
ତୁମ୍ଭେ ଯେ ପୁଣି ସାରଥି ଅଟ ବାସବର ।
ଯିବାକୁ ମୋତେ ପ୍ରାର୍ଥନା କରୁଛ ମାତଳି
ନେବାକୁ କହ ଅଛନ୍ତି ଇନ୍ଦ୍ର କି କି ଭାଳି ।
ମାତଳି ବୋଇଲେ ନୃପ ଶୁଣଦେଇ ମନ
ଅଶୀସହସ୍ର ବରଷ କଲ ଦାନ ପୁଣ୍ୟ ।
ଯାଗ ଯଜ୍ଞ ଧର୍ମ କର୍ମ କରିଛ ବହୁତ
ସେ ଫଳେ ସ୍ୱର୍ଗଯିବାକୁ ଡାକେ ପୁରୁହୂତ ।
ସୁର ରାଜାଙ୍କ ସଙ୍ଗତେ ମଇତ୍ର ବସିବ
ଭୋଗ ଉପଭୋଗ ତୁମ୍ଭ ଇଚ୍ଛାରେ କରିବ ।
ଏଣୁ ସୁରାଳୟେ ଚାଲଯିବା ମହାମତି
ପାଞ୍ଚ ଭଉତିକ ଦେହ ଛାଡ଼ନ୍ତି ତଡ଼ତି ।
ସ୍ୱର୍ଗପୁରେ ଯିବାଚାଲ ଏବେ ସ୍ୱର୍ଗପୁରୀ
ଆପଣଙ୍କୁ ଡାକୁଛନ୍ତି ସ୍ୱୟଂ ବଜ୍ରଧାରୀ ।
ଯେରୂପେ କରିଛ ଦାନ ଯଜ୍ଞ ତପ ଏଥେ
ତାରଫଳେ ସ୍ୱର୍ଗ ସୁଖ ପାଇବ ନିଶ୍ଚିନ୍ତେ ।
ଯଯାତି କହିଲେ ଆହେ ସ୍ୱର୍ଗର ମାତଳି
ଅତି ଯତନରେ ଯେଉଁ ଦେହ ପ୍ରତିପାଳି ।
ସେ ଦେହ ଛାଡ଼ି କେମନ୍ତେ ଯିବ କହ ଦେହୀ
ପାପକରି ସାଇତିଛି ଏ ଦେହକୁ କେହି ।
କେହି ଅବା ପୁଣ୍ୟକରି ରଖିଛି ଯତନେ
ଘରଛାଡ଼ି ପରଘରେ ପଶିବ କେସନେ ।
ଯାହାକୁ ଅରଜି ପୁଣି ରଖିଅଛି ସଞ୍ଚି
ତାକୁ ନାଶି ପୁଣି ଅର୍ଜି ଯିବାକୁ କେ ଇଛି ।

ନିଶ୍ଚିତତେଜି ଯେଲୋଭେ ଅନିଶ୍ଚିତଲୋଡ଼େ
ଦୁହିଁଙ୍କି ନପାଇ ସେହି ସଙ୍କଟରେ ପଡ଼େ ।
ମାତଳି ବୋଇଲା ଶୁଣ ତୁହୋ ନୃପରାଣ
ମର୍ତ୍ତ୍ୟରେ ଜନ୍ମିଲେ ଜାଣ ନିଶ୍ଚୟ ମରଣ ।
ପ୍ରାଣୀ ଯହିଁ ଏ ଦେହକୁ କରିଛି ଅର୍ଜନ
ତହିଁ ପୁଣି ଏ ଦେହକୁ କରିଣ ବର୍ଜନ ।
ଦିବ୍ୟ ଦେହଧାରି ତହିଁ ସ୍ୱର୍ଗପୁରେ ଯାଇ
ପାପକରି ଥିବା ଦେହୀ ତଳକୁ ଖସଇ ।
ପାପର ଫଳେ ବହୁତ ନରକ ଭୋଗଇ
ପୁଣ୍ୟକାରୀ ଜନ ସୁଖେ ଉପରେ ବସଇ ।
ଯଯାତି ବୋଇଲେ ପାପପୁଣ୍ୟ କରି ନରେ
ଯାତନା ଭୋଗନ୍ତି ଜାଣ ବିଧି ଅନୁସାରେ ।
ପାଞ୍ଚ ଭଉତିକ ଦେହ ଗୋଟା ଛାଡ଼ିକରି
ପାପୀ ଦୁଃଖପାଏ ସୁଖପାଏ ପୁଣ୍ୟକାରୀ ।
ଧର୍ମକଥା ଭଲରୂପେ ଜାଣିଛ ମାତଳି
ଭାଗ୍ୟବଳେ ଭେଟ ସିନା ଲୋକ ତୁମ୍ଭଭଳି ।
ଦେହ ଛାଡ଼ି ଯିବା ଲୋକ ନଛାଡ଼ିବା ଲୋକ
ଏ ଦୁଇ ମଧ୍ୟେ ଅଛଇ କହକି ଫରକ ।
ପାପ ପୁଣ୍ୟବଳେ ହୋଏ ଏଦେହ ପତନ
ପ୍ରତ୍ୟକ୍ଷେ ଦେଖୁଛୁଁ ଆମ୍ଭେ ମର୍ତ୍ତ୍ୟପୁର ଜନ ।
ପାପୀଦେହ ଛାଡ଼େ ପୁଣ୍ୟବନ୍ତ ଦେଇଛାଡ଼େ
କେହି ଆଗ କେହିପଛେ ମୃତ୍ୟୁମୁଖେ ପଡ଼େ ।
ବେଶିକିଛି ଦେଖାଯାଉନାହିଁ ପାପ ପୁଣ୍ୟେ
ଏ ଦେହ ଯେ ସତ୍ୟଧର୍ମ କରଇ ଯତନେ ।
ତାହା କିମ୍ପା ଛାଡ଼ିଯିବ କହହେ ସାରଥି
ଆତ୍ମା ଦେହ ଦୁହିଙ୍କର ଅଭେଦ ପୀରତି ।
ଦୁହେଁ ଦୁହିଁଙ୍କ ମଇତ୍ର ମିଳିବାରୁ ମନ
ଜଣକୁ ଛାଡ଼ି କେମନ୍ତେ ଯିବ ଆନ ଜଣ ।
ମାତଳି କହିଲେ ଶୁଣ ତୁହୋ ନୃପମଣି
ତୁମ୍ଭର କଥାକୁ ମୁହିଁ ସତପ୍ରାୟ ମଣି ।
କହୁଅଛି ଏବେ ଶୁଣ ବିଧାନ ତାହାର
ଏଦେହ ଦିନେ ଆତ୍ମାକୁ କରି ଯିବପର ।
ଦେହ ସହିତ ଆତ୍ମାର ସମ୍ବନ୍ଧ ଯେ ନାହିଁ
ଏ ଦେହଗୋଟା ସନ୍ଧିରେ ଜଡ଼ିତ ଅଛଇ ।
ବ୍ୟାଧିଦୋଷେଜରାଦୋଷେ ଭାଙ୍ଗି ଯାଇଦିନେ
ତାଦେଖି ଆତ୍ମା ବିଚାର କରେ ମନେ ମନେ ।

ଭଙ୍ଗାଘର ଛାଡ଼ି ପୁଣି ଭଲଘର ଖୋଜେ
ଜୀବ ଆକୁଳ ବ୍ୟାକୁଳହୋଇ ପୁଣି ତେଜେ ।
ସତ୍ୟ ଧର୍ମ ପୁଣ୍ୟ ଦାନ ନିୟମ ସଂଯମ
ଅଶ୍ୱମେଧ ଆଦି ଯଜ୍ଞ ତୀର୍ଥବ୍ରତ କର୍ମ ।
କରିବା ଯୋଗୁଁ ଦେହକୁ ଜରା ନ ଗ୍ରାସଇ
ପାପୀର ଦେହକୁ ଜରା ଗ୍ରାସକରେ ଯାଇ ।
ଯଯାତି କହିଲେ ଜରା କିମ୍ପାଇଁ ଉପୁଜେ
କାହିଁକି ବା ସେ ଦେହକୁ ପୀଡ଼ାଦେଇଗଞ୍ଜେ ।
ମୋଆଗେ ଏସବୁ କଥା କହନ୍ତୁ ବିସ୍ତାରି
ମାତଳି କହିଲେ ଶୁଣ ତୁହୋ ଦଣ୍ଡଧାରୀ ।
ଏଦେହ ଭିତରୁ ଜାଣ ଜରା ଉପୁଜଇ
ଯହିଁ ପାଇଁ ଉପୁଜଇ ଶୁଣ ମନଦେଇ ।
ପାଞ୍ଚ ମହା ଭଉତିକ ଏଦେହ ରାଜନ
ପାଞ୍ଚଗୋଟି ବିଷୟର ଅଟଇ ସଦନ ।
ଯେତେବେଳେ ଦେହ ଛାଡ଼ି ଜୀବ ଯାଏ ଚାଲି
ଶମଶାନେ ଘେନିଯାନ୍ତି ଭାଇ ବନ୍ଧୁ ମିଳି ।
କାଠସଙ୍ଗେ ଜାଳିଦ୍ୟନ୍ତି ଅନଳ ଲଗାଇ
ସରସ ହେଲେ ହେଁ ଏହି ଦେହ ନରସାଇଁ ।
ଅନଳରେ ଜଳିଯାଇ ହୁଏ ପ୍ରଜ୍ୱଳିତ
ତହିଁର ଭିତରୁ ଧୂଆଁ ଉଠଇ ବହୁତ ।
ମେଘ ସବୁ ସେ ଧୂଆଁରୁ ଜନମ ହୁଅନ୍ତି
ସେ ମେଘଭିତରୁ ଜଳ ହୁଏ ଉତପତ୍ତି ।
ସେ ଜଳଭିତରୁ ପୃଥ୍ୱୀ ଜନମ ହୁଅଇ
ସାଧୁନାରୀ ଦେହୁଁ ରଜ ଯେମନ୍ତେ କ୍ଷରଇ ।
ତେସନ ଏ ପୃଥ୍ୱୀଦେହୁଁ ବାହାରଇ ଜଳ
ସେ ଭୂମିଜ ଜଳ ଅଟେ ଗନ୍ଧରଯେ ମୂଳ ।
ଗନ୍ଧରୁ ଉପୁଜେ ରସ ରସରୁ ଯେ ଅନ୍ନ
ଅନ୍ନରୁ ଶୁକ୍ର ଶୁକ୍ରରୁ ଦେହ ଉତପନ୍ନ ।
ବହୁଳ ପୃଥିବୀ ଅଂଶେ ଏ ଦେହ ନିର୍ମିତ
ପୃଥିବୀ ଗନ୍ଧ ସୃଜନ କରଇ ଯେମନ୍ତ ।
ଜଳସଙ୍ଗେ ମିଶିଯାଇ ଏଦେହ ତେସନ
କରଇ ରସମାନଙ୍କ ସୃଷ୍ଟିରେ ବିଧାନ ।
ରସର ଆଧାର ଜାଣ ଦେହ ମହୀପତି
ତହୁଁ ଗନ୍ଧ ଗନ୍ଧୁହୁଏ ରସ ଉତପତ୍ତି ।
ରସରୁ ଯେ ମହାବହ୍ନି ଜନମ ହୁଅଇ
ତହିଁର ଯେ ଦୃଷ୍ଟାନ୍ତର ଶୁଣ ମନଦେଇ ।
କାଷ୍ଠ ଅଗ୍ନି ଜନମଇ କାଷ୍ଠକୁ ପୋଡ଼ଇ
ତେସନ ଦେହରୁ ସରୁ ଅଗ୍ନି ଜାତହୋଇ ।
ନିତି ସେ ଦେହେ ବିହରୀ ଶୋଷଇ ଦେହକୁ
ରସ ବେଶିହୋଇ ଶାନ୍ତକରେ ଜୀବନକୁ ।
ଅଗ୍ନିଦେହ ଶୋଷପୁଣି କ୍ଷୁଧାରୂପେ ରହେ
ଅନ୍ନପାନେ ଇଚ୍ଛା ତାର ବଳେଥାଇ ଦେହେ ।
ଖାଇପିଇ ସାରି ସେହି ଅଗ୍ନି ତହୁଁ ଯାଇ
ଶୋଣିତ ବୀର୍ଯ୍ୟକୁ ଆଶାକରି ବିହରଇ ।
ତହିଁରୁ ଯେ ଯକ୍ଷ୍ମାରୋଗ ହୁଏ ଉତପନ
ସେହି ରୋଗ କରେ ସବୁ ଦେହକୁ ଶୋଷଣ ।
ଦେହେ ରସ ବେଶିହେଲେ ଅଗ୍ନିହୁଏ ଶାନ୍ତି
ରସ ପୀଡ଼ାପାଇ ଜ୍ୱର ରୋଗ ଉତପତ୍ତି ।
ଗ୍ରୀବା ପିଠି କଟୀ ଗୁହ୍ୟ ସନ୍ଧିକି ନିରୋଧି
ଏଦେହରେ ଅନଳର ଜାଣ ବେଶି ବିଧି ।
ଦେହମଧ୍ୟେ ରହି ଅଗ୍ନି ପ୍ରବୃତ୍ତି ବଢ଼ାଇ
ବେଶି ଅଗ୍ନିହେଲେ ସବୁ ଦେହକୁ ଶୋଷଇ ।
ଆବଦ୍ଧ ରସ ଯେତେକ ସେ ଦେହର ବଳ
ବୀର୍ଯ୍ୟ ବେଶିହେଲେ ସେହି ଦେହର ଅନଳ ।
ବଳେ କର୍ମକୁ ଚଳାଇ ଦିଅଇ ରାଜନ
ତହୁଁରୁ ପୁଣି ହୁଅଇ କାମ ଉତପନ୍ନ ।
ଏହି କାମ ଏ ଦେହକୁ ହୁଅଇ ଯେ ଶଲ
ଏହାକୁ କାମାଗ୍ନିବୋଲି ବୋଲନ୍ତି ସକଳ ।
ଏହି କାମ ଏ ଦେହର ବଳ ନାଶକାରୀ
ମଇଥୁନେ ମୂର୍ଚ୍ଛାଯାଇ କରଷଣ କରି ।
କାମ ପୀଡ଼ା ପାଇ ପ୍ରାଣୀ ନାରୀ ଆଶ୍ରାଧରେ
ତେଜହାନି ହେବାରୁସେ ରହେ ନିସ୍ତେଜରେ ।
ବଳ ହାନି ହେବାରୁ ସେ ଶରୀର ଦୁର୍ବଳ
ଅଧିକେ ଆକ୍ରମ ତାକୁ କରେ କାମାନଳ ।
ତହୁଁ ଯେ ବେଶି ଦୁର୍ବଳ ଏ ଦେହ ହୁଅଇ
ତହୁଁ କାମାନଳ ଶୁକ୍ର ରକ୍ତ ଆଶ୍ରାନେଇ ।
ଦେହେ ବିହରନ୍ତେ ଶୁକ୍ର ରକ୍ତପାଏ କ୍ଷୟ
ରକ୍ତ ରେତ କ୍ଷୟେ ଶୂନ୍ୟ ହୁଅଇ ଯେ କାୟ ।
ତହୁଁ ଯେ ଦାରୁଣ କାର ପ୍ରଚଣ୍ଡ ପବନ
ଅତିବେଗେ ସେ ଦେହରେ ହୁଏ ଉତପନ୍ନ ।
ତହିଁରେ ପ୍ରାଣୀର ଦେହ ବିବର୍ଣ୍ଣ ଦିଶଇ
ନାନାଦୁଃଖ କଷ୍ଟପାଏ ସନ୍ତାପିତ ହୋଇ ।

ବୁଦ୍ଧି ଜ୍ଞାନ ହଜିଯାଏ ତହୁଁ ସେ ପ୍ରାଣୀର
ଦେଖିଥିବା ଶୁଣିଥିବା ନାରୀ ସମାଚାର ।
ସର୍ବଦା ମନରେ ଭାଳି ଭ୍ରମଇ ନିରତେ
ମନର ଚଞ୍ଚଳ ଯୋଗୁଁ ଅସନ୍ତୋଷ ଚିତ୍ତେ ।
ନାରୀ ଚିନ୍ତାରେ ସୁନ୍ଦର ଦେହ ଅସୁନ୍ଦର
କାମର ବ୍ୟାକୁଳେ ପ୍ରାଣୀ ଥାଏ ନିରନ୍ତର ।
ମାଂସ ଶୋଣିତ ତାହାର ତହୁଁ କ୍ଷୟ ଯାଇ
ଜଳଶୂନ୍ୟ ଯୋଗୁଁ କାମ ଅଗ୍ନି ଦେହେଥାଇ ।
ଫଳିତ ରୂପକୁ ବହେ ଏଥୁ ଅନନ୍ତରେ
କାମୀହେବା ଯୋଗୁଁ ବୁଢ଼ା ହୁଅଇ କ୍ରମରେ ।
ବୃଦ୍ଧ ଅବସ୍ଥାରେ ଧନ ଚିନ୍ତା କଲା ପ୍ରାୟେ .
ନାରୀ ଚିନ୍ତାରେ ସର୍ବଦା ନିସ୍ତେଜରେ ଥାଏ ।
ତହୁଁ କ୍ରମେ ପ୍ରାଣୀରଯେ ମୃତ୍ୟୁକାଳ ଆସେ
ଅଗ୍ନି ତହୁଁ ଜରା ରୂପଧରି ତହି ବସେ ।
ପୁଣି ସେ ଦାରୁଣଜ୍ୱର ରୂପେ କରେ ନାଶ
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ଅଶେଷ ।
ପୀଡ଼ାପାଇ ନାଶଯାଇ ଜାଣ ମହୀପତି
କହିଲି ଏସବୁକଥା ତୁମ୍ଭଙ୍କୁ ସମ୍ପ୍ରତି ।
ଆଉ ଯାହା କହିବାର ଥାଏ ତାହା କହ
ମାତଳି କହନ୍ତେ ତାକୁ କହେ ମହାରାୟ ।
ଦ୍ୱିଜ ଗୋପୀନାଥ ବୋଲେ ବୋଲହରିହରି
ହରି ଭଜିଲେ ସକଳ ଦୁସ୍ତରୁ ନିସ୍ତରି ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ
ନହୁଷ ଯଯାତି ଚରିତେ ନାମ
ଚତୁଃଷଷ୍ଠିତମୋଽଧ୍ୟାୟଃ ।



## ପଞ୍ଚଷଷ୍ଠି ଅଧ୍ୟାୟ

### ଶରୀର ଦୋଷ ନିର୍ଣ୍ଣୟ

ଯଯାତି କହିଲେ ପୁଣି ମାତଳି ଆଗରେ
ଏ ଦେହ ଆତ୍ମାକୁ ଘେନି ଧର୍ମ ରକ୍ଷାକରେ ।
ସ୍ୱର୍ଗକୁ ନଯାଏ କହ ଏଦେହ କାହିଁକି
ଏଥିର କାରଣ ମୋତେ କହନ୍ତୁ ସଂକ୍ଷେପି ।
ମାତଳି କହଇ ଶୁଣ ତାହାର କାରଣ
ଯାହା ପଚାରିଲ ମୋତେ ଆହେ ନରରାଣ ।
ପଞ୍ଚଭୂତଙ୍କର ସଙ୍ଗ ନାହିଁ ଆତ୍ମା ସଙ୍ଗେ
ଦେହେ ବିହରନ୍ତି ପଞ୍ଚଭୂତେ ନାନାରଙ୍ଗେ ।
ଆତ୍ମା ସହିତରେ ମେଳ ନାହିଁ ଏହାଙ୍କର
ଜରା ବ୍ୟାଧି ପୀଡ଼ା ପାଉଥାନ୍ତି ନିରନ୍ତର ।
ଶେଷେ ଯେଝାସ୍ଥାନେଯାନ୍ତି ଆହେ ମହାଜନ
ରସ ବେଶି ହେଲେ ଏହି ପୃଥିବୀ ଯେସନ ।
ରସେ ଓଦାହେବାଯୋଗୁଁ ହୁଅଇ କୋମଳ
ପିମ୍ପୁଡ଼ି ମୂଷା ଏ ଗାତ କରନ୍ତି ବହୁଳ ।
ଗର୍ଭଶୂନ୍ୟ ହୁଙ୍କା ସବୁ ତହୁଁ ଉପୁଜଇ
ଅତି ବଡ଼ ନାନା ଛିଦ୍ର ତହିଁରେ ଯେ ଥାଇ ।
ବିଞ୍ଚି ଗଣ୍ଡମାଳା ହୁଏ ଏଦେହେ ତେସନ
କୃମି ସବୁ ରନ୍ଧ୍ରକରିବାରୁ ହେ ରାଜନ ।
ଗୁଳ୍ମ ଆଦି ରୋଗ ଜନ୍ମି ନାନା ପୀଡ଼ାଦେଇ
ଏ ସବୁ ଦୋଷ ରାଜନ ଏଦେହରେ ଥାଇ ।
କିରୂପେ ପ୍ରାଣ ସଙ୍ଗତେ ଯିବ ସ୍ୱର୍ଗପୁରେ
ଯେଣୁ ପୃଥିବୀର ଅଂଶ ଅଛି ଏ ଦେହରେ ।
ପୃଥ୍ୱୀ ପ୍ରାୟ ରହିଥିବ ସ୍ୱର୍ଗକୁ ନ ଯିବ
ବହୁତ ଦୋଷ ଏ ଦେହେ ଯେସନେ ପାର୍ଥିବ ।
ଦେହ ଦୋଷ ତୋ ଆଗେର କହିଲି ବୁଝାଇ
ଦୀନ ଗୋପୀନାଥ ବୋଲେ ହରିବୋଲ ଭାଇ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ମାତୃପିତୃ
ତୀର୍ଥ ମହାତ୍ମ୍ୟେ ଦେହଦୋଷ ନିର୍ଣ୍ଣୟୋ
ନାମ ପଞ୍ଚଷଷ୍ଠିତମୋଽଧ୍ୟାୟଃ ।



## ଷଟ୍‌ଷଷ୍ଠି ଅଧ୍ୟାୟ

### ଦେହର ଉତ୍ପତ୍ତି ନିର୍ଣ୍ଣୟ

ଯଯାତି କହିଲେ ପୁଣି ମାତଳି ହେ ଶୁଣ
ପାପୀ ଦେହ ନାଶଯାଏ ସ୍ୱର୍ଗେଯାଏ ପ୍ରାଣ ।
ତେସନ ପୁଣ୍ୟବନ୍ତର ଦେହ ନାଶଯାଇ
ପାପ ଦେହ ପୁଣ୍ୟଦେହ ପୁଣି ଉପୁଜଇ ।
ଅଧିକ କିଛିହିଁ ନାହିଁ ଏ ଦୁଇ ଦେହରେ
ଦେହଗୋଟା ଉପୁଜଇ ପୁଣିକି ପ୍ରକାରେ ।
ଏ କଥା ଗୋଟା ସାରଥି କହିବା ବିସ୍ତାରି
ମାତଳି କହିଲା ଶୁଣ ତୁହୋ ଦଣ୍ଡଧାରି ।

କେବଳ ଅଧର୍ମ ବଳେ ନର୍କେ ସେ ପଡ଼ଇ
ତକ୍ଷଣେ ପଞ୍ଚଭୂତରୁ ଦେହ ଉପୁଜଇ ।
ଧର୍ମବଳେ ପ୍ରାଣୀଗଣ ଦେବତା ହୁଅନ୍ତି
ତାଙ୍କ ଭୋଗ ଦେହ ତତକ୍ଷଣେ ଉପୁଜନ୍ତି ।
ଏହି ଦିବ୍ୟ ଦେହ ପଞ୍ଚଭୂତଙ୍କର ସାର
ମିଶ୍ର କର୍ମଫଳେ ହୁଏ ଜାତ ଯେ ଶରୀର ।
ବାଲ୍ୟପୌଗଣ୍ଡ ଯୌବନ ଆଉ ବାର୍ଦ୍ଧକ୍ୟରେ
ଚାରି ପ୍ରକାର ତା ରୂପ ହୁଅଇ ବିଧିରେ ।
ସେ ଚାରି ଦେହର ନାମ ଶୁଣ ମହାରାଜ
ସ୍ୱେଦଜ ଅଣ୍ଡଜ ଉଭିଜ ଯେ ଜରାୟୁଜ ।
ଉଭିଜ୍ଜ କାହାକୁ କହି କହୁଛି ତା ଶୁଣ
ସ୍ଥାବର ଯେ ତରୁଗୁଳ୍ମ ଲତା ଆଦି ତୃଣ ।
କୃମି କୀଟ ପତଙ୍ଗାଦି ସ୍ୱେଦଜ ବୋଲାନ୍ତି
ପକ୍ଷୀ ସର୍ପ ଗ୍ରାହ ଆଦି ଅଣ୍ଡଜ ଅଟନ୍ତି ।
ମନୁଷ୍ୟ ପଶୁ ଅଟନ୍ତି ଜାଣ ଜରାୟୁଜ
ଓଦାମାଟି ଯେ ଚଷିବ ଆହେ ମହାରାଜ ।
ବୀଜ ବୁଣନ୍ତେ ଉଷ୍ମ ପାଇ ସେ ଫୁଲଇ
ଜଳ ପବନ ସଂଯୋଗେ କୋମଳ ହୁଅଇ ।
ତହୁଁ ସେ ବୀଜ ମୂଳରୁ ଉପୁଜଇ ଗଜା
ଗଜାରୁ ପତ୍ର ହୁଅଇ ଜାଣ ମହାରାଜା ।
ପତ୍ରରୁ ନାଡ଼ ଜନମେ ନାଡ଼ରୁ ତା ଡାଳ
ଡାଳରୁ ତାହାର ଗର୍ଭ ହୁଏ ମହୀପାଳ
ଗର୍ଭରୁ କ୍ଷୀର ଜନମେ କ୍ଷୀରରୁ ଚାଉଳ ।
ସେ ଚାଉଳ ଅଟେ ଦେହ ଧାରଣର ମୂଳ ।
ଯବ ଆଦି କରି ଶସ୍ୟ ସତର ପ୍ରକାର
ଏ ଔଷଧି ବୃକ୍ଷଙ୍କର ଫଳ ଅଟେ ସାର ।
ଆବର ଔଷଧି ବୃକ୍ଷ ଛୋଟ ଛୋଟ ଯେତେ
ମୁନିମାନେ ତାକୁଆଣି ମରଦନ୍ତି ପାତ୍ରେ ।
ଛିଣ୍ଡାଇ ଆଣି କୁଲାରେ ପକାଇ ଶୁଖାଇ
ଉଦୁଖଳେ ଚୂରି ତାକୁ ହାଣ୍ଡିରେ ସିଝାଇ ।
ଜଳ ଅନଳେ ସଂସ୍କାର ତାହାକୁ କରନ୍ତି
ଷଡ଼ ପରକାର ଅନ୍ନ ସେ ପୁଣି ବୋଲାନ୍ତି ।
ରସ ଦେବାରୁ ସେ ପୁଣି ଲାଗେ ସୁଆଦିଆ
ତହିଁରେ ଯେ ପ୍ରାଣୀଙ୍କର ଚଳେ ଖିଆପିଆ ।
ଭକ୍ଷ୍ୟଭୋଜ୍ୟଲେହ୍ୟପେୟ ଚୋଷ୍ୟଖାଦ୍ୟ ଏହି
ଷଡ଼ ପ୍ରକାର ନାମକୁ ଓଷଧି ଏ କହି ।
କାହାକୁ ଗିଳି ଖାଆନ୍ତି କାହାକୁ ଚୋବେଇ
କାହାକୁ ଛାଟି ଖାଆନ୍ତି କାହାକୁ ବା ପିଇ ।
କାହାକୁ ଚୁଚୁମି ଖାନ୍ତି ଜାଣ ନୃପମଣି
କେହି କଷା କେହି ପିତା ସୁଆଦିଆ ପୁଣି ।
ଖାରିଆ କେହି ରାଗୁଆ ଆମ୍ବିଳାକେ ଲାଗେ
ଏ ଷଡ଼ଗୁଣ କହିଲି ମୁଁ ତୁମ୍ଭର ଆଗେ ।
ପ୍ରାଣକୁ ଅନ୍ନ ଉଦରେ ସନ୍ତୋଷ କରଇ
ତାହାଙ୍କ ରଖିବାସ୍ଥାନେ ତାହାଙ୍କୁ ରଖଇ ।
ଖାଇବା ମାତ୍ରେ ଯେତେକ ଅପକ୍ୱ ଆହାର
ତାକୁ ଦୁଇଭାଗ କରି ଦିଅଇ ସମୀର ।
ତହୁଁ ଅନ୍ନମଧ୍ୟେ ପଶି ସେହି ସମୀରଣ
ପକ୍ୱ ଅନ୍ନର କରଇ ଭିନ୍ନ ଭିନ୍ନ ପୁଣ ।
ଅଗ୍ନିରେ ଉପରେ ଜଳ ଜଳପରେ ଅନ୍ନ
ଜଳର ତଳରେ ରହି ଆପେ ଆପେ ପ୍ରାଣ ।
ଧୀରେ ଧୀରେ ଅନଳକୁ ତେଜୁଥାଇ ବସି
ପ୍ରାଣ ପବନେ ଅନଳ ଜଳି ତେଜରାଶି ।
ଜଳକୁ ଅତି ଉଷ୍ମ କରିବାରୁ ଅନ୍ନ
ପରିପାକ ପାଇଁ ତହୁଁ ହୁଏ ଭିନ୍ନ ଭିନ୍ନ ।
ରସଭାଗ ମଳଭାଗ ରହେ ଠାବେ ଠାବେ ।
ମଳବାର ଦୁଆରିଆ ହୋଇ ସେହି ଗର୍ଭେ ।
ନାକ କାନ ଜିଭ ଦନ୍ତ ଓଠ ଲିଙ୍ଗ ଦ୍ୱାର
ଦେଇ ସେ ମଳ ଦେହରୁ ହୁଅଇ ବାହାର ।
ହୃଦପଦ୍ମେ ସବୁ ନାଡୀ ସବୁଆଡୁ ଆସି
ବନ୍ଧାଛନ୍ଦା ହୋଇବାରୁ ପ୍ରାଣ ତହିଁ ପଶି ।
ସବୁ ନାଡ଼ୀ ମୁଖେ ସୂକ୍ଷ୍ମରସ ଆଣି ରଖେ
ରସରେ ନାଡ଼ୀ ପୂରନ୍ତେ ଦେହ ରହେସୁଖେ ।
ଦେହ ଉଷ୍ମରେ ନାଡ଼ୀରସ ହୁଏ ପାକ
ଦୁଇଭାଗ ହୁଏ ପାକ ହେବା ରସ ଯାକ ।
ଅସ୍ଥିଚର୍ମ ମେଦମାଂସ ମଜ୍ଜାଯେ ରୁଧିର
ଏମାନେ ଅଟନ୍ତି ଜାଣ ସେ ରସର ସାର ।
ପାକ ରସରୁ ଏମାନେ ଜାଣ ଉପୁଜନ୍ତି
ରୁଧିରୁ ଦେହର ଲୋମ ମାଂସ ଉତପତ୍ତି ।
ମାଂସରୁ କେଶ ଆବର ସ୍ନାୟୁ ଉପୁଜଇ
ସେ ସ୍ନାୟୁ ନାଡୀରୁ ମଜ୍ଜା ଅସ୍ଥି ଜନମଇ ।
ମଜ୍ଜା ଅସ୍ଥିରୁ ଜନମେ ବସା ଶୁକ୍ରବେନି
ମଜ୍ଜାପ୍ରାୟ ଦେଖାଯାଇ ସେହି ଶୁକ୍ର ପୁଣି ।

ସେ ଶୁକ୍ର ଅଟଇ ଜାଣ ପ୍ରସବର ବୀଜ
ଅନ୍ଦର ଏ ବାରଗୋଟି ଫଳ ମହାରାଜ ।
ତାର ଶେଷଫଳ ଜାଣ ଏ ଶୁକ୍ର ଅଟଇ
ଏହି ଶୁକ୍ରରୁ ଏ ଦେହ ଗୋଟା ଉପୁଜଇ ।
ଦୋଷ ଶୂନ୍ୟ ଶୁକ୍ର ଯେବେ ସ୍ତିରୀ ଋତୁକାଳେ
ପ୍ରବେଶ କରଇ ଯାଇ ଯୋନି ମଧ ନାଳେ ।
ପବନର ଯୋଗେ ସ୍ତିରୀ ରକ୍ତେ ମିଶେ ଯାଇଁ
ଆପଣା ଆପଣା କର୍ମେ ଜୀବ ବନ୍ଧାହୋଇ ।
ଶୁକ୍ର ଛାଡ଼ିବା ବେଳରେ ଯୋନି ମଧ୍ୟେ ପଶେ
ଶୁକ୍ର ସଙ୍ଗେ ଯାଇ ସ୍ତିରୀ ରକ୍ତ ସଙ୍ଗେ ମିଶେ ।
ଦିନକ ମଧରେ ହୁଏ ସେ ପୁଣି କଳଳ
କଳଳୁ ବୁଦ୍ବୁଦ ହୁଏ ଜାଣ ମହିପାଳ ।
ପାଞ୍ଚରାତ୍ର ସେ କଳଳ ବୁଦ୍ବୁଦ ହୁଅନ୍ତେ
ସେ ପୁଣି ମାସକ ମଧ୍ୟେ ମାଂସ ପାଲଟନ୍ତେ ।
ତହୁଁ ଗ୍ରୀବାଶିର କାନ୍ଧ ପିଠିର ମାଉଁଶ
ପେଟ ହସ୍ତପାଦ କଟୀ ଦେହ ଦୁଇପାର୍ଶ୍ୱ ।
କ୍ରମେ ଦୁଇମାସେ ସବୁ ପବ ଉପୁଜଇ
ତିନିମାସେ ଶତ ଶତ ସନ୍ଧି ଜାତ ହୋଇ ।
ଅଙ୍ଗୁଳି ଆଦି ଜନମେ କ୍ରମେ ଚାରିମାସେ
ନଖ ମୁଖ ନାକ କାନ ଦନ୍ତ ପାଞ୍ଚମାସେ ।
ସେ ପାଞ୍ଚମାସ ଉତ୍ତରେ ଜିଭ ଉପୁଜଇ
କର୍ଣ୍ଣ ରନ୍ଧ୍ର ଷଡ଼ମାସ ମଧରେ ହୁଅଇ ।
ମେଢ୍ର ଶିଶୁ ଉପୁଜଇ ଷଡ଼ମାସେ ପୁଣି
ପାଦ ଉପସ୍ଥ ଉପୁଜେ ଜାଣ ନୃପମଣି ।
ଦେହର ସନ୍ଧି ସକଳ ସାତମାସେ ହୋଏ
ସବୁ ଆଠମାସେ ପୂର୍ଣ୍ଣ ହୋଏ ମହାରାୟେ ।
ଅଙ୍ଗ ପ୍ରତ୍ୟଙ୍ଗ ସକଳ ଅବୟବ କେଶ
ଜୀବ ପଞ୍ଚଭୂତ ଘେନି କରେ ତହିଁ ବାସ ।
ମାତା ନାଭିନାଡ଼ ସୂତ୍ରେ ଜୀବ ବନ୍ଧାହୋଇ
ଷଡ଼ରସ ମାତା ଯାହା ଆହାର କରଇ ।
ତାହା ସାରରସେ ଜୀବ ବଢ଼େ ଦିନେ ଦିନେ
ସ୍ମୃତି ପାଇବାରୁ ଜୀବ ପାଞ୍ଚେ ମନେ ମନେ ।
ପୂର୍ବଜନ୍ମ କୃତ ସୁଖ ଦୁଃଖ ଆଦି ଯେତେ
ସ୍ୱପନ ନିଦ୍ରା ଜାଗ୍ରତ କର୍ମ ସବୁ ଚିନ୍ତେ ।
ମୁହିଁ ମରିଥିଲି ପୁଣି ଜନମ ପାଇଲି
ସହସ୍ର ସହସ୍ର ଯୋନି ଗର୍ଭେ ମୁଁ ରହିଲି ।

ସେ ଗର୍ଭ କଷଣ ଆଉ ସହି ନ ପାରଇ
ଏଥର ଯେବେ ଏ କଷ୍ଟ ପାର ମୁଁ ହୁଅଇ ।
ଯେମନ୍ତେ ଏ ଗର୍ଭ କଷ୍ଟ ଆଉ ନ ପାଇବି
ତାହାର ଉପାୟ ନିଶ୍ଚେ ଏଥର କରିବି ।
ଗର୍ଭେ ଥିବା ଜୀବ ପୁଣି ଭାଳଇ ଏମନ୍ତ
ଗର୍ଭୁ ବାହାରି ଯେମନ୍ତେ ହେବି ଭୂମିଗତ ।
ଜନ୍ମ ମୃତ୍ୟୁ ନିବାରଣକାରୀ ଯେଉଁ ଜ୍ଞାନ
ସେ ଜ୍ଞାନ ସାଧି କରିବି ପରଂବ୍ରହ୍ମ ଧ୍ୟାନ ।
ଧ୍ୟାନ ଯୋଗେ ଠୁଳ ଶୂନ୍ୟ ରୂପକୁ ଦେଖିବି
ନ ମରିବି ଆଉ ପୁଣି ଜନମ ନୋହିବି ।
ଏମନ୍ତେ ଜୀବ ବହୁତ ଗର୍ଭକଷ୍ଟ ପାଇ
ମନ ମଧ୍ୟରେ ମୋକ୍ଷର ଉପାୟ ଚିନ୍ତଇ ।
ଚାରିପାଖ ଘେରିଥିବା ଗିରି ମଧ୍ୟେ ଜନ
ଯେବଣ କଷ୍ଟ ଲଭଇ ଏ ଜୀବ ତେସନ ।
ଜରାୟୁ ଭିତରେ ରହି ଅତି କଷ୍ଟ ପାଇ
ସମୁଦ୍ରରେ ପଡ଼ି ପ୍ରାଣୀ ଯେହ୍ନେ ଆର୍ତ୍ତହୋଇ ।
ନାନା ଦୁଃଖ ଭୋଗ କରେ ଏ ଜୀବ ତେମନ୍ତ
ଗର୍ଭଜଳେ ତିନ୍ତି ବୁଡ଼ି ବ୍ୟାକୁଳ ଅତ୍ୟନ୍ତ ।
ଯେସନ କି ଲୁହାକୁଣ୍ଡ ଭିତରେ ପକାଇ
ତଳେ ନିଆଁ ଜାଳି ପୁଣି ତାହାକୁ ତତାଇ ।
ସେ ଯେମନ୍ତେ ପୀଡ଼ାଭୋଗେ ଏଜୀବ ତେସନ
ଗର୍ଭ କୁଣ୍ଡମଧ୍ୟେ ପଡ଼ି ବହୁତ କଷଣ ।
ପାଇ ପୁଣି ପାକ ପାଇ ଜଠର ଅନଳେ
ଅଗ୍ନିବର୍ଣ୍ଣ ଛୁଞ୍ଚିମୁନ ଯା ଦେହରେ ଗଳେ ।
ତାହାର କଷ୍ଟ ଯେମନ୍ତ ତହୁଁ ଆଠଗୁଣ
ଏ ଜୀବର କଷ୍ଟ ଜାଣ ତୁହୋ ନୃପରାଣ ।
ଗର୍ଭବାସ କଷ୍ଟ କ୍ଳେଶ ଆଉ କାହିଁ ନାହିଁ
ଘୋର ଅତୁଳ ସଙ୍କଟ ଗର୍ଭେ ପାଏ ଦେହୀ ।
ଚରାଚର ପ୍ରାଣୀଙ୍କର ଏ ଗର୍ଭକଷଣ
ଯୋନି ଯନ୍ତ୍ର ପୀଡ଼ାପାଇ ଜୀବ ଦିନୁଦିନ ।
ମୂର୍ଚ୍ଛା ଆଦି ପୀଡ଼ା ତହୁଁ କୋଟିଗୁଣ ପାଏ
ପାପ ମୁଦ୍ଗରେ ଜୀବ ପୁଣି ପେଷି ହୋଏ ।
ଆଖୁପେଡ଼ା ହେବା ପ୍ରାୟ ଜୀବ ପୀଡ଼ାପାଇ
ପ୍ରବଳ ପ୍ରସବ ବାୟୁ ଯେ ବେଳେ ବହଇ ।
ବଳେ ଜୀବକୁ ଗର୍ଭରୁ କରଇ ବାହାର
ତେତେବେଳେ ମହାଦୁଃଖ ଉପୁଜେ ତାହାର ।

ପରିତ୍ରାଣ ବାଟ ତାକୁ କିଛି ନ ଦିଶଇ
ଆଖୁ ଯେମନ୍ତେ ଯନ୍ତରେ ରହି ପୀଡ଼ାପାଇ ।
ନିଃସାର ହୋଇ ପଡ଼ଇ ଏ ଜୀବ ତେସନ
ଶରୀର ଯନ୍ତ୍ରପୀଡ଼ାରେ ପଡ଼ି ଅଚେତନ ।
ହାଡ଼ ପଞ୍ଜରାରେ ଗଢ଼ା ଏହି କଳେବର
ବସାମାଂସ ରକ୍ତେ ଲିପାହୋଇଛି ଆବର ।
ବିଷ୍ଠା ମୂତ୍ର ରହିବାର ସ୍ଥାନଗୋଟା ସେହି
କେଶ ଲୋମ ନଖ ତାକୁ ଆଚ୍ଛାଦି ଅଛଇ ।
ରୋଗରଘର ଏଦେହ ଜାଣ ମହାରାୟ
ବଦନଗୋଟା ତହିଁରେ ମହାଦ୍ୱାର ପ୍ରାୟ ।
ଆଠଗୋଟା ରନ୍ଧ୍ର ପୁଣି ତହିଁରେ ଅଛଇ
ଆଠଜଳା କବାଟୀର ପ୍ରାୟ ବିରାଜଇ ।
ବଡ଼ ଦରଜା କବାଟ ଅଟେ ଓଠବେନି
ଦନ୍ତ ଜିଭ ଗଳାନାଳୀ ଜାଣ ନୃପମଣି ।
ସ୍ୱେଦ ପ୍ରବାହର ମୂଳ ଓଦା ସବୁବେଳେ
ଏଦେହରେ କଫପିତ୍ତ ଥାଇ ସଦାକାଳେ ।
ଜରାଶୋକ ଘୋଟି ରହିଅଛି ଏ ଦେହକୁ
କାଳବଦନ ଅନଳ ଘୋଟିଥାଇ ତାକୁ ।
କାମକ୍ରୋଧ କରୁଥାଇ ସଦା ଆକ୍ରମଣ
ନିଃଶ୍ୱାସପବନେ ପୁଣି ହୁଏ ବିମର୍ଦ୍ଦନ ।
ସବୁବେଳେ ପୁଣି ଭୋଗତୃଷ୍ଣାରେ ଆକୁଳ
ରାଗଦ୍ୱେଷରେ ସର୍ବଦା ଅତ୍ୟନ୍ତ ଚଞ୍ଚଳ ।
ଅଙ୍ଗ ପ୍ରତ୍ୟଙ୍ଗ ଜରାୟୁ ଜଡ଼ି ରହିଥାଇ
ସଙ୍କଟମୟ ବିସ୍ତୃତ ଯୋନିବାଟ ଦେଇ ।
ବାହାରି ଆସି ଭୂମିରେ ପଡ଼ିବାରବେଳେ
ବୁଡ଼ିଥାଇ ବିଷ୍ଠାମୂତ୍ର ଜଳ ରକ୍ତଲାଳେ ।
ଷଡ଼ଗୋଟି ପଦ୍ମକୋଷ ତହିଁରେ ଅଛଇ
ଅସ୍ଥି ପଞ୍ଜରାର ସଂଖ୍ୟା ଶୁଣ ଦେବାକହି ।
ଶଏ ଅଧିକ ତିନିଶ ପ୍ରମାଣ ତାହାର
ବିରାଜଇ ପାଞ୍ଚଶତ ପେଷି ଯେ ଆବର ।
ତିନିକୋଟି ରୋମ ପୁଣି କୋଟିକରୁ ଅଧେ
ସବୁ ଆଡ଼ ବ୍ୟାପି ରହିଅଛି ଦେହମଧେ ।
ମୋଟାନାଡ଼ୀ ସରୁନାଡ଼ୀ ବହୁତ ଅଛଇ
କେହି କେହି ଦିଶନ୍ତିଯେ କେହି ନ ଦିଶଇ ।
କୋଟି କୋଟି ମାଂସନାଡ଼ୀ ଅଛଇ ଏଦେହେ
କୋଡ଼ିଏନଖ ବତିଶଦାନ୍ତ ତହିଁ ରହେ ।

ପିତ୍ତ ଯେ ଏକକୁଡ଼ବ ଏ ଦେହେ ଅଛଇ
ଅଧଅଢ଼ାରେ ଏଥିରେ କଫଅଛି ରହି ।
ପାଞ୍ଚଫଳ ବସାଇଛି ଏଦେହରେ ଜାଣ
ଅଢ଼ାଇଫଳ ଫଳକ ଅଛି ନରରାଣ ।
ପାଞ୍ଚପଳ ଆବୁଅଛି ଏ ଦେହରେ ରହି
ଦଶପଳ ମଦପୁଣି ତହିଁରେ ଅଛଇ ।
ମହାରକ୍ତ ତିନିପଳ ଜାଣ ନୃପବର
ମଜା ପୁଣି ଅଛି ତହିଁ ଜାଣ ପଳବାର ।
କୁଡ଼ବର ଅଧେ ଶୁକ୍ର ଅଛଇ ଏ ଦେହେ
ତାର ଅଧେ ବଳପୁଣି ଏ ଦେହରେ ରହେ ।
ସହସ୍ରେପଳ ଯେ ମାଂସ ଶତପଳ ରକ୍ତ
ବିଷ୍ଠା ମୂତ୍ରର ପ୍ରମାଣ ନାହିଁ ସେ ବହୁତ ।
ଏହିରୂପେ ଦେହଘରେ ଆତ୍ମାକରେ ବାସ
ଅତିବିଶୁଦ୍ଧ ପବିତ୍ର ନିର୍ମଳ ନରେଶ ।
କର୍ମବନ୍ଧନେ ଗଠିତ ଏ ଦେହ ଅଶୁଚି
ଶୁକ୍ରଶୋଣିତ ସଂଯୋଗେ ଦେହ ଉପୁଜିଛି ।
ବିଷ୍ଠାମୂତ୍ର ପୂରିଥାଇ ନିତ୍ୟ ଏ ଦେହରେ
ଏଣୁ ଏ ଦେହ ଅଶୁଚି ବୋଲାଇ ସଂସାରେ ।
ଯେମନ୍ତେ ଘଟେ ପୂରାଇ ଦେଲେ ମଳମୂତ୍ର
ଭିତର ବାହାର ତାର ହୁଏ ଅପବିତ୍ର ।
ଏ ଦେହ ଶଉଚ ପୁଣି ହେଲେହେଁ ଅଶୁଚି
ପଞ୍ଚଗବ୍ୟରୁ ପବିତ୍ର ନାହିଁ ଆଉ କିଛି ।
ଏ ଦେହ ସଂଯୋଗେ ସେହି ଅଶୁଚିହୁଅଇ
ତେଣୁ ଅପବିତ୍ର ଏହାଠାରୁ କି ଅଛଇ ।
ମଳମୂତ୍ର ଯୋଗୁଁ ଦେହ ସଦା ଅପବିତ୍ର
ଅନ୍ନପାନ ଯେ ସକଳ ହେଲେହେଁ ପବିତ୍ର ।
ଏ ଦେହ ସଂଯୋଗପାଇ ଦୁର୍ଗନ୍ଧ ହୁଅଇ
ସେ ମଳଯୋଗୁ ଅଶୁଚି ଏ ଦେହ ବୋଲାଇ ।
ତୁମ୍ଭେ କି ଏହା ପ୍ରତ୍ୟକ୍ଷେ ନପାରୁଛ ଦେଖି
ନିତି ଯାହା ବାହାରୁଛି ପେଟେଅଛ ରଖି ।
ପୂତିଗନ୍ଧମୟ ତାକୁ ଦେଖି କର ଘୃଣା
ଦେଖୁ ଦେଖୁ ଜାଣୁ ଜାଣୁ ହୁଅ ପୁଣି ବଣା ।
ଶୁଚିକି ହୋଇପାରଇ ମଳର ଆଧାର
ପଞ୍ଚଗବ୍ୟକୁ ଶୋଦକେ ଶୋଧିଲେ ଶରୀର ।
ତଥାପି ଘୃଣାର ପାତ୍ର ଏଦେହ ଅଟଇ
ଅଙ୍ଗାରକୁ ଧୋଇଲେ କି ଧଳା ସେ ହୁଅଇ ।

ବାରମ୍ବାର ଧୋଇଲେହେଁ ନଛାଡ଼େତା ମଳ
ଗିରିନିର୍ଝରୁ ଯେସନ ବହେ ସ୍ରୋତଜଳ ।
ତେସନ କଫମୂତ୍ରାଦି ବହେ ଏ ନିରତେ
ଏ ଅଶୁଚିଦେହ ଶୁଚିହେବ ବା କେମନ୍ତେ ।
ସବୁ ଅଶୁଚିର ମୂଳ ଅଟେ ଏ ଶରୀର
ଅଙ୍ଗପ୍ରତ୍ୟଙ୍ଗ ଅଶୁଚି ଜାଣିବ ଏହାର ।
ଦିବାରାତ୍ର ବସି ଯେବେ କର ମାଟିହାତ
ତଥାପି ଶୁଚିନୁହଇ ଜାଣ ସେହି ହସ୍ତ ।
ନ ଜନମଇ ତେବେ କି ହେବେ ବିରକତି
ଗନ୍ଧଚନ୍ଦନ ଏ ଦେହେ ବୋଳୁଥାଇ ନିତି ।
ଘଷି ମାଜି ହେଉଥାଇ ଚାହୁଁଥାଇ ପୁଣି
ଅତି ଯତନରେ ରଖିଥାଇ ନୃପମଣି ।
ସୁନ୍ଦର କି ସୁବାସିତ କଲେହେଁ କି ହେବ
କୁକୁର ଲାଙ୍ଗୁଡ଼ ବାଙ୍କ କାହୁଁ ସଳଖିବ ।
ଅଶୁଚି ସ୍ୱଭାବ ସେହି ଛାଡ଼ି ନ ପାରଇ
ଜାତିରେତ ଉର୍ଣ୍ଣାସୂତ୍ର କଳା ହୋଇଥାଏ ।
କେତେବେଳେ ସେହି ପୁଣି ନହୁଅଇ ଧଳା
ଶୋଧିଲେ ମଳ ନିର୍ମଳ ହେବ କାହୁଁ ଭଲା ।
ଆପଣା ମଳଦୁର୍ଗନ୍ଧ ସୁଙ୍ଘି ପୁଣି ଜନ
ଦେହପ୍ରତି ବିରକତି ନହୁଏ ଜନମ ।
ନାକପୁଡ଼ା ଚିପି ତାକୁ କରଇ ସୁନ୍ଦର
କି ଆଶ୍ଚର୍ଯ୍ୟ ଏ ମୋହର ମହିମା ଅପାର ।
ଯେଉଁ ମୋହମାୟା ଜାଲେ ଜଗତ ମୋହିତ
ଆପଣାର ମଳସୁଙ୍ଘି ଦେଖି ପୁଣି ନିତ୍ୟ ।
ଦେହର ପ୍ରତି ତିଳେହେଁ ନୋହି ବିରକତ
ଏଥୁ ଆଉ ଉପଦେଶ ଦେବା ଅନୁଚିତ ।
ବିରାଗ କାରଣ ଏଥୁ ଆଉ କିଛି ନାହିଁ .
ସବୁ ଜଗତ ପବିତ୍ର ଜାଣ ନରସାଇଁ ।
କେବଳ ଏ ଦେହରେ ଯେ ଅବୟବମଳ
ଛୁଇଁଲାମାତ୍ରେ ଯାହାକୁ ପବିତ୍ର ସକଳ ।
ଅପବିତ୍ର ହୋଇଯାଏ ଏଣୁ ଏ ଅଶୁଚି
ଶଉଚ ବିଧିବିଧାନ ଯାହା କିଛି ଅଛି ।
କେବଳ ଦେହ ଦୁର୍ଗନ୍ଧ ନାଶହୁଏ ତେଣେ
ଶୁଚି ବା ଅଶୁଚିନୋହି ଯେବେ କେହି ଜନେ ।
ଭାବ ଶୁଦ୍ଧିଥିଲେ ଦେହ ନିର୍ମଳ ତାହାର
ମନଭାବ ନିର୍ମଳରେ ପବିତ୍ର ଶରୀର ।

ତୀର୍ଥସ୍ନାନେ ତପ ଜପେ ଶୁଚି ନ ହୁଅଇ
ତୀର୍ଥଜଳେ ଯେବେ ନିତ୍ୟ ଦେହ ପଖାଳଇ ।
ସେ ଦେହ ତହିଁରେ ଶୁଦ୍ଧ ନହୁଏ ତାହାର
ଅନ୍ତରଭାବରେ ଦୋଷ ଥାଇଟି ଯାହାର ।
କଠୋର ତପସ୍ୟାକରି ଅନଳେ ପଶଇ
ସ୍ୱର୍ଗ ଅପବର୍ଗ ଲାଭକରି ନପାରଇ ।
ଦେହ ଦହନ କେବଳ ହୁଅଇ ତାହାର
ଭାବଶୁଦ୍ଧିହିଁ କେବଳ ଶୁଚିମଧ୍ୟେ ସାର ।
ସର୍ବ କର୍ମରେ ପ୍ରମାଣ ଏହାର ଅଛଇ
କହୁଅଛି ଶୁଣ ଏବେ ଦୃଷ୍ଟାନ୍ତର ଦେଇ ।
ଭାରିଯାକୁ ଆଲିଙ୍ଗନ କରଇ ତେସନ
ଯେରୂପେକି ଏ ସଂସାରେ ଯେବେ କେହି ଜନ ।
ଦୁହିତାକୁ ଆଲିଙ୍ଗନ ସେ ରୂପେ ନକରେ
ଭିନ୍ନାଭିନ୍ନ ନାହିଁ କିଛି ଯେ ଯେ ପଦାର୍ଥରେ ।
ବୃତ୍ତିର ଭେଦ କେବଳ ମନରେ ହୁଅଇ
ତହିଁରେ ଯେ ଦୃଷ୍ଟାନ୍ତର ଶୁଣ ମନଦେଇ ।
ସତୀନାରୀ ପୁତ୍ରକୁ ଯେ ପତିକି ଆବର
ଭିନ୍ନ ଭିନ୍ନ ରୂପେ ଚିନ୍ତା କରେ ନିରନ୍ତର ।
ସ୍ୱଭାବହିଁ ଏହିରୂପେ ଜାଣ ନୃପମଣି
ଆଲିଙ୍ଗିତ ହୋଇ ମଧ୍ୟ ଆପଣା ରମଣୀ ।
ଭାବହୀନ ଯେବେ ତାକୁ ଦେଖେ ସ୍ୱାମୀତାର
ଆଲିଙ୍ଗନ ନକରଇ ଛାଡ଼ି ହୁଏ ଦୂର ।
ଉତ୍ତମ ମିଷ୍ଟାନ୍ନ ଭାବ ବିନେ ନ ରୁଚଇ
ସୁଗନ୍ଧ ସୁରସପାନ ଦ୍ରବ୍ୟ ନ ପିଅଇ ।
ସବୁ ଧର୍ମ କର୍ମର ଯେ ଭାବ ଜାଣ ମୂଳ
ଆପଣା ମନକୁ କର ଯତନେ ନିର୍ମଳ ।
ବାହାର ନିର୍ମଳେ କିଛି ପ୍ରୟୋଜନ ନାହିଁ
ଭାବ ଶୁଦ୍ଧ ଶୁଚିମନ୍ତ ଯେ ଜନ ଅଟଇ ।
ସ୍ୱର୍ଗ ସୁଖପାଇ ପୁଣି ମୋକ୍ଷପଦ ପାଇ
ଜ୍ଞାନ ନିର୍ମଳ ଜଳରେ ସେ ଧୋଇପାରଇ ।
ବଇରାଗ୍ୟ ମାଟିକି ଯେ ଦେହରେ ଲିପଇ
ସେହି ଇହ ସଂସାରରୁ ନିଶ୍ଚୟ ତରଇଁ ।
ତା ଅଜ୍ଞାନ ରାଗ ବିଷ୍ଠାମୂତ୍ର ଯାଏ ନାଶ
ସ୍ୱାଭାବେ ଅଶୁଚି ଏହି ଶରୀର ନରେଶ ।
କଦଳୀ ସାର ପ୍ରାୟ ଏ ଅସାର ନିଃସାର
ଏରୂପେ ଶରୀରଦୋଷ ଜାଣି ଜ୍ଞାନୀ ନର ।

ସଂସାର ବଇରାଗ୍ୟକୁ ଆଶ୍ରାକରେ ଯାଇ
ଅତିକ୍ରମ କରଇ ଏ ସଂସାରକୁ ସେହି ।
ଏ ସଂସାରେ ଦୃଢ଼େଗ୍ରାହ ଜନରହେ ଏକା
ଅଜ୍ଞାନ ଦୋଷେ ମାନବ ପାଏ ନାନାଶଙ୍କା ।
କଠୋର ଜନମ ଦୁଃଖ ଭୋଗେ ମନ୍ଦଭାଗ୍ୟେ
ଏହି ମହାକଷ୍ଟକର ଜନ୍ମ କ୍ଳେଶ ଭୋଗେ ।
ଗର୍ଭେ ଥିବାବେଳେ ଜୀବ ଯେରୂପେ ଭାବଇ
ଜନମିବା ମାତ୍ରେ ସେହି ବୁଦ୍ଧି ହଜିଯାଇ ।
ଯୋନି ଯନ୍ତ୍ର ପୀଡ଼ାପାଇ ଭୂମିରେ ପଡ଼ନ୍ତେ
ମୂର୍ଚ୍ଛାଯାଇ ପୁଣି ଚେତା ଦେହରେ ପଶନ୍ତେ ।
ମୋହଯିବା ସଙ୍ଗେ ସଙ୍ଗେ ବାହାର ପବନ
ଦେହେ ବାଜନ୍ତେ ତାସଙ୍ଗେ ମିଶେତାର ପ୍ରାଣ ।
ସେପ୍ରାଣ ତାଦେହେ ପଶେ ଚେତନା ବସଇ
ସାଙ୍ଗେ ସାଙ୍ଗେ ଜ୍ୱର ତାର ଦେହେ ପୀଡ଼ାଦେଇ ।
ସେହି ମହାଜ୍ୱରେ ମହାମୋହ ଜନ୍ମେ ତାର
ଜ୍ଞାନ ହଜିଯାଏ ମୂଢ଼ ହୁଅଇ ଆବର ।
ସ୍ମୃତିଭ୍ରଂଶ ଯୋଗୁଁ ତାର ସେବୁଦ୍ଧି ନରହେ
ସେ ଜନମେ ଅନୁରାଗ ଜନ୍ମେ ସେହି ଦେହେ ।
ତେଣୁ ଅକର୍ମ କର୍ମରେ ତା ମନ ବଳଇ
ଆଖି ଥାଉଁ ଥାଉଁ ଅନ୍ଧପ୍ରାୟ ନ ଦେଖଇ ।
ପରମ ଦେବତା ବୋଲି ଆତ୍ମାକୁ ନଚିହ୍ନେ
କାନଥାଇ ସେ ଉତ୍ତମ କଥାକୁ ନଶୁଣେ ।
ସମତଳ ଭୂମିରେ ସେ ଚାଲେ ଧୀରେ ଧୀରେ
ପାଦ ରଖିଯାନ୍ତେ ପୁଣି ପଡ଼ଇ ଭୂମିରେ ।
ବୁଦ୍ଧିଥିଲେହେଁ ସେ କିଛି ବୁଝି ନ ପାରଇ
ବୁଧଜନେ ତାକୁ ଯେତେ ଦିଅନ୍ତି ବୁଝାଇ ।
ଲୋଭେ ପଡ଼ି ନାନାକ୍ଳେଶ ପାଏ ପୁଣି ନର
ଗର୍ଭେଥିବା କଷ୍ଟ ସବୁ ଯାଇ ତା ପାସୋର ।
ଶିବ କରିଛନ୍ତି ଏକ ଗ୍ରନ୍ଥ ତାହାପାଇଁ
ଗର୍ଭର ଦୁଃଖ ବର୍ଣ୍ଣନା ହୋଇଅଛି ତହିଁ ।
ସ୍ୱର୍ଗ ମୋକ୍ଷ ସାଧନାର ସେହି ଗ୍ରନ୍ଥ ମୂଳ
ଶିବ ଚିହ୍ନି ନପାରନ୍ତି ଏ ଜୀବ ସକଳ ।
ଧର୍ମ ଅର୍ଥ କାମ ସାଧ ହୋଏ ଯାହାବଳେ
ଯେ ଶିବ ସର୍ବଦାଥାନ୍ତି ପ୍ରାଣୀର ମଙ୍ଗଳେ ।
ଆପଣା ମଙ୍ଗଳ ସାଧି ନପାରନ୍ତି ପ୍ରାଣୀ
ଏଥିରୁ ଆଉ ଆଶ୍ଚର୍ଯ୍ୟ କି ଅଛଇ ପୁଣି ।

ଇନ୍ଦ୍ରି ପ୍ରବୃତ୍ତି ଗୁପତେ ବାଳକାଳେ ଥାଇ
ତହିଁରେ ତାହାର ମହାଦୁଃଖ ଉପୁଜଇ ।
କହି କରି ନପାରଇ ତାର ପ୍ରତିକାର
ବିସ୍ମରଣ ହୋଇଯାଏ ମନରୁ ତାହାର ।
ବାଲ୍ୟଲଉଲ୍ୟ ପବନ ବାଜନ୍ତେ ଏ ଜୀବ
ନାନାଦି ବାଳରୋଗରେ ପାଏ ପରାଭବ ।
ବାଳଗ୍ରହଙ୍କ ଯୋଗୁ ସେ ମହାପୀଡ଼ା ପାଇ
ଦାନ୍ତ ଉଠିବାରବେଳେ ମହାଦୁଃଖେ ଥାଇ ।
କ୍ଷୁଧା ତୃଷା ଲାଗନ୍ତେ ସେ ଧାମଇ ପଡ଼ଇ
ଉଠଇ ବସଇ ପୁଣି ଉଚ୍ଚରେ କାନ୍ଦଇ ।
ମୋହେ ପଡ଼ି ବିଷ୍ଠାମୂତ୍ର କରଇ ଭକ୍ଷଣ
ଦେହଯାକ ବୋଳିହୋଏ ଆନନ୍ଦେ ରହିଣ ।
କଉମାର ବୟସରେ ଏହି ଜୀବ ପୁଣି
କାନ ଦୁଇ ଫୋଡ଼ିଦ୍ୟନ୍ତି ବଳେ ଧରି ଆଣି ।
ମାତା ପିତା ମାଡ଼ ଗାଳି ଦିଅନ୍ତି ବହୁତ
ପାଠ ନ ପଢ଼ିଲେ ଗୁରୁ ମାରେ ଧରିବେତ ।
ମାଡ଼ ଗାଳି ଖାଇ ପଢ଼େ ନାନା କଷ୍ଟପାଇ
ଇନ୍ଦ୍ରିୟ ପ୍ରବୃତ୍ତି ଯଉବନରେ ବଢ଼ାଇ ।
କାମ ପୀଡ଼ାପାଇ ଜୀବହୋଏ ଉନମତ୍ତା
ତହୁଁ ଘୋଟିଯାଏ ଦେହପାଇଁ ନାନାଚିନ୍ତା ।
ପରର ଶିରୀ ଦେଖିଣ ହୁଅଇ କାତର
ମୋହଯୋଗୁଁ ମହାଦୁଃଖ ଜନମେ ତାହାର ।
କ୍ରୋଧ ରାଗ ଯୋଗୁଁ ନାନାକଷ୍ଟ ପୁଣି ପାଇ
କାମାନଳ ଯୋଗୁଁ ମନେ ଖେଦ ଉପୁଜାଇ ।
ରାତିଯାକ ନିଦ ନାହିଁ ତାକୁ ଚିନ୍ତାଭରେ
ଧନ ଅରଜିବା ଚିନ୍ତା ଥାଇ ଦିବସରେ ।
ବାଲ୍ୟେ କଉମାରେ ଯଉବନେ ସୁଖକାହିଁ
ସ୍ତିରୀଜନଙ୍କ ଆୟାସେ ଯେହ୍ନୁ ରହିଥାଇ ।
ବିନ୍ଦୁ ବିନ୍ଦୁ ହୋଇ ଦେହୁ ଗଳୁଥାଇ ଝାଳ
ଶୁକ୍ରବିନ୍ଦୁ ଖସିପଡ଼େ ଦୁଃଖରେ ସେ ମୂଳ ।
ପୋକ କାମୁଡ଼ାରେ ଯେହ୍ନେ କୁଷ୍ଠରୋଗୀ ଜନ
କୁଣ୍ଡାଇବାରେ କ୍ଷଣିକ ତା ସୁଖ ତେସନ ।
ସଂସାର ମାୟା ମୋହରେ ପଡ଼ି ଅନ୍ଧହୋଇ
ସ୍ତିରୀସଙ୍ଗମରେ ମହାସୁଖ ଉପୁଜାଇ ।
ଧନ ଅରଜନେ ଯେଉଁ ସୁଖଲଭେ ନର
ତା ତାହୁଁ ଅଧିକ ସୁଖ ମନେକରେ ତାର ।

ସେରୂପେ ସ୍ଥିରୀ ସଙ୍ଗମ ସୁଖମନେ ବାଞ୍ଛେ
ଯା ବିନେ ଚିତ୍ତ ନିବୃତି ସଂସାରେ ନଘଟେ ।
ସେହିଟି ବେଦନା ମୂଳ ଅଟଇ ଜୀବର
ଆଦ୍ୟେ ଯାହା କିଛି ସୁଖ ଘଟିଥାଇ ତାର ।
ଶେଷରେ ସେ ସୁଖ ଆନ ପ୍ରକାର ହୁଅଇ
ଜରା ଗ୍ରାସିବାରୁ ରୋଗ ମାଡ଼ିଣ ବସଇ ।
ଜରାଜୀର୍ଣ୍ଣ ଦେହ ଦେଖି ମଣଇ ଅପ୍ରିୟ
ଯାର ବିରକ୍ତି ନଆସେ ଦେଖି ସେହି କାୟ ।
ତା ତହୁଁ ଅଜ୍ଞାନୀ ଜନ କେ ପୁଣି ଅଛଇ
ଏ ଜୀବ ଜରା ବ୍ୟାଧିରେ ଜୀର୍ଣ୍ଣଶୀର୍ଣ୍ଣ ହୋଇ ।
ଅଶକତ ଯୋଗୁଁ ଦୁଷ୍ଟ ଦାରାପୁତ୍ର ତାର
ବନ୍ଧୁ ବାନ୍ଧବ ଯେତେକ ଭୃତ୍ୟହିଁ ଆବର ।
ବିରକତ ହୋଇ ତାକୁ ଭର୍ତ୍ସନା କରନ୍ତି
ଯେ ଜନେ ଜରାବ୍ୟାଧିରେ ପୀଡ଼ାପାଉଥାନ୍ତି ।
ଧର୍ମ ଅର୍ଥ କାମ ମୋକ୍ଷ ସାଧନେ ଅକ୍ଷମ
ଏଣୁ ଜଉବନ କାଳେ ଅରଜିବ ଧର୍ମ ।
ଏ ଦେହରେ ଅଛି ଯେଉଁ କଫ ବାତପିତ୍ତ
ତାର ବିଷମ ଘଟିଲେ ବ୍ୟାଧି ହୋଏ ଜାତ ।
ବାତ ପିତ୍ତାଦି ସମଷ୍ଟି ଏ ଦେହର ମୂଳ
ବ୍ୟାଧିର ମନ୍ଦିର ଜାଣ ଏଦେହ ସକଳ ।
ନାନାଦି ପଞ୍ଜୀର ରୋଗେ କଷ୍ଟପାଏ ଦେହୀ
ଶଏ ଏକ ମୃତ୍ୟୁଅଛି ଏ ଦେହରେ ରହି ।
ତା ଭିତର ଏକମାତ୍ର କାଳ ଅନୁଗତ
ଆଗନ୍ତୁକ ବୋଲି ଆଉ ସକଳ କଥିତ ।
ଯେ ସବୁ ମୃତ୍ୟୁକୁ ଆଗନ୍ତୁକ ବୋଲି କହି
ସେହି ଆଗନ୍ତୁକ ମୃତ୍ୟୁ ବ୍ୟାଧିରୂପେ ରହି ।
ସେହି ବ୍ୟାଧି ଭଲହୁଏ ଖାଇଲେ ଓଷଧି
ଜପ ହୋମ ଦାନେ ଭଲହୁଏ ଦେହବ୍ୟାଧି ।
କାଳମୃତ୍ୟୁ ରୂପ ବ୍ୟାଧି ଭଲ ନ ହୁଅଇ
ଅପମୃତ୍ୟୁ ନ ହୁଅଇ ଯେବେ ବିଷଖାଇ ।
ତେବେ ହେଲେହେଁ ନିର୍ଭୟେ ନଖାଏକେବିଷ
ଅପମୃତ୍ୟୁ ଭୟ ତହିଁ ଥିବାରୁ ବିଶେଷ ।
ନାନାଦି ବ୍ୟାଧି ଦେହୀର ଅଟେ ମୃତ୍ୟୁହାର
ସର୍ପଆଦି କରି ଯେତେ ଜୀବ ଭୟଙ୍କର ।
ନାନାଦି ବିଷ ଆବର ନାନା ଅବିଚାର
ମୃତ୍ୟୁର ଦ୍ୱାର ଏସବୁ ଜାଣ ପ୍ରାଣୀଙ୍କର ।

ରୋଗ ପୀଡ଼ାରୁ ଯାହାକୁ କାଳଥାଏ ଗ୍ରାସି
ଭଲକରି ନପାରଇ ଧନ୍ୱନ୍ତରି ଆସି ।
ଓଷଧି ତପସ୍ୟା ଦାନ ମାତା ବନ୍ଧୁଗଣ
କେହି ରଖି ନପାରନ୍ତି କାଳଗ୍ରସ୍ତ ଜନ ।
ରସାୟନ ତପ ଜନ ଯୋଗ ସିଦ୍ଧିବଳେ
ଯେ ପଡ଼ିଥାଇ କାଳର କରାଳ କବଳେ ।
ତାକୁ ନିବାରଣ କରି ନପାରନ୍ତି କେହି
ଏ ସକଳ ଅବାନ୍ତର ସୁଖ ତାଙ୍କୁ ଦେଇ ।
ଜୀବ ମଲେ କର୍ମବଳେ ଉପୁଜଇ ପୁଣି
କୀଟଠାରୁ ଆଦିକରି ଅଛି ଯେତେ ଯୋନି ।
ଦେହଭେଦେଯେ ବିଚ୍ଛେଦ ଦେଖ କର୍ମକ୍ଷୟେ
ତାହାର ନାମ ମରଣ ଜାଣ ମହାରାୟେ ।
ସେ ମରଣ ପରମାର୍ଥ ନାଶ ନ ବୋଲାଇ
ମହାତମ ମୃତ୍ୟୁକାଳେ ଜୀବକୁ ଘୋଟଇ ।
ମର୍ମଭେଦୀ ଦୁଃଖ ତାର ଉପୁଜେ ସେକାଳେ
ହା ତାତ ହା ମାତ କାହିଁଗଲ ଏତେବେଳେ ।
ହା କାନ୍ତ ହା ପୁତ୍ର ମୋର ପ୍ରାଣର ସଙ୍ଗାଳି
ଏମନ୍ତ କହି ଲୋଭକୁ ନପାରି ସମ୍ଭାଳି ।
ଉଚ୍ଚରେ ରୋଦନ କରେ ଗଡ଼ିପଡ଼େ ଲୁହ
ଘୋଟଇତାକୁ ସେକାଳେଆସି ଲୋଭମୋହ ।
ମଣ୍ଡୁକକୁ ସର୍ପଧରି ଯେମନ୍ତେ ଗ୍ରାସଇ
ତେସନ ଜଗତ ମୃତ୍ୟୁ କବଳେ ପଡ଼ଇ ।
ମଲାବେଳେ ଅତି ଦୀର୍ଘେ ଛାଡ଼ଇ ନିଃଶ୍ୱାସ
ଛାଡ଼ି ପ୍ରିୟ ବନ୍ଧୁଜନ କୁଟୁମ୍ବଙ୍କ ଆଶ ।
ମୁଖ ଶୁଖିଯାଏ ଶୋଇ ଖଟର ଉପରେ
ଏକଡ଼ ସେକଡ଼ ହେଉଥାଇ ଶୋକଭରେ ।
ବାର ବାର ହାତ ପାଦ ଉଠାଇ ପକାଇ
କ୍ଷଣେ ପୁଣି ମୂର୍ଚ୍ଛାଯାଇ କ୍ଷଣେ ଚେତାପାଇ ।
ଖଟରୁ ଆଣି ଭୂମିରେ ଦିଅନ୍ତେ ଶୁଆଇ
ଖଟେ ଶୋଇବାକୁ ଜୀବ ପୁଣି ମନାସଇ ।
ଅବଶ ହୋଇ ପଡ଼ଇ ଲାଜଯାଏ ଛାଡ଼ି
ଗୋଳେଇ ହୁଅଇ ବିଷ୍ଠା ମୁତ୍ରେ ପଡ଼ି ଗଡ଼ି ।
କଣ୍ଠ ତାଳୁ ଓଠଶୁଖେ ପିଇବାକୁ ଖୋଜେ
ମନ ମଧ୍ୟରେ ଏସବୁ କଥାଯାକ ହେଜେ ।
ମୁଁ ମଲେ ମୋର ଏ ଧନ ହୋଇବ କାହାର
କାଳଫାଶି ଲଗାନ୍ତି ଯେ ଯମର କିଙ୍କର ।

ନେଲାବେଳେ ଘୁଡୁ ଘୁଡୁ ତା କଣ୍ଠ ହୁଅଇ
ଏରୂପେ ସବୁରି ଆଗେ ମରଣ ଲଭଇ ।
ତୃଣଜୋକ ପ୍ରାୟଦେହୁଁ ଯାଇ ଦେହେପଶେ
ପୂର୍ବଦେହ ଛାଡ଼ି ପୁଣି ପର ଦେହେ ରସେ ।
ଯେତେକ ବିବେକୀଜନ ଜାଣ ତାହାଙ୍କର
ମରଣ ତହୁଁ ଅଧିକ ଦୁଃଖ ମାଗିବାର ।
କ୍ଷଣକେ ଦୁଃଖ ତାଙ୍କର ମରଣେ ହୁଅଇ
ମାଗିବାରେ ବହୁତର ନାନାଦୁଃଖ ପାଇ ।
ଏଣୁ ମରଣୁ ଅଧିକ ମାଗିବାର ଦୁଃଖ
ମାଗିବାପାଇଁ ବାମନ ହେଲେ ପଦ୍ମମୁଖ ।
ସବୁହୁଁ ବଡ଼ ଜଗତ ପତିହୋଇ ସେହି
ଅତି ଛୋଟ ହେଲେ ଦାନ ମାଗିବାକୁ ଯାଇଁ ।
ମରଣୁ ଅଧିକ କଷ୍ଟ ଜାଣେ ଭଲକରି
ମାଗିବାଠାରୁ ଯେ ନୀଚ କଥାଯାକ ସରି ।
ଆଶାପାଶେ ବନ୍ଧାହୋଇ ଲଘୁପାଏ ଜନ
ଆଦ୍ୟେ କଷ୍ଟ ମଧ୍ୟେ କଷ୍ଟ ଶେଷେ କଷ୍ଟ ପୁଣ ।
ପ୍ରାଣୀଙ୍କର ଏ ସକଳ ଦୁଃଖ ସ୍ୱଭାବଜ
ମନ ମଧ୍ୟରେ ବିଚାର କର ମହାରାଜ ।
ଜୀବଥିବାଯାଏ ଦୁଃଖ ପାଏ ନାନାମତେ
ମଲେ ଗଲେ ପୁଣି ଦୁଃଖପାଏ ଅବିରତେ ।
ଭୂତ ଭବିଷ୍ୟତ ବର୍ତ୍ତମାନେ ଏକା ଦୁଃଖ
ବିରକତ ନୋହେ ଜୀବ ନକରେ ବା ଶୋକ ।
ବେଶିକରି ଖାଇଲେ ଯେ ମହାକଷ୍ଟ ପାଇ
ଅଳପ ଖାଇଲେ ତହୁଁ ଦୁଃଖ ଉପୁଜଇ ।
ଭୋଜନ କରିବା ଯୋଗୁଁ ତୋଟି ଛିଡ଼ିଯାଏ
ଏଣୁ ଭୋଜନରେ ସୁଖ ନାହିଁ ମହାରାୟେ ।
ସବୁ ରୋଗରୁ ଅଧିକ ଜାଣ କ୍ଷୁଧା ରୋଗ
ରୋଗ ଚିହ୍ନି ଖାଇଲେ ଅଉଷଧି ଭାଗ ।
ତହିଁରେ ସେ ରୋଗଗୋଟା ଭଲହୋଇଯାଇ
କ୍ଷୁଧାବ୍ୟାଧିର ବେଦନା କଠିନ ଅଟଇ ।
ଅଶେଷ ବଳ ନାଶିନୀ ଅଟେ ସେ ବେଦନା
ସେ କ୍ଷୁଧା ବ୍ୟାଧିରେ ପ୍ରାଣୀମରେ ଅନ୍ନବିନା ।
ବ୍ୟାଧିରେ ମଲା ପରାୟେ କ୍ଷୁଧାରେ ମରଇ
ଜିଭର ଅଗ ବୁଲାଇ ଅନ୍ନ ରସ ଖାଇ ।
ତହିଁରେ ପ୍ରାଣୀର ଅଛି କି ସୁଖ ବିଚାର
କ୍ଷଣମାତ୍ର ସୁଖ ସିନା କେବଳ ଜିହ୍ୱାର ।

ତକ୍ଷଣେ ସେ ତହୁଁ ଯାଇଁ ଗଳେ ପହୁଞ୍ଚଇ
ଏରୂପେ କ୍ଷୁଧା ବ୍ୟାଧିରେ ସନ୍ତାପିତ ହୋଇ ।
ଏ କ୍ଷୁଧା ବ୍ୟାଧି ଓଷଧି ଅଟେ ମିନା ଅନ୍ନ
ସୁଖ ନମଣନ୍ତି ତାହା ପରମାର୍ଥୀ ଜନ ।
ଭୋଜନାନ୍ତେ ଜୀବ ଗ୍ଲାଣି ଅକ୍ଷମ ହୁଅଇ
ମଲା ପ୍ରାଣୀ ପ୍ରାୟସୁଖେ ଶେଯେ ନିଦ୍ରାଯାଇ ।
ସେକାଳେ ଆତ୍ମାତ ତାରେ ହୁଅଇ ଆଚ୍ଛନ୍ନ
ସେ ନିଦ୍ରାରେ ସୁଖକାହିଁ ବିଚାର ରାଜନ ।
ନିଦ୍ରା ଭାଙ୍ଗିଗଲେ ଜୀବ କାର୍ଯ୍ୟେ ଲାଗିଯାଇ
ଜୀବର ସୁଖ ତହିଁରେ କହ ଅଛି କାହିଁ ।
ଜୀବର ଯେ ପରିଶ୍ରମ ଶୁଣ ନୃପବର
କୃଷି ବ୍ୟାଣିଜ୍ୟ ଗୋରକ୍ଷା ସେବାଦି ବେପାର ।
ସକାଳୁ ଉଠିଲେ କରେ ମଳମୂତ୍ର ତ୍ୟାଗ
ମଧ୍ୟାହ୍ନେ କ୍ଷୁଦାତୃଷାରେ କରେ କାମ୍ୟଭୋଗ ।
ଖାଇପିଇ ଆନନ୍ଦରେ ରାତ୍ରେ ନିଦ୍ରାଯାଇଁ
ଏହିତ ଜୀବ ଜନ୍ତୁର ବେଭାର ଅଟଇ ।
ତହୁଁ ପୁଣି ଅତିକଷ୍ଟେ ଅରଜଇ ଧନ
ସେ ଧନକୁ ଅତିଦୁଃଖେ କରଇ ରକ୍ଷଣ ।
ଧନ ନାଶେ ମନଦୁଃଖ ହୁଅଇ ଅପାର
ଆପେ ବ୍ୟୟ କଲେ ତହୁଁ ଦୁଃଖ ଗୁରୁତର ।
ଏଣୁ ସେ ଧନରେ ସୁଖ ଅଛି କହ କାହିଁ
ମରଣକୁ ନିତ୍ୟ ଭୟକରେ ଯେହ୍ନେ ଦେହୀ ।
ତେସନେ ଧନୀଲୋକର ଭୟ ନିରନ୍ତର
କାଳେ ମୋ ଧନକୁ ନେବେ ଘରେପଶିଚୋର ।
ଅଗ୍ନିରେ ପୋଡ଼ିଯିବ ବା ଜଳେ ବୁଡ଼ିଯିବ
ମାଗି ଘେନିଯିବେ ଅବା ସ୍ୱଜନ ବାନ୍ଧବ ।
ରାଜାବଳେ ଘେନିଯିବ କିବା ମୋର ଧନ
ଏମନ୍ତ ଭାଳି ସଞ୍ଚଇ କରିଣ ଯତନ ।
ପକ୍ଷୀଗଣେ ମାଂସଖାନ୍ତି ଯେସନେ ଗଗନେ
ଭୂମିରେ ଶ୍ୱପଦେ ମାଂସ ଭକ୍ଷନ୍ତି ତେସନେ ।
ଜଳେ ମତ୍ସ୍ୟଗଣ ମାଂସ କରନ୍ତି ଭକ୍ଷଣ
ସର୍ବତ୍ର ବିପଦଗ୍ରସ୍ତ ଜାଣ ଧନୀଜନ ।
ସମ୍ପଦେ ମୋହିତ କରେ ବିପଦେ ପକାଏ
ଅର୍ଜନେ ଖେଦ ଜନ୍ମାଏ ତାରେ ଦୁଃଖଦିଏ ।
ଏଣୁ ଧନ କେତେବେଳେ ସୁଖ ନଦିଅଇ
ଧନଯୋଗେ ପଦୁବେଳେ ଭାଳି ମରୁଥାଇ ।

ଧନର ନିମନ୍ତେ ଆଦ୍ୟେ ଚଞ୍ଚଳ ଯା ମନ
ପଶ୍ଚାତେ ହୁଅଇ ଅର୍ଥପତି ଯେବେ ପୁଣ ।
ଧନପତି ଥାଇ ପଛେ ଧନ ଆଶା ତେଜେ
ଏ ଦୁହିଙ୍କ ମଧ୍ୟେ ଅର୍ଥପତି ଦୁଃଖେ ମଜେ ।
ବିରକତ ବୁଦ୍ଧି ଯାର ସେହି ସୁଖୀଜନ
ଲୋଭ ମୋହ ମାୟାଦି ଯେ କରଇ ବର୍ଜନ ।
ବସନ୍ତ ଗ୍ରୀଷ୍ମ ବରଷା ଆଦି ଋତୁମାନ
ଦୁଃଖବିନା ସୁଖନାହିଁ ଏଥି ହେ ରାଜନ ।
ତହିଁରେ ଯେ ଖରାତାପ ବାତ ବୃଷ୍ଟି ହୋଏ
ବିଭା ଗର୍ଭାଧାନ ଆଦି ଦୁଃଖ ଉପୁଜାଏ ।
ପ୍ରସବ କଷ୍ଟ ତହିଁରେ ବିଷ୍ଠାଆଦି ଧୁଆ
ପୁତ୍ର କାନ୍ଦନ୍ତେ ଯେ ଅତି ଦୁଃଖୀ ବାପମାଆ ।
ପୁଅ ଝିଅ ନହୋଇଲେ ତହୁଁ ପୁଣି ଦୁଃଖ
ପୁତ୍ର ଦନ୍ତ ଚକ୍ଷୁରୋଗ ଅତ୍ୟନ୍ତ ବିମୁଖ ।
ହା କଷ୍ଟ କହିଣ ଆର୍ତ୍ତନାଦ ଯେ କରନ୍ତି
କି କରିବା ବୋଲି ଦୁଃଖ ମନରେ ଭାଳନ୍ତି ।
ଗୋରୁମଲେ ମନେ ମହାକଷ୍ଟ ଉପୁଜଇ
କୃଷି ନଷ୍ଟହେଲେ ଦୁଃଖେ ମନ ପୋଡ଼ିଯାଇ ।
ଗୃହରୁ ଭାରିଯା ରଷି ଗଲେକ ପଳାଇ
ତହିଁରେ ଅଧିକ ଚିନ୍ତା କଷ୍ଟ ନରସାଇଁ ।
ଘରର ଘରଣୀଗଲା କି କରିବ ଏବେ
ମୋହର ଘରକୁ ଯେବେ ଅତିଥି ଆସିବେ ।
କିଏ ରାନ୍ଧି ବାଢ଼ିଦେବ ବୁଦ୍ଧି ନ ଦିଶଇ
କିରୂପେ ଶ୍ରାଦ୍ଧ କରିବି ପିଣ୍ଡ ବାଢ଼ିବଇଁ ।
ଝିଅରତ ବିଭାକାଳ ହେଲାଣି ଏଥର
କାହୁଁ ମୁଁ ପାଇବି ଏହାଦେଖି ଏକ ବର ।
ଏରୂପେ ନାନା ଚିନ୍ତାଦି କୁଟୁମ୍ବ ଲୋକର
ପରିବାରେ କି ସୁଖ ଅଛଇ ଆବର ।
କୁଟୁମ୍ବ ଚିନ୍ତାରେ ଦୁଃଖେ ରହୁଥାଏ ଦିନ
ନାଶଯାଏ କୁଳଶୀଳ ଶାନ୍ତି ଗୁଣ ଜ୍ଞାନ ।
କଞ୍ଚା ମାଠିଆରେ ଜଳ ରଖିଲେ ପୂରାଇ
ସେହି ମାଠିଆ ଯେସନ ଯାଇଟି ମିଳାଇ ।
ତେସନ ଏ ସ୍ୱବୁ ନଷ୍ଟ ଦେହ ସହିତରେ
ରାଜ୍ୟରେ କି ସୁଖଅଛି ବିଚାର ମନରେ ।
ସନ୍ଧି ବିଗ୍ରହ ଯେ ଭେଦକଳା ଆଦି ଚାରି
ରାଜନୀତିରେ ନିରତେ ରତ ଦଣ୍ଡଧାରୀ ।

ସର୍ବଦା ସେ ଚିନ୍ତାଭରେ ଯାଏ ତାରଦିନ
ନିଶ୍ଚିନ୍ତହୋଇ ରହିବ କାହୁଁ ତାର ମନ ।
ଯହିଁରୁକି ପ୍ରଜାତେ ଉପୁଜଇ ଭୟ
ତହିଁରେ ବା ସୁଖ କାହିଁ ବୁଝ ମହାରାୟ ।
ଗୋଟିଏ ଖାଇବା ଦ୍ରବ୍ୟପାଇ ଯେହ୍ନେ ଶ୍ୱାନେ
କାମୁଡ଼ା କାମୁଡ଼ି ହୋଇ ମରନ୍ତି ଯେସନେ ।
ତେସନ ଦେହୀକି ଡ଼ର ସବୁ ଦେହିଙ୍କର
ସ୍ୱଜାତି ହିଂସ୍ରକ ଏହି ସକଳ ସଂସାର ।
କେଉଁ ରାଜା ବଣେ ପଶି ମୃଗୟା ନକରି
ବିଖ୍ୟାତ ହୋଇଛି ମନେ ଭାଳ ଦଣ୍ଡଧାରୀ ।
ଦିଗବିଜେ କରି ସବୁ ରାଜାଙ୍କୁ ସେ ଜିଣି
ଆପଣା ରାଜ୍ୟରେ ସୁଖେ ରୁହେ ଆସି ପୁଣି ।
ଦୃଷ୍ଟାନ୍ତର ଦେଖାଇଣ କହୁଛି ତା ଏବେ
କାର୍ତ୍ତବୀର୍ଯ୍ୟ ନାମେ ରାଜା ଥିଲେ ଏହି ଭବେ ।
ପ୍ରତାପୀ ରାଜା ତା ପରି ନଥିଲେତ ଆନ
ସହସ୍ର ବାହୁ ତାହାର ଅଟଇ ରାଜନ ।
ଋଷିପୁଅ ରାମ ତାକୁ ମାଇଲେ ସମରେ
ଅତୁଳ ବୀର୍ଯ୍ୟ ଯାହାର ପୁଣି ଏ ସଂସାର ।
ସେ ପରଶୁଧର ବଳଦର୍ପ କଲେ ଚୂନା
ବାଟେ ପୁଣି ଦାଶରଥି ରାମ ମହାମନା ।
ଜରାସନ୍ଧ ରାଜା ପୁଣି ଆପଣାର ତେଜେ
ବଳରାମ ଯଶ ନାଶି ରଣେ ରାମେ ଗଞ୍ଜେ ।
ସେ ଜରାସନ୍ଧକୁ ମାରି ମହାବଳ ଭୀମ
ମହୀରେ ଯଶ ଥୋଇଲା ହେ ନୃପ ଉତ୍ତମ ।
ସେ ଭୀମ ଯଶକୁ ନାଶକଲା ହନୁମାନ
ସୂର୍ଯ୍ୟରଥ ଗିଳୁଥିଲା ଯେ ହୋଇ ଜନମ ।
ଇନ୍ଦ୍ର ବଜ୍ରଖାଇ ଆଶ୍ରା କଲା ଯେ ମେଦିନୀ
ସେ କପି ଦର୍ପ ଦଳିଲା ବୀର ଫାଲଗୁନୀ ।
ନିବାତକବଚ ଆଦି ଦାନବ ସମରେ
ବୀଜୟୀହୋଇ ବିଜୟୀ ବୋଲାଇ ସଂସାରେ ।
ଗୋପାଳେ ସେ ଅର୍ଜୁନକୁ ଦେଲେ ପରାଭବ
ଅତି ପ୍ରତାପୀ ହେଲେହେଁ ଏହି ସୂର୍ଯ୍ୟଦେବ ।
ମେଘେ ତାହାଙ୍କୁ ଗଗନେ ରଖନ୍ତି ଘୋଡ଼ାଇ
ପବନ ଦିଅଇ ମେଘମାନଙ୍କୁ ଉଡ଼ାଇ ।
ସବୁଠାରୁ ବଳବନ୍ତ ଅଟଇ ପବନ
ପର୍ବତଠାରୁ ସେ ପରାଭବ ପାଇ ପୁଣ ।

ସେ ଗିରି ଶୋଭାକୁ ପୁଣି ନିଆଁ ଦିଏ ଜାଳି
ସେ ଅଗ୍ନିର ତେଜଯାଏ ଜଳେ ପୁଣି ଜଳି ।
ସୂର୍ଯ୍ୟ କିରଣରେ ସେହି ଜଳଯାଏ ଶୁଖି
ସୃଷ୍ଟି କରତା ଯେ ବ୍ରହ୍ମା ଯାର ଆଠ ଆଖି ।
ସୂର୍ଯ୍ୟତେଜ ତ୍ରିଭୁବନ ଘେନି ହୁଏ ନାଶ
ଦିନେ ସେ କ୍ଷୟ ପାଆନ୍ତି ସ୍ୱର୍ଗର ତ୍ରିଦଶ ।
ବ୍ରହ୍ମାର ଦୁଇପରାର୍ଦ୍ଧ କାଳ ଅବସାନେ
ପରମ ଆତ୍ମା ଯେ ଶିବ ଲୟପାନ୍ତି ଦିନେ ।
ଅସାର ଏହି ସଂସାର ମିଛ ଏ ସକଳ
ପରମ ଆତ୍ମା ଅବ୍ୟୟ ସାରହିଁ କେବଳ ।
ସେ ଜଗତନାଥ ବିନା ଆନ କିଛି ନାହିଁ
ସାନ ସାନ ବଡ଼ ବଡ଼ ଏହି ରୂପେ ଥାଇ ।
ଏଣୁ ଅଭିମାନ ତେଜି ରହିବ ରାଜନ
ଏରୂପେ ଯେଣୁ ସକଳ ଜଗତର ଜନ ।
ଏ ସଂସାରେ ବୀର କିଏ ପଣ୍ଡିତ ବା କିଏ
ସର୍ବଜ୍ଞ ବୋଲି କାହାକୁ କହିବାନା ରାୟେ ।
ଏ ସଂସାରେ ମୂର୍ଖବୋଲି ଜାଣ କେହିନାହିଁ
ସେହି ମୂର୍ଖ ଯାର ହୃଦେ ଦୟାଭାବ ନାହିଁ ।
ସେ ଯେତିକିଜାଣେ ସେହି ତେତିକି ପଣ୍ଡିତ
ତହିଁରେ ସେ ସାବଧାନ କରଇ ବହୁତ ।
ସମାଧାନରେ ସବୁରି ପ୍ରଭାବ ସମାନ
ପ୍ରଭାବହିଁ ତହିଁ ଖଟେ ଯହିଁ ବେଶିଧନ ।
ଦାନବେ ଦେବଙ୍କୁ ଜୟ କରନ୍ତି ସମରେ
ଦାନବଙ୍କୁ ଜୟ ପୁଣି କରନ୍ତି ଅମରେ ।
ଭାଗ୍ୟବଳେ ଜୟ ପରାଜୟ ଯେ ସବୁରି
ପିନ୍ଧଇ ଦିବ୍ୟବସନ ଯୋଡ଼ ଧଣ୍ଡଧାରୀ ।
ପ୍ରଷ୍ଠେ ମାତ୍ର ଜଳପାନ ଯାନ ଆରୋହଣ
ଉତ୍ତମ ଶେଯେ ଆବର ଉତ୍ତମ ଆସନ ।
ଏସବୁ ବିନାଶେ ଦୁଃଖ ଦିଅନ୍ତି କେବଳ
ପଲଙ୍କ ଶୟନ ଘର କରି ସାତତାଳ ।
ସହସ୍ର କୁମ୍ଭ ଯେ ସ୍ନାନ କ୍ଳେଶେ ବା ଆୟାସେ
ପୁରଜନ ଜୟଧ୍ୱନି ପ୍ରଭାତେ ପ୍ରତ୍ୟୁଷେ ।
ଆସ୍ଥଘରେ ଭେରୀ ତୁରୀ ବାଜେ ପ୍ରତିଦିନ
ଏରୂପେ ଆପଣା ରାଜ୍ୟେ ଯେଉଁ ଅଭିମାନ ।
ଏସବୁ କେବଳ ରାଜ ଅଭିମାନ ମୂଳ
ଆଭରଣ ଯାକ ଦେହ ଭାରହିଁ ସକଳ ।

ସୁଗନ୍ଧ ଦ୍ରବ୍ୟ ଲେପନ ପ୍ରଳାପ ବଚନ
ନୃତ୍ୟଗୀତ ବାଦ୍ୟ ଆଦି ଏ ସକଳ ଜାଣ ।
ଉନମତ୍ତ ଜନ ଚେଷ୍ଟା ଆହେ ନୃପମଣି
ବିଚାରିଲେ ରାଜ୍ୟଭୋଗେ ସୁଖନାହିଁ ପୁଣି ।
ବିଦ୍ରୋହ ଚିନ୍ତା ବିଜୟଚିନ୍ତା ଅନ୍ୟେଅନ୍ୟେ
ଏରୂପେ ନହୁଷ ଆଦି ମହାରାଜାମାନେ ।
ସମ୍ପଦର ମଦ ଗର୍ବେ ସ୍ୱର୍ଗ ଭୋଗ ପାଇ
ସ୍ୱର୍ଗରୁ ଖସି ସେ ପୁଣି ହୁଅନ୍ତି ଭୂମିଶାୟୀ ।
ସମ୍ପଦେ କି ସୁଖ ଅଛି ମନେ ତା ବିଚାର
ସ୍ୱର୍ଗରେ ଅଛନ୍ତି ଯେତେ ଅମର ନିକର ।
ଏକର ଉଜ୍ଜ୍ୱଳ ଶିରୀ କରି ଦରଶନ
ଉପରକୁ ଯିବାପାଇଁ କରୁଥାନ୍ତି ମନ ।
ସ୍ୱର୍ଗରେ ବା ସୁଖକାହିଁ ମନରେ ବିଚାର
ସ୍ୱର୍ଗପୁରେ ପୁଣ୍ୟଫଳ ଭୋଗକରେ ନର ।
ତହିଁ ପୁଣ୍ୟକର୍ମ କିଛି କରି ନ ଯୋଗାଇ
ଏଣୁକଲା ପୁଣ୍ୟର ଯେ ମୂଳ ଛିଡ଼ିଯାଇ ।
ଏ ଦାରୁଣ ଦୋଷ ଏକ ଅଛି ସ୍ୱର୍ଗପୁରେ
ମୂଳ ଛିଡ଼ିଗଲେ ବୃକ୍ଷ ପଡ଼ଇ ଭୂମିରେ ।
ତାର ପୁଣ୍ୟମୂଳ ଛିଡ଼ିଯାନ୍ତେ ସେ ତକ୍ଷଣେ
ପକାଇ ଦିଅନ୍ତି ତାକୁ ବଳେ ଦେବଗଣେ ।
ସ୍ୱର୍ଗସୁଖ ଅଭିଳାଷୀ ଦେବଗଣ ଯେତେ
ସୁଖ ବିପ୍ଳବରେ ଦୁଃଖ ଘଟେ ଅକସ୍ମାତେ ।
ବିଚାରିଲେ ଦେବଙ୍କର ସ୍ୱର୍ଗେ ସୁଖ ନାହିଁ
ବିଷୟା ସିଦ୍ଧି ହୁଅଇ ପୁଣ୍ୟ କ୍ଷୟ ଯାଇ ।
ତହୁଁ କର୍ମ ଭୋଗ ଅର୍ଥ କ୍ଷୟ ଯାଏ ତାର
ତହୁଁ ନରକ ଅନଳେ ଜଳେ ନିରନ୍ତର ।
କାୟ ମନ କର୍ମରୁ ଯେ କଷ୍ଟ ଉପୁଜଇ
ଭୟଙ୍କର ରୂପେ ଦୁଃଖ ଦେହୀକି ଦିଅଇ ।
ଅଶେଷ ଦୁଃଖ ଯେ ପୁଣି ସ୍ଥାବର ଜାତିର
କୁରାଢ଼ିରେ ଛିଡ଼ିଯାଏ ଶରୀର ତାଙ୍କର ।
ତାହାଙ୍କ ବକଳ ଲୋକେ କରନ୍ତି ଭକ୍ଷଣ
ଡାଳ ପତ୍ର ଛାଡ଼ିଦିଏ ପ୍ରଚଣ୍ଡ ପବନ ।
ମୂଳରୁ ଉପୁଡ଼ି ପଡ଼େ ତାଳ ଫଳ ଘେନି
ମୂଳ ତାର ଖାଇଯାଏ ନଦୀ ସୁଅ ପାଣି ।
ଚେରଛିଡ଼ି ଯାନ୍ତେ ପାଣି ଭିତରେ ପଡ଼ଇ
ଗଜଶୁଣ୍ଢେ ଡାଳପତ୍ର ଭାଙ୍ଗିଯାଏ ଖାଇ ।

କେବଣ ବୃକ୍ଷକୁ ପ୍ରାଣୀ ଦିଅନ୍ତି ଉପାଡ଼ି
ବନ ଅନଳ ଲାଗିଣ ଦିଏ ପୁଣି ପୋଡ଼ି ।
ହିମ ଖରା ବରଷା ସେ ସହନ୍ତି ବହୁତ
ପକ୍ଷୀଏ ଛାଡ଼ନ୍ତି ତାଙ୍କ ଦେହେ ମଳମୂତ୍ର ।
ବାନରେ ଭାଙ୍ଗିପକାନ୍ତି ଡେଇଁ ଡାଳେଡାଳେ
ପତ୍ର ଛିଣ୍ଡାଇ ଭକ୍ଷନ୍ତି ଯାକି କଳେ କଳେ ।
ଏରୂପେ ଭୁଜଗ ସର୍ପ ଜାତି ରୋଷଭରେ
ଦାରୁଣ ଦୁଃଖ ଭୋଗନ୍ତି ଦେଖ ଏ ସଂସାରେ ।
ଦୁଷ୍ଟପ୍ରାଣୀ ହସ୍ତେ ମାଡ଼ ଖାଇଣ ମରନ୍ତି
ଦଉଡ଼ିରେ ବାନ୍ଧିପୁଣି ତାହାଙ୍କୁ ଖେଳାନ୍ତି ।
କୀଟଜାତିଙ୍କର ଦୁଃଖ କହିଲେ ନସରି
ଅକସ୍ମାତେ ବାରମ୍ବାର ଜାତହୋଇ ମରି ।
ସରୀସୃପ ଜାତିଙ୍କର ଦୁଃଖ ନାନାରୂପେ
ପଶୁଜାତି କଷ୍ଟ ପାଉଥାନ୍ତି ଆପେ ଆପେ ।
ପାହାର ପିଟନ୍ତି ନାକ ଫୋଡ଼ନ୍ତି ତାଙ୍କର
ଭୟ ଦେଖାନ୍ତି ସ୍ୱହସ୍ତେ କରନ୍ତି ପ୍ରହାର ।
ବେକ କାଷ୍ଠାଦିରେ ତାଙ୍କୁ ନିରାଟେ ବାନ୍ଧନ୍ତି
ଅଙ୍କୁଶ ପ୍ରହାରି ନାନାକଷ୍ଟ ଯେ ଦିଅନ୍ତି ।
ଆପଣା ପଥ ବିଯୋଗେ ତହୁଁ ଦୁଃଖ ବେଶି
ବଳେଧରି ଦଉଡ଼ିରେ ବାନ୍ଧିଥାନ୍ତି କଷି ।
ଏରୂପେ ନାନାଦି କଷ୍ଟ ପଶୁଜାତିଙ୍କର
କହିଲେ ନସରେ ଦୁଃଖ ପକ୍ଷୀମାନଙ୍କର ।
ଶୀତ ଖରା ବର୍ଷା ସହି ଦୁଃଖେ ମରୁଥାନ୍ତି
ଅତିବଡ଼ ଦେହଧାରୀ ଯେ ପ୍ରାଣୀ ନୁହନ୍ତି ।
ଜନମବେଳେ ତାଙ୍କର ଦୁଃଖ ବହୁତର
ବାଲକାଳରେ ଅଜ୍ଞାନ କଷ୍ଟ ଘୋରତର ।
କଉମାରେ ଗୁରୁ ମାଡ଼ ମାରଇ ବହୁତ
ନମାନିଲେ ଗାଳି ମାଡ଼ ଖାଏ ଦିବାରାତ୍ର ।
ଯଉବନେ କାମାତୁରେ ନାନାକଷ୍ଟ ପାଇ
ପରର ଶିରୀ ଦେଖିଣ କାତର ହୁଅଇ ।
କୃଷି ବାଣିଜ୍ୟ ଚାକିରି କରି ପାଏ କଷ୍ଟ
ଗୋରୁ ପାଳଇ ପୋଛଇନିତି ଗୋରୁଗୋଠ ।
ଘୋଡ଼ାଶାଳ ଗଧଶାଳ ପୋଛେ ଓଟଶାଳ
ନାନାଦି ଅକର୍ମକରି ହରେ ଦିନକାଳ ।
ବୃଦ୍ଧକାଳେ ଜରାବ୍ୟାଧି ଆସିଣ ଘୋଟଇ
ତହୁଁ ସେ ମରଣକାଳେ ଯେ କଷ୍ଟ ଭୋଗଇ ।

ତା ତହୁଁ ବେଶି ମାରିବା ଜନର କଷଣ
ରାଜଭୟ ଅଗ୍ନିଭୟ ମେଦଭୟ ପୁଣ ।
ଚଡ଼କଭୟ ଆବର ଚୋର ଶତ୍ରୁଭୟ
ଧନ ଅରଜଇ କରି ନାନାଦି ଉପାୟ ।
ସେ କଷ୍ଟୁ ଅଧିକ କଷ୍ଟ ଧନ ସଞ୍ଚିବାରେ
ଧନକ୍ଷୟ ବ୍ୟୟଭୟେ ଡ଼ରେ ନିରନ୍ତରେ ।
କାର୍ପଣ୍ୟ ମାତ୍ସର୍ଯ୍ୟ ଦମ୍ଭ ବଢ଼ଇ ଧନୀର
ଅକର୍ମ କରେ ନରହେ ବାରଣ ତାହାର ।
ଧନୀଙ୍କର ଏହିରୂପେ ନାନାଦୁଃଖ ଘଟେ
ଭୃତ୍ୟ ପଣେ ଖଟିଥାନ୍ତି ନୀଚର ନିକଟେ ।
କୁଶୀଦ ବୃତ୍ତି ଜୀବିକା କରି ପୋଷିହୁନ୍ତି
ଚାକିରିକରି ଦାସତ୍ୱ ପଣ ନ ଛାଡ଼ନ୍ତି ।
ପର ଅଧୀନରେ ରହି ହରୁଥାନ୍ତି ଦିନ
ସ୍ୱାମୀଆଗେ ଖଟମିଛ କରି ନିବେଦନ ।
ଇଷ୍ଟ କରନ୍ତି କାହାର ଅନିଷ୍ଟ କରନ୍ତି
ଦୁର୍ଭିକ୍ଷ ମଡ଼କ ଆଦି କଷ୍ଟ ଭୋଗୁଥାନ୍ତି ।
ଦୁର୍ଭାଗ୍ୟ ଯୋଗୁଁ କରନ୍ତି ମୂର୍ଖ ଆଚରଣ
ଦାରିଦ୍ର୍ୟ କଷ୍ଟରେ ଦିନ କରନ୍ତି ହରଣ ।
ମରଣ ଅନ୍ତେ ନରକେ ପଡ଼ି ଦୁଃଖପାନ୍ତି
ରାଜ ବିକ୍ରମେ ଏରୂପେ ଦୁଃଖହେ ନୃପତି ।
ଅନ୍ୟୋଅନ୍ୟେ ଅଭିଭବ ଦୁଃଖ ତାହାଙ୍କର
ପରସ୍ପର ଭୟ ଥାଇ ରାଜାର ରାଜାର ।
କ୍ରୋଧେ ବୁଡ଼ି ରହିଥାଇ ମନର ମଧରେ
ଏରୂପେ ନାନାଦି ଦୁଃଖ ରାଜାଙ୍କ ଭିତରେ ।
କାମନାକାରିର ମନଭାବ ନୋହେ ନିତ୍ୟ
କର୍ମରେ ଭେଦ ତାଙ୍କର ଥାଇ ଯେ ବହୁତ ।
ଅନ୍ୟୋଅନ୍ୟେ ତାହାଙ୍କର ପର ପୀଡ଼ାପାଇ
ପରସ୍ପରେ ଜୀବ ପୁଣି ଜୀବକୁ ଭକ୍ଷଇ ।
ଚରାଚର ଜୀବଙ୍କର ନିତ୍ୟ ନାନାଭୟ
ଏଣୁ ଜ୍ଞାନୀ ଜନଙ୍କର ଏହା ବର୍ଜନୀୟ ।
ଯାଉଥିବା ଲୋକ ଯେହ୍ନେ ବିଶ୍ରାମ କରଇ
ଏକକନ୍ଧୁ ଆରକନ୍ଧେ ଭାର ଥୋଇଦେଇ ।
ଏ କନ୍ଧର କଷ୍ଟ ପୁଣି ଆନକନ୍ଧେ ମାରେ
ତେଣେ ପଥ ପରିଶ୍ରମ କଷ୍ଟଯାକ ହରେ ।
ତେସନ ଏହି ସଂସାରେ ଏ ଦୁଃଖ ସକଳ
ଦୁଃଖକଲେ ନିବାରଣ ହୁଅଇ କେବଳ ।

ଭୋଗ ସଂପ୍ଲବ ନିରତେ ମିଳେ ପରସ୍ପରେ
ଧର୍ମକ୍ଷୟେ ଦୁଃଖପାନ୍ତି ସ୍ୱର୍ଗର ଅମରେ ।
ପୁଣ୍ୟକ୍ଷୟେ ନାନାଯୋନି ସହସ୍ର ଭ୍ରମଇ
ନାନାରୋଗେ ଦେବଗଣ ବହୁ ପୀଡ଼ା ପାଇ ।
ଅଶ୍ୱିନୀ କୁମାରଙ୍କର ଦୁଇଗୋଟି ଶିର
କାଟିଯଜ୍ଞେ ଲଗାଇଲେ କନ୍ଧେ ତାହାଙ୍କର ।
ସେ ଦୋଷେ ଯକ୍ଷତ ଶରରୋଗ ସବୁକାଳେ
କୁଷ୍ଠରୋଗ ପୀଡ଼ାପାଏ ଭାନୁ ସବୁବେଳେ ।
ବରୁଣଦେବତା ପୁଣି ଅଟେ ଜଳୋଦରୀ
ପୂଷାଦେବତାକୁ ଦନ୍ତରୋଗ ସଦାଘାରି ।
ଇନ୍ଦ୍ରଙ୍କ ଭୁଜସ୍ତମ୍ଭନ ଚନ୍ଦ୍ରକ୍ଷୟ ରୋଗୀ
ଦକ୍ଷପ୍ରଜାପତି ଘୋରତର ଜ୍ୱରଭୋଗୀ ।
ଏମନ୍ତେ ସବୁ ଦେବତା ବ୍ୟାଧିରେ ପୀଡ଼ିତ
ଅନ୍ବେକନ୍ବେ ବଡ଼ ବଡ଼ ଦେବେହୋନ୍ତି ମୃତ ।
ସବୁଦେବତା ମରନ୍ତି ଏକ ନ ବର୍ତ୍ତନ୍ତି
ଦୁଇପରାର୍ଦ୍ଧ ଶେଷରେ ବ୍ରହ୍ମାକ୍ଷର ପାନ୍ତି ।
ଦକ୍ଷ ପ୍ରଜାପତି ଝିଅ ବ୍ରହ୍ମାର ନାତୁଣୀ
ତାହାକୁ ପୁଣି କାମନାକଲା କୁଶପାଣି ।
ଜୟାଦେବୀକି ସେ ପୁଣି କଲେ ଅଭିଶାପ
ଏଡ଼େ ବଡ଼ ଲୋକଙ୍କୁ ଯେ ଗ୍ରାସିଅଛି ପାପ ।
ଯହିଁ କାମକ୍ରୋଧ ଥାନ୍ତି ତହିଁଥାଏ ଦୋଷ
ସବୁ ଦୁଃଖଙ୍କର ସେହି ସ୍ଥାନଗୋଟି ବାସ ।
ଦେଖ ଅନଳ ଜନ୍ମଇ ପୁଣି ସେ ମରଇ
ଜୀର୍ଣ୍ଣଶୀର୍ଣ୍ଣହୋଇ ଦିକି ଦିକି ସେ ଜଳଇ ।
ଭଲ ମନ୍ଦ ନ ବାରଇ ସବୁଯାଏ ଖାଇ
ବିଷ୍ଣୁଦେବତା ଜଗତଜନର ଯେ ସାଇଁ ।
ସେତ ସ୍ତିରୀହତ୍ୟାକରୀ କାମେ ଅସକତ
ସାରଥିହୋଇ ବାହିଲେ ପାଣ୍ଡବର ରଥ ।
ରୁଦ୍ରଦେବତା ଯେ କଲେ ତ୍ରିପୁର ଦହନ
ଦକ୍ଷଯଜ୍ଞ ଧ୍ୱଂସକଲେ ଭାରିଯା ବିହୀନ ।
ସ୍କନ୍ଦ ଜନମ ହୋଇଲେ ଶୁକ୍ରରୁ ତାଙ୍କର
ତାଙ୍କ କ୍ରୀଡ଼ାଦିସହସ୍ର ସହସ୍ର ପ୍ରକାର ।
ସବୁଦେବତାଙ୍କ ତହୁଁ ବଡ଼ ଏହି ତିନି
ରହିଛନ୍ତି ରାଗ କ୍ରୋଧଆଦି ଦୋଷ ଘେନି ।
ସବୁହୁଁ ପ୍ରଧାନ ଜାଣ ପରମ ପୁରୁଷ
ଯାହାଙ୍କୁ ଛୁଇଁ ନପାରେ ଏ ସକଳଦୋଷ ।

ଶାନ୍ତମୂରତି ଯେ ଦେଇପାରନ୍ତି ମୁକତି
ଏ ଜଗତଯାକ ପୁଣି ଯାହାର ପ୍ରକୃତି ।
ପରସ୍ପର ଦୁଃଖଭୋଗ କରନ୍ତି ସକଳେ
ପରମ ନିର୍ବେଦହେବେ ଏହା ବୁଝିନରେ ।
ନିର୍ବେଦରୁ ଉପୁଜିବ ଜାଣ ବଇରାଗ
ଉତପତ୍ତି ହେବ ସଦଜ୍ଞାନରୁ ବିରାଗ ।
ସେଜ୍ଞାନ ତହୁଁ ପରମ ଶିବଜ୍ଞାନ ପାଇ
ଶିବଜ୍ଞାନରୁ ମୁକତି ଏ ଜୀବ ଲଭଇ ।
ତହୁଁ ସକଳ ଦୁଃଖରୁ ହୋଇବ ମୁକତ
ସୁସ୍ଥ ଆତ୍ମାହେବ ପୁଣି ସୁଖୀ ସେ ନିରତ ।
ସର୍ବଜ୍ଞ ହୋଇବ ସେହି ମାତଳି କହଇ
ଯାହା ପଚାରିଲ ସବୁଦେଲଇଁ ବୁଝାଇ ।
ତୁମ୍ଭଙ୍କୁ ଯେ ଇନ୍ଦ୍ରଲୋକେ ଯିବାକୁ ହୋଇବ
ଦୀନ ଗୋପୀନାଥ ବୋଲେ ଶିବଶିବ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ପିତୃମାତୃ ତୀର୍ଥମହାତ୍ମ୍ୟେ
ନାମ ଷଟ୍ ଷଷ୍ଠିତମୋଽଧ୍ୟାୟଃ ।



## ସପ୍ତଷଷ୍ଠି ଅଧ୍ୟାୟ

### ସୁକୃତ ଦୁଷ୍କୃତ କର୍ମବିପାକ

ଯଯାତି କହିଲେ ଆହେ ଇନ୍ଦ୍ରର ସାରଥି
ଭାଗ୍ୟେ ତୁମ୍ଭ ଦରଶନ ପାଇଲି ମୁଁ ଏଥି ।
ତୁମ୍ଭ ଦରଶନ ମୋର ପରମ ମଙ୍ଗଳ
ହେ ମାତଳି ମର୍ତ୍ତ୍ୟପୁର ଏ ପ୍ରାଣୀ ସକଳ ।
ଦାରୁଣ ପାପ କରନ୍ତି ତାଙ୍କର କି ଗତି
ତାଙ୍କର କର୍ମବିପାକ କହ ମହାମତି ।
ମାତଳି ବୋଇଲେ ଏବେ କହୁଛି ତା ଶୁଣ
ପାପାଚାରିମାନଙ୍କର ଯେମନ୍ତ ଲକ୍ଷଣ ।
ଯାହା ଶୁଣିଲେ ସଂସାରେ ହେବ ମହାଜ୍ଞାନୀ
ବେଦକୁ ନିନ୍ଦାକରଇ ଯେବଣ ଅଜ୍ଞାନୀ ।
ବ୍ରହ୍ମଚାରୀର ଯେ ନିନ୍ଦା କହି ବୁଲୁଥାଇ
ତାହାର ଏ କର୍ମ ମହାପାତକ ବୋଲାଇ ।
ସାଧୁଜନମନେ ପୀଡ଼ା ଯେହୁ ଉପୁଜାଇ
ତାହାର ପାତକହୁଏ ଜାଣ ନରସାଇଁ ।

ଏ ପାପର ପ୍ରାୟଶ୍ଚିତ କରିବା ବିହିତ
କୁଳାଚାର ଛାଡ଼ି ଯେହୁ ଅନାଚାରେ ରତ ।
ତାହାର ଏ କର୍ମେ ଘୋର ପାତକ ହୁଅଇ
କୃତ୍ୟବେଦିଗଣେ ଏହା ଅଛନ୍ତି ଯେ କହି ।
ଯେ ମାତା ପିତା ନିନ୍ଦଇ ଭଉଣୀକି ମାରେ
କିବା ଭଉଣୀକି ଗାଳିଦିଏ ନିନ୍ଦାକରେ ।
ଏଥିରେ ନିଶ୍ଚୟ ତାର ପାତକ ହୁଅଇ
ଶ୍ରାଦ୍ଧେ ଭଣଜାଭଉଣୀ ନାତି ପୁଣି ଜୋଇଁ ।
ଏମାନେ ଥିଲେ ଯେ ପାଞ୍ଚକୋଶର ଭିତରେ
ଏହାକୁ ଛାଡ଼ି ଯେ ଆନଡ଼ାକି ଶ୍ରାଦ୍ଧକରେ ।
କାମଆଶାରେ ଯେ ଶ୍ରାଦ୍ଧେ ଭୋଜନ ଦିଅଇ
କୋପଭର ହୋଇ ଭୟଦେଖାଇ ଭୁଞ୍ଜାଇ ।
ଶ୍ରାଦ୍ଧ ଅନ୍ନ ନ ଭୁଞ୍ଜନ୍ତି ତାର ପିତୃଲୋକେ
ପିତୃହତ୍ୟା ପାପ ତାକୁ ଲାଗେ ଅଳପକେ ।
ଦାନ ଦେବାବେଳେ ଆସି ମିଳିଲେ ବ୍ରାହ୍ମଣ
ସେ ବିପ୍ରହସ୍ତରେ ଯେବେ ନଦେଇସେ ଦାନ ।
ଆନଜଣକୁ ଦିଅଇ ତହିଁରେ ତାହାର
ଯେ ପାପହୁଏ ତା ନାମ ଦାନ ଭ୍ରଂଶକର ।
ନିରତେ ସେବାକରେ ଯେ ଯଜମାନ ଘରେ
ସେ ଯେବେ ଦାନ ନଦିଏ ସେ ବିପ୍ରହସ୍ତରେ ।
ଅନ୍ୟକୁ ଦିଏ ସେ ନୋହେ ଦାନର ଲକ୍ଷଣ
ଆଶ୍ରିତଧର୍ମ ଆଚାରୀ ଯେବଣ ବ୍ରାହ୍ମଣ ।
ତାକୁ ନାନାଦି ଉପାୟେ ଯେ ଜନ ପୋଷଇ
ଉତ୍ତମଦାନ ତାହସ୍ତେ କିଅବା ଦିଅଇ ।
ମୁର୍ଖ ବା ପଣ୍ଡିତ ହେଉ ସେ ଦ୍ୱିଜରାଜନ
ନିତ୍ୟପୋଷିବ ତାହାକୁ ଦେଇ ଅନ୍ନପାନ ।
ପୁଣ୍ୟାତ୍ମା ପଣ୍ଡିତ ବିପ୍ର ମିଳେଯେବେ ଆସି
ଉତ୍ତମଦାନ ପୂଜାରେ ତା ମନକୁ ପୋଷି ।
ତାକୁ ଛାଡ଼ି ଅନ୍ୟବିପ୍ରେ ଯେ ଦିଅଇ ଦାନ
ନିଷ୍ଫଳତାହାର ସେହି ଦାନ ହୋମ ଜାଣ ।
ବିପ୍ର କ୍ଷତ୍ରି ବୈଶ୍ୟଶୂଦ୍ର ପୁଣ୍ୟକାଳ ପାଇ
ମୁର୍ଖ ବା ପଣ୍ଡିତହେଉ ଯେ ପୂଜା କରଇ ।
ତାହାର ଯେ ପୁଣ୍ୟଫଳ କହୁଅଛି ଶୁଣ
ଅଶ୍ୱମେଧ ଯଜ୍ଞ ଫଳପାଇ ସେହି ଜନ ।
ଶକତିଥିଲେ କିପାଇଁ ଛାଡ଼ିବ ନୃପତି
ଶ୍ରାଦ୍ଧକାଳେ ବିପ୍ରେ ଯେବେ ଆସିଣ ମିଳନ୍ତି ।

ଶ୍ରାଦ୍ଧ ନକରିବା ପୂର୍ବେ କିବା ଶ୍ରାଦ୍ଧଶେଷେ
ଯେ ବିପ୍ର ମିଳେତାହାଙ୍କୁ ଭୁଞ୍ଜାଇବ ତୋଷେ
ବସ୍ତ୍ର ତାମ୍ବୁଳ ଦକ୍ଷିଣାଦେଇ ଯେ ପୂଜଇ
ଆନନ୍ଦେ ତା ପିତୃଲୋକେ ଶ୍ରାଦ୍ଧ ଅନ୍ନ ଖାଇ ।
ଶ୍ରାଦ୍ଧେ ବ୍ରାହ୍ମଣଭୋଜନୀ ଦକ୍ଷିଣା ଯେ ଦେବ
ନଦେଲେ ଗୋହତ୍ୟା ସରି ପାତକ ହୋଇବ ।
ଏଣୁ ଶ୍ରାଦ୍ଧଦିନ ବିପ୍ର ପୂଜିବ ରାଜନ
ବଳ ନପାଇଲେ ଭୁଞ୍ଜାଇବ ଏକଜଣ ।
ବିତିପାତ ଯୋଗ ପୁଣି ବଇଧୃତି ଯୋଗେ
ଉଆଁସଦିନ ଅପର ପକ୍ଷରେ ସରାଗେ ।
ବିପ୍ର ଆଦି ତିନିବର୍ଣ୍ଣ କରିବେ ଶିରାଧ
ଋତ୍ୱିଜ ବରନ୍ତି ଯେହ୍ନେ ଯଜ୍ଞରେ ବିବୁଧ ।
ଶ୍ରାଦ୍ଧ ଦାନ ଅର୍ଥେ ବିପ୍ର ବରିବ ତେସନ
ଶୁଦ୍ଧାନ୍ତଃ କରଣେ ପୁଣି ଥାଏଯେ ବ୍ରାହ୍ମଣ ।
ଅପରିଚିତ ବିପ୍ରକୁ ଶ୍ରାଦ୍ଧେ ନବରିବ
ଜାଣିଥିଲା ଜନ କେଭେ ଏହା ନକରିବ ।
ତିନି ପୁରୁଷ ପର୍ଯ୍ୟନ୍ତେ ଯାର ଥିବ ଜାଣି
ଆଚାର ଯେ ବ୍ୟବହାର କୁଳ ଗୋତ୍ର ପୁଣି ।
ଏମନ୍ତ ବିପ୍ରକୁ ଶ୍ରାଦ୍ଧେ ନିମନ୍ତି ଆଣିବ
ଯେ ବିପ୍ରର କୁଳ ଗୋତ୍ର ଜଣା ନପଡ଼ିବ ।
ବିପ୍ରବୋଲି ତାକୁ ଜାଣି ପାରିବ ଆଚାରେ
ମୂର୍ଖ ବିପ୍ର ହେଲେ ଶୁଦ୍ଧ ଦାନରେ ଶ୍ରାଦ୍ଧରେ ।
ସେ ବିପ୍ର ବରଣକରି ଆଣିବ ରାଜନ
କୁଳଗୋତ୍ରରେ ଅଜ୍ଞାତ ହେଲେହେଁ ବ୍ରାହ୍ମଣ ।
ସେହି ଯେବେ ବେଦମନ୍ତ୍ର ଆଦି ପଢ଼ିଥାଇ
ଶ୍ରାଦ୍ଧଦିନ ଦାନ ତାକୁ ଦେଲେ ଦୋଷନାହିଁ ।
ଏଣୁ ଶ୍ରାଦ୍ଧଦିନ ବିପ୍ର ଆଗ ନିମନ୍ତ୍ରିବ
ଅପରିଚିତ ଅତିଥି ସେବା ନ ଛାଡ଼ିବ ।
ଏହା ନକଲେସେ ପାପୀ ପଡ଼ିବ ନର୍କରେ
ଏଣୁ ପୁଣ୍ୟ ପର୍ବକାଳେ ଶ୍ରାଦ୍ଧ ଦିବସରେ ।
ବ୍ରାହ୍ମଣ ବରଣକରି ଆଣିବ ରାଜନ
ଆଗ ପରୀକ୍ଷା କରିବ ତଦନ୍ତେ ବରଣ ।
ଶ୍ରାଦ୍ଧେ ଭୋଜନ ଦକ୍ଷିଣା ଦାନ ଆଦି ଦେବ
ଯେଉଁ ଶ୍ରାଦ୍ଧ କର୍ତ୍ତା ଘରେ ବ୍ରାହ୍ମଣ ନଥିବ ।
ପିତୃଲୋକ ନକରନ୍ତି ତାଘରେ ଭୋଜନ
ପାଦଦେଇ ଚାଲିଯାନ୍ତି ଆପଣା ଭବନ ।

ବ୍ରହ୍ମାରପ୍ରାୟ ହେଲେହେଁ ସେହି ଶ୍ରାଦ୍ଧକାରୀ
ମହାପାପୀ ବୋଲାଇ ସେ ଜାଣ ଦଣ୍ଡଧାରୀ ।
ଯେ ଛାଡ଼ଇ ପଇତୃକ ଆଚାର ବେଭାର
ତାହାକୁ ଯେ ମହାପାପୀ ବୋଲି ନୃପବର ।
ସବୁ ଧର୍ମରୁ ବାହାର ତାକୁ ବୋଲି ଜାଣ
ଶିବଙ୍କ ଆଚାର ଧର୍ମ ନକରେ ଯେ ଜନ ।
ବଇଷ୍ଣବର ଆଚାର ନକରେ ପାଳନ
ତାହାଙ୍କୁ କଦାପି ଶ୍ରାଦ୍ଧେ ନକର ବରଣ ।
ବ୍ରହ୍ମଣ୍ୟ ଧର୍ମକୁ ଯେହୁ ବିପ୍ର ନିନ୍ଦାକରେ
ପାପ ବର୍ଦ୍ଧନ ତାହାକୁ ବୋଲନ୍ତି ସଂସାରେ ।
ଶିବ ଭକତକୁ ହିଂସା ଯେ ଜନ କରଇ
ହରିଙ୍କି ନିନ୍ଦଇ ପୁଣି ବ୍ରହ୍ମଦୋଷୀ ହୋଇ ।
ସର୍ବଦା ପାପରେ ଲିପ୍ତ ତାହାଙ୍କ ଶରୀର
ଆଚାର ବେଭାର ନିନ୍ଦା କରଇ ଯେ ନର ।
ସେ ଘୋର ମହାପାତକକାରୀ ବୋଲି ଜାଣ
ଆଦ୍ୟ ପୂଜ୍ୟ ଗ୍ରନ୍ଥ ଯହିଁ ପରମ ଯେ ଜ୍ଞାନ ।
ପୁଣ୍ୟ ଗ୍ରନ୍ଥ ଭାଗବତ ବଇଷ୍ଣବ ଗ୍ରନ୍ଥ
ହରିବଂଶ ପୁରାଣ ଯେ ଶ୍ରୀବିଷ୍ଣୁ ଚରିତ ।
ମତ୍ସ୍ୟ କୂର୍ମ ପଦ୍ମ ଆଦି ପୁରାଣ ପୂଜଇ
ତାହାର ଫଳ କହୁଛି ଶୁଣ ମନ ଦେଇ ।
ସାକ୍ଷାତେ ପୂଜା କରଇ ସେ ମଧୁସୂଦନ
ଏଣୁ ଯେ ବିଷ୍ଣୁ ବଲ୍ଲଭ ବଇଷ୍ଣବ ଜନ ।
ପୂଜା କରିବ ଆବର ଦେବାଳୟେ ନିତି
ବଇଷ୍ଣବ ଗ୍ରନ୍ଥ ରଖି କରିଣ ଭକତି ।
ଗନ୍ଧ ପୁଷ୍ପ ଧୂପ ଦୀପ ଦେଇ ପୂଜୁଥିବ
ସ୍ୱୟଂ କମଳା ପତିଙ୍କି ପୂଜୁଛି ଜାଣିବ ।
ଜ୍ଞାନ ଗ୍ରନ୍ଥକୁ ଯେ ଜନ ରଖି ନ ପୂଜଇ
ପୂଜା ନକରି ଯେ ତାହା ଲେଖଇ ପଢ଼ଇ ।
ତା ତତ୍ତ୍ୱ ନ ଜାଣି ପୁଣି ବଖାଣଇ ଆନେ
ଆପେ ପୁଣି ପଦେଅଧେ କହେ ଆପେଶୁଣେ ।
କିବା ଲୋଭେ ପଡ଼ି ସେହି ଗ୍ରନ୍ଥକୁ ବିକଇ
କୁଜ୍ଞାନ ବଶେ ଅଶୁଚି ସ୍ଥାନରେ ରଖଇ ।
ସାମରଥ ପଣେ ତାର ପ୍ରମାଦ ଚିନ୍ତଇ
ଏପରି ଲୋକଙ୍କୁ ଏ ସଂସାରେ ଗତି ନାହିଁ ।
ଆପେ ଯେ ଅଶୁଚିହୋଇ ଅପବିତ୍ର ସ୍ଥାନେ
ଜ୍ଞାନ କହୁଥାଇ ପୁଣି ଶୁଣୁଥାଇ କାନେ ।

ଜ୍ଞାନ ନିନ୍ଦା ପାପୀବୋଲି ବୋଲାଇ ଜଗତେ
ଯେ ଜନ ପୂଜା ନକରି ଗୁରୁ ପାଦାଗ୍ରତେ ।
ପୁରାଣ ଗ୍ରନ୍ଥ ଶୁଣିବାପାଇଁ କରେ ମନ
ଶ୍ରୀଗୁରୁର ଆଜ୍ଞା ପୁଣି କରଇ ଲଂଘନ ।
ଶ୍ରୀଗୁରୁ ଯାହା କରନ୍ତି ତାହା ନକରଇ
ଗୁରୁ ପଚାରିଲେ ଯେ ଉତ୍ତର ନଦିଅଇ ।
ଶ୍ରୀଗୁରୁ ଦେବଙ୍କ କାର୍ଯ୍ୟ ନକରେ ଯେ ଜନ
ତାହାକୁ ଅଜ୍ଞାନୀ ମଧ୍ୟେ କରିବ ଗଣନ ।
ଶ୍ରୀଗୁରୁ ଯେବେ ପୀଡ଼ିତ ଅତି ଅଶକତ
ବିଦେଶ ସ୍ଥିତ ଅଥବା ଶତ୍ରୁ ପରିଭୂତ ।
ତାହାଙ୍କୁ ଛାଡ଼ି ଯେ ଜନ ପଢ଼ଇ ପୁରାଣ
ତାହାର ଯେତେକ ପାପ କହୁଅଛି ଶୁଣ ।
ଚଉଦଗୋଟା ଇନ୍ଦ୍ରସେ ଭୋଗକରେ ଜାଣ
ନୀତିଶାସ୍ତ୍ରେ ଏହା ହୋଇଅଛଇ ବଖାଣ ।
କୁମ୍ଭୀପାକ ନରକରେ ପଡ଼ି ପଚୁଥାଇ
ଯେ ପାଠକ ପାପବୁଦ୍ଧି ଗୁରୁଙ୍କୁ ଛାଡ଼ଇ ।
ଘୋର ପାତକୀ ସେ ଚିର ନରକରେ ପଡ଼େ
ଭାରିଯା ପୁତ୍ର ମିତ୍ରକୁ ଯେଉଁ ଜନ ଛାଡ଼େ ।
ଗୁରୁ ନିନ୍ଦା ତୁଲ୍ୟ ମହାପାପ ହୋଏ ତାର
ଗୁରୁ ତଳପ ଗମନକାରୀ ସୁନାଚୋର ।
ବ୍ରାହ୍ମଣ ମାରଇ ସୁରାପାନ ଯେ କରଇ
ମହାପାପୀଙ୍କ ସଂସର୍ଗେ ଯେଉଁଜନ ଥାଇ ।
ମହା ପାତକୀ ବୋଲାନ୍ତି ଏ ସକଳ ଜାଣ
କ୍ରୋଧଲୋଭ ହିଂସାଭୟ ଯୋଗୁଁ ଯେଉଁଜନ
ବିପ୍ର ମର୍ମ ଭେଦଇ ସେ ବ୍ରହ୍ମହା ବୋଲାଇ
ଦୀନ ଭିକାରୀ ବିପ୍ରକୁ ଦାନଦେବି କହି ।
ଡାକିଆଣି ନଦିଅଇ ବ୍ରହ୍ମହା ସେ ଜନ
ସ୍ୱଭାବରେ ଯେଉଁ ବିପ୍ର ଅଟେ ଉଦାସୀନ ।
ତାହା ବିଦ୍ୟା ଅଭିମାନେ ସଭାର ମଧରେ
ନିସ୍ତେଜ କରାଇ ସେହି ବ୍ରହ୍ମହା ସଂସାରେ ।
ଯେ ଜନ ମିଥ୍ୟାରେ ନିଜ ଗୁଣମାନ କହି
ତହିଁରେ ପୁଣି ଆପଣା ବଡ଼ାଇ ଦେଖାଇ ।
ଗୁରୁଙ୍କ ସହିତେ ନିତ୍ୟ ବିରୋଧ ଆବର
ତାହାକୁ ବ୍ରହ୍ମହା ବୋଲି ଜାଣ ନୃପବର ।
ଖାଇବାକୁ ମାଗୁଥାଇ ଭୋକୀଶୋଷୀ ଯେବେ
ଯେ ବାଧା ଘଟାଇ ସେହି ବ୍ରହ୍ମହା ଏ ଭବେ ।

ପରଛିଦ୍ର ଖୋଜୁଥାନ୍ତି ଖଳ ଯେ ଆବର
ଲୋକଙ୍କ ମନ ରଞ୍ଜନ କରାଇ ଯେ ନର ।
ଆବର ଯେ କ୍ରୂର ସେହି ବ୍ରହ୍ମହା ବୋଲାଇ
ଦେବଭୂଇଁ ବିପ୍ରଭୂଇଁ ଗୋଚରଯେ ଭୂଇଁ ।
ଯେ ଜନ ହରଣକରେ ଯେବେ କି ସେ ପୁଣି
ବିନାଶହୁଏ ବ୍ରହ୍ମହା ମଧ୍ୟେ ତାକୁ ଗଣି ।
ବ୍ରାହ୍ମଣ ଧନ ଚୋରୀ କରଇ ଯେ ଜନ
ଯେ ହରି ନିଅଇ ସଞ୍ଚ ରଖିଥିବା ଧନ ।
ବ୍ରହ୍ମହତ୍ୟା ସରି ଘୋର ପାପ ହୁଏ ତାର
ଅଗ୍ନିରେ ହୋମ ନକରେ ଯେଉଁ ଦ୍ୱିଜବର ।
ପଞ୍ଚ ଯଜ୍ଞ ନକରଇ ଆବର ଯେ ନିତି
ମାତା ପିତା ଗୁରୁଙ୍କୁ ଯେ କପଟ କରନ୍ତି ।
ଅନିଷ୍ଟ କରନ୍ତି ଶିବ ଭକତ ଲୋକର
ମିଛରେ ସାକ୍ଷୀ ଦିଅନ୍ତି ଯେ ଜନ ଆବର ।
ଅଭକ୍ଷ୍ୟ ଅନ୍ନ ଭକ୍ଷଣ କରନ୍ତି ଯେ ଜନ
ବଳେ ନିର୍ଦ୍ଦୋଷୀ ପ୍ରାଣୀଙ୍କି ମାରନ୍ତିଯେ ପୁଣ ।
ପୁର ଗ୍ରାମ ବନ ଗୋଠ ଯେ ପୋଡ଼ି ଦିଅନ୍ତି
ସେ ସୁରାପାନ ସମାନ ପାତକୀ ହୁଅନ୍ତି ।
ଦରିଦ୍ର ଜନ ସର୍ବସ୍ୱ ଯେ କରେ ହରଣ
ପରସ୍ତିରୀ ପରଗଜ ପର ଅଶ୍ୱଯାନ ।
ପରଗୋରୁ ପରଭୂମି ରଜକ ବସନ
କସ୍ତୁରୀ କର୍ପୂର ପୁଣି ଅଗୁରୁ ଚନ୍ଦନ ।
ପାଟଲୁଗା ପର ସଞ୍ଚ ରଖିଥିବା ଧନ
ଏ ଦ୍ରବ୍ୟମାନ ଯେ ଜନ କରଇ ହରଣ ।
ସୁନା ଚୋରିକଲା ପାପ ହୁଅଇ ତାହାର
ଯେ ଜନ ଖୋଜି ନଆଣି କନ୍ୟାଯୋଗ୍ୟବର ।
ପ୍ରଦାନ ନକରଇ ସେ ଗୁରୁପତ୍ନୀହାରୀ
ପୁତ୍ରବଧୂ ମିତ୍ରବଧୂ ଯେ ଗମନକାରୀ ।
ଭଗିନୀ ହରଇ ଯେହୁ କୁମାରୀ ହରଇ
ଅନ୍ୟଜାତି ସ୍ତିରୀଙ୍କି ଯେ ହରଣ କରଇ ।
ସବର୍ଣ୍ଣ ସ୍ତିରୀ ଗମନ କରଇ ଯେ ପୁଣି
ଗୁରୁକଳ୍ପ ଗମନେ ଯେ ପାପ ନୃପମଣି ।
ସେ ପାପ ତୁଲ୍ୟ ଯେ ପାପ ଏଥିରେ ତାହାର
ଏଯେ ମହାପାପ ତୁଲ୍ୟ ପାପ ନୃପବର ।
ଏସବୁ ପାପରୁ ଊଣା ପାତକ ଯେତେକ
ସେ ସବୁ ଉପପାତକ ହେ ନୃପନାୟକ ।

ବିପ୍ରଙ୍କୁ ଦାନଦେବାକୁ ସଂକଳପ କରି
ନଦେଲେକିବା ତାହେଲେ ବିପ୍ରତାପାସୋରି ।
ଏ ବେନି ଉପପାତକ ତୁଲ୍ୟ ପାପ ଜାଣ
ଦ୍ୱିଜର ଦ୍ରବ୍ୟକୁ ପୁଣି ଯେ କରେ ହରଣ ।
ମର୍ଯ୍ୟାଦା ଲଙ୍ଘିଯେ ଯାଇ ହୋଏ ଅତିମାନୀ
ଅତିକୋପୀ ଦାମ୍ଭିକ ଯେ ବୃଥା ଅଭିମାନୀ ।
କୃପଣ ପୁଣି ବିଷୟୀ ଅସକତ ଜନ
ପରଦରହାରୀ ଶଠ ବିଟ କୃତଘନ ।
ସାଧବୀ କନ୍ୟା ଦୂଷଣକାରୀ ଯେ ମାତ୍ସରୀ
ପରିବିତ୍ତି ପରିବେତ୍ତା କନ୍ୟାଦାନକାରୀ ।
ପରିବିତ୍ତି ପରିବେତ୍ତା ବିଭା ହେବା ଜନ
ପରିବିତ୍ତି ପରିବେତ୍ତା ଯାର ଯଜମାନ ।
ପୁତ୍ର ମିତ୍ର କଳତ୍ରକୁ ଯେ ଜନ ତେଜଇ
ସ୍ୱାମୀ ଭାରିଯା ସାଧୁଙ୍କୁ ଛାଡ଼ି ଚାଲି ଯାଇ ।
ଗୋରୁ କ୍ଷତ୍ରିୟ ବଇଶ୍ୟ ସ୍ତିରୀ ଶୂଦ୍ରମାରେ
ଶିବ ଆୟତନ ବୃକ୍ଷ ଖଣ୍ଡ ଖଣ୍ଡ କରେ ।
ପୁଣ୍ୟ ବଗିଚା ଭାଙ୍ଗଇ ଆଶ୍ରମ ଭାଙ୍ଗଇ
କିବା ଆଶ୍ରମର ପୀଡ଼ା ଅଳପକେ ଦେଇ ।
ଆଶ୍ରମରେ ଥିବା ଭୃତ୍ୟ ପରିଜନ ଯେତେ
ପଶୁ ଧାନ୍ୟ ବନପୀଡ଼ାକରେ ନାନାମତେ ।
ବସ୍ତ୍ର ଧାନ୍ୟ ପଶୁଚୋରୀ କରଇ ଯେ ଜନ
ଅଜାତି ଜାତି ନବାରି କରେ ଯଜମାନ ।
ଯାଗ ଆରାମ ତଡ଼ାଗ କରଇ ବିକିରି
ଦାରାପତିଙ୍କି ବିକଇ ତୀର୍ଥ ଯାତ୍ରା କରି ।
ବ୍ରତ ଉପବାସ ଆଦି ସୁକର୍ମ ବିକଇ
ସ୍ତିରୀଧନକୁ ଜୀବିକା କରି ଯେ ଚଳଇ ।
ସ୍ୱଧର୍ମ ବିକିରି କରେ ଅଧର୍ମରେ ଚଳେ
ଆପଣା ଦୋଷ ନଧରି ପରଦୋଷ ଧରେ ।
ପରଛିଦ୍ର ଖୋଜୁଥାଇ ପରଦ୍ରବ୍ୟେ ମନ
ପରସ୍ତିରୀର ସର୍ବାଙ୍ଗ କରେ ନିରୀକ୍ଷଣ ।
ଏ ସକଳ ପାପ ଗୋରୁ ହତ୍ୟା ପାପପ୍ରାୟେ
ସବୁଶସ୍ତ୍ର ଗଢ଼େ ଯେଉଁଜନ ମହାରାୟେ ।
ଗୋରୁ ଚୋରିକରି ତାହା ବିକିରି କରଇ
ଭୃତ୍ୟଜନଠାରେ ତିଳେ ଦୟା ଯାର ନାହିଁ ।
ପଶୁମାରେ ମିଛକହେ ପରକଥା ଶୁଣେ
ସ୍ୱାମୀଦ୍ରୋହୀ ଗୁରୁଦ୍ରୋହୀ କୂଟ କଥା ଭଣେ ।

ମାୟାବୀ ଚଞ୍ଚଳ ଚିତ୍ତ ଶଠ କପଟିଆ
ଭାରିଯା ବୃଦ୍ଧ ବାଳକେ ନାହିଁ ଯାର ଦୟା ।
ଯାହାର ଭାରିଯା ପୁତ୍ର କ୍ଷୁଧାରେ ଆତୁର
ବାଳ ବୃଦ୍ଧ ବନ୍ଧୁ ମିତ୍ର ଭୃତ୍ୟ ପରିବାର ।
ଆବର ଦୃଶ ଆତୁର ଜନଙ୍କୁ ନଦେଇ
ଆପେ ଭୋଜନ କରଇ ବସି ଆଗହୋଇ ।
ମାଗୁଥିବା ଲୋକଙ୍କୁ ଯେ ନଦେଇ ମିଷ୍ଟାନ୍ନ
ଆପେ ଆପେ ସୁଖେ ତାହା କରଇ ଭୋଜନ ।
ଜଗତେ ପୃଥକ ପାପୀ ବୋଲାନ୍ତି ଏମାନେ
ଏ ସଂସାରେ ଯେତେଛନ୍ତି ବ୍ରହ୍ମବାଦୀ ଜନେ ।
ସେମାନେ ତାହାଙ୍କୁ ନିନ୍ଦା କରନ୍ତି ବହୁତ
ନିୟମ କରି ଲଙ୍ଘଇ ଇନ୍ଦ୍ରିୟ ଅଜିତ ।
ସନ୍ନ୍ୟାସୀହୋଇ ତା ପୁଣି କରଇ ଲଙ୍ଘନ
ମଦୁଆ ଲୋକ ସଂସର୍ଗୀ ହୁଏ ଯେଉଁଜନ ।
ଭୋକୀଶୋଷୀ କ୍ଷୟରୋଗୀ ଗୋରୁଙ୍କୁନପାଳେ
ଗୋରୁ ହତ୍ୟା ପାପ ଏହି ସବୁ ପାପ ତୁଲେ ।
ଯେ ଲୋକ ନିରତ ସବୁ ପାପକର୍ମେ ରତ
ଯେଉଁ କ୍ଷେତ୍ର ଚାରିପାଦେ ସର୍ବଦା ପୂରିତ ।
ତାକୁ ଯେ ଭେଦ କରଇ ସାଧୁଙ୍କୁ ପୀଡ଼ଇ
ଗୁରୁବିପ୍ର ଗୋରୁଙ୍କୁ ଯେ ପ୍ରହାର କରଇ ।
ପୀଡ଼ା ଦିଅଇ ଯେ ଜନ ସାଧୁନାରୀ ମନେ
ଅଳସୁଆପଣେ ନିଦ୍ରା ଯାଏ କ୍ଷଣେ କ୍ଷଣେ ।
ଦୁର୍ବଳ ହଡ଼ା ଗୋରୁକୁ ଯେହୁ ନପୋଷଇ
ହଜିଥିବା ଗୋରୁକୁ ଯେ ଜନ ନଖୋଜଇ ।
ନୃଶଂସ ରୂପେ ଗୋରୁକୁ ଯେକରେ ପ୍ରହାର
ଖଣ୍ଡିଆ ଖାବରା ଗୋରୁ ଯୋଚି କରେ ହଳ ।
ସବୁ ପାପ କର୍ମକାରୀ ସଙ୍ଗେ ବସି ଖାଏ
ଭୋ କାଳିଆ ଗୋରୁକୁ ଯେ ଆହାର ନଦିଏ ।
ଖଣ୍ଡିଆ ଖାବରା ଗୋରୁ ଭଗ୍ନଅଙ୍ଗ ଯାର
ରୋଗରେ ପୁଣି ଯେ ଗୋରୁ ନିତାନ୍ତ ଆତୁର ।
ତାକୁ ନପାଳିବା ଲୋକ ନରକୀ ବୋଲାଇ
ଅଣ୍ଡିରା ବାଛୁରୀ ବ୍ରତ ଯେ ଜନ କରାଇ ।
ବାଛୁରୀକି ନଦେଇ ଯେ ଆପେ ଦୁହିଁ ପିଏ
ଜଗତେ ସେ ଜନ ମହା ନାରକୀ ବୋଲାଏ ।
ଆଶାକରି ଭୋକୀ ଶୋଷୀ ପଥଶ୍ରମୀ ହୋଇ
ଗୃହେ ମିଳିଲେ ତାହାକୁ ଯେ ଜନ ଠକଇ ।

ସେ ଜନ ମରଣ ଅନ୍ତେ ପଡ଼ଇ ନରକେ
ଅନାଥ ବିକଳ ଦୀନ ଆତୁର ବାଳକେ ।
ଆବର ବୃଦ୍ଧଙ୍କୁ ଦୟା ନକରେ ଯେ ଜନ
ଘୋର ନରକ ସମୁଦ୍ରେ ତାହାର ପତନ ।
ଛେଳି ରଖା ଛେଳିବିକା ଜୀବିକା ଯାହାର
ମଇଁଷି ରଖା ବିକିବା ଜୀବିକା ଆବର ।
ବୃଷଳୀ ନାରୀର ପତି ଯେବଣ ବ୍ରାହ୍ମଣ
ଯେ ବିପ୍ର କ୍ଷତ୍ରିୟ ଧର୍ମେ ଆଚାରେ ନିପୁଣ ।
ଶୂଦ୍ର ଯେବେ କ୍ଷତ୍ରିଧର୍ମ ଆଚରଣ କରି
ବିପ୍ରଯେବେ ହୁଏ ଶିଳ୍ପକାରୁ କର୍ମଚାରୀ ।
ବଇଦ୍ୟ ଦେବଳ ପୁଣି ଭୃତକ ଅମାତ୍ୟ
ଏମାନେ ନରକଗାମୀ ହେ ନହୁଷ ସୁତ ।
ନିୟମ ଛାଡ଼ି ଯେ ରାଜା ହୁଏ ସ୍ୱେଚ୍ଛାଚାରୀ
ପରତାଙ୍କୁ କରପୀଡ଼ା ଦିଏ ନ ବିଚାରି ।
ବୃଥାରେ ଦଣ୍ଡ ଦିଅଇ ନିର୍ଦ୍ଦୋଷୀଙ୍କି ଆଣି
ସେ ରାଜା ନରକେ ପଡ଼ି ପଚେ ନୃପମଣି ।
ଯେଉଁରାଜ୍ୟେ ପ୍ରଜାଠାରୁ ରାଜକର୍ମଚାରୀ
ଉତ୍କୋଚଧନ ନିଅନ୍ତି ରାଜା ଜାଣିକରି ।
ଚୋର ତସକରେ ଚୋରି କରନ୍ତି ଆବର
ପ୍ରଜା ପୀଡ଼କ ଅଟଇ ସେହି ନୃପବର ।
ସେ ଦୋଷେ ରାଜା ନରକେପଡ଼ି ପଚୁଥାଇ
ତାର ଅନ୍ତିମକାଳରେ ଯମ ଦଣ୍ଡେ ନେଇ ।
ଯେ ଦ୍ୱିଜ ପାପୀ ନୃପତି ହସ୍ତୁ ଘେନେ ଦାନ
ନିଶ୍ଚେ ସେ ଦ୍ୱିଜର ହୁଏ ନରକେ ପତନ ।
ପରଦାର କାରି ଚୋପ ପ୍ରଜାର ଯେ ପାପ
ସେ ପାପ ଭୋଗକରଇ ଅରକ୍ଷକ ନୃପ ।
ଯେ ରାଜ ସାଧୁଙ୍କୁ ଚୋର କରେ ନ ବିଚାରି
ଛାଡ଼ି ଦିଅଇ ଯେ ଲୋକ କରୁଥାଏ ଚୋରୀ ।
ସେ ରାଜାର ନିଶ୍ଚେ ହୁଏ ନରକେ ପତନ
ଜାଣି ଶୁଣି ଏ ବିଷୟ ନଭୁଲ ରାଜନ ।
ଯେ ଘୃତ ତଇଳ ଅନ୍ନପାନ କରେ ଚୋରୀ
ମହୁ ମାଂସ ସୁରାମଦ ଗୁଡ଼ ଆଦି କରି ।
ଆଖୁ କ୍ଷୀର ଶାଗ ଆଦି ଦଧି ଫଳମୂଳ
ତୃଣ କାଷ୍ଠ ଫୁଲ ପତ୍ର ଏ ଆଦି ସକଳ ।
ଚୋରୀକରି ନିଅଇ ଯେ ଅଳପେ ବହୁତେ
ହେୟଜ୍ଞାନ କରି ନଛାଡ଼ିବ କଦାଚିତେ ।

କଂସାପାତ୍ର ତମ୍ବାପାତ୍ର ପିତଳ ବାସନ
କଟମସିଣା ମହୂରା ଶିବିକା ବିମାନ ।
କୋମଳ ଆସନ ଆଦି ପାଲିଙ୍କି ଶୁଆରୀ
ତମ୍ବା ସିଂସା କଂସାସୁନା ରୂପାଆଦି କରି ।
ଗୃହର ଉପକରଣ ଦ୍ରବ୍ୟଆଦି ଯେତେ
ଉର୍ଣ୍ଣା କପାସୁତା କୋଷା ବସନ ସହିତେ ।
ସରୁଶାଢ଼ୀ ପାଟଲୁଗା ରେଯେଇ ତକିଆ
ରଙ୍ଗ କଳା ଛିଟଲୁଗା ଧଡ଼ି ହଳଦିଆ ।
ଏ ଆଦି ଦ୍ରବ୍ୟ ଯେତେକ ଯେ ଚୋରୀକରଇ
ଅବିଳମ୍ବେ ନର୍କକୁଣ୍ଡେ ସେ ପଡ଼ି ପଚଇ ।
ସୋରିଷ ପ୍ରମାଣେ ପରଦ୍ରବ୍ୟ କଲେଚୋରୀ
ନରକେ ନିଶ୍ଚେ ପଡ଼ଇ ଜାଣ ଦଣ୍ଡଧାରୀ ।
ଅଳପ ହେଉ ବହୁତ ହେଉ ପରଧନ
ମୋଘରେ ନାହିଁ ଆସିବ ମୋର ପ୍ରୟୋଜନ ।
ଏମନ୍ତେ ଲୋଭ କରିଣ ନେଲେ ତା ନ କହି
ନରକେ ପଡ଼େ ଏଥିରେ ସଂଶୟଯେ ନାହିଁ ।
ପ୍ରାଣବାୟୁ ଏ ପିଣ୍ଡକୁ ଛାଡ଼ି ଗଲାପରେ
ପୂର୍ବ ଆକୃତି ଧରଇ ପାପ ଅନୁସାରେ ।
ଯନ୍ତ୍ରଣା ଭୋଗ ନିମନ୍ତେ ପାପ ସେ ଶରୀର
ଯମଦେବତା ଆଜ୍ଞାରେ ଜାଣ ନରବର ।
ଭୟଙ୍କର ଯମଦୂତେ ବାନ୍ଧି ଘେନିଯାନ୍ତି
ଯମର ଛାମୁରେ ପାପୀ ଶରୀର ପକାନ୍ତି ।
ସେ ବେଳେଯେ ଦୁଃଖ ତାର କହିଲେ ନସରି
ଜନ୍ତୁରାଜ ଯମ ଭୟଙ୍କର ରୂପଧରି ।
ଦଣ୍ଡ ବିଧାନ କରଇ ତା ପାପ ବିଚାରି
ତିର୍ଯ୍ୟଗ ମନୁଷ୍ୟ ଆଦି ଯୋନି ଜନ୍ମକରି ।
ଏସବୁ ଦୁଃଖ ତାହାର ଯାଇଯେ ପାସୋର
ପାପକୁଯେ ପ୍ରାୟଶ୍ଚିତ୍ତ କରେଯେବେ ନର ।
ବିନୟୀହୋଇ ଆଚାରେ ଯେବେକି ରହଇ
ଜନ ସମାଜ ଶାସନା ସହି ରହିଥାଇ ।
ତେବେ ଏ ପାପ ତାହାର ନରହେ କିଞ୍ଚିତ
ନଚାହେଁ ସେ ଯମ ମୁଖ ହୁଅଇ ମୁକତ ।
ପରଦାର ଚୋର ପୁଣି ପରଧନ ଚୋର
ଅଧର୍ମକାରୀ ଅଧର୍ମ ଆଚାରୀ ଆବର ।
ନୃପତି ଏହାଙ୍କୁ ଶାସ୍ତି ଦେବ ବିଧିମତେ
ନକରିବେ ତାର ପ୍ରଜା ଏକର୍ମ ଯେମନ୍ତେ ।
ଗୁପତେ ଏସବୁ ପାପ କରନ୍ତି ଯେ ଜନ
ରାଜଦଣ୍ଡ ପ୍ରାୟଶ୍ଚିତ୍ତ ନୋହିଛି ବିଧାନ ।
ଧର୍ମରାଜ ଯମ ତାଙ୍କୁ ଦଣ୍ଡନେଇଦେବେ
ଏଣୁ ପାପପ୍ରାୟଶ୍ଚିତ୍ତ ପ୍ରଣୀଏ କରିବେ ।
ଲାଜେ ଭୟେ ପାପକୁ ଯେ ଲୁଚାଇରଖଇ
ପାପକୁ ଯେ ପ୍ରାୟଶ୍ଚିତ୍ତ ତାହା ନମାନଇ ।
ମନେ କରଇ ମୋ ପାପ ଦେଖି ନାହିଁକେହି
ଲୁଚାଇ କାକଥା କିମ୍ପା ଦେବଇଁ ମୁଁ କହି ।
ଯେବେକି ଏଥିରେ ପାପ ହୁଅଇ ନିଶ୍ଚୟ
ପ୍ରାୟଶ୍ଚିତ କଲେ ତାହା ହେବ କାହୁଁକ୍ଷୟ ।
ମାଟିର ଏଦେହ ଗୋଟା ମାଟିରେ ମିଶିଲା
ପ୍ରାଣ ପବନ ପବନ ସଙ୍ଗେ ମିଶିଗଲା ।
ପବନକୁ ଧରିବାକୁ ଶକତି କାହାର
କେମନ୍ତେ ଧରି ନିଅନ୍ତି ଯମର କିଙ୍କର ।
ସ୍ୱର୍ଗ ନର୍କ ଯମବୋଲି ଅଛଇବା କାହିଁ
ଏ ମିଛ କଥାରେ କିମ୍ପା ଭୁଲିବଇଁ ମୁହିଁ ।
ଏମନ୍ତ ମନରେ ଭାଳି ପାପକୁ ଲୁଚାଇ
ପ୍ରାୟଶ୍ଚିତ୍ତ ନକରଇ ମରଣ ଲଭଇ ।
କଳ୍ପକୋଟି ଶତ କାଳ ପଡ଼ଇ ନରକେ
ଯେ ପାପକରେ କରାଇ କାୟମନ ବାକ୍ୟେ ।
ଶେଷେ ତାର ଅଧୋଗତି ହୁଅଇ ନିଶ୍ଚୟ
ତ୍ରିବିଧ ପାପ ସଂକ୍ଷେପି କହିଲିହେ ରାୟ ।
ପାପୀଲୋକର କହିଲି ଏ ବିଚିତ୍ର ଗତି
ଆଉକି କହିବି ତାହା ପଚାର ନୃପତି ।
ଅଧର୍ମ ଫଳ ଯେତେକ କହିଲି ବୁଝାଇ
ଧର୍ମଫଳ କହିବଇଁ ଏବେ ନରସାଇଁ
ଯଯାତି ରାଜା ଶୁଣଇ କହଇ ମାତଳି ।
ଗୋପୀନାଥକୁ ଯେ ଦୟାକର ବନମାଳୀ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ
ବେନୋପାଖ୍ୟାନେ ମାତୃପିତୃ ତୀର୍ଥ
ବର୍ଣ୍ଣନେ ଯଯାତି ଚରିତେ
ସପ୍ତଷଷ୍ଟୀତମୋଽଧ୍ୟାୟଃ ।



## ଅଷ୍ଟଷଷ୍ଠି ଅଧ୍ୟାୟ

### ସୁକୃତ କର୍ମଫଳ କଥନ

ଯଯାତି କହିଲେ ଶୁଣ ହେ ସୂତ ମାତଳି
କହିଲ ଅଧର୍ମଫଳ ସବୁ ମୁଁ ଶୁଣିଲି ।
ଧର୍ମର ଫଳ ଶୁଣିବାପାଇଁ ମୋର ମନ
ମାତଳି କହିଲେ ଶୁଣ ଯଯାତି ରାଜନ ।
ଚାରିଖାନି ଜୀବଜନ୍ତୁ ପାପକରି କରି
ଅବଶ ହୋଇ ଅଳପଦିନେ ଯାନ୍ତି ମରି ।
ଯନ୍ତ୍ରଣା ଭୋଗକରନ୍ତି ଯାଇଁ ଯମପୁରେ
ସ୍ତିରୀକି ପୁରୁଷ ନପୁଂସକ ଏ ଉଦରେ ।
ବାଳକ ତରୁଣ ଯୁବା ବୃଦ୍ଧ ଜୀବଚାରି
ଯମପୁରେ ଯାନ୍ତି ନିଶ୍ଚେ ଜାଣ ଦଣ୍ଡଧାରୀ ।
ଚିତ୍ରଗୁପତ ଆଦି ଯେ ମଧ୍ୟସ୍ଥ ପଣରେ
ପାଞ୍ଜିଫିଟାଇ ବିଚାର କରନ୍ତି ସଭାରେ ।
ଶୁଭାଶୁଭ କର୍ମଫଳ ଯମକୁ ଜାଣନ୍ତି
ଯମ ଯେ ତହିଁର ଦଣ୍ଡ ବିଧାନ କରନ୍ତି ।
ଯମ ଭୁବନେ ନଯିବା ପ୍ରାଣୀନାହିଁ ଜଣେ
ଚିତ୍ରଗୁପତ ଆଦି ଯେ ବିଶୋଇ କରଣେ ।
ତାହାଙ୍କ ପାଞ୍ଜିରେ ସବୁ ଲେଖି ରଖିଛନ୍ତି
ସେ ପାପ ପୁଣ୍ୟରଫଳ ପ୍ରାଣୀଏ ଭୁଞ୍ଜନ୍ତି ।
ଶୁଭକର୍ମେ ରତ ମନ ନିର୍ମଳ ଯାହାର
ଜୀବରେ ଦୟା ଯାହାର ଥାଇଟି ଆବର ।
ଉତ୍ତମବାଟ ଦେଇ ସେ ଯମପାଶେ ଯାନ୍ତି
ଯୋତା କଠାଉ ବିପ୍ରଙ୍କୁ ସେ ଦାନଦିଅନ୍ତି ।
ସେ ଅତିସୁନ୍ଦର ବଡ଼ ବିମାନ ଉପରେ
ସୁଖେ ବସିଯାନ୍ତି ଯମରାଜାର ଛାମୁରେ ।
ଗଗନ ମାର୍ଗରେ ଯାଏ ଛତ୍ର ଦାନ କାରୀ
ବସ୍ତ୍ରଦାନକାରୀ ଦିବ୍ୟ ବସ୍ତ୍ର ପରିହରି ।
ଯମଭୁବନକୁ ଯାଏ ଜାଣ ଦଣ୍ଡଧାରୀ
ସଲିଳ ଦାନରେ ତୃପ୍ତ ତୃଷାର୍ତ୍ତ ଯେପରି ।
ଶିବିକାଦାନ ଯେ କରେ ସେ ଚଢ଼ି ବିମାନ
ସୁଖେ ଯମଭୁବନକୁ କରଇ ଗମନ ।
ସୁଖାସନ ଦାନକାରୀ ସୁଖରେ ଗମଇ
ଆରାମଦାନ ବିପ୍ରକୁ ଯେ ଜନ ଦିଅଇ ।
ଶୀତଳ ଛାୟା ପଥରେ ଯାଏ ଯମପୁରେ
ସେଥିଯୋଗୁଁ ଯମ ତାକୁ ରଖେ ଆରାମରେ ।
ଫୁଲବଗିଚା ବିପ୍ରକୁ ଯେ ଜନ ଦିଅଇ
ପୁଷ୍ପକଯାନ ଚଢ଼ି ସେ ଯମପୁରେ ଯାଇ ।
ଦେବତାଙ୍କ ଆୟତନ ଯେ ଦିଅଇ କରି
ଯତିଙ୍କୁ ଆଶ୍ରୟଦିଏ ଜାଣ ଦଣ୍ଡଧାରୀ ।
ଅନାଥମଣ୍ଡପକୁ ଯେ ପ୍ରତିଷ୍ଠା କରଇ
ଉତ୍ତମଗୃହେ ସେ କ୍ରୀଡ଼ାକରି କରି ଯାଇ ।
ଗୁରୁ ଅଗ୍ନିଦେବ ଦ୍ୱିଜ ମାତା ପିତା ପୂଜା
କରୁଥିବା ଲୋକକୁ ଯେ ଯମପୁର ରାଜା ।
ବହୁ ଆଦରକରିଣ ଆସନେ ବସାଇ
ସେ ଯାହା ମାଗଇ ତାକୁ ଦିଅଇ ଯୋଗାଇ ।
ଶ୍ରଦ୍ଧାରେ ଯେ ଗୁଣବନ୍ତ ଦରିଦ୍ରବିପ୍ରକୁ
କିଛି ଦେଇଥିଲେ ସବୁ ଦ୍ରବ୍ୟମିଳେ ତାକୁ ।
ଶ୍ରାଦ୍ଧଦିନ ଶରଧାରେ ଯେ ଦିଅଇ ଦାନ
ବାଳ ପରିମାଣହେଲେ ସେ ଦାନ ପ୍ରଧାନ ।
ଶ୍ରାଦ୍ଧେ ଯେଉଁ ଚାରିଗୋଟି ପାତ୍ରଅଛି ଲେଖା
ତହିଁରେ ମୋର ଶରଧା ସବୁବେଳେ ରଖା ।
ଶରଧା ଥିବାରୁ ମୋର ମୁଁ ଶ୍ରାଦ୍ଧ କରଇ
ଏମନ୍ତ ମନରେ ଭାଳି ଯେ ଶ୍ରାଦ୍ଧ ଦିଅଇ ।
ଶରଧାବଳେ ସକଳ ପାପ ଯମପୁରେ
ତାର ପିତୃଲୋକେ ସୁଖେ ବସନ୍ତ ସ୍ୱର୍ଗରେ ।
ଗୁଣବନ୍ତ ବୃଦ୍ଧ ବିପ୍ର ଡାକି ଯେଉଁଜନ
ଶରଧାରେ ଘରତୋଳି ଦେଇ କରେ ଦାନ ।
ସେ ଯାହାମାଗଇ ତାହା ପାଏ ଯମଦ୍ୱାରେ
କାକିଣୀ ପ୍ରମାଣେ ଦ୍ରବ୍ୟ ଯେ ଜନଶ୍ରଦ୍ଧାରେ ।
ବିପ୍ରକୁ ଦାନଦିଅଇ ସ୍ୱର୍ଗକୁ ସେ ଯାଇ
ଦେବଲୋକଙ୍କର ଘରେ ଅତିଥି ହୁଅଇ ।
ଏଣୁ ସମସ୍ତେ କରିବେ ଶରଧାରେ ଦାନ
ରାତିଦିନ ଗୋପୀନାଥ ଡାକେ ଭଗବାନ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ସୁକୃତ କର୍ମଫଳ ବର୍ଣ୍ଣନେ ଯଯାତି
ଚରିତେ ଅଷ୍ଟଷଷ୍ଠୀତମୋଽଧ୍ୟାୟଃ ।



## ଊନସପ୍ତତି ଅଧ୍ୟାୟ

### ବିବିଧ ଶିବଧର୍ମ କଥନ

ମାତଳି କହଇ ଶୁଣ ନହୁଷ ନନ୍ଦନ
ଶିବ କହିଥିଲେ ଅଛି ଆଗମେ ଯେ ଧର୍ମ ।
କର୍ମଯୋଗଭେଦେ ଧର୍ମ ନାନାଦି ପ୍ରକାର
ଲେଖି ଯାଇଛନ୍ତି ଶାସ୍ତ୍ରେ ମନୁ ଋଷିବର ।
ଯାହାଠାରେ ହିଂସାଆଦି ଦୋଷ କିଛିନାହିଁ
ଯେହୁ କଷ୍ଟ ପରିଶ୍ରମ ମନେ ନ ଧରଇ ।
ସବୁ ପ୍ରାଣୀଙ୍କର ହିତକାରୀ ଯେ ଅଟଇ
ଯାର ଶୁଦ୍ଧ ସୂକ୍ଷ୍ମତନୁ ମହାଫଳଦାୟୀ ।
ଶାଖା ପ୍ରଶାଖା ଯାହାର ସୀମାନାହିଁ କେତେ
ଜ୍ଞାନ ଧ୍ୟାନ ଫୁଲ ଦୁଇ ଫୁଟିଥାଇ ନିତ୍ୟେ ।
ସେ ଶିବ ଏକା ଅଟନ୍ତି ମଙ୍ଗଳର ମୂଳ
ସେ ଶିବନାମକୁ ମୁଖେ ଘୋଷିବ କେବଳ ।
ଧ୍ୟାନଧାରଣାରେ ଶିବନାମ ଜପୁଥିବ
ଏ ଧର୍ମରନାମ ଶିବଧର୍ମ ଯେ ଜାଣିବ ।
ଏ ଧର୍ମଗୋଟି ସଂସାର ସାଗରୁ ତାରଇ
ସାଧନଧର୍ମ ଆବର ଦଶଟି ଅଛଇ ।
ଅହିଂସା ଯେ କ୍ଷମା ସତ୍ୟ ଲଜ୍ଜା ଶ୍ରଦ୍ଧା ପୁଣି
ଧ୍ୟାନ ପୂଜା ତପ ଦାନ ଜାଣ ନୃପମଣି ।
ଶିବଭକତିରେ ମନ ରସିଛି ଯାହାର
ସେଯେବେ ବ୍ୟସ୍ତେ ଏ ଶିବଧର୍ମକରେ ତାର ।
ଏକମାତ୍ର ଗତି ପୂର୍ବ ହୋଇଛି କଳ୍ପିତ
ସବୁପ୍ରାଣୀର ଆଧାର ପୃଥିବୀ ଯେମନ୍ତ ।
ଶିବଲୋକ ସେହିରୂପେ ଶିବଙ୍କର ସ୍ଥାନ
ସବୁକଥା ଥାଇ ଏହି ପୃଥ୍ବୀରେ ଯେସନ ।
ସବୁ ପ୍ରାଣୀଙ୍କର ସବୁ ଭୋଗଥାଇ ରହି
ଶିବଲୋକେ ରହିଅଛି ଶିବ ଭକ୍ତପାଇଁ ।
ପୁଣ୍ୟଯେତେ ଭୋଗତେତେ ଏକଥା ନିଶ୍ଚୟ
ଶିବଭକତଙ୍କ ଶୁଭାଶୁଭ ଫଳ ରାୟ ।
ଶିବଧର୍ମ ଫଳେ ତହିଁ ଭୋଗ କରୁଥାନ୍ତି
ଶ୍ରଦ୍ଧା ସେ ଧର୍ମରପାତ୍ର ଜାଣ ମହୀପତି ।
ଯେତିକି ଶ୍ରଦ୍ଧା ତେତିକି ଭୋଗ ପୁଣ୍ୟଫଳ
ଶାନ୍ତିମୟ ସ୍ଥାନ ନାହିଁ ଶିବଲୋକ ତୁଲ୍ୟ ।
ଶିବଭକତେ କେବଳ ଅଛନ୍ତି ସେ ଲୋକେ
ନପାଇ ସେ ଲୋକପୁଣ୍ୟ କରି ଅଳପକେ ।
ଶାନ୍ତିମୟ ଭୋଗସବୁ ବିରାଜଇ ତହିଁ
ମହା ପୁଣ୍ୟବଳେ ସେହି ମହାଭୋଗ ପାଇ ।
ସବୁ ଦେବଙ୍କ ଉପରେ ଦେବ ଏକା ଶିବ
ଏମନ୍ତ ମନ ମଧ୍ୟରେ ଭାଳି ଯେଉଁ ଜୀବ ।
ଶିବଶିବ କହୁଥାଇ ଶିବ ପୂଜୁଥାଇ
ଏ ସଂସାରେ ସେହି ଶିବଭକତ ବୋଲାଇ ।
ସେହି ଶିବ ଏକା ସବୁ ଜଗତର ପତି
ଏଣୁ ଶିବଲୋକେ ସବୁ ଭୋଗମିଳେ ନିତି ।
ଜ୍ଞାନଯୋଗେ ରତହୋଇ କେହିକେହି ନର
ମୁକତି ଲଭନ୍ତି ପୁଣି ଯାଇ ଶିବପୁର ।
ସଂସାର ସୁଖଭୋଗରେ ରହି କେହି ପ୍ରାଣୀ
ଏ ସଂସାରେ ଜନମନ୍ତି ଆସି ପୁଣିପୁଣି ।
ଏଣୁ ମୁକତିକାମନା ଥାଇ ଯାହାଙ୍କର
ଭୋଗ ଆସକତି ତ୍ୟାଗକରିବେ ସତ୍ୱର ।
ବିଷୟ ଭୋଗେ ବିରକ୍ତି ଯାହାର ଆସଇ
ଶାନ୍ତିଚିତ୍ତେ ଇନ୍ଦ୍ରିଜିଣି ଶିବ ଜ୍ଞାନପାଇ ।
ଶିବ ଆସକତ ଚିତ୍ତ ନୁହଇ ଯାହାର
ସେ ଯେବେ କି ଶିବପୂଜା କରେ ଏକବାର ।
ତାର ଭାବ ଅନୁସାରେ ସ୍ଥାନ ତାକୁ ମିଳେ
ଯେ ଲୋକର କଳମଷ ନାହିଁ ପୁଣି ତିଳେ ।
ସେ ଯେବେ ଶିବଙ୍କୁ ପୂଜାକରେ ଏକବାରେ
ଶିବ ତାହାକୁ ବସାନ୍ତି ପିଶାଚଲୋକରେ ।
ଏଥିରେ ସଂଶୟ ନାହିଁ ଜାଣ ନୃପବର
ଯେ ଭୋଗ ପିଶାଚଙ୍କର ଯେ ଭୋଗତାହାର ।
ଦୁଃଖେ ସନ୍ତାପିତହୋଇ ମରନ୍ତି ଯେ ଦେହୀ
ଅନ୍ନଦାତା ପୁଣ୍ୟଦାତା ପ୍ରାଣଦାତା ଯେହି ।
ସର୍ବଦା ତା ବୋଲି ସେହି ସଂସାରେ ବୋଲାଇ
ଅନ୍ନଦାନେ ସବୁଦାନ ଫଳ ଯେ ମିଳଇ ।
ଯେ ସବୁ ରତ୍ନ ଅଛଇ ଏ ତିନିଭୁବନେ
ବସନ ବାସନ ଦାରାଧନ ଯାନଦାନେ ।
ଯେ ସବୁଫଳ ସେ ସବୁମିଳେ ଦେଲେ ଅନ୍ନ
ଅନ୍ନଦାନ ସମକେହି ନୁହଇ ରାଜନ ।
ଅନ୍ନଦାନ ଦାନକାରୀ ଇହ ପରକାଳେ
ସବୁଦ୍ରବ୍ୟ ଭୋଗକରେ ମନ ଅନୁସାରେ ।

ବପୁବନ୍ତ ହୋଏ ଲୋକ ଯାର ଅନ୍ନଖାଇ
ସେଦେହରେ ଯେତେ ସେହି ପୁଣ୍ୟ ଅରଜଇ ।
ତାର ସେ ପୁଣ୍ୟରୁ ଅଧେପାଏ ଅନ୍ନଦାତା
ଏହିଦେହ ଚଉବର୍ଗ ସାଧନ କରତା ।
ଦେହଥିଲେ ଧର୍ମ ଅର୍ଥ କାମ ମୋକ୍ଷପାଇ
ନଖାଇଲେ ନ ପିଇଲେ ଏ ଦେହ ନରହି ।
ଏଣୁ ଖାଇବା ପିଇବା ଏ ସବୁର ମୂଳ
ସାକ୍ଷାତରେ ଅନ୍ନପାନ ଜାଣ ବ୍ରହ୍ମଠୁଳ ।
ଅନ୍ନ ପ୍ରଜାପତି ବିଷ୍ଣୁଶିବ ଏହି ତିନି
ଖାଇଲେ ପିଇଲେ ତୋଷହୁଏ ଯେହ୍ନେପ୍ରାଣୀ ।
ତେମନ୍ତ ଆନ ଦାନରେ ନୁହଇ ତୃପତି
ବସନ ଭୂଷଣ ରତ୍ନ ଯେ ଯେତେ ଦିଅନ୍ତି ।
ଆହୁରି ନେବାପାଇଁ ତା ମନ ବଳୁଥାଇ
ଉଦର ପୂରିଲେ ଆଉ କଦାପି ନ ଖାଇ ।
ଏଣୁ ଅନ୍ନଦାନ ସମ ଦାନ ନାହିଁ ଆନ
ନହୋଇଛି ନ ହୋଇବ ଜାଣିଥା ରାଜନ ।
ତିନିଭୁବନ ଜନର ଜୀବନ ଯେ ଜଳ
ଅତି ପବିତ୍ର ସେ ପୁଣି ଅତି ନିରିମଳ ।
ସ୍ୱର୍ଗରେ ଅଛି ବିଶୁଦ୍ଧ ରସାୟନ ଯେତେ
ଜଳ ଏକା ତାର ମୂଳ ଜାଣ ମହୀପତେ ।
ତାର ତୁଳନାରେ ଜଳ ହୋଇବ ସମାନ
ପ୍ରେତଲୋକରେ ପ୍ରଧାନ ଆଠଗୋଟି ଦାନ ।
ଏକ ଏକ କରି ତାହାକହିବା ବୁଝାଇ
ଅନ୍ନଦାନ ଜଳଦାନ ଅଶ୍ୱଗୋରୁ ଦୁଇ ।
ବସନ ଆବର ଶଯ୍ୟା ସୂତା ଯେ ଆସନ
ଏହି ଆଠଗୋଟି ଦାନ ଦେଇଥିଲେ ଜନ ।
ସୁଖରେ ଯମପୁରକୁ ଗମନ କରଇ
ଯମପଥେ ଯିବାବେଳେ ଏ ସକଳ ପାଇ ।
ସବୁ ଦାନ ଧର୍ମକରି ହୋଇ ସଦାଚାରୀ
ଏ ଆଠଦାନ ନଦେଇ ଯାଇ ଯେବେ ମରି ।
ଯମପଥେ ଯିବାବେଳେ ପାଏ ନାନା ଦୁଃଖ
ପଛେ ତାର ପୁଣ୍ୟବଳେ ପାଏ ପୁଣି ସୁଖ ।
ଦାନ ନ ଦିଅଇ ଯେହୁ ଧର୍ମ ନ କରଇ
ସେ ପାପୀ ଘୋର ନରକ କୁଣ୍ଡରେ ପଡ଼ଇ ।
ନିଦାରୁଣ ଦୁଃଖ ଭୋଗ କରଇ ଆବର
ଦାନୀ ଯେଉଁ ସୁଖଭୋଗ କରେ ନୃପବର ।

କର୍ମ ଯୋଗବନ୍ତ ପ୍ରାଣୀ ପାଏ ସେହି ସୁଖ
ଶିବଲୋକରେ ଅଛନ୍ତି ଲୋକ ଯେ ଅସଂଖ୍ୟ ।
ତାହାଙ୍କର ଗୁଣ କେତେ ନାହିଁ ତା ପ୍ରମାଣ
ଅଛଇ କାମନା ଦାନୀ ଅପୂର୍ବ ବିଧାନ ।
ତାହାର କଳନା କରି ନପାରିବ କେହି
ଶିବଲୋକେ ବସିବ ଯେ ଚିରକାଳ ଯାଇ ।
ଅଶେଷ ଯେ ରୁଦ୍ରଲୋକ ଅଛଇ ନୃପତି
ସହସ୍ର ସହସ୍ର ଚନ୍ଦ୍ର ସୂର୍ଯ୍ୟପ୍ରାୟ ଜ୍ୟୋତି ।
ସ୍ଥାବର କିବା ଜଙ୍ଗମ ହେଉ ଶିବଭକ୍ତ
ମଲେ ସେ ପୁରେ ବସନ୍ତି ହୋଇ ଗୁଣବନ୍ତ ।
ଦିନେ ଶିବ ପୂଜାକଲେ ଶିବଲୋକ ଯାଇ
ବହୁତଥର ଯେ ଶିବ ପୂଜା କରିଥାଇ ।
ତାହାର ପୁଣ୍ୟର କଥା କହିଲେ ନ ସରେ
ବିଷ୍ଣୁ ଦେବତାଙ୍କୁ ଯେଉଁ ଜନ ଧ୍ୟାନକରେ ।
ସେ ଜନ ବିଷ୍ଣୁ ଭକତ ବଇଷ୍ଣବ ଜାଣ
ବଇକୁଣ୍ଠପୁରେ ଯହିଁ ଦେବ ନାରାୟଣ ।
ସେମାନେ ତାଙ୍କ ପାଖକୁ ଗମନ କରନ୍ତି
ସେ ଧର୍ମ ଆତ୍ମା ବ୍ରହ୍ମକୁ ଯେ ଚିହ୍ନିପାରନ୍ତି ।
ବ୍ରହ୍ମଲୋକକୁ ଗମନ କରନ୍ତି ସେ ମଲେ
ପୁଣ୍ୟକାରୀଜନ ଯେତେ ତାଙ୍କ ପୁଣ୍ୟବଳେ
ପୁଣ୍ୟଲୋକକୁ ଗମନ କରନ୍ତି ରାଜନ
ପରମ ଆତ୍ମା ଈଶ୍ୱର ଦେବ ଜନାର୍ଦ୍ଦନ ।
ଏଣୁ ନିରତେ ଭକତି ରଖିବ ନୃପତି
ଏରୂପେ ଶ୍ରୀହରି ପାଦେ ସର୍ବଦା ଯା ମତି ।
ଆପେ ଆପେ ମହାଜ୍ଞାନୀ ହୁଅଇ ସେ ଜନ
ସକଳ ପ୍ରକାର ଯେଉଁ ଭାବ ଦୋଷମାନ ।
ବିଚାର କରି ଉତ୍ତମ କର୍ମ ଯେ କରନ୍ତି
ଦଶପରକାର ସ୍ଥାନ ବିଷ୍ଣୁ ରଖିଛନ୍ତି ।
ତାଙ୍କ ଭାବ ଅନୁସାରେ ପାଆନ୍ତି ସେ ସ୍ଥାନ
ଶ୍ରୀବିଷ୍ଣୁର ପରସାଦେ ଜାଣିଥା ରାଜନ ।
କହିଲୁଁ ଯେ ଶିବପୁର ସବୁହୁଁ ମହତ
କର୍ମବନ୍ତ ଦେହିଙ୍କର ପୁର ଏହି ମର୍ତ୍ତ୍ୟ ।
ଶିବପୁର ଉପରକୁ ବଇଷ୍ଣବ ପୁର
ତହିଁରେ ବାସକରନ୍ତି ବିଷ୍ଣୁଭକ୍ତ ନର ।
ସଦାଚାରୀ ବ୍ରାହ୍ମଣ ଯେ ବ୍ରହ୍ମଲୋକେ ବସେ
ତତ୍ତ୍ୱଜ୍ଞାନୀ ଯଜ୍ଞକାରୀ ଥାନ୍ତି ତାଙ୍କ ପାଶେ ।

ଯୁଦ୍ଧପ୍ରିୟ କ୍ଷତ୍ରିଙ୍କର ଇନ୍ଦ୍ରଲୋକେ ବାସ
ପୁଣ୍ୟଲୋକେ ପୁଣ୍ୟକାରୀ ଜନଙ୍କ ଉଆସ ।
ଦୀନଗୋପୀନାଥ ବୋଲେ ବୋଲ ହରିହରି
ଦୁସ୍ତର ଦୁରିତ ସିନ୍ଧୁ ହେଲେ ଯିବ ତରି ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ
ବେନୋପାଖ୍ୟାନେ ବିବିଧ ଶିବଧର୍ମ
କଥନେ ଯଯାତି ଚରିତେ
ଉନସପ୍ତତିତମୋଽଧ୍ୟାୟଃ ।



## ସପ୍ତତି ଅଧ୍ୟାୟ

### ଯମଲୋକ ପୀଡ଼ା ବର୍ଣ୍ଣନ

ମାତଳି କହିଲେ ମୁହିଁ ଏକ୍ଷଣି ରାଜନ
ନିଦାରୁଣ ଯମପୀଡ଼ା କରିବି ବର୍ଣ୍ଣନ ।
ନରକ ଅଗ୍ନିରେ ପାପୀ ପଚୁଥାନ୍ତି କାହିଁ
କାହିଁ ଯେ ପାପୀକି ସିଂହ ଦାନ୍ତେ କାମୁଡ଼ଇ ।
ବାଘ କାମୁଡ଼ଇ କାହିଁ କାମୁଡ଼ଇ ବୃକ
ସାଲୁ ସାଲୁ ହେଉଥାନ୍ତି ପାପୀଦେହେ ପୋକ
ବଡ଼ ବଡ଼ ଜୋକ ଲାଗିଥାନ୍ତି ପାପୀଦେହେ
କାହିଁ ପାପୀ ଅଜଗର ସାପମୁଖେ ରହେ ।
କାହିଁ ମାଛି ବେଢ଼ି ଥାନ୍ତି ପାପୀ ଦେହଯାକ
ମଲି ମଲି ବୋଲି ପାପୀ ଉଚ୍ଚେ ପାରେଡ଼ାକ ।
ସର୍ପଙ୍କ ବିଷରେ କାହିଁ ହୁଏ କଲବଲ
କାହିଁ ପାପୀ ମାଡ଼ଖାଇ ହୁଅଇ ବିକଳ ।
କାହିଁ ମତ୍ତଗଜ ଦାନ୍ତ ବଳେ ପ୍ରହାରଇ
ମହାବୃକ୍ଷ କାହିଁପାଇଁ ସିଂହରେ ଫୋଡ଼ଇ ।
ମଇଁଷି ସିଂହେ ତାଡ଼ଇ ପାପୀଙ୍କି ଯେ କାହିଁ
ବିକରାଳ ନିଶାଚର କାହାକୁ ଯେ ଖାଇ ।
ଡାକୁଣୀ ଖାଇ ଯାଆନ୍ତି କାହାକୁ ଯେବେଢ଼ି
ଡାଆଁଣୀ ଭୂତ ଖାଆନ୍ତି କାଦେହକୁ ମୋଡ଼ି ।
ମହା ବ୍ୟାଧିରେ ଯେ ପୀଡ଼ା ପାଉଥାଏ କାହିଁ
କାହା ଦେହଯାକ କପା ତୁଳାଦେଇ ଛାଇ ।
ଅଗ୍ନି ଲଗାଇ ଦେଇଣ ଦିଅନ୍ତି ଯେ ଜାଳି
ଝଞ୍ଜା ପବନରେ କାହା ଦେହ ଯାଏ ଜଳି ।
ଶୀତଳ ପବନ ଖାଇ କେହି ଥରୁଥାଇ
ପଥର ପକାନ୍ତି କାହାଦେହେ ଦୂତେ ନେଇ ।
ଦାରୁଣ ଉଲକା ପଡ଼େ କାହାର ଶରୀରେ
ତପତ ଅଙ୍ଗାର ବୃଷ୍ଟି ହୁଏ କା ଦେହରେ ।
ମହାପାଂଶୁ ବରଷଣ ହେଉଥାଇ କାହିଁ
ଏମନ୍ତେ ଦାରୁଣ ପାପଫଳ ପାପୀ ପାଇ ।
କହିଲେ ତ ନ ସରିବ ପାପୀ ପୀଡ଼ାଯେତେ
ପାପ କରିଥିବା ଲୋକେ ଭୋଗୁଥାନ୍ତି ନିତ୍ୟେ ।
ପାପପୁଣ୍ୟ ଫଳ ସବୁକହିଲି ବୁଝାଇ
ଆଉ କି କହିବି ତାହା କହ ନରସାଇଁ ।
ଦୀନ ଗୋପୀନାଥ ମୁଖେ ବୋଲେ ଶିବଶିବ
ଏ ଘୋର ଦୁସ୍ତର ପାପୁ ନିସ୍ତରିଣ ଯିବ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ
ଯମଲୋକ ପୀଡ଼ା ବର୍ଣ୍ଣନେ ଯଯାତି
ଚରିତେ ସପ୍ତତିତମୋଽଧ୍ୟାୟଃ ।



## ଏକସପ୍ତତି ଅଧ୍ୟାୟ

### ଦେବଲୋକ ସଂସ୍ଥିତି ବର୍ଣ୍ଣନ

ଯଯାତି କହିଲେ ଆହେ ସାରଥି ମାତଳି
ଧର୍ମ ଅଧର୍ମର ଫଳ ସକଳ ଶୁଣିଲି ।
ଦେବଲୋକଙ୍କ ସଂସ୍ଥିତି ସଂଖ୍ୟା କହ ଏବେ
ଯେଣୁ ଦେବଙ୍କ ପ୍ରସଙ୍ଗେ ଆସିଅଛ ତୁମ୍ଭେ ।
ତେଣୁ ତୁମ୍ଭ ମୁଖୁଁ ଶୁଣିବାକୁ ଶ୍ରଦ୍ଧା ମୋର
ମାତଳି କହିଲେ ଶୁଣ ତୁହୋ ନୃପବର ।
ଦେବ ଲୋକଙ୍କ ସଂସ୍ଥିତି କହୁଛି ବୁଝାଇ
ଯେମନ୍ତେ ସେ ଯୋଗଯୁକ୍ତ ସୁଖଭୋଗ ପାଇ ।
ଏ ସୁଖ ଭୋଗ ମିଳଇ ତପସ୍ୟାର ବଳେ
ବିନାକଷ୍ଟେ ଭିନ୍ନ ଭିନ୍ନ ଭାବେ ଯାହା ମିଳେ ।
ସେ ଧର୍ମ ଭାବ କହିବା ଶୁଣ ମନଦେଇ
ତା ଉପରେ ତାଉପରେ ଦେବଲୋକ ଥାଇ ।
ପୃଥ୍ୱୀ ଅଇଶ୍ୱର୍ଯ୍ୟ ଆଠଗୁଣ ମାଂସାକ୍ଷୀର
ତା ସମାନ ସାଙ୍ଗେ ସାଙ୍ଗେ ଯିବା ମାନବର ।
ଷୋଳଗୁଣ ରାକ୍ଷସଙ୍କ ଅଇଶ୍ୱର୍ଯ୍ୟ ଭୋଗ
ପୃଥ୍ୱୀରାଜ ଅଇଶ୍ୱର୍ଯ୍ୟ ଭୋଗ ତାଙ୍କ ସଙ୍ଗ ।

ରାକ୍ଷସଙ୍କ ଭୋଗ ଯେତେ ରାଜାଙ୍କର ତେତେ
ଆଉ ଦେବତା ଗନ୍ଧର୍ବ ଅଛନ୍ତି ଯେଯେତେ ।
ତାଙ୍କ ତେଜ ଅଇଶ୍ୱର୍ଯ୍ୟ ବଂଶରୁ ଜାଣିବ
ଯକ୍ଷ ଗନ୍ଧର୍ବଙ୍କ ସ୍ଥାନ କୋଣ ଯେ ବାୟବ୍ୟ ।
ଇନ୍ଦ୍ରର ଲୋକ ସଂସ୍ଥିତି ପଞ୍ଚ ମହାଭୂତେ
ବିସ୍ତାର ତାର ଚାଳିଶ ଯୁଗ ପରିଯନ୍ତେ ।
ପଞ୍ଚ ମହାଭୂତରେ ଯେ ସୋମଲୋକ ସ୍ଥିତି
ଷୋଡ଼ଶ କଳା ଗୁଣରେ ତାହାର ବସତି ।
ବିଶ୍ୱେଶ ମାନସ ଦିବ୍ୟ ଲୋକ ତାକୁ କହି
ପ୍ରଜାପତି ଗଣ ତହିଁ ଅଛନ୍ତି ଯେ ରହି ।
ଗୁଣରେ ଅଧିକ ସୋମ ଲୋକ ଅହଙ୍କାରେ
ଚଉଷଠି ଗୁଣ ବ୍ରହ୍ମ ଲୋକ ତଦୁତ୍ତାରେ ।
ଜ୍ଞାନ ଆଉ ଅଇଶ୍ୱର୍ଯ୍ୟ ପୂରିଛି ସେ ଲୋକ
ବ୍ରହ୍ମପଦ ଅଇଶ୍ୱର୍ଯ୍ୟ ମୟ ବିଷ୍ଣୁଲୋକ ।
ଦିବ୍ୟ ଶିବଲୋକ ସର୍ବ କାମନା ଦିଅଇ
ଶିବ ଅଇଶ୍ୱର୍ଯ୍ୟ ଗୁଣ ଅନନ୍ତ ଅଟଇ ।
ଆତ୍ମା ଗୁଣରେ ସେ ଲୋକ ଅଟଇ ପ୍ରଧାନ
ବିଶୁଦ୍ଧ ସେ ପୁଣି ଆଦି ମଧ ଅନ୍ତ ଶୂନ୍ୟ ।
ତତ୍ତ୍ୱ ଲକ୍ଷଣ ତହିଁରେ ପୁରି ରହିଅଛି
ସକ୍ଷ ଅନୁପମ ଜ୍ୟୋତି ରୂପେ ବିରାଜୁଛି ।
ପର ତହୁଁ ପର ପୂର୍ଣ୍ଣ ଜଗତ କାରଣ
ପଶୁ ପାଶ ବିମୋକ୍ଷଣ ଅଟେ ତାର ଗୁଣ ।
ଯେଜନ ସେଲୋକ ପାଏସେଭୋଗସେପାଇ
ଈଶ୍ୱରଙ୍କ ପରସାଦେ ବିମାନ ମିଳଇ ।
ନାନାପ୍ରକାରେ ବିମାନା ଅଛଇ ସେ ପୁରେ
କେତେକୋଟି ତାର ସଂଖ୍ୟା କେହିହି ନପାରେ ।
ତା ମଧରେ ଅଠାଇଶ ଗୋଟି ଯେ ବିମାନ
ଅଛଇ ଅତି ଉଜ୍ଜ୍ୱଳ ସୁନ୍ଦର ଶୋଭନ ।
ସେ କେବଳ ପୂର୍ଣ୍ୟବନ୍ତ ଜନଙ୍କ ନିମନ୍ତେ
କାହାରି ସମ୍ପର୍କେ କେହି ଲୋକ ଅକସ୍ମାତେ ।
କଉତୁକେ ଲୋଭେ କିବା କଉଣସି କାଳେ
ଶିବଙ୍କୁ ପ୍ରଣମେ ତାକୁ ଏ ବିମାନ ମିଳେ ।
ଯେ ଜନ ସଙ୍କଟବାଧାରେ ପଡ଼ି ପ୍ରଣମଇଁ
ଶିବ ନାମ ସଂକୀର୍ତ୍ତନ କି ଅବା କରଇ ।
କଦାପି ତାର ବିଳୟ ନାହିଁ ହେ ରାଜନ
ଯେ ଲୋକ ଶିବଲୋକକୁ କରିଣ ଗମନ ।

ଶିବ ଭାବ ଭାବି ଭାବି ମଜ୍ଜିଯାଇ ତହିଁ
ଶିବଙ୍କ ନିମନ୍ତେ କର୍ମ କରୁଥାଇ ରହି ।
ଏହି ଯେ ମହତୀ ଗତି ନୁହଇ ତାହାର
କଥା ପ୍ରସଙ୍ଗେ ଶିବଙ୍କୁ ସ୍ମରେ ଯେ ନର ।
ତାହାକୁ ଏହି ଅତୁଳ ସଉଖ୍ୟ ମିଳଇ
ଶିବ ଭକତର ସୁଖ କହି ନ ନୁହଇ ।
ଯାହାର ମନ ଧ୍ୟାନରେ ହୋଇ ନିମଗନ
ବିଷ୍ଣୁ ଚିନ୍ତାକରେ ତାର ବୈକୁଣ୍ଠେ ଗମନ ।
ଶିବରୂପ ବିଷ୍ଣୁରୂପ ଏକଇ ଯେ ରୂପ
ଏଥିରେ କିଛି ପ୍ରଭେଦ ନାହିଁ ଜାଣ ନୃପ ।
ଯେ ସାଧୁ ଦୁଇ ଦେବଙ୍କୁ ନକରେ ଅନ୍ତର
ଶିବଙ୍କୁ ବିଷ୍ଣୁ ରୂପରେ ପୂଜେ ନିରନ୍ତର ।
ବିଷ୍ଣୁଙ୍କୁ ଶିବରୂପରେ ପୁଣି ସେ ପୂଜଇ
ଶିବର ହୃଦୟ ବିଷ୍ଣୁ ହୃଦୟ ଏକଇ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଏକଇ ମୂରତି
ଗୁଣଘେନି ତିନିଗୋଟି ରୂପେ ଉତପତ୍ତି ।
ଆପଣ ଶିବଙ୍କ ଭକ୍ତ ହୁଅନ୍ତୁ ନୃବର
ଶ୍ରୀବିଷ୍ଣୁ ଭକତ କିବା ହୁଅନ୍ତୁ ଆବର ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ହୋଇବେ ପ୍ରସନ୍ନ
ନିଶ୍ଚେ ଜାଚି ବର ଦେବେ ଜାଣିଥା ରାଜନ ।
ଇନ୍ଦ୍ର ବଚନେ ଆସିଛି ତୁମ୍ଭ ସନ୍ନିଧାନେ
ଇନ୍ଦ୍ରଲୋକକୁ ଗମନ କରନ୍ତୁ ଆପଣେ ।
ଏ ଦିବ୍ୟ ବିମାନେ ପଛେ କରିବ ଗମନ
ବ୍ରହ୍ମଲୋକ ତହୁଁ ମହେଶ୍ୱର ଯେ ଭଜନ ।
ବଇଷ୍ଣବ ଲୋକ ଯହିଁ ଦାହଲୟ ନାହିଁ
ଆପଣ ଦିବ୍ୟ ମୂରତି ଧର ନରସାଇଁ ।
ଏ ସୁଖଗାମୀ ପୁଷ୍ପକ ବିମାନରେ ବସ
ମନୋହର ସୁଖ ଭୋଗ କରିବ ଅବଶ୍ୟ ।
ସୁକର୍ମା କହିଲେ ଶୁଣ ଆହେ ଦ୍ୱିଜବର
ମାତଳି ଏରୂପେ କହି ଯଯାତି ଆଗର ।
ମଉନେ ରହିଲେ ଆଉ ନ କହିଲେ କିଛି
ଦୀନ ଗୋପୀନାଥ ନିତି ଭଜେ ଶିରୀବତ୍ସ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ଦେବଲୋକ ସଂସ୍ଥିତି ବର୍ଣ୍ଣନେ
ଯଯାତି ଚରିତଂ ନାମ
ଏକ ସପ୍ତତିତମୋଽଧ୍ୟାୟଃ ।

## ଦ୍ୱିସପ୍ତତି ଅଧ୍ୟାୟ

### ଯଯାତିର ସ୍ୱର୍ଗ ଗମନ ଅସ୍ୱୀକାର

ବୋଇଲେ ପିପ୍‌ପଳ ବିପ୍ର ହେ ସୁକର୍ମା ଦ୍ୱିଜ
ମାତଳି ବଚନ ଶୁଣି ନହୁଷ ଆତ୍ମଜ ।
କି ଉତ୍ତର ଦେଲେ ତାହା କହିବା ବିସ୍ତାରି
ସବୁ ପାପ ଛାଡ଼ିଯିବ ଶୁଣିଲେ ମୋହରି ।
ଏମନ୍ତ ଶୁଣି ବୋଇଲେ ସୁକର୍ମା ବ୍ରାହ୍ମଣ
ମାତଳିକି କହିଲେ ଯେ ଯଯାତି ରାଜନ ।
ଆହେ ଦୂତ ଏ ଦେହ ମୁଁ ଛାଡ଼ି ନ ପାରଇ
ପୃଥ୍ୱୀଛାଡ଼ି ସ୍ୱର୍ଗପୁରେ କେଭେ ନ ଯିବଇଁ ।
କହିଲ ଯେବେ ଦେହର ଦୋଷସବୁ ମୋତେ
ତଥାପି ଏ ଦେହ ଛାଡ଼ି ନପାରେ କିଞ୍ଚିତେ ।
ସ୍ୱର୍ଗକୁ ନଯିବି ସ୍ୱର୍ଗ ଭୋଗ ନ କରିବି
କିଛିକାଳ ପାଇଁ କିମ୍ପା ଏ ଦେହ ତେଜିବି ।
ବୋଲୁଛ ଦେହ ଧରନ୍ତି ପୁଣ୍ୟକ୍ଷୟେ ପୁଣି
ଯେ ଯେତେକ ପାପକାରୀ ପୁଣ୍ୟକାରୀ ପ୍ରାଣୀ ।
ତୁମ୍ଭେ ଏଥୁ ଫେରିଯାଇ ଇନ୍ଦ୍ରଙ୍କୁ କହିବ
ଆହେ ମହାମତି ଏଥେ ଦେହ କିବା ଯିବ ।
ସାଂସାରିକ ସିଦ୍ଧି ଲଭି ନପାରଇ ଏକା
ଦେହକୁ ଛାଡ଼ିଲେଜୀବ ହୁଅଇ ତାଟକା ।
ଜୀବକୁ ଛାଡ଼ିଲେ ଦେହ ରହି ନ ପାରଇ
ମଇତ୍ର ହେବେ ଯେମନ୍ତେ ଜୀବ ଦେହ ଦୁଇ ।
ତାହା ମୁଁ କରିବି ନିଶ୍ଚେ ନ କରିବି ନାଶ
ଦେହ ପରସାଦେ ଜୀବ ସୁଖେ କରି ବାସ ।
ସବୁ ଭୋଗ ଉପଭୋଗ ଆନନ୍ଦେ କରଇ
ସ୍ୱର୍ଗ ଭୋଗ୍ୟକୁ ସେ ଭୋଗବୋଲି ନଗଣଇ ।
ପାପ ଜରା ଦୋଷେ ଦେହ ହୁଅଇ ଦୁଷିତ
ତେଣୁ ଏ ଦେହରେ ନାନା ବ୍ୟାଧିହୁଏ ଜାତ ।
ମୋର ଷୋଳ ବରଷର ଦେହ ପୁଣ୍ୟମୟ
ଦେବ ବରଷେ ପଞ୍ଚାଶ ବରଷ ଏ କାୟ ।
ଜନ୍ମବଧି ଆଜିଯାଏ ନୂତନ କେମନ୍ତେ
ହେ ଦୂତ ବୟସ ମୋର ଗଲାଣିତ କେତେ ।
ତଥାପି ଷୋଳ ବର୍ଷିଆ ଯୁବାପ୍ରାୟ ଶୋହେ
ଗ୍ଲାନି ହାନି ଶ୍ରମ ବ୍ୟାଧି ଜରାନାହିଁ ଦେହେ ।
ବେଳୁଁ ବେଳ ଧର୍ମେ ନିତ୍ୟ ଉତ୍ସାହ ବଢ଼ଇ
ଧର୍ମ ପରମ ଔଷଧି ନିତ୍ୟ ମୁଁ ପିଅଇ ।
ତେଣେ ପାପ ବ୍ୟାଧିନାଶ ହୁଅଇ ମୋହର
ଦିବ୍ୟ ଧର୍ମାର୍ଥରେ ଶୋଧା ହୋଇଛି ମୋକାୟ ।
ହେ ଦୂତ ମୁଁ ନିତ୍ୟକରେ ହୃଷୀକେଶଧ୍ୟାନ
ହୃଷୀକେଶ ନାମ ସୁଧାରସ କରେ ପାନ ।
ପାପ ଆଦି ବ୍ୟାଧିନାଶ ହେଉଛିମୋତେଣେ
ଯେତେକ ମୂଢ଼ ଅଜ୍ଞାନୀ ଏ ସଂସାର ଜନେ ।
କୃଷ୍ଣ ନାମ ରସାୟନ ନ କରନ୍ତି ପାନ
ଅଳପ ବୟସେ ଯାନ୍ତି ଯମ ନିକେତନ ।
ଦାନ ଧ୍ୟାନ ପୂଜା ଜ୍ଞାନ ସତ୍ୟ ଭାବ ପୁଣ୍ୟେ
ଏ ଦେହ ନୀରୋଗ ମୋର ଦେଖୁଛ ନୟନେ ।
ପାପେ ପ୍ରାଣୀଦେହେ ରୋଗୀପୀଡ଼ା ଜନମଇ
ତେଣୁ ତାକୁ ମୃତ୍ୟୁବଳେ ମାଡ଼ିଣ ବସଇ ।
ସତ୍ୟ ଆଶ୍ରେ ରହି ନର କରିବ ଯେ ଧର୍ମ
ଶରା ସନ୍ଧିରେ ଜର୍ଜର ପ୍ରାଣୀର ଯେ ମର୍ମ ।
ଏ ଦେହ ଗଢ଼ା ହୋଇଛି ପଞ୍ଚ ମହାଭୂତେ
ସୁନାକୁ ଯୋଡ଼ି ଦିଅଇ ସୁହାଗା ଯେମନ୍ତେ ।
ଯୋଡ଼ିହୋଇ ରହିଅଛି ଏ ଦେହ ତେସନ
ଏ ଦେହର ଆତ୍ମା ସଦା ଅଟଇ ଅଭିନ୍ନ ।
ଏ ଦେହ ରାଜ୍ୟରେ ମହା ଅଗ୍ନି ବିରାଜଇ
ବିଧାତାର ଚର ସେହି ଅନଳ ଅଟଇ ।
ହେ ପିପଳ ହରିନାମ ପ୍ରଭାତେ ଯେ ଜନ
ଯେ ଦୃଢ଼େ ରଖି ପାରଇ ସେହି ବୁଦ୍ଧିମାନ ।
ଏଦେହ ଗୋଟା ସର୍ବାଙ୍ଗ ଖଣ୍ଡ ଖଣ୍ଡମୟ
ଜର୍ଜର ହୋଇଛି ଶତ ସନ୍ଧିରେ ଏ କାୟ ।
ଦିବ୍ୟ ସଉଭାଗ୍ୟବଳେ ଏ ଦେହ ମିଳଇ
ଦେହ ଥିଲେ ସିନା ଚଉବର୍ଗ ସିଦ୍ଧହୋଇ ।
ସମାନ ଭାବରେ ଧାତୁ ଥିବାରୁ ରହିଛି
ଖଣ୍ଡ ଖଣ୍ଡ ହୋଇ ଯାନ୍ତା ନରହନ୍ତା କିଛି ।
ହରି ପୂଜା ବ୍ରତ ସତ୍ୟ ଦାନ ଧ୍ୟାନବଳେ
ନୂତନ ହୋଇ ରହିଛି ଦେଖୁଛତ ଡୋଳେ ।
ଦୋଷ ବ୍ୟାଧି ଦୁର୍ଗନ୍ଧରେ ଦେହପାଏ ଲୟ
ବାହାର ଭିତର ଶୁଚି ତହିଁର ଉପାୟ ।
ଚକ୍ରୀ ପରସାଦେ ଦେହେ ଶଉଚ ଜନମେ
ତା ବଳେ ମୁଁ ସ୍ୱର୍ଗ ସୁଖ ପାଇବି ଏ ସ୍ଥାନେ ।

ସ୍ୱର୍ଗକୁ ଯିବାର ମୋର ନାହିଁ ପ୍ରୟୋଜନ
ଏ ମର୍ତ୍ତ୍ୟମଣ୍ଡଳେ ସ୍ୱର୍ଗ କରିବି ସ୍ଥାପନ ।
ଏଣୁ ତୁମ୍ଭେ ଫେରିଯାଇ ଇନ୍ଦ୍ରକୁ ଯେ କହ
ନଛାଡ଼ିବି ମୁହିଁ କେଭେ ଏ ସୁନ୍ଦର ଦେହ ।
ସେ ଚକ୍ରୀର ପରସାଦେ ତପ ଧର୍ମବଳେ
ସ୍ୱର୍ଗକରି ରହିବି ମୁଁ ଏହି ମହୀତଳେ ।
ସୁକର୍ମା କହିଲେ ଏହା ଶୁଣି ଦେବଦୂତ
କଲ୍ୟାଣ କରି ରାଜାକୁ ଚାଲିଲେ ତୁରିତ ।
ଇନ୍ଦ୍ର ଛାମୁରେ କହିଲେ ନୃପତି ବୃତ୍ତାନ୍ତ
ଶୁଣି ମନେ ମନେ ଚିନ୍ତାକଲେ ପୁରୁହୂତ ।
ହରି ହରି ବୋଲ ଭାଇ ଦୁଃଖ ଯାଉ ଦୂର
ଦ୍ୱିଜ ଗୋପୀନାଥ ଭଜେ ଅଚ୍ୟୁତ ପୟର ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ଯଯାତିର ସ୍ୱର୍ଗଗମନ ଅସ୍ୱୀକାର
ବର୍ଣ୍ଣନେ ଦ୍ୱିସପ୍ତତିତମୋଽଧ୍ୟାୟଃ ।

## ତ୍ରିସପ୍ତତି ଅଧ୍ୟାୟ

### ଯଯାତିର ସ୍ୱରାଜ୍ୟେ ବିଷ୍ଣୁସେବା ପ୍ରଚାର

ପିପଳ ବୋଇଲେ ଯାନ୍ତେ ସେହି ଦେବଦୂତ
ତହୁଁ କିକଲେ ଯଯାତି ନହୁଷଙ୍କ ସୁତ ।
ସୁକର୍ମା ବୋଇଲେ ରାଜା ଯଯାତି ତଦନ୍ତେ
ମନମଧ୍ୟରେ ବିଚାରି ପାଶେଥିବା ଦୂତେ ।
ତାହାଙ୍କୁ ଚାହିଁ ବୋଇଲେ ଆହେ ଦୂତଗଣ
ଦେଶେଦେଶେ ଗ୍ରାମେ ଗ୍ରାମେ ରହି ଜଣ ଜଣ ।
ସବୁ ଲୋକଙ୍କୁ କହିବ ଏ ମୋର ଆଦେଶ
ପୁର ଦ୍ୱୀପ ନଗର ଯେ ନ ଛାଡ଼ିବ ଦେଶ ।
ହରିଙ୍କି ପୂଜା କରିବେ ଧର୍ମ ଆଚରିବେ
ହରି ସଂକୀର୍ତ୍ତନ ଗ୍ରାମ ଗ୍ରାମକେ କରିବେ ।
ବିଷ୍ଣୁପ୍ରୀତି ଅର୍ଥେ ନିତି ଦେଉଥିବେ ଦାନ
ବିପ୍ର କ୍ଷତ୍ରି ଆଦି ଯେତେ ଅଛ ଚାରିବର୍ଣ୍ଣ ।
ବିଷୟ ତେଜି ଶ୍ରୀହରି ପାଦେ ରଖ ଲୟ
ଶ୍ରୀହରିର ଭାବ ଯାକ ସୁଧାରସ ମୟ ।
ଦାନ ଧ୍ୟାନ ପୁଣ୍ୟ ଜ୍ଞାନ ଯାଗ ଯଜ୍ଞ କରି
ମଧୁସୂଦନଙ୍କୁ ଭଜ ଦିବସ ସର୍ବରୀ ।
ଓଦା କଞ୍ଚା କାଷ୍ଠ ତୃଣ ଶୁଖିଲା ଯେତେକ
ଗିରି ଲତା ଗୁଳ୍ମଆଦି ଯେତେ ଯେତେ ବୃକ୍ଷ ।
ଜଳ ସ୍ଥଳ ଅନଳ ଯେ ଚରାଚର ମହୀ
ଭୂତ ପ୍ରେତ ଯକ୍ଷ ରକ୍ଷ ଦାନବ ଯେ ଅହି ।
ସବୁରି ଦେହରେ ବିଜେ କରିଛନ୍ତି ହରି
ଆପଣା ଦେହେ ଯେମନ୍ତେ ଥାନ୍ତି ବିଜେକରି ।
ଅତିଥିଙ୍କି ବିଷ୍ଣୁମଣି ଆନନ୍ଦେ ପୂଜିବ
ବିଷ୍ଣୁ ଭିନ୍ନ ଜଗତକୁ କେହି ନ ଦେଖିବ ।
ଏଇ ବଇଷ୍ଣବ ଧର୍ମ ଜାଣ ଯଯାତିର
ଏ ଧର୍ମେ ତୁମ୍ଭେ ହୋଇବ ଅଜର ଅମର ।
ଜରାବ୍ୟାଧି ପାପ ତାପ ପଳାଇବ ଛାଡ଼ି
ସୂର୍ଯ୍ୟ କିରଣରେ ଯେହ୍ନେ ଲୁଚଇ କୁହୁଡ଼ି ।
ମୋଆଜ୍ଞା ଯେ ନ ପାଳିବ ତାକୁ ଚୋରପ୍ରାୟ
ବଳେ ଧରିଆଣି ଦଣ୍ଡଦେବ ନାହିଁ ଭୟ ।
ଏମନ୍ତେ ଆଜ୍ଞା ପତ୍ରିକା ବୁଲାଇ କହିବ
ବଇଷ୍ଣବ ଧର୍ମ ମୋର ପ୍ରଚାର କରିବ ।
ରାଜା ଆଜ୍ଞାଘେନି ଦୂତେ ବେଗେତହୁଁ ଗଲେ
ଆଜ୍ଞା ପତ୍ରିକା ପୃଥିବୀ ମଧ୍ୟେ ଫେରାଇଲେ ।
ଗ୍ରାମେ ଗ୍ରାମେ ସଭାକରି କଲେ ତା ପ୍ରଚାର
ଏହି ବଇଷ୍ଣବ ଧର୍ମ ରାଜା ଯଯାତିର ।
ଏହି ବଇଷ୍ଣବ ଧର୍ମ ସୁଧାମୟ ରସ
ଏ ଧର୍ମରେ କିଛି ମାତ୍ର ନାହିଁ ପୁଣି ଦୋଷ ।
ଏ ମଧୁର ରସପାନ କର ସର୍ବେ ମିଳି
ଏହାକୁ ସେ ସବୁ ଧର୍ମଠାରୁ ଶ୍ରେଷ୍ଠବୋଲି ।
ପରମ ଅର୍ଥ ଏ ଧର୍ମେ ମିଳଇ ଆବର
ସର୍ବଦା ଆନନ୍ଦ ଥାଏ ମନ କଳେବର ।
ଏ ଧର୍ମ କଲେ ସକଳ ପାପ ନରହଇ
ସର୍ବଦୋଷ ହରବୋଲି ଏ ଧର୍ମକୁ କହି ।
ଖଡ଼ଗପାଣି ଯେ ପ୍ରଭୁ ଶ୍ରୀମଧୁସୂଦନ
ଶ୍ରୀନିବାସ ସୁରେଶ୍ୱର ସଗୁଣ ନିର୍ଗୁଣ ।
ହରି ନାମାମୃତ ଆଣି ରଖିଛି ନୃପତି
ପାନକରି ନରନାରୀ ମିଳି ଦିବାରାତି ।
ଅଜର ଅମର ହେବ ଛାଡ଼ିଯିବ ରୋଗ
ଜଗତର ଆଧାର ଯେ ବିଷ୍ଣୁ ମହାଭାଗ ।
ଶ୍ରୀ ପଦ୍ମନାଭ କମଳ ନେତ୍ର ମହେଶ୍ୱର
ଦୁଷ୍କୃତ ହାରି ହରି ନାମାମୃତ ସାର ।

ମହୀରେ ରଖିଛି ତାହା ଆଣି ମହୀପତି
ଏ ସୁଯୋଗ ନ ମିଳଇ ଦିଅ ଦିବାରାତି ।
ହରି ନାମାମୃତ ରସ ସର୍ବ ପାପହାରୀ
ଆଧିବ୍ୟାଧି ପାପ ତାପ ବିନାଶନକାରୀ ।
ଦୁଷ୍ଟ ଦାନବ ଦଇତକୁଳ ବିନାଶନ
ସବୁବେଳେ ଆନନ୍ଦରେ ଥାଇ ପୁଣି ମନ ।
ଦୋଷହର ନାମାମୃତ ଆଣି ଦଣ୍ଡଧାରୀ
ଦେଉଅଛି ପାନକର କିଛି ନ ବିଚାରି ।
ଯଜ୍ଞର ଅଙ୍ଗ ଯେ ପ୍ରଭୁ ଯଜ୍ଞର ଈଶ୍ୱର
ରଥାରଙ୍ଗ ପାଣି ଆବର ପୁଣ୍ୟର ଆକର ।
ଯାହାର ରୂପ ଅନନ୍ତ ସଦା ସୁଖମୟ
ଚରାଚର ବିଶ୍ୱ ପୁଣି ଯା ଗର୍ଭୁ ଉଦୟ ।
ତା ନାମାମୃତ ସକଳ ଦୋଷନାଶକାରୀ
ମହୀରେ ଥୋଇଛି ତାହା ଆଣି ଦଣ୍ଡଧାରୀ ।
ପିଅ ପିଅ ନରନାରୀ ବିଳମ୍ବ ନକର
ସେହି ନାମାମୃତପାନେ ହୋଇବ ଅମର ।
ବିଶ୍ୱର ଯେ ଅଧିବାସୀ ବିମଳ ବିରାମ
ରମଣ ମୁରାରି ଯାର ନାମ ପୁଣି ରାମ ।
ସେ ରାମ ନାମ ଅମୃତ ଥୋଇଛି ରାଜନ
ବିଳମ୍ବ ନକର ଲୋକେ କର ତାହା ପାନ ।
ଆଦିତ୍ୟ ରୂପୀ ଯେ ତମ ବିନାଶନକାରୀ
ମନ ପଙ୍କଜ ବନ୍ଧନ କରତନ କାରୀ ।
ଏସବୁ ନାମ ଅମୃତ ଥୋଇଛି ରାଜନ
ବିଳମ୍ବ ନକର ଲୋକେ କର ବେଗେ ପାନ ।
ଶ୍ରୀବିଷ୍ଣୁ ଭକତ ଜନେ ଏ ନାମ ଅମୃତ
ପ୍ରଭାତରୁ ଉଠି ଯତି ହୋଇ ପଢ଼ ନିତ୍ୟ ।
ସତ୍ୟ ପୁଣି ବଳେ ନିଶ୍ଚେ ପାଇବ ମୁକତି
ଦ୍ୱିଜ ଗୋପୀନାଥକୁ ଯେ ରଖ ଶିରୀପତି ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ
ବେନୋପାଖ୍ୟାନେ
ଯଯାତି ଚରିତଂ ନାମ
ତ୍ରିସପ୍ତତିତମୋଽଧ୍ୟାୟଃ ।



## ଚତୁଃସପ୍ତତି ଅଧ୍ୟାୟ

### ପୃଥିବୀ ଲୋକଙ୍କର ଭାଗବତ ଧର୍ମ ଅବଲମ୍ବନ

ସୁକର୍ମା ଦ୍ୱିଜ କହିଲେ ଯଯାତିର ଦୂତେ
ଗ୍ରାମଦେଶ ପୁର ଦ୍ୱୀପ ନଗର ସହିତେ ।
ଏକେ ଏକେ ସ୍ଥାନେ ସ୍ଥାନେ ରହି ସଭାକରି
ଯେରୂପେ ତାହାଙ୍କୁ କହିଥିଲେ ଦଣ୍ଡଧାରୀ ।
ସେରୂପେ ବୁଝାଇ କଲେ ଏ ଧର୍ମ ପ୍ରଚାର
ବୋଇଲେ ଆହୁଁ ସକଳେ ହରି ପୂଜାକର ।
ଯାଯାତି ରାଜାର ଆଜ୍ଞା ହୋଇଲା ଏମନ୍ତ
ଦାନଯଜ୍ଞ ତପ ଧର୍ମ କର ବିଧିମତ ।
ମନମୁନ ଚଇତନ ଲଗାଇ ସକଳେ
ଶ୍ରୀମଧୁସୂଦନଙ୍କର ଚରଣ କମଳେ ।
ଧ୍ୟାନକର ଦାନକର ତପ ଜପ କର
ଧର୍ମକର ପୂଜାକର ଆଜ୍ଞା ଯଯାତିର ।
ଏମନ୍ତ କରି ଘୋଷଣା ନାଗରା ଦିଅଇ
ତ୍ରିପଥାଛକ ଦାଣ୍ଡରେ ଉଚ୍ଚେ ଡାକଦେଇ ।
ହାଟଘାଟ ବଜାରରେ ବାଜିଲା ଡେଙ୍ଗୁରା
ଶୁଣିବାକୁ ଲୋକେ ତହିଁ ହେଲେ ଧରାପରା ।
କେ ବୋଲଇ କି ଡେଙ୍ଗୁରା ଭଲ କିବାମନ୍ଦ
କେ ବୋଲେ ରାଜାର ଆଜ୍ଞା ଭଜିବଗୋବିନ୍ଦ ।
ପୃଥିବୀର ଲୋକେ ଶୁଣି ଆନନ୍ଦ ହୋଇଲେ
ବିଷ୍ଣୁପୂଜା ବିଷ୍ଣୁଧ୍ୟାନେ ମନ ନିବେଶିଲେ ।
ବିଷ୍ଣୁ ମନ୍ତ୍ର ଜପକଲେ ବିଷ୍ଣୁଗୁଣ ଗାଇ
ବିଷ୍ଣୁ ପୁରାଣ ଶୁଣିଲେ ବ୍ରାହ୍ମଣ ଡକାଇ ।
ଗ୍ରାମେ ଗ୍ରାମେ ଭାଗବତ ଗାଦି ରଖି ଘରେ
ଭାଗବତ ପୂଜାକଲେ ଆନନ୍ଦ ମନରେ ।
ଭାଗବତ ପଢ଼ାଇଲେ ପାଞ୍ଚସାତ ମିଳି
ନାନା ପୁରାଣ ଶୁଣିଲେ ଦେଇ କରତାଳି ।
ହରିନାମ ସଂକୀର୍ତ୍ତନ କଲେ ଗ୍ରାମେ ଗ୍ରାମେ
ନଗର କୀର୍ତ୍ତନକଲେ ମନଦେଇ ନାମେ ।
ଖୋଳ କରତାଳ ଧରି ହରିନାମେ ବାଇ
ବେଦମନ୍ତ୍ର ପଢ଼ି ପୂଜାକଲେ ଲକ୍ଷ୍ମୀସାଇଁ ।
ବିଷ୍ଣୁ ସ୍ତୋତ୍ର ସୁଧାମୟ ପଢ଼ିଲେ ଆନନ୍ଦେ
ଶ୍ରୀବିଷ୍ଣୁ ଚରିତ ଗାଇ ନାନାଛନ୍ଦବନ୍ଧେ ।

ବ୍ରତ ଉପବାସ ଦାନ ଧାନେ ଦେଲେ ମନ
ଶ୍ରୀକେଶବ ପୂଜାକଲେ ଜଗତର ଜନ ।
କାୟମନ ବଚନରେ କରିଥିବା ପାପ
ଦୂରେ ଛାଡ଼ି ପଳାଇଲା ହୋଇଲେ ନିଷ୍ପାପ ।
ଦୋଷଶୂନ୍ୟଯୋଗୁଲୋକେହୋଇଲେନିରୋଗି
କୃଷ୍ଣ ସୁଧାରସ ପ୍ରେମେ ହୋଇ ଅନୁରାଗୀ ।
ଜଗତ ଜନନୀ ବାସ ଶ୍ରୀନିବାସ ହରି
ବାସୁଦେବଙ୍କୁ ହୃଦୟ କମଳରେ ଭରି ।
ପୃଥିବୀ ମଣ୍ଡଳ ଜନେ ରାଜାଆଜ୍ଞା ପାଳି
ଯେଉଁ ବଇଷ୍ଣବ ଧର୍ମ ପଥର ସଞ୍ଚାଳି ।
ସେ ଧର୍ମବଳେ ହୋଇଲେ ଅଜର ଅମର
ସବୁରି ଯୁବାବୟସ ଦିଶିଲେ ସୁନ୍ଦର ।
ଯମ ପଶି ନପାରିଲା ଡ଼ରେ ଥର ଥର
ଜ୍ଞାନୀଜନେ ବିଷ୍ଣୁଧାନ କଲେ ନିରନ୍ତର ।
ନିରତେ ଶ୍ରୀ ପାଦପଦ୍ମେ ଲୟ ରଖି ଜନେ
ସୁଖେ କାଳ କଟାଇଲେ ନାମ ସଂକୀର୍ତ୍ତନେ ।
ହରିଙ୍କି ମନରେ ରଖି ପୂଜିଲେ ସକଳେ
ଶ୍ରୀବିଷ୍ଣୁ ମୂରତିକରି ରଖିଲେ ଦେଉଳେ ।
ତାହାଙ୍କ ପୂଜା ନିମନ୍ତେ ଖଞ୍ଜି ବୃତ୍ତିବାଡ଼ି
ନାନାଦି କୁସୁମହାର ଡାଲାରେ ସଜାଡ଼ି ।
ଶ୍ରୀହରିଙ୍କ ଗଳେ ମନ୍ତ୍ର ପଢ଼ି ଲମ୍ବାଇଲେ
ଆନନ୍ଦରେ କରତାଳି ଦେଇ ନୃତ୍ୟକଲେ ।
ଧୂପ ଦୀପ ନଇବେଦ୍ୟ ଦେଇ କଲେ ପୂଜା
ସନ୍ଥ ବଇଷ୍ଣବ ହେଲେ ସକଳ ପରଜା ।
ସବୁରି ମୁଖରୁ ଶୁଭେ ହରି ହରି ଧ୍ୱନି
ହରି ନାମ ସଂକୀର୍ତ୍ତନେ ପୂରିଲା ମେଦିନୀ ।
ବଇଷ୍ଣବ ଧର୍ମବଳେ ପୃଥିବୀର ଲୋକେ
ଅତି ସୁଖରେ ରହିଲେ ଯାବତ ଚନ୍ଦ୍ରାର୍କେ ।
ଭଗବତୀ ହେବାରୁ ସେ ଦିଶିଲେ ଉଜ୍ଜ୍ୱଳ
ଶ୍ରୀବିଷ୍ଣୁର ଧ୍ୟାନବଳେ ମାନବ ସକଳ ।
ପାପ ଛାଡ଼ିଯିବାଯୋଗୁଁ ନିରୋଗୀ ହୋଇଲେ
ନାମ ମହିମାରୁ ଆଧି ବିଧି ଶୂନ୍ୟହେଲେ ।
ଚକ୍ରୀପରସାଦେ ଲୋକେହେଲେ ଶୋକହୀନ
ଦେହ ପବିତ୍ର ଆବର ହେଲେ ତପୋଧନ ।
ଦୋଷ ରୋଷ ନରହିବା ଯୋଗୁଁ ନରନାରୀ
ଅଜର ଅମରହୋଇ ସୁଖେ ଘର କରି ।

ଧନ ଧାନ୍ୟରେ ସବୁରି ଘର ଗଲା ପୂରି
ସବୁ ଅଇଶ୍ୱର୍ଯ୍ୟ ତାଙ୍କୁ ଦେଲେ ଦେବହରି ।
ପୁତ୍ର ନାତି ଧନ ଜନ ବଢ଼ିଲା ଅପାର
ବନ୍ଧୁ ବାନ୍ଧବଙ୍କୁ ଘେନି ସୁଖେ କଲେ ଘର ।
ସବୁରି ଦାଣ୍ଡଦୁଆରେ କଳ୍ପଦ୍ରୁମ ରହି
ଯେ ଯାହା ମାଗଇ ତାକୁ ସେ ଫଳ ଦିଅଇ ।
ବିଷ୍ଣୁ ପରସାଦେ ଘରେ ଘରେ ଚିନ୍ତାମଣି
ସମସ୍ତଙ୍କୁ କାମଧେନୁ ଦେଲେ ଚକ୍ରପାଣି ।
ବସ୍ତ୍ର ଅଳଙ୍କାରେ ପୂର୍ଣ୍ଣ ସବୁରି ମନ୍ଦିର
ସର୍ବ ସଉଭାଗ୍ୟେ ପୂରି ଅଛି ସବୁଘର ।
ଦାନପୁଣ୍ୟ ଜ୍ଞାନଧାନେ ରତ ଦିବାରାତି
ଏରୂପେ ରାଜ୍ୟ ପାଳିଲା ନୃପତି ଯଯାତି ।
ଦୁର୍ଭିକ୍ଷ ମଡ଼କବୋଲି ନ ଜାଣନ୍ତି କେହି
ଅକାଳ ମରଣ ବ୍ୟାଧି ତା ରାଜ୍ୟରେ ନୋହି ।
ସମସ୍ତେତ ବଇଷ୍ଣବ ବିଷ୍ଣୁ ବ୍ରତଧାରୀ
ବିଷ୍ଣୁ ଚିନ୍ତାରେ ନିମଗ୍ନ ମାନସ ସବୁରି ।
ସକଳେ ବିଷ୍ଣୁ ଭକତ ବିଷ୍ଣୁଗତ ଚିତ୍ତ
ସବୁରି ଗୃହରେ ବିଷ୍ଣୁ ପ୍ରତିମା ଅଙ୍କିତ ।
ଶଙ୍ଖଚକ୍ର ପଦ୍ମ ଅଙ୍କାହେବାରୁ ସେ କାନ୍ଥେ
ଶୁକଳ ଧ୍ୱଜା ପତାକା ଉଡ଼େ ଅବିରତେ ।
ଗଦା ଅଙ୍କିତ ସବୁରି ଗୃହ କି ବିମାନ
ନାନାଦି ଚିତ୍ରରେ କାନ୍ଥ ସବୁ ଶୋଭାମାନ ।
ସବୁରି ଗୃହ ନିକଟେ ଉପବନ ଶୋହେ
ଉତ୍ତମ କୋମଳ ଘାସ ସବୁ ଶୋଭାପାଏ ।
ସବୁରି ଦାଣ୍ଡେ ଅଛଇ ତୁଳସୀ ଚଉରା
ସବୁରି ଘରେ ଠାକୁର ଶାଳଗ୍ରାମ ଶିଳା ।
ଗ୍ରାମେ ଗ୍ରାମେ ବିରାଜଇ ଶ୍ରୀବିଷ୍ଣୁ ଦେଉଳ
ବଇଷ୍ଣବ ହେଲେ ରାଜା ପରଜା ସକଳ ।
ଘରେ ଘରେ ଶଙ୍ଖଧ୍ୱନି ହୁଳହୁଳି ଧ୍ୱନି
ବଇଷ୍ଣବ ଧର୍ମବଳେ ସକଳ କାମିନୀ ।
ଶଙ୍ଖ ସ୍ୱସ୍ତିକ ଯେ ପଦ୍ମ ଚିହ୍ନ ସବୁଆଙ୍କି
ବିଷ୍ଣୁଙ୍କୁ ପୂଜନ୍ତି ଘରେ ଧନୀ ଦୁଃଖିରଙ୍କି ।
ସୁନ୍ଦର ଦିଶନ୍ତି ବୃଦ୍ଧା ଯୁବତୀ ଯେତେକ
ପନ୍ଦର ବୟସୀ ପ୍ରାୟ ସଉଭାଗ୍ୟ ସୁଖ ।
ମୂର୍ଚ୍ଛନା ତାଳ ଯେ ଲୟ ଦେଇ ଧୀରସ୍ୱରେ
କେଶବ ମହିମା ଗାନ କରି ଆନନ୍ଦରେ ।

ମାଧବ ଶ୍ରୀ ନରସିଂହ ଗୋବିନ୍ଦ ମୁରାରି
କମଳାପତି କମଳ ନେତ୍ର କୃଷ୍ଣ ହରି ।
ଶରଣ୍ୟ କେଶବ ରାମ ନାମ କଲେ ଜପ
ବିଷ୍ଣୁ ପରସାଦେ କ୍ଷୟକଲେ ତିନିତାପ ।
ପୂଜା ଦଣ୍ଡବତ କରି ହେଲେ ବଇଷ୍ଣବ
ଦ୍ୱିଜ ଗୋପୀନାଥ ବୋଲେ ମୁକୁନ୍ଦ ମାଧବ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ଭାଗବତ ଧର୍ମ ଅବଲମ୍ବନେ
ଯଯାତି ଉପାଖ୍ୟାନଂ ନାମ
ଚତୁଃସପ୍ତତିତମୋଽଧ୍ୟାୟଃ ।



## ପଞ୍ଚସପ୍ତତି ଅଧ୍ୟାୟ

### ବୈଷ୍ଣବଧର୍ମ ପ୍ରଭାବେ ରାଜା ପ୍ରଜାଙ୍କର ଜରା ମରଣରୋହିତ୍ୟ

ସୁକର୍ମା ଦ୍ୱିଜ କହଇ ପିପଳ ଶୁଣଇ
ପୃଥିବୀର ନରନାରୀ ରାଜା ମହାଦେଇ ।
ବିଷ୍ଣୁ କୃଷ୍ଣ ନାରାୟଣ ମୁକୁନ୍ଦ ମୁରାରୀ
ନୃସିଂହ ମଧୁସୂଦନ ରାମ କୃଷ୍ଣ ହରି ।
ବରାହ ବାମନ ମତ୍ସ୍ୟ କୂର୍ମ ବାସୁଦେବ
ପଦ୍ମନାଭ ହୃଷୀକେଶ ଅଚ୍ୟୁତ କେଶବ ।
ବିଶ୍ୱରୂପ ବିଶ୍ୱେଶ୍ୱର ଅନଘ ଅନନ୍ତ
ପୁଷ୍କରାକ୍ଷ ସୁରାଧିପ ଦେବ ଶୁଚିମନ୍ତ ।
ଶ୍ରୀପତି ଶ୍ରୀଧର ମୋକ୍ଷଧାତା ଶ୍ରୀନିବାସ
କମଳାପତି କମଳନେତ୍ର ପୀତବାସ ।
ଏସବୁ ନାମକୁ ମାଳା କରି ନିରନ୍ତର
ବାଳ ବୃଦ୍ଧ ଯୁବା ଆଦି କୁମାରୀ କୁମାର ।
ଗୃହ କର୍ମ କଲାବେଳେ ନର ନାରୀ ଯେତେ
ମୁଖେ ଏ ସବୁ ନାମକୁ ଜପନ୍ତି ନିରତେ ।
ଦିନନାହିଁ ରାତି ନାହିଁ ହରି ଗୁଣ ଗାନେ
ଶୟନ ସ୍ୱପନ ଯାନ ଧ୍ୟାନ ଅବସାନେ ।
ଶ୍ରୀ ମାଧବ ସୁମରଣେ ହରୁଛନ୍ତି ଦିନ
ଖେଳନ୍ତି ବାଳକେ କରି ହରି ଗୁଣଗାନ ।
ଦିନ ରାତି ପ୍ରଣମନ୍ତି ଗୋବିନ୍ଦ ଚରଣେ
ହରି ନାମକୁ ଯେ କେହି ନଛାଡ଼ନ୍ତି କ୍ଷଣେ ।
କେବଳ ଶ୍ରୀବିଷ୍ଣୁ ନାମ ଶୁଭେ ଅନୁକ୍ଷଣ
ମହୀମଣ୍ଡଳରେ ଥିବା ଯେତେ ମର୍ତ୍ତ୍ୟଗଣ ।
ବଇଷ୍ଣବ ଧର୍ମଭାବେ ସକଳେ ବିହ୍ୱଳ
ମହୀରେ ଯେତେ ପ୍ରସାଦ ମଣ୍ଡପ ଦେଉଳ ।
କଳଶ ଦଧି ନଉତି କାନ୍ଥ ଯେ ତୋରଣ
ତହିଁରେ ଲେଖା ହୋଇଛି ରାମ ନାରାୟଣ ।
ସୂର୍ଯ୍ୟ ବିମ୍ବପ୍ରାୟ ବିଷ୍ଣୁ ଚକ୍ର ସବୁ ଶୋହେ
ଜଗତୀ ତଳ ଦିଶଇ ବଇକୁଣ୍ଠ ପ୍ରାୟେ ।
ନହୁଷ ପୁତ୍ର ଯଯାତି ପରମ ବୈଷ୍ଣବ
ଏରୂପେ ସେ ମହାଶୂନ୍ୟ କରି ଠାବ ଠାବ ।
ମହୀମଣ୍ଡଳକୁ କଲା ବଇକୁଣ୍ଠପୁର
ଇହଲୋକ ପରଲୋକ ନ ଜାଣିଲେ ନର ।
ଇହ ପରଲୋକ ସୁଖ ଏକମନେ କଲେ
ବିଷ୍ଣୁଙ୍କ ଭୂମିରେ କିଛି ଭିନ୍ନ ନଦେଖିଲେ ।
ବଇକୁଣ୍ଠ ବଇଷ୍ଣବେ କରନ୍ତି ଯେମନ୍ତେ
ବିଷ୍ଣୁନାମ ଜପୁଥାନ୍ତି ଦିନରାତି ନିତ୍ୟେ ।
ମହୀମଣ୍ଡଳ ମାନବେ ନାମମାଳା କରି
ଜପିଲେ ନିରତେ ନିତ୍ୟ ଦିବସ ଶର୍ବରୀ ।
ଇହଲୋକ ପରଲୋକ ହେଲା ଏଣୁ ଏକା
ନ ରହିଲା ପାପ ଜରା ରୋଗ ଭୟ ଶଙ୍କା ।
ଅମରଗଣଙ୍କ ପରି ହୋଇଲେ ଅମର
ତାଙ୍କ ତୁଲ୍ୟ ରୂପ ଗୁଣ ସୌନ୍ଦର୍ଯ୍ୟ ଆବର ।
ତାଙ୍କ ତହୁଁ ଦାନ ଭୋଗ ଅଧିକ ଦେଖାଇ
ଧନ ଜନ ପୁଅ ନାତି ବହୁତର ପାଇ ।
ବିଷ୍ଣୁ ପରସାଦେ ବ୍ୟାଧି ଭୟ ଗଲା ଲୋପ
ତେଣୁ ମହୀତଳକୁ ସେ କଲେ ସ୍ୱର୍ଗରୂପ ।
ପନ୍ଦର ବର୍ଷ ତରୁଣ ପରାୟେ ଦିଶିଲେ
କିଏ ଯୁବା କିଏ ବୁଢ଼ା ଚିହ୍ନା ନପଡ଼ିଲେ ।
ନାରୀଏ ସବୁ ହୋଇଲେ ସୁନ୍ଦରୀ ତରୁଣୀ
ବହୁତ ବରଷ ବଞ୍ଚି ରହିଲେ ଯେ ପ୍ରାଣୀ ।
ନିରୋଗୀ ଯୋଗୁଁ ହୋଇଲେ ସର୍ବେ ଜ୍ଞାନବାନ
ଦାନ ଧ୍ୟାନ ପର ଉପକାରେ ଗତଜନ ।
ଯଶକୀରତି ପୁଣ୍ୟର ଭାଜନ ହୋଇଲେ
ସବୁଧର୍ମ ଜାଣି ବିଷ୍ଣୁଧ୍ୟାନେ ମନଦେଲେ ।
ଯଯାତି ଯୋଗୁ ସମସ୍ତେ ହେଲେ ବଇଷ୍ଣବ
ଶ୍ରୀବିଷ୍ଣୁ ବୋଇଲେ ଶୁଣ ବେନ ନରଧବ ।

ଅପୂର୍ବ ଚରିତ ରାଜା ଯଯାତିର ଶୁଣ
ବିଷ୍ଣୁ ଭକତ ଯେ ବିଷ୍ଣୁ ଧର୍ମ ପରାୟଣ ।
ମହୀରେ ବଞ୍ଚିରହିଲେ ଲକ୍ଷେକ ବରଷ
ଦିଶନ୍ତି ପଚିଶବର୍ଷ ଯୁବାର ସଦୃଶ ।
ରୂପ ତେଜ ବଳବୀର୍ଯ୍ୟ ତିଳେନୋହେ ହାନି
ବହୁତ ଖ୍ୟାତି ଲଭିଲେ ସେହି ମହାପ୍ରାଣୀ ।
ସିଦ୍ଧପୁରୁଷଙ୍କ ସଙ୍ଗେ ହୋଇଲେ ସେ ଗଣା
ଚକ୍ରୀ ପରସାଦେ କିଛିନାହିଁ ପୁଣି ଊଣା ।
ତାର ରାଜ୍ୟଲୋକେ ଯମପୁର ନଦେଖିଲେ
ରାଗ ମୋହ ଦ୍ୱେଷହିଂସା ଅଦି ବରଜିଲେ ।
କ୍ଳେଶପାଶେ ବନ୍ଧାପୁଣି ନହୋଇଲେ କେହି
ସୁଖୀଦାନୀ ପୁଣ୍ୟବନ୍ତ ହେଲେ ଧର୍ମେ ରହି ।
ଘରକଲେ ପୁତ୍ରନାତି ଅଣନାତି ଘେନି
ସବୁରି ବଂଶ ବଢ଼ିଲା ବଢ଼ିଲେ ଯେ ପ୍ରାଣୀ ।
ମୃତ୍ୟୁ ନପାଇବାଯୋଗୁଁ ଚିରଜୀବୀ ହେଲେ
ଜରା ନଛୁଇଁବା ଦୋଷୁଁ ସୁନ୍ଦର ଦିଶିଲେ ।
ପଚିଶବର୍ଷିୟା ଯୁବା ପ୍ରାୟ ସେ ଦିଶନ୍ତି
ସତ୍ୟ ଜପ ଦାନ ଧର୍ମ ତିଳେ ନ ଛାଡ଼ନ୍ତି ।
ବିଷ୍ଣୁ ପରସାଦେ ହେଲେ ଅଜର ଅମର
ମଲା ଏ ଶବଦ ହଜିଗଲା ନୃପବର ।
ଶୋକ ଶବଦ ଆବର ହେଲା ଅଗୋଚର
ଦୋଷ କାହାକୁ କହନ୍ତି ନଜାଣିଲେ ନର ।
ବିଷ୍ଣୁ ପରସାଦେ ସ୍ୱର୍ଗପୁର ହେଲା ମହୀ
ବିଷ୍ଣୁଦୂତେ ଯମଦୂତେ କାନ୍ଦି କାନ୍ଦି ରହି ।
ଯମର ଛାମୁରେ ତାଙ୍କ ଦୁଃଖ ଜଣାଇଲେ
ଯଯାତି ଚରିତଯାକ ବୁଝାଇ କହିଲେ ।
ବୋଇଲେ ସେ ପୁଣି କର ଦୁଇଯୋଡ଼ିଶିରେ
ଆମ୍ଭେ ଯେ ଆସି ଗୁହାରି କରୁଛୁ ଛାମୁରେ ।
ସାବଧାନ ହୋଇ ତୁମ୍ଭେ ଶୁଣ ସୂର୍ଯ୍ୟସୁତ
ମର୍ତ୍ତ୍ୟପୁର ଲୋକେ ହେଲେ ଜରା ବିରହିତ ।
ପାପବ୍ୟାଧି ପଶି ନ ପାରିବାରୁ ରାଜନ
କେମନ୍ତେ ଅବା ମରିବେ ମର୍ତ୍ତ୍ୟପୁର ଜନ ।
ଦାନଧର୍ମ ବଳେ ହେଲେ ଦେବଙ୍କ ସମାନ
ରାଜଧର୍ମେ ରତହେଲେ ସଦା ପ୍ରଜାଜନ ।
ଯଯାତିଯୋଗୁଁ ସକଳେ ଅଜର ଅମର
ଅତି ପବିତ୍ର ସେ ବିଷ୍ଣୁ ଭକତ ଆବର ।
ମହୀକି ସେ ସ୍ୱର୍ଗକଲା କି କରିବୁ ଆମ୍ଭେ
ପଶି ନପାରିଲୁଁ କେହି ଯଯାତି ପ୍ରଭାବେ ।
ଦୂତମୁଖୁଁ ଯମ ଶୁଣି ଚିନ୍ତାକଲା ବସି
ହରି ନାମେ ଗୋପୀନାଥ ମନ ଦିବାନିଶି ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ରାଜା ପ୍ରଜାଙ୍କ ବୈଷ୍ଣବ ଧର୍ମ
ପ୍ରଭାବ ବର୍ଣ୍ଣନେ ଯଯାତି
ଚରିତେ ପଞ୍ଚସପ୍ତତିତମୋଽଧ୍ୟାୟଃ ।



## ଷଟ୍‌ସପ୍ତତି ଅଧ୍ୟାୟ
## ଇନ୍ଦ୍ର ନିକଟେ ଯମର ଯଯାତିଙ୍କୁ ସ୍ୱର୍ଗାନୟନ ପ୍ରାର୍ଥନା

ସୁକର୍ମା କହିଲେ ଶୁଣ ପିପ୍ପଳ ବ୍ରାହ୍ମଣ
ତହୁଁ ଯମରାଜଗଲେ ସଙ୍ଗେ ଦୂତଗଣ ।
ଦେବଙ୍କ ସଭା ମଧ୍ୟରେ ବିଜେ ପୁରନ୍ଦର
ଏବେଳେ ଯାଇଁ ମିଳିଲେ ସୂର୍ଯ୍ୟର କୁମର ।
ଯମକୁ ଦେଖିଣ ଇନ୍ଦ୍ର ତେଜିଲେ ଆସନ
ଯମପାଦେ ଅର୍ଘ୍ୟଦେଲେ ସହସ୍ରଲୋଚନ ।
ବୋଇଲେ ଆସିଛତୁମ୍ଭେ କହକେତେ କାର୍ଯ୍ୟେ
ମୁଖଗୋଟିତ ଶୁଖିଲା ଦିଶେ ଧର୍ମରାଜେ ।
ଯମବୋଇଲେ କାରଣ ଶୁଣ ପୁରନ୍ଦର
ଯଯାତି ମହୀର ରାଜା ନହୁଷ କୁମର ।
ସେ ପରଂ ବଇଷ୍ଣବ ମହାତମା ପୁଣି
କହିଲେତ ନସରିବ ତାପୁଣ୍ୟ କାହାଣୀ ।
ପୃଥିବୀଯାକ ସବୁ ସେ ବଇଷ୍ଣବ କଲା
ମହୀକି ସେ ବଇକୁଣ୍ଠପୁର ଭିଆଇଲା ।
ତେଣୁ ସେ ମାନବେ ହେଲେ ଅଜର ଅମର
ମିଥ୍ୟାଆଉ ପାପହେଲେ ପୃଥିବୀରୁ ଦୂର ।
ଲୋପ ପାଇଲାଣି ପାପ ମିଥ୍ୟା ଶବ୍ଦ ଦୁଇ
କାମକ୍ରୋଧ ଲୋଭ ମୋହ ଆଦି ଛାଡ଼ିଦେଇ
ଲୋକେ କେବଳ ଦାନରେ ବଳାଇଲେମନ
ହରିପୂଜା ହିରଧ୍ୟାନେ ନାମ ସଂକୀର୍ତ୍ତନ ।
ଏହାବିନା ଆଉ କିଛି ପୃଥିବୀରେ ନାହିଁ
ସବୁବେଳେ ଧର୍ମଚର୍ଚ୍ଚା ଘରେ ଘରେ ରହି ।
ବଇଷ୍ଣବ ଧର୍ମବଳେ ନିରୋଗୀ ନିଷ୍ପାପୀ
ବିନାତପେ ମହୀତଳ ଲୋକେହେଲେ ତପୀ ।

ସବୁବେଳେ ଯୁବାଜେହି ବୁଢ଼ା ନହୋଇଲେ
ପୁତ୍ରନାତି ଅଣନାତି ଘେନି ଘରକଲେ ।
ଦୁବଗଛ ବଟବୃକ୍ଷ ପ୍ରାୟ ବଢ଼େ ବଂଶ
ବଂଶ ବଂଶାନ୍ତର ପୁଣି ହେଲାଣି ଅଶେଷ ।
ଯଯାତିଯୋଗୁଁ ମୋହର ଯମପଦ ଗଲା
ଯମନାମ ଗୋଟା ମୋର ଲୋପଯେ ପାଇଲା ।
ତେଣୁ ଦୁଃଖ ଜଣାଉଛି ଏ ଦେବସଭାରେ
ତୁମ୍ଭେ ଯେ ରାଜା ବୋଲାଅ ଦେବଙ୍କ ଉପରେ ।
କି କର୍ମ କରିବି ଏବେ ଆଜ୍ଞାଦିଅ ମୋତେ
ବୃଥା ଯମ ଆସନରେ ବସିବି କେମନ୍ତେ ।
ବସିବସି ମୋର ଦିନ ହେଲାଣି ଅସର
କାନ୍ଦୁଛନ୍ତି ଦେଖ ସଙ୍ଗେ କିଙ୍କରେ ମୋହର ।
ନୟନରୁ ନୀର ମୋର ଗଳେ ଅବିରତେ
ଯମରାଜାଙ୍କୁ ଯେ ଇନ୍ଦ୍ର ବୋଇଲେ ଏମନ୍ତେ ।
ଅନେକଦିନ ପୂର୍ବ ମୁଁ ଆହେ ଧର୍ମରାଜ
ନାରଦମୁଖରୁ ଶୁଣି ଯଯାତିର କାର୍ଯ୍ୟ ।
ମାତଳିକି ପଠାଇଲି ବିମାନେକ ଦେଇ
ବୋଇଲି ତୁ ଯଯାତିକି ଆଣ ଯା ବୁଝାଇ ।
ଯେମନ୍ତେ ସ୍ୱର୍ଗକୁ ଆସେ ନହୁଷ କୁମର
ତାହାର ଉପାୟ ତୁମ୍ଭେ ବେଗେଯାଇଁ କର ।
ମାତଳି ବିମାନଘେନି ମୋ କଥାରେ ଯାଇଁ
କହିଲା ଯେତେପ୍ରକାରେ ଶାସ୍ତ୍ରହିଁ ଦେଖାଇ ।
ନ ଶୁଣିଲା ନ ଆସିଲା ଯଯାତି ନୃପତି
ବୋଇଲା ଯାହା କହୁଛ ସବୁ ଅଯୁକତି ।
ଏ ଦେହ ମୁଁ ନଛାଡ଼ିଇ ଭୂମି ନ ତେଜଇ
ସ୍ୱର୍ଗସୁଖ ଭୁଞ୍ଜିବି ମୁଁ ମର୍ତ୍ତ୍ୟପୁରେ ଥାଇଁ ।
ମର୍ତ୍ତ୍ୟପୁରକୁ ମୁଁ ସ୍ୱର୍ଗପୁର କରିବଇଁ
ଯାହା କହିଥିଲା ତାହା କଲା ଏବେ ସେହି ।
ଧର୍ମବଳେ ସ୍ୱର୍ଗତୁଲ୍ୟ କଲା ମହୀତଳ
ସେ ଭୟରେ ମୋର ମନ ସର୍ବଦା ଚଞ୍ଚଳ ।
ଏମନ୍ତ ଶୁଣି ବୋଇଲେ ଯମ ମହୀପତି
ମୋର ହିତ ବାଞ୍ଛାଯେବେ କର ସୁରପତି ।
ତେବେ ତୁମ୍ଭେ ଯଯାତିକି ଆଣ ସ୍ୱର୍ଗପୁର
ଯେ କିଛି ଉପାୟକର ବିଚାର ନକର ।
ଯମଦେବତାର କଥା ସୁରରାଜ ଶୁଣି
ମନମଧ୍ୟେ ଭାଳିଭାଳି ସ୍ଥିରକଲେ ପୁଣି ।

କାମଦେବ ମକରନ୍ଦ ଗନ୍ଧର୍ବ ରତିଙ୍କି
ଚାର ପଠାଇ ଡକାଇ ଆଣିଲେ କତିକି ।
ବୋଇଲେ ତୁମ୍ଭେ ଯଯାତି ପାଶେ ଯିବ ଚଳି
ଯେମନ୍ତେ ସେହି ନୃପତି ତେଜି ମହୀସ୍ଥଳୀ ।
ଦେହ ତେଜି ସ୍ୱର୍ଗପୁରେ ଆସଇ ତା କର
ମୋର କଥା ମାନି ବେଗେ ଯାଅ ମର୍ତ୍ତ୍ୟପୁର ।
ମୋର କଥା ଆନକଲେ ପାଇବ ଯେ ଦଣ୍ଡ
ଉଠିତହୁଁ କାମ ଯିବାପାଇଁ ଲଣ୍ଡ ଭଣ୍ଡ ।
ଯେଉରୂପେ ଭଲ ହେବ ତା ନିଶ୍ଚୟ କରିବୁଁ
ଯଯାତି ରାଜାଙ୍କୁ ସ୍ୱର୍ଗପୁରେ ଅଣାଇବୁଁ ।
ଜାଣ ରାଜାସଙ୍ଗେ ହେବ ଆମ୍ଭର ସମର
ଏହା କହିଗଲେ ତହୁଁ ଯଯାତିର ପୁର ।
କାମଦେବ ନଟବେଶେ ବିଜେକଲେ ତହିଁ
କଲ୍ୟାଣ କଲେ ପ୍ରସାର କରି କର ଦୁଇ ।
ନାଟକର ଅଭିନୟ କରିବୁ ବୋଇଲେ
କାମ ତହୁଁ ଏ ପ୍ରସ୍ତାବ ନୃପତି ଶୁଣିଲେ ।
ଉତ୍ତମ ପଣ୍ଡିତ ବାଛି ବାଛି ଅଣାଇଲେ
ଦେବସଭା ତୁଲ୍ୟ ସଭା ଏକ ନିର୍ମାଣିଲେ ।
ଜ୍ଞାନୀ ବିଜ୍ଞାନୀ ପଣ୍ଡିତେ ସେ ସଭାରେ ମିଳି
ନାଟମନ୍ଦିର ଗୋଟାଏ ଦେଲେ ତହିଁ ତୋଳି ।
ବଟୁବାମନ ଚରିତ ହେଲା ଅଭିନୟ
ଯେଉଁରୂପେ ଦାନ ତାହାଙ୍କୁ ଦେଲା ବଳିରାୟ ।
ଜନମହୋଇ ଯେମନ୍ତେ ମିଳିଲେ ଯଜ୍ଞାନ୍ତେ
ତିନିପାଦ ଭୂମିଦାନ ମାଗିଲେ ଯେମନ୍ତେ ।
ଜରା ରତିଦେବୀ ରୂପେ ବିରାଜିଲା ତହିଁ
ସଭାରେ ଗୀତଗାଇଲା ନଟୀବେଶ ହୋଇ ।
ସ୍ୱରମୂର୍ଚ୍ଛନା ଦେଇଣ ତାଳ ଲୟ ଧରି
ଗୀତଗାନ୍ତେ ମୋହଗଲେ ସଭା ନରନାରୀ ।
ଯଯାତିରାଜାସେ ଗୀତେ ହୋଇଲେ ମୋହିତ
ତାର ସେହି ମାୟାମୟ ଗୀତ ହାସ୍ୟ ନୃତ୍ୟ ।
ଭାବ ହାବ ଅଭିନୟ କନ୍ଦର୍ପ ଦେଖାଇ
ମଧୁର ଆଳାପେ ସଭା ଜନମନ ମୋହି ।
ନୃପତି ଚିତ୍ତକୁ ତେଣେ କଲା ସେ ହରଣ
ପୂର୍ବେ ଯେଉଁରୂପେ ଥିଲେ ବଳି ଯେ ବାମନ ।
ସେରୂପ ଧରି ସଭାରେ କଲେ ଅଭିନୟ
କଥାବାର୍ତ୍ତା ହେଲେ ପୂର୍ବେ ଯେହ୍ନେ ବଳିରାୟ ।

ବାଣ ବାମନ ଆବର ରାଣୀ ବିନ୍ଧ୍ୟାବଳୀ
ତସ୍ୱରୂପେ କାମମୋହ କଲେ ସଭାସ୍ଥଳୀ ।
ବସନ୍ତ ପାରିପାର୍ଶ୍ୱିକ ଗନ୍ଧର୍ବ ମଦନ
ପୁରୁଷରୂପେ ମୋହିଲେ ସେ ସବୁରି ମନ ।
ଦୃଷ୍ଟବଲ୍ଲଭା ଆବର ରତି ନଟୀ ତିନି
ବିନ୍ଧ୍ୟାବଳୀ ଘେନି ଏହି ଚାରି ଯେ କାମିନୀ ।
ନେପଥ୍ୟେ ନୃତ୍ୟକାରିଣୀ ଅଟଇ ଯେ ରତି
ନୃପତି ମନ ମୋହିଲା ନଟୀଯେ ଯୁବତୀ ।
ମହାବୁଦ୍ଧିମନ୍ତ ପୁଣି ଅଟେ ମକରନ୍ଦ
ତରଳାଇ ଦେଲା ଏଣେ ନୃପତିର ହୃଦ ।
ମନ ଚଞ୍ଚଳ ହେବାରୁ ଯଯାତି ନୃପତି
ନୃତ୍ୟ ଦରଶନେ ପୁଣି କରାଇଲା ମତି ।
ଗୀତ ଶୁଣିଲା ସେ ବସି ଡ଼େରି ବେନିକର୍ଣ୍ଣ
ନଟୀର ଅଭିନୟରେ ମୋହିତ ହୋଇଣ ।
ଦୀନ ଗୋପୀନାଥ ବୋଲେ ବୋଲ ହରିହରି
ଘୋର ସଙ୍କଟରୁ ସେହି କରିବେ ଯେ ପାରି ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ଯଯାତି
ଚରିତେ ଷଟ୍‌ସପ୍ତତିତମୋଽଧ୍ୟାୟଃ ।



## ସପ୍ତସପ୍ତତି ଅଧ୍ୟାୟ

### ଯଯାତି ଦେହେ ଜରା ପ୍ରବେଶ

ସୁକର୍ମା ଦ୍ୱିଜ କହିଲେ ଶୁଣ ହେ ପିପଳ
ଏରୂପେ କାମ ମାୟାରେ ନୃପତି ବିହ୍ୱଳ ।
ସୁଲଳିତ ନୃତ୍ୟ ଲାସ୍ୟହାସ୍ୟ ଭାବ ଗୀତ
ବେଳୁଁ ବେଳଯେ ଯଯାତି ହୋଇଣ ମୋହିତ ।
ମଳମୂତ୍ର ତ୍ୟାଗ କରି ସେ ଯଯାତି ବେଗେ
ପାଦ ନଧୋଇ ଚଞ୍ଚଳେ ଆସେ ଅନୁରାଗେ ।
ଆସନ ଉପରେ ବସି ନୃତ୍ୟ ସେ ଦେଖିଲା
ନଟୀର ଗୀତ ବା ମନ ବିହ୍ୱଳିତ କଲା ।
ଏହି ଅବସର ପାଇ ଆନନ୍ଦେ ସେ ଜରା
ନୃପତି ଦେହେ ପଶିଲା ହୋଇ ଅତି ତ୍ୱରା ।
ଧର୍ମ ବଳରୁ ସେ ବାଟ କିଞ୍ଚିତେ ନପାଇ
ନୃପତି ଦେହରେ ସେହି ପଶି ନପାରଇ ।
କିଞ୍ଚିତ ଅଧର୍ମ ବଳ ଯଯାତିର ଦେଖି
ସର୍ବାଙ୍ଗ ଘୋଟିଲା ଦେହେ ପଶିହୋଇ ସୁଖୀ ।
କନ୍ଦର୍ପ ଏରୂପେ କଲା ଦେବେନ୍ଦ୍ରର ହିତ
ନାଟକର ଅଭିନୟ କରି ସମାପତ ।
ମେଲାଣି ଘେନି ଆପଣା ପୁରେ ଗଲା ଚଳି
ଜରା ସର୍ବାଙ୍ଗେ ଘାରନ୍ତେ ରାଜା ଚିତ୍ତ ଟଳି ।
କନ୍ଦର୍ପ ବାଣରେ ବେଳୁବେଳ ଜର୍ଜରିତ
ଏରୂପେ ମୋହିତ ପୁଣି ହେଲା ବିହ୍ୱଳିତ ।
ଇନ୍ଦ୍ରି ବିକଳେ ବିଷୟ କର୍ମ ସବୁ ତେଜି
ବ୍ୟସନେ ଆତୁର ହୋଇ ମୃଗୟାରେ ମଜ୍ଜି ।
ବନରେ ପଶି ନାନାଦି ଜୀବହତ୍ୟା କଲା
ଲୋଭ ମୋହ ହିଂସା ଆଦି ଆସିଣ ଘୋଟିଲା ।
ଏମନ୍ତେ ମୃଗୟା କରୁ କରୁ ନରପତି
ଏକମୃଗ ଆସି ତହିଁ ହେଲା ଉପସ୍ଥିତି ।
ଚାରିଗୋଟି ଶିଂଘ ପୁଣି ଅଟେ ସେ ମୃଗର
ଅଙ୍ଗ ପ୍ରତ୍ୟଙ୍ଗ ସକଳ ତାହାର ସୁନ୍ଦର ।
ସୁନ୍ଦରପଣେ ଉପମା ଦେବାକୁ ଯେ ନାହିଁ
ସୁବର୍ଣ୍ଣ ପ୍ରାୟ ତାହାର ଶରୀର ଦିଶଇ ।
ଅଷ୍ଟରତ୍ନ ପ୍ରାୟ ତାର ବିରାଜଇ ଜ୍ୟୋତି
ସର୍ବାଙ୍ଗ ଚିତ୍ର ବିଚିତ୍ର ମନୋହର ଅତି ।
ରାଜା ସେ ମୃଗକୁ ଦେଖି ବିଚାରିଲା ମନେ
ଏ ଦୁଷ୍ଟ ଦୈତ୍ୟ ଅଇଲା ମୃଗରୂପେ ବନେ ।
ବେଗେ ଧନୁଧରି ଗୁଣେ ବାଣ ଯୋଚିଧାଏଁ
ରାଜାକୁ ଦେଖି ସେ ମୃଗ ପଳାଇଲା ଭୟେ ।
ବହୁତ ଦୂର ଗୋଡ଼ାଇଗଲା ସେ ନୃପତି
ଧାଇଁ ଧାଇଁ ପରିଶ୍ରମ ପାଇ ପୁଣି ଅତି ।
ଦେଖୁ ଦେଖୁ ମୃଗ ତହୁଁ ଗଲା ଅନ୍ତର୍ଦ୍ଧାନେ
ନୃପତି ଯାଇଁ ପଶିଲା ତହୁଁ ଏକବନେ ।
ନନ୍ଦନବନ ସମାନ ବିଚିତ୍ର ଯେ ବନ
ସୁନ୍ଦର ବୃକ୍ଷ ଲତାରେ ପାଉଛି ଶୋଭନ ।
କଦଳୀ ଖଣ୍ଡ ମଣ୍ଡିତ ଅଗୁରୁ ଚନ୍ଦନେ
ଅତି ଶୀତଳ ହୋଇଛି ମଳୟ ପବନେ ।
ଷଡ଼ଋତୁ ବିରାଜଇ ସବୁବେଳେ ତହିଁ
ପୁଣ୍ୟ ବକୁଳ ଅଶୋକ ପୁନାଙ୍ଗ ଅଛଇ ।
କେନ୍ଦୁ ନଡ଼ିଆ ଖଜୁରି ଗୁଆ ସପ୍ତବର୍ଣ୍ଣୀ
କଇଁଫୁଲ କନିଅରଫୁଲ ସଦାଫଣୀ ।

କେତକୀ ପାଟଳ ଆଦି ବୃକ୍ଷେ ଶୋଭାପାଏ
ଫୁଲ ବାସନାରେ ବନ ଜନମନ ମୋହେ ।
ବନ ଦେଖି ଦେଖି ଯାଉ ଯାଉସେ ରାଜନ
ମଧ୍ୟେ ଏକ ସରୋବର କଲା ଦରଶନ ।
ବିସ୍ତାର ତାହାର ପାଞ୍ଚଯୋଜନ ଅଟଇ
ହଂସ କାରଣ୍ଡବ ଆଦି ଖେଳୁଛନ୍ତି ତହିଁ ।
ଜଳ ଅତି ନିରିମଳ ପବିତ୍ର ଆବର
ଜଳପକ୍ଷୀଙ୍କର କ୍ରୀଡ଼ା ତହିଁ ନିରନ୍ତର ।
ତାଙ୍କ ନିଦାନରେ ପୂରି ଅଛଇ ପୋଖରୀ
ପଦ୍ମ ଧଳା ନାଲି କଇଁ ଫୁଲେ ଅଛି ପୂରି ।
ସୁନା କଇଁଫୁଲ ତହିଁ ନୀଳ କଇଁଫୁଲ
ଏମନ୍ତେ ନାନା ପ୍ରକାରେ ଫୁଟିଛି କମଳ ।
କହ୍ଲାରଦଳରେ ଶୋଭା ପାଉଛି ସେ ପୁଣି
ସବୁଠାରେ ଉଠୁଛନ୍ତି ମଧୁକର ଶ୍ରେଣୀ ।
ଗୁଣୁଗୁଣୁ ଧ୍ୱନିକରି ଫୁଲରେ ବସନ୍ତି
ଦୀର୍ଘରେ ଦଶ ଯୋଜନ ପାଞ୍ଚଯୁଣ ପ୍ରତି ।
ଏରୂପେ ସେ ସରୋବର ଦେଖି ଦଣ୍ଡଧାରୀ
ଶ୍ରମ ନିବାରିଲା ବଟତଳେ ବସିକରି ।
ଆମ୍ବଗଛର ଶୀତଳ ଛାଇ ପାଇ ଯାଇଁ
ତା ତଳେ ବସିଣ ଶ୍ରମ ହରେ ନରସାଇଁ ।
କହୁଁ ଉଠି ସରୋବରେ ପଶି କଲା ସ୍ନାନ
ପଦ୍ମ ସଉଗନ୍ଧ ତହିଁ ପାଇଣ ରାଜନ ।
ପଥଶ୍ରମ ହରି ସୁସ୍ଥ ହେଲା ମହାରାୟ
ସ୍ୱାଦୁ ଯେ ଶୀତଳ ଜଳ ଅମୃତର ପ୍ରାୟ ।
ପିଇ ସୁସ୍ଥହୋଇ ତରୁ ଛାଇରେ ବସିଲା
ସୁନ୍ଦର ଗୀତର ଧ୍ୱନି ତହିଁ ସେ ଶୁଣିଲା ।
ଦିବ୍ୟ ସ୍ତିରୀ ଗାଉଥିବା ପ୍ରାୟ ଶୁଭେ ସ୍ୱର
ଗୀତ ପ୍ରିୟ ଅଟଇ ଯେ ସେହି ନୃପବର ।
ଏକାନ୍ତରେ କ୍ଷଣ କାଳ ଚିନ୍ତା କଲା ବସି
ନାରୀଏ ମିଳିଲା ତାର ଅଗ୍ରତରେ ଆସି ।
ପିନ ସ୍ତନୀ ପୟୋଧରା ସେ ଅତିସୁନ୍ଦରୀ
ସବୁ ଆଭରଣେ ସବୁଅଙ୍ଗ ଅଛି ପୂରି ।
ସବୁ ସୁଲକ୍ଷଣେ ନାରୀ ହୋଇଛି ମଣ୍ଡଣି
ରାଜାର ଆଗେ ବସିଲା ଆସି ସେ ରମଣୀ ।
ପଚାରିଲେ ତାକୁ ମହା ରାଜା ଯେ ଯଯାତି
କାହାର କାମିନୀ ତୁମ୍ଭେ ଅପୂର୍ବ ଯୁବତୀ ।
କି ନିମନ୍ତେ ଆସିଅଛ କହ ତା କାରଣ
ଏରୂପେ ତାକୁ ପୁଛନ୍ତେ ନହୁଷ ନନ୍ଦନ ।
ହେ ପିପ୍ପଳ ବିପ୍ର କିଛି ନକହି ସୁନ୍ଦରୀ
କରେ ବୀଣାଦଣ୍ଡ ଧରି ହସି ହସି କରି ।
ଚାହୁଁ ଚାହୁଁ ଅନ୍ତର୍ଦ୍ଧାନେ ଗଲା ନିମିଷକେ
ବିସ୍ମୟ ହୋଇ ଚାହାଁନ୍ତି ରାଜା ଚଉଦିଗେ ।
ମନ ମଧରେ ଭାଳନ୍ତି ଏ ଅତି ଅଦ୍ଭୁତ
ପଚାରିଲି ନକହିଲା ତାହାର ବୃତ୍ତାନ୍ତ ।
ହସି ହସି ପୁଣି ଗଲା ସେ ସୁନ୍ଦରୀ ମଣି
ମୋହର କଥାକୁ ମନ ମଧରେ ନଗଣି ।
ପୂର୍ବେ ଦେଖିଥିଲି ଯେଉଁ ସୁନା ଗୃହ ମୁହିଁ
ମୃଗର ଯେ ଚାରି ଶିଂଘ କାହିଁ ଦେଖିନାହିଁ ।
ସେ ମାୟା ମୃଗ କି ଏହି ରମଣୀ ରତନ
ଏକଥା ଗୋଟା ନିଶ୍ଚୟ ସତ ହେବ ଜାଣ ।
କାହିଁକିନା କାମରୂପୀ ଅଟନ୍ତି ଦାନବେ
ତାହାଙ୍କର ମାୟା ଜାଣି ନପାରନ୍ତି ଦେବେ ।
ଏମନ୍ତ ଭାଳି ନୃପତି ବସନ୍ତେ ସେଠାରେ
ସେ ସୁନ୍ଦରୀ ମଣି ପୁଣି ଚାହିଁ ପୁନର୍ବାରେ ।
ହସିକରି ଚାଲିଗଲା ରାଜା ମୁଖ ଚାହିଁ
ତା ଦେଖି ଅତି ଆଶ୍ଚର୍ଯ୍ୟହେଲେ ନରସାଇଁ ।
ଏମନ୍ତ ବେଳେ ଶୁଭିଲା ଅପୂର୍ବ ଯେ ଗାନ
ସ୍ୱର ମୂର୍ଚ୍ଛା ତାଳ ଲୟ ଆଦି ତାନମାନ ।
ରାଜାର କର୍ଣ୍ଣେ ପଶନ୍ତେ ସେ ମଧୁର ଗୀତ
ଦିଗ ସ୍ଥିରକରି ତହୁଁ ନହୁଷର ସୁତ ।
ଆସ୍ତେ ଆସ୍ତେ ଗଲା ଗୀତ ସ୍ୱର ବାରିକରି
ଦେଖିଲା ପୁଣି ନୃପତି ଜଳର ଉପରି ।
ସହସ୍ର ଦଳ କମଳ ଏକ ବିରାଜଇ
ସେ ପଦ୍ମ ଉପରେ ଏକ ରମଣୀ ଅଛଇ ।
ସୁନ୍ଦରପଣେ କେ ସରି ନୋହିବେ ତାହାକୁ
ଉପମା ଦେବାକୁ ନାହିଁ ତା ରୂପ ଗୁଣକୁ ।
ପଞ୍ଚମ ସ୍ୱରେ ବସାଇ ଅଛି ଏକ ଗୀତ
ତାଳମାନ ଲୟ ବୀଣା ସ୍ୱରରେ ମିଳିତ ।
ସର୍ବ ସୁଲକ୍ଷଣା ପୁଣି ସର୍ବ ଆଭରଣା
ହସ୍ତରେ ଧରି ବଜାଉ ଅଛି ଏକ ବୀଣା ।
ତା ଗୀତ ଶୁଣିଲେ ମୋହ ଯିବେ ତିନିପୁର
ଦେବତା ମୁନି ଦାନବେ ଗନ୍ଧର୍ବ କିନ୍ନର ।

ମୋହିତହେବେ ସେ ଗୀତ ପଶିଲେ କର୍ଣ୍ଣରେ
ମାନବ ଛାର ଶୁଣି କି ଧୈର୍ଯ୍ୟ ଧରିପାରେ ।
ଏମନ୍ତ କି ଚରାଚର ପ୍ରାଣୀ ଛନ୍ତି ଯେତେ
ସମସ୍ତେ ମୋହିତ ହେବେ ତା ଗୀତ ଶୁଣନ୍ତେ ।
ରାଜା ସେ ଲାବଣ୍ୟମୟୀ ଲଳନାକୁ ଦେଖି
ମନମଧ୍ୟେ ବିଚାରିଲେ ଏମନ୍ତ ସୁମୁଖୀ ।
ବିଶାଳ ନୟନାନାରୀ ଦେଖିନାହିଁ କାହିଁ
ମୋ ବିଚାରେ ଏହା ତୁଲ୍ୟ ଆନ ନାରୀ ନାହିଁ ।
ରୂପ ଲାବଣ୍ୟର ନିଧି ବୋଲିବା ଏହାକୁ
ପୂର୍ବୁ ନଟ ରୂପୀ ଜରା ଘୋଟିଛି ରାଜାକୁ ।
ତେଣୁ ସର୍ବାଙ୍ଗେ ସଞ୍ଚରି ଗଲା କାମଶର
ଜଳିଉଠେ ଘୃତପାଇ ଯେହ୍ନେ ବୈଶ୍ୱାନର ।
କାମାଗ୍ନି ଜଳିଲା ତେହ୍ନେ ନୃପତି ଶରୀରେ
ନାରୀକି ଦେଖି ଯଯାତି ଦେହ କାମେ ଥରେ ।
ଚାରୁନୟନା କାମିନୀ ଦେଖିଣ ନୃପତି
ମନମଥ ବାଣ ଜାଳେ ପୀଡ଼ାପାଇ ଅତି ।
ଭାଳିଲା ଏ ବିଶ୍ୱବିମୋହିନୀ ରୂପବତୀ
ଦେଖିନାହିଁ କାହି ମୁହିଁ ଏମନ୍ତ ଯୁବତୀ ।
କାମ ପୀଡ଼ାପାଇ ରାଜା ଭାଳି କିଛିକ୍ଷଣ
ତାର ବିରହେ ଚଞ୍ଚଳ କରି ନିଜମନ ।
କାମ ଅନଳରେ ପୁଣି ହୋଇଲା ଦଗଧ
କାମ ଜ୍ୱର ଯେ ବ୍ୟାକୁଳ କଲା ତାର ହୃଦ ।
ଭାଳିଲା କିରୂପେ ମୁହିଁ ପାଇବି କାମିନୀ
ଏ ନାରୀକି ଭୋଗକଲେ ହେବି ମୁହିଁ ଧନୀ ।
ଭାବ ସଞ୍ଚାର କିରୂପେ ହୋଇବ ଏହାର
ଏହି ପଦ୍ମନେତ୍ରୀ ପଦ୍ମମୁଖୀ ରାମାବର ।
ମୋତେ ଭଜି ଆଲିଙ୍ଗନ କରଇ ଏ ଯେବେ
ପାଇଲେ ଏହି ରମଣୀ ରତନକୁ ତେବେ ।
ଜୀବନ ଗୋଟା ସଫଳ ହୋଇବ ମୋହର
ଏରୂପେ ଭାଳି ଯଯାତି ନୃପତି ଶେଖର ।
ସେହି ବରାରୋହା ବାଳା ମୁଖକୁ ଅନାଇ
ବୋଇଲେଗୋ ନାରୀରତ୍ନ ସାର ଏହି ତୁହି ।
କାହାର ହାତ ଧରିଛ କହ କରି ସତ
ଏଥିପୂର୍ବେ ସେ ରମଣୀ ଆସି ମୋ ଅଗ୍ରତ ।
ଦେଖାଦେଲା ପଚାରିଲେ କିଛି ନକହିଲା
ତାହୁଁ ଚାହୁଁ ହସି ହସି କେଣେ ଚାଲିଗଲା ।

ସେହି ରମଣୀକି ତୁମ୍ଭେ ଦେଖାଦେଲ ଏଥେ
ଯେଉଁ ରୂପବତୀ ନାରୀ ଅଛି ତୁମ୍ଭ ସାଥେ ।
ସେ କିଏ ତା ସତ୍ୟକରି କହଗୋ କଲ୍ୟାଣି
ମୁହିଁ ଚନ୍ଦ୍ରବଂଶୀ ରାଜା ଜାଣ ସୁଲକ୍ଷଣୀ ।
ସାତଗୋଟି ଦ୍ୱୀପେ ମୋର ଅଛି ଅଧିକାର
ମୋ ନାମ ଯଯାତି ମୁହିଁ ନହୁଷ କୁମର ।
ଭୁବନ ବିଖ୍ୟାତ ମୋତେ ଜାଣନ୍ତି ସମସ୍ତେ
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଅଛନ୍ତିତ ଯେତେ ।
ତୋର ସଙ୍ଗମ କାମନା କରଇ ମୋ ମନ
କୃପାକରି ଶୁଭେ ମୋତେ କର ତାହା ଦାନ ।
ମୋହର ପ୍ରିୟା ହୋଇବ ଯେବେ କି ସୁନ୍ଦରୀ
ଜାଣ ତୁମ୍ଭେ ଠାକୁରାଣୀ ହେଲେ ତିନିପୁରୀ ।
ନିୟମ କରି କହୁଛି ସତ ତୁମ୍ଭ ଆଗେ
ତୁମ୍ଭେ ଯାହା ମାଗିବ ତା ଆଣିଦେବି ବେଗେ ।
ଦୁର୍ଜୟ କାମ ବାଣରେ ମୁଁ ଅତି ପୀଡ଼ିତ
ଏଣୁ ମୁଁ ତୁମ୍ଭ ଶରଣ ନେଲି ହୋଇ ଭୀତ ।
ମୋତେ ତୁମ୍ଭେ ରକ୍ଷାକର ନାରୀଶିରୋମଣି
ଦେଲି ତୁମ୍ଭଙ୍କୁ ମୁଁ ସବୁରାଜ୍ୟ ଏ ଧରଣୀ ।
ଆପଣା ଦେହ ସହିତେ ଦେଲି ତୁମ୍ଭେ ଘେନ
ତୁମ୍ଭ ମଙ୍ଗଳ ନିମନ୍ତେ ମୋ ଭଣ୍ଡାର ଧନ ।
ଏ ତିନିଭୁବନ ଦେଇ ପାରଇ ଆବର
ରାଜାର ମୁଖୁଁ ଏମନ୍ତ ଶୁଣି ରାମାବର ।
କମଳ ବଦନ ଟେକି ସଖିକି ଅନାଇ
ବୋଇଲା ସଖି ବିଶାଳା କହଗୋ ବୁଝାଇ ।
ମୋର ପିତା ମାତା ନାମ ମୋ ଜନମ ସ୍ଥାନ
ଏ ନୃପତି ରୂପେ ମୁଗ୍ଧ ଏ ମୋହର ମନ ।
ଏସବୁ କଥାଗୋ ତୁମ୍ଭେ କର ନିବେଦନ
ବିଶାଳା ସଖି ଯେ ବୁଝିପାରି ତାର ମନ ।
ରାଜାକୁ ଚାହିଁ କହିଲା ମଧୁର ବଚନେ
ହେ ରାଜ ନନ୍ଦନ ଶୁଣ କହେ ସାବଧାନେ ।
ଦେବଦେବ ଶମ୍ଭୁ ପୂର୍ବେ ମନେ କୋପ ବହି
ନେତ୍ର ଅନଳେ କାମକୁ ପକାଇଲେ ଦହି ।
ସେହିଦିନୁ ସ୍ୱାମୀହୀନା ହୋଇ ଦେବୀ ରତି
ସର୍ବଦା ରୋଦନ କରୁଥାଇ ଦିବାରାତି ।
ସେ ରତି ଦେବୀର ଘର ଏହି ସରୋବର
ଶୁଣିକରି ତା ରୋଦନ କରୁଣ ଯେ ସ୍ୱର ।

ଦେବଗଣେ କୃପା କରି କହିଲେ ଶଙ୍କରେ
ଜୀବଦାନ ଦିଅ ଏହି କନ୍ଦର୍ପକୁ ବାରେ ।
ସ୍ୱାମୀ ବିରହେ କିରୂପେ ବଞ୍ଚିବ ଏ ରତି
ଆମ୍ଭଠାରେ ସେହି ଯେବେ ଥାଏ ପଶୁପତି ।
ଏହାକୁ ସଧବା କର ତୁମ୍ଭେ ମହାଦେବ
ଏମନ୍ତ ଶୁଣି ବୋଇଲେ ଦେବ ବାମଦେବ ।
ତୁମ୍ଭ କଥାରେ କାମକୁ ବଞ୍ଚାଇ ଦେବଇ
ସୁଖେ ବିଳସ ତୁମ୍ଭେ ଗୋ ପତିପତ୍ନୀ ଦୁଇ ।
ସାଧବଙ୍କ ସଖା ପୁଣି ହେବ ଦେହ ଶୂନ୍ୟ
ଏହିରୂପେ ବିରାଜିବ ଏହି ପଞ୍ଚବାଣ ।
ଏକଥା ଆନ ନୋହିବ ଜାଣ ଦେବଗଣ
ଶିବ ପ୍ରସାଦେ ବଞ୍ଚିଲା ସେ ମୀନକେତନ ।
ସ୍ଥିତି ସଂହାର କରତା ମହାତେଜା ହର
ପାର୍ବତୀଙ୍କି ଘେନି କରି କଲ୍ୟାଣ ଅପାର ।
ବୋଇଲେ ଅନଙ୍ଗ ଏବେ ଯାଅ ତୁ ଆନନ୍ଦେ
ଅତି ପ୍ରିୟା ରତିସଙ୍ଗେ ବିହର ସ୍ୱଚ୍ଛନ୍ଦେ ।
ଦିବ୍ୟ ଦେହରେ ଅନଙ୍ଗ ତହୁଁ ଯେ ଅଇଲା
ଏହି ସରୋବରରେ ରତିଦେବୀଙ୍କି ଭେଟିଲା ।
ସେହି ଏହି କାମ ସରୋବର ହେ ରାଜନ
ରତିଦେବୀଙ୍କର ଏହି ଅଟଇ ଭବନ ।
ମନମଥ ପୋଡ଼ି ଯିବାବେଳେ ଦେବୀ ରତି
ଦୁଃଖରେ ପୀଡ଼ିତା ହୋଇ କୋପକଲେ ଅତି ।
ସେ କୋପରୁ ଉପୁଜିଲା ପ୍ରଚଣ୍ଡ ଅନଳ
ତହିଁରେ ଦଗଧ ହୋଇ ଅତ୍ୟନ୍ତ ବ୍ୟାକୁଳ ।
ମୋହେ ମୂର୍ଚ୍ଛାଯାଇ ରତି ବିହ୍ୱଳ ହୋଇଲେ
ସ୍ୱାମୀର ବିରହେ ସେହି ବହୁତ କାନ୍ଦିଲେ ।
ଲୋତକ ବିନ୍ଦୁରେ ଏହି ସରୋବର ପୂରି
ଶୋକ ତହୁଁ ଉପୁଜିଲା ଜାଣ ଦଣ୍ଡଧାରୀ ।
ସବୁ ସୁଖ ବିନାଶନକାରୀ ଯେଉଁ ଶୋକ
ତାହାର ଜନମସ୍ଥାନ ରତିର ଲୋତକ ।
ତାରପଛେ ଉପୁଜିଲା ଜରାହେ ନୃପତି
ବିଯୋଗ ନାମେ ଦୁର୍ମେଧା ତହୁଁ ଉତପତ୍ତି ।
ତହୁଁ ଦୁଃଖ ସନ୍ତାପକ ନାମେ ଦୁଇଭାଇ
ସୁଖ ନାଶିନୀ ଦାରୁଣା ମୂର୍ଚ୍ଛା ଜନମଇ ।
ଶୋକତହୁଁ କାମଜ୍ୱର ଜାତ ହେ ରାଜନ
ଭଜେ ରତି ଅଶ୍ରୁବିନ୍ଦୁ ହୁଅନ୍ତେ ପତନ ।

ତହୁଁ ଉପୁଜିଲା ବିଶ୍ୱ ନାଶନ ବିଭ୍ରମ
ପ୍ରଳାପ ବିହ୍ୱଳ ପୁଣି ଉନ୍ମାଦ ମରଣ ।
ରତି ପାଖେ ରହିଲେ ଏ ସକଳ ମୂରତି
ଏ ସମୟେ ଯାହାହେଲା ଶୁଣ ତା ନୃପତି ।
କାମ ଆସୁଅଛି ବୋଲି ତହିଁ କେ ବୋଇଲା
ରତି କାମର ମିଳନ ଯହୁଁ ତହିଁ ହେଲା ।
ସବୁରି ମନେ ଆନନ୍ଦ ଉପୁଜିଲା ରାୟେ
ଆନନ୍ଦ ଅଶ୍ରୁ ସବୁରି ନୟନେ ଉଦୟେ ।
ସେ ଲୋତକ ବିନ୍ଦୁ ସବୁ ପଡ଼ନ୍ତେ ସେ ଜଳେ
ତହୁଁ କେତେ ପ୍ରଜାଜାତି ହେଲେ ମହୀତଳେ ।
ପ୍ରୀତି ଖ୍ୟାତ ଲଜ୍ଜାଶାନ୍ତି ଲୋତକ ଜନମ
ତହୁଁ ଦୁଇକନ୍ୟା ପୁଣି ଜନମ ରାଜନ ।
ସେ ଦୁଇଙ୍କ ନାମ ଲୀଳା କ୍ରୀଡ଼ା ଯେ ଅଟଇ
ସୁଖ ସମ୍ଭୋଗ ଦାୟିନୀ ଅଟନ୍ତି ସେ ଦୁଇ ।
କାମ ସଙ୍ଗତେ ରତିର ମିଳନ ହୁଅନ୍ତେ
ଆନନ୍ଦ ଅଶ୍ରୁ ରତିର ନୟନୁ ଗଡ଼ନ୍ତେ ।
ବାମନେତ୍ର ଅଶ୍ରୁ ବିନ୍ଦୁ ଜଳରେ ପଡ଼ିଲା
ସୁନ୍ଦର ପଦ୍ମ ଗୋଟିଏ ତହୁଁ ଉପୁଜିଲା ।
ସେ ପଙ୍କଜୁ ଜାତ ଏହି ବରାନନା ନାରୀ
ଏହା ନାମ ଅଶ୍ରୁ ବିନ୍ଦୁମତୀ ଦଣ୍ଡଧାରୀ ।
ଏହି ରତି ପୁତ୍ରୀ କାମଦେବର ନନ୍ଦିନୀ
ଏହି ପଦ୍ମଫୁଲ ଗୋଟି ଏହାର ଜନନୀ ।
ଏହି ଏହା ଜନ୍ମସ୍ଥାନ ଜାଣ ତୁ ରାଜନ
ଏହାର ପ୍ରୀତିରେ ମୁହିଁ ବଶ ସଦାଦିନ ।
ଏହାପାଖେ ଥାଇ ଏହା ଶୁଭ ମନାସଇ
ଏ ସଖିର ଭାବେ ମୁହିଁ ତୋଷ ହୋଇଥାଇ ।
ମୋ ନାମ ବିଶାଳା ମୁହିଁ ବରୁଣ ଦୁହିତା
ସବୁବେଳେ ଏହି ସଖୀସଙ୍ଗ ଭାବେ ରତା ।
ଏହାର ମୋହର ସବୁ କହିଲି ବୁଝାଇ
ଆଉ ଯାହା କହୁଛି ତା ଶୁଣ ନରସାଇଁ ।
ପତି କାମନାରେ ସଖି ବହୁ ତପ କଲା
ରାଜା ଶୁଣି ଶୁଣି ପୁଣି ଏମନ୍ତ ବୋଇଲା ।
ଆଗୋ ପୁଣ୍ୟବତୀ ତୁମ୍ଭେ କହିଲ ସକଳ
ତା ସବୁ ବୁଝିପାରିଲି ଶୁଣ ମୋର ବୋଲ ।
ଏହି ବରାନନା ରତିପୁତ୍ରୀ ଭଜୁ ମୋତେ
ଏ ବାଳାର ମନବାଞ୍ଛା ପୂରାଇବି ନିତ୍ୟେ ।

ଯାହା ମାଗିବ ତା ଆଣିଦେବିଗୋ କଲ୍ୟାଣୀ
ଯେମନ୍ତେ ମୋହର ବଶହୁଏ ସେ ତରୁଣୀ ।
ସେ କଥାଗୋଟା ରହିଲା ଜାଣ ତୁମ୍ଭ ହସ୍ତେ
ବିଶାଳା ସଖୀ କହିଲା ଶୁଣ ମହୀପତେ ।
ମୋର ଏହି ସଖୀର ଯେ ଅଛି ଏକ ବ୍ରତ
ତାହା କହୁଅଛି ତୁମ୍ଭେ ଶୁଣ ଦେଇ ଚିତ୍ତ ।
ନବଯୁବା ପୁରୁଷ ଯେ ସର୍ବାଙ୍ଗ ସୁନ୍ଦର
ବୀରର ସବୁ ଲକ୍ଷଣ ଥିବ ଯେ ଆବର ।
ଦେବରାଜ ତୁଲ୍ୟ ତାକୁ ସବୁଥିବ ଜଣା
ଧର୍ମରୁ ଆଚାରୁ ତିଳେ ନୋହୁଥିବ ବଣା ।
ମହାଦାନୀ ହୋଇଥିବ ମହାତେଜୋବନ୍ତ
ଉତ୍ତମ ଉତ୍ତମ ଯଜ୍ଞକାରୀ ବୁଦ୍ଧିମନ୍ତ ।
ଗୁଣବନ୍ତ ହୋଇଥିବ ଧର୍ମେ ତାର ମତି
ପୁଣ୍ୟ ଭାଜନ ବୋଲାଉଥିବ ଏ ଜଗତୀ ।
ଇନ୍ଦ୍ରତୁଲ୍ୟ ଯଜ୍ଞକାରୀ ଧର୍ମକାରୀ ପୁଣି
ଅଇଶ୍ୱର୍ଯ୍ୟ ନାରାୟଣ ସଙ୍ଗେ ଲୋକେ ଗଣି ।
ଦେବ ଦ୍ୱିଜଙ୍କର ପ୍ରିୟ ହୋଇଥିବ ନିତ୍ୟ
ଦେବତତ୍ତ୍ୱ ଜାଣିଥିବ ତ୍ରିଲୋକ ବିଖ୍ୟାତ ।
ବିକ୍ରମେ ସେ ତିନିଲୋକେ ପାଉଥିବ ପୂଜା
ସୁମତୀ ସୁପ୍ରିୟ ପୁଣି କମନୀୟ ରାଜା ।
ଏମନ୍ତ ବର କାମନା କରେ ମନେ ମନେ
ଯଯାତି କହିଲେ ଶୁଣ ଆଗୋ ବରାଙ୍ଗନେ ।
ଯାହା ତୁମ୍ଭେ କହିଲ ସେ ସବୁ ମୋର ଡହିଁ
ଏହା ମନଲାଖି ବର ଅଟେ ସିନା ମୁହିଁ ।
ତେଣୁ ଯେ ବିଧାତା ଜାଣି ଭେଟାଇଲା ଆଣି
ବିଶାଳା କହିଲା ତାହା ସତ ନୃପମଣି ।
ତ୍ରିଜଗତେ ତୁମ୍ଭେ ଏକା ଏସବୁ ଲକ୍ଷଣେ
ଏସବୁ ଗୁଣରୁ ମାତ୍ର ନାହିଁ ଜାଣ ଗୁଣେ ।
ଆସିବ କି ନଆସିବ ସଖୀର ମନକୁ
ନ ପଚାରିଲେ କେମନ୍ତେ କହିବି ତୁମ୍ଭଙ୍କୁ ।
ଏମନ୍ତ ଶୁଣି କହିଲେ ଯଯାତି ନୃପତି
କି ଦୋଷ ମୋହର ଅଛି କହଗୋ ସୁଦନ୍ତୀ ।
ତୁମ୍ଭ ସଖି ବରିବାକୁ ନମଙ୍ଗିବ ମୋତେ
ସେଦୋଷଗୋଟା ଦେଖାଇଦିଅଗୋତୁରିତେ ।
ବିଶାଳା ସଖି କହିଲା ହେ ଜଗତପତେ
ନିଜଦୋଷ ତୁମ୍ଭେ ଜାଣି ନ ପାର କେମନ୍ତେ ।

ଜରାଘୋଟି ରହିଅଛି ଏ ତୁମ୍ଭ ଶରୀରେ
ଆମ୍ଭସଖୀ ଯୁବାବର ଖୋଜେ ନିରନ୍ତରେ ।
ତୁମ୍ଭଙ୍କୁ ବରିବାପାଇଁ କାହୁ ସେ ମଙ୍ଗିବ
ଜାଣିଶୁଣି ବୁଢ଼ାବର ହାତ କି ଧରିବ ।
ବର କନ୍ୟାଙ୍କର ହୁଏ ବୟସ ସମାନ
ସୁନ୍ଦର ଯୁବା ପୁରୁଷେ ସଦା ନାରୀମନ ।
ପୁରୁଷ ସଦା ସୁନ୍ଦରୀ ଯୁବତୀ ଖୋଜଇ
କନ୍ୟାପିତା ବର ଜାତି ଗୁଣ ଖୋଜୁଥାଇଁ ।
ବରପିତା କନ୍ୟାଗୁଣ ଲକ୍ଷଣ ବାଛଇ
ଅଲକ୍ଷଣୀ କନ୍ୟାକୁ ସେ ବଧୂ ନ କରଇ ।
ତୁମ୍ଭେ ସର୍ବଜ୍ଞ ପୁରୁଷ କି ପଚାର ମୋତେ
କହ ମୋ ସଖୀ ତୁମ୍ଭଙ୍କୁ ବରିବ କେମନ୍ତେ ।
ଦାରୁଣ ଅପ୍ରିୟ ବାକ୍ୟ ଶୁଣି ନୃପବର
ଦୁଃଖ ଅନଳେ ଦଗଧ ତାହାଙ୍କ ଶରୀର ।
ଅତି ବ୍ୟାକୁଳେ କହିଲେ କହ ପୁଣ୍ୟବତୀ
ବିଚିତ୍ରପରି ଲାଗଇ ଏ ତୁମ୍ଭ ଭାରତୀ ।
ଜରା ଉପୁଜିଲା କାହୁଁ ଏ ମୋର ଶରୀରେ
ସଂସର୍ଗ ନଥାଇ ମୋର କାହାରି ସଙ୍ଗରେ ।
ଏଣୁ ମୋ ଦେହରେ ଜରା ହେବା ଅସମ୍ଭବ
ମୋତେ ଜଣାନାହିଁ ଜରା ମୋଦେହେ ଉଭବ ।
ଯେ କିଛି ଦୁର୍ଲଭ ଦ୍ରବ୍ୟ ଅଛି ତ୍ରିଭୁବନେ
ତୁମ୍ଭ ସଖୀ ତାହା ଯେବେ ମନାସଇ ମନେ ।
ନିୟମ କରୁଛି ତାହା ଆଣିପାରେ ଦେଇ
ତୁମ୍ଭ ସଖୀକି ଗୋ ତୁମ୍ଭେ କହିବ ବୁଝାଇ ।
ଏ ଉତ୍ତମବର କେଉଁ ନ ପାଇବ ଆଉ
ବିଶାଳା ସଖୀ କହିଲେ ଶୁଣ ମହାବାହୁ ।
ଯେବେ କି ଅସାଧକିଛି ଏ ତୁମ୍ଭର ନାହିଁ
ଏ ଜରା ଦେହକୁ ଛାଡ଼ି ହୁଅ ଯୁବାଦେହୀ ।
ତେବେ ଆମ୍ଭ ସଖି ହାତ ଧରିବ ତୁମ୍ଭର
ଏଥିରେ ସନ୍ଦେହ କିଛି ନାହିଁ ନୃପବର ।
ସତକରି କହୁଅଛି ମୁଁ ତୁମ୍ଭ ଅଗ୍ରତେ
ନିଶ୍ଚୟ ଆମ୍ଭର ସଖୀ ହସ୍ତଦେବ ହସ୍ତେ ।
ଜରା ସଂକ୍ରାମକ ବୋଲି ବେଦ ଯେ କହଇ
ପୁତ୍ର ଭାଇ ଭୃତ୍ୟଦେହେ ଯାଇ ସଞ୍ଚରଇ ।
ଏଣୁ ତୁମ୍ଭେ ଜରାକୁଗୋ ତାଙ୍କ ଦେହେଥୋଇ
ତାଙ୍କ ଯୁବା ବୟସକୁ ବେଗେ ଆଣ ଯାଇ ।

ଏହାକଲେ କ୍ଷତି କିଛି ନୋହିବ ତୁମ୍ଭର
ଉତ୍ତମ ପ୍ରୀତି ବଢ଼ିବ ସଖୀ ସଙ୍ଗତର ।
ଆତ୍ମା ପ୍ରଦାନ କରଇ ଯେହୁ କୃପାକରି
ସେଦାନ ସମାନ ଦାନ ନାହିଁ ଧଣ୍ଡଧାରୀ ।
ତାର ଯେତେ ପୁଣ୍ୟଫଳ କହିଲେ ନସରେ
ଯେ ପୁଣ୍ୟ ଅରଜିଥାଇ କଠୋର କଷ୍ଟରେ ।
ସେ ପୁଣ୍ୟ ଦାନକରିବା ଫଳ ମହାପୁଣ୍ୟ
ଏଣୁ ରାଜନ କରନ୍ତୁ ଗୃହକୁ ଗମନ ।
ଆପଣା ପୁତ୍ରକୁ ତୁମ୍ଭେ ଜରାଦେହ ଦେଇ
ତାର ତରୁଣ ଦେହକୁ ଆଣ ବଦଳାଇ ।
ସୁନ୍ଦର ଯୁବା ହୋଇଣ ଆସନ୍ତୁ ତୁରିତେ
ଭୋଗରେ ମନ ତୁମ୍ଭର ଥିବ ଯେ ପର୍ଯ୍ୟନ୍ତେ ।
ତେତେକାଳ ସୁଖଭୋଗ କରନ୍ତୁ ଆପଣ
ବିଶାଳ ତୁନି ହୋଇଲା କହି ଏ ବଚନ ।
ସୁକର୍ମା ଦ୍ୱିଜ କହଇ ପିପ୍ପଳ ଶୁଣଇ
ପୁଣି ଯଯାତି ବିଶାଳା ସଖୀ କି କହଇ ।
ହେଉ ତୋକଥା କରିବି ନିଶ୍ଚେ ପୁଣ୍ୟବତୀ
ଏହାକହି କାମାଶକ୍ତ ସେ ମୂଢ଼ ଯଯାତି ।
ସେଠାରୁ ଘରକୁ ଫେରି ତୁରିତେ ଅଇଲା
ପିତୃଭକତ ଯେ ଚାରି ପୁତ୍ରଙ୍କୁ କହିଲା ।
ତୁରୁ ପୁରୁ କୁରୁ ଯଦୁ ପୁତ୍ରନାମ ଧରି
ଡକାଇ ଆଣି କହଇ ଆରେ ପୁତ୍ର ଚାରି ।
ମୋହର ଯେମନ୍ତେ ସୁଖହେବ ତାହାକର
ଶୁଭ କି ଅଶୁଭ କିଛି ମନରେ ନଧର ।
ପୁତ୍ରେ ବୋଇଲେ ପିତାର ବଚନ ଅଲଙ୍ଘ୍ୟଂ
ଲଙ୍ଘନ କରିବା ପୁତ୍ର ବୋଲାଇ ଅଯୋଗ୍ୟ ।
ଆହେ ତାତ ବେଗେ କହ ବିଳମ୍ବ ନକର
ଜାଣିଥା କଥା ଅନ୍ୟଥା ନୋହିବ ତୁମ୍ଭର ।
ପୃଥିବୀପତି ଯଯାତି ଶୁଣି ଏ ବଚନ
ଆନନ୍ଦ ସମୁଦ୍ରେ ବୁଡ଼ିଗଲା ତାଙ୍କମନ ।
ଦୀନ ଗୋପୀନାଥ ବୋଲେ ବୋଲ ହରିହରି
ଘୋର ଦୁସ୍ତର ସଂସାରୁ ହେଲେ ଯିବ ତରି ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ଯଯାତି ଚରିତେ ନାମ
ସପ୍ତସପ୍ତତିମୋଽଧ୍ୟାୟଃ ।

## ଅଷ୍ଟସପ୍ତତି ଅଧ୍ୟାୟ

### ତିନିପୁତ୍ରଙ୍କୁ ଯଯାତିଙ୍କ ଅଭିଶାପ

ଯଯାତି କହିଲେ ଶୁଣ ତୁମ୍ଭେ ପୁତ୍ର ଚାରି
ତୁମ୍ଭ ମଧ୍ୟରୁ କେ ମୋତେ ପାରିବ ଉଦ୍ଧାରି ।
ଏ ଦୁଃଖ ଦାୟିନୀ ଜରା ଦେହରୁ ମୋହର
ବଦଳନେଇ କରିବ ଯୁବା ମୋ ଶରୀର ।
ମୋ ଜରା ଅବସ୍ଥା ନେବ ଯୁବାବସ୍ଥା ଦେବ
ବାରମ୍ବାର ପୀଡ଼ା ମୋତେ ଦିଏ ମନୋଭାବ ।
ଅତି ସୁନ୍ଦର ହେଲେହେଁ ଏ ଦେହ ମୋହର
ଯୁବତୀ ସମ୍ଭୋଗେ ମନ ବଳିଛି ଆବର ।
ପାତ୍ରେ ଥିବା ଜଳ ଯେହ୍ନେ ଅଗ୍ନିକି ଭ୍ରମାଇ
ତେସନ ଚଞ୍ଚଳମନ କାମାନଳେ ହୋଇ ।
ତୁମ୍ଭ ଭିତରୁ କେ ଜଣେ ଏ ଜରାକୁ ଘେନ
ତୁମ୍ଭ ତରୁଣ ଅବସ୍ଥା କର ମୋତେ ଦାନ ।
ଯେ ଜରା ଘେନିବ ସେହି ସୁପୁତ୍ର ମୋହର
ଏ ରାଜ ଭୋଗକରିବ ହୋଇ ନୃପବର ।
ଏଥିରେ ସନ୍ଦେହ ନାହିଁ ସଉଖ୍ୟ ସମ୍ପଦ
ସନ୍ତତି ବଶ କୀରତି ମନ୍ଦିର ସଉଧ ।
ବିପୁଳ ହେବ ତାହାର ଏ ସମସ୍ତ ଜାଣ
ଏମନ୍ତ ଶୁଣି କହିଲେ ତାଙ୍କୁ ପୁତ୍ରଗଣ ।
ଆହେ ତାତ ତୁମ୍ଭେପରା ଧର୍ମବନ୍ତ ରାୟ
ସତରୁ ତିଳେ ନଟଳେ ତୁମ୍ଭର ହୃଦୟ ।
ପ୍ରଜାକୁ ପାଳନକର ସତ୍ୟଧର୍ମେ ଥାଇ
ଏରୂପେ ପ୍ରକୃତିଛଡ଼ା ହୋଇଲ କିମ୍ପାଇଁ ।
ନୃପତି କହିଲେ ପୂର୍ବେ ଏ ମୋହର ପୁରେ
କାହୁଁ ନଟ ନଟୀ ଆସି ଗାଇଲେ ସୁସ୍ୱରେ ।
ନାଚିଲେ ସେ ଅଭିନୟ କଲେଟି ଯେମନ୍ତେ
କେଭେ ଏହା ଦେଖିନାହିଁ କାହିଁମୋର ନେତ୍ରେ ।
ମୋ ଦେହରେ ଜନମାଇ କାମର ବିକାର
କେଣେ ସେଗଲେ ନଜାଣେ ମୁଁ ତାହାଙ୍କ ଘର ।
ମୋ ଦେହରେ ଜରା ଆସି ପଶିଲା କେମନ୍ତେ
ମନମଥ ଶର ପେଷି ମୋ ମନକୁ ମନ୍ଥେ ।
କାମ ବିହ୍ୱଳେ ବ୍ୟାକୁଳ ହୃଦୟ ମୋହର
ଏକ ରୂପବତୀ ହେଲା ନୟନ ଗୋଚର ।

ନାମ ଗୋତ୍ର ପଚାରନ୍ତେ ସେ କିଛି ନକହି
ତାପାଖେ ବିଶାଳା ନାମେ ସଖୀ ଅଛି ରହି ।
ସେ ବୋଇଲା ସଖୀ କର ଧରନ୍ତେ ତୁମ୍ଭର
ଜରା ଘୋଟିଅଛି ଯେଣୁ ଏ ତୁମ୍ଭ ଶରୀର ।
ତେଣୁ ଆମ୍ଭ ସଖୀଙ୍କର ମନକୁ ନଆସ
କରିପାର ଯେବେ ତୁମ୍ଭେ ଏ ଜରାକୁ ନାଶ ।
ତେବେ ଆମ୍ଭ ସଖୀହେବ ତୁମ୍ଭ ପରିଚାରୀ
ତାହାର ବାକ୍ୟେ ଅଇଲି ଗୃହକୁ ମୁଁ ଫେରି ।
ଜରା ଦେଇ ଯୁବାବସ୍ଥା ନେବଇଁ ତୁମ୍ଭରି
ଯଦି ପାଳିବରେ ପୁତ୍ରେ ବାକ୍ୟକୁ ମୋହରି ।
ସବୁ ବୁଝାଇ କହିଲି ତୁମ୍ଭ ଆଗେ ପୁତ୍ରେ
ଏ ମୋହର ଜରା ନେଇଥୁଅ ତୁମ୍ଭ ଗାତ୍ରେ ।
ତୁମ୍ଭ ଯୁବାବସ୍ଥା ଦେଇ ମୋତେ ତୋଷକର
ଏମନ୍ତ ଶୁଣି ବୋଇଲା କୁରୁ ଯେ କୁମର ।
ପିତାମାତା ପରସାଦେ ପୁତ୍ର ଦେହ ପାଇ
ସାଧୁପୁତ୍ର ସେ ଦେହରେ ଧର୍ମ ଆଚରଇ ।
ପିତାମାତା ସେବା ଅଟେ ପୁତ୍ରଙ୍କର କର୍ମ
ପିତା ମାତା କଥା ରକ୍ଷାକରା ପୁତ୍ର ଧର୍ମ ।
ଯଉବନ ଦାନକାଳ ଏ ନୋହେ ମୋହର
ଦେଇ ନପାରିବି ତାତ ମୋତେ କ୍ଷମାକର ।
ପ୍ରଥମ ବୟସେ ନରେ ବିଷୟ ଭୋଗନ୍ତି
ତୁମ୍ଭର ସେ ଭୋଗକାଳ ଗଲାଣି ତ ବିତି ।
ପୁତ୍ରକୁ ଜରା ପ୍ରଦାନ କରିଣ ହେ ତାତ
ପଶ୍ଚାତେ ଆପଣ ସୁଖ ଭୋଗିବେ କେମନ୍ତ ।
ଯିବା ଉପରେ ହେଲାଣି ଆସି ତୁମ୍ଭ ପ୍ରାଣ
ତୁମ୍ଭ ସଙ୍ଗତରେ ଯିବ ମୋର ଯଉବନ ।
ମୁହିଁତ ବହୁତ କାଳ ବଞ୍ଚିଣ ରହିବି
ଏ ଯୁବା ବୟସ ଆଉ ଫେରି ନ ପାଇବି ।
ଏଣୁ ଦେଇ ନପାରଇ ଏ ମୋ ଯଉବନ
ଏ ଅକଥା ଗୋଟି ରଖି ନପାରେ ରାଜନ ।
ବଡ଼ପୁଅ ତୁରୁ କଥା ଶୁଣି ରାଜ କୋପେ
ନେତ୍ର ରଙ୍ଗବର୍ଣ୍ଣ କରିଦେଲେ ଅଭିଶାପେ ।
ଆରେପାପୀ ମୋ ରାଜ୍ୟରେ ନରହତୁ କ୍ଷଣେ
ଏହାକହି ତାକୁ ତଡ଼ିଦେଲେ ଗଲା ବନେ ।
ଧର୍ମଛଡ଼ା ହୋଇ ତୁହି ବୁଲରେ ଅଜ୍ଞାନୀ
ମୁଣ୍ଡିତ ମୁଣ୍ଡ ତୁ ପୁଣି ହୁଅ ହୀନିମାନି ।

ବେଦଶାସ୍ତ୍ର ସବୁ ତୋର ଯାଉରେ ପାସୋରି
ଦେବଦ୍ରୋହୀ ବ୍ରହ୍ମଘାତୀ ହୁଅ ଅନାଚାରୀ ।
ମିଛ କହି ତୁ ନିରତେ ରହ ସୁରାପିଇ
କ୍ଷୁଧା ନିବାରଣ କର ଗୋରୁ ମାରିଖାଇ ।
ପାଲଟା ମାରି ତୁ ବୁଲ ସାଇ ସାଇ ହୋଇ
ପରଦାର କର ପର ଘର ଧନ ଦେଇ ।
ବ୍ରହ୍ମଦୋଷୀ ଲମ୍ପଟ ତୁ ମହାଚଣ୍ଡ ହୁଅ
ଦିନରାତି ତୁ ସଗୋତ୍ରା ନାରୀ ହରୁଥାଅ ।
ଅଭୟ ଭକ୍ଷ ବୋଲି ତୋ ବାରଣ ନ ଯାଉ
ସର୍ବଦା ତୋହର ଦୁଷ୍ଟମତି ହୋଇଥାଉ ।
ସବୁରି ଧନ ବିନାଶକାରୀ ତୁ ହୋଇବୁ
ଏହିରୂପେ ପୁତ୍ର ନାତି ତୁହିରେ ପାଇବୁ ।
ମେଳଚ୍ଛ ହୋଇ ବୁଲିବେ ସବଂଶ ତୋହର
ତୁରୁକୁ ଏରୂପେ ଶାପ ଦେଇ ନୃପବର ।
ଯଦୁକୁ ପାଖକୁ ଡାକି ବୋଇଲେରେ ପୁତ୍ର
ତୁହିଁ କି ନେବୁ ମୋହର ଏହି ଜରାଗାତ୍ର ।
ଜରା ଦେହେ ଅକଷ୍ଟକ ରାଜ୍ୟ ଭୋଗକର
କରକୁ ଆଞ୍ଜୋଳିକରି କହେ ଯଦୁବୀର ।
ଆହେ ତାତ ଜରାଭାର ବହି ନପାରିବି
ଏ ନବଯୁବା ବୟସ ଆଉ କି ପାଇବି ।
ଜରା ଦେହର ଏ ପାଞ୍ଚଗୋଟି ଯେ ବଇରୀ
ଶୀତଳ ପଥ ଆବର ଯୁବତୀ ଯେ ନାରୀ ।
କୁତ୍ସିତ ଅନ୍ନ ସର୍ବଦା ମନର ହରଷ
ଜରାର ମୂଳ ଯେ ତାହା ଶୁଣ ନରଈଶ ।
ଥଣ୍ଡା ବାଟ ପ୍ରୋଢ଼ା ନାରୀ କବନ୍ନ ଆବର
ମନର ବିରସ ଏହି ପାଞ୍ଚ ନୃପବର ।
ଦୋଷ କ୍ଷମାକର ତାତ ନପାରିବି ଘେନି
ଯଦୁର ଏକଥା ଶୁଣି କ୍ରୋଧେ ନୃପମଣି ।
ଶାପଦେଲେ ତୋର ବଂଶ ନୋହିବେ ନୃପତି
କ୍ଷତ୍ରିଧର୍ମ ଛାଡ଼ି ଅନ୍ୟ ଧର୍ମେ ଦେବେ ମତି ।
ବଳହୀନ ତେଜହୀନ କ୍ଷମାହୀନ ହେବେ
ଯଦୁବୋଲେନିର୍ଦ୍ଦୋଷୀକିଶାପଦେଲ ଯେବେ ।
କୃପାକରି ଏ ଦୀନରେ ହୋଇବା ପ୍ରସନ୍ନ
ଏମନ୍ତ ଶୁଣି ବୋଇଲେ ଯଯାତି ରାଜନ ।
ଯେତେବେଳେ ମହାଦେବ ଆସି ତୋରକୁଳେ
ଆପଣା ଅଂଶରେ ସୃଷ୍ଟି କରିବେ ସେକାଳେ ।

ତୋହର କୂଳ ପବିତ୍ର ହେବରେ କୁମର
ଯଦୁବୋଇଲେ ନିର୍ଦ୍ଦୋଷୀ ପୁତ୍ର ମୁଁ ତୋହର ।
ଯେବେ ଶାପଦେଲେ ଦୟା ଥାଉ କାଳେ କାଳେ
ଏମନ୍ତ ଶୁଣି ଯେ ପୁଣି ଯଯାତି ବୋଇଲେ ।
ପିତାର ଯେ କଷ୍ଟ ଜ୍ୟେଷ୍ଠପୁତ୍ର ସିନା ହରେ
ତେଣୁ ରାଜ୍ୟଧନ ସେହି ସବୁ ଭୋଗକରେ ।
ପିତାର ସକଳ ଭାର କରଇ ବହନ
ଧର୍ମ କର୍ମରେ ତୁମ୍ଭଙ୍କୁ ନ ବଳିଲା ମନ ।
ତେଣୁ ତୁମ୍ଭେ ଭାଗ୍ୟହୀନ ହେଲରେ ନନ୍ଦନ
ତୁମ୍ଭେ ପୁଣି ମୋର ଆଜ୍ଞା ନକଲ ପାଳନ ।
ଏଣୁ ଶାପ ଦେଲି ଦଣ୍ଡ ପାଇବନା ତୁମ୍ଭେ
ଅନୁଗ୍ରହ କରି ଆଉ ନପାରଇ ଏବେ ।
ଯାହାକି ଇଚ୍ଛା ତୁମ୍ଭର ତାହା ତୁମ୍ଭେ କର
ଯଦୁବୋଇଲେଯେ ତୁମ୍ଭେ ରାଜା ଯେ ଆମ୍ଭର ।
ଯେ କାରଣୁ ରାଜ୍ୟରୂପ ବଂଶ କଲ ନାଶ
ଏଣୁ ଦୁଷ୍ଟ ବଂଶପତି ହେବି ମୁଁ ନରେଶ ।
ନାନାଜାତି କ୍ଷତ୍ରିହେବେ ତୁମ୍ଭ ବଂଶେ ଜାତ
ତାଙ୍କ ଦେଶ ଗ୍ରାମ ସ୍ତିରୀ ରତ୍ନ ଏ ସମସ୍ତ ।
ତୁରଷ୍କ ନାମେ ଯେ ଆମ୍ଭବଂଶେ ଉପୁଜିବେ
ମହାବଳ ଅତି ଚଣ୍ଡ ମ୍ଳେଛ ବୋଲାଇବେ ।
ତୁମ୍ଭ ଅଭିଶାପେ ଯେଉଁ ଶକ ହେବେ ଜୋତ
ତାଙ୍କୁ ମାରି ନେବେ ତାଙ୍କ ଦେଶ ସ୍ତିରୀରତ୍ନ
କୋପେ ଯଦୁ ଯଯାତିକି କହନ୍ତେ ଏମନ୍ତ
ତହୁଁ ଯଯାତି କ୍ରୋଧରେ ହୋଇ ପ୍ରଜ୍ଜ୍ୱଳିତ ।
ପୁନରପି ଦେଲେ ଏହି ଅଭିଶାପ ତାଙ୍କୁ
ତୋର ବଂଶନାଶିବେ ଯେବେ ମୋ ପ୍ରଜାଙ୍କୁ ।
ତାଙ୍କୁ ଏହି ଅଭିଶାପ ଦେଉଅଛି ଶୁଣ
ଚନ୍ଦ୍ର ସୂର୍ଯ୍ୟ ନକ୍ଷତ୍ର ଯେ ପୃଥ୍ୱୀ ତାରାଗଣ ।
ଯେତେକାଳ ଥିବେ ତେତେକାଳଯାଏ ଏହି
ତୋର ବଂଶଧର ମ୍ଳେଛ ଥିବେ ଯେତେ ରହି ।
କୁମ୍ଭୀପାକ ରଉରବେ ପଡ଼ି ପଚୁଥିବେ
ମୋର ଅଭିଶାପ ଜନ୍ମେ ଜନ୍ମେ ଭୋଗୁଥିବେ ।
ଅଭିଶାପ ଦେଇ ତହୁଁ ଚାହିଁଲେ କୁରୁକୁ
ଖେଳିବା ପିଲାଦେଖିଣ ନ ଡାକି ତାହାକୁ ।
ଶିଶୁଙ୍କାନେ ଛାଡ଼ି ତାକୁ ଯଯାତି ନୃପତି
ପୁଣ୍ୟଆତ୍ମା ପୁରୁକୁ ଯେ ଡକାଇଣ କତି ।

ବୋଇଲେ ଶର୍ମିଷ୍ଠାସୁତ ତୁ ମୋର ନନ୍ଦନ
ମୋର ଏ ଜରା ଶରୀର ଘେନ ତୁ ବହନ ।
ଅକଣ୍ଟକ ରାଜ୍ୟଭୋଗ ତାସଙ୍ଗେ ମୁଁ ଦେଲି
ପୁରୁ ବୋଇଲେ ଭୋ ତାତ ଜରାଦେହନେଲି ।
ତୁମ୍ଭେ ପିତା ରାଜ୍ୟଭୋଗ କରୁଥିଲା ପରି
ସେ ରୂପେ ରାଜ୍ୟପାଳିବି ଜାଣ ଦଣ୍ଡଧାରୀ ।
ଆହେ ତାତ ତବ ଆଜ୍ଞା ମୋର ଅଲଂଘନ
ଆନନ୍ଦ ମନରେ କର ମୋତେ ଜରାଦାନ ।
ମୋର ସୁନ୍ଦର ଏ ଯୁବାରୂପ ଦେଲି ତୋଷେ
ସୁଖ ଉପଭୋଗ କର ନାରୀ ସହବାସେ ।
ଏ ଜରା ଦେହେ ରହିବି ଯାବତ ଜୀବନ
ପୁରୁର ଏକଥା ଶୁଣି ଯଯାତି ରାଜନ ।
ଆନନ୍ଦମନେ ତାହାକୁ କହିଲେରେ ବତ୍ସ
ଯେଣୁ ମୋ ଆଜ୍ଞା ପାଳିଲୁ କରିଣ ସାହସ ।
ବହୁତସୁଖ ମୁଁ ତେଣୁ ଦେବଇଁରେ ତୋତେ
ମୋଜରା ନେଇତୋ ଯୁବାଦେଲୁ ମହାମତେ ।
ମୋର ଦେବା ରାଜ୍ୟଭୋଗ କରରେ କୁମର
ଏରୂପେ ବଦଳ ହେଲା ପିତା ପୁତ୍ରଙ୍କର ।
ମୂଲ୍ୟରୁ ଅଧିକ ଛିଟ ହୋଇଲା ଯେ ରାଜ୍ୟ
ତାହା ଦେଇଣ ପୁତ୍ରକୁ ସେହି ମହାରାଜ ।
ଚାହୁଁ ଚାହୁଁ ଜରାପୁରୁ ସର୍ବାଙ୍ଗ ଘୋଟିଲା
ଖୋଳ ବରଷିଆ ପରି ଯଯାତି ଦିଶିଲା ।
ରୂପେ ବିରାଜିଲା ପୁଣି ମନମଥ ପ୍ରାୟ
ମୋ ରୂପଦେଖି କାମିନୀମାନେ ହେଲେ ମୋହ ।
ଆପଣାର ଧନ ରାଜ୍ୟ ବାଣ ଶରାସନ
ଛତ୍ର ଚାମର ବ୍ୟଜନ ଭଣ୍ଡାର ଆସନ ।
ଗଜ ଅଶ୍ୱ କୋଷ ରଥ ଦେଶ ବଳପୁର
ସମସ୍ତ ଦେଇ ପୁତ୍ରକୁ ଯଯାତି ନୃବର ।
ପୁରୁକୁ ଦେଇ ଏସବୁ ନହୁଷ ନନ୍ଦନ
କାମ ଆସକତେ ନାରୀରୂପ କରି ଧ୍ୟାନ ।
ସାଗର ସଦୃଶ କାମସରୋବର ତୀରେ
ତୁରିତେ ଯାଇଁ ମିଳିଲା ଘଡ଼ିକ ଭିତରେ ।
ସେ ସରୋବରରେ ଦେଖେ ଅଶ୍ରୁବିନ୍ଦୁ ମତୀ
ଆନନ୍ଦ ହେଲା ଦେଖିଣ ଯଯାତି ନୃପତି ।
ଚାରୁ ପୀନ ପୟୋଧରା ବିଶାଳନୟନା
ମଧୁରଭାଷିଣୀ ସଜ ସରୋଜବଦନା ।

ଅଶ୍ରୁ ବିନ୍ଦୁମତୀପାଶେ ଅଛି ସଖୀ ତାର
ବୋଇଲେ ସେ ବିଶାଳାକୁ ଚାହିଁ ନୃପବର ।
ଅଇଲି ବିଶାଳେ ଦେଖ ଯୁବା ରୂପଧରି
ତୁମ୍ଭ ସଖୀର ମନକୁ ଯିବି କି ସୁନ୍ଦରୀ ।
ଭଜୁ ଏବେ ତୁମ୍ଭେ ତାକୁ କହଗୋ ବୁଝାଇ
ଯାହା ସେ ମାଗିବ ତାହା ଦେଉଥିବି ମୁହିଁ ।
ଏ ସତ୍ୟ ମୋହର ମିଥ୍ୟା ନକହେ ଯଯାତି
ତୁମ୍ଭ ସଖୀଙ୍କି ଡକାଅ ଏଠାକୁ ସମ୍ପ୍ରତି ।
ବିଶାଳା ସଖୀ କହିଲା ତୁମ୍ଭେ ନୃପବର
ଜରା ତେଜି ଧରିଅଛ ଯୁବା କଳେବର ।
ଆଉ ଏକ ଦୋଷ ଅଛି ତୁମ୍ଭର ରାଜନ
ତେଣୁ ଆମ୍ଭ ସଖୀଙ୍କର ନ ବଳିବ ମନ ।
ଏମନ୍ତ ଶୁଣି ବୋଇଲେ ପୁଣି ନୃପବର
କି ଦୋଷ ଅଛି ସେ କଥା କହମୋ ଆଗର ।
ଦୀନ ଗୋପୀନାଥ ବୋଲେ ବୋଲ ହରିହରି
ହରିନାମ ଏକା ଭବ ସମୁଦ୍ରରେ ତରି ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ଯଯାତି
ଚରିତେଽଷ୍ଟସପ୍ତତିତମୋଽଧ୍ୟାୟଃ ।



## ଊନାଶୀତି ଅଧ୍ୟାୟ

### ଅଶ୍ରୁ ବିନ୍ଦୁମତୀ ବିଭା

ବୋଇଲା ବିଶାଳା ସଖୀ ଶୁଣ ମହାରାଜା
ଯାର ସଉଭାଗ୍ୟବତୀ ଦିଓଟି ଭାରିଯା ।
ଶର୍ମିଷ୍ଠା ଆବର ଦେବଯାନୀ ଗୁଣବତୀ
ନବ ବାଳା ଆମ୍ଭ ସଖୀ ନବୀନା ଯୁବତୀ ।
ଜାଣିନାହାନ୍ତି ତ ଘରକରଣା ଆବର
ଚାତୁର୍ଯ୍ୟପଣେ ସେ ଦୁଇ ଭାରିଯା ତୁମର ।
ପ୍ରବୀଣା ଅଟନ୍ତି ଏଣୁ ତୁମେ ତାଙ୍କ ବଶ
ତାଙ୍କଗର୍ଭେ ଚାରିପୁତ୍ର ତୁମର ନରେଶ ।
ଆମସଖୀ ବଶେ ଯେବେ ରହିବ ନିରତେ
ସଉତୁଣୀ ଭାବକୁ ସେ ଚିନ୍ତି ଅବିରତେ ।
ଆମ୍ଭ ସଖୀର ଅନିଷ୍ଟ କରିବେ ଅବଶ୍ୟ
ଆମ୍ଭ ସଖୀ ଛାଡ଼ି ଏଣୁ ହେବ ତାଙ୍କ ବଶ ।
ଚନ୍ଦନ ବୃକ୍ଷରେ ସାପ ନୋଇଲେ ଗୁଡ଼ାଇ
ଡରେ ସେ ବୃକ୍ଷ ପାଖକୁ କେହି ଯେ ନଯାଇ ।
ଦିଓଟି ଭାରିଯା ଯୋଗୁଁ ତୁମେତ ତେସନ
ଦୁଇ ସଉତୁଣୀ କାନ୍ତ ହୋଇଛ ରାଜନ ।
ପର୍ବତ ଶିଖରୁ ଡେଇଁ ମରିବାହିଁ ଭଲ
କିବା ଆଶ୍ରା କରିବାହିଁ ଜଳନ୍ତା ଅନଳ ।
ଜଳେ ଝାସିବ କଦାପି ସଉତୁଣୀ ପତି
ନ ବରିବ ଜାଣ ଯେହୁ ଚତୁରୀ ଯୁବତୀ ।
ସଉତୁଣୀ ସାପ ବିଷ ସବୁହୁଁ ଅଧିକ
ତେଣେ ଜରଜର ତୁମ୍ଭ କଳେବର ଯାକ ।
ଏକାନ୍ତ ପ୍ରିୟ ସଖୀର ହୋଇବ କେମନ୍ତେ
ଏଣୁ ଆମ ସଖୀ କାହୁଁ ଭଜିବ ନୃପତେ ।
ନୃପତି କହିଲେ ତୁ ଗୋ ଶୁଣ ବରାନନେ
ଦେବଯାନୀ ଶର୍ମିଷ୍ଠା ଏ ଦୁହିଙ୍କି ଯତନେ ।
ଛାଡ଼ି ତୁମସଖୀ ଘେନି ଧର୍ମ ମୁଁ କରିବି
ଧର୍ମପତ୍ନୀ ବୋଲି ତୁମ ସଖୀକି କହିବି ।
ଅଶ୍ରୁ ବିନ୍ଦୁମତୀ ଧୀରେ କହେ ହେ ରାଜନ
ତୁମର ଦେହ ଆବର ତୁମ ରାଜ୍ୟ ଧନ ।
ମୋହର ଭୋଗ୍ୟ ହୋଇବ କହିବି ମୁଁ ଯାହା
ତାହା ଆନ ନ କରିବ ତୁମେ ନରନାହା ।
ମୁଁ ଯାହା କହିବି ତାହା କରିବ ନିଶ୍ଚୟ
ଅଙ୍ଗୀକାର ହେଲେ ତେବେ ଧର୍ମବନ୍ତ ରାୟ ।
ସୁନ୍ଦର କର କମଳ ଦିଅ ମୋର କରେ
ନୃପତି ବୋଇଲେ ବରବର୍ଣ୍ଣିନିଗୋ ଧୀରେ ।
ପ୍ରତିଜ୍ଞା କରୁଛି ତୁମ ବିନା ଆନନାରୀ
ନ ଛୁଇଁବି ସତ୍ୟ ସତ୍ୟ ଅଟଇ ମୋହରି ।
ରାଜ୍ୟଧନ ଦେହ ମୋର ସବୁ ଭୋଗକର
ଚାରୁଅଙ୍ଗୀ ଘେନ କରେ ଏ ମୋହର କର ।
ତୁ ଯାହା କହିବୁ ତାହା କରିବି ଏ ପଣ
ଅଶ୍ରୁ ବିନ୍ଦୁମତୀ କହେ ମହାଭାଗ ଶୁଣ ।
ଆଜୁଁ ତୁମ୍ଭ ଅଙ୍ଗୀକାରେ ହୋଇଲି ଭାରିଯା
ହରଷ ଫୁଲ୍ଲନୟନେ ପୁଣି ମହାରାଜା ।
ଗାନ୍ଧର୍ବ ବିଧି ବିଧାନେ କଲେ ବିଭାଘର
ମନମଥ ଦୁହିତାର ଧଇଲେ ଯେ କର ।
ସଙ୍ଗେ ଘେନି ବନେ ଉପବନେ ନଦୀତୀରେ
ସମୁଦ୍ର ତଟରେ ରମ୍ୟ ପର୍ବତ କନ୍ଦରେ ।

କାମିନୀ ଘେନି ବିହାର କଲେ ନୃପବରେ
କୋଡ଼ିଏ ହଜାର ବର୍ଷ ଗଲା ଏ ରୂପରେ ।
ଶ୍ରୀବିଷ୍ଣୁ ଯେ କହୁଛନ୍ତି ଶୁଣୁଛନ୍ତି ବେନ
ଇନ୍ଦ୍ରପାଇଁ କନ୍ଦର୍ପର ବଞ୍ଚନା ଏସନ ।
ମାୟାମୋହେପଡ଼ି ରାଜା ହୋଇଲେ ମୋହିତ
ସୁକର୍ମା ଦ୍ୱିଜ କହନ୍ତି ପିପ୍‌ପଳ ଅଗ୍ରତ ।
ଏରୂପେ ସେ ଧର୍ମବନ୍ତ ଯଯାତି ନୃପତି
କାମକନ୍ୟା କାମିନୀର ଫାନ୍ଦେ ଦିନରାତି ।
ପ୍ରେମ ବିଳାସରେ ତାହା ନପାରିଲେ ଜାଣି
ଦିନେ ଚାରୁଲୋଚନା ସେ କନ୍ଦର୍ପ ନନ୍ଦିନୀ ।
ବିନୟେ ରାଜାଙ୍କୁ ବଶ କରିଣ କହିଲା
ଗୋଟା କଥାରେ ମୋହର ଶରଧା ବଳିଲା ।
ସେହି ମନବାଞ୍ଛା ବେଗେ ପୂର୍ଣ୍ଣକର କାନ୍ତ
କାହିଁରେ ସାଧୁ ତୁମ୍ଭର କହେ ନରନାଥ ।
ରତିପୁତ୍ରୀ ବୋଲେ ଅଶ୍ୱମେଧ ଯଜ୍ଞକର
ହେ ପୃଥିବୀ ପତି ସବୁ ଯଜ୍ଞମଧ୍ୟେ ସାର ।
ରାଜା କହିଲେ କରିବା ଆଗୋ ଗୁଣବତୀ
ପୁତ୍ର ଶ୍ରେଷ୍ଠ ପୁରୁକୁ ଯେ ଡକାଇ ନୃପତି ।
ପୁରୁଆସି ନୃପତିର ପାଦତଳେ ପଡ଼ି
ରତିପୁତ୍ରୀ ପାଦେ ପଡ଼ି ଉଠି କରଯୋଡ଼ି ।
ବୋଇଲେ କି ଆଜ୍ଞାକରବେଗେ ତାତ ମାତ
ମୁହିଁ ତୁମ୍ଭ ପାଦତଳ ଦାସ ଯେ ନିରତ ।
ରାଜା ବୋଇଲେରେ ବାବୁ ମୋ କଥା କରିବୁ
ଭଲ ଭଲ ଦ୍ୱିଜ ସବୁ ବାଛିଣ ଆଣିବୁ ।
ବରଣ କରି କରିବୁ ଅଶ୍ୱମେଧ ଯୋଗ
ଦୀକ୍ଷିତହୋଇ ସେ ଯାଗେ ଦେବୁ ଘୃତଭାଗ ।
ପୁରୁତହୁଁ ଯାଇଁ କଲା ଯାଗ ଆୟୋଜନ
ରତିପୁତ୍ରୀ ଘେନି ଯାଗ କଲେ ସେ ରାଜନ ।
ଦୀନ ଦୁଃଖୀ ବିପ୍ରେ ଦାନ ଦେଲେ ସେ ବହୁତ
ତହୁଁ ପୂର୍ଣ୍ଣାହୁତି ଦେଇ କଲେ ସମାପତ ।
ରତିପୁତ୍ରୀକି ଯେ ଚାହିଁ କହିଲେ ଯଯାତି
ଆଉକି ଇଚ୍ଛା ତୁମ୍ଭର କହ ଗୁଣବତୀ ।
କହିଲେ କରିବି ତାହା କରିଅଛି ପଣ
ସାଧ ଅସାଧ ତହିଁରେ ନାହିଁ ମୋ ବାରଣ ।
ରାଜା କହନ୍ତେ ଏମନ୍ତ ସେ କାମନନ୍ଦିନୀ
ଆଉ ଏକ ସାଧ ମୋର ଅଛି ନୃପମଣି ।
ଇନ୍ଦ୍ରଲୋକେ ଯିବାପାଇଁ ବଳିଛି ମୋ ମନ
ତହୁଁ ଯିବି ବ୍ରହ୍ମଲୋକେ ଶିବଲୋକେ ପୁଣ ।
ତହୁଁ ବିଷ୍ଣୁଲୋକ ଦେଖି ଆସିବଇଁ ଫେରି
ନଭାଙ୍ଗ ଏହୁ ଶରଧା ଗୋଟା ଧଣ୍ଡଧାରୀ ।
ରାଜା ବୋଇଲେ ଗୋ ବାଳେ ଧନ୍ୟ ଧନ୍ୟ ତୁହି
ତୋହର ଏହି ପ୍ରସ୍ତାବେ ସୁପ୍ରସନ୍ନ ମୁହିଁ ।
ସ୍ତିରୀ ସ୍ୱଭାବ ଚଞ୍ଚଳେ ଅବା କୁତୂହଳେ
ଯାହା କହିଲ ଅସାଧ ମୋପକ୍ଷେ ସେବାଳେ ।
ପୁଣ୍ୟ ଦାନ ଯଜ୍ଞ ତପେ ସାଧ ଏ ହୁଅଇ
ଆଉ କାହିଁରେ ଏ ସାଧ ହୋଇ ନପାରଇ ।
ଏଣୁ ଏ କଥା ତୁମ୍ଭର ହେଲା ଅସମ୍ଭବ
ଏରୂପେ ଯେ ପୁଣ୍ୟକାରୀ ନାହିଁ ନା ମାନବ ।
ଦେଖିନାହିଁ ଶୁଣିନାହିଁ ଏକଥା ମୁଁ କେଭେ
ମର୍ତ୍ତ୍ୟପୁରେ ଜନମନ୍ତି ଜାଣ ଯେତେ ଜୀବେ ।
ସ୍ୱଦେହେ ସ୍ୱର୍ଗକୁ ଯିବା ଜଣା ଶୁଣାନାହିଁ
ଏଣୁ ଅସମ୍ଭବ ଏହି କଥାଗୋଟା ହୋଇ ।
ଏହାଛଡ଼ା ଆଉ ଯାହା କହିବ କରିବି
ରତିପୁତ୍ରୀ ବୋଇଲେ ଯେ ମନମଧ୍ୟେ ଭାବି ।
ମୁଁ ଯାହା କହିଲି ତାହା ଅନ୍ୟେ ଅସମ୍ଭବ
ତୁମ୍ଭର ଅସାଧ କିଛି ନୁହଇ ହେ ଧବ ।
ପଦେ ପଦେ ଏହି କଥା ଗୋଟା ସତ୍ୟ ସତ୍ୟ
ହେ ରାଜନ ତପ ଯଶ ଗୁଣ ବୀର୍ଯ୍ୟବନ୍ତ ।
ତୁମ୍ଭ ତୁଲ୍ୟ ତ୍ରିଭୁବନେ ନାହିଁ ଆନଜନ
ବଳବନ୍ତ ବୀର୍ଯ୍ୟବନ୍ତ ମହା ତେଜୀୟାନ ।
ତୁମ୍ଭେ ନହୁଷ ନନ୍ଦନ ନଭାଙ୍ଗ ଶରଧା
ଦୀନ ଗୋପୀନାଥକୁ ନ ଲାଗୁ ମାୟାବାଧା ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ଅଶ୍ରୁ ବିନ୍ଦୁମତୀ ବିଭା ବର୍ଣ୍ଣନେ
ଯଯାତି ଚରିତେ
ଊନାଶୀତିତମୋଽଧ୍ୟାୟଃ ।

## ଅଶୀତି ଅଧ୍ୟାୟ

### ଦେବଯାନୀ ଓ ଶର୍ମିଷ୍ଠା ଚରିତ

ପିପଳ ଦ୍ୱିଜ ପଚାରେ ଆହେ ଦ୍ୱିଜବର
ରାଜା ରତି ପୁତ୍ରୀଙ୍କର ଶୁଣି ବିଭାଘର ।
ପ୍ରଥମ ଭାରିଯା ପୁଣ୍ୟବତୀ ଦେବଯାନୀ
ଦ୍ୱିତୀୟ ଶର୍ମିଷ୍ଠା ବୃଷପର୍ବାର ନନ୍ଦିନୀ ।
କି କଲେ ତାଙ୍କ ଚରିତ୍ର କହ ମୋହ ଆଗେ
ସୁକର୍ମା କହେ ଯାଯାତି ରାଜା ଅନୁରାଗେ ।
ରତିପୁତ୍ରୀ ଘେନି ପକ୍ଷେ ଆପଣା ଉଆସେ
ତାଙ୍କ ସଉତୁଣୀ ଚାହିଁ ଚମକି ବିରସେ ।
ଦେଖି ଦେବଯାନୀ ରାଣୀ ରାଗେ ଜରଜର
ଅଭିଶାପ ପାଇବାରୁ ଆପଣା କୁମର ।
ଶର୍ମିଷ୍ଠା ରାଣୀକି ଡାକି ବିଚାରଇ ବସି
ରୂପ ତେଜ ସତ୍ୟବ୍ରତ ଧର୍ମ କର୍ମେ ରସି ।
ରତି ପୁତ୍ରୀକି ଜିଣିବାପାଇଁ ମନାସିଲେ
ତାଙ୍କ ଦୁଷ୍ଟପଣ କାମନନ୍ଦିନୀ ଜାଣିଲେ ।
ରାଜାର ଛାମୁରେ ଯାଇଁ କଲେ ନିବେଦନ
ଶୁଣି ସବୁ କୋପେ ସେହି ଯଯାତି ରାଜନ ।
ଯଦୁକୁ ଡାକି ବୋଇଲେ ଶୁଣରେ କୁମର
ମୋହରଭଲରେ ଇଚ୍ଛାଥାଏ ଯେବେତୋର ।
ଶର୍ମିଷ୍ଠା ଦେବଯାନୀକି ମାର ଏହିକ୍ଷଣି
ଆନ କିଛି ନ ବିଚାର ତୁ ଯେ ପୁତ୍ରମଣି ।
ଯଦୁ ପିତାର ବଚନେ ଦିଅଇ ଉତ୍ତର
ମାନଦାତା ଦାନଦାତା ତୁମ୍ଭେ ଯେ ପିଅର ।
ନିର୍ଦ୍ଦୋଷୀମାନଙ୍କୁ ବଧ କରିବି କେମନ୍ତେ
ବଇଦିକ ଜ୍ଞାନୀ ଜନେ ନିନ୍ଦିବେନା ମୋତେ ।
ଏଣୁ ତାତ ଏ ଅକର୍ମ କରି ନପାରଇ
ମହାପାପ ସ୍ତିରୀ ମାତୃବଧ ଯେ ଅଟଇ ।
ମାତା ଭଗିନୀ ଦୁହିତା ସ୍ତିରୀ ଯେ ଆବର
ସହସ୍ର ଦୋଷ କଲେହେଁ ନ ଛେଦିବ ଶିର ।
ଭାଇ ପୁତ୍ରେ ତାଙ୍କୁ ବଧ କରି ନ ପାରନ୍ତି
ଯଦୁର ଏ କଥା ଶୁଣି ଯଯାତି ନୃପତି ।
ଅଭିଶାପ ଦେଲେ ତାକୁ ପୁଣି କ୍ରୋଧଭରେ
ବୋଇଲେ ଯେଣୁ ମୋଆଜ୍ଞା ତୁହୀ ଲଙ୍ଘିବାରେ ।
ମାତୃଗୋତ୍ରୀ କନ୍ୟାଭୋଗ ଜରରେ ଘାମର
ପାପେ କଳୁଷିତ ହେଉ ତୋର କଳେବର ।
ପୁତ୍ରକୁ ଏରୂପେ ଶାପ ଦେଇ ସେ ଯଯାତି
ରତିପୁତ୍ରୀ ସୁଖ ଭୋଗେ ମାତି ଦିବାରାତି ।
ବିଷ୍ଣୁଧାନ ଭଜନ ସେ ସବୁ ପାସୋରିଲା
ଅଶ୍ରୁ ବିନ୍ଦୁମତୀ ରୂପ ଧ୍ୟାନେ ନିମଜ୍ଜିଲା ।
କାମକନ୍ୟା ସୁଲୋଚନା ମନ୍ତ୍ର ଜପ ତାର
ଉପଭୋଗ କରେ ଦିବା ରାତି ନୃପବର ।
ଏରୂପେ ପୁଣି ବହୁତ କାଳ ଗଲା ବହି
ଅମର ଅଜର ହୋଇ ପ୍ରଜାଗଣ ରହି ।
ଶ୍ରୀବିଷ୍ଣୁ ଧ୍ୟାନବିନା ସେ ଆନ ନ ଜାଣନ୍ତି
ସାଧୁସେବା ତପ ସତ୍ୟ ବ୍ରତେ ରହିଥାନ୍ତି ।
ହରି ହରି ବୋଲଭାଇ ସରିଯାଉ ଦିନ
ହରି ପାଦପଦ୍ମଭଜେ ଗୋପୀନାଥ ଦୀନ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ଦେବଯାନୀ ଓ ଶର୍ମିଷ୍ଠା ଚରିତ
ବର୍ଣ୍ଣନେ ଯଯାତି ଚରିତେ ନାମ
ଅଶୀତିତମୋଽଧ୍ୟାୟଃ ।



## ଏକାଶୀତି ଅଧ୍ୟାୟ

### ବାସବ ଆଦେଶେ ମେନକାର
### ଅଶ୍ରୁ ବିନ୍ଦୁମତୀ ସମୀପେ ଗମନ

ସୁକର୍ମା କହିଲେ ଶୁଣ ବୁଦ୍ଧିମନ୍ତ ଦ୍ୱିଜ
ଯଯାତିର ଧର୍ମକର୍ମ ଦେଖି ଦେବରାଜ ।
ବିକ୍ରମ ସତ୍ୟ ଆବର ଦାନ ପୁଣ୍ୟ ଦେଖି
ମନେ ମହାଭୟ ପାଇ ହୋଇ ଅତିଦୁଃଖୀ ।
ଅପସରା ମେନକାକୁ ପାଶକୁ ହକାରି
ଦୂତୀ କରି ପଠାଇଲେ ମର୍ତ୍ତ୍ୟେ ବଜ୍ରଧାରୀ ।
ବୋଇଲେ ଲୋ ମେନକା ତୁ ଅପସରାମଣି
ରତିପୁତ୍ରୀ କି କହିବୁ ମୋ କହିବା ବାଣୀ ।
ଯଯାତି ରାଜାକୁ ସ୍ୱର୍ଗେ ଆଣଇ ଯେମନ୍ତେ
ଏମନ୍ତ କହି ଆସିବୁ ଯାଇଁ ତୁ ତୁରିତେ ।
ଇନ୍ଦ୍ର ଆଜ୍ଞାପାଇ ବେଗେ ମେନକା ଚଳିଲା
ରତିପୁତ୍ରୀ ଆଗେ ଇନ୍ଦ୍ର କହିବା କହିଲା ।

ବାରତା ଦେଇ ସେ ତହୁଁ ଗଲା ଇନ୍ଦ୍ରପାଶେ
ଏକଦିନେ ରତିପୁତ୍ରୀ ଯଯାତିକି ଭାଷେ ।
ଅହେ କାନ୍ତ ସତ କରି ଧରିଛ ମୋ କର
ଉପଭୋଗ କଲ ପୁଣି ରଖି ତୁମ୍ଭ ଘର ।
ଯାହା ଯାହା ମାଗିବି ମୁଁ ତାହା ସବୁ ଦେବ
ରଖି ନପାରୁଛ ମୋର କଥା ନରଧବ ।
ବୀର ହୋଇ ସତ୍ୟ ରକ୍ଷା ନକର କେମନ୍ତେ
ମୁହିଁସତ୍ୟ ପାଳି ରହିଅଛି ତୁମ୍ଭ ସାଥେ ।
ଅସତ ସଙ୍ଗେ କି ସାଧୁ ସଙ୍ଗ କରିପାରେ
ଏଣୁ ଛାଡ଼ି ଯାଉଅଛି ଏବେ ବାପଘରେ ।
ରାଜା ବୋଇଲେ ଗୋ ପ୍ରିୟେ କହକି କରିବି
ଅସାଧ ହୋଇଥିଲେ ସେ ତାହାକୁ ତେଜିବି ।
ସାଧ ହୋଇଲେ କରିବି କହୁଅଛି ସତ
ଅଶ୍ରୁ ବିନ୍ଦୁମତୀ ବୋଲେ ଶୁଣ ତୁମ୍ଭେ କାନ୍ତ ।
ଦେଖି ଚାହିଁ ତୁମ୍ଭର ମୁଁ ଧରିଅଛି କର
ଜାଣି ଶୁଣି ଧର୍ମ ଜ୍ଞାନ ବିକ୍ରମ ତୁମ୍ଭର ।
ଲକ୍ଷଣବନ୍ତ ପୁରୁଷ ଯେଣୁ ଅଟ ତୁମ୍ଭେ
ତୁମ୍ଭର ଅସାଧ କିଛି ନାହିଁ ରାଜଦେବେ ।
ହରତା କରତା ତୁମ୍ଭେ ପୁଣ୍ୟକାରୀ ଜନ
ସାଧୁ ବଇଷ୍ଣବ ପୁଣି ଅଟହେ ରାଜନ ।
ବିଷ୍ଣୁ ଭକତ ଅସାଧ ତିନିପୁରେ ନାହିଁ
ଏହା ଜାଣି ତୁମ୍ଭ ହାତ ଧରିଅଛି ମୁହିଁ ।
ଶ୍ରୀ ବିଷ୍ଣୁ ଦେବ ଯାହାକୁ ସର୍ବଦା ପ୍ରସନ୍ନ
ସବୁ ଲୋକକୁ ସେ ଯାଇ ପାରଇ ରାଜନ ।
ତାହାର କିଛି ଦୁର୍ଲଭ ନାହିଁ ତ୍ରିଭୁବନେ
ସେ ସବୁ ଲକ୍ଷଣମାନ ବହିଛ ଆପଣେ ।
ତୁମ୍ଭର ଉତ୍ତମମତି ବିଷ୍ଣୁ ପରସାଦେ
ଏ ମର୍ତ୍ତ୍ୟ ମଣ୍ଡଳେ ତୁମ୍ଭେ ରହି ଅପ୍ରମାଦେ ।
ଅଜର ଅମର କଲ ଧର୍ମଶିକ୍ଷା ଦେଇ
କଳପ ବୃକ୍ଷ ସବୁରି ଦ୍ୱାରେ ଅଛ ରୋଇ ।
ସକଳ ଧେନୁକୁ କଲ କାମଧେନୁ ପ୍ରାୟ
ସକଳ ଜନ ମୁନିଙ୍କ ପ୍ରାୟ ତପୋମୟ ।
ସହସ୍ର କୁଳୀନ ଥୋଇ ତୁମ୍ଭେ ଘରେ ଘରେ
ମାନବଙ୍କ ବଂଶବୃଦ୍ଧି କଲ ଏ ପ୍ରକାରେ ।
ମର୍ତ୍ତ୍ୟକୁ ଯେ ସ୍ୱର୍ଗପୁର କଲ ମହୀପତି
ଘୁଞ୍ଚାଇ ଦେଲ ଯମର ହାତରୁ ରାଜୁତି ।
ଆଜିଯାଏ ମର୍ତ୍ତ୍ୟପୁରେ ଜନ୍ମ ମୃତ୍ୟୁ ନାହିଁ
ନ ମରିବେ ନ ଜନ୍ମିବେ ପ୍ରାଣିଜାଣ ସେହି ।
ଏ ଅସାଧ କର୍ମଗୋଟା ଯାହାରେ ହୁଅଇ
ସେହି କି ସବୁ ଲୋକକୁ ଯାଇ ନ ପାରଇ ।
ପାପୀଲୋକେ ମୋକ୍ଷହେବେ ଯାର ଦରଶନେ
ଅଛି କି ତାର ଅସାଧ ଚଉଦ ଭୁବନେ ।
ସର୍ବଧର୍ମ ପ୍ରଭାକର ବୋଲି ମୁହିଁ ଜାଣି
ଭର୍ତ୍ତା ମୁଁ କଲି ତୁମ୍ଭଙ୍କୁ ପୁଣି ନୃପମଣି ।
ସତ୍ୟ କରିଛ କି ନାହିଁ କହ ସତକରି
କହିଛ ଯାହାକି ଲୋଡ଼ା ହୋଇବ ତୁମ୍ଭରି ।
ଚଉଦ ଭୁବନେ ଥିଲେ ଆଣିଦେବି ତାହା
ଅସାଧ ଥିଲେ କି କହିଥାନ୍ତ ତୁମ୍ଭେ ଏହା ।
ଏବେ ସତକରି କହ ମୋ ଆଗରେ ନାଥ
ଦେବଲୋକକୁ ଯିବାର ନୁହ ସମରଥ ।
ଶଠ ଲମ୍ପଟଙ୍କ ପ୍ରାୟ କୂଟକଥା କହି
ମୋ ମନ ଭୁଲାଇ ମୋତେ ପୁଣି ବିଭାହୋଇ ।
ତୁମ୍ଭ ପୂର୍ବ ପ୍ରେମଯାକ ସବୁ ଯିବ ପୋଡ଼ି
ନୃପତି ବୋଇଲେ ସତ୍ୟ ମୁଁ ନପାରେ ଛାଡ଼ି ।
ସତ କହୁଛି ମୁଁ ପ୍ରିୟେ ଏ ତୁମ୍ଭ ଅଗ୍ରତେ
ମୋହର କିଛି ଅସାଧ ନାହିଁ ତ୍ରିଜଗତେ ।
ଜଗତପତି ଶ୍ରୀପତି ପରସାଦେ ମୋର
ଉତ୍ତମ ଲୋକରେ ଗତି ଅଛଇ ଆବର ।
ଯେ କାରଣୁ ପ୍ରିୟେ ସ୍ୱର୍ଗେ ଯାଉନାହିଁ ମୁହିଁ
କହୁଛି ସେ କଥା ଗୋଟା ଶୁଣ ମନଦେଇ ।
ସ୍ୱର୍ଗପୁରକୁ ମୁଁ ଗଲେ ଦେବଗଣ ମୋତେ
ଛାଡ଼ି ନଦେବେ ମୁଁ ଆସି ନପାରିବି ମର୍ତ୍ତ୍ୟେ ।
ମୁଁ ନଆସିଲେ ମୋ ପ୍ରଜା ବିରହେ ମୋହର
ମୃତ୍ୟୁ ମୁଖରେ ପଡ଼ିଣ ହେବେ ନାରଖାର ।
ଏମନ୍ତ ଶୁଣି ବୋଇଲେ କାମର ଦୁଲଣୀ
ସବୁଲୋକ ଯାକ ଦେଖି ଆସିବା ନା ପୁଣି ।
ବଳେ କି ବାନ୍ଧିପାରିବେ ଆମ୍ଭଙ୍କୁ ଅମରେ
ବନ୍ଧାକି ହୋଇ ପାରନ୍ତି ବିଷ୍ଣୁଭକ୍ତ ନରେ ।
ନ ଭାଙ୍ଗ ଏହି ଶରଧାମୋର ଗୁଣମଣି
ନୃପତି କହିଲେ ନିଶ୍ଚେ କରିବି ତା ପୁଣି ।
ଏରୂପେ ବୋଧ ଦେଇ ସେ ନହୁଷ ନନ୍ଦନ
ଜାଲେ ଯେମନ୍ତେ ପଡ଼ନ୍ତି ଜଳେଥିବା ମୀନ ।

ପବନହୁଁ ବେଗେ ଯାଇ ପାରନ୍ତି ଯେ ମୃଗେ
ସେ ପୁଣି ବନ୍ଧାହୁଅନ୍ତି ଦଇବି ସଂଯୋଗେ ।
ଯେବଣ ପକ୍ଷୀ ସହସ୍ର ଯୋଜନରେ ଥାଇ
ଆସିଣ ଦେଖଇ ଗନା ଫାଶି ନ ଦେଖଇ ।
ସମ ବିଶମ କରତା ଅଟେ ଏକାକାଳ
ମହାଭୟଙ୍କର ସେହି କାଳର କବଳ ।
ମାନହାନୀ ହୀନିମାନ ସବୁ ସେ କରଇ
ଯହିଁ ତହିଁ ଥିଲେ କାଳ ବଳେ ଗରାସଇ ।
କାଳ ନରକେ ପକାଇ ନଚାଇ ବୁଲାଇ
ସ୍ୱର୍ଗେ ମର୍ତ୍ତ୍ୟେ କାଳନେଇ ପ୍ରାଣୀଙ୍କିରଖାଇ ।
ଏ ଜଗତଯାକ ସବୁ କାଳ ଯେ କେବଳ
ଜଗତ ଧାତା ଅନାଦି ନିଧନ ଯେ କାଳ ।
ବୃକ୍ଷଜାତ ଫଳପ୍ରାୟ କାଳ ଏ ସଂସାରେ
ପଚାଇ ସଢ଼ାଇ ଉପୁଜାଇ ବାରେ ବାରେ ।
ଜପ ତପ ମନ୍ତ୍ର ଯନ୍ତ୍ର ଦାନ ପୁଣ୍ୟ ଯେତେ
ପୁତ୍ର ନାତି ଆଦି ବନ୍ଧୁ ବାନ୍ଧବ ସହିତେ ।
କାଳ କବଳ ନରକୁ ରଖି ନ ପାରନ୍ତି
ତିନୋଟି ପାଶ ଯେ କାଳ ରଖିଛି ସାଇତି ।
ଅକାଟ ଅତୁଟ ସେହି ତିନିଗୋଟି ପାଶ
ତାକୁ ଡ଼େଇଁବାକୁ ନାହିଁ କାହାରି ସାହସ ।
ସେ ତିନି ପାଶର ନାମ ଶୁଣ ମନ ଦେଇ
ବିବାହ ପୁଣି ଜନମ ମରଣ ଅଟଇ ।
ଏହି ତିନି ଯେଉଁ କାଳେ ଯେଉଁସ୍ଥାନେ ଆଣି
ଯେ ଘଟାଇଦିଏ ତାହା ଆନ ନୋହେ ପୁଣି ।
ଗଗନ ଘନ ପବନେ ଭ୍ରମଇ ଯେସନ
କାଳକବଳରେ ପ୍ରାଣୀ ଭ୍ରମନ୍ତି ତେସନ ।
ସୁକର୍ମା ଦ୍ୱିଜ କହଇ ପିପ୍ପଳ ଶୁଣଇ
ପ୍ରାଣୀ ଉପାସନା କରି କାଳକୁ ଆଣଇ ।
କର୍ମକୁ ପଠାଇ ଦିଏ ଜାଣ ଏହି କାଳ
ଆପେ କରାଳ ବଦନେ କରଇ କବଳ ।
ନାନା ଉପଦ୍ରବ ନାନା ବ୍ୟାଧି ନାନାଦୋଷ
ଆଘାତ ଆଦି ବିପଦ ସର୍ପଦନ୍ତ ବିଷ ।
ଏସବୁ ପଠାଇ ଦିଏ କାଳ ଏକା ଜାଣ
ଏହାଙ୍କର ଯୋଗୁଁ ଯେ ବିଭାଜନ ମରଣ ।
ପୁଣ୍ୟ କର୍ମ ଯାକ ଏକା ସୁଖର କାରଣ
ବିରୋଧକର୍ମ କରନ୍ତି ଯେତେ ପ୍ରାଣୀଗଣ ।

ଶୁଭ ଅଶୁଭ ଲକ୍ଷଣ ଅଜଣା ତାହାଙ୍କୁ
କର୍ମ ଦଉଡ଼ି ବାନ୍ଧିଛି ଏହି ସଂସାରକୁ ।
କର୍ମ ସମ୍ମୁଧି ବାନ୍ଧବ ସୁଖ ଦୁଃଖ ଦାତା
କର୍ମ ଏକା ସୁଖ ଦୁଃଖ ଉପାୟ କରତା ।
ସୁନା ରୂପା ବର୍ଣ୍ଣ ଜାଣ ନିଶ୍ଚିନ୍ତ ଯେମନ୍ତେ
କର୍ମରେ ବନ୍ଧା ଏ ଜୀବଜାଣ ହୋ ତେମନ୍ତେ ।
ଏ ଜୀବ କର୍ମର ବଶେ ଥାଇ ନିରନ୍ତର
ଗର୍ଭରେ ଯାଇଁ ରହିବା ମାତ୍ରେ ଯେ ପ୍ରାଣୀର ।
ଆର୍ଯ୍ୟ କର୍ମ ବିଦ୍ୟା ବିତ୍ତ ନିଧନ ଏ ପାଞ୍ଚ
ମାଟି ପିଣ୍ଡ କରେ ଯେହ୍ନେ କୁମ୍ଭାର ସୁସଞ୍ଚ ।
ପୂର୍ବ କର୍ମ ଏ ପାଞ୍ଚକୁ ଦେଇ ତା ଗଢ଼ଇ
ପୂର୍ବାର୍ଜିତ କର୍ମଫଳେ ଦେବତା ହୁଅଇ ।
ପଶୁପକ୍ଷୀ ତିର୍ଯ୍ୟକ ଯେ ମାନବ ସ୍ଥାବର
ହୁଅଇ ଏ ଜୀବ ନିଶ୍ଚେ ଜାଣ ଦ୍ୱିଜବର ।
ଯେ ଯେମନ୍ତ କର୍ମକରେ ସେଫଳସେ ଭୋଗେ
ସୁଖ ଦୁଃଖ ଭୋଗେ ଜୀବ ଗର୍ଭର ସଂଯୋଗେ ।
ନିଜ କର୍ମଫଳ ଛାଡ଼ି ନ ପାରନ୍ତି କେହି
ବଳବୁଦ୍ଧି ବିକ୍ରମରେ ଆନ କେଭେନୋହି ।
କାହାରି କ୍ଷମତାନାହିଁ କର୍ମର ଉପରେ
ଏ ଜୀବ ହେତୁ ପାଇଲେ କର୍ମ ବନ୍ଧନରେ ।
ବନ୍ଧା ହୋଇ ଥାଇ ନିତ୍ୟ ଜାଣ ଦ୍ୱିଜବର
ଧେନୁ ସହସ୍ର ଏକାଠି ବାନ୍ଧି ଯେ ପ୍ରକାର ।
ଆଦରି ନିଅନ୍ତି ଚିହ୍ନି ଯେ ଯାହା ବାଛୁରୀ
ଶୁଭ ବା ଅଶୁଭ କର୍ମ ଜାଣ ସେହିପରି ।
କର୍ମ କର୍ତ୍ତାର ଯେ ଅନୁସରଣ କରନ୍ତି
ଉପଭୋଗ ବିନେ କର୍ମ ନୋହେ ବିନଶ୍ୟତି ।
ପ୍ରାକ୍ତନ କର୍ମ କଦାପି ନ ହୁଅଇ ଆନ
ଅତି ବେଗେ ଧାଇଁ ଯାଉ ଥାଇ ଯେଉଁଜନ ।
ବିଧି ଯେ ଗୋଡ଼ାଉଥାଇ ପଛେ ପଛେ ତାର
ପୂର୍ବକୃତ କର୍ମ କ୍ଷଣେ ନ ହୁଏ ଅନ୍ତର ।
ଛାଇ ପ୍ରାୟ ତାର ପଛେ ପଛେ ରହିଥାଇ
ସେ ଶୋଇଲେ ଏ ଶୁଅଇ ସେଖାଇଲେ ଖାଇ ।
ସେ ଗଲେ ଏ ଯାଇ ତାର ପଛେ ପଛେଜାଣ
ସେ ଯାହା କରଇ ଏହି କରେ ତାହା ପୁଣ ।
ଜୀବର ଛାଇ ଯେ ପୂର୍ବଜନ୍ମ କୃତ କର୍ମ
ଖରା ଛାଇଙ୍କର ନିତ୍ୟ ସମ୍ବନ୍ଧ ଯେସନ ।

ଖରାହେଲେ ଛାଇପଡ଼େ ନ ପଡ଼ିଲେ ନାହିଁ
କର୍ମ କର୍ତ୍ତାର ସମ୍ବନ୍ଧ ସେରୂପେ ଅଛଇ ।
ଗ୍ରହ ରୋଗ ବିଷ ସର୍ପ ଡାକିନୀ ରାକ୍ଷସ
ଏମାନଙ୍କର ପୂର୍ବ କୃତ ପୀଡ଼ା ନର୍କବାସ ।
ପଛେ ପୁଣି ସେହି କର୍ମଫଳେ ପୀଡ଼ାପାନ୍ତି
କର୍ମଫଳକୁ ଘୁଞ୍ଚାଇ କେହି ନ ପାରନ୍ତି ।
ଯେବା ଯହିଁ ଦୁଃଖ ସୁଖ ପାଇବାର ଥାଏ
ଦଇବ ଆସି ତା ଗଳେ ଦଉଡ଼ି ଲଗାଏ ।
ବଳେ ଓଟାରି ସେଠାକୁ ନିଅଇ ତାହାକୁ
ସଂସାରେ କେହି ସମର୍ଥ ନାହିଁ ଏଡ଼ିବାକୁ ।
ସୁଖ ଦୁଃଖର ଯେ ପ୍ରଭୁ ଦଇବ ଅଟଇ
ଜାଗ୍ରତ ବେଳେ ମାନବ ଯେ କର୍ମ ଚିନ୍ତଇ ।
ସେ କର୍ମମାନ ସେ ସବୁ ଦେଖଇ ସ୍ୱପନେ
ଦଇବ ତାହା ବିନାଶ କରେ ପୁଣି ଆନେ ।
ଶସ୍ତ୍ର ଅଗ୍ନି ବିଷ ଆଦି ଦୁର୍ଗମରୁ ତ୍ରାହି
ଯେ ପାଇ ଜାଣ ତାହାକୁ ଦଇବ ରଖଇ ।
ମାରିବାର ଥିଲେ ତାକୁ ମାରଇ ଦଇବ
ତାର ରକ୍ଷାନାହିଁ ଜାଣ ହେ ଦ୍ୱିଜ ପୁଙ୍ଗବ ।
ମହୀରେ ଯେମନ୍ତେ ଥାଏ ବୀଜ ସବୁଧନ
ଅରକ୍ଷିତ ନିଜ କୃତ କର୍ମ ଯେ ତେସନ ।
ତେଲ ସରିଗଲେ ଯେହ୍ନେ ଦୀପ ଲିଭିଯାଇ
କର୍ମ କ୍ଷୟେ ଦେହୁ ଜୀବ ଅଦୃଶ୍ୟ ହୁଅଇ ।
ଜ୍ଞାନୀଏ କର୍ମ କ୍ଷୟକୁ ଦେହୀ ମୃତ୍ୟୁ କହି
ସେ ମୃତ୍ୟୁର ହେତୁ ଜନ୍ତୁରୋଗ ଆଦିହୋଇ ।
ଏରୂପେ ଏ ମୋର ପୂର୍ବଜନ୍ମକୃତ ଫଳ
ମୋହର କର୍ମ ବିପାକ ଏ ସ୍ତିରୀ କେବଳ ।
ଏହା ଆନ ହୋଇବାର ସମ୍ଭାବନା ନାହିଁ
କାହିଁ ମୋର ଘର ନଟ ନାଟୀ ଥିଲେ କାହିଁ ।
କାହିଁ ସେହି ନାଟକର ଅଭିନୟ ବେଳା
କେମନ୍ତ ତାହାଙ୍କ ସଙ୍ଗ ପ୍ରସଙ୍ଗ ହୋଇଲା ।
କିରୂପେ ଜରା ମୋ ଦେହେ ହୋଇଲା ପ୍ରବେଶ
ଜାଣି ନ ପାରିଲି ମୁହିଁ ଏଥିର ସନ୍ଦେଶ ।
ଏସବୁ ଦଇବ କୃତ ମୋର କର୍ମ ଯେତେ
ସେ ସବୁକୁ ଆନ କରି ନପାରେ କିଞ୍ଚିତେ ।
ଏଣୁ କର୍ମଠାରୁ ବଡ଼ ଆନ କେହି ନାହିଁ
ଆଉସବୁ ଯେ ଉପାୟ ବ୍ୟର୍ଥ ଜାଣ ସେହି ।

ମାତଳିକି ଦୂତ କରି ପୂର୍ବେ ନରସାଇଁ
ମୋପାଖେ ପଠାଇଥିଲେମୋତେନେବାପାଇଁ ।
ତାର କଥା ନ ମାନିଲି ସ୍ୱର୍ଗକୁ ନ ଗଲି
ଅହଂକାରେ ଏ ମର୍ତ୍ତ୍ୟକୁ ସ୍ୱର୍ଗପୁର କଲି ।
ସେ କର୍ମ ବିପାକ ଆଜି ଦେଖାଗଲା ମୋର
ଏରୂପେ ମନମଧରେ ଭାଳି ନୃପବର ।
ଅତ୍ୟନ୍ତ ଦୁଃଖିତ ହୋଇ ବିଚାରିଲେ ପୁଣି
ଚାଟୁ କହିଲେ କି ଅବା ବୁଝେ ଏ ରମଣୀ ।
ନ ରଖିବି ଯେବେ ମୁହିଁ ବଚନ ଏହାର
ସତ୍ୟ ଧର୍ମ ସବୁ ନିଶ୍ଚେ ନାଶ ଯିବ ମୋର
କର୍ମର ବିପାକ ଭୋଗ କରିବି ଅବଶ୍ୟ
କର୍ମେ ଯାହା ଲିହି ଅଛି ବିଧାତା ପୁରୁଷ ।
ତାହା ଆନ କରିବାକୁ କେ ଅଛି ଭାଜନ
ନିଶ୍ଚୟ ଦୂରତିକ୍ରମ ଦଇବ ଘଟନ ।
ଦଇବ ଘଟାଇଅଛି ଏ ରମଣୀ ଆଣି
ଏହିରୂପେ ଚିନ୍ତାକରି ସେ ନୃପତିମଣି ।
କ୍ଳେଶ ଅପହାରୀ ଯେଉଁ ଦେବ ଚକ୍ରପାଣି
ମାନ ନିବେଶିଲେ ତାଙ୍କ ପାଦପଦ୍ମେ ପୁଣି ।
ତାର କୋମଳ କମଳ ଚରଣର ତଳେ
ଶରଣ ପଶି ରଖିଲା ମନକୁ ନିଶ୍ଚଳେ ।
ଶ୍ରୀ ମଧୁସୂଦନ ନାମ କଲା ସଂକୀର୍ତ୍ତନ
ଶ୍ରୀକୃଷ୍ଣ ସୁନ୍ଦର ରୂପ କଲା ବସି ଧ୍ୟାନ ।
ଶ୍ରୀ ନାରାୟଣ ମନ୍ତ୍ରକୁ ବସିଣ ଜପିଲା
ହରି ହରି ବୋଲି ପାଦେ ଲୟ ଲଗାଇଲା ।
ଶ୍ରୀ ଜଗତନାଥଙ୍କୁ ସେ କଲା ନମସ୍କାର
ଶରଣ ରକ୍ଷଣ ହରି ଶରଣ ତୋହର ।
କୃପାଜଳମୟ ପ୍ରଭୁ ଚରଣେ ଶରଣ
ଆଦିକନ୍ଦ ମୁକୁନ୍ଦ ହେ ଦେବ ନାରାୟଣ ।
ରଖ ରଖ ଏ ବିପଦୁ କମଳାର ପତି
ଶରଣ ଶରଣ ତୋର ପାଦେ ଦିବାରାତି ।
ରକ୍ଷାକର ରକ୍ଷାକର ହେ ଦୀନବାନ୍ଧବ
ଦୀନ ଗୋପୀନାଥ ଭଜେ ଗୋବିନ୍ଦ ମାଧବ

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ମେନକାର ଅଶ୍ରୁ ବିନ୍ଦୁମତି
ସମୀପେ ଗମନେ ବର୍ଣ୍ଣନେ
ଯଯାତିଚରିତେ ଏକାଶୀତିତମୋଽଧ୍ୟାୟଃ ।



## ଦ୍ୱାଶୀତି ଅଧ୍ୟାୟ

### ଯଯାତିର ପୁରୁକୁ ରାଜ୍ୟ ଓ ଯୁବାଦାନ ଜରା ଗ୍ରହଣ ରାଜନୀତି ଉପଦେଶ

ସୁକର୍ମା କହିଲେ ଶୁଣ ପିପଳ ବ୍ରାହ୍ମଣ
ପରମ ଧାର୍ମିକ ସେହି ଯଯାତି ରାଜନ ।
ଏରୁପେ ନାନାଦି କଥା ଭାଳି ଭାଳି ମନେ
ଦୁଃଖିତ ହୋଇ ବସନ୍ତେ ଶ୍ରୀବିଷ୍ଣୁର ଧ୍ୟାନେ ।
ତହୁଁ ସେହି ବରାନନେ ରତି ପୁତ୍ରୀ କହେ
କି ଚିନ୍ତା କରୁଛ ମହାମତି ମହାରାୟେ ।
ଚଞ୍ଚଳ ସ୍ୱଭାବ ସବୁ ସ୍ତିରୀ ଜାତିଙ୍କର
ସେ ଚଞ୍ଚଳ ସ୍ୱଭାବ ଏ ନୁହଇ ମୋହର ।
ବଜାରୁଣୀ ନୁହଇ ମୁଁ ନୋହେ ବାରନାରୀ
ଚଞ୍ଚଳ କରାଉଅଛି ମନକୁ ତୁମ୍ଭରି ।
ମୋର ମନବାଞ୍ଛା ପୂର୍ଣ୍ଣ କରିବା ନିମନ୍ତେ
ବେଶ୍ୟା ନାରୀ ଧନଲୋଭେ କରନ୍ତି ଯେମନ୍ତେ ।
କିବା ସେ ଆପଣା ଟେକ ରଖିବାକୁ ପୁଣି
ଲମ୍ପଟ ପୁରୁଷ ବଶେ ରଖନ୍ତି ଯେ ଆଣି ।
ଲୋଭ ମୋହ ଦେଖାଇଣ କରନ୍ତି ଯେସନ
ତେମନ୍ତ ମୁଁ କରିନାହିଁ ଭାଳୁଛ ରାଜନ ।
ତୁମ୍ଭେ ମୋର ସ୍ୱାମୀ ପ୍ରଭୁ ଜୀବନ ବଲ୍ଲଭ
ଚଉଦ ଭୁବନ ଯିବା ତୁମ୍ଭର ସୁଲଭ ।
ଧର୍ମପତ୍ନୀ ମୁହିଁ ତୁମ୍ଭ ପାଦତଳ ଦାସୀ
ତୁମ୍ଭେ ପୁଣି ଧର୍ମବନ୍ତ ରାଜା ରାଜରଷି ।
ଅଧର୍ମ କି କରିବାକୁ କହିଲି ତୁମ୍ଭଙ୍କୁ
ଦେବଲୋକ ଯିବା ତହିଁ ଦେଖିବା ଦେବଙ୍କୁ ।
ଦେବ ଦ୍ୱିଜ ଦରଶନେ ହୁଏ କି ଅଧର୍ମ
ଏଥିପାଇଁ ଚିନ୍ତାକର ଛାଡ଼ି ଧର୍ମ କର୍ମ ।
ମୁଁ ସିନା ଅବଳା ଧର୍ମ ବାଟ ନ ଜାଣଇ
ତୁମ୍ଭେ ତା ଜାଣ ଯେବେ କି ନ କହକିପାଇଁ ।
ମନର ଶରଧା ସିନା ବଳିବାରୁ ମୋର
ତୁମ୍ଭେ ପୂର୍ବେ ତାହା କରି ଥିବାରୁ ସ୍ୱୀକାର ।
କହିଲି ଯେବେ କି ତାହା ନ ହେବ ନହେଉ
କ୍ଷତ୍ରିର ପ୍ରତିଜ୍ଞା ଭଙ୍ଗ ହେଲେ ପଛେ ହେଉ ।
ମାନବଙ୍କୁ ଦୁର୍ଲଭ ଯେ ଦେବ ଦରଶନ
ମାନବଙ୍କର ଏ ପୁଣି ପୁଣ୍ୟ ଅନୁଷ୍ଠାନ ।
ସେ ଶରଧା ଗୋଟାମୋର ଭାଙ୍ଗି ଗଲେଯାଉ
ସ୍ୱାମିପାଦେ ମୋର ଚିତ୍ତ କାଳେକାଳେ ଥାଉ ।
ସ୍ୱାମିପାଦ ସେବା ମୋର ଦେବ ଦରଶନ
ସେଥିପାଇଁ ଦୁଃଖିତ ଯେ ନ ହୁଏ ମୋ ମନ ।
କେବଳ ବାଧୁଛି ନାଥ ଏହି କଥା ମୋତେ
ଯେଣୁ ତୁମ୍ଭେ ମିଥ୍ୟାବାଦୀ ହୁଅ ପ୍ରାଣନାଥେ ।
ତୁମ୍ଭ ନର୍କ ଭୋଗକୁ ଯେ ମାଡୁଅଛି ଡ଼ର
ମୋର ସଂସର୍ଗେ ପାପ ଯେବେ ହୋଇଲା ତୁମ୍ଭର ।
ତେବେ ମୋତେ ତ୍ୟାଗକର କାତରକିପାଇଁ
ଦୋଷାନାରୀ ଦଣ୍ଡ ଶେଯେ ପୃଥକ ହୁଅଇ ।
ମହାଭୟେ ଭୀତ କିମ୍ବା ହେଉଛ ହେ ନାଥ
ମୋହଗର୍ତ୍ତେ ପଡ଼ିଥିବା ପ୍ରାୟ ଚିନ୍ତାଗ୍ରସ୍ତ ।
ମହାପୁରୁଷ ଲକ୍ଷଣ ଏମନ୍ତ ନୁହଇ
ସାମାନ୍ୟ ଜନ ସର୍ବଦା ଚିନ୍ତାରେ ବୁଡ଼ଇ ।
ବୀର ପୁରୁଷ କଦାପି ନୁହଇ କାତର
ସ୍ୱର୍ଗଯିବା କଥା ପଛେ ନ ହେଉ ମୋହର ।
ଚିନ୍ତା ଛାଡ଼ି ସୁସ୍ଥ ହୁଅ ଧରୁଅଛି ହସ୍ତ
ଯହିଁରେ ତୁମ୍ଭର ଦୁଃଖ ହୁଅଇ ହେ କାନ୍ତ ।
ସେ କର୍ମ କରିବାପାଇଁ ନ କହୁଛି ମୁହିଁ
ରତିପୁତ୍ରୀ ତୁନୀ ହେଲା ଏ ପ୍ରକାରେ କହି ।
ସବୁକଥା ଯାକ ଶୁଣି ଯଯାତି ରାଜନ
ବୋଇଲେ ଗୋ ଦେବୀ ଶୁଣ ଚିନ୍ତାରକାରଣ ।
ମୁଁ ମୋହର ମାନଭଙ୍ଗ କିଛି ଦେଖୁନାହିଁ
ଯଯାତି କଥା କି କେଭେ ମିଥ୍ୟା ହୁଏ ନାହିଁ ।
ଯାହା କହିଛି ତା ଆନ ନ ପାରଇ କରି
ତୋହର କାମନା ସିଦ୍ଧ କରିବି ସୁନ୍ଦରୀ ।
ଭଲକରି ଜାଣେ ତୋତେ ତୁ ସାଧବୀ ସତୀ
ମୋର ପ୍ରଜାଙ୍କ ପାଇଁ ମୋ ଚିନ୍ତା ଘୋରଅତି ।
ମୁଁ ସ୍ୱର୍ଗେ ଗଲେ ମୋ ପ୍ରଜାମୋହରବିରହେ
ଅତି ଦୀନ ହେବେ ଏଣୁ ଚିନ୍ତାକରେ ପ୍ରିୟେ ।
ଦୁରାତ୍ମା ଯମର ରାଗ ଅଛି ମୋ ଉପରେ
ବ୍ୟାଧିଙ୍କି ପଠାଇ ଦେବ କ୍ଷଣକ ଭିତରେ ।
ନାନାଭୟ ଦେଖାଇବ ପ୍ରଜାଙ୍କୁ ମୋହର
ଯାହା ତାହା ହେଉ ପଛେ ଯିବି ସ୍ୱର୍ଗପୁର ।
ସତ୍ୟ ନ ଲଙ୍ଘିବ କେଭେ ଯଯାତି ରାଜନ
ତୋତେ ଘେନିଯିବି ପ୍ରିୟେ ମୁଁ ସ୍ୱର୍ଗଭୁବନ ।

ଏହା କହି ପୁତ୍ରମଣି ପୁରକୁ ହକାରି
ବୋଇଲେ ତୁ ସର୍ବଧର୍ମେ ଅଟୁ ଅଧିକାରୀ ।
ଆସ ଆସ ବାବୁ ମୋର ଧାର୍ମିକ କୁମର
ମୋ ଦେହରୁ ଘେନ ଏବେ ତୋ ଯୁବା ଶରୀର ।
ମୋ ଜରା ଶରୀର ମୋତେ ଦିଅ ତୁ ଫେରାଇ
ତୋ ସମାନ ଧର୍ମବନ୍ତ ପୁତ୍ର ଜଣେ ନାହିଁ ।
ତା ବାବୁ କରିଛୁ ଯେଉଁ ଧର୍ମ ଯେ କୁମର
ମୋ ଜରା ଦିଅ ତୁ ନିଅ ତୋ ଯୁବାଶରୀର ।
ଆରେ ବାବୁ ଧର୍ମେ ପ୍ରଜା ପାଳିବୁରେ ତୁହି
ଦୁର୍ଜନ ଜନଙ୍କୁ ଶାସ୍ତି ବିଚାରିଣ ବିହି ।
ସାଧୁଙ୍କୁ ପାଳିବୁ ବାବୁ ପାଞ୍ଚ ସାତ ଦିନେ
ଭଣ୍ଡାର ଘର ଦେଖିବୁ ପ୍ରଭାତେ ନିର୍ଜନେ ।
କିବା ଚତୁର ଜନଙ୍କୁ ସଙ୍ଗତରେ ନେବୁ
ଦେବତା ଦ୍ୱିଜଙ୍କ ସେବା ନିତ୍ୟ କରୁଥିବୁ ।
କର୍ମ ଯାହା କରିବୁ ତା ଭକ୍ତି ଶରଧାରେ
ପ୍ରସାଦ ଧନ ଭୋଜନ ଦାନ ସମାଦରେ ।
ସଇନିଙ୍କୁ ଆପଣାର ବଶେ ରଖିଥିବୁ
ଚାରି ଚକ୍ଷୁରେତ ଶତ୍ରୁ ମିତ୍ର ବୁଝୁଥିବୁ ।
ପଣ୍ଡିତଙ୍କୁ ଘେନି କରୁଥିବୁ ସୁବିଚାର
ଗୁପତେ ମନ୍ତ୍ରଣା କରିଥିବୁରେ କୁମର ।
ଯତି ହୋଇ ବାବୁ ନିତ୍ୟ ଦେଉଥିବୁ ଦାନ
କଦାପି ତୁ ନ କରିବୁ ମୃଗୟା ଗମନ ।
ସ୍ତିରୀଙ୍କି ବାବୁ କଦାପି ବିଶ୍ୱାସ ନ ଯିବୁ
ବଳବନ୍ତଙ୍କୁ ବିଶ୍ୱାସ କେଭେ ନ କରିବୁ ।
ବିଶିଷ୍ଟ ଲୋକ ବିଶିଷ୍ଟ ବିଦ୍ୟା ସଞ୍ଚିଥିବୁ
ମୋର ଧନ ଅଛି ବୋଲି ଗର୍ବ ନ କରିବୁ ।
ଯଜ୍ଞେ ହୃଷୀକେଶ ପୂଜା କରିବୁରେ ବାବୁ
ପୁଣ୍ୟ ଆତ୍ମା ଆବର ତୁ ଶୁଚି ହୋଇଥିବୁ ।
ପ୍ରଜାକଣ୍ଟକ ନୋହିବୁ କଣ୍ଟା ଛଡ଼ାଇବୁ
ପ୍ରଜାଜନଙ୍କର ସୁଖ ବାଞ୍ଛା କରୁଥିବୁ ।
ପ୍ରଜା ପୋଷିବୁ କରିବୁ କୁଳର ମଙ୍ଗଳ
ପରଧନେ ପରଦାରେ ନୋହିବୁ ବିହ୍ୱଳ ।
ପୂର୍ବ ପୁରୁଷଙ୍କ ଅନୁସାରି ତୁ ହୋଇବୁ
ନିତ୍ୟ ବେଦ ଶାସ୍ତ୍ର ଚିନ୍ତା କରୁଥିବୁ ବାବୁ ।
ସର୍ବଦା ସନ୍ତୁଷ୍ଟ ଚିତ୍ତେ ଶୋଇବୁ ନିରତେ
ଗଜ ଅଶ୍ୱ ରଥ ଚଢ଼ା ଶିଖୁଥିବୁ ନିତ୍ୟେ ।

ଏ ରୂପେ ପୁତ୍ରକୁ ରାଜନୀତି ଶିକ୍ଷା ଦେଇ
କଲ୍ୟାଣ କରି ରାଜ୍ୟ ତା ହସ୍ତେ ସମର୍ପଇ ।
ସିଂହାସନେ ବସାଇ ତା ହସ୍ତେ ଖଣ୍ଡା ଦେଲେ
ଯୁବାବସ୍ଥା ଦେଇ ଜରାବସ୍ଥା ପୁଣି ନେଲେ ।
ଉଦ୍ୟମ କଲେ ସେ ରାଜା ସ୍ୱର୍ଗେ ଯିବାପାଇଁ
ଦୀନ ଗୋପୀନାଥ ଭଜେ ଅଚ୍ୟୁତ ଗୋସାଇଁ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ଯଯାତି
ଚରିତ୍ରେ ଦ୍ୱାଶୀତିତମୋଽଧ୍ୟାୟଃ ।



## ତ୍ର୍ୟଶୀତି ଅଧ୍ୟାୟ

### ଯଯାତିର ବୈଷ୍ଣବ ଲୋକ ଗମନ

ସୁକର୍ମା ଦ୍ୱିଜ କହିଲେ ଶୁଣ ତୁ ପିପ୍ପଳ
ସବୁଜ ଦ୍ୱୀପର ପ୍ରଜାଙ୍କୁ ଡାକି ମହୀପାଳ ।
ଆନନ୍ଦ ମନେ ବୋଇଲେ ଶୁଣ ପ୍ରଜାଜନ
ଇନ୍ଦ୍ରଲୋକେ ଆମ୍ଭେ ଆଜି କରିବୁଁ ଗମନ ।
ତହୁଁ ଯିବୁ ବ୍ରହ୍ମଲୋକ ପୁଣି ରୁଦ୍ର ଲୋକେ
ନିଶ୍ଚିନ୍ତ ହୋଇ ରହିବୁ ବଇଷ୍ଣବ ଲୋକେ ।
ସର୍ବ ପାପହାରୀ ଗତି ଦାତା ବିଷ୍ଣୁ ପୁର
ଏହି ଭାରିଯା ଯେ ଥିବ ସଙ୍ଗତେ ଆମ୍ଭର ।
ବିପ୍ର କ୍ଷତ୍ରି ବୈଶ୍ୟ ଶୂଦ୍ର ତୁମ୍ଭେ ଚାରି ଜାତି
ତୁମ୍ଭ କୁଟୁମ୍ବଙ୍କୁ ଘେନି ସୁଖେ ଥାଅ କ୍ଷିତି ।
ଏ ପୁରୁ ପୁତ୍ର ତୁମ୍ଭଙ୍କୁ କରିବ ପାଳନ
ଧୀର ବୀର ଧାର୍ମିକ ଏ କୁଳର ନନ୍ଦନ ।
ଦଣ୍ଡ ସିଂହାସନ ଦେଇ ସମର୍ପିଲି ରାଜ୍ୟ
ଯଯାତିର ଏ ବଚନ ଶୁଣି ପ୍ରଜାପୁଞ୍ଜ ।
ରାଜାଙ୍କୁ ଚାହିଁ କହିଲେ ତୁମ୍ଭେ ମହାରାଜେ
ଚାରି ବେଦ ଅଷ୍ଟାଦଶ ପୁରାଣ ଯା କହେ ।
ଏରୂପେ କେ ଦେଖିନାହିଁ ଧର୍ମକୁ ଜଗତେ
ଏ ନହୁଷ ଘରେ ଆମ୍ଭେ ଦେଖିଛୁଁ ସମସ୍ତେ ।
ଦାନ ଆଦି ମୂର୍ତ୍ତିମନ୍ତ ଧର୍ମହିଁ ବହୁତ
ସେହି ସୋମବଂଶେ ଧର୍ମ ହୋଇଛନ୍ତି ଜାତ ।
ହସ୍ତ ପଦ ମୁଖ ଚକ୍ଷୁ ନାସା ଆଦି ଘେନି
ସତ୍ୟ ପ୍ରିୟଜ୍ଞାନୀ ପୁଣି ଅଟନ୍ତି ଅଜ୍ଞାନୀ ।

ଆଚାର ପ୍ରଚାରକାରୀ ନିରତେ ଅଟନ୍ତି
ପୁଣ୍ୟ ପୁଞ୍ଜ ଗୁଣାକର ତେଜୋବନ୍ତ ଅତି ।
ଧର୍ମ ପ୍ରଚାରକ ଧର୍ମ ଆଚରଣକାରୀ
କାମରୂପୀ କାମକର୍ତ୍ତା ତୁମ୍ଭେ ଧଣ୍ଡଧାରୀ ।
ତୁମ୍ଭଙ୍କୁ କଦାପି ଛାଡ଼ି ନ ପାରିବୁ ଆମ୍ଭେ
ଯେବେ କି ଆମ୍ଭଙ୍କୁ ଛାଡ଼ିଯିବ ଏକା ତୁମ୍ଭେ ।
ତୁମ୍ଭ ପଛେ ପଛେ ଆମ୍ଭେ କରିବୁଁ ଗମନ
ତୁମ୍ଭ ରହିବା ଯେ ସ୍ଥାନ ଆମ୍ଭର ସେ ସ୍ଥାନ ।
ତୁମ୍ଭେ ନର୍କ ବାସକଲେ ଆମ୍ଭେ ନର୍କବାସୀ
ତୁମ୍ଭେ ପୁଣ୍ୟଲୋକେ ଗଲେ ଆମ୍ଭେବଳେପଶି ।
ତୁମ୍ଭ ସଙ୍ଗେ ସଙ୍ଗେଥିବୁ ନ ଛାଡ଼ିବୁ କ୍ଷଣେ
ସ୍ତିରୀ ପୁତ୍ର ଧନ ଭୋଗ ଆଦି ଏ ଜୀବନେ ।
ଆମ୍ଭର ତ ପ୍ରୟୋଜନ ନାହିଁ ହେ ରାଜନ
ନିଶ୍ଚୟ ତୁମ୍ଭ ସଙ୍ଗତେ ଆମ୍ଭର ଗମନ ।
ପ୍ରଜାଙ୍କ ମୁଖୁଁ ଏମନ୍ତ ଶୁଣି ସେ ଯଯାତି
ଆନନ୍ଦମନେ ତାହାଙ୍କୁ ଦେଲେ ପ୍ରତିଉକ୍ତି ।
ଆସ ସର୍ବେ ମୋରସଙ୍ଗେ ପୁଣ୍ୟଲୋକେଯିବା
ସେଠାରେ ଘର କରଣା କରିଣ ରହିବା ।
ଏମନ୍ତ ପ୍ରଜାଙ୍କୁ କହି ସେହି ନୃପବର
ଧରିଣ ଉଠିଲେ ଅଶ୍ରୁ ବିନ୍ଦୁମତୀ କର ।
ଚନ୍ଦ୍ରବିମ୍ବ ତୁଲ୍ୟ ହଂସବର୍ଣ୍ଣ ରଥେ ବସି
ରୋଗ ଶୋକ ଭୟବ୍ୟଥା ସକଳ ବିନାଶି ।
ଧୀରେ ଧୀରେ ପଡୁଅଛି ଚାମର ବ୍ୟଜନ
ଶୁଭ୍ର ପତାକାରେ ରଥ ହୋଇଛି ଶୋଭନ ।
ଶଚୀ ପୁରନ୍ଦର ପ୍ରାୟ ଦିଶନ୍ତି ସୁନ୍ଦର
କଲ୍ୟାଣ କରନ୍ତି ଋଷି ଟେକି ବେନିକର ।
ଭାଟ ବନ୍ଦୀଏ କରନ୍ତି ନୃପତିର ସ୍ତୁତି
ଚାରେ ପରାଜାଏ ମିଳି ତାଙ୍କୁ ପ୍ରଶଂସନ୍ତି ।
ଯାନ ବାହନ ଆରୋହୀ ପରଜାଏ ଗଲେ
ନୃପତି ଆଗରେ ଚଳେ ଏ ପଛେ ଚଳିଲେ ।
ବିପ୍ର କ୍ଷତ୍ରି ବୈଶ୍ୟଶୂଦ୍ର ଆଦି ପ୍ରଜା ଯେତେ
ସ୍ୱର୍ଗକୁ ଯାନ୍ତି ବାହନ ଗଜ ଅଶ୍ୱରଥେ ।
ବଇଷ୍ଣବ ପ୍ରଜାଗଣ ଶ୍ରୀବିଷ୍ଣୁ ଭକତ
ଶୁଭ୍ରବର୍ଣ୍ଣ ପତାକାରେ ହୋଇ ଅଳଙ୍କୃତ ।
ସମସ୍ତେ ତ ଶଙ୍ଖ ଚକ୍ର ଗଦା ପଦ୍ମଧାରୀ
ପତାକା ସବୁ ପବନେ ଉଡ଼େ ଥିରି ଥିରି ।

ତେଣୁ ତା ଭିତରେ ପ୍ରଜା ଦିଶନ୍ତି ସୁନ୍ଦର
ସବୁରି ଗଳେ ଶୋଭଇ ତୁଳସୀର ହାର ।
ତୁଳସୀ ଦଳେ ମଣ୍ଡିତ ସର୍ବାଙ୍ଗ ସବୁରି
ତୁଳସୀ ଧଣ୍ଡା ତୁଳସୀ ଜଟା ମାଳା ଧରି ।
ଦିବ୍ୟ ଚନ୍ଦନ ସୁଗନ୍ଧ ଦ୍ରବ୍ୟେ ଆମୋଦିତ
ଦିବ୍ୟ ବସ୍ତ୍ରଦିବ୍ୟ ଆଭରଣେ ସୁଶୋଭିତ ।
ରାଜା ପଛେ ପଛେ ଗଲେ ଯେତେ ପ୍ରଜାଜନ
ତାହାଙ୍କ ସଂଖ୍ୟା କହୁଛି ଶୁଣ ଦେଇ ମନ ।
ଶତସସ୍ର ଲକ୍ଷ କୋଟି ଶତ ଖର୍ବ ସସ୍ର
ବିଷ୍ଣୁ ମନ୍ତ୍ର ଜପ କରୁ ଅଛନ୍ତି ଅଜସ୍ର ।
ଶ୍ରୀ ବିଷ୍ଣୁ ଧ୍ୟାନ କରନ୍ତି ବଇଷ୍ଣବ ଧର୍ମ
ଦାନ ଦିଅନ୍ତି କରନ୍ତି ନିତ୍ୟ ପୁଣ୍ୟ କର୍ମ ।
ସୁକର୍ମା ଦ୍ୱିଜ କହଇ ପିପ୍‌ପଳ ଶୁଣଇ
ଏରୂପେ ପ୍ରଜାସକଳ ଆନନ୍ଦିତ ହୋଇ ।
ଯଯାତି ସଙ୍ଗେ ଚଳନ୍ତି ବଇକୁଣ୍ଠ ପୁର
ଏଥୁଅନ୍ତେ ଶୁଣ ହେଲା କିସ ସମାଚାର ।
ଆଗ ଯାଇ ଇନ୍ଦ୍ର ଲୋକ ମିଳିଲେ ନୃପତି
ପୁରୁ ରାଜ୍ୟେ ରାଜା ହୋଇ ପାଳିଲେକି କ୍ଷିତି ।
ଯଯାତିର ତେଜ ପୁଣ୍ୟ ଧର୍ମ ତପବଳେ
ପ୍ରଜାଗଣ ବଇଷ୍ଣବ ଲୋକେ ଚଳିଗଲେ ।
ଇନ୍ଦ୍ର ଲୋକରେ ଯଯାତି ହୁଅନ୍ତେ ପ୍ରବେଶ
ସଭା କରି ବସିଥିଲେ ସକଳ ତ୍ରିଦଶ ।
ସମସ୍ତେ ଉଠି ରାଜାଙ୍କୁ କଲେ ସମାଦର
ଚାରଣଗଣଙ୍କୁ ସର୍ବ ଘେନି ପୁରନ୍ଦର ।
ବୋଇଲେ ହେ ମହାରାଜ ମୋ ଘରକୁ ଆସ
ଭୋଗ ଉପଭୋଗ ଆଦି ଯାହାକି ମନାସ ।
ସେ ସକଳ ଭୋଗ କର ରହି ମୋର ପୁରେ
ଯଯାତି ରାଜା କହିଲେ ଇନ୍ଦ୍ରର ଛାମୁରେ ।
ଆହେ ସୁରରାଜ ତୁମ୍ଭେ ସ୍ୱର୍ଗର ଈଶ୍ୱର
ତୁମ୍ଭ ପାଦପଦ୍ମ ତଳେ ମୋର ନମସ୍କାର ।
ଏହିକ୍ଷଣି ବ୍ରହ୍ମଲୋକେ କରିବି ଗମନ
ଦେବଙ୍କ ତହୁଁ ପ୍ରଶଂସା ଶୁଣି ସେ ରାଜନ ।
ବ୍ରହ୍ମ ଲୋକରେ ମିଳନ୍ତେ ଦେଖି ପଦ୍ମଯୋନି
ବହୁତ ଆଦର କଲେ ମୁନି ଜନ ଘେନି ।
ଅତିଥି ସତ୍କାର କରି ବୋଇଲେ ଏମନ୍ତ
ସାଧୁ ସାଧୁ ଯଯାତି ତୁ ମହା ପୁଣ୍ୟବନ୍ତ ।

ଏମନ୍ତ କହି ଆସନ ପାଦାସନ ଦେଲେ
ଗନ୍ଧପୁଷ୍ପ ଧୂପ ଦୀପ ଦେଇ ପୂଜାକଲେ ।
ବୋଇଲେ ନୃପତି ଏବେ ନିଜ କର୍ମଫଳେ
ବଇକୁଣ୍ଠକୁ ଗମନ କର ପୁଣ୍ୟବଳେ ।
ବ୍ରହ୍ମାଙ୍କ ମୁଖୁଁ ଏମନ୍ତ ଶୁଣି ସେ ଯଯାତି
ଶିବ ଭୁବନେ ମିଳନ୍ତେ ଦେଖି ପଶୁପତି ।
ଉମାଙ୍କୁ ଆଦରେ ବଳି ତାଙ୍କୁ ପୂଜାକଲେ
ଶିବ ପାର୍ବତୀ ଚରଣେ ଯଯାତି ନମିଲେ ।
ଅତିଥିସତ୍କାର କରି ବୋଇଲେ ଈଶ୍ୱର
ତୁମ୍ଭେ ଶ୍ରୀକୃଷ୍ଣ ଭକତ ଯେଣୁ ନୃପବର ।
ମୋ ଘରେ ରହି ଯଯାତି ସୁଖ ଭୋଗକର
ଯେ ବିଷ୍ଣୁ ଭକତ ସେହି ଭକତ ମୋହର ।
ବିଷ୍ଣୁର ଆମ୍ଭର କିଛି ଭିନ୍ନାଭିନ୍ନ ନାହିଁ
ମନୁଷ୍ୟ ଭୋଗ ଦୁର୍ଲ୍ଲଭ କର ଏଥେ ରହି ।
ବିଷ୍ଣୁରୂପେ ହେ ରାଜନ ବିରାଜଇ ମୁହିଁ
ମୋରରୂପେ ବିରାଜଇ ଠାବେ ଠାବେ ସେହି ।
ଅଭେଦ ଆମ୍ଭ ଆମ୍ଭର କାହିଁ କିଛି ଭେଦ
ଯେହୁ ବିଷ୍ଣୁ ସନାତନ ସେହି ମହାରୁଦ୍ର ।
ପୁଣ୍ୟ ଜନଙ୍କୁ ଏସ୍ଥାନେ ଦିଅଇ ମୁଁ ସ୍ଥାନ
ଶିବଙ୍କ ମୁଖୁଁ ଏମନ୍ତ ଶୁଣି ସେ ରାଜନ ।
ବୋଇଲେ ପ୍ରଭୁ କହିଲ ଯାହା ସବୁ ସତ
ଯେ ବିଷ୍ଣୁ ଭକତ ସେହି ଶିବର ଭକତ ।
ମୋହର ମନ ବଳିଛି ଯିବାର ନିମନ୍ତେ
ଏଣୁ ଅନୁମତି ମାଗେ ତବ ପାଦ ଗତେ ।
ବଇକୁଣ୍ଠପୁର ଗୋଟା ଦେଖିବି ନୟନେ
ଏମନ୍ତ ଶୁଣି ବୋଇଲେ ଦେବ ତ୍ରିଲୋଚନେ ।
ଆନନ୍ଦରେ ଯାଅ ତୁମ୍ଭେ ବଇକୁଣ୍ଠ ପୁର
ଶିବ ଆଜ୍ଞା ଘେନି ଶିରେ ତହୁଁ ନୃପବର ।
ବିଷ୍ଣୁ ଲୋକରେ ମିଳନ୍ତେ ବଇକୁଣ୍ଠବାସୀ
ସାଧୁ ସନ୍ଥ ବଇଷ୍ଣବେ ଘେରିଗଲେ ଆସି ।
ଧନ୍ୟ ଧନ୍ୟ ପୁରୁଷ ତୁ ଯଯାତି ରାଜନ
ଏମନ୍ତ କହି ଆନନ୍ଦେ କରିଣ କୀର୍ତ୍ତନ ।
ନାଚି ନାଚି ନୃପତିର ଆଗେ ଆଗେ ଗଲେ
ବିପୁଳ ଶଙ୍ଖ ଶବଦେ ପୁର କମ୍ପାଇଲେ ।
ସିଂହନାଦେ ହରି ବୋଲ ଶବଦେ ପୂରିଲା
ଚାରଣଗଣଙ୍କ ପୂଜା ତହିଁ ସେ ପାଇଲା ।

ସୁସ୍ୱରେ ଗୀତ ଗାଇଣ ହରିନେଲେ ମନ
ଗନ୍ଧର୍ବଗଣଙ୍କ ଗୀତ ତାଳ ଲୟମାନ ।
ଦେବଋଷି ମିଳି କଲେ ଯଯାତିର ସ୍ତୁତି
ଅପସରା ମିଳି ସେବା କଲେ ଦିବା ରାତି ।
ସିଦ୍ଧଗଣ ସାଧ୍ୟଗଣ ଗନ୍ଧର୍ବ କିନ୍ନର
ଚାରଣ ମରୁତ ବସୁଗଣ ବିଦ୍ୟାଧର ।
ଚାରିଆଡ଼େ ରହି କଲେ ଯଯାତିର ସ୍ତୁତି
ଅନାମୟ ବିଷ୍ଣୁ ପୁର ଦେଖଇ ନୃପତି ।
ସାଧୁ ସନ୍ଥ ବଇଷ୍ଣବ ହରିନାମେ ବାଇ
କାଞ୍ଚନ ବିମାନ କେତେ ତାର ସଂଖ୍ୟାନାହିଁ ।
କୁନ୍ଦଇନ୍ଦୁ ହଂସଧଳା ବିମାନ ବହୁତ
ମନ୍ଦ ମନ୍ଦ ବହୁଅଛି ବସନ୍ତ ମରୁତ ।
ମେରୁ ମନ୍ଦର ସମାନ ଶ୍ରୀବିଷ୍ଣୁ ପ୍ରସାଦ
କାଞ୍ଚନମୟ ଶିଖର ବ୍ୟୋମ କରେ ଭେଦ ।
ଜାଜ୍ୱଲ୍ୟମାନ କଳଶ ବହୁତ ଅଛଇ
ଗଗନର ତାରାଗଣ ପ୍ରାୟ ଶୋଭାପାଇ ।
ପ୍ରଜ୍ୱଳିତ ତେଜ ଜ୍ୱାଳା ମାଳା ବିରାଜଇ
ସେ ଜ୍ୟୋତିର୍ମୟ ପୁରକୁ ନୃପତି ଦେଖଇ ।
ଦଶନ ପ୍ରାୟ ରତନ ହସୁଛି ସେ ପୁର
ଦେଖି ଯଯାତି ରାଜନ ଆନନ୍ଦ ଅପାର ।
ଧୀରେ ଧୀରେ ଧ୍ୱଜା ଅଗ୍ର ପବନେ ହଲଇ
ବଇଷ୍ଣବଙ୍କୁ ଡାକିବା ପ୍ରାୟ ଦେଖାଯାଇ ।
ହେମଦଣ୍ଡ ହେମଘଣ୍ଟା ଥିବାରୁ ସୁନ୍ଦର
ସୂର୍ଯ୍ୟତେଜେ ବିରାଜିତ ପୁରୀରେ ଗୋପୁର ।
ରତ୍ନ କିରଣ ଝଲକେ ଗବାକ୍ଷର ଜାଳେ
ସୁନ୍ଦର ପ୍ରତୋଳି ସୁନାରୂପା ଯେତେ ଝଲେ ।
ସୁନ୍ଦର ମନ୍ଦିରେ ପୁଣି ସୁନ୍ଦର କଳଶ
ଯେସନ ତାରା ନକ୍ଷତ୍ର ମଣ୍ଡିତ ଆକାଶ ।
ଚନ୍ଦ୍ରବିମ୍ବ ରବିବିମ୍ବ ପ୍ରାୟ ବିରାଜଇ
ନିର୍ଜ୍ଜଳ ନୀରଦ ଶତ କକ୍ଷା ଅଛି ତହିଁ ।
ଦଣ୍ଡଛତ୍ର ଚତୁର୍ମାସ୍ୟା ମେଘପ୍ରାୟେ ଶୋହେ
ସାଧୁ ବଇଷ୍ଣବ ସବୁ ଅଛନ୍ତି ସେ ଗୃହେ ।
ପୁଣ୍ୟ ମନ୍ଦିରେ ସେ ବିଷ୍ଣୁପୁର ଶୋଭାପାଇ
ଚନ୍ଦନ ଆଦି ଅନାଦି ବୃକ୍ଷରେ ଶୋଭଇ ।
କାମନାଫଳ ଫଳଇ ସେ ବୃକ୍ଷେ ବହୁତ
ସୁନ୍ଦର କୂପ ତଡ଼ାଗ ବାମ୍ପୀରେ ମଣ୍ଡିତ ।

ହଂସ କାରଣ୍ଡବ ଆଦି ଖେଳୁଛନ୍ତି ଜଳେ
ବିରାଜଇ ଶତଦଳ କମଳ ଉତ୍ପଳେ ।
ଦେବ ଉଦ୍ୟାନେ ମଣ୍ଡଣୀ ବଇକୁଣ୍ଠ ପୁର
ମନୁତ୍ତମ ମୋକ୍ଷସ୍ଥାନ ଦେଖି ନୃପବର ।
କ୍ଲେଶହର ଅନାମୟ ପୁର ଦେଖି ଯାଇ
ଜ୍ୟୋତିର୍ମୟ ପୁର ମଧ୍ୟେ ପ୍ରଭୁଙ୍କୁ ଦେଖଇ ।
ମହାଜ୍ୟୋତିର୍ମୟ ପ୍ରଭୁ ଶଙ୍ଖ ଚକ୍ରଧାରୀ
ଗଦାପଦ୍ମ ଧନୁର୍ଦ୍ଧର ଶୋହେ ଭୁଜ ଚାରି ।
ଗରୁଡ଼ ଉପରେ ବିଜେ ଦେବ ନାରାୟଣ
ପରମ ଈଶ୍ୱର ସବୁ ଲୋକର କାରଣ
ପରମ ଆନନ୍ଦମୟ କଇବଲ୍ୟ ରୂପ
ସାଧୁ ସନ୍ଥ ବଇଷ୍ଣବ କଳପ କଳପ ।
ପାଦସେବା କରୁଛନ୍ତି ସୁର ମୁନିଗଣେ
ଅପସରା ନୃତ୍ୟ କରୁଛନ୍ତି ଜଣେ ଜଣେ ।
ଗନ୍ଧର୍ବେ ସୁସ୍ୱରେ ହରିନାମ ଗୀତ ଗାଇ
ଯଯାତି ସଙ୍ଗତେ କାମନନ୍ଦିନୀ ଅଛଇ ।
ଭାରିଯା ସହିତ ରାଜା ଚରଣେ ଲୋଟିଲା
ଦୁଃଖ କ୍ଲେଶଥିଲା ଯାହା ସବୁ ତୁଟିଗଲା ।
ତାଙ୍କ ସଙ୍ଗେ ଥିବା ସାଧୁ ବଇଷ୍ଣବ ଯେତେ
ଶ୍ରୀପଙ୍କଜ ଚରଣେ ଲୋଟିଲେ ସମସ୍ତେ ।
ରାଜାକୁ ଚାହିଁ ବୋଇଲେ ଦେବ ହୃଷୀକେଶ
ତୋହର ସାଧୁ କର୍ମରେ ମୁଁ ବଡ଼ ସନ୍ତୋଷ ।
ତୁ ଯାହା ମାଗିବୁ ତାହା ଦେବି ମହାମତି
ମୋତେ ବଶେ ରଖିଅଛି ତୋହର ଭକତି ।
ନୃପତି ବୋଇଲେ ଦେବ ଶ୍ରୀ ମଧୁସୂଦନ
ଯେବେ କି ମୋକର୍ମେ ପ୍ରଭୁ ହେଲେ ସୁପ୍ରସନ୍ନ ।
କାଳେକାଳେ ପାଦତଳ ଦାସକରି ରଖ
ଏମନ୍ତ ଶୁଣି ବୋଇଲେ ଦେବ ପଦ୍ମମୁଖ ।
ଯାହା ମାଗିଲ ତା ଦେଲି ଦେଲି ମହାରାୟ
ଭାରିଯା ଘେନି ତୁ ରହ ଆମ୍ଭର ଆଳୟ ।
ଅକପଟ ଭକତ ତୁ ଯେଣୁ ଦଣ୍ଡଧାରୀ
କାଳେକାଳେ ଥିବୁ ମୋର ବଇକୁଣ୍ଠ ପୁରୀ ।
ହରି ହରି ବୋଲ ଭାଇ ଭବୁ ଯିବ ତରି
ଦୀନ ଗୋପୀନାଥ ବୋଲେ ନିତି ହରିହରି ।
ତୋର କୀର୍ତ୍ତି ଯଶ ଘୋଷୁଥିବେ ମର୍ତ୍ତ୍ୟଲୋକେ
ଅମରଗଣ ତୋ ତହୁଁ ନୁହଇ ଅଧିକେ ।
ଯାବତ ଚନ୍ଦ୍ରାର୍କେ ତୋର ପୁଣ୍ୟ କର୍ମମାନ
ଦେବତା ମାନବେ ନିତି କରିବେ ସ୍ମରଣ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ଯଯାତି ଚରିତେ ନାମ
ତ୍ର୍ୟଶୀତିତମୋଽଧ୍ୟାୟଃ ।



## ଚତୁରଶୀତି ଅଧ୍ୟାୟ

## ପିତୃସେବା ଫଳେ ପୁରୁର ରାଜ୍ୟଲାଭ

ସୁକର୍ମା କହିଲେ ଆହେ ପିପ୍ପଳ ବ୍ରାହ୍ମଣ
ଯେ ପାପହାରୀ ଚରିତ କଲଇଁ ବଖାଣ ।
ଏ ପୁତ୍ରଗଣ ଉଦ୍ଧାରକାରୀ ପାପହାରୀ
ଯଯାତି ରାଜା ଚରିତ ଆଲୋଚନା କରି ।
ଜାଣି ପାରିଲୁଁ ଯେ ପୁରୁ ପିତା ପରସାଦେ
ମହାରାଜା ହୋଇ ପ୍ରଜା ପାଳିଲା ନିଶ୍ଚିନ୍ତେ ।
ପିତାକୋପେ ତୁରୁ ଯଦୁ ପାଇଲେ ଦୁର୍ଗତି
ଯଯାତି ଚରିତ ଯେହୁ ଶୁଣନ୍ତି ପଢ଼ନ୍ତି ।
ଧନଧାନ୍ୟ ଯଶପୁଣ୍ୟ ମିଳଇ ତାହାଙ୍କୁ
ପୁତ୍ର ସେବିବ ସର୍ବଦା ପିତୃ ଚରଣକୁ ।
ପିତୃତୀର୍ଥହିଁ ଅଧିକ ତୀର୍ଥ ଜାଣ ନାହିଁ
ତୁରୁ ଯଦୁ ପାପୀ ହେଲେ ପିତୃଶାପ ପାଇ ।
ପିତା ମାତା ତୁଲ୍ୟ ଇଷ୍ଟଦାତା ନାହିଁ ଆନ
ପିତୃ ମାତୃସେବୀ ପୁତ୍ର ସୁପୁତ୍ରରେ ଗଣ୍ୟ ।
ସେ ପୁତ୍ରର ପୁଣ୍ୟଫଳ କହୁଅଛି ଶୁଣ
ମାତା ଡାକ ଶୁଣିଆସେ ସେ ପୁତ୍ର ବହନ ।
ଗଙ୍ଗାସ୍ନାନ କଲା ଫଳ ମିଳଇ ତାହାକୁ
ସେ ଧୋଇ ଦିଅଇ ପିତା ମାତାଙ୍କ ପାଦକୁ ।
ସବୁତୀର୍ଥଫଳ ପାଏ ତାଙ୍କ ପରସାଦେ
ଘଷି ମୋଡ଼ିଦିଏ ତାଙ୍କୁ ସେ ପୁତ୍ର ଆନନ୍ଦେ ।
ଅଶ୍ୱମେଧ ଯାଗକଲା ଫଳ ତହୁଁ ପାଇ
ସ୍ନାନ ଭୋଜନ ବସନେ ଯେ ପୁତ୍ର ପୋଷଇ ।
ପୃଥ୍ୱୀଦାନ ତୁଲ୍ୟ ପୁଣ୍ୟ ହୁଅଇ ତାହାର
ଏହା ଶାସ୍ତ୍ରେ ଦେଖି ଯାଇଛନ୍ତି ଶାସ୍ତ୍ରାକାର ।
ଗଙ୍ଗା ଆଦି ସର୍ବ ତୀର୍ଥମୟୀ ଯେ ଜନନୀ
ସବୁ ପୁରାଣରେ କହିଛନ୍ତି ଋଷି ମୁନି ।

ବହୁ ପୁଣ୍ୟମୟ ସିନ୍ଧୁ ଜଗତେ ଯେମନ୍ତେ
ସେରୂପ ପିତାବିରାଜେ ତ୍ରୈଲୋକ୍ୟେ କେମନ୍ତେ ।
ସୁକର୍ମା ଦ୍ୱିଜ କହଇ ପିପ୍ପଳ ଶୁଣଇ
କ୍ରୋଧେ ପିତାମାତା ଛାଡ଼ି ଯେଉଁ ପୁତ୍ରପାଇ ।
ପିତା ମାତା ପ୍ରତି ଯାର ଥାଇଟି ଆକ୍ରୋଶ
ନିଶ୍ଚୟ ତାର ରୌରବ ନର୍କେ ହୁଏ ବାସ ।
ବୃଦ୍ଧପିତା ମାତାଙ୍କୁ ଯେ ପୁତ୍ର ନ ପୋଷଇ
ନର୍କ ବିନା ତାର ଜାଣ ଆନଗତି ନାହିଁ ।
ସେ ତହିଁ ଘୋର ବେଦନା ଅନୁଭବ କରେ
କହିଛନ୍ତି ଋଷି ମୁନିମାନେ ପୁରାଣରେ ।
ପିତାର ଯେ ନିନ୍ଦାବାଦ କହି ହେଉ ଥାଇ
ସେ ପାପକାରୀ ଦୁର୍ମତି ନର୍କେ ପଡ଼େ ଯାଇ ।
ଆହେ ବିପ୍ର ଏହିରୂପେ ଜାଣି ମୁହିଁ ନିତ୍ୟ
ଭକତିରେ ପିତା ମାତାସେବେ ଅବିରତ ।
ସେ ପିପ୍ପଳ ଗୁରୁ ମୋର ଅଟଇ ପିଅର
କୃତ୍ୟ ଅକୃତ୍ୟ ମୁଁ କିଛି ନ କରି ବିଚାର ।
ସେ ଯାହା କହନ୍ତି ତାହା କରେ ପ୍ରାଣପଣେ
ଜନମି ଅଛି ପରମଜ୍ଞାନ ସେ କାରଣେ ।
ଯେଉଁ ଜ୍ଞାନବଳେ ଜନ ସୁଗତି ଲଭଇ
ଏ ମହୀତଳେ ମାନବ ଯା କିଛି କରଇ ।
ସେ ସବୁ କଥା ମୁଁ ଜାଣିପାରେ ରହି ଘରେ
ମୋର ଆବିଦିତ କିଛି ନାହିଁ ଜଗତରେ ।
ହେ ପିପଳ ଦ୍ୱିଜ ଜାଣ ଏଥେ ଥାଇ ମୁହିଁ
ନାଗଲୋକଙ୍କର ଗତି ବିଧି ଦେବି କହି ।
ପିତାମାତା ପରସାଦେ ତ୍ରିଲୋକ ମୋବଶେ
ଆହେ ବିଦ୍ୟାଧର କର ଆମ୍ଭର ଆଦେଶେ ।
ଦେବଦେବ ମାଧବଙ୍କୁ ପୂଜାକର ଯାଇ
ଶ୍ରୀବିଷ୍ଣୁ କହନ୍ତି ବେନ ନୃପତି ଶୁଣଇଁ ।
ସୁକର୍ମା କହନ୍ତେ ତହୁଁ ଗଲା ସେ ପିପ୍ପଳ
ସୁକର୍ମା ଦ୍ୱିଜର ବନ୍ଦି ଚରଣ ଯୁଗଳ ।
ଲାଜ ପାଇ ତହୁଁ ସ୍ୱର୍ଗପୁରେ ଗଲା ଚଳି
ସୁକର୍ମା ସେବିଲା ପିତା ମାତା ପୂର୍ବପରି ।
ତୁହୋ ମହାବୁଦ୍ଧିମନ୍ତ ବେନ ନରସାଇଁ
ପିତୃ ମାତୃ ତୀର୍ଥ ତୋତେ କହିଲି ବୁଝାଇ ।
ଆଉ କି କହିବି ତାହା କହ ମୋ ଅଗ୍ରତେ
ଦୀନ ଗୋପୀନାଥ ମନ ବିଷ୍ଣୁ ପାଦଗ୍ରତେ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ପିତୃମାତୃ ତୀର୍ଥ ମହାତ୍ମ୍ୟ
ନାମ ଚତୁରଶୀତିତମୋଽଧ୍ୟାୟଃ ।



## ପଞ୍ଚାଶୀତି ଅଧ୍ୟାୟ

### ଗୁରୁତୀର୍ଥ ମହିମା ବର୍ଣ୍ଣନେ

### ଚ୍ୟବନ ମାହାତ୍ମ୍ୟ

ବେନ କହିଲେ ହେ ଦେବ ଦେବ ଭଗବାନ
ଆପଣ ଏ ଦୀନଜନେ ହୋଇଣ ପ୍ରସନ୍ନ ।
କହିଲ ଭାରିଯା ତୀର୍ଥ ମାତୃ ପିତୃ ତୀର୍ଥ
ଏଣେ ଏ ଜୀବନ ଗୋଟା ମୋର ହେଲାସାର୍ଥ ।
ଗୁରୁତୀର୍ଥ କଥା ମୋତେ କହ ସୁପ୍ରସନ୍ନେ
ଶ୍ରୀବିଷ୍ଣୁ ବୋଇଲେ ରାଜା ଶୁଣ ସାବଧାନେ ।
ଏ ଗୁରୁ ତୀର୍ଥ ଅଟଇ ସର୍ବ ପାପହର
ଉତ୍ତମଗତି ଦାତା ଏ ଶିଷ୍ୟମାନଙ୍କର ।
ମହାପୁଣ୍ୟ ସନାତନ ଧର୍ମରୂପୀ ଏହି
ପରମ ତୀର୍ଥ ବୋଲି ଯେ ଏ ତୀର୍ଥକୁ କହି ।
ପରମଜ୍ଞାନ ପ୍ରତ୍ୟକ୍ଷ ଫଳ ଏ ଦିଅଇ
ଏ ତୀର୍ଥ ପ୍ରସାଦେ ଇହ ପରସୁଖ ପାଇ ।
ଆବର ଯଶ କୀରତି ଦିଅଇ ବହୁତ
ଗୁରୁ ପରସାଦେ ଶିଷ୍ୟ ଦେଖଇ ସମସ୍ତ ।
ତାହାର ଅଜଣାକିଛିନାହିଁ ତ୍ରିଭୁବନେ
ଗୁରୁ ପରସାଦେ ଶିଷ୍ୟ ଲୋକାଚାର ଜାଣେ ।
ଜ୍ଞାନୀ ବିଜ୍ଞାନୀ ଆବର ହୁଅଇ ବେଭାରୀ
ମରଣାନ୍ତେ ମୋକ୍ଷହୁଏ ଗୁରୁ ସେବାକରି ।
ସୂର୍ଯ୍ୟ ଯେମନ୍ତେ ଲୋକଙ୍କୁ କରେ ତେଜଦାନ
ଗୁରୁ ତେସନ ଶିଷ୍ୟଙ୍କୁ କରେ ଜ୍ଞାନଦାନ ।
ଗୁରୁ କେବଳ ଶିଷ୍ୟର ଅଟଇ ସୁଗତି
ରାତ୍ରେ ଚନ୍ଦ୍ର ଉଦେ ହୋଇ ଯେସନ ନୃପତି ।
ତେଜେ ଚରାଚର ପ୍ରାଣୀ ଭୟ ନିବାରଇ
ତେମନ୍ତ ଗୁରୁସେବାରେ ଅନ୍ଧକାର ଯାଇ ।
ଗୃହମଧ୍ୟେ ଜଳୁଥିବା ପ୍ରଦୀପ ଯେସନ
ଅନ୍ଧାର ନାଶ କରଇ ଶ୍ରୀଗୁରୁ ତେସନ ।
ଉପଦେଶ କିରଣରେ ଶିଷ୍ୟ ଜ୍ୟୋତିମନ୍ତ
ଦିବସ ଉଜ୍ଜ୍ୱଳକାରୀ ଯେସନ ଆଦିତ୍ୟ ।

ରଜନୀ ଉଜ୍ଜ୍ୱଳକାରୀ ଯେଉଁରୂପେ ଶଶୀ
ଶିଷ୍ୟ ଅଜ୍ଞାନ ତିମିରି ଗୁରୁ ତେହ୍ନେ ନାଶି ।
ଶିଷ୍ୟର ପରମତୀର୍ଥ ଗୁରୁ ଏ ଜଗତେ
ଏଣୁ ଶିଷ୍ୟ ଗୁରୁପୂଜା କରୁଥିବ ନିତ୍ୟେ ।
କାୟ ମନ ବଚନରେ ଗୁରୁଙ୍କୁ ସେବିବ
ଗୁରୁଙ୍କର ପାଦପଦ୍ମେ ଚିତ୍ତ ନିବେଶିବ ।
ଏକ ପୁରାତନ ତଥା ଶୁଣ ନୃପକର
ଚ୍ୟବନର ଇତିହାସ ସର୍ବ ପାପହର ।
ଭାର୍ଗବ ବଂଶେ ଜନମ ଏକ ମହାମୁନି
ତାହାର ନାବ ଚ୍ୟବନ ସେହି ମହାଜ୍ଞାନୀ ।
ଦିନେ ମନମଧ୍ୟେ ଚିନ୍ତାକଲା ସେ ଚ୍ୟବନ
କେମନ୍ତେ ମୋହର ହୃଦେ ଉଦେହେବଜ୍ଞାନ ।
ଏହିରୂପେ ଚିନ୍ତା କରେ ସେହି ଦିବାରାତି
ଏରୂପେ ତା ବୁଦ୍ଧି ହେଲା ଜାଣ ନରପତି ।
ଧନ ପୁତ୍ର ଗୃହ କ୍ଷେତ୍ର ଭାରିଯାକୁ ଛାଡ଼ି
ପାପ ସବୁ ଛଡ଼ାଇବି ତୀର୍ଥ ଜଳେ ବୁଡ଼ି ।
ଏମନ୍ତ ଭାବି ସେ ମୁନି ତୀର୍ଥଯାତ୍ରା କଲା
ତୀର୍ଥ ଯାତ୍ରା ପ୍ରସଙ୍ଗେ ସେ ମେଦିନୀ ଭ୍ରମିଲା ।
ପ୍ରତି ଲୋମ ଅନୁଲୋମ ବିଧିରେ ଚ୍ୟବନ
ଗଙ୍ଗା ତୀର୍ଥ ସାରିକଲା ନର୍ମଦାରେ ସ୍ନାନ ।
ସରସ୍ୱତୀ ଗୋଦାବରୀ ଆଦି ଯେ ସାଗର
ସବୁକ୍ଷେତ୍ର ତୀର୍ଥ ଯାତ୍ରା ସାରି ମୁନିବର ।
ପୁଣ୍ୟଲିଙ୍ଗ ଦେବଗଣ କ୍ଷେତ୍ର ସେ ଭ୍ରମିଲା
ତୀର୍ଥବ୍ରତ କରି ଦେହୁଁ ପାପ ଛଡ଼ାଇଲା ।
ସୂର୍ଯ୍ୟପ୍ରାୟ ତେଜୋବନ୍ତ ଦେଖାଗଲା ମୁନି
ଦିନୁଦିନ ପ୍ରଭା ତାର ବଢ଼େ ପୁଣି ପୁଣି ।
ନର୍ମଦା ଦକ୍ଷିଣକୂଳେ ମିଳିଲା ସେ ଦିନେ
ଅମର କଣ୍ଟକ ଯେଉଁ ପୁଣ୍ୟ କ୍ଷେତ୍ରସ୍ଥାନେ ।
ମହାଶମ୍ଭୁ ମହେଶ୍ୱର ସିଦ୍ଧନାଥ ଯହିଁ
ସବୁଲୋକଙ୍କୁ ସୁଗତି ଯେ·ଦେବ ଦିଅଇ ।
ତାଙ୍କୁ ଦରଶନ କରି ପଢ଼ି ସ୍ତବ ସ୍ତୁତି
ପୂଜିଲା ସେ ଉପଚାରେ କରିଣ ପ୍ରଣତି ।
ତହୁଁ ସେ ଯାଇଁ ପୂଜିଲା ଶମ୍ଭୁ ଜ୍ୱାଳେଶ୍ୱର
ଅମରଶ୍ୱେର କପିଳେଶ୍ୱର ବ୍ରହ୍ମେଶ୍ୱର ।
ମାର୍କଣ୍ଡେୟଶ୍ୱରଙ୍କୁ ସେ କରି ଦରଶନ
ଓଁକାରକ୍ଷେତ୍ରେ ମିଳିଲା ସେ ମୁନି ଚ୍ୟବନ ।
ବଟ ଛାଇତଳେ ବସି ପଥଶ୍ରମ କରି
ପକ୍ଷୀଏକ ବସିଥିଲା ସେ ବୃକ୍ଷ ଉପରି ।
ମହାଜ୍ଞାନୀ ବିଜ୍ଞାନୀ ଯେ ସେହି ପକ୍ଷୀବର
ଦିବ୍ୟଭାଷାରେ କହଇ ଶୁଣି ମୁନିବର ।
ଏକ ଶୁକବସା କରି ସେ ବଟ ବୃକ୍ଷରେ
ବହୁତ କାଳରୁ ଅଛି ବହୁତ କାଳରେ ।
ଧର୍ମଆତ୍ମା ସେହି ଶୁକସଙ୍ଗେ ତାରସ୍ତିରୀ
ଆବର ଅଛନ୍ତି ତାର ସଙ୍ଗେ ପୁତ୍ର ଚାରି ।
ଭକତିରେ ପିତାକୁ ସେ କରିଥାଇ ବସ
ତାଙ୍କ ନାମ କହୁଅଛୁ ଶୁଣ ନରଈଶ ।
ବଡ଼ ଉଜ୍ଜ୍ୱଳ ଯେ ସମୁଜ୍ଜ୍ୱଳ ତାର ତଳ
ତା ତଳ ବିଜ୍ଜ୍ୱଳ ସବାସାନ କପିଞ୍ଜଳ ।
ପୁଣ୍ୟଆତ୍ମା ସେ କୁଞ୍ଜଳ ଶୁକ ମହାମତି
ପିତାମାତା ପାଦେ ଥାଏ ତାହାଙ୍କ ଭକତି ।
କ୍ଷୁଧାରେ ଆତୁର ହୋଇ ସେହି ପୁତ୍ରଚାରି
ଭୋଜନ ନିମନ୍ତେ ମନେ ମନେ କୋପକରି ।
ଗିରିକୁଞ୍ଜ ନାନା ଦ୍ୱୀପ କରନ୍ତି ଭ୍ରମଣ
ବାଛିଣ ଅମୃତଫଳ କରନ୍ତି ଭକ୍ଷଣ ।
ସୁଆଦିଆ ପାଣି ପିଇ ତୃଷା ନିବାରନ୍ତି
ଆନନ୍ଦରେ ଆହାରାର୍ଥେ ସେ ବନେ ଭ୍ରମନ୍ତି ।
ପାଚିଲା ରସାଳଫଳ ବାଛି ବାଛି ଆଣି
ପିତାମାତାଙ୍କୁ ଦିଅନ୍ତି ଭକ୍ତିଭାବ ଘେନି ।
ଏରୂପେ ନିତି ଦିଅନ୍ତି ଆଣି ସେ ଆହାର
ଭ୍ରମି ଭ୍ରମି ପୋଷନ୍ତି ସେ ଆପଣା ଉଦର ।
ତା ମଧ୍ୟେ ପାଠପଢ଼ନ୍ତି ଚାରିହେଁ ଖେଳନ୍ତି
ସଞ୍ଜବେଳେ ପିତାମାତା ଚରଣେ ଖଟନ୍ତି ।
ତାଙ୍କର ଏ ସବୁକଥା ଦେଖନ୍ତି ଚ୍ୟବନେ
ଆବର ଦେଖିଲେ ସେହି ଶୁକର ନନ୍ଦନେ ।
ସୁନ୍ଦର ବସାରେ ପଶି ପିତାମାତା ପାୟେ
ପ୍ରଣାମ କରି ଶୁତିଲେ ଦେଖି ବାପମାଏ ।
ଆଦର କରି କୁଶଳ ପୁଛିଲେ ତାଙ୍କର
ସ୍ନେହଭରେ ଦେଲେ ମୁଖେ ଚୁମ୍ବନ ଆବର ।
ପକ୍ଷ ପବନରେ ଶ୍ରମ ତାଙ୍କର ନିବାରି
କଲ୍ୟାଣକଲେ ସୁଖରେ ରହ ପୁତ୍ର ଚାରି ।
ଉତ୍ତମ ଆହାର ଥୋଇଦେଲେ ତାଙ୍କ ଆଗେ
ସନ୍ତୋଷରେ ପିତାମାତା ଖାଇଲେତାବେଗେ ।

ତୀର୍ଥଜଳ ଆଣି ରଖିଥିଲେ ପୁତ୍ର ଚାରି
ପିତାମାତା ପିଇ ତୃଷା ନିବାରି ତାଙ୍କରି ।
ସନ୍ତୋଷମନେ ସେ ଶୁକ ଭାରିଯାକୁ ଘେନି
କହି ବସିଲା ସେ ପାପହାରିଣୀ କାହାଣୀ ।
ଶ୍ରୀବିଷ୍ଣୁ କହିଲେ ଶୁଣ ବେନ ନରପତି
ସେ କୁଞ୍ଜଳ ଉଜ୍ଜ୍ୱଳକୁ ବସାଇଣ କତି ।
ବୋଇଲାରେ ପୁତ୍ର ତୁହି ଯାଇଥିଲୁ କାହିଁ
କି ଅପୂର୍ବ ଦେଖିଅଛୁ କେଉଁସ୍ଥାନେ ତୁହି ।
କି କି ପୁଣ୍ୟକଥା କାହିଁ ଶୁଣିଛୁ ନନ୍ଦନ
ପିତା କୁଞ୍ଜଳର ଶୁଣି ଏମନ୍ତ ବଚନ ।
ଭକତି କରି ପିତାର ଚରଣେ ଉଜ୍ଜ୍ୱଳ
ବୋଇଲା ମୁଁ ଗଲି ବନ୍ଦି ତୁମ୍ଭ ପାଦତଳ ।
ପ୍ଲକ୍ଷଦ୍ୱୀପରେ ମିଳଇ ଆହାର ନିମନ୍ତେ
ସେ ଦ୍ୱୀପେ ଦେଶ ପର୍ବତ ଅଛି ପୁଣି କେତେ ।
ନଦୀ ସରୋବର ବନ ଉଦ୍ୟାନ ବହୁତ
ଗ୍ରାମପତ୍ତନ ବହୁତ ଅଛଇ ହେ ତାତ ।
ସେ ଦ୍ୱୀପର ପ୍ରଜା ସୁଖେ ଆନନ୍ଦରେ ଥାନ୍ତି
ଦାନପୁଣ୍ୟ ଜପ ତପ ଶ୍ରଦ୍ଧାରେ କରନ୍ତି ।
ଦିବୋଦାସ ନାମେ ଅଛି ଏକଇ ରାଜନ
ପୁଣ୍ୟ କର୍ମମାନ କରି ହରୁଥାଇ ଦିନ ।
ଦିବ୍ୟାଦେବୀ ନାମେ ତାର ଏକଇ ଦୁହିତା
ରୂପବତୀ ଗୁଣବତୀ ଆବର ପଣ୍ଡିତା ।
ସେ କନ୍ୟା ଯୁବାବୟସ ଦେଖି ନୃପବର
ମନେ କଲା ଏହା ତୁଲ୍ୟ ନାହିଁ କେ ସୁନ୍ଦର ।
ଗୁଣ ଯେତେ ରୂପତେତେ ଲକ୍ଷଣହିଁ ତେତେ
ଏହାକୁ ଉପମା ନାହିଁ ଏ ତିନି ଜଗତେ ।
ଦୁହିତା ରୂପକୁ ଦେଖି ଭାଳଇ ନୃପତି
ଏହାର ସମାନ କାହୁଁ ପାଇବଇଁ ପତି ।
ତାହାର ହସ୍ତେ କରନ୍ତି ମୁହିଁ ସମର୍ପଣ
ବର ଖୋଜେ ଦେଶେଦେଶେ ପେଷିଦୁତଗଣ ।
ରୂପଦେଶର ନୃପତି ଅଟେ ଚିତ୍ରସେନ
କନ୍ୟାରୂପକୁ ଏ ପାତ୍ର ଅଟଇ ଭାଜନ ।
ଏମନ୍ତ ଭାଳି ନୃପତି କଲା କନ୍ୟାଦାନ
ବିଭାବେଳେ ମଲା ସେହି ରାଜା ଚିତ୍ରସେନ ।
ଦିବୋଦାସ ରାଜା ଦେଖି ଘୋରଚିନ୍ତା କଲା
ଜ୍ଞାନୀ ବିପ୍ରଙ୍କୁ ଡକାଇ ଆଣି ସେ ପୁଚ୍ଛିଲା ।

ମୋର କନ୍ୟା ବିଭାକାଳେ ମଲା ତାର ବର
ଏଥିର ଉପାୟ କହ କରିଣ ବିଚାର ।
ବ୍ରାହ୍ମଣମାନେ ବିଚାରି ବୋଇଲେ ରାଜନ
ଅନ୍ୟପାତ୍ରେ ସେ କନ୍ୟାକୁ କରିବା ପ୍ରଦାନ ।
ରାଜା ବୋଇଲେ କାରିବେ ନୃପତି ସମସ୍ତେ
ଥରେ ଦେଇ ଆଉଥରେ ଦେବଇଁ କେମନ୍ତେ ।
ବିପ୍ରେ ବୋଇଲେ ତହିଁରେ ନାହିଁ କିଛିଦୋଷ
ଯେଣୁ କରିନାହିଁ କନ୍ୟା ପତି ସହବାସ ।
ସଙ୍ଗମାନ ହୋଇ ଯେବେ ମରେ ତାର ପତି
ସେ ଅନ୍ୟପତି ବରିବ ଜାଣ ମହୀପତି ।
କିବା ଆଧି ବ୍ୟାଧିଗ୍ରସ୍ତ ପତିକି ଦେଖିବ
କିବା ସନ୍ୟାସ ହୋଇଣ ପତି ଚାଲିଯିବ ।
ଧର୍ମଶାସ୍ତ୍ରେ ଲେଖାଅଛି ସେ କନ୍ୟା ଯେ ପୁଣି
ଅନ୍ୟପତି ବିଭାହେବ ବୁଧଜନେ ଭଣି ।
ଏମନ୍ତ ଶୁଣି ବୋଇଲେ ପୁଣି ସେ ନୃପତି
ବାକ୍ୟଦତ୍ତା ମନୋଦତ୍ତା ଯେ ପାଣିଗୃହିତୀ ।
ତାହାରା ପତି ଯେବେ କି ମରଇ ସେ ପୁଣି
ସନ୍ନ୍ୟାସୀ ହୁଅଇ ଅବା ବ୍ୟାଧିଗ୍ରସ୍ତ ଜାଣି ।
ସେ କନ୍ୟାକୁ ଅନ୍ୟବରେ କରିବ ପ୍ରଦାନ
ଅରଜା କନ୍ୟାର ପ୍ରତି ଏ ବିଧି ବିଧାନ ।
ଏ କନ୍ୟା ମୋହର ହୋଇଅଛି ରଜୋବତୀ
ଏହାକୁ ବିଭାଦେବା କି ଅଟଇ ଯୁକତି ।
ବିପ୍ରେ ବୋଇଲେ ପିତାର ନାହିଁ ଅଧିକାର
ରଜୋବତୀ କନ୍ୟାର ଯେ ବିଧି ସ୍ୱୟମ୍ବର ।
ତାହା କରନ୍ତୁ ନୃପତି ବିଚାର ନ କରି
ନ କଲେ ବହୁତ ଦୋଷ ଘଟିବ ତୁମ୍ଭରି ।
ରଜୋବତୀ କନ୍ୟା ରଜୋଦୋଷେ ତୁମ୍ଭବଂଶ
ଧ୍ୱଂସ ହେବ ଶାସ୍ତ୍ରେ ଅଛି ଜାଣିଥା ନରେଶ ।
ପତି ସଙ୍ଗମେ ନାରୀର ରଜୋଦୋଷ ପାଏ
ଏଣୁ ତୁମ୍ଭେ ସ୍ୱୟମ୍ବରା କର ତାକୁ ରାଏ ।
ବିପ୍ରଙ୍କ ବାକ୍ୟେ ନୃପତି କଲେ ସ୍ୱୟମ୍ବର
କନ୍ୟାର ଯେ ରୂପ ଗୁଣ ଶୁଣି ନୃପବର ।
ପ୍ଲକ୍ଷଦ୍ୱୀପେ ଯେତେ ଥିଲେ ସମସ୍ତେ ଅଇଲେ
ସ୍ୱୟମ୍ବର ସ୍ଥାନେ ରାଜ ବହୁତ ଯେ ମଲେ ।
ପ୍ରଥମକୁ ଘେନି ମଲେ ଏକୋଇଶ ବର
ବାକ୍ୟ ଦାନେ ମନୋଦାନେ କଲେ ଯମଘର ।

ଲଗ୍ନ ପତ୍ର ଧରୁ ଧରୁ କେହିକେହି ମଲେ
ଏମନ୍ତେ ଯେ ଏକୋଇଶ ବର ଜାଣ ଗଲେ ।
ଏକୋଇଶ ଗୋଟା ବର ସେହି ଖାଇଲାଣି
ସ୍ୱୟମ୍ବରେ ଦିବ୍ୟା ଦେବୀରୂପ ଦେଖି ପୁଣି ।
କାମଭରେ ଉନମତା ହୋଇ ରାଜାଗଣ
ମରାମରି ହୋଇ ମଲେ ଆପଣେ ଆପଣ ।
କ୍ଷତ୍ରିୟ ନାଶକାରିଣୀ ହୋଇ ସେ ସୁନ୍ଦରୀ
ବନ କନ୍ଦରେ ଭ୍ରମଇ କର୍ମକୁ ଆଦରି ।
ସବୁବେଳେ ତା ନୟନୁ ଲୋତକ ଝରଇ
ଏ ଅପୂର୍ବ କଥା ଗୋଟା ନେତ୍ରେ ଦେଖିଲଇଁ ।
ଆହେ ତାତ କାହିଁପାଇଁ ଘଟିଲା ଏମନ୍ତ
ଜାଣିଥିଲେ ତା କାରଣ କହୁକିନା ତାତ ।
ହରି ହରି ବୋଲି ଭାଇ ଭବୁଯିବ ତରି
ଦୀନ ଗୋପୀନାଥ ନିତ୍ୟ ବୋଲେ ହରି ହରି ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ଗୁରୁତୀର୍ଥ
ବର୍ଣ୍ଣନେ ଚ୍ୟବନୋପାଖ୍ୟାନେ
ପଞ୍ଚାଶୀତିତମୋଽଧ୍ୟାୟଃ ।



## ଷଡ଼ାଶୀତି ଅଧ୍ୟାୟ

### ଦିବ୍ୟାଦେବୀର ପୂର୍ବଜନ୍ମ ବୃତ୍ତାନ୍ତ

କୁଞ୍ଜଳପକ୍ଷୀ କହିଲା ଶୁଣ ତୁରେ ବାବା
ଦିବ୍ୟାଦେବୀ ପୂର୍ବଜନ୍ମ କଥା ଯେ କହିବା ।
ବାରଣସୀ ନାମେ ଏକ ଅଛଇ ନଗରୀ
ସେ କ୍ଷେତ୍ରବର ମହିମା କହିଲେ ନ ସରି ।
ସବୁ ପାପ ଛାଡ଼ିଯାଏ ମାଡ଼ିଲେ ସେ ସ୍ଥାନ
ସୁଧୀର ନାମରେ ବୈଶ୍ୟ ଏକ ଧନୀଜନ ।
ତାହାର ଭାରିଯା ନାମ ଚିତ୍ରା ଯେ ଅଟଇ
କୁଳାଚାର ଛାଡ଼ି ଅନାଚାରେ ସେହିଥାଇ ।
ସ୍ୱାମୀ କଥା ନ ମାନଇ ବୁଲେ ସାଇ ସାଇ
ସୁନ୍ଦର ଯୁବା ପୁରୁଷ ସଙ୍ଗେ ଦିନନେଇ ।
ପୁଣ୍ୟ କର୍ମ ଧର୍ମ ଛାଡ଼ି ପାପ କରେ ନିତି
କଳି କରୁଥାଏ ନିନ୍ଦୁଥାଏ ନିଜପତି ।
ପରଘରେ ରହିବା ତା ଅଟେ ନିତ୍ୟବ୍ରତ
ପରପୁରୁଷ ସଙ୍ଗତେ ଦିନରାତି ରତ ।

ଘରେ ଘରେ ବୁଲି କଳି ଲଗାଇ ଦିଅଇ
ପରିଛିଦ୍ର ଖୋଜୁଥାଇ ଦୁଷ୍ଟପଣେ ରହି ।
ସାଧୁଜନଙ୍କୁ ହସ୍ତରେ ଦିଅଇ ଉଡ଼ାଇ
ବହୁତ ନିନ୍ଦାକରଇ ଗାଳି ମନ୍ଦ ଦେଇ ।
ସୁଧୀରେ ବୈଶ୍ୟ ତାହାର ଦେଖି ଏହି ରୀତି
ଦୋଚାରୁଣୀ ବୋଲି ତାକୁ ନଗଲା ତା କତି ।
ଆନ ବୈଶ୍ୟକନ୍ୟା ବିଭାହୋଇ କଲା ଘର
ଧର୍ମ କର୍ମ କଲା ଧର୍ମପତ୍ନୀ ସହିତର ।
ଚିତ୍ରା ତାହା ଦେଖି ତାର ଘରୁଗଲା ଚାଲି
ପାପୀ ପୁରୁଷଙ୍କୁ ଘେନି ଦିନରାତି ଚଳି ।
ବନ କନ୍ଦରେ ଯେ ନଦୀ କୂଳେ ତରୁମୂଳେ
ପାପୀ ପୁରୁଷଙ୍କୁ ଘେନିଥାଏ କୁତୂହଳେ ।
କୁଟୁଣୀ ପଣ କରି ସେ କୂଳବଧୂ ଗଣ
ବହୁତଭ୍ରଷ୍ଟା କରାଇ ଅରଜିଲା ଧନ ।
ପତିବ୍ରତା ରମଣୀଙ୍କୁ କଲା ଦୋଚାରୁଣୀ
ଲୋଭ ଦେଖାଇ ଭୁଲାଇ ଦେଲା ସେ ରମଣୀ ।
ଶାଶୁ ବୋହୂଙ୍କ ଅପଡ଼ କଲା ମିଛ କହି
ବାପ ପୁଅରେ ସେ କଳି ଲଗାଇ ଦିଅଇ ।
ସୁନ୍ଦରୀସ୍ତିରୀ ଯୋଗାଇ ଯୁବା ମନ ତୋଷି
ଏହି ଜୀବିକା କରିଣ ସେ ଚିତ୍ରା ପେଟ ପୋଷି ।
ଶତ ଶତ ଲୋକଙ୍କର ଭାଙ୍ଗିଦେଲା ଘର
କାଳ ଯହୁଁ ପୂରିଲା ସେ ଗଲା ଯମପୁର ।
ଜନ୍ତୁରାଜ କୋପେ ତାର ମୁଖ ନ ଚାହିଁଲା
ଦୂରୁ ଦୂତଗଣଙ୍କୁ ସେ କହି ଉଠାଇଲା ।
ରଉରବ ନର୍କକୁଣ୍ଡେ ପକା ତାକୁ ନେଇ
ପଚୁଥାଉ ପଡ଼ି ତହିଁ ପୂଜରକ୍ତ ଖାଇ ।
ରାଜା ଝିଅ ହୋଇ ପାଉ ବହୁତ କଷଣ
କର୍ମଫଳ ଭୋଗକରୁ କଲା ଦୁଷ୍ଟପଣ ।
ଶତ ଶତ ଘର ଭାଙ୍ଗି ଦେଉଛି ପାମରୀ
ସେ ଯୋଗୁଁ ବିଧବା ହେଉ ଶତ ବର କରି ।
ଏ ପାପଯୋଗୁଁ ବିଧବା ହୁଏ ବାରବାର
ଏଣୁ ପୁତ୍ର ଖାଇଲା ସେ ଏକୋଇଶ ବର ।
ଦିବ୍ୟାଦେବୀ ପୂର୍ବଜନ୍ମ ଫଳ ଭୋଗକରେ
କହିଲି ପୁତ୍ର ସେ ସବୁ କଥା ତୋ ଆଗରେ ।
ପିତାଗ ମୁଖୁଁ ଏମନ୍ତ ଶୁଣି ସେ ଉଜ୍ଜ୍ୱଳ
ବୋଇଲା କହିଲ ତାତ ପୂର୍ବଜନ୍ମ ଫଳ ।

ସେ ପାପ ଫଳେ ହୋଇଲା ସେ ଘଇତାଖାଇ
ତହିଁରେ ଘୋର ସଂଶୟ ମୋର ଜାତହୋଇ ।
ଏଡ଼େ ପାପକରି ପୁଣି ହେଲା ରାଜାଝିଅ
ଦୂରକର ତାତ ମନୁ ମୋର ଏ ସଂଶୟ ।
କୁଞ୍ଜଳ ବୋଇଲା ବାବୁ ଶୁଣ ତାହା କହି
ଦିବ୍ୟାଦେବୀର ଯେ ପୁଣ୍ୟକର୍ମ ଯା ଅଛଇ ।
ଦିନେ ସିଦ୍ଧ ପୁରୁଷେକ ଭ୍ରମି ଭ୍ରମି ଆସି
ଚିତ୍ରାର ଦାଣ୍ଡ ପିଣ୍ଡାରେ ବଳେ ବଳେ ବସି ।
ଲୁଗାପଟା ନାହିଁ ତାର ଛିଣ୍ଡାକନା ଖଣ୍ଡେ
କଉପୁନି କରିଅଛି ଜଟାଭାର ମୁଣ୍ଡେ ।
କନ୍ଧରେ ଦଣ୍ଡ ଗୋଟିଏ ସନ୍ନ୍ୟାସୀ ଅଟଇ
ଜଳପାତ୍ର କରିଅଛି ନଡ଼ିଆ ସଢ଼େଇ ।
ଜିତଆତ୍ମା ଜିତଇନ୍ଦ୍ରି ମଉନୀ ଆବିର
ବିଭୂତି ଭୂଷଣ ତାର ଅଟେ ଦିଗମ୍ବର ।
ନିରାହାରୀ ଜିତାହାରୀ ସର୍ବ ତତ୍ତ୍ୱଦର୍ଶୀ
ପଥଶ୍ରମ ପାଇବାରୁ ବସିଲା ସେ ଆସି ।
ଖରାତାପ ସହିବାକୁ ବ୍ୟାକୁଳ ତା ଚିତ୍ତ
ପଥ ଚାଲିବାରୁ ଶୋଷ ହେବାରୁ ବହୁତ ।
ଚିତ୍ରା ଦୁଆରେ ବସିଣ ଶ୍ରମ ନିବାରିଲା
ସେକାଳେ ଚିତ୍ରା ତାହାର ସେବାରେ ଲାଗିଲା ।
ପାଦ ଧୋଇଦେଇ ତାକୁ ବସାଇ ଆସନେ
ତୋଷ କରାଇଲା ତାକୁ ଅନ୍ନଜଳ ଦାନେ ।
ଦେବତାଙ୍କୁ ପୂଜାକଲା ପ୍ରାୟ ସେ ପୂଜିଲା
ଘଷି ମୋଡ଼ିଦେଇ ତାର ଶ୍ରମ ନିବାରିଲା ।
ତାର ସେବାରେ ସନ୍ତୋଷ ସେ ସିଦ୍ଧ ପୁରୁଷ
ଖାଇପିଇ କିଛି କାଳ କରି ତହିଁ ବାସ ।
ଆପଣା ଇଚ୍ଛାରେ ତହୁଁ ଗଲେ ମହାଯୋଗୀ
ସେ ସିଦ୍ଧପୁରୁଷ ଯାନ୍ତେ ଚିତ୍ରା ହେଲା ରୋଗୀ ।
ଆୟୁଷ ପୂରିଲା ଯହୁଁ ଗଲା ଯମ ଘରେ
ସହସ୍ର ଯୁଗ ପଚିଲା ସେ ନର୍କକୁଣ୍ଡରେ ।
ନର୍କଭୋଗ ଅନ୍ତେ ପୁଣି ମନୁଷ୍ୟ ହୋଇଲା
ପୂର୍ବେ ସେ ସିଦ୍ଧ ପୁରୁଷ ସେବା କରିଥିଲା ।
ସେହି ପୂର୍ବ ପୁଣ୍ୟବଳେ କ୍ଷତ୍ରିକୁଳେ ଜାତ
ମହାରାଜା ଦିବୋଦାସ ବୀର୍ଯ୍ୟରୁ ସମ୍ଭୁତ ।
ଦିବ୍ୟାଦେବୀ ନାମେ ହେଲା ସେ ଅତି ସୁନ୍ଦରୀ
ମହାପୁରୁଷର ସେବାକଲା ଶ୍ରଦ୍ଧା କରି ।

ଅନ୍ନ ଜଳ ଦାନଫଳେ ସୁଖ ଭୋଗକଲା
ଶୀତଳ ଜଳ ମିଷ୍ଟାନ୍ନ ମାନ ସେ ପାଇଲା ।
ଏରୂପେ ନାନାଦି ସୁଖ ପାଏ ବାପ ଘରେ
ପୂର୍ବେ ସେ ବହୁତ ଘର ଭାଙ୍ଗିବା ପାପରେ ।
ଘଇତା ଖାଇ ହୋଇଲା ଜାଣରେ ପୁତ୍ରକ
ଏମନ୍ତ ଶୁଣି ଉଜ୍ଜ୍ୱଳ ହୋଇଲା ଅବାକ ।
ପୁଣି ବୋଇଲା ଭୋ ତାତ ସେ ରାଜକୁମାରୀ
କି ରୂପେ ଏ ମହା ଦୁଃଖଶୋକୁ ହେବ ପାରି ।
ଏହିରୂପେ କିବା ଦୁଃଖ ପାଉଥିବ ବାଳା
ବନରେ କି ଥିବ ଶୋକେ ହୋଇଣ ବିହ୍ୱଳା ।
ଉପାୟ ଥିଲେ କହିବା ହେଉ କିନା ତାତ
ବିଷ୍ଣୁ କହନ୍ତି ଶୁଣନ୍ତି ବେନ ନରନାଥ ।
ପୁତ୍ରର ଉଦାର କଥା ଶୁଣି ସେ କୁଞ୍ଜଳ
ପୁତ୍ରକୁ ଚାହିଁ କହିଲା ଶୁଣରେ ଉଜ୍ଜ୍ୱଳ ।
ସତ କହୁଅଛି ପୂର୍ବ ଜନ୍ମ ପାପ ଫଳେ
ପକ୍ଷୀ ଜନ୍ମ ପାଇ ରହିଅଛି ବୃକ୍ଷଡାଳେ ।
ଅଜ୍ଞାନୀ ହୋଇ ମୁଁ ରହି ଅଛିରେ କୁମର
ଏକ୍ଷଣେ ସେ ପାପ ଫଳ ହେବାରୁ ମୋଦୂର ।
ଜ୍ଞାନ ଉଦେ ହେବାଯୋଗୁଁ କହିବି ଉପାୟେ
ଯହିଁରେ କି ଦିବ୍ୟା ଦେବୀ କଷ୍ଟ ଯିବ କ୍ଷୟେ ।
ମହାପୁରୁଷ ଯେ ଅଛି ଏ ବୃକ୍ଷ ମୂଳରେ
ତାର ଦେହ ଲାଗିବାରୁ ଏହି ତରୁବରେ ।
ଏ ବୃକ୍ଷ ସଂସର୍ଗ ଯୋଗୁ ଉପୁଜିଲା ଜ୍ଞାନ
ଆବର ଏ ରେବା ନଦୀ ତୀର ପୁଣ୍ୟବନ ।
ଶ୍ରୀବିଷ୍ଣୁ ଦେବ ପ୍ରସାଦେ କହୁଅଛି ଶୁଣ
ଅଗ୍ନିରେ ପୋଡ଼ିଲେ ଶୁଦ୍ଧ ହୁଏ ଯେହ୍ନେ ସ୍ୱର୍ଣ୍ଣ ।
ତେସନ ଏ ଦିବ୍ୟା ଦେବୀ ପାତକ ଯେତେକ
ପୋଡ଼ିଯିବ ପୁଣ୍ୟ ଉଦେ ହୋଇବ ପୁତ୍ରକ ।
ଅଗ୍ନିରେ ପୋଡ଼ିଲେ ସୁନା ଉଜ୍ଜ୍ୱଳ ଯେସନ
ତେସନ ସ୍ୱରୂପ ବିଷ୍ଣୁ ଧ୍ୟାନ କରି ଜନ ।
ଜପ ତପ ହୋମ ବ୍ରତ କଲେ ଯାଏ ପାପ
କୃଷ୍ଣ ନାମ ନେଲେ ମହାପାପ ଯାଏ ବାପ ।
ସିଂହ ଭୟେ ଗଜମଦ ଯେସନ ସ୍ରବଇ
କୃଷ୍ଣ ନାମେ ପାପ ରାଶି ତେହ୍ନେ ଲୟ ପାଇ
ସେହି ଦିବ୍ୟାଦେବୀ କାମକ୍ରୋଧ ତେଜିଯେବେ ।
କୃଷ୍ଣ ପାଦପଦ୍ମେ ଲୟ ରଖେ ଏକଭାବେ ।

ଏକମନେ କୃଷ୍ଣ ଶତ ନାମ ଜପେ ବସି
ସକଳ ଇନ୍ଦ୍ରି ନିରୋଧି କୃଷ୍ଣନାମ ଘୋଷି ।
କୃଷ୍ଣ ନାମ ମନ୍ତ୍ର ଯେବେ ଭଜଇ ଗୋପନେ
ସମାଧିରେ ବସି ନାମ ଜପେ ମନେ ମନେ ।
ଯୋଗୀ ହୋଇ କୃଷ୍ଣପାଦେ ଲଗାଇବ ଲୟ
ଜନ୍ମ ଜନ୍ମାନ୍ତର ପାପ ଯାକ ଯିବ କ୍ଷୟ ।
ପରମ ଜ୍ଞାନ ବଳେ ଯେ ମୋକ୍ଷହିଁ ପାଇବ
ଶ୍ରୀବିଷ୍ଣୁ ନାମକୁ ଯେବେ ସେ ଜପି ପାରିବ ।
ଉଜ୍ଜ୍ୱଳ ବୋଇଲା ତାତ ଆଗ କହ ଜ୍ଞାନ
ପଛେ ପଛକେ କହିବ ଧ୍ୟାନ ବ୍ରତ ପୁଣ୍ୟ ।
ଶ୍ରୀ ବିଷ୍ଣୁର ଶତ ନାମ କହିବ ତା ପଛେ
ଆଗ ମୁଁ ପରମଜ୍ଞାନ ତୁମ୍ଭଙ୍କୁ ଯେ ପୁଚ୍ଛେ ।
କୁଞ୍ଜଳ କହିଲା ପୁତ୍ର ଶୁଣ ମନ ଦେଇ
ତୋହର ଆଗେ ପରମ ଧ୍ୟାନ ମୁଁ କହଇ ।
ଯାହା କେହି ନ ଜାଣନ୍ତି କହୁଛି ମୁଁ ତାହା
ନିର୍ମଳ ଅମୂଲ୍ୟ ଜ୍ଞାନ ବୋଲଇଟି ଏହା ।
ସୂତମୁନି କହୁଛନ୍ତି ଶଉନକ ଆଗେ
ଯେମନ୍ତ ଯେଉଁ ସ୍ଥାନରେ ପବନ ନ ଲାଗେ ।
ସେ ନିର୍ବାତ ସ୍ଥାନେ ଦୀପ ଜାଳିଲେ ଯେପରି
ନିଶ୍ଚଳେ ଜଳି ଉଜ୍ଜ୍ୱଳ କମ୍ପଇ ତିମିରି ।
ସେହିରୂପେ ଦୋଷ ଶୂନ୍ୟ ଆତ୍ମା ଅଟେ ଜାଣ
ଇନ୍ଦ୍ରିଗଣଙ୍କୁ ସଂହାର କରେ ସେହି ପୁଣ ।
ନିରାଶ ନିର୍ମଳ ଜାଣ ସେ ଆତ୍ମା ଅଟଇ
ମିତ୍ରକି ଶତ୍ରୁ କାହାର ସେ ପୁଣି ନୁହଇ ।
ଶୋକ ହରଷ ମତ୍ସର ଲୋଭ ନାହିଁତାର
ଏକା ସେହି ନାହିଁ ତାର ସଖା ସହୋଦର ।
ହରଷ ବିଷାଦ ସୁଖ ଦୁଃଖ କିଛି ନାହିଁ
ବିଷୟରେ ଆସକତ ନ ଥିବାରୁ ସେହି ।
ନିର୍ମୁକ୍ତ ବୋଲି ତାହାକୁ ବୋଲନ୍ତି ସମସ୍ତେ
ରୂପେ ସେ ବିରାଜୁଥାଇ ସେ କାଳେ ଜଗତେ ।
ସଙ୍ଗଶୂନ୍ୟ ବାୟୁଶୂନ୍ୟ ପ୍ରଦୀପ ଯେସନ
ବତୀରେ ରହି ତଇଳ କରଇ ଶୋଷଣ ।
ପଛେ ସେ ତଇଳ ପୁଣି କଳା ବାନ୍ତି କରେ
ଦୀପ ଆଗେ କଳାରେଖା ଦିଶଇ ଅଗ୍ରରେ ।
ପ୍ରଦୀପ ନିଜେ ତଇଳ କରେ ଆକର୍ଷଣ
ନିଜ ହେଜେ ବିରାଜଇ ଉଜ୍ଜଳ ହୋଇଣ ।

ଦେହ ବତୀ ଭିତରେ ଏ ଆତ୍ମା ରହି ଜାଣ
ସେ ରୂପେ କର୍ମ ତଇଳ କରଇ ଶୋଷଣ ।
ବିଷୟ ଉଜ୍ଜ୍ୱଳ ସବୁ କରଇ ବମନ
ପ୍ରତ୍ୟକ୍ଷରେ କରୁଥାଇ ସବୁ ଦରଶନ ।
କ୍ରୋଧାଦି ପବନ ଶୂନ୍ୟ ହୋଇ ପୁଣି ଆପେ
ନିର୍ମଳ ହୋଇ ବିରାଜୁ ଥାଇ ଜ୍ୟୋତିରୂପେ ।
ସ୍ପୃହା କିଛି ନାହିଁ ତାର ନିଷ୍କଳରେ ଥାଇ
ନିଜ ତେଜରେ ଉଜ୍ଜ୍ୱଳ ଜ୍ୟୋତି ପ୍ରକାଶଇ ।
ଆପଣା ଥାନରେ ଥାଇ ଆପଣା ପ୍ରଭାବେ
ଚଉଦ ଭୁବନ କଥା ଜାଣଇ ସ୍ୱଭାବେ ।
ପରମ ଜ୍ଞାନ କହିଲି ତୋତେ ମୁଁ ବୁଝାଇ
ଦୁଇ ପ୍ରକାର ଯେ ଧ୍ୟାନ ବିଷ୍ଣୁର ଅଛଇ ।
ତାହା ଏବେ କହୁଅଛି ଶୁଣ ସାବଧାନେ
ଜ୍ଞାନରୂପ ଜ୍ଞାନ ନେତ୍ରେ ଦୃଶ୍ୟ ହୁଏ ଧ୍ୟାନେ ।
ପରମାର୍ଥୀ ଯୋଗୀ ତାହା କରେ ଦରଶନ
ତା ବିନା ସେରୂପ ଦେଖି ନ ପାରଇ ଆନ ।
ସେ ସବୁ ଦେଖି ପାରଇ ତାଙ୍କୁ କେ ନଦେଖେ
ହସ୍ତ ପଦ ନାହିଁ ଯାଇପାରେ ସବୁ ଦିଗେ ।
ଚରାଚର ତ୍ରଇଲୋକ୍ୟ ସେ ବହି ପାରଇ
ନାସା ମୁଖ ନାହିଁ ସବୁ ବାସନା ଘେନଇ ।
ସେହି ତପ ସେହି ସବୁ କରଇ ଭକ୍ଷଣ
କାନ ତାର ନାହିଁ କରେ ସକଳ ଶ୍ରବଣ ।
ଆଖି ନାହିଁ ସବୁ ଦେଖେ ସେ ଜଗତ ପତି
ରୂପ ନଥିବାରୁ ତାକୁ ଅରୂପ କହନ୍ତି ।
ପାଞ୍ଚ ବର୍ଣ୍ଣଙ୍କର ବଶେ ସେହି ରହିଥାଇ
ସବୁ ଲୋକଙ୍କର ସେହି ପରାଣ ବୋଲାଇ ।
ପୂଜାର ପାତ୍ର ସେ ଚରାଚର ପ୍ରାଣୀଙ୍କର
ରୂପରେଖ ଶୂନ୍ୟ ସେହି ଅଟେ ନିରାକାର ।
ଜିଭ ନାହିଁ ଚାରି ଗୋଟା ବେଦ ବଖାଣଇ
ଚର୍ମନାହିଁ ସବୁ ଦ୍ରବ୍ୟ ଦରଶ କରଇ ।
ସର୍ବଦା ସେ ବିରକତ ସର୍ବଦା ଆନନ୍ଦ
ଗୋଟିଏ ରୂପ ତାହାର ସର୍ବଦା ନିର୍ଦ୍ୱନ୍ଦ ।
ଆଶ୍ରୟ ତାହାର ନାହିଁ ଜରାମୃତ୍ୟୁ ନାହିଁ
ମମତା ନାହିଁ ସେ ପୁଣି ନ୍ୟାୟେ ଥାଏ ରହି ।
ସଗୁଣ ନିର୍ମଳ କାହା ବଶେ ସେ ନ ରହେ
ସବୁରି ବଶେ ସେ ଥାଇ ସବୁଦାନ ଦିଏ ।

ସବୁ ସେ ଜାଣି ପାରଇ ଅନ୍ତର ବାହାର
ବିଧାନ କରତା ନାହିଁ କେହି ଯେ ତାହାର ।
ସର୍ବମୟ ପ୍ରଭୁ ସେହି ହରତା କରତା
ତାହାକୁ ଲୋକେ ବୋଲନ୍ତି ଦଇବୀ ବିଧାତା ।
ସର୍ବମୟ ଧ୍ୟାନେ ଏହା ଦେଖଇ ଯେ ଜନ
ସେ ପାଇ ନିଶ୍ଚେ ଅମୃତ ତୁଲ୍ୟ ନିତ୍ୟସ୍ଥାନ ।
ଏହି ସେହି ମହାତ୍ମାର ଧ୍ୟାନ ଏକ ଜାଣ
ସାକାର ସେ ନିରାକାର ମୂର୍ତ୍ତିକାର ପୁଣ ।
ସବୁ ବ୍ରହ୍ମାଣ୍ଡ ତାହାର ବାସନା ବାସିତ
ତେଣୁ ସେହି ବାସୁଦେବ ନାମରେ ବିଦିତ ।
କଳାମେଘ ଘୋଟି ଆସୁଥିବା ପ୍ରାୟ ଦିଶେ
ସୁନ୍ଦର ନୀରଦ ବର୍ଣ୍ଣ ଚିକ୍କଣ ସଦୃଶେ ।
ସୂର୍ଯ୍ୟ ତେଜ ପ୍ରାୟ ତେଜ ତାହାର ଅଟଇ
ଚାରିବାହୁ ସୁରେଶ୍ୱର ସେ ପ୍ରଭୁ ବୋଲାଇ ।
ଶଙ୍ଖ ଗୋଟାଏ ବିରାଜେ ତା ଦକ୍ଷିଣ କରେ
ହେମରତ୍ନ ମଣ୍ଡିତ ସେ ଶଙ୍ଖ କଳେବରେ ।
ଆରେକ କରେ ତାହାର ଚକ୍ର ବିରାଜଇ
ସୂର୍ଯ୍ୟ ବିମ୍ବପ୍ରାୟ ସେହି ଚକ୍ର ଦେଖାଯାଇ ।
ବାମହସ୍ତରେ ଅଛଇ ପଦ୍ମଗୋଟା ତାର
ଆନ ହସ୍ତରେ ଧରିଛି ଏକ ଗଦାବର ।
ତାର ନାମ କୌମୋଦକୀ ଅସୁରସେ ମାରେ
ସଉଗନ୍ଧ ମହାପଦ୍ମ ଦକ୍ଷିଣ ହସ୍ତରେ ।
କମଳା ଦେବୀର ପ୍ରିୟ ସେ ଆୟୁଧଧାରୀ
ଯାହାଙ୍କ ନୟନ ଦୁଇ ପଦ୍ମପତ୍ର ପରି ।
କମ୍ବୁ ପ୍ରାୟ ଗ୍ରୀବା ଯାର ବର୍ତ୍ତୁଳ ବଦନ
ରତ୍ନପ୍ରାୟ ବିରାଜଇ ଯାହାଙ୍କ ଦଶନ ।
ଇନ୍ଦ୍ରିୟର ଅଧୀଶ୍ୱର ଅଧର ବିଦ୍ରୁମ
କୁଞ୍ଚିତ କେଶ ଯେ ଶ୍ୱେତ ପଦ୍ମ ପତ୍ରେକ୍ଷଣ ।
କିରୀଟ ମଣ୍ଡିତ ଶିଖ କେଶବ ଯା ନାମ
ଅନନ୍ତ ତେଜେ ଉଜ୍ଜ୍ୱଳ ଯା ରୂପ ଅସୀମ ।
କଉସ୍ତୁଭ ଅଙ୍କିତ ଯେ ଦେବ ଜନାର୍ଦ୍ଦନ
ଲୋକ କୁଣ୍ଡଳ ମଣ୍ଡିତ ଯାର ଦୁଇକର୍ଣ୍ଣ ।
କୁଣ୍ଡଳ ସେ ସୂର୍ଯ୍ୟ ତେଜ ପ୍ରାୟ ସମୁଜ୍ଜ୍ୱଳ
ଶ୍ରୀବତ୍ସଚିହ୍ନ ମଣ୍ଡିତ ଯାର ବକ୍ଷସ୍ଥଳ ।
କେୟୁର କଙ୍କଣ ହାର ଯାର ତାରାପରି
ମୁକୁତା ମାଳ ଯା ଦେହ ସମୁଜ୍ଜ୍ୱଳକାରୀ ।
ବିଂଶୟୀବର ଯେ ପୁଣି ବିଜୟ ବୋଲାଇ
କଟୀତଟେ ପୀତପଟ ଯାର ଶୋଭା ପାଇ ।
ରତ୍ନମୁଦି ବିରାଜଇ ଯା ଅଙ୍ଗୁଳି ଦଳେ
ଦିବ୍ୟସର୍ବ ଆଭରଣ ଯାର କଳେବରେ ।
ଯେଉଁ ଗୋବିନ୍ଦ ସକଳ ଆୟୁଧେ ଉଜ୍ଜ୍ୱଳ
ଜଗତ କରତା ହରି ଯେ ଜଗତୀ ପାଳ ।
ଗରୁଡ଼ ଆରୂଢ଼ ତାଙ୍କ ନିତ୍ୟ ଯେଉଁଜନ
ନିଶ୍ଚଳ ମନେ କରଇ ଏରୂପେ ହେ ଧ୍ୟାନ ।
ସବୁ ପାପରୁ ମୁକତ ହୋଇ ପୁଣି ସେହି
ମରଣାନ୍ତେ ବିଷ୍ଣୁଲୋକେ ସୁଖ ଭୋଗପାଇ ।
ପାପହାର ବ୍ରତକଥା କହୁଅଛି ଏବେ
ଦୀନ ଗୋପୀନାଥ ମନମଜ୍ଜୁ କୃଷ୍ଣଭାବେ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ଦିବ୍ୟାଦେବୀର ପୂର୍ବ ଜନ୍ମ
ବୃତ୍ତାନ୍ତେ ନାମ ଷଡ଼ଶୀତିତମୋଽଧ୍ୟାୟ ।



## ସପ୍ତାଶୀତି ଅଧ୍ୟାୟ

### ଅଶୂନ୍ୟ ଶୟନବ୍ରତ ଓ କୃଷ୍ଣଶତନାମ

କୁଞ୍ଜଳ ପୁଣି କହଇ ପୁତ୍ରର ଅଗ୍ରତେ
ହରିଙ୍କି ପୂଜା କରନ୍ତି ଯେ ସକଳ ବ୍ରତେ ।
ତାହାଙ୍କର ନାମ ସବୁ ଶୁଣ ମନଦେଇ
ଆରେ ପୁତ୍ର ଜୟା ପୁଣି ବିଜୟା ଏ ଦୁଇ ।
ଜୟନ୍ତୀ ବ୍ରତ ତ୍ରିସ୍ପୃଶା ବଞ୍ଜୁଳି ରବର
ତିଳଦଗ୍ଧା ଅଖଣ୍ଡା ଯେ ମନୋରଥା ସାର ।
ଏରୂପେ ଅଛି ଅନେକ ଏକାଦଶୀ ବ୍ରତ
ଏହାଛଡ଼ା ମହାବ୍ରତ ମଧ୍ୟେ ଯେ ପ୍ରଶସ୍ତ ।
ତାର ନାମ ଜନ୍ମାଷ୍ଟମୀ ଅଶୂନ୍ୟ ଶୟନ
ଏ ସବୁ ବ୍ରତ କରଇ ମହା ପୁଣ୍ୟଦାନ ।
ପ୍ରାଣିଙ୍କର ପାପରାଶି ଛଡ଼ାଇ ଦିଅଇ
ସତ ମୁଁ କହୁଛି ଏଥେ ସଂଶୟ ଯେ ନାହିଁ ।
କୃଷ୍ଣ ଶତନାମ ସ୍ତୋତ୍ର କହୁଅଛି ଶୁଣ
ସୁଗତି ଦାତା ଯେ ପାପରାଶି ବିନାଶନ ।
ଋଷି ଛନ୍ଦ ଦେବତା ଯେ ବିନିଯୋଗ ଆଦି
ଏ ସ୍ତୋତ୍ର ନିଖିଳ ପାପ ପାରଇ ଯେ ଶୋଧି ।

ବିଷ୍ଣୁ ଶତନାମ ସ୍ତୋତ୍ର ଋଷି ଅଟେ ବ୍ରହ୍ମା
ଓଁକାର ତାର ଦେବତା ଜାଣ ମହାତମା ।
ଅନୁଷ୍ଟୁପ ଛନ୍ଦ ତାର ବିନିଯୋଗ ଶୁଣ
ସର୍ବକାମ ସିଦ୍ଧି ମୋକ୍ଷ ଏହି ଦୁଇ ଜାଣ ।
ହେ ହରି କେଶବ ତୁମ୍ଭେ ହୃଷୀକେଶ ପୁଣ
ସର୍ବ ଦୈତ୍ୟ ନିସୂଦନ ଶ୍ରୀ ମଧୁସୂଦନ ।
ଅନାମୟ ନାରାୟଣ ବିଜୟ ଜୟନ୍ତ
ବିଷ୍ଣୁ ପୁଣ୍ୟ କୃଷ୍ଣ ପୁଣି ବାମନ ଅନନ୍ତ ।
ଅଘହନ୍ତା ସୁରାର୍ଚ୍ଚିତ ବିଶ୍ୱର ଈଶ୍ୱର
ନରସିଂହ ଲକ୍ଷ୍ମୀପ୍ରିୟ ବିଶ୍ୱର ଆଧାର ।
ଅନଘ ଶ୍ରୀପତି ମହୋଦୟ ଶ୍ରୀନିବାସ
ଶ୍ରୀଧର ଶ୍ରୀଦ ଶ୍ରୀରାମ ମାଧବ ଯେ ମୋକ୍ଷ ।
କ୍ଷମାରୂପ ଜନାର୍ଦ୍ଦନ ସର୍ବଜ୍ଞ ସର୍ବଦ
ସର୍ବନାୟକ ସକଳ ମୁରାରି ଗୋବିନ୍ଦ ।
ସର୍ବବେତ୍ତା ପଦ୍ମନାଭ ଶ୍ରୀହରି ଆନନ୍ଦ
ଜ୍ଞାନନାୟକ ଜ୍ଞାନଦ ଚକ୍ରପାଣି ଚନ୍ଦ୍ର ।
ଜ୍ଞାନସମ୍ପନ୍ନ ଅଚ୍ୟୁତ ଗୁଣର ଆଧାର
ବ୍ରହ୍ମରୂପ ପାରାବାର ଦେବ ମହେଶ୍ୱର ।
ସୁବଇକୁଣ୍ଠ ମୁକୁନ୍ଦ ମହାତ୍ମା ବ୍ରହ୍ମଣ୍ୟ
ଜଗତଯୋନି ଜଗତପତି ଯାର ନାମ ।
ଏକରୂପ ବାସୁଦେବ ବ୍ରାହ୍ମଣଙ୍କ ପ୍ରିୟ
ଯଜ୍ଞାଙ୍ଗ ଯଜ୍ଞବର୍ଦ୍ଧନ ଗୋହିତ ଗୋପ୍ରିୟ ।
ବେଦ ବେଦାଙ୍ଗ ପାରଗ ଯଜ୍ଞଭୋକ୍ତା ଯଜ୍ଞ
ବେଦରୂପ ବିଦ୍ୟାବାସ ଅବ୍ୟକ୍ତ ଦେବଜ୍ଞ ।
ମହାହଂସ ସୁରେଶ୍ୱର ଶଙ୍ଖପାଣି ବ୍ୟାସ
ପୁରାତନ ପୁଷ୍କରାକ୍ଷ ପ୍ରଦ୍ୟୁମ୍ନ ପୁରୁଷ
ଧରଣିଧର ବରାହ ମୋକ୍ଷ କାମପାଳ ।
ସର୍ବସୌଖ୍ୟ ମହାସୌଖ୍ୟ ମହାଜ୍ଞାନ ବ୍ୟାଳ
ଲୋକପାଳ ଯୋଗରୂପ ପରମ ଈଶ୍ୱର
ଯୋଗୀଜନ ପ୍ରିୟ ପଦ୍ମହସ୍ତ ଗଦାଧର ।
ମୁରାରୀ ଗତିଦାୟକ ନିତ୍ୟ ଗୁହାବାସ
ପାପନାଶନ ଯେ ସର୍ବାବାସ ପୁଣ୍ୟବାସ ।
ମହାଭୁଜ ବୃନ୍ଦାନାଥ ପାବନ କପିଳ
ଗୋପସଖା ଗୋପୀନାଥ ମହାତ୍ମା ଗୋପାଳ ।
ବୃହତକାୟ ନିଷ୍କଳ ଗୋଗଣ ଆଶ୍ରୟ
ପରାଧୀଶ ମାନୁଷ ଯେ ଦେବ ଦବରାୟ ।

କାୟ ମନ ବାକ୍ୟ କର୍ମେ କରି ନମସ୍କାର
ସର୍ବ ପାପୁ ଉଦ୍ଧାରିବେ ସେହି ବିଶ୍ୱମ୍ଭର ।
ଏହି ଶତନାମା ସ୍ତୋତ୍ରେ କରେ ବିଷ୍ଣୁସ୍ତୁତି
କହିବା ତାହାର ପୁଣ ତୁ ହୋ ଫଳଶ୍ରୁତି ।
ସ୍ଥିରଚିତ୍ତେ ଶରଧାରେ ଭକତିରେ ପୁଣି
ବିଷ୍ଣୁ ଶତନାମ ସ୍ତୋତ୍ର ପଢ଼ଇ ବା ଶୁଣି ।
ପୁଣ୍ୟକାରୀ ଏକାସେହି ଏ ମହୀମଣ୍ଡଳେ
ମରଣାନ୍ତେ ବିଷ୍ଣୁ ଲୋକେ ବସେ ପୁଣ୍ୟବଳେ ।
ଏହି କୃଷ୍ଣ ଶତନାମ ମହାପୁଣ୍ୟ ଦାନୀ
ସର୍ବ ପାତକ ଶୋଧନ କରେ ଏହା ଜାଣି ।
ଧ୍ୟାନ କରେ ଜପ କରେ ପଢ଼େ ମନଯୋଗେ
ସେ ପୁଣ୍ୟାତ୍ମା ଗଙ୍ଗାସ୍ନାନ ତୁଲ୍ୟ ଫଳଭୋଗେ ।
ଏଣୁ ସମାଧିରେ ରହି ମନ କରି ସ୍ଥିର
ନିୟମରେ ରହି ନିତି ପଢ଼ିବ ଯେ ନର ।
ଯେ ନର ତ୍ରିକାଳ ଏହି ସ୍ତୋତ୍ରକୁ ପଢ଼ଇ
ଅଶ୍ୱମେଧ ଫଳ ତାକୁ ନିଶ୍ଚୟ ମିଳଇ ।
ଏକାଦଶୀ ଦିନ ଉପବାସେ ରହିଜନ
ଉଜାଗରେ ବିଷ୍ଣୁ ଆଗେ ପଢ଼େ ରାତିଦିନ ।
ତାର ପୁଣ୍ୟ କହୁଅଛି ଶୁଣ ମନଦେଇ
ନବ ପୁଣ୍ଡରୀକ ଯଜ୍ଞକଲା ଫଳ ପାଇ ।
ତୁଳସୀ ଚଉରା ମୂଳେ ବସି ମନେ ମନେ
କୃଷ୍ଣ ଶତନାମ ଜପେ ବୃନ୍ଦା ସନ୍ନିଧାନେ ।
ବରଷକ ରାଜସୂୟ ଯାଗଫଳ ପାଇ
ଯେଉଁସ୍ଥାନେ ଶାଳଗ୍ରାମ ଶିଳା ରହିଥାଇ ।
ଦ୍ୱାରାବତୀ ଶିଳା ଅବା ରହିଥାଇ ଯହିଁ
ଏ ଦୁଇ ଶିଳା ଆଗରେ ଯେ ଜନ ଜପଇ ।
ତାର ସୁଖ କେତେ କହି ନ ହୁଅଇ ମୁଖେ
ଏରୂପେ ଜପିଲେ ମର୍ତ୍ତ୍ୟ ଲୋକେ ରହେ ସୁଖେ ।
ଶଏ ଏକ କୁଳ ତାର ନରକୁ ଉଦ୍ଧାରି
ଆପେ ଉଦ୍ଧୁରି ଗମଇ ବଇକୁଣ୍ଠ ପୁରୀ ।
କାର୍ତ୍ତିକ ମାସେ କରିଣ ଯେ କାର୍ତ୍ତିକ ସ୍ନାନ
ଶ୍ରୀମଧୁସୂଦନ ପୂଜା କରି ପ୍ରତିଦିନ ।
କୃଷ୍ଣ ଶତ ନାମ ସ୍ତୋତ୍ର ପଢ଼ଇ ଶୁଣଇ
କୃଷ୍ଣ ପାଦେ ଲୟ ରଖି ଜପଇ ଚିନ୍ତାଇ ।
ପରମ ଗତି ଲଭଇ ନିଶ୍ଚୟ ସେ ଜନ
ମାଘ ମାସେ ପ୍ରଭାତେ ଯେ କରି ମାଘସ୍ନାନ ।

ଭକତିରେ ପୂଜାକରି ଶ୍ରୀ ମଧୁସୂଦନ
ଅନ୍ତେ ବଇକୁଣ୍ଠେ ଗତି ଲଭଇ ସେ ଜନ ।
ଏକମନେ ହୃଷୀକେଶ ପାଦେ ରଖି ଲୟ
ଏ ନାମ ଜପିଲେ ସବୁ ପାପ ଯାଏ କ୍ଷୟ ।
ଏ ସ୍ତୋତ୍ର ପଢ଼ଇ ଯେହୁ ଶ୍ରଦ୍ଧାରେ ଶୁଣଇ
ସୁରାପାନ ଆଦି ମହାପାପ କ୍ଷୟ ଯାଇ ।
ମୁକତ ହୋଇ ପରମ ପଦକୁ ସେ ପାଇ
ଜନାର୍ଦ୍ଦନ ଲାଭେ ତାର ବାଧାବିଘ୍ନ ନାହିଁ ।
ଶ୍ରାଦ୍ଧ କାଳେ ବିପ୍ର ଯେବେ ଭୁଞ୍ଜିବସି ଥାଇ
ତାଙ୍କ ଆଗେ ଶତ ନାମ ସ୍ତୋତ୍ର ଯେ ପଢ଼ଇ ।
ତାର ପିତୃଗଣେ ତୋଷେ ହୁଅନ୍ତି ତୃପତି
ସେ ପୁଣି ପରମ ଗତି ଅଶ୍ଳେଶେ ଲଭନ୍ତି ।
ଶତନାମ ଜପି ବିପ୍ର ବେଦଜ୍ଞ ହୁଅଇ
କ୍ଷତ୍ରିୟ ପଢ଼ିଲେ ନିଶ୍ଚେ ମିଳେ ତାକୁ ମହୀ ।
ବଇଶ୍ୟ ପଢ଼ିଲେ ଧନୀ ହୁଅଇ ନିଶ୍ଚୟ
ଶୂଦ୍ର ପଢ଼ି ସୁଖୀ ହୁଏ ଜାଣ ଆରେ ପୁଅ ।
ବ୍ରାହ୍ମଣତ୍ୱ ପାଇ ଶୂଦ୍ର ନାମ ପରସାଦେ
ଜନ୍ମାନ୍ତରେ ବେଦବିଦ୍ୟା ଲଭେ ଅପ୍ରମାଦେ ।
ସୁଖ ଦାନୀ ମୋକ୍ଷଦାନୀ ଏ ସ୍ତୋତ୍ର ଅଟଇ
କେଶବ ପ୍ରସାଦେ ସର୍ବ ସିଦ୍ଧି ସେହୁ ପାଇ ।
ନାମ ଜପି ଗୋପୀନାଥ ପାଇଅଛି ସିଦ୍ଧି
ଏଣୁ କୃଷ୍ଣ ଶତନାମ ଜପେ ଦିଅ ବୁଦ୍ଧି ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ଅଶୂନ୍ୟ ଶୟନବ୍ରତ ଓ କୃଷ୍ଣ
ଶତନାମ ବର୍ଣ୍ଣନେ ସପ୍ତାଶୀତିତମୋଽଧ୍ୟାୟଃ ।



## ଅଷ୍ଟାଶୀତି ଅଧ୍ୟାୟ

### ଉଜ୍ଜ୍ୱଳର ପ୍ଲକ୍ଷ ଦ୍ୱୀପେ ଦିବ୍ୟାଦେବୀ ଅଗ୍ରେ ବ୍ରତ ସ୍ତୋତ୍ରାଦି କଥନ

କୁଞ୍ଜଳ କହିଲା ପୁତ୍ର ତୋ ଆଗରେ ମୁହିଁ
ପାପହର ବିଷ୍ଣୁ ବ୍ରତ ଧ୍ୟାନ ସ୍ତୋତ୍ର କହି ।
ଯେବେ ସେହି ଦିବ୍ୟାଦେବୀ ଛାମୁକୁ ତୁ ଯାଇ
କହିପାରୁ ସେ ଯେବେ କି ଏରୂପେ କରଇ ।
ତେବେ ସେ ଦେବଦୁର୍ଲଭ ବଇଷ୍ଣବ ଲୋକ
ପାଇବ ଏଥେ ସନ୍ଦେହ ନାହିଁରେ ଶାବକ ।
ଯେବେମନ ହୁଏ ତୋର ଉଠ ବାବୁବେଗେ
ଅଶୂନ୍ୟ ଶୟନ ବ୍ରତ କହ ତାହା ଆଗେ ।
ସେ ରାଜକନ୍ୟାକୁ ମହାପାପକୁ ଉଦ୍ଧାର
ଏମନ୍ତ କହି ସେ ଶୁକ ହେଲା ନିରୁତ୍ତର ।
ପିତାମାତା ପାଦ ବନ୍ଦି ଉଜ୍ଜ୍ୱଳ ଉଠିଲା
ମେଲାଣି ମାଗି ଉଜ୍ଜ୍ୱଳ ଦ୍ୱୀପେ ଉଡ଼ିଗଲା ।
ସେ ଦ୍ୱୀପ ମଧ୍ୟରେ ଅଛି ଏକଇ ପର୍ବତ
ସବୁ ଧାତୁ ସବୁ ରତ୍ନେ ହୋଇଛି ମଣ୍ଡିତ ।
ଅତି ତୁଙ୍ଗ ଶୃଙ୍ଗ ତାର ମେଘ ଗତି ରୋଧେ
ଶୋଭା ପାଇ ସେ ବହୁତ ଝରଣା ଶବଦେ ।
ଝର ଜଳ ଅତି ସ୍ୱଚ୍ଛ ଅସ୍ୱାଦୁ ଆବର
ଗିରିବର ତଳେ ଅଛି ବହୁ ନଦୀ ଧାର ।
କିନ୍ନର ଗନ୍ଧର୍ବେ ଗୀତ ଗାଆନ୍ତି ସୁସ୍ୱରେ
ଅପସରାରେ ମଣ୍ଡିତ ସେହି ଗରିବରେ ।
ସିଦ୍ଧ ଚାରଣ ମୁନିରେ ଅଳଂକୃତ ପୁଣି
ନାଦ କରୁଛନ୍ତି ନାନା ବିହଙ୍ଗମ ଶ୍ରେଣୀ ।
ଉଡ଼ିଯାଇ ସେ ପର୍ବତେ ମିଳିଲା ଉଜ୍ଜ୍ୱଳ
ଦେଖିଲା ଗୋଟାଏ ସ୍ଥାନ ଅତି ନିରିମଳ ।
ତହିଁ ବସି ରାଜକନ୍ୟା କରଇ ରୋଦନ
କୋକିଳ ସ୍ୱନୁ ଅଧିକ ବାହୁନିବା ସ୍ୱନ ।
ଉଜ୍ଜ୍ୱଳ ତାକୁ କହିଲା କହ ଗୋ କଲ୍ୟାଣି
କିଏ ତୁହି କି ନିମନ୍ତେ କାନ୍ଦୁଅଛୁ ପୁଣି ।
କାହାର ଆଶ୍ରା ନେଇଛୁ ସର୍ବାଙ୍ଗ ସୁନ୍ଦରୀ
କି ଅପ୍ରିୟ କିଏ ତୋର ଅଛଇ ଆଚରି ।
ସତ କହ ମୋ ଆଗରେ ନ ରଖି କପଟ
ବେଗେ ତୁ କହଗୋ ବାଳେ ନ କରିଣ ମଠ ।
ରାଜଜେମା ପ୍ରାୟ ଦିଶୁ ଅପୂର୍ବ ସୁନ୍ଦରୀ
ଅଳପ ବୟସ ତୋର ଅଟୁ ତୁ କୁମାରୀ ।
ଏମନ୍ତ ଶୁଣି ବୋଇଲା ଦିବ୍ୟାଦେବୀ ବେଗେ
ଜାଣିଲି ତୁମ୍ଭେ ମିଳିଲ ଆସି ମୋର ଭାଗ୍ୟେ ।
ବଇଧବ୍ୟ ଦୁଃଖେ ଦୁଃଖୀ ହୋଇ କାନ୍ଦେବସି
ତୁମ୍ଭେ କିଏ କୃପାକରି କହ କାହୁଁ ଆସି ।
ଜାଣିଲି କର୍ମ ବିପାକ ଘଟିଲା ମୋହର
ମୋ ଦୁଃଖେ ଦୁଃଖିତହୋଇଯେହେତୁପଚାର ।
ପକ୍ଷୀ ରୂପ ଧରି କିମ୍ବା କଥାବାର୍ତ୍ତା କର
ଏରୂପେ ଦିବ୍ୟା ଦେବୀର ଶୁଣି ପ୍ରତ୍ୟୁତ୍ତର ।

ଉଜ୍ଜ୍ୱଳ କହିଲା ପୁଣ ତୁଗୋ ରୂପବତୀ
ସତ କରି କହୁଛି ମୁଁ ଅଟେ ପକ୍ଷିଜାତି ।
ତୁମ୍ଭ ଦୁଃଖରେ ଦୁଃଖିତ ହୋଇ ମୁଁ ପଚାରେ
ସିଦ୍ଧ ନୋହେଜ୍ଞାନୀନୋହେ କହେତୋଆଗରେ ।
ପକ୍ଷିଯୋନିରେ ଜନମ ଅଟଇ ମୋହର
ଉଚ୍ଚସ୍ୱରେ କାନ୍ଦିବାର ଦେଖି ମୁହିଁ ତୋର ।
ତେଣୁ ପଚାରୁଛି ତୋତେ ଶୋକର କାରଣ
ତୋ ବାପଘରେ କେଦେଲା କେତୋତେ ଦୂଷଣ ।
ସେ ଘଟଣା ଯାକ ସବୁ କହ ମୋ ଅଗ୍ରତେ
ଦିବ୍ୟା ଦେବୀ ଶୁଣି ସବୁ କହେ ବିଧିମତେ ।
ବିଭାକାଳେ ସ୍ୱାମୀ ଯେହ୍ନେ ପାଇଲା ମରଣ
ସ୍ୱୟମ୍ବରେ ମଲେ ଆସି ଯେହ୍ନେ କ୍ଷତ୍ରିଗଣ ।
ଉଜ୍ଜ୍ୱଳ ଏ ସବୁ ଶୁଣି କହିଲା ସୁନ୍ଦରୀ
ତୋର ଏ ଘଟନା ଯାକ ପୂର୍ବୁ ଜାଣିକରି ।
ମୋ ପିତା ଆଗେ କହିଲିତୋ ଦୁଃଖ ଯେତକ
ସେ ବୋଇଲେ ସେ ତାହାର କର୍ମର ବିପାକ ।
ପୁଣି କୃପାକରି ମୋତେ କହିଲେ ପିଅର
ଆରେ ବାବୁ ବେଗେ ଯାଇଁ କହ ତା ଆଗର ।
ପୂର୍ବଜନ୍ମ ପାପର ଏ ଫଳ ତାର ଜାଣ
ଯେ କରମ ଫଳେ ରାଜାଘରେ ହୋଇ ଜନ୍ମ ।
ତୋର ଶୁଭାଶୁଭ କର୍ମ ଫଳଥିଲା ଯାହା
ଏରୂପେ ସବୁ ବୁଝାଇ କହିଲେକ ତାହା ।
ଏ ତୁମ୍ଭ କର୍ମବିପାକ ରୋଦନ ନ କର
ଦିବ୍ୟାଦେବୀ ଉଜ୍ଜ୍ୱଳର ଶୁଣି ଏହି ଗିର ।
ବିନୟ କରି ବୋଇଲା ଆହେ ପକ୍ଷିରାଜ
ତୁମ୍ଭେ ମହାତମା ମୋତେ କୃପାକର ଆଜ ।
ପାପର ଯେ ପ୍ରାୟଶ୍ଚିତ୍ତ କହିଲେ କରିବି
ଏ ଘୋର ସଙ୍କଟୁ ଯେହ୍ନେ ନିଷ୍କୃତି ପାଇବି ।
ମୋହପାଇଁ ପରିଶ୍ରମ କରି ଯାଅ ପୁଣି
ଫେରି ଆସି କହ ତୁମ୍ଭ ପିତାମୁଖୁଁ ଶୁଣି ।
ଯହିଁରେ ପାପ ଛଡ଼ାଇ ଅରଜିବି ପୁଣ୍ୟ
ପକ୍ଷୀ ହେଲେହେଁ କି ହେବ ତୁମ୍ଭେ ପୁଣ୍ୟଜନ ।
ପରଦୁଃଖେ ଦୁଃଖୀହୋଇ ପିତାକୁ ପଚାରି
ଏତେ ଶ୍ରମ କରି ପୁଣି ଆସି ଏହି ଗିରି ।
ମୋତେ ପଚାରିଣ ବୁଝି ଆଶ୍ୱାସନା କର
ଶୁଝିକି ପାରିବି ଏହି ତୁମ୍ଭ ଉପକାର ।

ଆମ୍ଭଙ୍କୁ ଦେବତା ତନୁଁ ଅଧିକ ମଣଇ
ବାରମ୍ବାର ତୁମ୍ଭ ପାଦତଳେ ମୁଁ ପଡ଼ଇ ।
ଏମନ୍ତ ଶୁଣି ବୋଇଲା ସେ ଉଜ୍ଜ୍ୱଳପକ୍ଷୀ
ତୁମ୍ଭେ ପୂର୍ବପୂଣ୍ୟ ପାପ ଶୁଣି ଅତି ଦୁଃଖୀ ।
ପିତାଙ୍କୁ ପଚାରୁଥିଲି ପ୍ରାୟଶ୍ଚିତ୍ତ ଯାହା
ସେ ମୋତେ କହିଅଛନ୍ତି କହୁଛି ମୁଁ ତାହା ।
ସର୍ବ ପାତକ ଶୋଧକ ପ୍ରାୟଶ୍ଚିତ୍ତ କର
ଲୟ ରଖ ହୃଷୀକେଶ ପଙ୍କଜ ପୟର ।
କୃଷ୍ଣ ରୂପ ଧ୍ୟାନକର ଆଗୋ ଜେମାଦେଈ
ସକଳ ଇନ୍ଦ୍ରି ନିରୋଧି ଜ୍ଞାନେ ମନଦେଇ ।
ଶ୍ରଦ୍ଧା ଭକତିରେ ବସି ଜପ ଶତନାମ
ଯେଉଁ କୃଷ୍ଣ ଶତନାମ ନାଶେ ପାପତମ ।
ସର୍ବଜ୍ଞାନ ପ୍ରକାଶକ ଏକ ବିଷ୍ଣୁ ବ୍ରତ
ତାହା କହିଛନ୍ତି ମୋର ଆଗେ ମୋହ ତାତ ।
ସେ ପୁଣ୍ୟ ବ୍ରତର ନାମ ଅଶୂନ୍ୟ ଶୟନ
ଶ୍ରୀବିଷ୍ଣୁ ବୋଇଲେ ଶୁଣ ହେ ବେନ ରାଜନ ।
ଉଜ୍ଜ୍ୱଳମୁଖୁ ଏ ଜ୍ଞାନ ଦିବ୍ୟାଦେବୀ ପାଇ
ଘୋର ନିର୍ଜନ କାନନେ ନିର୍ଦ୍ୱନ୍ଦରେ ଥାଇ ।
ଜିତାହାରେ ନୀରାହାରେ ତେଜି କାମକ୍ରୋଧ
ବିଶେଷେ ଇନ୍ଦ୍ରିଗଣଙ୍କୁ କରିଣ ନିରୋଧ ।
ଅଶୂନ୍ୟ ଶୟନ ବ୍ରତ କଲା ମହାରାୟ
ଚାରିବରଷେ ପ୍ରସନ୍ନ ହେଲେ ଦେବରାୟ ।
ବର ଦେବାପାଇଁ ଆସିମିଳିଲେ ସେ ସ୍ଥାନେ
ସୁତ କହେ ଶଉନକ ମୁନି ସନ୍ନିଧାନେ ।
ଇନ୍ଦ୍ରନୀଳ ଘନଶ୍ୟାମ ଶଙ୍ଖ ଚକ୍ରଧର
ଗଦା ପଦ୍ମ ବିରାଜଇ କରେ ତାହାଙ୍କର ।
ସର୍ବାଭରଣ ଭୂଷିତ ଦେବ ମହେଶ୍ୱର
ଦିବ୍ୟାଦେବୀ ଦେଖି ସେହି ରୂପ ଅଗୋଚର ।
ପୁଲକିତ କଳେବରେ ଯୋଡ଼ି ବେନିକର
ବୋଇଲା ଆପଣ କିଏ ଦିବ୍ୟରୂପ ଧର ।
କୃପାକରି କହ ମୋତେ ମୁଁ ଅବଳାଜାତି
ଅଥୟ କରୁଛି ମୋତେ ତବ ଦିବ୍ୟଜ୍ୟୋତି ।
ଆହେ ମହାମତି କହ କୃପାକରି ବେଗେ
ତୁମ୍ଭ ଦର୍ଶନ ପାଇଲି ମୁହିଁ ମୋର ଭାଗ୍ୟେ ।
ତେଜଇଙ୍ଗିତରୁ ମୋର ହୁଏ ଏହି ଜ୍ଞାନ
ଦେବଙ୍କ ଉପରେ ପ୍ରାୟ ହୋଇବ ରାଜନ ।

ତୁମ୍ଭେ କି ହୋଇବ ପ୍ରଭୁ ଜଗତର ନାଥ
ଜ୍ଞାନହୀନ ନାରୀ ମୋର ନାହିଁ ପୁଣି ନାଥ ।
ତୁମ୍ଭ ରୂପ ନାମ କିଛି ଜାଣି ପାରୁନାହିଁ
କିବା ବିଷ୍ଣୁ କିବା ରୁଦ୍ର କିବା ବେଦସାଇଁ ।
ଏହା କହି ଦିବ୍ୟାଦେବୀ ଭୂମିରେ ଗଡ଼ିଲା
ଦଣ୍ଡବତ କରି ପାଦେ ଲୟ ଲଗାଇଲା ।
ଶରଣ ଶପଥ ନାଥ ଜଗତର ପତି
ରାଜନନ୍ଦିନୀକି ଚାହିଁ କହିଲେ ଶ୍ରୀପତି ।
ବ୍ରହ୍ମା ବିଷ୍ଣୁ ଶିବ ଏହି ଦେବତା ଯେ ତିନି
ଭିନ୍ନା ଭିନ୍ନ ନାହିଁ କିଛି ରେ ରାଜନନ୍ଦିନୀ ।
ଯେହୁ ବ୍ରହ୍ମା ସେହୁ ବିଷ୍ଣୁ ସେ ଦେବଶଙ୍କର
ଜଣକୁ ପୂଜିଲେ ପୂଜା ପାନ୍ତି ତିନିସୁର ।
ତିନିରୂପଧାରୀ ଆମ୍ଭେ ନିତ୍ୟ ସନାତନ
ଆମ୍ଭ ମଧ୍ୟେ ଭିନ୍ନ ଭିନ୍ନ ନାହିଁ ଏବେ ଜାଣ ।
ବ୍ରହ୍ମା ଶଙ୍କର ପୂଜିଲେ ପୂଜିଲା ସେ ମୋତେ
ମୋତେ ଯେପୂଜେସେ ବ୍ରହ୍ମା ଶିବପୂଜେନିତ୍ୟେ ।
ମୁହିଁ ଦେବ ହୃଷୀକେଶ ଜାଣରେ ସୁନ୍ଦରୀ
ତୋ ପାଖକୁ ଆସିଅଛି ଜାଣ କୃପାକରି ।
ନିୟମେ ରହି ନିଷ୍ପାପୀ ହେବାରୁ ଶୋଭନେ
ପୁଣ୍ୟ ସ୍ତବ ବ୍ରତ କରିବାରୁ ବରାନନେ ।
ବରଦେବାପାଇଁ ଏଥେ ହେଲି ଉପଗତ
ଦିବ୍ୟାଦେବୀ ବୋଲଇ ଯେ ଯୋଡ଼ିବେନିହସ୍ତ ।
ଅହେ କ୍ଳେଶ ଅପହାରି ହୃଷୀକେଶ ହରି
ଜୟ ଜୟ କୃଷ୍ଣ ବିଷ୍ଣୁ ଜୟ ମଧୁହାରୀ ।
ତୁମ୍ଭ ପାଦପଦ୍ମ ତଳେ ନମସ୍ତେ ନମସ୍ତେ
ଶରଣ ପଶିଲି ନାଥ ତୋର ପାଦଗତେ ।
ଆହେ ସୁରେଶ୍ୱର ମୋତେ କରନ୍ତୁ ଉଦ୍ଧାର
ଯେବେକି ପ୍ରସନ୍ନ ହେଲ ଦେବ ଚକ୍ରଧର ।
ବର ଦେବାପାଇଁ ଯେବେ ଇଚ୍ଛାଅଛି ମୋତେ
ଏହି ବରଦେବା ହେଉ ମାଗୁଛି ମୁଁ ତୋତେ ।
ଦା ପାଦଯୁଗଳେ ଥାଉ ଭକତି ମୋହର
ଆହେ ଜଗନ୍ନାଥ ମୋତେ ଦିଅ ଏହି ବର ।
ନିରାମୟ ମୋକ୍ଷପଥ ଦିଅନ୍ତୁ ଦେଖାଇ
ଅହେ ବଇକୁଣ୍ଠ ନାଥ ଜଗତ ଗୋସାଇଁ ।
ମୋଠାରେ ସନ୍ତୋଷଯେବେ ହେଲ ଜନାର୍ଦ୍ଦନ
ତୁମ୍ଭର ଦାସତ୍ୱ ମୋତେ କରିବା ପ୍ରଦାନ ।
ଶ୍ରୀବିଷ୍ଣୁ ବୋଇଲେ ହେଉହେଉ ମହାଭାଗେ
ତୋ ସବୁ ପାପଗଲାଣି ଆଷୁକିନା ବେଗେ ।
ଯୋଗିଜନଙ୍କ ଦୁର୍ଲ୍ଲଭ ବଇଷ୍ଣବ ଲୋକ
ଯାକୁ ସରିନୁହେଁ ବ୍ରହ୍ମାବିଷ୍ଣୁ ରୁଦ୍ରଲୋକ ।
ସେ ଲୋକ ମୁଁତୋତେଦେଲି ଆସବେଗହୋଇ
ମୋର ପ୍ରସାଦେ ନିଶ୍ଚିନ୍ତେ ରହ ତୁହି ଯାଇଁ ।
ମାଧବ ଏ କଥା କହି ହୋଇଲେ ଅନ୍ତର
ଦିବ୍ୟାଦେବୀ ଦିବ୍ୟମୂର୍ତ୍ତି ଅଇଲା ସତ୍ୱର ।
ସୂର୍ଯ୍ୟଜ୍ୟୋତି ପ୍ରାୟ ଜ୍ୟୋତି ବିରାଜିଲା ତାର
ଦିବ୍ୟ ଆଭରଣ ଘେନି ପାଇଲା ସୁନ୍ଦର ।
ଦିବ୍ୟ ମାଳାରେ ମଣ୍ଡିତ ହୋଇଲା ସୁନ୍ଦରୀ
ଦିବ୍ୟହାର ଲମ୍ବାଇଲା ତା ଉର ଉପରି ।
ଚାହୁଁ ଚାହୁଁ ଚଳିଗଲା ବଇଷ୍ଣବ ଲୋକେ
ଉଜ୍ଜ୍ୱଳ ପକ୍ଷୀ ଯେ ଥିଲା ପର୍ବତର ଶିଖେ ।
ଉଡ଼ି ଯାଇ ପିତା ଆଗେ କହିଲା ସକଳ
ଗୋପୀନାଥକୁ ଉଦ୍ଧାର ଭକତ ବତ୍ସଳ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ଦିବ୍ୟାଦେବୀ ଚରିତେ
ଅଷ୍ଟାଶୀତିତମୋଽଧ୍ୟାୟଃ ।



## ଉନନବତି ଅଧ୍ୟାୟ

### ଦ୍ୱିତୀୟ ପୁତ୍ର ପ୍ରତି କୁଞ୍ଜଳର ପ୍ରଶ୍ନ

ଶ୍ରୀବିଷ୍ଣୁ କହନ୍ତି ବେନ ନୃପତି ଶୁଣନ୍ତି
କୁଞ୍ଜଳ ଆରପୁତ୍ରକୁ ବସାଇଣ କତି ।
ତୁକି ଦେଖିଅଛୁ ତାହା କହରେ କୁମର
ଶୁଣିବାକୁ ଇଚ୍ଛା ପୁଣି ବଳିଛି ମୋହର ।
ପୁତ୍ରକୁ ଏରୂପେ କହି ରହିଲା ମଉନେ
ବିନୟେ ପୁତ୍ର କହଇ ପିତା ସନ୍ନିଧାନେ ।
ତୁମ୍ଭପାଇଁ ମୋହପାଇଁ ନିତି ଆହେ ତାତ
ଆହାର ନିମନ୍ତେ ଯାଏ ହିମ ପରବତ ।
ଦେବବୃନ୍ଦେ ବିରାଜିତ ସେ ପର୍ବତ ରାଜ
ତାହା ଶିଖରେ ଅଛନ୍ତି ସିଦ୍ଧ ଜ୍ଞାନୀ ଦ୍ୱିଜ ।
ଯେଉଁ ଯେଉଁ କଉତୁକ ଦେଖିଲି ମୁଁ ତହିଁ
ତାହା କାହିଁ ଦେଖିନାହିଁ ଶୁଣିନାହିଁ କାହିଁ ।

ହିମାଳୟର ଗୋଟିଏ ପ୍ରଦେଶ ଅଛଇ
ଋଷିଗଣେ ଅପସରାଗଣେ ଶୋଭା ପାଇ ।
ଶୋଭା କଉତୁକ ତହିଁ ଅଛଇ ବହୁତ
ମାଙ୍ଗଲ୍ୟ ମଙ୍ଗଳମୟ ସ୍ଥାନରେ ଶୋଭିତ ।
ବହୁତ ଯେ ପୁଣ୍ୟସ୍ଥାନ ଅଛଇ ଆବର
ନାନା କଉତୁକ ବନ ମନ ପ୍ରୀତିକାର ।
ମାନସରୋବର ଅଛି ସେହି ପ୍ରଦେଶରେ
ଦେଖିଲି ଏକ ଅପୂର୍ବ ତାର ସମୀପରେ ।
ହଂସପଲ ଘେନି ଏକ ହଂସ ଯେ ଅଇଲା
କେତେ ଗୋଟି କଳାହଂସ ତାମଧ୍ୟରେ ଥିଲା ।
କେତେ ଧଳାହଂସ ଥିଲେ ତା ଭିତରେତାତ
ସେ ଧଳା ହଂସ ଲକ୍ଷଣ ଅତି ଆଚମ୍ବିତ ।
ଚଞ୍ଚୁ ଚରଣ ତାଙ୍କର କାଳିଆ ଦିଶଇ
କେତେ ଗୋଟି ନୀଳ ହଂସ ତା ମଧ୍ୟେ ଅଛଇ ।
ସର୍ବାଙ୍ଗ ଧବଳ ହଂସ ଅଛନ୍ତି ଯେ କେତେ
ଭୟଙ୍କରୀ ଚାରୀ ନାରୀ ତାହାଙ୍କ ସହିତେ ।
ରଉଦ୍ର ଆକାର ଦ୍ରଂଷ୍ଟା କରାଳ ତାଙ୍କର
କ୍ରୂର ସ୍ୱଭାବ ତାଙ୍କର କେଶ ଫରହର ।
ହଂସଙ୍କ ପଛେ ଆସିଲେ ସେହି ଚାରି ନାରୀ
ମାନସରୋବରରୁ ସେ ଅଇଲେ ବାହାରି ।
ମାନୋସରୋବରେ ସ୍ନାନ କଲେ କୃଷ୍ଣ ହଂସ
ତହିଁରେ ସ୍ନାନ ନ କରି ଆଉ ସବୁ ହଂସ ।
ସରୋବର ଚାରିପାଖେ କଲେକ ଭ୍ରମଣ
ଦାରୁଣ ଅଟ୍ଟାଟ୍ଟହାସେ ହସି ନାରୀଗଣ ।
ଭ୍ରମନ୍ତେ ଏକାଳେ ମାନ ସରୋବରୁ ଆନ
ମହାକାୟ ହଂସ ଏକ କଲା ଆଗମନ ।
ତହୁଁ ତିନିଗୋଟା ହଂସ ଅଇଲେ ବାହାରି
ଆପଣା ଭିତରେ ସେହି ତିନି କଳି କରି ।
ଗଗନ ପଥରେ ମୋଡ଼େ ଲଙ୍ଘି ଚାଲିଗଲେ
ମହାଭୟଙ୍କରୀ ସେହି ଚାରି ନାରୀ ଥିଲେ ।
ଚାରି ଦିଗ ଘେରି ତାଙ୍କୁ ରହିଲେ ସେ ଚାରି
ଦାରୁଣ ଦୁଃଖରେ ହଂସଗଣେ ତହୁଁ ଫେରି ।
ବିନ୍ଧ୍ୟଗିରି ଶିଖେ ତରୁମୂଳେ ଯାଇ ବସି
ଦେଖିଲେ ପକ୍ଷୀଏ ତାଙ୍କୁ ଚାରିଦିଗୁଁ ଆସି ।
ଏ ସମୟେ ଏକ ବ୍ୟାଧ ତହିଁକି ଆସିଲା
ଧନୁ ଧରି ବାଣେ ମୃଗ ବହୁତ ମାଇଲା ।
ସୁଖେ ବସି ଶିଳାତଳେ ଶ୍ରମ ନିବାରଇ
ଅନ୍ନ ଜଳ ଘେନିଆସେ ତା ନାରୀ ତାପାଇଁ ।
ଆସି ଦେଖିଲା ତା ସ୍ୱାମୀ ଅନ୍ୟ ରୂପ ଦିଶେ
ରାଜ ଲକ୍ଷଣ ବହୁତ ତା ଦେହେ ପ୍ରକାଶେ ।
ସୂର୍ଯ୍ୟତେଜ ପ୍ରାୟ ଦିବ୍ୟ ତେଜ ବିରାଜଇ
ବ୍ୟାଧ ରମଣୀ ତା ଦେଖି ମନେ ବିଚାରଇ ।
ଏ ନୁହନ୍ତି ମୋର ସ୍ୱାମୀ କେଉଁ ନୃପବର
ଏମନ୍ତ ବିଚାରି ତହୁଁ ହୁଅନ୍ତେ ଅନ୍ତର ।
ବ୍ୟାଧ ବୋଇଲାଗୋ ପ୍ରିୟେ ଆସଆସ ବେଗେ
କିପାଇଁ ଫେରି ଯାଉଛ କହ ମୋର ଆଗେ ।
କ୍ଷୁଧା ଅନଳେ ଉଦର ଜଳୁଛି ମୋହର
ମୁଁ ଚିହ୍ନୁଛି ତୁମ୍ଭେ ମୋତେ ଚିହ୍ନି କି ନପାର ।
ବ୍ୟାଧକଥା ଶୁଣି ବ୍ୟାଧ ରମଣୀ ତୁରିତେ
ସ୍ୱାମୀର ପାଖକୁ ଫେରି ଆସି ଆଛମ୍ବିତେ ।
ବିଚାରିଲା କିଏ ଏହି ତେଜୋବନ୍ତ ଅତି
ଦେବତା ପ୍ରାୟ ଦିଶଇ ଏହାର ମୂରତି ।
ମୋତେ କିପାଇଁ ଡାକୁଛି ଏମନ୍ତ ବିଚାରି
ବୋଇଲା ହେ ବୀର ତୁମ୍ଭେ ଏ ଶିଳା ଉପରି ।
କି କରୁଛ କିଏ ତୁମ୍ଭେ ଦେବତା ପରାୟ
ଦିଶୁଅଛ ଦିଅ ମୋତେ ତୁମ୍ଭ ପରିଚୟ ।
ସୁତ କହନ୍ତି ଶୁଣନ୍ତି ମୁନି ଶଉନକ
ରମଣୀର ମୁଖୁଁ ବ୍ୟାଧ ଶୁଣି ଏହି ବାକ୍ୟ ।
ଡାକି କହିଲା ହେ କାନ୍ତେ ମୁଁ ତୋହର ପତି
ତୁ ମୋର ଭାରିଯା ଚିହ୍ନି ନ ପାରୁ କେମିତି ।
ଡର ତୁ କିପାଇଁ ମୋତେ ନପାରୁଛୁ ଜାଣି
ଚାହିଁ ବସିଛି ମୁଁ ଆଣିଦେବୁ ଅନ୍ନପାଣି ।
କ୍ଷୁଧାରେ ଦେଖ ଜଳୁଛି ଉଦର ମୋହର
ବ୍ୟାଧପତ୍ନୀ ବୋଲେ ମୋର କାନ୍ତଯେବର୍ବର ।
କୃଷ୍ଣବର୍ଣ୍ଣ ରକ୍ତଚକ୍ଷୁ କଞ୍ଚୁକ ତା କଳା
ଦିଶେ ମହାଭୟଙ୍କର ତାର ବେନିଡ଼ୋଳା ।
ଜୀବ ଜନ୍ତୁ ଦେଖି ଦୂରୁ ପଳାନ୍ତି ଯେ ଦୂରେ
ତୁମ୍ଭେ ଦିବ୍ୟ ଦେହଧାରୀ କହ କି ପ୍ରକାରେ ।
ପ୍ରିୟା ବୋଲି କହ ମୋତେ ଏକି ଚମତ୍କାର
ଆଗ ଏ ସଂଶୟ ମୋର ଦୂର କର ବୀର ।
କୁଳ ଗୋତ୍ର ନାମ ଗ୍ରାମ ଏ ସକଳ କହି
କହ ପୁଅ ଝିଅ ଚିହ୍ନ ବର୍ଣ୍ଣ କ୍ରୀଡ଼ାଭୂଇଁ ।

ପ୍ରିୟାର ମୁଖୁଁ ଏମନ୍ତ ଶୁଣି ବ୍ୟାଧ ହସି
କହିଲା ସବୁ ବୁଝାଇ ଭାରିଯା ତା ବସି ।
ପଚାରିଲା କହ ନାଥ ଏ କି ଆଚମ୍ବିତ
କିରୂପେ ହେଲା ତୁମ୍ଭର କଳେବର ଶ୍ୱେତ ।
କଞ୍ଚୁକ ଶ୍ୱେତ କେମନ୍ତେ ହୋଇଲା ତୁମ୍ଭର
ରାଜା ପ୍ରାୟ ତେଜୋବନ୍ତ ଦିଶୁଛ ଆବର ।
ଏ ଅତି ଆଶ୍ଚର୍ଯ୍ୟ ଜାଣ ଏ ତୁମ୍ଭ ଘଟଣା
ଏଣୁ ନାଥ ତୁମ୍ଭଙ୍କୁ ମୁଁ ଦେଖି ହୋଏ ବଣା ।
ମୃଗଘାତୀ ବ୍ୟାଧ ଶୁଣି ଭାରିଯାର କଥା
ବୋଇଲା କହୁଛି ଶୁଣ ମନ ଦେଇ କାନ୍ତା ।
ନର୍ମଦା ଉତ୍ତର କୂଳେ ନର୍ମଦା ସଙ୍ଗମେ
ବହୁତ ମୃଗ ମାଇଲି ଘୋର ପରିଶ୍ରମେ ।
ଖରାରେ ଆକୁଳ ହେଲା ଜୀବନ ମୋହର
ଝାଳରେ ବୁଡ଼ିଲା ପ୍ରିୟେ ଏ ମୋର ଶରୀର ।
ସଙ୍ଗମ ସ୍ଥାନକୁ ଯାଇ ବୁଡ଼ିଲି ମୁଁ ଜଳେ
ଶ୍ରମ ନିବାରି ଆସି ମୁଁ ଉଠିଲଇଁ କୂଳେ ।
ଜଳପାନ କରି ତୃଷା ନିବାରିଲି ମୋର
ତକ୍ଷଣେ ଧଳା ଦିଶିଲା ହୋଇଲି ସୁନ୍ଦର ।
ଲୁଗା ଧଳା ହୋଇଗଲା ଉଜ୍ଜ୍ୱଳ ମୋ କାନ୍ତି
ବିରାଜିଲା ରାଜ ଚିହ୍ନମାନ ପ୍ରିୟବତି ।
କଞ୍ଚୁକ ଶୁଭ୍ର ଦିଶିଲା ତେଣୁ ଗୋ ମୋହର
ଶୁଣିସାରି ବ୍ୟାଧପତ୍ନୀ କରଇ ବିଚାର ।
ନିଶ୍ଚୟ ଏ ମୋର ପତି ସ୍ନାନ ପୁଣ୍ୟବଳେ
ସର୍ବାଙ୍ଗ ଯାକ ଏହାର ସବୁ ଯେ ବଦଳେ ।
ଏମନ୍ତ ଭାଳି ସ୍ୱାମିକି କହିଲା ସେ ପୁଣି
ନର୍ମଦା ସଙ୍ଗମ ଆଗ ଦେଖା ମୋତେ ସ୍ୱାମୀ ।
ପଛେ ଯାଇ ଅନ୍ନ ପାନ ଦେବଇଁ ତୁମ୍ଭଙ୍କୁ
ତକ୍ଷଣେ ବ୍ୟାଧ ସଙ୍ଗତେ ଘେନି ଭାରିଯାକୁ ।
ସ୍ନେହଭରେ ପାପହର ସଙ୍ଗମକୁ ଯାଇ
ପକ୍ଷୀ ଉଡ଼ିଗଲେ ବ୍ୟାଧ ପତ୍ନୀ ସଙ୍ଗପାଇ ।
ରେବା ସଙ୍ଗମେ ମିଳିଲେ ସବୁ ପକ୍ଷିଗଣ
ମୁଁ ଯାଇଥିଲି ହେ ତାତ ତାଙ୍କ ସଙ୍ଗତେଣ ।
ସାକ୍ଷାତେ ଦେଖିଲି ବ୍ୟାଧ ଭାରିଯାକୁ ନେଲା
ସଙ୍ଗମ ସ୍ଥାନ ଦେଖାଇ କୂଳେ ଉଭା ହେଲା ।
ଭାରିଯା ପଶିଲା ଜଳେ ବୁଡ଼ି କଲା ସ୍ନାନ
କୂଳେ ମିଳନ୍ତେ ସୁନ୍ଦର ଦିଶିଲା ବଦନ ।
ଦେବୀ ପ୍ରାୟ ଦେଖାଗଲା ସେ ବ୍ୟାଧରମଣୀ
ଦୁହେଁ ଜଳେପଶି ସ୍ନାନକଲେ ତହିଁ ପୁଣି ।
ଦିବ୍ୟଦେହ ଦିବ୍ୟକାନ୍ତି ପାଇଲେ ତକ୍ଷଣେ
ଦିବ୍ୟବସ୍ତ୍ର ଦିବ୍ୟମାଲ୍ୟ ଦିବ୍ୟ ଆଭରଣେ ।
ଦିବ୍ୟଗନ୍ଧ ଲିପିହୋଇ ବଇଷ୍ଣବ ଯାନେ
ପୂଜିଲେ ମୁନି ଗନ୍ଧର୍ବେ ଆସି ସେହିସ୍ଥାନେ ।
ବଇଷ୍ଣବ ଲୋକେ ଗଲେ ସେ ଦୁଇ ପରାଣୀ
ସ୍ୱର୍ଗ ମାର୍ଗରେ ଯିବାର ଦେଖିଲି ମୁଁ ପୁଣି ।
ବଇଷ୍ଣବ ମେଳେ ପୂଜା ପାଇଲେ ସେ ଦୁଇ
ସେ ପରମ ତୀର୍ଥରାଜ ଏରୂପେ ଅଟଇ ।
ଦେଖି ତାହା ପକ୍ଷିଗଣ ଆନନ୍ଦ ବିହ୍ୱଳେ
ଗଗନରେ ଉଡ଼ି ଉଡ଼ି ଗଲେ କୋଳାହଳେ ।
କୃଷ୍ଣବର୍ଣ୍ଣ ହଂସ ଚାରି ଚହିଁ କରି ସ୍ନାନ
ସାକ୍ଷାତେ ହେଲେ ତକ୍ଷଣେ ତାତ ଶୁକ୍ଳବର୍ଣ୍ଣ ।
ତହୁଁ ରେବା ସଙ୍ଗମରେ ସ୍ନାନକଲେ ଯାଇ
ବାହାରିଲେ ତହୁଁ ପୁଣି ସେହି ଜଳପିଇ ।
ସେକାଳେ ସେ କୃଷ୍ଣବର୍ଣ୍ଣା ଚାରିଗୋଟି ନାରୀ
ଆର୍ତ୍ତନାଦେ ହାହାକାରେ ଗଲେ ଯମପୁରୀ ।
ଉଡ଼ିଯାଇ ହଂସପଲ ଗଲେ ନିଜସ୍ଥାନେ
ଏ ଘଟଣାମାନ ଦେଖି ଭାଳି ମନେ ମନେ ।
ତୁମ୍ଭଙ୍କୁ କହିବା ପାଇଁ ଅଇଲି ହେ ତାତ
ଏ କଥାମାନ ଲାଗିଲା ବଡ଼ ଆଚମ୍ବିତ ।
କୃଷ୍ଣପକ୍ଷ ହଂସ କିଏ କିଏ ନାରୀଗଣ
କୃପାକରି ମୋ ସଂଶୟ କର ନିବାରଣ ।
ମାନସରୋବରୁ ଯେତେ ଅଇଲେ ବାହାରି
ସେମାନେ କିଏ ତା କହ ମୋଆଗେବିସ୍ତାରି ।
କିରୂପେ ସେ ହଂସ ସବୁହୋଇଥିଲେ କଳା
କହ କାହିଁକି ସେ ପୁଣି ହୋଇଗଲେ ଧଳା ।
ଚାହୁଁ ଚାହୁଁ ମଲେ କିମ୍ପା ସେହି ନରୀଗଣ
ଏ ସନ୍ଦେହ ତାତ ମୋର ଅଟଇ ଦାରୁଣ ।
ସୁଜ୍ଞାନୀ ଚତୁର ତୁମ୍ଭେ ବେଗେ ପକାଛେଦି
ଦୀନ ଗୋପୀନାଥ ସଦା ହରିପାଦ ବନ୍ଦି ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ କୁଞ୍ଜଳର ଦ୍ୱିତୀୟପୁତ୍ର ପ୍ରତି ପ୍ରଶ୍ନ
ଚରିତେ ଊନନବତିତମୋଽଧ୍ୟାୟଃ ।

# ନବତିତମ ଅଧ୍ୟାୟ

## ତୀର୍ଥବର୍ଣ୍ଣନ

ସୁତମୁନି କହନ୍ତି ହେ ଶୁଣ ଶଉନକ
ପୁତ୍ରର ମୁଖୁ କୁଞ୍ଚଳ ଶୁଣି ଏହି ବାକ୍ୟ ।
ବୋଇଲା ରେ ବାବୁ ତୁହି ଶୁଣ ସାବଧାନେ
ଏମନ୍ତ କଥା କହିବି ତୋର ସନ୍ନିଧାନେ ।
ଯହିଁରେ କି ପାପ ଯିବ ସନ୍ଦେହହିଁ ଯିବ
ନାରଦ ମୁଖରୁ ଶୁଣିଥିଲେ ଯେ ବାସବ ।
ଏ ସମ୍ୱାଦଗୋଟା ଇନ୍ଦ୍ରଲୋକେ ଘଟିଥିଲା
ଦେବଙ୍କର କଉତୁକ ଜାତ କରାଇଲା ।
ସଭାକରି ବସିଥିଲେ ଦେବ ପୁରନ୍ଦର
ତେତିଶକୋଟି ଦେବତା ଥିଲେ ଯେ ସଭାର ।
ନାରଦ ଅଇଲେ ଦିନେ ଇନ୍ଦ୍ର ଦରଶନେ
ବେଗ ଗତିରେ ମିଳିଲେ ବାସବ ଭୁବନେ ।
ମହା ବୁଦ୍ଧିମନ୍ତ ସେହି ସହସ୍ରଲୋଚନ
ସୂର୍ଯ୍ୟପ୍ରାୟ ତେଜୋବନ୍ତ ଦେଖି ତପୋଧନ ।
ମୁନିବର ନାରଦଙ୍କୁ ଆନନ୍ଦ ହୋଇଲେ
ବିନୟ ଭକ୍ତିରେ ପାଦ୍ୟ ଅର୍ଘ୍ୟତାଙ୍କୁ ଦେଲେ ।
କରଯୋଡ଼ି ପ୍ରଣମିଲେ ବସାଇ ଆସନେ
ବିନୟରେ ବିଜେକରି ମୁନି ସନ୍ନିଧାନେ ।
ପଚାରିଲେ ଆଜି ତୁମ୍ଭେ କାହୁଁ ଯେ ଅଇଲ
ଆସିବା କାରଣ କହ କେଉଁଠାରେ ଥିଲ ।
ଦେବରାଜ ପଚାରନ୍ତେ ନାରଦ କହିଲେ
ମନଦେଇ ଶୁଣ ତାହା କହୁଅଛି ଭଲେ ।
ପୁଣ୍ୟକ୍ଷେତ୍ର ପୁଣ୍ୟସ୍ଥାନ ପୁଣ୍ୟତୀର୍ଥ ଯେତେ
ମହୀମଣ୍ଡଳରେ ଅଛି ସବୁ ଶ୍ରଦ୍ଧା ଚିତ୍ତେ ।
ସ୍ନାନସାରି ପୂଜାକରି ଦେବ ପିତୃଗଣ
ସକଳ ଦେଖି ଅଇଲି ଏ ତୁମ୍ଭ ଭୁବନ ।
ତୁମ୍ଭଙ୍କୁ ଦର୍ଶନ କରି ଯିବି ଏହିକ୍ଷଣି
ବଜ୍ରପାଣି ବୋଇଲେ ହେ ଶୁଣ ମହାମୁନି ।
ସବୁ ତୀର୍ଥ ସବୁକ୍ଷେତ୍ର ଭ୍ରମିଛ ଆପଣ
ସବୁରି ମହିମା ତୁମ୍ଭେ ଜାଣ ତପୋଧନ ।
କେଉଁ ତୀର୍ଥ କଲେ ବ୍ରହ୍ମହତ୍ୟା ପାପଯାଇ
ସୁନାଚୋରୀ ଗୋରୁହତ୍ୟା କରି ସୁରାପିଇ ।
ଏ ଘୋର ପାପୁଁ ମୁକତହୋଇବେକେମନ୍ତେ
ପ୍ରଭୁଦ୍ରୋହ ନାରୀହତ୍ୟା ପାପ ଆଦି ଯେତେ ।
ଛାଡ଼ି ପଳାଇବ କଲେ କେଉଁ ତୀର୍ଥେ ସ୍ନାନ
ବିଚାରି କହିବା ହେଉ ମୁନି ତପୋଧନ ।
ନାରଦ ବୋଇଲେ ଅଛି ଗୟା ଆଦି ତୀର୍ଥ
ଗୁରୁଲଘୁ କହିବାରେ ନୁହେଁ ମୁଁ ସମର୍ଥ ।
ପାପ ନାଶିବା ଶକତି ଅଛଇ ସବୁରି
ମୋର ଜାଣିବାରେ ପୁଣ୍ୟତୀର୍ଥ ବଜ୍ରଧାରୀ ।
ସକଳ ତୀର୍ଥ ସମାନ ଏଣୁ ପୁରନ୍ଦର
କାହାକୁ ସାନ କହିବା କାହାକୁ ବା ବଡ଼ ।
ସବୁତୀର୍ଥେ ସବୁପାପ ଛାଡ଼ିଣ ପଳାଇ
ବିଶେଷତ୍ୱ କିଛି ମୁହିଁ ଜାଣି ନ ପାରଇ ।
ଗତିଦାତା ଗୁଣେ ତୀର୍ଥେ ବିଶ୍ୱାସହିଁ ମୂଳ
ଏରୂପେ ନାରଦ ମୁଖୁଁ ଶୁଣି ଆଖଣ୍ଡଳ ।
ମହୀତଳେ ଥିବା ସବୁ ତୀର୍ଥକୁ ଡକାଇ
ଦିବ୍ୟମୂର୍ତ୍ତି ଧରି ତୀର୍ଥେ ସ୍ୱର୍ଗପୁରେ ଯାଇ ।
ଦିବ୍ୟବସ୍ତ୍ର ଆଭରଣେ ହୋଇଣ ମଣ୍ଡଣି
ଇନ୍ଦ୍ର ଛାମୁରେ ମିଳିଲେ ଯୋଡ଼ି ବେନିପାଣି ।
କେହି ବିଜେ ସ୍ତ୍ରୀରୀରୂପେ କେ ପୁରୁଷ ରୂପେ
ବିଜେକଲେ ସ୍ୱର୍ଗପୁରେ ଜାଣ ଆପେ ଆପେ ।
ସୁବର୍ଣ୍ଣ ବର୍ଣ୍ଣ କାହାର ବର୍ଣ୍ଣ ମୁକ୍ତାପରି
ତପତ କାଞ୍ଚନ ପ୍ରାୟ ବର୍ଣ୍ଣ ବା କାହାରି ।
କେହିବା ଅରୁଣ ବର୍ଣ୍ଣ କେହି ଶୁକ୍ଳବର୍ଣ୍ଣ
କେହି ପୀତବର୍ଣ୍ଣ କେହି ଇନ୍ଦ୍ର ନୀଳବର୍ଣ୍ଣ ।
ଏରୂପେ ସଭା ମଧ୍ୟରେ ପାଇଲେ ସେ ଶୋଭା
ତାହାଙ୍କ ଯୋଗୁଁ ବଢ଼ିଲା ଇନ୍ଦ୍ରସଭା ପ୍ରଭା ।
ଶ୍ରୀବିଷ୍ଣୁ କହନ୍ତି ଶୁଣ ବେନ ନୃପବର
କେଉଁ ତୀର୍ଥ ଜ୍ୟୋତିସୂର୍ଯ୍ୟ ଜ୍ୟୋତି ସରକାର ।
ପଦ୍ମତୁଲ୍ୟ କାହାଜ୍ୟୋତି କେ ତଡ଼ିତ ପ୍ରାୟେ
କେହିତୀର୍ଥ ଅଗ୍ନିତୁଲ୍ୟ ତେଜେ ଶୋଭାପାଏ ।
ସବୁରି ଦେହରେ ହାର କଙ୍କଣ କେୟୁର
ମାଲ୍ୟ ଚନ୍ଦନେ ମଣ୍ଡିତ ସବୁରି ଶରୀର ।
କାହାରି କାହାରି କରେ କମଣ୍ଡଳୁ ଶୋହେ
ତୀର୍ଥଙ୍କର ନାମ ଶୁଣ ତୁହୋ ମହାରାୟେ ।
ଚନ୍ଦ୍ରଭାଗା ସରସ୍ୱତୀ ନର୍ମଦା ଦେବିକା
ପ୍ରସିଦ୍ଧା କୁଂଜା ମଞ୍ଜୁଳା ଗଙ୍ଗା ଯେ ବିମ୍ବିକା ।

ଭାନୁମତୀ ସୁଘର୍ଘରା କାବେରୀ କୃଷ୍ଣାଳା
ସିନ୍ଧୁ ସୌବୀରା କୁମୁଦା ସୁହଂସୀ କପିଳା ।
କଉଶିକୀ ହଂସପାଦା ହଂସବେଗା ପୁଣ୍ୟା
ବେଦନଦୀ ମହେଶ୍ୱରୀ ବିଖ୍ୟାତା ସୁପୁଣ୍ୟା ।
କଉଶିକୀ ମନୋରଥା ଶୋଣା ଚର୍ମଣ୍ୱତୀ
ଭଦ୍ରବେଣୀ ସୁପଦ୍ମିନୀ ବେଣା ଭୋଗବତୀ ।
ସ୍ୱାରୁଣା ନାହଳୀ ହେମା ସ୍ୱାହା ଯେ କପିଳା
ସୁମରୀଚା ମନୋରଥା ହୁତାଶନୀ କାଳା ।
ଭୀମବାହିନୀ ଗମ୍ଭୀରା ପୁଲିନ୍ଦିକା କ୍ୱାଳା
ବେଦ ସଂକ୍ରମା ଚନ୍ଦ୍ରିକା ସୁଭଦ୍ରା ସୁକଳା ।
ବେଦଦ୍ରୀଚୀ ଲକ୍ଷହୋମା ସ୍ୱଧା ଆଦି ଯେତେ
ମହାପୁଣ୍ୟା ବାରଣସୀ ପୁଷ୍କର ସହିତେ ।
ଅର୍ଘ୍ୟ ଦୀର୍ଘ ମନୋରଥ ନୈମିଷ ଜୟନ୍ତୀ
ମାଳବାହକ ମାଥୁର ପ୍ରଭାସ ଅବନ୍ତୀ ।
କଳିଞ୍ଜର ବ୍ରହ୍ମକ୍ଷେତ୍ର ମାୟା ମହେଶ୍ୱର
ନଇମିଷ ମହାରତ୍ନ କାନ୍ତି ବାଳେଶ୍ୱର ।
ଏମନ୍ତେ ଏ ଆଠକୋଟି ତୀର୍ଥବର ଜାଣ
ଗୋଦାବରୀ ଆଦି ଶତକୋଟି ନଦୀଗଣ ।
ଏହା ଛଡ଼ା ଦ୍ୱୀପ ତୀର୍ଥ ଅଛି ପୁଣି ଯେତେ
ଇନ୍ଦ୍ର ଛାମୁରେ ମିଳିଲେ ଆସିଣ ସମସ୍ତେ ।
ଶିର ନୁଆଇଁ ପ୍ରଣାମ କଲେ ପୁରନ୍ଦରେ
ସୁତମୁନି କହନ୍ତି ଯେ ଏଥୁ ଅନନ୍ତରେ ।
ସକଳ ତୀର୍ଥେ କହନ୍ତି ଆଜ୍ଞାକାରୀ ହୋଇ
କି ନିମନ୍ତେ ଡକାଇଲେ କହ ସୁରସାଇଁ ।
ତାହାର କାରଣ କହ ଘେନ ନମସ୍କାର
ତୀର୍ଥଙ୍କ ମୁଖୁଁ ଏମନ୍ତ ଶୁଣି ପୁରନ୍ଦର ।
ବୋଇଲେ ତୁମ୍ଭ ମଧରେ କହ କେଉଁ ତୀର୍ଥ
ବ୍ରହ୍ମହତ୍ୟା ନାଶିବାରେ ହୋଇବ ସମର୍ଥ ।
କେଉଁତୀର୍ଥ ଗୋରୁ ବଧ ସ୍ତିରୀବଧ ପୁଣି
ସ୍ୱାମିଦ୍ରୋହ ସୁରାପାନ ପାପ ପାରେ ହାଣି ।
ସୁନାଚୋରି ଗୁରୁନିନ୍ଦା ଭ୍ରୁଣହତ୍ୟା ଆଦି
ନିଦାରୁଣ ମହାପାପ କେ ପାରିବ ଛେଦି ।
ରାଜଦ୍ରୋହ ବହୁପୀଡ଼ା ପାପ କେ ହରିବ
ମିତ୍ରଦ୍ରୋହ ଆଦି ମହା ପାପ ବିନାଶିବ ।
ବିଶ୍ୱାସଘାତକ ପାପ ଶମ୍ଭୁ ଲିଙ୍ଗ ଭଙ୍ଗ
ଦେବତା ପ୍ରତିମାଭଙ୍ଗ ଜାତ ପାପସଂଘ ।
କେ ଜାଣି ପାରିବ ତାହା କହ ମୋହ ଆଗେ
ବିପ୍ରବୃତ୍ତି - ଛେଦକାରୀ ଯେ ପଡ଼ିଥା ଭାଗେ ।
ଗୋଚର ଦଣ୍ଡାତାଡ଼ି ଯେ କରଇ କିଆରୀ
ଘର ପୋଡ଼ିଦିଏ ଘରେ ଅଗ୍ନି ଗୁଞ୍ଜି କରି ।
ଅଗମ୍ୟା ସ୍ତିରୀ ଗମନ କରଇ ଆବର
ବିପଦକାଳେ ସ୍ୱାମିକି ଛାଡ଼େ ଯେଉଁନର ।
ଯୁଦ୍ଧରୁ ପଳାଇ ଯାଏ ଯେଉଁବୀର ଡ଼ରେ
ଏ ଷୋଳ ମହାପାପିକି କେ ଉଦ୍ଧାରି ପାରେ ।
ବିନା ପ୍ରାୟଶ୍ଚିତ୍ତେ ପାପ ଛଡ଼ାଇ ପାରଇ
ସମସ୍ତେ ମିଳି ବିଚାର କରି ଏଥୁ ଯାଇ ।
ନାରଦମୁନିଙ୍କ ଆଗେ ବିସ୍ତାରି କହିବ
ଏମନ୍ତ ଯହୁଁ କହିଲେ ଦେବେନ୍ଦ୍ରେ ବାସବ ।
ସମସ୍ତେ ବିଚାର କରି କହିଲେ ଇନ୍ଦ୍ରଙ୍କୁ
ଆମ୍ଭେମାନେ ନମସ୍କାର କରୁଛୁଁ ତୁମ୍ଭଙ୍କୁ ।
ଏକ୍ଷଣି ଯା କହୁଅଛୁଁ ଶୁଣ ସାବଧାନେ
ଅନେକ ତୀର୍ଥ ଅଛଇ ଏ ମଧ ଭୁବନେ ।
ସର୍ବ ପାପହାରୀ ତୀର୍ଥ ସକଳେ ବୋଲାନ୍ତି
ବ୍ରହ୍ମହତ୍ୟା ଆଦି ମହାପାପ ସେ ବୋଲାନ୍ତି ।
ସେ ଘୋର ପାପର କଥା କହୁଛ ଆପଣ
ତାହା ଛଡ଼ାଇବା ତୀର୍ଥ ଚାରି ଗୋଟି ଜାଣ ।
ପ୍ରୟାଗ ପୁଷ୍କର ଅର୍ଘ୍ୟ ତୀର୍ଥ ବାରଣସୀ
ପାରନ୍ତି ଏ ଚାରି ମହାପାତକ ବିନାଶି ।
ସବୁ ପ୍ରକାର ପାପକୁ ସେ ହରି ପାରନ୍ତି
ଏହି ଚାରିତୀର୍ଥ ସୃଷ୍ଟି କଲେ ପ୍ରଜାପତି ।
ଅପରିମିତ ଶକତି ଏହି ଚାରିଙ୍କର
ବୋଲାନ୍ତି ଏ ପୁଣି ବଳଶାଳୀ ତୀର୍ଥବର ।
ତୀର୍ଥମାନଙ୍କର କଥା ଶୁଣି ସୁରପତି
ଅତି ଆନନ୍ଦେ ତାହାଙ୍କୁ କଲେ ପୁଣି ସ୍ତୁତି ।
ଗୋପୀନାଥ ବୋଲେ ଭାଇ ତୀର୍ଥବ୍ରତ କର
ଘୋର ଦୁସ୍ତର ପାତକ ସମୁଦ୍ର ନିସ୍ତର ।

ଇତି ଶ୍ରୀ ପଦ୍ମପୁରଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ତୀର୍ଥ ବର୍ଣ୍ଣନେ
ନବତିତମୋଽଧ୍ୟାୟଃ



## ଏକନବତି ଅଧ୍ୟାୟ

### ବ୍ରହ୍ମହତ୍ୟାଦି ଦୋଷିତ ଇନ୍ଦ୍ରର ମାଳବଦେଶେ ଗମନ ।

କୁଞ୍ଜଳ କହିଲା ପୂର୍ବେ ସହସ୍ରଲୋଚନ
ଯେ କାଳେ କଲା ସେ ଗୁରୁପତ୍ନୀକି ହରଣ ।
ଗଉତମ ନାରୀ ଗୁରୁପତ୍ନୀ ଅଟେ ତାର
ଅଗମ୍ୟାଗମନ ପାପେ ମଗ୍ନ ପୁରନ୍ଦର ।
ବୃତ୍ରଅସୁରକୁ ମାରି ରବ୍ରହ୍ମହତ୍ୟା କଲା
ଏ ଦୁଇ ପାପରେ ତାର ଦେହ କ୍ଷୀଣହେଲା ।
ଘୋର ମହାପାପ ତହୁଁ କଲା ପୁରନ୍ଦର
ବିପ୍ରେ ତାକୁ ନ ଛୁଇଁଲେ କଲେକ ଅନ୍ତର ।
ମହାପାପୀ ଇନ୍ଦ୍ରମୁଖ ଚାହିଁବା କେମନ୍ତେ
ସଂସର୍ଗ ପାପେ ମଜ୍ଜିବା ଆମ୍ଭେ କି ନିମନ୍ତେ ।
ତହୁଁ ଇନ୍ଦ୍ର ନିରାଲମ୍ବ ନିରାଶ୍ରୟ ହୋଇ
ତପ ଅନଳେ ଆପଣା ଶରୀରକୁ ଦହି ।
ଶେଷେ ସକଳ ଦେବତା ଯକ୍ଷ ଯେ କିନ୍ନର
ମିଳି ଅଭିଷେକ କଲେ ଦେବରାଜଙ୍କର ।
ମାଳବକ ଦେଶେ ନେଇ ଇନ୍ଦ୍ରଙ୍କୁ ରଖିଲେ
ସହସ୍ର ଜଳ କୁମ୍ଭରେ ସ୍ନାନ କରାଇଲେ ।
ଆଗ ବାରଣାସୀ ତୀର୍ଥେ କରାଇଲେ ସ୍ନାନ
ତହୁଁ ପ୍ରୟାଗକୁ ଗଲେ ଇନ୍ଦ୍ରଙ୍କୁ ଘେନିଣ ।
ସେ ତୀର୍ଥେ ସ୍ନାନ କରାଇ ଅର୍ଘତୀର୍ଥେ ନେଲେ
ତହିଁ ଅଭିଷେକ ସାରି ପୁଷ୍କରେ ମିଳିଲେ ।
ସେଠାରେ ସ୍ନାନ କରାଇ ଛଡ଼ାଇଲେ ପାପ
ତହୁଁ ଇନ୍ଦ୍ର ଯାହା କଲେଶୁଣ ଦୁରେ ବାପ ।
ବ୍ରହ୍ମା ଆଦି ଦେବଗଣ ଋଷି ମୁନିଗଣ
ଗିରି ବୃକ୍ଷ ଗଜ ନାଗ ଗନ୍ଧର୍ବ ଚାରଣ ।
ଏମାନେ ମିଳି ଇନ୍ଦ୍ରଙ୍କୁ ବେଦମନ୍ତ୍ର ପଢ଼ି
ଅଭିଷେକ କରାଇଲେ ପାପଗଲା ଛାଡ଼ି ।
ଅଗମ୍ୟାଗମନ ପାପ ଇନ୍ଦ୍ରର ଯେ ଥିଲା
ବ୍ରହ୍ମହତ୍ୟା ଆଦି ପାପ ସବୁ ଛାଡ଼ିଗଲା ।
ପବିତ୍ର ନିର୍ମଳ ହେଲା ବାସବ ଶରୀର
ତୋଷେ ସେ ଚାରିତୀର୍ଥଙ୍କୁ ଇନ୍ଦ୍ରଦେଲେବର ।
ବୋଇଲେ ମୁକତ କଲ ଘୋରପାପୁ ମୋତେ
ଆଜୁ ତୁମ୍ଭେ ତୀର୍ଥରାଜ ହୋଇଲ ଜଗତେ ।
ମୋ କଥା ଆନ ନୋହିବ ଜାଣ ତୀର୍ଥବରେ
ମାଳବକୁ ବୋଇଲେ ସେ ଇନ୍ଦ୍ର ତୋଷଭରେ ।
ତୁ ଯେଣୁ କଲୁ ମୋ ପାପ ମୂଳକୁ ଧାରଣ
ତହିଁରେ ପୁଣି ବହୁତ ପାଇଅଛୁ ଶ୍ରମ ।
ମୋର ପରସାଦେ ଅନ୍ନପାନ ଧନଧାନ୍ୟେ
ପରିପୂର୍ଣ୍ଣ ହେବ ପୁଣି ତୋ ଦେଶ ଶୁବର୍ଣ୍ଣେ ।
ସବୁକାଳେ ଅଳଂକୃତ ହୋଇବ ଏ ଦେଶ
ପୁଣ୍ୟବନ୍ତ ଜନେ ଏଥେ କରିବେ ଯେ ବାସ ।
ଶୁଦ୍ଧ କି ଅଶୁଦ୍ଧ କାଳେ ହେବୁ ପୁଣ୍ୟବନ୍ତ
ଏସ୍ଥାନ ମାଡ଼ିବା ଲୋକ ହୋଇବ ପବିତ୍ର ।
ମାଳବକ କ୍ଷେତ୍ରବର ତୀର୍ଥବର ଚାରି
ବରପାଇ ଇନ୍ଦ୍ରଠାରୁ ଗଲେ ନିଜପୁରୀ ।
ଇନ୍ଦ୍ରତହୁଁ ଆସି ସ୍ୱର୍ଗ ଆସନେ ବସିଲେ
ଶଉନକ ଆଗେ ସୂତ ମୁନି ଯେ କହିଲେ ।
ବାରଣସୀ ଅର୍ଘତୀର୍ଥ ପ୍ରୟୋଗ ପୁଷ୍କର
ସେ ଦିନୁ ରାଜା ହୋଇଲେ ତୀର୍ଥଙ୍କ ଉପର ।
କୁଞ୍ଜଳ କହିଲା ପୂର୍ବେ ପାଞ୍ଚାଳ ଦେଶରେ
ଘର କରିଥିଲା କ୍ଷତ୍ରି ବିଦୁର ନାମରେ ।
ମୋହେ ପଡ଼ି କଲା ଏକ ବ୍ରାହ୍ମଣକୁ ହତ
ସେ ପାପ ଆସି ତାହାକୁ ଗ୍ରାସିଲା ତୁରିତ ।
ଜାଣିପାରି ଅନୁତାପ କଲା ସେ ବହୁତ
ଭାଳିଲା କେମନ୍ତେ ହେବି ପାପରୁ ମୁକତ ।
ଏମନ୍ତ ଭାଳି ବିଦୁର ବୁଦ୍ଧିଏ ପାଇଲା
ଚିତା ନ ଘେନିଲା ପୁଣି ଶିଖା ନ ରଖିଲା ।
ପଇତା ପକାଇ ଦେଇ ଭିକ୍ଷାପାତ୍ର ଘେନି
ଭିକମାଗିଲା ସେ ପୁଣି ତୀର୍ଥେ ତୀର୍ଥେ ଭ୍ରମି ।
ଭିକପାଇଁ ଆସିଅଛି ମୁହିଁ ବ୍ରହ୍ମଘାତୀ
ଘରେ ଘରେ ଭିକମାଗେ ସେ ବିଦୁର ନିତି ।
ଏହିରୂପେ ଭିକମାଗି ସବୁତୀର୍ଥ କରି
ଆପଣା ଗୃହକୁ ପୁଣି ଅଇଲା ସେ ଫେରି ।
ତହିଁରେ ସେ ବ୍ରହ୍ମହତ୍ୟା ପାପ ନ ଛାଡ଼ିଲା
ଦୋଷକାରୀ ସେ ବିଦୁର ଦିନକର ଗଲା ।
ଚିନ୍ତାଭରେ ତରୁତଳେ କାନ୍ଦୁଥିଲା ବସି
ଚନ୍ଦ୍ରଶର୍ମା ନାମେ ଦ୍ୱିଜ ମିଳିଲାକ ଆସି ।

ମାଳବ ଦେଶରେ ଘର ଅଟଇ ତାହାର
ମହାମୋହରେ ପୀଡ଼ିତ ସେହି ନିରନ୍ତର ।
ଗୁରୁହତ୍ୟା କରିବାରୁ ତାହାକୁ ସେ ଦେଶେ
ଧିକ୍କାରକରି ବାହାର କରିଦେଲେ ଶେଷେ ।
ବିଦୁର ପାଖେ ମିଳିଲା ଆସି ସେହି ଦୋଷୀ
ଦେଖିଲା ବିଦୁର ତହିଁ କାନ୍ଦୁଅଛି ବସି ।
ଦୁରାତ୍ମା ବିଦୁର ତାକୁ ପଚାରିଲା ଦେଖି
କେ ତୁମ୍ଭେ କାହୁଁ ଅଇଲ ହୋଇ ଅତିଦୁଃଖୀ ।
ଦିଶୁଛତ ଦୋଷକାରୀ ପ୍ରାୟ ତୁମ୍ଭେ ଦ୍ୱିଜ
କାହୁ ଯେ ଅଇଲ ପୁଣି କାହିଁ ଯିବ ଆଜ ।
କେଶ ଚିତା ପଇତା ଯେ ଅଛଇ ତୁମ୍ଭର
ଦ୍ୱିଜାଧମ ଚନ୍ଦ୍ରଶର୍ମା ଦିଅଇ ଉତ୍ତର ।
ମହାପାପ କଲି ମୁହିଁ ଗୁରୁଘରେ ରହି
ଗୁରୁଙ୍କୁ ମୁଁ ବଧ କଲି ମନେ ରୋଷ ବହି ।
ମୋହେ ପଡ଼ି ମହାପାପ କରିବାରୁ ମୋତେ
ମୋର ମୁଖ ନ ଚାହିଁଲେ ଦେଶରେ ସମସ୍ତେ ।
ବାହାର କରି ଦେବାରୁ ମୁଁ ଏକା ଭ୍ରମଇ
ତୁମ୍ଭେ କିଏ ଏଥେ ଶୋକକର କାହିଁପାଇଁ ।
ତରୁତଳ ଆଶ୍ରା କିମ୍ପା କହେ ହେ ତୁମ୍ଭର
ଏମନ୍ତ ଶୁଣି କହିଲା ସେ ପାପୀ ବିଦୁର ।
ମୁହିଁ ବ୍ରହ୍ମଘାତୀ ମହାଦୋଷୀ ଯେ ଅଟଇ
ଭିକମାଗି ଖାଇ ନାନା ତୀର୍ଥ ମୁଁ ଭ୍ରମଇ ।
ପଥଶ୍ରମ ପାଇବାରୁ ଆଶ୍ରାନେଲି ଛାଇ
ଏ ସମୟେ ଆସି ଏକ ମିଳିଲା ବାଟୋଇ ।
ତାର ନାମ ଦେବଶର୍ମା ନାନା ପାପକାରୀ
ବିଦୂର ଯେ ଚନ୍ଦ୍ରଶର୍ମା ତାହାକୁ ପଚାରି ।
କିଏ ତୁମ୍ଭେ କିମ୍ପା ଭ୍ରମ କି ଦୁଃଖ ତୁମ୍ଭର
ଦେବଶର୍ମା କହେ ମୁହିଁ ପାପୀ ଦୁରାଚାର ।
ଅଗମ୍ୟା ଗମନ କଲି କାମାତୁର ହୋଇ
ଦେଶରୁ ବାହାରି ଆସି ଏକାକେ ଭ୍ରମଇ ।
ବନ୍ଧୁ ବାନ୍ଧବେ ଅନେକ କହିଲେ ଧିକ୍କାରି
ମୁହିଁ ବିପ୍ର ଘୋର ମହାପାପୀ ଦୋଷକାରୀ ।
ତହୁଁ ଏକ ବିପ୍ର ଆସି ମିଳିଲା ମୋଠାରେ
ତା ନାମ ବଞ୍ଜୁଳ ସେହି ସୁରାପାନ କରେ ।
ସେ ତିନିଜଣ ତାହାକୁ ଦେଖି ପଚାରିଲେ
ବଞ୍ଜୁଳ ତାହାଙ୍କ ଆଗେ ସକଳ କହିଲେ ।
ଗୋରୁହତ୍ୟାକାରୀ ମୁହିଁ ମହାପାପୀ ଜାଣ
ବଇଶ୍ୟ କୁଳେ ଜନମ ବଞ୍ଜୁଳ ମୋ ନାମ ।
ଏକାଠି ହୋଇଣେ ସେହି ମହାପାପୀ ଚାରି
ଭୋଜନ କରନ୍ତି ଭିନ୍ନେ ଭିନ୍ନେ ରାନ୍ଧିକରି ।
ଛୁଆଁ ଛୁଇଁ ନ ହୁଅନ୍ତି କୁହାକୁହି ହୁନ୍ତି
କେହି କାହା ବିଛଣାରେ ଯାଇ ନ ବସନ୍ତି ।
ଏକ ଶଯ୍ୟାରେ ଶୟନ ନ କରନ୍ତି ପୁଣି
ଏମନ୍ତେ ସେ ଚାରି ତୀର୍ଥେ କରନ୍ତି ଭ୍ରମଣି ।
ନାନାତୀର୍ଥ କରି ନାନା କଷ୍ଟ ଦୁଃଖସହି
ତହିଁରେ ତାହାଙ୍କ ଦେହୁ ପାପ ନ ଛାଡ଼ଇ ।
ବିଦୂରକୁ ଆଦିକରି ସେହି ଚାରିଜଣ
ବୋଇଲେ ବୃଥାରେ ଆମ୍ଭେ କଲୁ ଯେ ଭ୍ରମଣ ।
ମହାପାପ ନାଶିବାରେ ଏହି ତୀର୍ଥଙ୍କର
ଜାଣିଲୁଁ କ୍ଷମତା ନାହିଁ ବିଚାରି ସତ୍ୱର ।
କାଳଞ୍ଜିର ପରବତେ ମିଳିଲେ ସେ ଯାଇଁ
ଦୀନ ଗୋପୀନାଥ ଭଜେ କମଳାର ସାଇଁ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ
ବେନୋପାଖ୍ୟାନେ ବ୍ରହ୍ମହତ୍ୟାଦି ଦୋଷିତ
ଇନ୍ଦ୍ରର ମାଳବ ଦେଶେ ଗମନ ଏକ
ନବତିତମୋଽଧ୍ୟାୟଃ ।



## ଦ୍ୱିନବତି ଅଧ୍ୟାୟ

### ସିଦ୍ଧୋପଦେଶେ ବିଦୁର ଆଦିଙ୍କର ବାରଣସୀ ସ୍ନାନେ ମୁକ୍ତି

କୁଞ୍ଜଳ କହିଲା ସେହି ଯାଇ କାଳଞ୍ଜିରେ
ମହାପାପେ ଦଗ୍ଧହୋଇ ରହିଲେ କଷ୍ଟରେ ।
ହାହା ହାହା ହୋଇ ତହିଁ ହେଲେ ହତଜ୍ଞାନ
ସିଦ୍ଧ ପୁରୁଷେକ କାହୁଁ ମିଳିଲା ସେ ସ୍ଥାନ ।
ସେ ସିଦ୍ଧ ପୁରୁଷ ତାକୁ ଦେଖିଣ ପଚାରି
କିମ୍ପା ଏଠାରେ ପଡ଼ିଛ ତୁମ୍ଭେ ଜ୍ଞାନହାରି ।
କି ପୀଡ଼ା ତୁମ୍ଭ ଶରୀରେ କହିଲେ ଶୁଣିବା
କରି ପାରିଲେ ତା ପ୍ରତିକାର ଯେ କରିବା ।
ସେ ଚାରିଜଣ କହିଲେ ତାହାଙ୍କ କାହାଣୀ
ସେ ସିଦ୍ଧ ପୁରୁଷ ସବୁ କଥା ଶୁଣି ଶୁଣି ।

କୃପା କରିଣ ବୋଇଲେ ଏଥୁ ତୁମ୍ଭେ ଯାଇଁ
ସୋମବାରେ ଅମାବାସ୍ୟା ଯେଦିନ ପଡ଼ଇ ।
ସେଦିନ ତୁମ୍ଭେ ପ୍ରୟାଗ ତୀର୍ଥରେ ବୁଡ଼ିବ
ତହୁଁ ପୁଷ୍କରେ ବୁଡ଼ିବ ଅର୍ଘତୀର୍ଥେ ଯିବ ।
ତହିଁ ସ୍ନାନସାରି ପୁଣି ଯିବ ବାରାଣସୀ
ସ୍ନାନ କରିବ ପବିତ୍ର ଗଙ୍ଗାଜଳେ ପଶି ।
ଏ ମହା ପାପଛଡ଼ାଇ ଦିଶିବ ସୁନ୍ଦର
କହି ସେ ସିଦ୍ଧପୁରୁଷ ହୋଇଲେ ଅନ୍ତର ।
ଚାରିଜଣ ତହୁଁ ଆସି ସେହି ରୂପେ କଲେ
ସେ ସିଦ୍ଧପୁରୁଷ ଯେଉଁରୂପେ କହିଥିଲେ ।
ବାରାଣସୀ ତୀର୍ଥେ ମିଳି କଲେ ଗଙ୍ଗାସ୍ନାନ
ପ୍ରୟାଗରେ ଅମାବାସ୍ୟା ସୋମବାର ଦିନ ।
ସ୍ନାନକରି ତହୁଁ ଯାଇ ପୁଷ୍କରେ ମିଳିଲେ
ତହିଁ ସ୍ନାନସାରି ଅର୍ଘତୀର୍ଥେ ସ୍ନାନକଲେ ।
କାଶୀରେ ମିଳି ସେ ଚାରିଜଣ ଦୋଷକାରୀ
ମହାପାପ ଛଡ଼ାଇଲେ ସର୍ବ ସ୍ନାନକରି ।
ଅମାବାସ୍ୟା ସୋମବାର ମହା ସ୍ନାନଯୋଗ
ବାରଣସୀ ଅର୍ଘତୀର୍ଥ ପୁଷ୍କର ପ୍ରୟାଗ ।
ଏ ଜାରିଜଣଙ୍କ ପାପ ଛଡ଼ାଇ ଦେଇଣ
ଆପେ ସେହି ପାପେ ଲିପ୍ତ ହୋଇଲେକ ପୁଣ ।
ସେ ଚାରିଜଣଙ୍କୁ ଛାଡ଼ି ସେ ପାପ ଅଇଲା
ତତ୍‌କ୍ଷଣେ ସେହି ଚାରିତୀର୍ଥଙ୍କୁ ଘୋଟିଲା ।
କୃଷ୍ଣ ହଂସ ହୋଇ ବୁଲୁଥିଲେ ସେହିଚାରି
ବିଦୁର ଆଦି ପାପୀଙ୍କୁ ପାପରୁ ଉଦ୍ଧାରି ।
ଆପେ ସେହି ପାପଫଳେ ହେଲେ କୃଷ୍ଣହଂସ
ବହୁତ ତୀର୍ଥସ୍ଥାନରେ କରି ପୁଣି ବାସ ।
ପୁଣ୍ୟଜଳେ ସ୍ନାନକରି ସେହି ହଂସଚାରି
ବାରମ୍ବାର ସ୍ନାନକରି ଜଳରେ ପହଁରି ।
କଳାଦେହ ଧଳା ପୁଣି ନୋହିଲା ତାଙ୍କର
ସେ ଯେଉଁ ତୀର୍ଥେଗମନ୍ତି ଜାଣ ନୃପବର ।
ଅଠଷଠି ତୀର୍ଥଜାଣ ତହିଁରେ ପ୍ରଧାନ
ସେମାନେ ଧବଳହଂସ ରୂପକୁ ଧରିଣ ।
କୃଷ୍ଣ ହଂସରୂପୀ ଚାରିତୀର୍ଥ ରାଜସଙ୍ଗେ
ଗୋଡ଼ାଇଲେ ଧଳାହଂସେ ସ୍ନେହଅନୁରାଗେ ।
ଚାରି ମହାପାପ ଚାରିନାମ ରୂପ ଧରି
ସେ ଚାରିତୀର୍ଥରାଜଙ୍କ ହେଲେ ମନୋହାରୀ ।
ଭାରିଯାପରାୟେ ତାଙ୍କ ପଛେ ଗୋଡ଼ାଇଲେ
ଚାରିତୀର୍ଥରାଜସବୁ ତୀର୍ଥେ ସ୍ନାନକଲେ ।
ପାପ ନ ଛାଡ଼ିଲା ଯହୁଁ ବୁଡ଼ିଲେ ମାନସେ
ତାହାଙ୍କସଙ୍ଗେ ବୁଡ଼ିଲେ ଅଠଷଠି ହଂସେ ।
ନାରୀରୂପା ମହାପାପେ ସଙ୍ଗ ନ ଛାଡ଼ନ୍ତି
ସେ ଯେଉଁ ଜଳେ ବୁଡ଼ନ୍ତି ଏ ତହିଁବୁଡ଼ନ୍ତି ।
ମାନସରୋବରରେ ବୁଡ଼ି ନ ଛାଡ଼ିଲା ପାପ
ଲାଜପାଇ ସରୋବର ଧରି ହଂସରୂପ ।
ଚଞ୍ଚୁ ଚରଣ ତାହାର ଦିଶିଲା ଯେ କଳା
କେହି ହଂସରୂପୀ ତୀର୍ଥ ନେଳିଆ ଦିଶିଲା ।
କେଉଁତୀର୍ଥ ପୀତବର୍ଣ୍ଣ ହଂସରୂପ ଧରେ
ସବୁହଂସେ ବୁଡ଼ିଥିଲେ ମାନସରୋବରେ ।
ମାନସତୀର୍ଥ ସକଳ ତୀର୍ଥଙ୍କୁ ଘେନିଣ
ରେବାର ଉତ୍ତରତୀରେ ମିଳିଲା ବହନ ।
ଭୂତଗଣ ସିଦ୍ଧଗଣ ଯାହାଙ୍କୁ ସେବନ୍ତି
ସର୍ବପାପହର ତୀର୍ଥ ଯେ ପୁଣି ବୋଲାନ୍ତି ।
ସେହି କୁବୁଜାସଙ୍ଗମେ ପଶିକଲେ ସ୍ନାନ
ସ୍ନାନକଲା ମାତ୍ରେ ହେଲେ ପାପରୁ ମୋଚନ ।
କଳାହଂସେ ଧଳାହେଲେ ତୀର୍ଥ ପରସାଦେ
ସବୁତୀର୍ଥେ ପଡ଼ିଥିଲେ ପାପର ପ୍ରମାଦେ ।
ରାଜାପାପେ ପାପଭାଗୀ ପ୍ରଜାଏ ହୁଅନ୍ତି
ତେଣୁ ତୀର୍ଥ ସବୁହଂସ ରୂପ ଧରିଛନ୍ତି ।
ରେବାତୀର୍ଥେ ସବୁହଂସ ଦିଶିଲେ ଧବଳ
ଯାହା ଲେଖାଥିଲା ବଖାଣିଲି ପୁରାଣର ।
ସବୁତୀର୍ଥସ୍ନାନ ଯହୁଁ ନ ଛାଡ଼ିଲା ପାପ
ନାରୀରୂପା ପାପେ ଧରି ଭୟଙ୍କର ରୂପ ।
ଉପହାସ କଲେ ତାଙ୍କୁ ଜାଣି ଦ୍ୱିଜବରେ
ଯହୁଁ କୁବୁଜା ସଙ୍ଗମାନଳ ରେବାତୀରେ ।
ସବୁ ତୀର୍ଥଙ୍କର ପାପଯାକ ହେଲା ଜାଳି
ଚାହୁଁ ଚାହୁଁ ମରିଗଲେ ସେହି ନାରୀଚାରି ।
ଅଠଷଠି ହଂସ ମଧ୍ୟେ ଯେହୁ ବଡ଼ହଂସ
ସେ ହଂସଗୋଟି ଜାଣିବ ଅଟଇ ମାନସ ।
ବାରଣସୀ ଅର୍ଘତୀର୍ଥ ପ୍ରୟାଗ ପୁଷ୍କର
ତୀର୍ଥରାଜ ବୋଲାନ୍ତି ଏ ପାଇ ଇନ୍ଦ୍ରବର ।
ବିଦୂରଆଦିଙ୍କ ପାପ ଘୋରତର ଅତି
ତୀର୍ଥ ପୁଣ୍ୟତୀରେ ତାଙ୍କୁ ଛାଡ଼ି ସେ ଝଟତି ।

ଗ୍ରାସି ଯେ ଚାରିତୀର୍ଥଙ୍କୁ କଲେ କୃଷ୍ଣହଂସ
ଆପେ ନାରୀରୂପ ଧରି ହୋଇଲେକ ଧ୍ୱଂସ ।
ରେବା ପୁଣ୍ୟବଳେ ସବୁ ମରି ହଜିଗଲେ
ଏରୂପେ ପ୍ରୟାଗ ଇନ୍ଦ୍ରଆଗେ କହିଥିଲେ ।
ସବୁତୀର୍ଥେ ବଡ଼ପଣ ଦେଖାଉ ଥାଆନ୍ତି
ସେ ପର୍ଯ୍ୟନ୍ତ ରେବାତୀର୍ଥ ସେ ମାଡ଼ି ନଥାନ୍ତି ।
ରେବା ଏକ ବ୍ରହ୍ମହତ୍ୟା ପାପ ବିନାଶିନୀ
କପିଳାସଙ୍ଗମେ ରେବା ପୁଣ୍ୟ ବିନାଶିନୀ ।
ମେଘନାଦ ସଙ୍ଗମରେ ରେବା ମହାପୁଣ୍ୟ
ଉରୁ ସଙ୍ଗମରେ ରେବାନଦୀ ମହାଧନ୍ୟ ।
ଏ ତୀର୍ଥସବୁ ରେବାର ଅଟଇ ଦୁର୍ଲଭ
ରେବାର ଯେ ଭୃଗୁକ୍ଷେତ୍ର ନପାନ୍ତି ମାନବ ।
ଓଁକାରେ କୁଜନର୍ମଦା ସଙ୍ଗମ ନ ମିଳେ
ରେବାର ଜନ୍ମ ସଙ୍ଗମ ମାହୀଷ୍ମତୀପୁରେ ।
ଦେବଙ୍କୁ ଦୁର୍ଲଭ ସେହିତୀର୍ଥଗୋଟି ଜାଣ
ବିଟଙ୍କାସଙ୍ଗମେ ରେବା ଦିଏ ମହାପୁଣ୍ୟ ।
ଶ୍ରୀକଣ୍ଠେ ମଙ୍ଗଳେଶ୍ୱରେ ରେବା ପୁଣ୍ୟବତୀ
ତୀର୍ଥମାତା ବୋଲି ଲୋକେ ରେବାକୁ ବୋଲନ୍ତି ।
କଳୁଷରାଶି ନାଶିନୀ ରେବା ମହାଦେଈ
ତାର ଦୁଇକୂଳ ଜାଣ ପବିତ୍ର ଅଟଇ ।
ତହିଁଥିବା ଲୋକଙ୍କର ସୁଖେଯାଏ ଦିନ
ରେବାସ୍ନାନେ ଅଶ୍ୱମେଧ ଫଳ ପାଏ ଜନ ।
ଯାହା ପଚାରିଲୁ ତାହା କହିଲି ବୁଝାଇ
ଏ ପୁଣ୍ୟ ଅଧ୍ୟାଗୋଟିକ ଯେ ଜନ ଶୁଣଇ ।
ସବୁ ପାପନାଶି ସେହି ପାଏ ସଦଗତି
କୁଞ୍ଜଳ ତୃତୀୟପୁତ୍ର ବସାଇଲା କତି ।
ଦୀନ ଗୋପୀନାଥ ବୋଲେ ତୀର୍ଥମଧ୍ୟେ ସାର
ଶ୍ରୀହରିନାମକୁ କର ଗଳା ରତ୍ନହାର ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ସିଦ୍ଧୋପଦେଶେ ବିଦୁର ଆଦିଙ୍କର
ବାରାଣସୀ ସ୍ନାନେ ଦ୍ୱିନବତିତମୋଽଧ୍ୟାୟଃ ।



## ତ୍ରିନବତିତମ ଅଧ୍ୟାୟ

### ବିଜ୍ୱଳର ନିଜବୃତ୍ତାନ୍ତ ନିବେଦନ

କୁଞ୍ଜଳ କହିଲା ବାବୁ ସୁବ୍ରତ ବିଜ୍ୱଳ
ତୁହି ନିତି ଭ୍ରମିଯାଉ ଏ ମହୀମଣ୍ଡଳ ।
କି ଆଶ୍ଚର୍ଯ୍ୟ କି ଅପୂର୍ବ ଦେଖିଅଛୁ କହ
ଆହାର ନିମନ୍ତେ ଯାଇଁ କେଉଁଦେଶେ ରହ ।
ବିଜ୍ୱଳ କହିଲା ତାତ ମେରୁ ଗିରିପାଶେ
ଆନନ୍ଦ କାନନ ନାମେ ବନ ଏକଦେଶେ ।
ଦିବ୍ୟବୃକ୍ଷରେ ମଣ୍ଡଣି ହୋଇଛି କାନନ
ଫଳ ପୁଷ୍ପଭରେ ବୃକ୍ଷସବୁ ଶୋଭମାନ ।
ଦେବବୃନ୍ଦ ମୁନିବୃନ୍ଦ ସିଦ୍ଧ ବୃନ୍ଦେ ତହିଁ
ଗନ୍ଧର୍ବ କିନ୍ନର ଅପସରା ଗଣେ ରହି ।
ବାପୀ କୂପ ତଡ଼ାଗ ଯେ ନଦୀ ପୁଷ୍କରିଣୀ
ବହୁତ ଝରଣା ଥିବା ପ୍ରାୟ ଶୋଭା ପୁଣି ।
ହଂସ କୁନ୍ଦ ଇନ୍ଦୁ ପ୍ରାୟ ଧବଳ ବିମାନ
କୋଟି କୋଟି ଥିବାରୁ ସେ ବନ ଶୋଭାବନ ।
ଗୀତ କୋଳାହଳ ନାଦ ମେଘଧ୍ୱନି ନିନ୍ଦେ
ମଧୁକରଙ୍କ ମଧୁର ଗୁଣୁଗୁଣୁ ନାଦେ ।
ଆନନ୍ଦ କାନନ ସଦା ଆନନ୍ଦ ସ୍ୱରୂପ
ଫୁଟି ବିକାଶଇ ଚମ୍ପା ନାଗେଶ୍ୱର ପୁଷ୍ପ ।
ଚନ୍ଦନ ଚୂତ ଆଦି ଯେ ବୃକ୍ଷ ଧାଡ଼ିଧାଡ଼ି
ଶୁକ ସାରୀ ବସୁଛନ୍ତି ଆସି ଉଡ଼ିଉଡ଼ି ।
ନାନା ପକ୍ଷୀଙ୍କର ସ୍ୱନ ବନ ସୁମଧୁର
ମଧ୍ୟରେ ଅଛି ସାଗର ତୁଲ୍ୟ ସରୋବର ।
ତହିଁରେ ସୁଗନ୍ଧରାଜ ପଦ୍ମଫୁଲ କଇଁ
ହଂସ କାରଣ୍ଡବ କ୍ରୀଡ଼ା ଗୃହ ଜାଣ ସେହି ।
ଦେବତା କିନ୍ନର ମୁନି ଉରଗ ଗନ୍ଧର୍ବ
ସେ ପୁଣ୍ୟ ଜଳରେ ସ୍ନାନ କରନ୍ତି ଏ ସର୍ବ ।
ଦେଖିଲୁ ଆଶ୍ଚର୍ଯ୍ୟ ଏକ ସେହି ସରୋବରେ
ତାହା ମୁଁ କହୁଛି ତାତ ତୁମ୍ଭ ଅଗ୍ରତରେ ।
ଦେଖିଲି ଏକ ବିମାନ କଳଣ ମଣ୍ଡିତ
ଛତ୍ର ଦଣ୍ଡ ପତାକାରେ ଅତି ସୁଶୋଭିତ ।
ଭୋଗର ସାମଗ୍ରୀ ସବୁ ପୁରି ରହିଅଛି
ତା ମଧ୍ୟେ ଏକ ପୁରୁଷ ମୁରତି ରହିଛି ।
କିନ୍ନରେ ବସି କହନ୍ତି ତା ପାରୁଶେ ଗାନ
ଆବର ଗନ୍ଧର୍ବଗଣ ଅପସରାଗଣ ।
ସେବା କରୁଛନ୍ତି ତାକୁ ଦେଖିଲି ସାକ୍ଷାତେ
ତାହାକୁ ସ୍ତୁତି କରନ୍ତି ସିଦ୍ଧମୁନି ଯେତେ ।
ଆଲୋକିତ ରୂପବନ୍ତ ସେ ପୁରୁଷବର
ଦେଖିନାହିଁ ତାର ତୁଲ୍ୟ ରୂପ ନେତ୍ରମୋର ।

ସବୁ ଆଭରଣେ ସବୁ ଅଙ୍ଗ ଶୋଭାପାଇ
ରତ୍ନହାର ଫୁଲମାଳ ଉରେ ବିରାଜଇ ।
ତା ପାଖେ ବସିଛି ଏକ ବରାନନା ନାରୀ
ହେମହାର ବିରାଜଇ ତା ବକ୍ଷ ଉପରି ।
ମୁକ୍ତା ବଳୟ ପୁଣି ବିରାଜେ କଙ୍କଣ
ଦିବ୍ୟବସ୍ତ୍ର ଦିବ୍ୟଗନ୍ଧ ଚନ୍ଦନ ଭୂଷଣ ।
ସେ ପୁରୁଷ ଅନୁରୂପ ସୁନ୍ଦର ଏ ନାରୀ
ପୀନ ପୟୋଧରା ରତି ସମାନ ସୁନ୍ଦରୀ ।
ରୂପ ସମ୍ପଦେ ରମଣୀ ପୁରୁଷ ସମାନ
ରୂପ ଲାବଣ୍ୟ ମାଧୁରୀ ଶୋଭାର ଭାଜନ ।
ବିମାନରୁ ଓହ୍ଲାଇଲେସେ ପୁରୁଷ ସ୍ତିରୀ
ସରୋବରେ ପଶି ନିତ୍ୟକର୍ମ ସ୍ନାନ ସାରି ।
ଉଠିଆସି କରେ ଶସ୍ତ୍ର ଧରି ଦୁଇଜଣ
ଯେ ରୂପେ ଦୁହିଙ୍କ ରୂପ ଦିଶଇ ଲାବଣ୍ୟ ।
ଯେ ରୂପେ ସ୍ତିରୀ ପୁରୁଷ ଶବ ଅଛି ପଡ଼ି
ସେରୂପ ହୋଇ ସେ ଶବ ଦୁଇଟିକୁ ଧରି ।
ଯେମନ୍ତେ ଦେବତା ତୁଲ୍ୟ ରୂପ ପୁରୁଷର
ତେସନ ସ୍ୱରୂପ ରୂପ ପୁରୁଷ ଶବର ।
ପୁରୁଷ ଶବକୁ କାଟି ପୁରୁଷ ଭକ୍ଷିଲା
ସ୍ତିରୀ ଶବଗୋଟି ସ୍ତିରୀ କାଟିଣ ଖାଇଲା ।
ଶବ ମାଂସ ଭକ୍ଷି ଦୁହେଁ ହୋଇଲେ ତୃପତ
ସରୋବରୁ ଜଳପାନ କଲେ ତହୁଁ ତାତ ।
କିଛି କାଳରହି ତହିଁ ବସିଲେ ବିମାନେ
ଆନ ଦୁଇ ରମଣୀ ମୁଁ ଦେଖିଲି ସେ ସ୍ଥାନେ ।
ରୂପ ସୌଭାଗ୍ୟ ସମ୍ପନ୍ନା ସେ ଚାରୁ ଲୋଚନା
ଶବ ମାଂସ ଭକ୍ଷି ସେହି ଦୁହେଁ ଉନମନା ।
ରଉଦ୍ର ଆକାର ହୋଇ କରାଳବଦନା
ଅଟ୍ଟାଟ୍ଟହାସିନୀ ଘୋର ସୁଦୀର୍ଘ ଦଶନା ।
ମହାଭୟଙ୍କରୀ ସେହି ଦେଖିଲେ ଡ଼ରିବ
ସେ ଦୁଇ ରମଣୀ ତହୁଁ ଖାଇସାରି ଶବ ।
ସେ ପୁରୁଷ ସ୍ତିରୀମୁଖ ଚାହିଁ ସେହି ଦୁଇ
ଦେହି ଦେହି ଉଚ୍ଚେ କହି ପୁଣି ଯାନ୍ତିକାହିଁ ।
ଏରୂପେ ମୁହିଁ ଦେଖଇ ରହି ପ୍ରତିଦିନ
କହି ନ ପାରଇ ଏହା ଅତି ବିଡ଼ମ୍ବନ ।
ଅତି ଆଚମ୍ବିତେ ଏହି କଥାଗୋଟା ତାତ
ଜାଣିଥିଲେ କହ ମୋତେ ଏଥିର ବୃତ୍ତାନ୍ତ ।
ସେ ପୁରୁ ଗୋଟିଏ କିଏ କିଏ ସେହିସ୍ତିରୀ
ରଉଦ୍ର ରୂପିଣୀ କିଏ ସେହି ଦୁଇନାରୀ ।
ସେ ସମ୍ପତି କାହୁଁ ଆସି ଭୁଞ୍ଜନ୍ତି ମାଉଁସ
ଭୟଙ୍କରୀ ନାରୀ ଦୁହେଁ କିମ୍ପା କରି ହାସ୍ୟ ।
କାହିଁପାହିଁ ଦେହି ଦେହି ତାହାଙ୍କୁ କହନ୍ତି
ଏ ସଂଶୟ ଦୂରକର ଭୋ ତାତ ତତ୍ପତି ।
ଏମନ୍ତ କହି ବିଜ୍ୱଳ ରହିଲା ମଉନେ
ଶ୍ରୀ ବିଷ୍ଣୁ କହନ୍ତି ବେନ ରାଜା ସନ୍ନିଧାନେ ।
ଚ୍ୟବନ ଶୁଣଇ ସବୁ ବସି ତରୁତଳେ
ଗୋପୀନାଥ ମନ ହରି ଚରଣ କମଳେ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ବିଜ୍ୱଳର ନିଜ ବୃତ୍ତାନ୍ତ ନିବେଦନ
ବର୍ଣ୍ଣନେ ତ୍ରିନବତିତମୋଽଧ୍ୟାୟଃ ।



## ଚତୁଃନବତି ଅଧ୍ୟାୟ

### ସୁବାହୁ ରାଜୋପାଖ୍ୟାନ

କୁଞ୍ଜଳ କହିଲା ପୁତ୍ର ଶୁଣ ମନଦେଇ
ଆପଣା ସାଂସ ଭକ୍ଷକ ହେଲା ଯହିଁପାଇଁ ।
ଶୁଭାଶୁଭ କର୍ମ ଜାଣ ତାହାର କାରଣ
ପୁଣ୍ୟକର୍ମ କଲେ ସୁଖ ଭୋଗ କରେ ଜନ ।
ପାପକର୍ମ ଫଳେ ଲୋକ ଦୁଃଖ ଭୋଗପାଇ
କର୍ମକରିବା ପୂର୍ବରୁ ଜନ ଏଥି ପାଇଁ ।
ଆଗ ବିଚାର କରିବ ସୂକ୍ଷ୍ମ ମାର୍ଗେ ଯିବ
ଜ୍ଞାନ ନେତ୍ରେ ସୂକ୍ଷ୍ମ ବୁଝି ସ୍ଥୂଳ ବିଚାରିବ ।
ତହୁଁ କର୍ମ ଆରମ୍ଭିବ ବସି ଏକ ମନେ
ଶିଳ୍ପ ଅଗ୍ନିକି ଜାଳଇ ବସିଣ ଯେସନେ ।
ଶିଖା ତେଜେ ଧାତୁଧୀରେ ଧୀରେ ତରଳାଇ
ଦିବ୍ୟ ମୂରତି ଗଢ଼ଇ ରସ ଉତ୍ତାରଇ ।
ସ୍ଥୂଳ ଧର୍ମ ବିଚାରିଣ କର୍ମ ଆରମ୍ଭିବ
ଅବିଚାର କାର୍ଯ୍ୟ କଲେ ନିଷ୍ଫଳ ହୋଇବ ।
ପକ୍ୱରସ ବ୍ୟବହାର ଭୋଜନ ଯେମନ୍ତ
ଫଳ ତେସନ ତାହାର ଜାଣିଥାରେ ତାତ ।
ଯେମନ୍ତ କର୍ମ ତେମନ୍ତ ଫଳଭୋଗ ତାର
କର୍ମଠାରୁ ବଡ଼ କେହି ନାହିଁ ପ୍ରାଣୀଙ୍କର ।

ବରଷା ରୂପେ ପ୍ରକାଶ ପାଇ ଯେହି କର୍ମ
କୃଷିକାରୀ ଚାଷ କରି ଭୂମିକି ଯେସନ ।
ଯେରୂପେ ବୀଜ ବୁଣଇ ସେ ରୂପେ ଫଳଇ
ସେ ରୂପେ ସେ କୃଷିକାରୀ ସେ ଫଳ ଭୋଗଇ ।
କର୍ମ ଅନୁସାରେ ଫଳ ଭୋଗ କରେ ପ୍ରାଣୀ
ବିନାଶର ହେତୁ କର୍ମ ଏହାଥିବୁ ଜାଣି ।
ଆମ୍ଭେମାନେ କର୍ମବଶେ ଥାଇ ଯେ ନିରତେ
କର୍ମ ଅନୁରୂପ ଜ୍ଞାତି ଏ ସଂସାରେ ଯେତେ ।
କର୍ମ ଅନୁସାରେ ଘଟେ ସମୁଧି ବାନ୍ଧବ
କର୍ମହିଁ ସୁଖ ଦୁଃଖର କାରଣ ଜାଣିବ ।
କର୍ମ ଯେ ପ୍ରାଣିକି ସୁଖ ଦୁଃଖେ ନିଯୋଜଇ
ସୁନା ରୂପା ଯେହ୍ନେ ଖଣି ଗୁଣେ ରୂପପାଇ ।
ତେହ୍ନେ ସୁଖ ଦୁଃଖପାଏ କର୍ମଯୋଗୁଁ ପ୍ରାଣୀ
ଗର୍ଭରେ ରହଇ ଦେହୀ ପୂର୍ବକର୍ମ ଘେନି ।
ଆୟୁ କର୍ମ ବିଦ୍ୟା ବିତ୍ତ ନିଧନ ଏ ପାଞ୍ଚ
ପୂର୍ବ କର୍ମଫଳେ ଜାଣ ହୁଅଇ ସୁସଞ୍ଚ ।
ମାଟିକି ପିଣ୍ଡୁଳା କରି କୁମ୍ଭାର ଯେସନ
ସ୍ୱଇଚ୍ଛାରେ ନାନାରୂପେ ଗଢ଼ଇ ତେସନ ।
କର୍ତ୍ତାର ଅନୁସରଣ କରି କଲା କର୍ମ
ଦେବତା ମାନବ ପଶୁ ପକ୍ଷୀ କୀଟ ଧର୍ମ ।
ଆବର ସ୍ଥାବର ଧର୍ମ କର୍ମଫଳେ ପାଇ
ଜୀବ ନିତ୍ୟ କଲା କର୍ମ ଭୋଗ କରୁଥାଇ ।
ଗର୍ଭଶଯ୍ୟା ଆଶ୍ରାକରି ଏ ଜୀବହିଁ ପୁଣି
ପୂର୍ବଜନ୍ମ ଫଳ ଭୋଗେ କରେ ଅନୁକ୍ଷଣି ।
ଜନ୍ମେ ଜନ୍ମେ ସୁଖ ଦୁଃଖ ଭୋଗକରେ ଜୀବ
ଆର ଜନମର ଫଳ ଏ ଜନମେ ଲାଭ ।
ଏମନ୍ତ କେହି ନାହିଁ କେ ବଳରେ ବୁଦ୍ଧିରେ
ପୂର୍ବଜନ୍ମକୃତ ଫଳ ଆନ କରିପାରେ ।
କର୍ମ ଫଳେ ଅହଙ୍କାରେ ଏ ଜୀବ ବନ୍ଧନ
ସହସ୍ର ସହସ୍ର ଧେନୁ ମଧ୍ୟରେ ଯେସନ ।
ନିଜ ମାତାକୁ ବାଛୁରୀ ଚିହ୍ନି ଦୁଧ ପିଇ
ତେହ୍ନେ ଶୁଭାଶୁଭ କର୍ମ କର୍ତ୍ତାକୁ ଲୋଡ଼ଇ ।
କଲା କର୍ମର ବିନାଶ ନାହିଁ ଭୋଗ ବିନେ
କର୍ମବନ୍ଧନ ଅନ୍ୟଥା ନୋହେ କେଭେଆନେ ।
ବେଗେ ଧାଉଁଥିବା ଲୋକେ ପଛେ ବିଧିପାଇଁ
ପୂର୍ବରୁ ଯେମନ୍ତ ଜନ କର୍ମ କରିଥାଇ ।

ତେମନ୍ତେ ତାହାର ଫଳ ଘଟେ ଅକସ୍ମାତେ
ଜୀବ ଯହିଁ ରହେ କର୍ମ ରହେ ତାର ସାଥେ ।
ଜୀବ ଚାଲିଯାନ୍ତେ କର୍ମ ତା ସଙ୍ଗେ ଚାଲଇ ।
ଜୀବ ଯା କିଛି କରଇ କର୍ମ ତା କରଇ ।
ଜୀବ ସଙ୍ଗେ କର୍ମ ରହିଥାଇ ଛାଇପ୍ରାୟେ
ଛାଇର ଯେଉଁ ସମ୍ବନ୍ଧ ଖରାସଙ୍ଗେ ଥାଏ ।
ଖରାର ସେହି ସମ୍ବନ୍ଧ ଛାଇର ସଙ୍ଗତେ
ଯେହ୍ନେ ଅନ୍ୟୋଽନ୍ୟସମ୍ବନ୍ଧ ଏ ଦୁଇର ନିତ୍ୟେ ।
ଜୀବ କର୍ମର ସମ୍ବନ୍ଧ ଜାଣିବ ତେସନ
ଜରା ବିଷୟ ଆଦି ଏ ଉପସର୍ଗ ଜାଣ ।
କର୍ମ ଅନୁସାରେ ପୀଡ଼ା ଏ ସବୁ ଦିଅନ୍ତି
ଶେଷେ ପୁଣି ନର୍କକୁଣ୍ଡେ ନେଇ ସେ ପକାନ୍ତି ।
ଯେ ଯହିଁରେ ସୁଖ ଦୁଃଖ ପାଇବାରେ ଥାଇ
ଦଇବ ଟାଣି ନିଅଇ ଦଉଡ଼ି ଲଗାଇ ।
ଦଇବହିଁ ପ୍ରାଣିଙ୍କର ସୁଖ ଦୁଃଖ ଦାତା
ଜାଗ୍ରତ ସ୍ୱପନେ ଏକ ରୂପ କର୍ମ ଚିନ୍ତା ।
ଦଇବ ତା ଆନ କରି ବନ୍ଧାଇ ମରାଇ
ରକ୍ଷା ପାଇବା ଲୋକକୁ ଦଇବ ରଖଇ ।
ଶସ୍ତ୍ର ଅଗ୍ନି ବିଷ ଦୁର୍ଗେ ନାହିଁ ତା ମରଣ
ଦଇବ ତହିଁରେ ହୁଏ ରକ୍ଷାର କାରଣ ।
ବୀଜ ତରୁ ଗୁଳ୍ମ ତୃଣ ମହୀରେ ଯେମନ୍ତେ
ସକଳ କର୍ମ ଆତ୍ମାରେ ବିରାଜେ ତେମନ୍ତେ ।
ତେଲ ସରିଗଲେ ଦୀପ ଯେସନେ ଲିଭଇ
ତେସନ କର୍ମର କ୍ଷୟେ ଏ ଜୀବ ମରଇ ।
ପ୍ରାଣୀଙ୍କର ରୋଗ ସବୁ ମୃତ୍ୟୁର କାରଣ
ଏଣୁ ପ୍ରାଣିଙ୍କର କର୍ମ ତତ୍ତ୍ୱ ବଡ଼ ଜାଣ ।
ପ୍ରାଣୀ ପୂର୍ବଜନ୍ମେ ଯେଉଁ କର୍ମ କରିଥାନ୍ତି
ଇହ ଜନମେ ତାହାର ଫଳ ସେ ଭୋଗନ୍ତି ।
ଯାହା ଦେଖି ପଚାରିଲୁ ଆରେ ବାବୁ ତୁହି
କର୍ମଫଳ ଭୋଗୁଛନ୍ତି ସେ ଦମ୍ପତି ତହିଁ ।
ଆନନ୍ଦ କାନନେ ଯାହା ଦେଖିଲୁ ତା ଶୁଣ
ଏ ମହୀକି କର୍ମଭୂମି ବୋଲି ବାବୁ ଜାଣ ।
ସ୍ୱର୍ଗ ଆଦି ଭୂମିକି ଯେ ଭୋଗଭୂମି କହି
ପୁଣ୍ୟଜନ ସୁଖ ଭୋଗ କରନ୍ତି ଯେ ତହିଁ ।
ସୂତ କହନ୍ତି ଶୁଣନ୍ତି ଶଉନକ ମୁନି
ଚୋଳଦେଶେ ଥିଲା ଜାଣ ଏକ ନୃପମଣି ।

ତାହାର ନାମ ସୁବାହୁ ସେହି ରୂପବନ୍ତ
ଧୀର ସ୍ୱଭାବ ତାହାର ପୁଣି ଗୁଣବନ୍ତ ।
ତା ତୁଲ୍ୟ ବିଷ୍ଣୁ ଭକତ ନ ଥିଲେ ମହୀରେ
ଏକା ସେହି ବଇଷ୍ଣବ ପ୍ରିୟ ଏ ସଂସାରେ ।
ଚତୁର ପଣେ ତାହାକୁ ନ ହେବେ କେ ସରି
ତ୍ରିବିଧ କର୍ମେ ସେ ନିତ୍ୟ ଚିନ୍ତଇ ଶ୍ରୀହରି ।
କରିଛି ସେ ଅଶ୍ୱମେଧ ଆଦି ସବୁ ଯାଗ
ପରଜାଙ୍କ ତହିଁ ତାର ଥାଏ ଅନୁରାଗ ।
ତାର ପୁରୋହିତ ନାମ ଅଟେ ଜଇମିନି
ସୁବାହୁ  ରାଜାକୁ ଦିନେ କହିଲା ସେ ପୁଣି ।
ଯହିଁରେ କି ସୁଖ ଭୋଗ ପାଇବ ରାଜନ
କହୁଅଛି କର ତୁମ୍ଭେ ସେ ଉତ୍ତମ ଦାନ ।
ଦାନ ଫଳେ ପରଲୋକୁ ପାଇବ ଉଦ୍ଧାର
ଦାନ ଦେଲେ ସୁଖ ଯଶ ମିଳଇ ଆବର ।
ଅତୁଳ କୀରତି ମିଳେ ଦାନେ ମର୍ତ୍ତ୍ୟପୁରେ
କୀରତି ଥିବା ପର୍ଯ୍ୟନ୍ତ ସ୍ୱର୍ଗେ ବାସ କରେ ।
ଏଣୁ ଦାନ ଦେବା କଥା ବଡ଼ାଇ ଦୁଷ୍କର
ଦାନ ଦେଇ ନ ପାରନ୍ତି ତେଣୁ ସବୁ ନର ।
ମାନବର ଦାନ ଦେବା ନିତାନ୍ତ ଉଚିତ
ସୁବାହୁ ରାଜା ବୋଇଲେ କୁହ ପୁରୋହିତ ।
ଦାନ ତପ ଦୁଇ ମଧ୍ୟେ କେ ଅଟେ ଦୁଷ୍କର
ପରକାଳରେ ଅଧିକ ଫଳହିଁ କାହାର ।
ଜଇମିନି ବୋଇଲେ ହେ ସୁବାହୁ ରାଜନ
ଏ ମହୀମଣ୍ଡଳେ ଏକ ସୁଦୁଷ୍କର ଦାନ ।
ତା ତହୁଁ ଅଧିକଥିବା ଦେଖା ଯାଉନାହିଁ
ଧନଲୋଭେ ପଡ଼ି ଜନ ଜୀବନ ହରାଇ ।
ସମୁଦ୍ରେ ପଶଇ ପୁଣି ବଣରେ ପଶଇ
କେହି ଧନଲୋଭେ ଶ୍ୱାନପ୍ରାୟ ସେବୁଥାଇ ।
ଧନଲୋଭରେ ବହୁତ କ୍ଳେଶ କେହି ସହି
ଧନଲୋଭେ ପଡ଼ି ପ୍ରାଣୀ ହିଂସା କରେ କେହି ।
କୃଷି ବାଣିଜ୍ୟ କରନ୍ତି ଧନ ଲୋଭେ ଲୋକେ
ଧନଲୋଭେ ଖଣ୍ଡବୃତ୍ତି କରିଥାନ୍ତି ଥୋକେ ।
ବହୁତ ଦୁଃଖେ ହୁଅଇ ଧନ ଅରଜନ
ସଞ୍ଚନ୍ତି ପ୍ରାଣୁ ଅଧିକ କରି ତାକୁ ଜନ ।
ସେ ଧନ ଛାଡ଼ିବା ଅତି ଦୁଷ୍କର  ହୁଅଇ
ବିଶେଷରେ ମନମଧ୍ୟେ ବୁଝ ନରସାଇଁ ।
ନ୍ୟାୟେ ଉପାର୍ଜିତ ଧନ ଅତି ଶରଧାରେ
ସତ ପାତ୍ରେ ଦାନ ଦେଲେ ବିଧି ବିଧାନରେ ।
ତହିଁର ଫଳ ଅନନ୍ତ କହି ନ ହୁଅଇ
ଶ୍ରଦ୍ଧା ଦେବୀ ସଙ୍ଗେ ଧର୍ମ ଯେବେ କି ମିଶଇ ।
ତେବେ ସେହି ଶ୍ରଦ୍ଧା ଦେବୀ  ହୁଅଇ ପାବନୀ
ସାବିତ୍ରୀ ଆବର ହୁଏ ପ୍ରସବକାରିଣୀ ।
ବିଶ୍ୱତାରିଣୀ ସଂସାର ସମୁଦ୍ର ତାରିଣୀ
ଶ୍ରଦ୍ଧାରେ ଯେ ରୂପ ଧର୍ମ ସଞ୍ଚେ ମହାପ୍ରାଣୀ ।
ରାଶି ରାଶି ଧନ ବ୍ୟୟ କଲେହେଁ ତେସନ
ଧର୍ମ ସଞ୍ଚି ନ ପାରନ୍ତି ମହାତମା ଜନ ।
ଅକିଞ୍ଚନ ମୁନିଙ୍କର ଶ୍ରଦ୍ଧା ଏକା ଧନ
ଶ୍ରଦ୍ଧା ଧର୍ମ ବଳେ ସ୍ୱର୍ଗେ କରନ୍ତି ଗମନ ।
ଅନେକ ପ୍ରକାର ଦାନ ଅଛଇ ନୃପତି
ତା ଭିତରେ ଅନ୍ନ ଦାନ ଦିଏ ସଦଗତି ।
ଅନ୍ନ ଦାନଠାରୁ ବଡ଼ ଦାନ ଆଉ ନାହିଁ
ଇହଲୋକେ  ପରଲୋକେ ଜାଣ ନରସାଇଁ ।
ଅନ୍ନଦାନ ଆପଣାକୁ କରଇ ଉଦ୍ଧାର
ଅନ୍ନ ଦାନଠାରୁ ହିତ ନାହିଁ ଯେ ଆବର ।
ସୁଖ ସମ୍ପଦ କେବଳ ଦିଏ ଅନ୍ନ ଦାନ
ଶ୍ରଦ୍ଧାରେ ନିର୍ମଳ ମନେ ଯେବେ କେହି ଜନ ।
ପାତ୍ର ଦେଖି ଯଥାବିଧି ଅନ୍ନଦାନ କରେ
ତାହାର ଫଳ ସେ ଭୋଗେ ଜନ୍ମଜନ୍ମାନ୍ତରେ ।
ଶରଧାରେ ଏକ ମୁଠା କିବା ଏକ ଗ୍ରାସେ
କିବା ଏକ ପ୍ରସ୍ଥଅନ୍ନ ଦିଅଇ ହରଷେ ।
ସେ ଦାନ ଫଳ ଅକ୍ଷୟ ଜାଣିବ ରାଜନ
ଯେବେ କରି ନ ପାରିବ ପ୍ରସ୍ଥ ମୁଷ୍ଟି ଦାନ ।
ବୁଦ୍ଧିବଳେ ଶ୍ରଦ୍ଧା ଭକତିରେ ପର୍ବଦିନେ
ଏକ ବ୍ରାହ୍ମଣକୁ ତୋଷ କରାଇ ଭୋଜନେ ।
ତହିଁରେ ସେ ଅନ୍ନଦାନ କଲାଫଳ ପାଇ
କେବଳ ଅନ୍ନ ଦାନର ବଳେ ନରସାଇଁ ।
ଜନ୍ମ ଜନ୍ମାନ୍ତରେ ତାକୁ ମିଳିବ ଭୋଜନ
ପୂର୍ବଜନ୍ମେ କରିଥିବ ଯେବେ ଅନ୍ନଦାନ ।
ଯେଉଁ ଅନ୍ନ ଦେଇଥିବ ତାହା ସେ ପାଇବ
ପ୍ରତିଦିନ ତାହାକୁ ଯେ ତାହା ମିଳୁଥିବ ।
ଅନ୍ନଦାନ ଦିଅନ୍ତି ଯେ ବ୍ରାହ୍ମଣଙ୍କ ହସ୍ତେ
ମିଷ୍ଟାନ୍ନ ଭୁଞ୍ଜନ୍ତି ଅନ୍ନଦାନ ସେ ସମସ୍ତେ ।

ଅନ୍ନକୁ ପ୍ରାଣ ବୋଲନ୍ତି ଦେବ ଋଷିଗଣ
ଅମୃତରୁ ଉତପନ୍ନ ହୁଅଇ ସେ ଅନ୍ନ ।
ଯେ ଜନ ଅନ୍ନ ଦିଅଇ ସେ ପ୍ରାଣ ଦିଅଇ
ଏଣୁ ତୁମ୍ଭେ ଅନ୍ନଦାନ କର ନରସାଇଁ ।
ଜୈମିନି ମୁଖୁ ଏମନ୍ତ ଶୁଣି ସେ ରାଜନ
ପୁନରପି ପଚାରିଲେ ବୁଝିବା କାରଣ ।
ଦୀନ ଗୋପୀନାଥ ବୋଲେ ଅନ୍ନଦିଅ ଭାଇ
ଅନ୍ନ ଦାନଠାରୁ ଦାନ ବଡ଼ କିଛି ନାହିଁ ।

ଇତି ଶ୍ରୀ ପଦ୍ମ ପୁରାଣେ ଭୂମିଖଣ୍ଡେ
ବେନୋପାଖ୍ୟାନେ ସୁବାହୁ
ରାଜୋପାଖ୍ୟାନେ ଚତୁର୍ଣ୍ଣବତି-
ତମୋଽଧ୍ୟାୟଃ ।



## ପଞ୍ଚନବତି ଅଧ୍ୟାୟ

### ଜୈମିନୀର ସ୍ୱର୍ଗଗୁଣ ବର୍ଣ୍ଣନ

ସୁବାହୁ ରାଜା କହିଲେ ଆହେ ଦ୍ୱିଜବର
କହିବା ହେଉ କି ଗୁଣ ଅଛଇ ସ୍ୱର୍ଗର ।
ତୁମ୍ଭ କହିବାର କଥା ସବୁ କହିବଇଁ
ଜୈମିନି କହିଲେ ତାହା ଶୁଣ ନରସାଇଁ ।
ସ୍ୱର୍ଗରେ ଅଛି ନନ୍ଦନ ନାମେ ଏକ ବନ
ସୁନ୍ଦର ମନୋହର ସେ ରମଣୀୟ ସ୍ଥାନ ।
ନାନା ପ୍ରକାର ଉଦ୍ୟାନ ଅଛି ତା ମଧ୍ୟରେ
ଚାରିଆଡ଼େ ଶୋଭାପାଏ ବୃକ୍ଷ ସମୂହରେ ।
ସକଳ କାମନା ଫଳ ତହିଁରେ ଫଳଇ
ଦିବ୍ୟବିମାନ ବହୁତ ସ୍ୱର୍ଗରେ ଅଛଇ ।
ସେ ବିମାନେ ଅପସରାଗଣ ବିରାଜନ୍ତି
ଯହିଁକି ଇଚ୍ଛା ତହିଁକି ସେ ଯାଇ ପାରନ୍ତି ।
ଚିତ୍ର ବିଚିତ୍ର ହୋଇଛି ସକଳ ବିମାନ
ଲମ୍ବଇ ମୁକୁତା ମାଳ ମାଳ ଅର୍କବର୍ଣ୍ଣ ।
ସେ ସକଳ ଶୁଭ୍ର ଚନ୍ଦ୍ର ମଣ୍ଡଳ ପରାୟେ
ହେମ ଶଯ୍ୟା ହେମାସନ ସଜ୍ଜା ତହିଁ ରାୟେ ।
ସ୍ୱର୍ଗେ ଥିବା ନରଗଣ ମହାପୁଣ୍ୟବନ୍ତ
ସର୍ବପୂର୍ଣ୍ଣ କାମ ସର୍ବ ଦୁଃଖେ ବିବର୍ଜିତ ।
ବିଚରନ୍ତି ଭୂମିତଳ ପ୍ରାୟେ ସେହିସ୍ଥାନେ
ନାସ୍ତିକ ଚୋର ଇନ୍ଦ୍ରିୟ ଆସକତ ଜନେ ।
ତହିଁ ଯାଇ ନ ପାରନ୍ତି ଜାଣିଥା ରାଜନ
ଆବର ନୃଶଂସ କିବା କୃତଘ୍ନ ପିଶୁନ ।
ସେ ସ୍ଥାନକୁ କେତେବେଳେ ଯାଇ ନ ପାରନ୍ତି
ତପୀ ସତୀବାଦୀ ଶୂର ଦୟାବନ୍ତ ଯଦି ।
କ୍ଷମାଶୂର ଦାନଶୂର ଯାଗଶୂର ଜନେ
ସୁଖ ଭୋଗ କରୁଥାନ୍ତି ରହି ସେହିସ୍ଥାନେ ।
ଜରା ନାହିଁ ମୃତ୍ୟୁ ନାହିଁ ଶୋକନାହିଁ ତହିଁ
ହିମ ନାହିଁ ଖରା ନାହିଁ ବରଷାହିଁ ନାହିଁ ।
କ୍ଷୁଧା ପିପିସାହିଁ ନାହିଁ ନାହିଁ କିଛି ଗ୍ଲାନୀ
ଆହୁରି ଯେ ସବୁ ଅଛି ଶୁଣ ନୃପମଣି ।
କର୍ମଫଳ ଭୋଗ କରେ ପ୍ରାଣୀ ସେହିସ୍ଥାନେ
ଆଉକିଛି ପୁଣ୍ୟ କରି ନ ପାରନ୍ତି ଜନେ ।
ଏହି ଗୋଟା ମହା ଦୋଷ ସ୍ୱର୍ଗ ଭୁବନର
ସୁଖ ସମ୍ପଦ ଦେଖିଣ ପୁଣି ତାହାଙ୍କର ।
ସ୍ୱର୍ଗ ବାସୀଜନଙ୍କର ମନେ ଅସନ୍ତୋଷ
ତଳେ ପକାଇ ଦିଅନ୍ତି ମନେ ବହି ରୋଷ ।
ଏହା ନାମ କର୍ମଭୂମି ସେହି ଫଳ ଭୂମି
ଏଥି କର୍ମଫଳ ତହିଁ ଭୋଗକରେ ପ୍ରାଣୀ ।
ସକଳ ଶୁଣି ସୁବାହୁ ବୋଇଲେ ଆପଣ
ଯାହା କହିଲ ଏଦୋଷ ନୋହେ ସ୍ୱର୍ଗଗୁଣ ।
ଯେ ସବୁ ସ୍ଥାନ ନିର୍ଦ୍ଦୋଷ ନିତ୍ୟ ଦ୍ୱିଜବର
ସେ ସବୁ ସ୍ଥାନ କହନ୍ତୁ ମୋର ଅଗ୍ରତର ।
ଏମନ୍ତ ଶୁଣି ବୋଇଲେ ବ୍ରାହ୍ମଣ ଜୈମିନି
ବ୍ରହ୍ମଲୋକଠାରୁ ଲୋକ ଅଛି ଯେତେ ପୁଣି ।
ସବୁ ଲୋକ ଦୋଷ ଅଛି ଜାଣିଥା ରାଜନ
ଏଣୁ ତହିଁକି ଅମଙ୍ଗ ଯେଣେ ଜ୍ଞାନୀଜନ ।
ବିଷ୍ଣୁ ଲୋକ ବ୍ରହ୍ମଲୋକ ଉପରେ ଅଛଇ
ସେ ପୁର ଗୋଟା ପରମପଦ ଯେ ବୋଲାଇ ।
ସୁଭ୍ର ସନାତନ ପୁଣ୍ୟ ଜ୍ୟୋତିର୍ମୟ ପୁର
ଶୂନ୍ୟ ମଧ୍ୟେ ମହାଶୂନ୍ୟ ପରଂବ୍ରହ୍ମଘର ।
ବିଷୟାସକତ ମୂଢ଼ ଅଜ୍ଞାନୀ ପୁରୁଷେ
ତହିଁ ପଶି ନ ପାରନ୍ତି ତାଙ୍କୁ ସେ ନ ଦିଶେ ।
ଦାମ୍ଭିକ ଯେ ମୋହଗ୍ରସ୍ତ ଭୟାଳୁ ଆବର
ଦ୍ରୋହୀ କ୍ରୋଧୀଲୋଭୀ ଖଳ ହିଂସ୍ରକ ଯେନର
ତହିଁକି ଯିବାକୁ ନାହିଁ ତାଙ୍କ ଅଧିକାର
ନିର୍ଦ୍ୱନ୍ଦ୍ୱ ନିର୍ମଳ ଯତି ଯୋଗୀ ସାଧନର ।

ଅହଂକାର ଶୂନ୍ୟ ହରି ଭକତ ଯେତେକ
ସେମାନଙ୍କ ପାଇଁ ଜାଣ ଅଛି ସେହିଲୋକ ।
ଯାହା ପଚାରିଲ ତାହା କହିଲି ବୁଝାଇ
ସବୁ ଶୁଣିସାରି ପୁଣି ତାଙ୍କୁ ନରସାଇଁ ।
ବୋଇଲେ ଭୋ ମୁନି ସ୍ୱର୍ଗେ ଯିବି ନାହିଁନାହିଁ
ଯହିଁରେ ପତନ ଅଛି ତା କରିବି ନାହିଁ ।
ଦାନ ମୁଁ ଦେବଇଁ ନାହିଁ ଶୁଣ ମୁନିବର
ଦାନର ଫଳେ ପାଇବି ସିନା ସ୍ୱର୍ଗପୁର ।
ଆଉ କିଛି ପୁଣ୍ୟ ତହିଁ ନ ପାରିବି କରି
ଦେବଲୋକେ ପେଲିଦେବେ ମତେକୋପଧରି ।
ମଧ୍ୟେ ରହିବାକୁ ସ୍ଥାନ ନାହିଁ ପୁଣି ମୋର
ଭୂମିରେ ଆସି ପଡ଼ିବି ସିନା ମୁନିବର ।
କହିସାରି ଶେଷେ ଶୁଣି କହିଲେ ଏମନ୍ତ
ଦେବଦେବ କମଳାର ପତି ଯେ ଅନନ୍ତ ।
ଧ୍ୟାନଯୋଗ ବଳେ ତାଙ୍କ ଚରଣ ସେବିବି
ଦାହ ପ୍ରଳୟର ହିତ ବିଷ୍ଣୁଲୋକେ ଯିବି ।
ଜୈମିନି କହିଲେ ରାଜା କହୁଛୁ ଯା ସତ
ସକଳ ମଙ୍ଗଳମୟ ତୁ ନୃପତି ସୁତ ।
ଧର୍ମପାଳକ ନୃପତିଗଣଙ୍କ ଏ ମତ
ଅଧର୍ମୀ କରନ୍ତି ଲୋକେ ସଦା ହନ୍ତସନ୍ତ ।
ବିଷ୍ଣୁଙ୍କୁ ପୂଜା କରନ୍ତି ସଦା ଯଜ୍ଞେ ବରି
ଯଜ୍ଞର ମୂଳ ଯେ ଦାନ ଜାଣ ଦଣ୍ଡଧାରୀ ।
ତହିଁରେ ସବୁହୁଁ ବଡ଼ ଆଗ ଅନ୍ନଦାନ
ତହୁଁ ବସନ ତାମ୍ବୁଳ ଆବର କାଞ୍ଚନ ।
ତାପରେ ଭୂମି ଗୋଦାନକରି ଲେଖାହୋଇ
ଏବିଧିରେ ଯଜ୍ଞକଲେ ବିଷ୍ଣୁଲୋକ ପାଇ ।
ଦାନ ପ୍ରସାଦେ ନୃପତି ଲଭନ୍ତି ତୃପତି
ମହାତମା ତପୀଗଣ ଯେତେକ ଅଛନ୍ତି ।
ଯଜ୍ଞ କରନ୍ତି ଆଶ୍ରମେ ରହି ଭିକ୍ଷାକରି
ସେହି ତପୋଧନଗଣ ଆହେ ଦଣ୍ଡଧାରୀ ।
ଯଜ୍ଞଭାଗ କଳପନା କରି ଭିକ୍ଷା ଅର୍ଥେ
ତହିଁରୁ ଯେ ଏକ ଭାଗ ବିପ୍ରଙ୍କ ନିମନ୍ତେ ।
ଗୋରୁଙ୍କ ଗ୍ରାସ ନିମନ୍ତେ ଏକଭାଗ ଦେଇ
ଭାଗେ ପାଖେଥିବା ସାଧୁ ସଜ୍ଜନ ପାଇଁ ।
ଅନ୍ନଦାନେ ମାନବର କ୍ଷୁଧା ତୃଷା ନାହିଁ
ବିଷ୍ଣୁଲୋକକୁ ଗମନ କରେ ନରସାଇଁ ।

ଏଣୁ ନ୍ୟାୟେ ଉପାର୍ଜିତ ଧନ ଦାନ କର
ଦାନ କଲେ ତହିଁ ଜ୍ଞାନ ହୋଇବ ତୁମ୍ଭର ।
ଜ୍ଞାନରୁ ସିଦ୍ଧି ପାଇବ ନିଶ୍ଚେଁ ନୃପମଣି
ଉତ୍ତମ ଏ ପୁଣ୍ୟକଥା ଯେ ଶ୍ରଦ୍ଧାରେ ଶୁଣି ।
ସର୍ବ ଅର୍ଥ ସିଦ୍ଧି ତାର ହୋଇବ ନିଶ୍ଚୟ
ତା ଦେହରୁ ସର୍ବ ପାପ ଯିବ ନିଶ୍ଚେ କ୍ଷୟ ।
ବିଷ୍ଣୁ ଲୋକକୁ ଗମନ କରିବ ଯେ ପୁଣି
ଗୋପୀନାଥ ଦିନରାତି ଭଜେ ଚକ୍ରପାଣି ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ଜୈମିନିର ସ୍ୱର୍ଗଗୁଣ
ବର୍ଣ୍ଣନେ ପଞ୍ଚନବତିତମୋଽଧ୍ୟାୟଃ ।



## ଷଣ୍ଣବତିମ ଅଧ୍ୟାୟ

### ନର୍କଗାମୀ ଓ ସ୍ୱର୍ଗଗାମୀ ବର୍ଣ୍ଣନ

ସୁବାହୁ କହିଲେ ପୁଣି କହ ପୁରୋହିତେ
ନରକେ ପଡ଼ନ୍ତି କି କି କର୍ମ କରି ଏଥେ ।
କି କି କର୍ମ କରି ଜନେ ସ୍ୱର୍ଗରେ ବସନ୍ତି
ଜୈମିନି କହିଲେ ଶୁଣ ତୁହୋ ନରପତି ।
ଯେଉଁ ଦ୍ୱିଜ ପୁଣ୍ୟ ବ୍ରହ୍ମ ଧର୍ମ ତେଜି ଲୋଭେ
କୁକର୍ମ କରି ବଞ୍ଚନ୍ତି ପୁଣି ମତ୍ତ ଗର୍ବେ ।
ମରଣାନ୍ତେ ନରକରେ ପଡ଼ନ୍ତି ସେ ଯାଇଁ
ଯେତେକ ନାସ୍ତିକ ଶେଷେ ନର୍କ ଭୋଗପାଇ ।
ନିଜର ଛାଡ଼ି ଯେ ପରମର୍ଯ୍ୟାଦା ରଖଇ
ଆପଣାର ମର୍ଯ୍ୟାଦାରେ ଆସ୍ଥା ପୁଣି ନାହିଁ ।
ସେ ଜନ ଶେଷେ ନରକକୁଣ୍ଡେ ପଡ଼େ ଯାଇଁ
ଏହିପରି ଧର୍ମଶାସ୍ତ୍ରେ ମୁନିଜନ କହି ।
କାମେ ଆଉ ବିଷୟରେ ଉନ୍ମୁଖ ଯେ ଜନ
ସେ ଶେଷେ ନରକଭୋଗ କରଇ ରାଜନ ।
ଦାମ୍ଭିକ କୃତଘ୍ନ ଜନେ ନରକେ ପଡ଼ନ୍ତି
ବିପ୍ରଙ୍କୁ ମୁଁ ଧନଦେବି କହି ନ ଦିଅନ୍ତି ।
ତାଙ୍କର ନରକବାସୀ ଦେହାନ୍ତରେ ଜାଣ
ବ୍ରହ୍ମସ୍ୱ ହରଣ କାରୀ ନରକେ ପତନ ।
ମିଥ୍ୟାବାଦୀ ଖଳଙ୍କର ନରକହିଁ ଗତି
ପରକୁ ଅମାନ୍ୟ କଲେ ନର୍କରେ ପଡ଼ନ୍ତି ।

ଅସମ୍ବନ୍ଧ ପ୍ରଳାପୀର ନରକ ଗମନ
ଶୋଇବା ଲୋକର ନିଦ୍ରା ଭଙ୍ଗାନ୍ତି ଯେ ଜନ ।
ତାଙ୍କର ନରକ ବାସ ନିଶ୍ଚେ ନୃପବର
ପରଛିଦ୍ର କହି ବୁଲୁଥାନ୍ତି ଯେତେ ନର ।
ତାହାଙ୍କର ନର୍କଗତି ମରଣାନ୍ତେ ଜାଣ
ପର ଦୋଷକୁ ଲୁଚାଇ ଦିଅନ୍ତି ଯେ ପୁଣ ।
ଆବର ଯେ ପରସ୍ତିରୀ ହରଣ କରଇ
ନରକକୁଣ୍ଡେ ପଡ଼ନ୍ତି ଶେଷରେ ସେ ଯାଇ ।
ପ୍ରାଣୀପ୍ରାଣ ହିଂସାକାରୀ ନିରତ ଯେ ଜନ
ତାହାର ନରକ ଭୋଗ ନିଶ୍ଚୟ ରାଜନ ।
ପରନିନ୍ଦା କାରୀ ଜନ ନରକେ ପଡ଼ଇ
କୂପ ତଡ଼ାଗ ପୋଖରୀ ଯେ ଭାଙ୍ଗି ଦିଅଇ ।
ସ୍ତିରୀ ପୁତ୍ର ଭୃତ୍ୟଙ୍କୁ ଯେ ନ ପୋଷଇ ଜାଣ
ବହୁତ ପୀଡ଼ା ତାହାଙ୍କୁ ଦିଅଇ ଯେ ପୁଣ ।
ଅତିଥିଙ୍କି ଘଉଡ଼ାଇ ଦିଅଇ ଯେ ଘରୁ
ପିତୃ ଦେବତାଙ୍କୁ ଯେହୁ ପାସୋରେ ମନରୁ ।
ତାହାଙ୍କୁ ସେ ନ ଭୁଞ୍ଜାଇ ଭୁଞ୍ଜଇ ଆପଣେ
ସନ୍ନ୍ୟାସୀର ଦୋଷ ଯେହୁ କରେ ମୁଢ଼ପଣେ
ଆଶ୍ରମର ଦୋଷକାରୀ ମିତ୍ର ଦ୍ରୋହୀ ଜନ
ଏମାନେ ଶେଷେ ନରକେ କରନ୍ତି ଗମନ ।
ଯେ ଲୋକ ମନରେ ଶିବ ବିଷ୍ଣୁ ନ ଚିନ୍ତଇ
ଯଜ୍ଞ ଅଙ୍ଗ ଭାଙ୍ଗି ପୁଣି ଯଜ୍ଞକୁ ଭାଙ୍ଗଇ ।
ବନ୍ଧୁତା ଭାଙ୍ଗଇ ଭାଙ୍ଗେ କନ୍ୟା ବିଭାଘର
ଗୁରୁକୁଳ ଦୋଷକାରୀ ଅଟଇ ଯେ ନର ।
ବାଟରେ ଯେ କାଠକଣ୍ଟା ପଥର ପକାଇ
ଯିବା ଆସିବାର ପଥ ଯେବା ନିରୋଧଇ ।
ସକଳ ପ୍ରଣୀଙ୍କଠାରେ ଅବିଶ୍ୱାସ ଯାର
ବିଶ୍ୱାସ ଘାତକା ପୁଣି ଅଟଇ ଯେ ନର ।
ଯେ କାମାତୁର ଯାହାର ସ୍ୱଭାବହିଁ ଖଳ
ଭୋଜନ ନିମନ୍ତେ ଆସିଥିବା ଦ୍ୱିପ୍ରକୁଳ ।
ତାହା ଭଙ୍ଗାଇ ଯେ ଦିଏ ବାହାର କରାଇ
କ୍ଷେତ୍ରଛେଦି ବୃତ୍ତିଛେଦି ଯେ ପୁଣି ଅଟଇ ।
ପରଘର ଭାଙ୍ଗିଦିଏ ପ୍ରୀତି ଭାଙ୍ଗି ଦିଏ
ଆଶା କରିଥିବା ଜନ ଆଶ୍ରାକୁ ଭଙ୍ଗାଏ ।
ଶଲ୍ୟଧନୁ ଶସ୍ତ୍ର ଆଦି ଯେ ଜନ ଗଢ଼ଇ
ତାହାକୁ ପୁଣି ସେ ନେଇ ବିକ୍ରୟ କରଇ ।

ଅନାଥ ବିକ୍ଲବ ଦୀନ ରୋଗୀ ବୃଦ୍ଧ ଜନେ
ଦେଖି ପୁଣି ଦୟା ନ କରଇ ଯାର ମନେ ।
ଆଗ ନିୟମ ଲଙ୍ଘନ କରି ଯେଉଁଜନ
ପଛେ ଅଜିତ ଇନ୍ଦ୍ରିୟ ହୁଅଇ ସେ ପୁଣ ।
ଚଞ୍ଚଳ ଚିତ୍ତ ହୋଇ ଯେ ନିୟମ ଲଙ୍ଘଇ
ନରକଗାମୀ ଏମାନେ ଜାଣ ନରସାଇଁ ।
ସ୍ୱର୍ଗଗାମୀଙ୍କର କର୍ମ ଶୁଣ ତୁ ରାଜନ
ସତ୍ୟ ତପ କ୍ଷମାଦାନ ଧର୍ମ ଅଧ୍ୟୟନ ।
ଯେ ଏହା କରନ୍ତି ଯାଇଁ ସ୍ୱର୍ଗରେ ବସନ୍ତି
ଧ୍ୟାନ କରନ୍ତି ଯେ ହୋମ କରନ୍ତି ଯେ ନିତି ।
ନିତ୍ୟ ଦେବାର୍ଚ୍ଚନରତ ଅଟଇ ଯେ ପୁଣି
ଉତ୍ତମ ଦାନ ପାଇଲେ ଶ୍ରଦ୍ଧାରେ ଯେ ଘେନି ।
ସର୍ବଦା ଯେ ଶୁଚିମନ୍ତ ଶୁଚି ସ୍ଥାନେ ରହେ
ଭକତି ଯାହାର ଥାଇ ବାସୁଦେବ ପାୟେ ।
ବିଷ୍ଣୁସ୍ତୋତ୍ର ପଢ଼ଇ ଯେ ବିଷ୍ଣୁନାମ ଗାଇ
ନିରତେ ମାତା ପିତାର ଯେ ସେବା କରଇ ।
ଯେଉଁଜନ ନ ଦେଖଇ ଦିବସେ ସ୍ୱପନ
ସକଳ ପ୍ରକାର ହିଂସା ନ କରେ ଯେ ଜନ ।
ସବୁରି ହିତରେ ଥାଏ ସାଧୁସଙ୍ଗ କରେ
ମରଣ ଅନ୍ତେ ବସନ୍ତି ଏମାନେ ସ୍ୱର୍ଗରେ ।
ସକଳ ପ୍ରକାର ଲୋଭ ନ ଥାଇ ଯାହାର
ଯେ ଯାହା କହୁ ବା କରୁ ସହେ ଯେଉଁନର ।
ଯେ ଜନ ସବୁ ପ୍ରାଣୀର ଆଶ୍ରା ହୋଏ ପୁଣି
ଏ ସବୁ ଜନେ ସ୍ୱର୍ଗକୁ ଯାନ୍ତି ନୃପମଣି ।
ଯେ ସେବାରେ ମାନଦାନକରେ ଗୁରୁଜନେ
ଦାନ ନ ଘେନଇ ଯେହୁ ଆପଣା ଜୀବନେ ।
ପରିବେଶଣକାରୀ ଯେ ସହସ୍ର ଲୋକର
ସହସ୍ର ଦାନ ଦିଅଇ ଜାଣ ଯେଉଁ ନର ।
ସହସ୍ର ଲୋକକୁ ରକ୍ଷା ଯେ କରି ପାରଇ
ଭୟ ଶୋକ ପାପରୁ ଯେ ଜନ ଉଦ୍ଧରଇ ।
ଦରିଦ୍ର ରୋଗିକି ରକ୍ଷାକରେ ଯେଉଁଜନ
ଆପଣା ରୂପେ ପ୍ରାଣୀକି ଦେଖଇ ହେ ପୁଣ ।
ଜିତେନ୍ଦ୍ରିୟ ହୁଅଇ ଯେ ଯଉବନ କାଳେ
ସ୍ୱଭାବ ଧୀର ଯାହାର ପୁଣି ସବୁବେଳେ ।
ଗୋରୁ ସୁନା ଭୂମି ଅନ୍ନ ବସନ ଦିଅଇ
ଏମାନେ ଜାଣ ସ୍ୱର୍ଗକୁ ଯାନ୍ତି ନରସାଇଁ ।

ଧାନପୂର୍ଣ୍ଣ ଗୃହ ଦାନ କରଇ ଯେ ଜନ
ଶତ୍ରୁ ଦୋଷ ଗୁଣି ପୁଣି ନ କରେ ବର୍ଣ୍ଣନ ।
ପରର ଶିରୀ ଦେଖି ଯେ ନ ହୋଇ କାତର
ଆନନ୍ଦ ହୋଇ ପ୍ରଶଂସା କରେ ବାରମ୍ବାର ।
ଏମାନେ ସ୍ୱର୍ଗପୁରକୁ କରନ୍ତି ଗମନ
ସ୍ୱର୍ଗେ ବାସକରେ ପାଳେ ଯେ ବିଧି ବିଧାନ ।
ପ୍ରିୟ ମଧୁର କଥା ଯେ କହେ ସବୁବେଳେ
ଅପ୍ରିୟ କଥା ନ କହେ ପୁଣି କେତେବେଳେ ।
ସେମାନେ ସ୍ୱର୍ଗପୁରକୁ କରନ୍ତି ଗମନ
ଭୋକୀ ଶୋଷି ବାଟୋଇଙ୍କୁ ଦିଏ ଜଳ ଅନ୍ନ ।
ଆର୍ତ୍ତ ଦୁଃଖିତକୁ ଯେହୁ ପ୍ରବୋଧ ଦିଅନ୍ତି
ସେମାନେ ଜାଣ ରାଜନ ସ୍ୱର୍ଗରେ ବସନ୍ତି ।
କୂଅ ବାଙ୍ପୀ ପୋଖରୀ ଯେ ଖୋଳାଇଦିଅଇ
ତଡ଼ାଗ ପ୍ରପା ଖୋଳାଇ ଘର ତୋଳିଦେଇ
ଅସତ୍ୟାପ୍ରତି ଯେ କରେ ସଦ ବ୍ୟବହାର
କୁଟିଳଜନେ ସରଳ ବ୍ୟବହାରୀ ନର ।
ଶତ୍ରୁଠାରେ କରଇ ଯେ ମିତ୍ର ଆଚରଣ
ଏମାନେ ସ୍ୱର୍ଗେ ବସନ୍ତି ଜାଣ ନୃପରାଣ ।
ଯେଉଁ ଯେଉଁ କୁଳେ ଜନ୍ମି ଯେବେ କେହିନର
ଶଏବରଷ ବଞ୍ଚଇ ଜାଣ ନୃପବର ।
ବହୁତ ପୁତ୍ର ତାହାର ହୁଅଇ ଯେ ପୁଣି
ସ୍ୱର୍ଗସୁଖ ଭୋଗକରେ ଜାଣ ସେହି ପ୍ରାଣୀ ।
ସଦାଚାରୀ ଧର୍ମାଚାରୀ ବ୍ରତାଚାରୀ ନରେ
ମରଣାନ୍ତେ ବସନ୍ତି ସେ ଯାଇଁ ସ୍ୱର୍ଗପୁରେ ।
ଆକ୍ରୋଶକାରୀ ଆବର ସ୍ତୁତିକାରୀ ଜନେ
ସମାନ ଦେଖେ ସେ ବସେ ଅମର ଭୁବନେ ।
ଶାନ୍ତ ଆତ୍ମାଜିତ ଆତ୍ମା ସ୍ୱର୍ଗେ ବସେ ଯାଇଁ
ଭୟତ୍ରସ୍ତା ବାହ୍ମଣୀକି ଯେ ଜନ ରଖଇ ।
ତାହାର ସ୍ୱର୍ଗେ ବସତି ଜାଣ ନୃପବର
ଭାଗୀରଥି ଗଙ୍ଗାତୀରେ ପୁଷ୍କରେ ଆବର ।
ପିଣ୍ଡଦାନ କରେ ସେହି ସ୍ୱର୍ଗରେ ବସଇ
ଇନ୍ଦ୍ରିୟ ବଶେ ନଥିବା ଜନେ ସ୍ୱର୍ଗଯାଇ ।
ସଂଯମୀଜନ ସ୍ୱର୍ଗରେ ବସଇ ରାଜନ
ଆବର ଯେ ଲୋଭ ଭୟକ୍ରୋଧ ତ୍ୟାଗୀଜନ ।
ଯୂକାମକୁଣ ଡାଆଁସ ଆଦି ଜୀବ ଯେତେ
ତାହାଙ୍କୁ ଯେ ପୁତ୍ରସମ ପାଳୁଥାଇ ନିତ୍ୟେ ।

ତାହାର ସ୍ୱର୍ଗେ ବସତି ଜାଣିଥା ରାଜନ
ଶାସ୍ତ୍ରେ ଏହା ଲେଖିଛନ୍ତି ସାଧୁ ସୁଜ୍ଞଜନ ।
ଜାଣି ବା ନ ଜାଣି କରେ ଯେ କିଛି ସଞ୍ଚୟ
ସେ ସକଳ ଦ୍ୱନ୍ଦ ସହେ ଜାଣ ମହାରାୟ ।
ପବିତ୍ରକର୍ମେ ଯାହାର ମନ ନିତ୍ୟେ ଥାଇ
ପରଦାର ଗମନ ଯେ ନର ନକରଇ ।
ନିନ୍ଦିତ କର୍ମ ନ କରେ ସଦ୍‌ଗୁଣେ ରହି
ବିଧିବିଧାନକର୍ମକୁ କ୍ଷଣେ ନ ଛାଡ଼ଇ ।
ଏମାନେ ସ୍ୱର୍ଗେ ଗମନ କରନ୍ତି ରାଜନ
ସୁଗତି ସୁର୍ଗତି ସବୁ କଲଇଁ ବର୍ଣ୍ଣନ ।
ପରର ମନ୍ଦ ଯେ କରେ ନରକେ ସେ ପଡ଼େ
ପରର ଯେ ଭଲକରେ ମୋକ୍ଷତାକୁଲୋଡ଼େ ।
ହରି ହରି ବୋଲ ଭାଇ ସଂସାରୁ ତରିବ
ଦୀନ ଗୋପୀନାଥ ଭଜେ ମୁକୁନ୍ଦ ମାଧବ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ନର୍କଗାମୀ ଓ ସ୍ୱର୍ଗଗାମୀ
ବର୍ଣ୍ଣନେ ଷଣ୍ଣବତିତମୋଽଧ୍ୟାୟଃ ।



## ସପ୍ତନବତି ଅଧ୍ୟାୟ

## ସୁବାହୁ ଚରିତ

କୁଞ୍ଜଳ କହଇ ପୁତ୍ର ଶୁଣ ଏଥୁଅନ୍ତେ
ଧର୍ମାଧର୍ମ କଥା ମୁନି କହିଲେ ଏମନ୍ତେ ।
ସବୁ ଶୁଣି ଶୁଣି ପୁଣି କହଇ ନୃପତି
ଧର୍ମ କରିବି ମୁଁ ପୂଣ୍ୟ କରିବି ହେ ଯଦି ।
ପୂଜିବି ପୁଣି ଜଗତକର୍ତ୍ତା ବାସୁଦେବ
ମୁନିଙ୍କି ଏରୂପେ କହି ସେହି ନରଦେବ ।
ମଧୁସୁଦନଙ୍କୁ ହୋମେ ନମେ ଜପେ ପୂଜି
ଯଜ୍ଞ ତପ କରି ହରି ପାଦପଦ୍ମେ ମଜ୍ଜି ।
ମରଣାନ୍ତେ ବଇଷ୍ଣବ ଲୋକେ ସେ ପାଇଲା
ଦେବାଧି ଦେବରାୟଙ୍କୁ ଦେଖି ନ ପାରିଲା ।
କ୍ଷୁଧା ତୃଷାରେ ପୀଡ଼ିତ ହୋଇ ସେ ନୃପତି
ବହୁତ କଷ୍ଟ ପାଇଲା ଭାରିଯା ସଙ୍ଗତି ।
ଇଷ୍ଟଦେବ ଶ୍ରୀବିଷ୍ଣୁଙ୍କୁ ଦେଖି ନ ପାରଇ
ଶଉନକ ଆଗେ ସୂତମୂନି ଯେ କହଇ ।
ରାଜାରାଣୀ ଦୁହେଁ ଭୋକ ଶୋଷରେ ବ୍ୟାକୁଳ
ଖୋଜନ୍ତି ତହିଁ ନ ମିଳେ ତାଙ୍କୁ ଅନ୍ନଜଳ ।

ସବୁ ଆଭରଣେ ସବୁ ଅଙ୍ଗ ଶୋଭାପାଇ
ବସନ ଚନ୍ଦନ ଆଦି ସକଳ ମିଳଇ ।
ବନ୍ଦୀ ବାରବାର ନିତି କରୁଥାନ୍ତି ସ୍ତୁତି
ଦୁଃଖିତେ ରାଣୀକି ଚାହିଁ କହିଲା ନୃପତି ।
ଅନ୍ନପାଣି ନ ମିଳଇ କିମ୍ପା ବରାନନେ
ତୋତେ ଘେନି ଆସିଲଇଁ ମୁଁ ଦିବ୍ୟବିମାନେ ।
ମିଳିଲି ବିଷ୍ଣୁ ଭୁବନେ ରୋଗ ଶୋକ ନାହିଁ
ଋଷି ମୁନି ପ୍ରଶଂସନ୍ତି ମୋର ମୁଖ ଚାହିଁ ।
କି କାରଣେ ନ ପାଇଲି ବିଷ୍ଣୁ ଦରଶନ
ଜାଣିଥିଲେ କହ ପ୍ରିୟେ ଏହାର କାରଣ ।
ଏହି ମହାଫଳ ଭୋଗ କରୁଛି କିପାଇଁ
ଏ ଦୁଃଖ ପାଉଛି କେଉଁଦୋଷେ ମହାଦେଈ ।
ରାଜାର ଏ କଥା ଶୁଣି କହଇ ଯେ ରାଣୀ
ଯାହା ତୁମ୍ଭେ କହୁଛ ତା ସତ ନୃପମଣି ।
ଧର୍ମକର୍ମେ ବଇକଲ୍ୟ କେଭେ ନ ଘଟଇ
ବେଦ ପୁରାଣର କଥା ମିଛ ନ ହୁଅଇ ।
ଶ୍ରୀବିଷ୍ଣୁ ନାମ ଧଇଲେ ନାହିଁ ଦୁଃଖଶୋକ
ସବୁ ଦୋଷରୁ ମୁକତ ହୁଅନ୍ତି ସେ ଲୋକ ।
ଜନାର୍ଦ୍ଦନଧ୍ୟାନପର ପୁଣ୍ୟଆତ୍ମା ଜନେ
ଶଙ୍ଖ ଚକ୍ର ଗଦାଧର ପୂଜିଛ ଆପଣେ ।
ଅନ୍ନପାଣି ନ ଦେଇଛ ବିପ୍ରଙ୍କୁ ରାଜନ
ତେଣୁ ତୁମ୍ଭଙ୍କୁ ନ ମିଳେ ଏ ପୁରେ ଭୋଜନ ।
ତେଣୁ ଶ୍ରୀମଧୁସୂଦନ ଦର୍ଶନ ନ ମିଳେ
ଦଗଧ ହେଉଛ ନାଥ କ୍ଷୁଧାର ଅନଳେ ।
ରାଣୀକଥା ଶୁଣି ରାଜା ଚିନ୍ତାରେ ଆକୁଳ
ତାହୁଁ ଭାରିଯାକୁ ଘେନି ଯାଉଁ ମହୀପାଳ ।
ଆଶ୍ରମ ଏକ ପଡ଼ିଲା ନୟନ ଗୋଚରେ
ବଡ଼ ଶୋଭାପାଉଅଛି ତରୁଲତା ଭରେ ।
ଜଳପୂର୍ଣ୍ଣ ବାପ୍ପୀକୂପ ଅଛଇ ଯେ ତହିଁ
ଦିବ୍ୟସୁନ୍ଦର ପୋଖରୀ ଗୋଟିଏ ଅଛଇ ।
ହଂସ କାରଣ୍ଡବ ପକ୍ଷୀ ପହଁରୁ ଅଛନ୍ତି
ପଦ୍ମକହ୍ଲାର ତହିଁରେ ଫୁଟି ବିକାଶନ୍ତି ।
ନାନାଜାତି ମୃଗ ତହିଁ ପଲ ପଲ ହୋଇ
ଚରୁଥିବାରୁ ଆଶ୍ରମ ଗୋଟି ଶୋଭାପାଇ ।
ନାନାଦି ଫୁଲ ବାସନା ହୁଅଇ ଆବର
ଦ୍ୱିଜଋଷି ଶିଷ୍ୟେ ତହିଁ ଅଛନ୍ତି ଅପାର ।
ଯୋଗୀ ଯୋଗ ସାଧୁଛନ୍ତି ଶ୍ରୀବିଷ୍ଣୁଙ୍କୁ ଧ୍ୟାୟି
ଯୋଗୀନ୍ଦ୍ରପୁରୁଷେ ଲୟ ଅଛନ୍ତି ଲଗାଇ ।
ସେ ଆଶ୍ରମ ଗୋଟି ଦେବବୃନ୍ଦେ ବିରାଜିତ
ତରୁଲତାଫଳ ପୁଷ୍ପଭରେ ସୁଶୋଭିତ ।
ଶ୍ରୀଖଣ୍ଡଚନ୍ଦନ ବୃକ୍ଷ ବହୁତ ଅଛଇ
ରାଜରାଣୀ ସେ ଆଶ୍ରମେ ମିଳିଲେକ ଯାଇଁ ।
ଦେଖିଲେ ତହିଁ ଅଛନ୍ତି ବାମଦେବ ଋଷି
ଦିବ୍ୟସୁନ୍ଦର ଆସନେ ଅଛନ୍ତି ସେ ବସି ।
ବଈଷ୍ଣବ ଶିରୋମଣି ତେଜ ସୂର୍ଯ୍ୟପ୍ରାୟେ
ତାଙ୍କଦେହ ଜ୍ୟୋତିଛଟା ଚାରିଆଡ଼ ଶୋହେ ।
ଯୋଗପଟ୍ଟ ଆଚ୍ଛାଦିତ ଋଷି ଯୋଗାସନେ
ଭୂକତି ମୁକତିଦାତା ଶ୍ରୀବିଷ୍ଣୁର ଧ୍ୟାନେ ।
ପ୍ରଣମିଲେ ରାଜାରାଣୀ ତାଙ୍କ ପାଦତଳେ
ବାମଦେବ ଋଷି ତାଙ୍କୁ କଲ୍ୟାଣ ବାଞ୍ଛିଲେ ।
ପଦ୍ୟ ଅର୍ଘ୍ୟଦେଇ ପୂଜାକଲେ ତାଙ୍କୁମୁନି
ପୁଣ୍ୟ ଆସନେ ବସାଇ ବୋଇଲେକ ପୁଣି ।
ପୂଜାପାଇ ରାଜା ରାଣୀ ଆସନେ ବସିଲେ
ଋଷି ବାମଦେବ ତାଙ୍କୁ ଦେଖି ପଚାରିଲେ ।
ହେ ରାଜନ ତୁମ୍ଭଙ୍କୁ ମୁଁ ଭଲରୂପେ ଜାଣେ
ଶ୍ରୀବିଷ୍ଣୁ ଭକତ ନାହିଁ ତୁମ୍ଭତୁଲ୍ୟ ଜଣେ ।
ଚୋଳ ଦେଶ ରାଜା ତୁମ୍ଭେ ସୁବାହୁ ନୃପତି
ତୁମ୍ଭର ଭାରିଯା ଏହି ତାର୍ଷ୍ଣ ମହାସତୀ ।
ତୁମ୍ଭ ସେବା ବିନା କିଛି ନ ଜାଣେ ଏ ରାଣୀ
ନିର୍ଦ୍ଦ୍ୱନ୍ଦରେ ଆସିଛିତ ଏ ସ୍ଥାନକୁ ପୁଣି ।
ନିର୍ଦ୍ଦ୍ୱନ୍ଦେ ଆସିଛି ମୁହିଁ ବୋଇଲେ ନୃପତି
ଦେବ ଜନାର୍ଦ୍ଦନେ ମୋର ଥିବାରୁ ଭକତି ।
କମଳାପତିଙ୍କି କିମ୍ପା ଦେଖି ପାରୁନାହିଁ
ଦାରୁଣ କ୍ଷୁଧାତୃଷାରେ ବଡ଼ପୀଡ଼ା ପାଇ ।
କ୍ଷୁଧା ତୃଷା ହେତୁ ମୋର ସକଳ ଅଶାନ୍ତି
ତ୍ରାହିକର ମୁନିବର ମୁଁ ଦୁଃଖିତ ଅତି ।
ପ୍ରସନ୍ନ ହୋଇ କହନ୍ତୁ ଦୁଃଖର କାରଣ
ବାମଦେବ ବୋଇଲେ ହେ ଶୁଣ ନୃପରାଣ ।
ଭଲରୂପେ ଜାଣେ ତୁମ୍ଭେ ଶ୍ରୀକୃଷ୍ଣ ଭକତ
ପରମ ଭକତି ଯୋଗେ ତୁମ୍ଭେ ପୁଣି ନିତ୍ୟ ।
ଗନ୍ଧ ପୁଷ୍ପ ସ୍ନାନ ଆଦି ଉପଚାର ଦେଇ
ମଧୁସୂଦନଙ୍କୁ ପୂଜାକର ନରସାଇଁ ।

ଫଳ କିବା ନଇବେଦ୍ୟ ନ ଦେଇଛୁ ତାଙ୍କୁ
ଭୋଜନହିଁ ନ ଦେଇଛ ଦିନେ ବ୍ରାହ୍ମଣଙ୍କୁ ।
ଦଶମୀ ତିଥିରେ ତୁମ୍ଭେ ଖାଇଛ ବକତେ
ଶ୍ରୀହରିଙ୍କି ତୋଷିଅଛ ଏକାଦଶୀ ବ୍ରତେ ।
ନିରାହାରେ ରହିଅଛ କରି ଉପବାସ
ସେଦିନ ବିପ୍ରଙ୍କୁ ତୁମ୍ଭେ କରିଛ ନିରାଶ ।
ଅନ୍ନପାଣି ନ ଦେଇଛ ଯେଣୁ ହେ ରାଜନ
ମହୀରେ ଅମୃତ ରୂପ ଅଟଇ ସେ ଅନ୍ନ ।
କେଭେ ଅନ୍ନଦାନ ରାଜା କରିନାହୁଁ ତୁହି
କଟୁତିକ୍ତ କଷା କ୍ଷାର ସ୍ୱାଦୁ ଅମ୍ଳ ଏହି ।
ଷଡ଼ରସରେ ଭୋଜନ ଦ୍ରବ୍ୟଯାକ ଜାଣ
ଓଷଧି ରୂପେ ମହୀରେ ଅଛି ନୃପରାଣ ।
ଅମୃତରୁ ଉତପତ୍ତି ଓଷଧି ଯେତେକ
ଅନ୍ନ ବ୍ୟଞ୍ଜନ ହୁଅଇ କଲେ ତାକୁ ପକ୍ୱ ।
ଦେବତାଙ୍କୁ ଦିଅନ୍ତି ତା ସଂକଳପ କରି
ବିଷ୍ଣୁ ରୂପୀ ଦେବଗଣ ଜାଣ ଦଣ୍ଡଧାରୀ ।
ଶ୍ରୀବିଷ୍ଣୁ ସ୍ୱରୂପୀ ପିତୃ ଅତିଥି ବ୍ରାହ୍ମଣ
ଆଗ ତାହାଙ୍କୁ ଭୋଜନ କରାଇ ସେ ଅନ୍ନ ।
କୁଟୁମ୍ବ ପରିବାରଙ୍କୁ ତଦନ୍ତେ ଭୁଞ୍ଜାଇ
ଆପେ ତହୁଁ ଭୁଞ୍ଜିବ ସେ ଅମୃତ ହୁଅଇ ।
ଏହା କଲେ ପରକାଳେ ନ ପାଇବ ଦୁଃଖ
ଇହ ପରକାଳେ ସେହି ପାଇ ନାନା ସୁଖ ।
ଦେବ ଦ୍ୱିଜ ପିତୃ ଜାଣ ଅଟନ୍ତି କିଆରୀ
ବୀଜ ବୁଣି କୃଷି କରେ ଯେହ୍ନେ କୃଷିକାରୀ ।
ଦେବ ଦ୍ୱିଜ ପିତୃ ମୁଖେ ଅନ୍ନଦେଇ ନର
ତା ଫଳ ଉତ୍ତମ ଅନ୍ନ କରଇ ଆହାର ।
ଏ କୃଷିର ଲଙ୍ଗଳ ଯେ ସ୍ୱଭାବ ଅଟଇ
ସେ ଲଙ୍ଗଳ ଲୁହା ଶ୍ରଦ୍ଧା ଜାଣ ନରସାଇଁ ।
ତପ ବୁଦ୍ଧି ଦୁଇଗୋଟି ବଳଦ ତହିଁରେ
ସତ୍ୟ ଜୁଆଳୀରେ ତାହା ଯୋଚିବ ସଧୀରେ ।
ଜ୍ଞାନ ଯେ ତହିଁରେ ଈଶ ଆତ୍ମା ଯେ ଦଉଡ଼ି
ବିପ୍ରର ବଦନ ଦେଖି ଚଷି ଯତ୍ନ କରି ।
ନମସ୍କାର ବୀଜକୁ ଯେ ବୁଣିଦେବେ ନରେ
ଘାସ ନ ରଖଇ ଚଷା ଯେସନେ ବିଲରେ ।
ବିରଷା ହେବା ନିମନ୍ତେ ବିଷ୍ଣୁଙ୍କୁ ତୋଷଇ
ତେସନ ମାନବ ଦେହୁଁ କଳ୍ମଷ ଛଡ଼ାଇ ।
କୋମଳ ମଧୁର କହି ବିପ୍ରଙ୍କୁ ତୋଷିତ
ଯଥା ବିଧାନରେ ତାଙ୍କ ପାଦେ ପ୍ରଣମିବ ।
ବୁଣାବୁଣି ସମୟରେ ଚଷା ଯେଉଁପରି
ମେଘ ଚାରିଆଡ଼ୁ ଘୋଟି ବରଷନ୍ତି ବାରି ।
ସେ ମେଘ ତାର କାର୍ଯ୍ୟକୁ ଆସଇ ତେମନ୍ତ
ବିପ୍ରମୁଖ କ୍ଷେତ୍ରେ ବୀଜ ବୁଣାବେଳେ ତୀର୍ଥ ।
ଆବର ଯେ ପର୍ବଦିନ ହୁଏ କାର୍ଯ୍ୟକାରୀ
ଯେଉଁରୂପେ ରାଜା ଭାଗଦିଏ କୃଷି କରି ।
ଶେଷ ଭାଗକୁ ଆପଣେ କରଇ ଆହାର
ବିପ୍ରଙ୍କୁ ଭାଗେକ ଅନ୍ନଦେଇ ପୁଣି ନର ।
ଅବଶିଷ୍ଟ ଅଂଶଯାକ ପରକାଳେ ପାଇ
ଏଣୁ ଏକ କଥା ନିଶ୍ଚୟ ଜାଣ ନରସାଇଁ ।
ମାନବର କ୍ଷେତ୍ର ପିତୃ ଦେବତା ବ୍ରାହ୍ମଣ
ଏ କ୍ଷେତ୍ରେ ବୀଜ ଯେ ବୁଣି କରେ କରଷଣ ।
ନାନା ପ୍ରକାରେ ବହୁତ ଫଳ ଯେ ଫଳଇ
କଟୁ ଫଳ କେବେ ନାହିଁ ମଧୁର ହୁଅଇ ।
ମଧୁର ଫଳରୁ କଟୁ ନ ହୁଅଇ ଜାତ
ପିତା କି ମଧୁର ହେବ କଲେ ଯେତେ ଯତ୍ନ ।
ଯେ ବୀଜ ବୁଣିବ ଫଳ ସେ ପ୍ରକାର ତାର
କ୍ଷେତ୍ରେ ବୀଜ ନ ବୁଣିଲେ ଫଳ କିମାକାର ।
ଦେବଦ୍ୱିଜ ପିତୃ କ୍ଷେତ୍ରେ ଯେ ବୀଜ ବୁଣିବ
ଶୁଭାଶୁଭ କର୍ମଫଳ ତେମନ୍ତ ଭୁଞ୍ଜିବ ।
ଏ କଥା ଅନ୍ୟଥା କେହି ନ ପାରଇ କରି
ପ୍ରସନ୍ନ ମନେ କଦାପି ତୁମ୍ଭେ ଦଣ୍ଡଧାରୀ ।
ବିପ୍ରଦେବ ପିତୃ ମୁଖେ ନ ଦେଇଛ ଅନ୍ନ
ପାଣିଟିକିଏ ନ ଦେଇ ଆପେ ହେ ରାଜନ ।
ଘୃତ ପକ୍ୱ ମିଷ୍ଟଅନ୍ନ କରିଛୁ ଭୋଜନ
ଏଥିରେ ଅନ୍ୟାୟ ତୁମ୍ଭ ଜୀବନ ଧାରଣ ।
ଚର୍ବ୍ୟ ଚୋଷ୍ୟ ଲେହ୍ୟ ପେୟ ଅନ୍ନ ଷଡ଼ରସ
କାହାକୁ କିଛି ନ ଦେଇ ଖାଇଛ ନରେଶ ।
ନିଜଦେହ ବଢ଼ାଇଛ ଅମୃତ ଭୋଜନେ
ତେଣୁ କ୍ଷୁଧା ତୃଷା ପୀଡ଼ା ଦିଏ ଏ ଭୁବନେ ।
ଦେଇଥିଲେ ସିନା ପାଇଥାନ୍ତ ହେ ରାଜନ
କର୍ମ ପ୍ରାଣିଙ୍କର ସୁଖ ଦୁଃଖର କାରଣ ।
ଜନମ ମରଣ ମୂଳ କର୍ମହିଁ କେବଳ
ଏ ସ୍ଥାନେ ଭୋଗ କରୁଛ ସେହି କର୍ମଫଳ ।

ପୂର୍ବରୁ ବହୁତ ମହାତମା ନରସାଇଁ
ଆପଣା ଆପଣା କର୍ମଫଳେ ସ୍ୱର୍ଗପାଇ ।
କର୍ମ କ୍ଷୟଗଲେ ପୁଣି ମହୀକି ଆସନ୍ତି
ମର୍ତ୍ତ୍ୟ ମଣ୍ଡଳରେ ପୁଣି କର୍ମ ଆଚରନ୍ତି ।
ନଳ ଭଗୀରଥ ବିଶ୍ୱାମିତ୍ର ଯୁଧିଷ୍ଠିର
କର୍ମଫଳେ ପାଇଲେ ଏ ସବୁ ସ୍ୱର୍ଗପୁର ।
ମାନବର ଅଦୃଷ୍ଟ ଯେ ପୂର୍ବଜନ୍ମ କର୍ମ
ସେ କରଇ ଗୋଟା ହେଉ ଧର୍ମକି ଅଧର୍ମ ।
ସେ ଅଦୃଷ୍ଟ ଲଙ୍ଘିବାକୁ ନାହିଁ କେହି ପୁଅ
ଏଣୁ କ୍ଷୁଧାତୃଷା କଷ୍ଟ ପାଉଛ ହେ ରାୟ ।
ଆପଣାର କର୍ମଦୋଷେ ପାଉଛ କଷଣ
ଯେବେ କି ତୁମ୍ଭର ଇଚ୍ଛା ହୁଏ ନରରାଣ ।
ଆନନ୍ଦ କାନନେ ଯାଇ ଭକ୍ଷ ନିଜଦେହ
କ୍ଷୁଧା ତୃଷାରେ ଏ ତୁମ୍ଭ ରାଣୀ ଯେ ଅଥୟ ।
ସୁବାହୁ ରାଜା ବୋଇଲେ କହ ମହାଶୟ
ଆପଣଙ୍କ ପାଦପଦ୍ମେ କରୁଛି ବିନୟ ।
ଏ କର୍ମ ଭୋଗ କରିବୁଁ କେତେକାଳ ଯାଏ
ଅନୁଗ୍ରହ କରି କହୁ ତାହାର ଉପାୟେ ।
ବାମଦେବ ବୋଇଲେ ହୋ ମହାମତି ଶୁଣ
ଅନ୍ନ ଜଳ ଦାନେ ସୁଖପାନ୍ତି ମର୍ତ୍ତ୍ୟଗଣ ।
ଏହି ଦାନଫଳେ ସ୍ୱର୍ଗ ସୁଖ ଭୋଗପାଇ
ପାପର ବାଧା ତାହାକୁ ଆଉ ନ ଲଗାଇ ।
ମାନବ ଯେବେ ତା ଦେଇନପାରେ ଜୀବନେ
ମରଣକାଳେ ତା ଦେବ ବିଷ୍ଣୁ ସନ୍ନିଧାନେ ।
ଆଗଜଳ ସହିତରେ ଦେବ ଅନ୍ନଦାନ
ତା ପରେ ଯେ ଦାନ ଦେବ ଶୁଣ ତାରାଜନ ।
ଅନ୍ନ ଜଳ ଛତ୍ର ଯୋତା ଯେ ଜଳାତ୍ର ଭୂମି
କାଞ୍ଚନଧେନୁ ଏ ଆଠ ଦିଏ ସ୍ୱର୍ଗକାମୀ ।
ଏହି ଦାନେ ସ୍ୱର୍ଗେ କ୍ଷୁଧା ତୃଷା ନ ଲାଗଇ
ଅନ୍ନ ଦେଇଥିଲେ ଅନ୍ନ ସ୍ୱର୍ଗପୁରେ ପାଇ ।
ଜଳ ଦେଇଥିଲେ ଜଳ ମିଳଇ ରାଜନ
ପାଦୁକା ଯେ ଦେଇଥାଇ ସେ ପାଇ ବାହନ ।
ଛତା ଦେଇଥିଲେ ସ୍ୱର୍ଗପୁରେ ଛାଇ ପାଇ
ଇହ କାଳେ ଭୂମିଦାନ ଯେହୁ କରିଥାଇ ।
ଯାହା ସେ ମନ କରଇ ଏ ସ୍ୱର୍ଗ ଭୁବନେ
ତାହା ସେହି ସବୁକଥା ମିଳଇ ତକ୍ଷଣେ ।

ଗୋରୁଦାନ ଦେଇଥିଲେ ପାଇ ସେ ଗୋରସ
ଉପଭୋଗ ଦ୍ରବ୍ୟ ଯେତେ ଆବର ଆବାସ ।
ନିରୋଗୀ ହୋଇ ସୁଖରେ ରହିଥାଇ ପୁଣି
ନିତ୍ୟତୃପ୍ତ ଧନୀ ହୁଏ ଜାଣ ନୃପମଣି ।
କାଞ୍ଚନ ଦାନ ଯେ ଦେଇଥାଇ ଇହଲୋକେ
ସୁନ୍ଦର ରୂପ ସେ ପାଏ ଜାଣ ପରଲୋକେ ।
ଶ୍ରୀମନ୍ତ ଦାନୀ ହୁଅଇ ରତ୍ନ ଭୋଗ କରେ
ମରଣକାଳେ ଯେ ତିଳ ଦିଏ ବିପ୍ରକରେ ।
ସର୍ବଭୋଗ ପତି ହୋଇ ପାଏ ବିଷ୍ଣୁ ପୁର
ଯାହା ଦେଇ ଥାଇ ତାହା ପାଇ ନୃପବର ।
ଆଜୀବନେ ତୁମ୍ଭେ ଗୋରୁ ଭୂମି ଅନ୍ନ ଜଳ
କିଛି ନ ଦେଇଛ ବିପ୍ରହସ୍ତେ ମହୀପାଳ ।
ତେଣୁ କ୍ଷୁଧା ତୃଷା କଷ୍ଟ ହେଉଛି ତୁମ୍ଭଙ୍କୁ
ରାଜା ପୁଣି ପଚାରିଲେ ସେ ବାମଦେବଙ୍କୁ ।
କିରୂପେ ଏ କ୍ଷୁଧାଶାନ୍ତି ହୋଇବ ମୋହର
ତହିଁର କି ପ୍ରାୟଶ୍ଚିତ କହ ମୁନିବର ।
ବାମଦେବ କହିଲେ ହୋ ଶୁଣ ନୃପମଣି
ଏଥିର ଯେ ପ୍ରାୟଶ୍ଚିତ୍ତ କିଛି ନାହିଁ ପୁଣି ।
କର୍ମ ଭୋଗ ନ ସରିଲେ ନଯିବ କଷଣ
ଧୈର୍ଯ୍ୟ କର୍ମଫଳ ଭୋଗ କର ଦୁଇଜଣ ।
ତୁମ୍ଭ ଦୁହିଙ୍କର ଶବ ଖାଇ ପ୍ରତିଦିନ
କ୍ଷୁଧା ତୃଷା ନିବାରଣ କରୁଥାଅ ପୁଣ ।
ନିତି ଦିନ ଯାଇ ତୁମ୍ଭେ ଆନନ୍ଦ କାନନେ
ତୁମ୍ଭ ଦୁହିଁଙ୍କର ଶବ ଖାଇବ ସେ ସ୍ଥାନେ ।
ଅକ୍ଷୁର୍ଣ୍ଣ ତୁମ୍ଭର ଶବ ହେଉଥିବ ନିତି
ଏମନ୍ତ ଶୁଣି ବୋଇଲେ ପୁଣି ସେ ନୃପତି ।
ତୁମ୍ଭର କଥା ଆମ୍ଭର ଶିରୋଧାର୍ଯ୍ୟ ମୁନି
ଖାଉଥିବୁ କେବେକାଳ ଯାଏ ଆମ୍ଭେ ବେନି ।
ସେ କଥା ଗୋଟା ଆମ୍ଭଙ୍କୁ କହ କୃପାକରି
ବାମଦେବ ବୋଇଲେ ତୁ ଶୁଣ ଦଣ୍ଡଧାରୀ ।
ବାସୁଦେବ ସ୍ତୋତ୍ର ତୁମ୍ଭେ ଶୁଣିବ ଯେ ଦିନ
ତୁମ୍ଭର ଦେହୁଁ ଏ ପାପ ଯିବ ହେ ରାଜନ ।
ଯାହା ପଚାରିଲ ତାହା ଦେଲଇଁ ବୁଝାଇ
ଏବେ ଆପଣାର କର୍ମ ଫଳ ଭୋଗ ଯାଇଁ ।
ରାଜା ରାଣୀ ଦୁହେଁ ଗଲେ ଆନନ୍ଦ କାନନେ
ଆପଣା ଶବ ଭକ୍ଷନ୍ତି ଯାଇଁ ଦିନେ ଦିନେ ।

ସେ ଖାଇସାରିଲା ପରେ ପୂରିଯାଏ ମାଂସ
ପରଦିନ ରାଜା ରାଣୀ କରନ୍ତି ତା ଗ୍ରାସ ।
ହସନ୍ତି ଯେ ନାରୀ ଦୁଇ କହୁଛି ତା ଶୁଣ
ନୃପତିର ଶ୍ରଦ୍ଧା ପ୍ରଜ୍ଞା ସେହି ଦୁଇ ଜାଣ ।
ପ୍ରତିଜ୍ଞା କରି ସେ ରାଜା ଶରଧାରେ ପୁଣି
ସଂକଳ୍ପ କରି ନ ଦେଲା ତହୁଁ ଅନ୍ନପାଣି ।
ବିପ୍ର ବଇଷ୍ଣବର ଅନ୍ନ ନ ଦେଲା ସେ ଯହୁଁ
ଏଇ ଦୁଇ ନାରୀ ରୂପେ ନିତି ଆସି ସେହୁ ।
ହସନ୍ତି ଦେଖି ରାଜାର ଏହି ଆଚରଣ
ଆପଣା ଦେହ ମାଂସକୁ କରନ୍ତି ଭକ୍ଷଣ ।
ଅମୃତ ପ୍ରାୟ ରସରେ ପୂରିଛି ସେ ଶବ
ଶତବର୍ଷ ଅନ୍ତେ ମନେ ସ୍ମରି ବାମଦେବ ।
ଆପଣାକୁ ନିନ୍ଦାକରି କହିଲା ଏମନ୍ତ
ମୁନିବର କଥା ଗୋଟା ହୋଇଲାତ ସତ ।
ପିତୃଦେବତା ବ୍ରାହ୍ମଣ ବୃଦ୍ଧ ଦୀନ ଜନେ
କିଛି ମାତ୍ର ଦେଇନାହିଁ ମୁଁ କାହାକୁ ଦିନେ ।
ରାଜା ରାଣୀ ମାଂସ ଖାଇ ସରିଲା ମାତ୍ରକେ
ଦେହି ଦେହିବୋଲି ଭିକ୍ଷା ତୃଷା ଉଚ୍ଚେଡ଼ାକେ ।
ଭୟଙ୍କର କ୍ଷୁଦା ତୃଷା ନ ହୋଇ ତୃପତି
ଦିଅ ଦିଅ ବୋଲି ପୁଣି ଉଚ୍ଚରେ ଡାକନ୍ତି ।
ଖାଇବାକୁ ମାଗନ୍ତି ସେ ରାଜାକୁ ରାଣୀକି
ଯାହା ପଚାରିଲୁ ପୁଅ ନ ରଖିଲି ବାକି ।
ବୁଝାଇ କହିଲି ସବୁ କଥା ତୋ ଅଗ୍ରତେ
ବାପକୁ ପୁଅ ଯେ ପୁଣି ପଚାରେ ଏମନ୍ତେ ।
ଯହିଁରେ ସେ ରାଜାରାଣୀ ପାଇବେ ମୁକତି
ସେ ବାସୁଦେବଙ୍କ ସ୍ତୋତ୍ର କାହକୁ କହନ୍ତି ।
ତାହା ମୋ ଆଗରେ ତାତ କହ କୃପାକରି
ଦୀନ ଗୋପୀନାଥ ବୋଲେ ବୋଲ ହରିହରି ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ସୁବାହୁ ଚରିତେ
ସପ୍ତନବତିତମୋଽଧ୍ୟାୟଃ ।



## ଅଷ୍ଟନବତି ଅଧ୍ୟାୟ

### ଶ୍ରୀ ବାସୁଦେବ ସ୍ତୋତ୍ର

ସୁତମୁନି କହୁଛନ୍ତି ଶୌନକ ଶୁଣନ୍ତି
ବିଜ୍ୱଳ ପୁଚ୍ଛନ୍ତି ପୁଣି କୁଞ୍ଜଳ କହନ୍ତି ।
ସକଳ କେଶନାଶନ ହୃଶୀକେଶ ଧ୍ୟାନ
ଶୁଭ ମଙ୍ଗଳଦାୟକ ଆବର ପ୍ରଣାମ ।
କରିଣ ପବିତ୍ର ସ୍ତୋତ୍ର କଲେକ ବଖାଣ
ଶ୍ରୀ ବାସୁଦେବ ସ୍ତୋତ୍ର ଯେ ପୁଣ୍ୟ ବରଧନ ।
ସର୍ବମଙ୍ଗଳ ଦାୟକ ସର୍ବ କାମପ୍ରଦ
ସୁଖ ଶାନ୍ତି ପୁଷ୍ଟି ବିବର୍ଦ୍ଧନ ଜ୍ଞାନପ୍ରଦ ।
ଜ୍ଞାନ ବର୍ଦ୍ଧନକାରୀ ଯେ ପୁଣି ମୋକ୍ଷଦ୍ୱାର
ବିଜ୍ୱଳ ନାମରେ ଯେଉଁ ପୁଣ୍ୟ ପକ୍ଷୀବର ।
ସୁବାହୁ ରାଜା ପାଖକୁ ଉଦ୍ୟମ କରିଣ
ପିତାକୁ କହେ ସେ ସ୍ତୋତ୍ର କରିବା ବଖାଣ ।
ଧର୍ମାତ୍ମା କୁଞ୍ଜଳ ପୁତ୍ର ମନକଥା ଜାଣି
କହଇ ସ୍ତୋତ୍ର ତୋ ଆଗେ ଶୁଣ ପୁତ୍ରମଣି ।
ଜାଣଇଁ ମୁଁ ସେ ରାଜାର ପାପ ଯେ ବହୁତ
ରାଜାକୁ ଶୁଣାଇ ପଢ଼ ଯାଇଁ ସେହି ସ୍ତୋତ୍ର ।
ସ୍ତୋତ୍ର ଶୁଣି ତାର ଜ୍ଞାନ ହୋଇବ ଉଦୟ
ବାସୁଦେବଙ୍କ ପ୍ରସାଦେ କହିଲିରେ ପୁଅ ।
ଲଘୁ ବିକ୍ରମ ବିଜ୍ୱଳ ପିତାର ବଚନେ
ଉଡ଼ିଗଲା ଗଗନରେ ଆନନ୍ଦ କାନନେ ।
ବୃକ୍ଷ ଛାଇ ତଳେ ରହି ଅତି ଆନନ୍ଦରେ
ରାଜାକୁ ଚାହିଁ ଚାହିଁ ସେ ମନରେ ବିଚାରେ ।
ରାଜା ରାଣୀ କେତେବେଳେ ଆସିବେ ଏଠାକୁ
ଶୁଣାଇବି ବାସୁଦେବ ସ୍ତୋତ୍ର ମୁଁ ତାହାଙ୍କୁ ।
ବିଜ୍ୱଳ ଭାଳିବା ବେଳେ କିଙ୍କିଣି ଶୁଭିଲା
ବେଣୁ ବୀଣା ଘଣ୍ଟା ଆଦି ବାଦ୍ୟରେ ବାଜିଲା ।
ଅପସରା ଗନ୍ଧର୍ବଙ୍କ ତାନ ମାନ ଗୀତ
ଶୁଣିବାକୁ ସୁମଧୁର ସୁନ୍ଦର ଲଳିତ ।
ଅନ୍ନପାଣି ନାହିଁ ସବୁ ଅଛି ସେ ବିମାନେ
ରାଜା ରାଣୀ ବସିଛନ୍ତି ଦିବ୍ୟ ସିଂହାସନେ ।
ସୁତାର୍କ୍ଷୀ ରାଣୀକି ଘେନି ସୁବାହୁ ନୃପତି
ଧୀରେ ଧୀରେ ବିମାନରୁ ଓହ୍ଲାଇ ଆସନ୍ତି ।
ତୀକ୍ଷ୍ଣ ଅସ୍ତ୍ରେ ଆପଣାର ଶବକୁ କାଟିଲେ
ଦୁହେଁ ବସି ସେହି ଶବ ମାଂସକୁ ଖାଇଲେ ।
ବିଜ୍ୱଳ ଉଚ୍ଚେ ଡାକଇ ହେ ପୁରୁଷବର
ଦେବତା ପ୍ରାୟେ ଦିଶୁଛ ତୁମ୍ଭେତ ସୁନ୍ଦର ।
ଯେ କର୍ମ କର ତହିଁରେ ଟିକେ ଘୃଣାନାହିଁ
ନୃଶଂସ ହେଲେହେଁ ଏକା କରି ନଯୋଗାଇ ।

ଏକି ବିଧି ବିପର୍ଯ୍ୟୟ ବଡ଼ ଚମତ୍କାର
ଦୁଃସାହସୀ ଦୋଷୀ ପୁଣି ପାପୀ ଯେଉଁନର ।
ସବୁ ଲୋକରେ ସେ ହୁଏ ସର୍ବଦା ନିନ୍ଦିତ
ବେଦ ଆଚାର ରହିତ କର୍ମ କି ନିମିତ୍ତ ।
କରୁଛ ତାର କାରଣ ଜାଣି ପାର ନାହିଁ
ଏମନ୍ତ ଶୁଣି ନୃପତି ଭାରିଯାକୁ ଚାହିଁ ।
ବୋଇଲେ ଗୋ ପ୍ରିୟେ ଶଏ ବରଷ ଗଲାଣି
ପୂର୍ବ ପାପ କର୍ମେ ଭୋଗ କରୁଥାଇ ପୁଣି ।
ଏ ଯାହା କହିଲା ଏହା କେହି କହି ନାହିଁ
କ୍ଷୁଧା ଅନଳେ ଆମ୍ଭର ପେଟ ଜଳି ଯାଇ ।
ଚିତ୍ତେ ଶାନ୍ତି ଜନମିଲା ଏହା କଥା ଶୁଣି
ବିଚାର କର ସୁଚାରୁ ହାସିନୀ ଗୋ ରାଣୀ ।
ମହା ଆହ୍ଲାଦ ଉପୁଜେ ମନରେ ମୋହର
ଏହିକି ଗନ୍ଧର୍ବ କିବା ଦେବ ପୁରନ୍ଦର ।
ମୁନି ଜନଙ୍କର କଥା ମିଛ ନ ହୁଅଇ
ବାମଦେବ ମୁନି ମୋତେ ସତ କହିଛଇ ।
ସୁତୀର୍ଷା ରାଣୀ କହଇ ରାଜାର ବଚନେ
ସତ କହୁଛି ବୋଲି ମୁଁ ଭାଳେ ମନେ ମନେ।
ବଡ଼ ଆଚମ୍ବିତ ଲାଗେ ଏହି କଥା ମୋତେ
ମୁଁ ଯାହା ଭାବଇ ତୁମ୍ଭେ ଭାବୁଛତା ଚିତ୍ତେ ।
କିଏ ଏହି ପକ୍ଷୀରୂପଧାରୀ ହିତକାରୀ
ଆମ୍ଭଙ୍କୁ ପଚାରୁ ଅଛ ଜାଣ ଦଣ୍ଡଧାରୀ ।
ରାଣୀ ବାଣୀ ଶୁଣି ରାଜା ଯୋଡ଼ି ବେନିକର
ଆହେ ମହା ବୁଦ୍ଧିମନ୍ତ ପକ୍ଷୀରୂପ ଧର ।
ପରମ ମଙ୍ଗଳ ହେଉ ତୁମ୍ଭ ଆଗମନ
ଭାରିଯା ସହିତ କରେ ଚରଣ ବନ୍ଦନ ।
ତୁମ୍ଭ ପରସାଦେ ମୋର ପୁଣ୍ୟଉଦେ ହେଉ
ମୋ ଦେହୁ ଘୋର ପାତକ ଛାଡ଼ିଣ ପଳାଉ ।
ଏ ପବିତ୍ର କଥା ଯେଣୁ କହୁଅଛ ତୁମ୍ଭେ
ପକ୍ଷୀ ବୋଲି କେଉଁପରି କହିବୁ ବା ଆମ୍ଭେ ।
ପୂର୍ବଜନ୍ମେ ଶୁଭାଶୁଭ କର୍ମ କରେ ଯାହା
ପୂର୍ବଜନ୍ମେ ଫଳାଫଳ ଭୋଗ କରେ ତାହା ।
ଆପଣାର କଥା ଯାକ କହିଲେ ରାଜନ
କହିଥିଲା ପୁତ୍ର ଆଗେ କୁଞ୍ଜଳ ଯେସନ ।
ଅବିକଳ ସବୁ ତାହା କହିଲା ନୃପତି
କହିସାରି ପକ୍ଷୀକି ସେ ପୁଣି ପଚାରନ୍ତି ।
କିଏ ତୁମ୍ଭେ କଥାବାର୍ତ୍ତା କର ଆମ୍ଭ ସଙ୍ଗେ
ଶୁଣି ସେ ବିଜ୍ୱଳ ପକ୍ଷୀ କହେ ଅନୁରାଗେ ।
ପକ୍ଷି ଯୋନିରେ ଜନମ ଅଟଇ ମୋହର
ମୋ ପିତା ନାମ କୁଞ୍ଜଳ ଜାଣ ନୃପବର ।
ମୁଁ ତାଙ୍କ ତୃତୀୟ ପୁତ୍ର ମୋ ନାମ ବିଜ୍ୱଳ
ଦେବ କି ଗନ୍ଧର୍ବ ସିଦ୍ଧ ନୋହେ ଆଖଣ୍ଡଳ ।
ତୁମ୍ଭର ଦାରୁଣ କର୍ମ ଦେଖେ ଆସି ନିତି
କେତେକାଳ ଏ ଅକର୍ମ କରିବେ ନୃପତି ।
ସୁବାହୁ କହିଲେ ତୁମ୍ଭେ ଶୁଣ ପକ୍ଷୀବର
ଯେଉଁ ବାସୁଦେବ ସ୍ତୋତ୍ର ପାପତପ ହର ।
ତାହା ଶୁଣିଲେ ମୁଁ ଏଥୁ ଉଦ୍ଧାର ପାଇବି
ଉତ୍ତମ ଗତି ଲଭିବି ମୁକତ ହୋଇବି ।
ବାମଦେବ ମୁନି ମୋତେ କହିଛନ୍ତି ଏହା
ମୁନି ବଚନ ଆନ କି ହେବ ପକ୍ଷିନାହା ।
ବିଜ୍ୱଳ କହିଲା ତୁମ୍ଭେ ଶୁଣ ମହାରାୟ
ତୁମ୍ଭ ଏ କର୍ମେ ମୋ ଚିତ୍ତ ହେବାରୁ ଅଥୟ ।
ଏ ସବୁ କଥା କହିଲି ଯାଇ ପିତା ଆଗେ
ସେ ଯାହା କହିଅଛନ୍ତି ମୋତେ ଜ୍ଞାନଯୋଗେ ।
କହୁଅଛି ତୁମ୍ଭେ ଦୁଇ ଶୁଣ ସାବଧାନେ
ପ୍ରକଟିତ ଏହି ବାସୁଦେବ ସ୍ତୋତ୍ରନାମେ ।
ଏହାର ଋଷି ନାରଦ ଛନ୍ଦ ଅନୁଷ୍ଟୁଭ
ଏଥିରେ ଦେବତା ଜାଣ ଅଟଇ ପ୍ରଣବ ।
ସର୍ବ ପାତକ ନାଶନ ଅର୍ଥେ ଯେ ଆବର
ଚତୁର୍ବର୍ଗ ସାଧନାର୍ଥେ ଜପେ ପୁନର୍ବାର ।
ଏହାର ଯେ ବିନିଯୋଗ ସ୍ତୋତ୍ର କହେ ଶୁଣ
ଯେ ପ୍ରଭୁ ପାବନ ପୁଣି ପରମ ଯେ ପୁଣ୍ୟ ।
ଦେବଙ୍କ ବେଦ ମନ୍ଦିର ବେଦ ବିଦ୍ୟାଧର
ଭବାଧାର ପ୍ରଣବ ଯେ ତାଙ୍କୁ ନମସ୍କାର ।
ନିରାକାର ପ୍ରଭୁ ନିରାଧାର ନିରାକାଶ
ନିର୍ଗୁଣ ଗୁଣସମ୍ପଦ ଦେବ ସୁପ୍ରକାଶ ।
ପରମ ପ୍ରଣବ ମହାକାୟ ହେ ଆବର
ତାହାଙ୍କ ପାଦପଦ୍ମରେ ନମସ୍କାର ମୋର ।
ମହାମୋହ ନାଶନ ଯେ ପୁଣି ମହାକାନ୍ତ
ସର୍ବ ଜଗତ ରକ୍ଷକ ଯେହୁ ଗୁଣାତୀତ ।
ତାହାଙ୍କ ଚରଣ ତଳେ ମୋର ନମସ୍କାର
ଯେଉଁ ସ୍ୱାମୀ ସବୁକାଳେ ଭୂତ ମାନଙ୍କର ।

ଭୂତି ବର୍ଦ୍ଧନ ହୋଇଣ ବିରାଜୁ ଥାଆନ୍ତି
ତାହାଙ୍କୁ ମୁଁ ନମସ୍କାର କରୁଥାଇ ନିତି ।
ଯେ ସ୍ୱାମୀ ଭିକ୍ଷୁ ସମ୍ବନ୍ଧ ଅଭୟ ଆବର
ସେ ପ୍ରଣବ ଶିବ ପାଦେ ମୋର ନମସ୍କାର ।
ସାମଗୀତି ଗାୟକ ଯେ ଶୁଭ ଗୀତି ପ୍ରିୟ
ଗନ୍ଧର୍ବ ଗୀତି ଭୋକତା ଯେ ଦେବାଧିରାୟ ।
ସେହି ଗାୟତ୍ରୀ ପ୍ରଣବ ପାଦେ ନମସ୍କାର
ଯେ ବିଚାର ବେଦରୂପ କ୍ଷଜ୍ଞଷ ଆବର ।
ଭକତ ବତ୍ସଳ ସର୍ବ ଲୋକଙ୍କର ଯୋନି
ନମସ୍କାର କରି ସେହି ପ୍ରଣବକୁ ପୁଣି ।
ସଂସାର ସମୁଦ୍ରେ ବୁଡ଼ି ମରୁଥିବା ପ୍ରାଣୀ
ନଉକା ରୂପେ ଉଦ୍ଧାର କରଇ ଯେ ଜାଣି ।
ମୁହଁ ସେ ପ୍ରଣବ ରୂପୀ ହରିଙ୍କି ନମଇ
ଯେ ଏକରୂପେ ଅନେକ ରୂପେ ପୁଣି ଥାଇ ।
କଇବଲ୍ୟ ଧାମରୂପେ ଲୋକେ ବାସକରେ
ନମଇଁ ସେ ଶିବମୟ ପ୍ରଣବ ପୟରେ ।
ଆହେ ମହାପ୍ରାଜ୍ଞ ଯେହୁ ସୂକ୍ଷ୍ମ ସୂକ୍ଷ୍ମ ତର
ନିର୍ଗୁଣ ଗୁଣ ନାୟକ ଶୁଦ୍ଧ ଯେ ଆବର ।
ପ୍ରାକୃତ ଭାବ ବର୍ଜିତ ଯେ ପୁଣି ଅଟଇ
ମୁହିଁ ସେ ବେଦସ୍ଥାନର ଚରଣେ ନମଇଁ ।
ଯେଉଁ ସ୍ୱାମୀ ଦେବ ଦୈତ୍ୟବିଯୋଗ ବିବର୍ଜିତ
ଆବର ଯେ ଦବ ପୁଣି ତୁଷ୍ଟି ବର୍ଜିତ ।
ଦେବତା ଯୋଗିଜନର ଧ୍ୟେୟ ଯେ ଅଟଇ
ମୁହିଁ ସେ ଓ କାମରୂପୀ ଚରଣେ ନମଇ ।
ବ୍ୟାପକ ଯେ ବିଶ୍ୱ ବେତ୍ତା ପରମ ବିଜ୍ଞାନ୍
ଯେଉଁ ସ୍ୱାମୀ ଶୁଭ ଶିବ ପୁଣି ଶିବ ଗୁଣ ।
ମୁହିଁ ସେ ପ୍ରଣବରୂପୀ ଈଶ୍ୱର ବନ୍ଦଇ
ବ୍ରହ୍ମା ଆଦି ସୁରାସୁର ଯା ମାୟାରେ ଥାଇ ।
ନ ପାନ୍ତି ପୁଣି ପରମ ଶୁଦ୍ଧ ମୋକ୍ଷଦ୍ୱାର
ମୁହିଁ ସେ ଦେବଦେବଙ୍କୁ କରେ ନମସ୍କାର ।
ଯେ ପ୍ରଭୁ ଆନନ୍ଦ କନ୍ଦ ବୁଦ୍ଧି ଯା ବିଶୁଦ୍ଧ
ହଂସ ପରାତ୍ପର ଗଣନାୟକ ଯେ ଶୁଦ୍ଧ ।
ସେ ମହାପ୍ରଭୁ ଶ୍ରୀ ବାସୁଦେବ ଶ୍ରୀ ପୟରେ
ବାର ବାର ନମସ୍କାର କରେ ଶରଧାରେ ।
ଯେଉଁ ପ୍ରଭୁ କରେ ଶୋହେ ଶଙ୍ଖ ପାଞ୍ଚଜନ୍ୟ
ରବି ପ୍ରଭୁ ସୁଦର୍ଶନ ଚକ୍ର ଗଦା ପଦ୍ମ ।

ମୁହିଁ ସେ ପ୍ରଭୁଙ୍କ ପାଦେ ପଶିଲି ଶରଣ
ଯେଉଁ ସ୍ୱାମୀ ଦେବ ଗୁହ୍ୟ ଆବର ସଗୁଣ ।
ଚରାଚର ପୁଣି ଗୁଣଗଣର ଆଧାର
ସୂର୍ଯ୍ୟ ବୈଶ୍ୱାନର ତୁଲ୍ୟ ତେଜ ଯାହାଙ୍କର ।
ମୁହିଁ ସେହି ବାସୁଦେବ ଚରଣେ ଶରଣ
ବିମଳା ସ୍ୱରୂପ ଯେହୁ ଗୁଣର ନିଧାନ ।
ଆବର ଆନନ୍ଦମୟ ଯେ ପ୍ରଭୁକୁ ପାଇ
ଦେବତା ଆଦି ସକଳ ଲୋକ ଜୀଇଛଇ ।
ସେ ବାସୁଦେବ ଚରଣେ ପଶିଲି ଶରଣ
ପରିତ୍ରାଣ କରତା ଯେ ନିତ୍ୟ ସନାତନ ।
ଉଦୟ ସୂର୍ଯ୍ୟ ପରାୟ ଯା ତେଜ ଉଜ୍ଜ୍ୱଳ
ଯାହାକୁ ଘୋଟିଛି ଗାଢ଼ ଅନ୍ଧତମ ଜାଳ ।
ସେ ସବୁ ବିନାଶ ପାନ୍ତି ଯାହାଙ୍କ ହସ୍ତରେ
ଶରଣ ମୁଁ ସେହି ବାସୁଦେବ ଶ୍ରୀ ପୟରେ ।
ଯେ ରବି ପ୍ରଭାତେ ଉପଲକ୍ଷିତ ହୋଇଣ
ସବୁଠାରେ ସବୁକାଳେ ଦିଅଇ କିରଣ ।
ଶୋଷ ଜନମାଇ ପୁଣି ରସ ଦାନକରେ
ଯେ ବାୟୁରୂପେ ଥାଇଣ ପ୍ରାଣିଙ୍କ ଅନ୍ତରେ ।
ଶରଣ ମୁଁ ସେହି ବାସୁଦେବ ଶ୍ରୀପୟରେ
ସୃଷ୍ଟି ସ୍ଥିତି ଲୟ ହୁଏ ଯାହାଙ୍କ ଇଚ୍ଛାରେ ।
ସ୍ୱଇଚ୍ଛାରେ ଯେ ସକଳ ଲୋକଙ୍କୁ ରଖଇ
ମହୀପାଳମାନଙ୍କୁ ଯେ ପାଳନ କରଇ ।
ଭବସାଗରୁ ପ୍ରାଣୀଙ୍କି ଉଦ୍ଧାରିବା ପାଇଁ
ଯେ ପ୍ରଭୁ ନଉକା ରୂପେ ବିରାଜୁ ଅଛଇ ।
ସେ ବାସୁଦେବ ଚରଣେ ପଶିଲି ଶରଣ
ଅଗତି ଗତିଦାୟକ ଯେଉଁ ନାରାୟଣ ।
ଅନ୍ତର୍ଯ୍ୟାମୀ ହୋଇ ଯେଉଁ ପ୍ରଭୁ ଲୋକମୟ
ସ୍ଥାବର ଜଙ୍ଗମ ଚରାଚର ସମୁଦାୟ ।
ଉପୁଜାଇ ଅଛନ୍ତି ଯେ ଦେବଙ୍କ ନିମନ୍ତେ
ସ୍ୱାହା ମୁଖେ ରହିଛନ୍ତି ଯେଉଁ ପ୍ରଭୁ ନିତ୍ୟେ ।
ସେ ବାସୁଦେବ ଚରଣେ ପଶିଲି ଶରଣ
ସୋଉମ୍ୟ ମୁରତି ଯେହୁ ଦିଏ ସବୁଗୁଣ ।
ନିଜ ନିର୍ମଳ ତେଜରେ ପୁଣ୍ୟମୟ ରସେ
ସର୍ବଦା ଅନ୍ନ ସକଳ ଯାକ ସବୁ ପୋଷେ ।
ସେ ବାସୁଦେବ ଚରଣେ ପଶିଲି ଶରଣ
ଯେ ସ୍ୱାମୀ ସର୍ବତ୍ର ପୁଣି ସଦା ବିଦ୍ୟମାନ ।

ବିନାଶର ହେତୁ ସର୍ବଲୋକର ଆଶ୍ରୟ
ଯେଉଁ ପ୍ରଭୁ ସର୍ବ ପୁଣି ଅଟେ ସର୍ବମୟ ।
ଇନ୍ଦ୍ରିନାହିଁ ଯେ ବିଷୟ ଯାକ ଭୋଗ କରେ
ଶରଣ ପଶିଲି ବାସୁଦେବ ଶ୍ରୀ ପୟରେ ।
ଜୀବ ସ୍ୱରୂପ ଯେ ପ୍ରଭୁ ଆପଣା ମୂରତି
ଚରାଚର ଲୋକଙ୍କୁ ଯେ ପାଳନ କରନ୍ତି ।
ନିଷ୍କେବଳ ଜ୍ଞାନମୟ ସୁ ଶୁଦ୍ଧ ଆବର
ଶରଣ ମୁଁ ସେହି ବାସୁଦେବ ଶ୍ରୀପୟର ।
ଯେ ଦୈତ୍ୟଅନ୍ତକ ଦୁଃଖ ବିନାଶର ମୂଳ
ଶାନ୍ତପର ଶକ୍ତିମୟ ଆବର ବିଶାଳ ।
ଯାହାକୁ ପାଇ ବିଜୟୀ ହୁଅନ୍ତି-ଅମରେ
ଶରଣ ମୁଁ ସେହି ବାସୁଦେବ ଶ୍ରୀପୟରେ ।
ଯେ ପ୍ରଭୁ ସୁଖ ସୁଖାନ୍ତ ସୁଖଦ ସୁଖେଶ
ଜ୍ଞାନାର୍ଣ୍ଣବ ପୁଣି ମୁନି ପାଳକ ସୁରେଶ ।
ସତ୍ୟାଗ୍ରହ ସତ୍ୟ ଗୁଣ ଆଶ୍ରିତ ଆବର
ଶରଣ ମୁଁ ସେହି ବାସୁଦେବ ଶ୍ରୀପୟର ।
ଯଜ୍ଞ ଅଙ୍ଗରୂପୀ ଯେ ପରମ ଅର୍ଥରୂପୀ
ଉଗ୍ର ପୁଣ୍ୟ ଶ୍ରୀପତି ଯେ ପ୍ରଭୁ ମାୟାରୂପୀ ।
ଜଗତ ନିବାସ ଯେହୁ ବିଜ୍ଞାନ କେବଳ
ଶରଣ ମୁଁ ବାସୁଦେବ ଚରଣ ଯୁଗଳ ।
ସମୁଦ୍ରେ ବିଶାଳ ନାଗଭୋଗେ ଯା ଶୟନ
କରଇ ସେ ବାସୁଦେବ ଚରଣ ବନ୍ଦନ ।
ଶ୍ରୀପାଦପଦ୍ମ ଦ୍ୱୟରେ ନିତ୍ୟ ପ୍ରଣମଇ
ଯେଉଁ ପାଦପଦ୍ମ ପୁଣ୍ୟେ ବିରାଜୁ ଅଛଇ ।
ନିତ୍ୟ ମଙ୍ଗଳଦାୟକ ବହୁ ତୀର୍ଥାଶ୍ରିତ
କମଳରାଜର ସର୍ବ ସଉଷ୍ଟବ ଜିତ ।
ମହାରକ୍ତୋତ୍ପଳନିଭ ପାପ ଅପହାରୀ
ନୁପୁର ମୁଦ୍ରିକା ଆଦି ଅଳଙ୍କାରଧାରୀ ।
ସେହି ଶ୍ରୀ ବାସୁଦେବର ପାଦପଦ୍ମ ବନ୍ଦେ
ପ୍ରଣାମ କରଇ ମୁହିଁ ନିତ୍ୟ ଅପ୍ରମାଦେ ।
ଦେବତା ସିଦ୍ଧ ଯେ ମୁନି ନାଗଇନ୍ଦ୍ରଗଣ
ଏକାନ୍ତ ଭକତି ଯୋଗେ ଯେ ପଦ୍ମଚରଣ ।
ବନ୍ଦନ୍ତି ମୁଁ ନିତି ସେହି ଶ୍ରୀ ବାସୁଦେବର
ପବିତ୍ର ପାଦପଙ୍କଜେ କରେ ନମସ୍କାର ।
ଯାର ପାଦ ଚ୍ୟୁତ ଜଳେ ବୁଡ଼ି ମୁନିଗଣ
ସର୍ବଦା ନିମଗ୍ନ ଥାନ୍ତି ଅହେ ସୁଜ୍ଞଜନ ।
ପବିତ୍ର ହୋଇ ସକଳ କଳମଶ ନାଶି
ହୁଅନ୍ତି ସ୍ୱର୍ଗ ପୁରକୁ ଯାଇ ସ୍ୱର୍ଗବାସୀ ।
ତହୁଁ ସେ ପ୍ରସନ୍ନ ମନେ ମୋକ୍ଷ ଫଳ ପାଇ
ସେ ବାସୁଦେବ ଚରଣେ ଶରଣ ପଶଇ ।
ଶ୍ରୀବିଷ୍ଣୁ ପାଦଉଦକ ଥାଇ ଯେଉଁସ୍ଥାନେ
ଗଙ୍ଗା ଆଦି ସବୁତୀର୍ଥ ଥାନ୍ତି ସେହି ସ୍ଥାନେ ।
ପାପ ଆତ୍ମା ଜନ ଯେତେ ସେ ଉଦକ ପାଇ
ଯୁଦ୍ଧ ହୋଇଣ ମୁରାରି ନିଳୟକୁ ଯାଇ ।
ସେ ଉଦକ ଘୋର ପାପିଜନେ ଢ଼ାଳିଶିରେ
ମୋକ୍ଷ ପାନ୍ତି ପ୍ରଣମଇ ସେ ଈଶ ପୟରେ ।
ମହାତମା ଚକ୍ରପାଣି ନଇବେଦ୍ୟ ଖାଇ
ସବୁ ଅର୍ଥ ପାଇ ବାଜପେୟ ଫଳ ପାଇ ।
ତପୀମାନେ ଯାହା ଚିନ୍ତି ଲଭନ୍ତି ସୁଗତି
ମୁ ସେ ନାରାୟଣ ପାଦପଦ୍ମ ଚିନ୍ତେ ନିତି ।
ନରକ ବିନାଶନ ଯେ ପ୍ରଭୁ ମାୟା ଶୂନ୍ୟ
ସକଳ ପୁଣି ଗୁଣଙ୍କ ଗୁଣର ବିଧାନ ।
ସେ ବାସୁଦେବ ଚରଣେ ପଶିଲି ଶରଣ
ଯାହାଙ୍କ ନାମ ଅଟଇ ପତିତପାବନ ।
ଯେ ଋଷି ସିଦ୍ଧ ଚାରଣ ଦେବତା ବନ୍ଦିତ
ସେ ବିଶ୍ୱନିଧାନ ହେତୁ ସକଳ ପୂଜିତ ।
ବ୍ରହ୍ମା ଆଦି ଦେବଙ୍କର ପ୍ରଭୁ ଯେ ଅଟନ୍ତି
ସଂସାର ମହା ଅର୍ଣ୍ଣବେ ଯେ କି ବୁଡ଼ିଥାନ୍ତି ।
ସ୍ନେହଭରେ କରନ୍ତି ଯେ ତାହାଙ୍କୁ ଉଦ୍ଧାର
ପବିତ୍ର ଚରଣ ଦୁଇ ସେ ବାସୁଦେବର ।
ଭକତିରେ ସେବି ପୁଣି ନମସ୍କାର କରେ
ସାମ ଗାନ କୁତୁହଳୀ ଯଜ୍ଞ ମଣ୍ଡପରେ ।
ଶ୍ରୀ ବାମନରୂପେ ଯେଉଁ ଦେବ ଦେଖାଦେଇ
ତିନିଭୁବନର ଏକମାତ୍ର ପ୍ରଭୁ ହୋଇ ।
ଶୁଭ ଦୃଷ୍ଟିରେ ଯେ କଲେ ବଳିକି ନିଷ୍ପାପୀ
ସେ ବାସୁଦେବ ପରମ ପାବନ ସ୍ୱରୂପୀ ।
ତାର ପାଦ ଅରବିନ୍ଦ ଦ୍ୱନ୍ଦ୍ୱ ମୁଁ ବନ୍ଦଇ
କରଯୋଡ଼ି ସବିନୟେ ସ୍ତୁତି ଆରମ୍ଭଇ ।
ଦ୍ୱିଜ ମଣ୍ଡଳେ ଯେ ସ୍ୱାମୀ ଯଜ୍ଞେ ବିରାଜିତ
ବ୍ରହ୍ମ ଶୋଭାଦିବ୍ୟତେଜେ ଯେ ପୁଣିଶୋଭିତ ।
ଦେବଙ୍କ ହିତ ନିମନ୍ତେ ଯେ ଦେବାଧିରାୟ
ବିରୋଚନ ନନ୍ଦନ ଯେ ବଳି ଦୈତ୍ୟରାୟ ।

ଦେହି ଦେହି କହି ମାଗି ତିନିପାଦ ଭୂଇଁ
ଇନ୍ଦ୍ରନୀଳମଣି ଛବି ଯାର ବିରାଜଇ ।
ଯାହାଙ୍କୁ ଦେଖିବା ପାଇଁ ଆସି ମୁନିଜନେ
ଦେଖିଲେ ରବିମଣ୍ଡଳେ ରହିଣ ନୟନେ ।
ରବି ଚନ୍ଦ୍ର ମଧ ସ୍ୱର୍ଗ ଘୋଟିଲେ ଯେ ପାଦେ
ଯାର ବିଶ୍ୱବ୍ୟାପୀ ବପୁ ତିନିପୁରେ ଉଦେ ।
ସୁରଗଣ ଲୟପାଇ ଯେଉଁ କଳେବରେ
ନମଇଁ ସେ ଚକ୍ରପାଣି ଅତୁଳ ପୟରେ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ଗୁରୁତୀର୍ଥମହାତ୍ମ୍ୟେ ଚ୍ୟବନ
ଚରିତେ ଶ୍ରୀ ବାସୁଦେବ ସ୍ତୋତ୍ରଂ
ନାମ ଅଷ୍ଟନବତିତମୋଽଧ୍ୟାୟଃ ।



## ନବନବତି ଅଧ୍ୟାୟ

### ସ୍ତୋତ୍ର ଶ୍ରବଣେ ସୁବାହୁର ମୋକ୍ଷ ଓ ଫଳଶ୍ରୁତି

ଶ୍ରୀବିଷ୍ଣୁ କହିଲେ ସେହି ସୁବାହୁ ରାଜନ
ପରମ ମଙ୍ଗଳମୟ ସ୍ତୋତ୍ର ପୁରାତନ ।
ଶୁଣି ସୁଖୀ ହେଲେ କ୍ଷୁଧା ତୃଷା ହେଲା ଦୂର
ତତକ୍ଷଣେ ଦେବତୁଲ୍ୟ ହେଲେ ନୃପବର ।
ରାଣୀ ତତକ୍ଷଣେ ହେଲା ଅତି ରୂପବତୀ
ତେତିଶ କୋଟି ଦେବତା ତହିଁ କି ଆସନ୍ତି ।
ବିପ୍ରଗଣ ସିଦ୍ଧଗଣ ହରିଭକ୍ତ ଜନେ
ଶଙ୍ଖ ଚକ୍ର ଗଦା ପଦ୍ମ ଧାରୀ ବିଷ୍ଣୁଗଣେ ।
ଶ୍ରୀବିଷ୍ଣୁ ଶ୍ରୀ ନାରଦ ଯେ ଶ୍ରୀ ଭାର୍ଗବ ବ୍ୟାସ
ମାର୍କଣ୍ଡେୟ ଆସିଲେ ଯେ ସଙ୍ଗେ ଘେନିଶିଷ୍ୟ ।
ବିଷ୍ଣୁ ଭକତ ଯେ ମୁନି ବାଲ୍ମୀକି ଅଇଲେ
ବ୍ରହ୍ମପୁତ୍ର ବଶିଷ୍ଠ ଯେ ତାଙ୍କ ସଙ୍ଗେ ଥିଲେ ।
ମହାତମା ଗର୍ଗମୁନି ଶ୍ରୀହରି ଭକତ
ଜାବାଳି ରଭ୍ୟ କଶ୍ୟପ ଆଦି ତପୋବନ୍ତ ।
ସମସ୍ତେ ତାଙ୍କୁ ଦେଖିବା ପାଇଁ ବିଜେ କଲେ
ନୟନେ ଦେଖି ତାହାଙ୍କୁ ଆନନ୍ଦ ହୋଇଲେ ।
ଯେ କି ବଡ଼ ଭାଗ୍ୟବତୀ ଶ୍ରୀବିଷ୍ଣୁର ପ୍ରିୟ
ଯେ କି ନିତ୍ୟ ସେବୁଥାଏ ହରି ପାଦଦ୍ୱୟ ।
ଯେକି ପୁଣ୍ୟ ଧନ୍ୟ ପୁଣି କଳମଶ ଶୂନ୍ୟ
ଶ୍ରୀହରି ପଛେ ଗୋଡ଼ାଇ ଅଇଲେ ସେସ୍ଥାନ
ସମସ୍ତେ ଏକାଠି ହୋଇ କଲେ ରାଜା ସ୍ତୁତି
ଦେବଗଣ ବିଷ୍ଣୁ ବୈଶ୍ୱାନର ପ୍ରଜାପତି ।
ଯେତେକ ଦେବୀ ସେ ସ୍ଥାନେମିଳିଲେସମସ୍ତେ
ଗନ୍ଧର୍ବ ରାଜା ସହିତେ ଗନ୍ଧର୍ବହିଁ ଯେତେ ।
ମଧୁର ସ୍ୱରେ ଉତ୍ତମ ଗୀତ ଗାନ କଲେ
ମୁନିମାନେ ବେଦସ୍ତବ ଆଗରେ ପଢ଼ିଲେ ।
ରାଜାଙ୍କୁ ଚାହିଁ କହିଲେ ଦେବଦେବ ହରି
ତୁ ମୋତେ ସନ୍ତୋଷ ଯେଣୁ କଲୁ ଦଣ୍ଡଧାରୀ ।
ତୋର ଯାହା ଇଚ୍ଛା ମାଗି ଘେନ ଏବେବର
ଶ୍ରୀହରି ମୁଖୁଁ ଏମନ୍ତ ଶୁଣି ନୃପବର ।
ଦେଖିଲେ ଆଖିରବେନି ପତା ଟେକିଦେଇ
କହୁଛନ୍ତି ହରି ତାର ଆଗେ ଉଭାହୋଇ ।
ନୀଳ ଉତ୍ପଳ ପରାୟ ବିରାଜଇ ଆଭା
ଶଙ୍ଖ ଚକ୍ର ଗଦା ପଦ୍ମ କରେ ପାଏ ଶୋଭା ।
ହାର କଙ୍କଣ ଆଦିରେ ସର୍ବାଙ୍ଗ ମଣ୍ଡିତ
ପରମ ଈଶ୍ୱର ପୁଣି ଅଟନ୍ତି ଶ୍ରୀଯୁକ୍ତ ।
ଦେବତାଙ୍କ ମଧ୍ୟେ ରବି ତୁଲ୍ୟ ବିରାଜନ୍ତି
ମହାମୂଲ୍ୟ ଆଭରଣେ ଶୋଭା ପାଉଛନ୍ତି ।
ଦିବ୍ୟଗନ୍ଧ ଲିପି ହୋଇଛନ୍ତି କଳେବରେ
ଜଗତପତି ହରିଙ୍କି ଦେଖି ଏରୂପରେ ।
ଦଣ୍ଡବତ ନମସ୍କାର କରି ବାରମ୍ବାର
ଜୟ ଜୟ କହି ପ୍ରଣମଇଁ ନୃପବର ।
କହଇ ହେ ପ୍ରଭୁ ମୁହିଁ ପାଦତଳ ଦାସ
ଦାସର ଦାସ ମୁଁ ତୋର ଆହେ ପୀତବାସ ।
ତୁମ୍ଭର ଭକତି ଜଣା ନାହିଁ ପ୍ରଭୁ ମୋତେ
ଆହେ ହରି ତୁମ୍ଭ ଭାବ ଜାଣିବି କେମନ୍ତେ ।
ଭାରିଯା ସହିତେ ମୁହଁ ପଶିଲି ଶରଣ
ରକ୍ଷାକର ହେ ମାଧବ ଦେବ ନାରାୟଣ ।
ତୁମ୍ଭ ଧ୍ୟାନେ ତୁମ୍ଭପାଦେ ଲୀନ ଯାର ମନ
ସେ ଦ୍ୱିଜ ସେହିମାନବ ଏ ସଂସାରେ ଧନ୍ୟ ।
ଭବ ମାଧବ ଆଦି ଯେ ତୁମ୍ଭ ନାମ ଧରି
ପବିତ୍ର ଦେହେ ଗମଇ ବଇକୁଣ୍ଠପୁରୀ ।
ତୁମ୍ଭ ପାଦପଦ୍ମ ଜଳ ଯେ ଧରଇ ଶିରେ
ସ୍ନାନ କରଇ ସେ ଜାଣ ସବୁତୀର୍ଥ ନୀରେ ।

ଶେଷେ ସୁର ଧାମକୁ ସେ କରଇ ଗମନ
ଯୋଗ ସାଧିନାହିଁ ପୁଣି ମୁଁ ପତିତ ଜନ ।
ଭକ୍ତି ନାହିଁ ଜ୍ଞାନନାହିଁ କ୍ରିୟା ନାହିଁ ପୁଣି
କି ପୁଣ୍ୟ ଦେଖି ମୋହର ଶଙ୍ଖ ଚକ୍ରପାଣି ।
ବର ଦେବାପାଇଁ ଆସି କହୁଅଛ ମୋତେ
ଶ୍ରୀହରି ବୋଇଲେ ରାଏ ଶୁଣ ଏକ ଚିତ୍ତେ ।
ଯେଉଁ ବାସୁଦେବ ସ୍ତୋତ୍ର ମହାପାପହର
ଶୁଣିଲ ବିଜ୍ୱଳ ପକ୍ଷୀ ମୁଖୁଁ ନୃପବର ।
ତହିଁରେ ତୁମ୍ଭର ସବୁ ପାପ ଗଲା ଛାଡ଼ି
ମୁକତିଭାଜନ ହେଲ ଏଣୁ ଆମ୍ଭେ ବେଢ଼ି ।
କହୁଅଛୁଁ ଆମ୍ଭପୁରେ ଆସ ତୁ ଏକ୍ଷଣେ
ଦିବ୍ୟ ଭୋଗ ଉପଭୋଗ କର ଦିନେ ଦିନେ ।
ନୃପତି କହିଲେ ତୁମ୍ଭେ ଦେବ ଦେବରାୟ
ଅଶେଷ ବ୍ରହ୍ମାଣ୍ଡ ସୃଷ୍ଟି ସ୍ଥିତି କର ଲୟ ।
କୃପାକରି ଏ ଦୀନକୁ ଦେବ ଯେବେ ବର
ଆଗ ଯାହା ମାଗୁଛି ତା ଅଙ୍ଗୀକାର କର ।
ଏହି ଯେ ବିଜ୍ୱଳ ପକ୍ଷୀ ପରଉପକାରୀ
ଏହାକୁ ବର ଦିଅନ୍ତୁ ଆଗ କୃପାକରି ।
ଶ୍ରୀହରି କହିଲେ ଏହି ବିଜ୍ୱଳର ବାପ
ତା ନାମ କୁଞ୍ଜଳ ତାର ଦେହେ ନାହିଁ ପାପ
ମହାଜ୍ଞାନୀ ପଣ୍ଡିତ ସେ ଜାଣ ହେ ନୃପତି
ବାସୁଦେବ ମହାସ୍ତୋତ୍ରେ ପଢୁଥାଏ ନିତି ।
ସ୍ତିରୀପୁତ୍ର ସକୁଟୁମ୍ଭେ ଯିବେ ମୋର ପୁରେ
ଏ ସ୍ତୋତ୍ରକୁ ଯେଉଁ ଜନ ନିତି ଜପକରେ ।
ତାହାକୁ ମୁଁ ମହାଫଳ ଦିଅଇ ରାଜନ
ରାଜା ଶୁଣି ଏ ପବିତ୍ର ଶ୍ରୀମୁଖ ବଚନ ।
କହିଲେ ସଫଳ କର ଏ ସ୍ତୋତ୍ର କେଶବ
ଏମନ୍ତ ଶୁଣି ବୋଇଲେ ପ୍ରଭୁ ଦେବଦେବ ।
ସତ୍ୟଯୁଗ ଲୋକେ ପଢୁ ପଢୁ ମୋକ୍ଷହେବେ
ତ୍ରେତାଲୋକେ ମାସକରେ ମୁକତି ପାଇବେ ।
ଦ୍ୱାପର ଲୋକେ ଛମାସେ ପାଇବେ ରାଜନ
କଳିର ନରେ ପାଇବେ ବରଷକେ ଜାଣ ।
ଏ ସ୍ତବ ପଢ଼ିଲେ ବଇଷ୍ଣବ ଲୋକପାଇ
ଗତିପ୍ରଦ ସ୍ୱର୍ଗ ଜାଣ ତାହାକୁ କହଇ ।
ବିପ୍ର ଯେବେ ସ୍ନାନ କରି ତ୍ରିସନ୍ଧ୍ୟାରେ ପଢ଼େ
ପାପସବୁ ଛାଡ଼ିଯାଏ ପୁଣ୍ୟ ତାର ବଢ଼େ ।

ଥରେ କିବା ତିନିଥରେ କାମନା ତା ସିଦ୍ଧ
କ୍ଷତ୍ରିୟ ଏ ସ୍ତବ ପଢ଼ି କରେ ଯେବେ ଯୁଦ୍ଧ ।
ଜୟ ଲାଭ କରଇ ସେ ଏକଥା ପ୍ରମାଣ
ଅମାର ଭଣ୍ଡାର ତାର ଧନଧାନ୍ୟେ ପୂର୍ଣ୍ଣ ।
ବଇଶ୍ୟ ପଢ଼ିଲେ ଶିରୀ ବେପାରେ ବଢ଼ଇ
ବହୁତ ସୁଖରେ ତାର ଜୀବନ କାଟଇ ।
ଶୂଦ୍ର ପଢ଼ିଲେ ସୁଖରେ ଯାଏ ତା ଜୀବନ
ଅନ୍ୟ ଜାତି ଯେବେ ଏହା କରନ୍ତି ଶ୍ରବଣ ।
ତାହାଙ୍କ ଦେହରେ ଥିବା ପାପ ଛାଡ଼ିଯାଇ
ଯେ ଶୁଣଇ ସେ କଦାପି ନର୍କ ନ ଦେଖଇ ।
ମୋର ଏ ସ୍ତୋତ୍ରପ୍ରସାଦେ ମିଳେ ସର୍ବସିଦ୍ଧି
ତାହାର ଦେହରୁ ଛାଡ଼ି ପଳାଏ ଯେ ବ୍ୟାଧି ।
ନିତି ଯେ ପଢ଼େ ମୁଁ ତାର ସଦା ଅନୁଗତ
କ୍ଷଣେ ତା ପାଖ ନ ଛାଡ଼େ ଥାଏ ଅବିରତ ।
ପିତୃଶ୍ରାଦ୍ଧ ଦିନ ବିପ୍ର ଭୁଞ୍ଜାଇବା ବେଳେ
ଏ ସ୍ତୋତ୍ର ପଢ଼ିଲେ ତାର ଯେବେପିତୃକୁଳେ ।
ସନ୍ତୋଷରେ ବଇଷ୍ଣବ ଲୋକରେ ବସନ୍ତି
ତର୍ପଣ ଶେଷେ ବିପ୍ର ବା କ୍ଷତ୍ରି ଯେ ପଢ଼ନ୍ତି ।
ତା ପିତୃଲୋକେ ଆନନ୍ଦେ ପିଅନ୍ତି ଅମୃତ
ହୋମକାଳେ ଯଜ୍ଞକାଳେ ପଢ଼ଇ ଯେ ସ୍ତୋତ୍ର ।
ବିଘ୍ନ ନ ଘଟି ସକଳ ସିଦ୍ଧି ହୋଏ ତାର
ଇଷ୍ଟ ଫଳ ଲଭେ ପୁଣି ସନ୍ତୋଷ ଅନ୍ତର ।
ବ୍ୟାଘ୍ର ଆଦି ଜନ୍ତୁମୁଖେ ପଡ଼ିଥିବା ଜନ
ତରିଯାଏ ଏହି ସ୍ତୋତ୍ର କଲେ ସେ ପଠନ ।
ସଙ୍କଟେ ପଡ଼ି ଯେ ଲୋକ ଏ ସ୍ତୋତ୍ର ପଢ଼ଇ
ସକଳ ଭୟରୁ ସେହି ନିଶ୍ଚୟ ତରଇ ।
ବିଷମସ୍ଥାନୁ ତରିବ ପଢ଼ିଲେ ଏ ସ୍ତୋତ୍ର
ଦୁର୍ଗମ ସ୍ଥାନ ତରିବା ନୁହଇ ବିଚିତ୍ର ।
ରାଜଭୟ ଚୋରଭୟ ବ୍ୟାଧିଭୟ ଯିବ
ଡାକିନୀ ଶାକିନୀ ଆଦି ଭୟ ନ ରହିବ ।
ରାଜଦ୍ୱାର ଅଭିଯୋଗେ ନିଶ୍ଚେ ଜୟ ପାଇ
ଏ ସ୍ତୋତ୍ର ଅୟୁତ ବାର ଯେବେ କି ଜପଇ ।
ମଙ୍ଗଳ କାର୍ଯ୍ୟେ ଏ ସ୍ତୋତ୍ର ପଢ଼ିଲେ ମଙ୍ଗଳ
କ୍ରୋଧ ଲୋଭ ତ୍ୟାଗ ଜାଣ ପଢ଼ିବାର ମୂଳ ।
ଅକ୍ରୋଧୀ ନିର୍ଲୋଭୀ ପୁଣି ବ୍ରହ୍ମଚାରୀ ହୋଇ
ସ୍ନାନ ସାରି ବାସୁଦେବ ପୂଜା ଯେ କରଇ ।

ଏ ସ୍ତୋତ୍ରେ ପଢ଼ି ଅଗ୍ନିରେ ଦିଅଇ ଆହୁତି
ତିଳ ତଣ୍ଡୁଳ ମିଶାଇ ଦିଏ ଘୃତାହୁତି ।
ମୋତେ ଧ୍ୟାନକରି ପ୍ରତିଶ୍ଳୋକ ପଢୁଥିବ
ଶ୍ଳୋକ ଶେଷରେ ଅଗ୍ନିରେ ଆହୁତିଏଦେବ ।
ଏମନ୍ତ ଲୋକର ଅନୁଗତ ମୁଁ ନିରତ
ତା ପାଖ ଛାଡ଼ି ନ ପାରେ ମୁହିଁ କଦାଚିତ ।
ବେଦ ନିନ୍ଦୂକ ଜନକୁ ଏ ସ୍ତୋତ୍ର ନ ଦେବ
କଳିଯୁଗରେ ଏ ସ୍ତୋତ୍ର କେଭେ ନ କହିବ ।
ଏମନ୍ତ କଲା ଲୋକର ବଢ଼ଇ ସମ୍ପତ୍ତି
ଏ ସ୍ତୋତ୍ରର ଫଳଶ୍ରୁତି କହିଲେ ନୃପତି ।
ବ୍ରହ୍ମାର ମୁଖୁଁ ଏ ସ୍ତୋତ୍ର ଅଛଇ ବାହାରି
ରୁଦ୍ର ଏ ସ୍ତୋତ୍ର ପଢ଼ନ୍ତେ ତହୁଁ ବଜ୍ରଧାରୀ ।
ପଢ଼ନ୍ତେ ତାଙ୍କର ବ୍ରହ୍ମହତ୍ୟା ପାପଗଲି
ତହୁଁ ଏ ସ୍ତୋତ୍ର କ୍ରମରେ ପ୍ରଚାର ହୋଇଲା
ଦେବତା ଋଷି ଗୁହ୍ୟକ ସିଦ୍ଧ ବିଦ୍ୟାଧର
ଅମରଗଣ ଯେତେକ ଥିଲେଟି ଆବର ।
ସେମାନେ ପଢ଼ି କାମନା ସିଦ୍ଧକରି ତହୁଁ
ନାଗଗଣ ଏ ସ୍ତୋତ୍ରକୁ ପୂଜା କଲେ ଯହୁଁ ।
ତେଣୁ ଯେ ନର ମୋହର ଏ ସ୍ତୋତ୍ର ପଢ଼ିବ
ଇହକାଳେ ଧନ ଜନ ପୁଣ୍ୟବାନ ହେବ ।
ଏଥିରେ ସନ୍ଦେହ ନାହିଁ ଜାଣିଥା ରାଜନ
ଭାରିଯା ଘେନି ମୋ ଘରେ ଆସ ତୁ ବହନ ।
ଏହାକହି ହରି ଦେଲେ ରାଜାହାତେ ହାତ
ସୁସ୍ୱରେ ଗନ୍ଧର୍ବଗଣ ଗାଇଲେ ଯେ ଗୀତ ।
ବାଜିଲା ଦେବ ଦୁନ୍ଦୁଭି ଅପସରା ମିଳି
ପୁଷ୍ପବୃଷ୍ଟି କଲେ ନାଚି ନାଚି ଢ଼ଳି ଢ଼ଳି ।
ଦେବଋଷି ବେଦ ପଢ଼ି କଲେ ରାଜାସ୍ତୁତି
ଭାରିଯାକୁ ସଙ୍ଗତରେ ଘେନି ସେ ନୃପତି ।
ଶ୍ରୀହରି ମନ୍ଦିରେ ଗଲା ଗଗନ ମାର୍ଗରେ
ସୁରସିଦ୍ଧଗଣ ସ୍ତୁତି ଶୁଣି ଶ୍ରବଣରେ ।
ବିଜ୍ୱଳ ଆନନ୍ଦ ହେଲା ଦେଖି ଏ ସକଳ
ପକ୍ଷ ପ୍ରବନେ କମ୍ପାଇ ଗଗନ ମଣ୍ଡଳ ।
ଯହିଁ ଥିଲେ ପିତାମାତା ସେ ସ୍ଥାନେ ମିଳିଲା
ଦୀନ ଗୋପୀନାଥ ହରିନାମ ଯେ ଗାଇଲା ।

ଇତିଶ୍ରୀ ପଦ୍ମ ପୂରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ସ୍ତୋତ୍ର ଶ୍ରବଣେ ସୁବାହୁର
ମୋକ୍ଷ ଚରିତେ ନବନବତିତମୋଽଧ୍ୟାୟଃ ।



## ଶତତମ ଅଧ୍ୟାୟ

### ପିତୃ ଅଗ୍ରତେ ବିଜ୍ୱଳର ସକଳ ବୃତ୍ତାନ୍ତ ବର୍ଣ୍ଣନ

ଶ୍ରୀବିଷ୍ଣୁ କହିଲେ ରାୟେ ଶୁଣ ଏଥୁ ଅନ୍ତେ
ନର୍ମଦା ନଦୀର ତୀରେ ବୃକ୍ଷର ଅଗ୍ରତେ ।
କୁଞ୍ଜଳପକ୍ଷୀ ଯେ ଥିଲା ବିଜୁଳି ମିଳିଲା
ପିତାର ଚରଣ ତଳେ ଓଳଗି ହୋଇଲା ।
କହିଲା ସେ ବାସୁଦେବ ସ୍ତୋତ୍ରର ମହିମା
ବିଷ୍ଣୁ ସହିତ ଯେମନ୍ତେ ସାଧୁ ମହାତମା ।
ସୁବାହୁ ରାଜା ପାଖକୁ ଆସିଲେ ଯେମନ୍ତେ
ବର ଯାଚିଲେ ରାଜାକୁ ସୁପ୍ରସନ୍ନ ଚିତ୍ତେ ।
ଯେରୂପେ ସେ ବର ଦେଲେ ସକଳ ବୁଝାଇ
ପିତା ଛାମୁରେ କହିଲା ବିଜ୍ୱଳ ଚଢ଼େଇ ।
ରାଜାର ବୃତ୍ତାନ୍ତ ଶୁଣି ଆନନ୍ଦ କୁଞ୍ଜଳ
ପୁତ୍ର ବିଜ୍ୱଳକୁ ପୁଣି କହେ କରି କୋଳ ।
ମହାପୁଣ୍ୟ କର୍ମ ତୁହି କରିଛୁରେ ବାବୁ
ଶ୍ରୀ ବାସୁଦେବର ସ୍ତୋତ୍ର ମନେରଖି ସବୁ ।
ରାଜାକୁ ଶୁଣାଇ ତାର କଲୁ ଉପକାର
ପୁତ୍ରକୁ ବହୁ କଲ୍ୟାଣ କରି ପୁତ୍ରବର ।
ପ୍ରଶଂସା କରି କହିଲା ଦେବତୁଲ୍ୟ ତୁହି
ନର୍ମଦା ନଦୀର ତୀରେ ରହି ପୁଣି ସେହି ।
ଏ ସକଳ କଥା ଦେଖି ଶୁଣି ସେ ଚ୍ୟବନ
ବଇଷ୍ଣବ ସମାଚାର ଶୁଣିଲୁ ରାଜନ ।
ଆଉ କି କହିବି ତାହା ପଚାର ନୃପତି
ବେନରାଜା ବୋଇଲେ ହେ କମଳାର ପତି ।
ଶଙ୍ଖ ପାତ୍ରେ ଢ଼ାଳିଦେଲ ଅମୃତ ମୋ ହସ୍ତେ
ତାହା ପିଇ ଅଶରଧା ବଳିବ କେମନ୍ତେ ।
ଯେତେକ ପିଇବା ଦ୍ରବ୍ୟଅଛି ଏ ସଂସାରେ
ବଇଷ୍ଣବ ଜ୍ଞାନ ଶ୍ରେଷ୍ଠ ଜାଣ ତା ମଧ୍ୟରେ ।
ବେଳୁଁ ବେଳ ପିଇବାକୁ ବଳୁଛି ମୋ ମନ
କୃପାକରି ସେ ଅମୃତ କର ପୁଣି ଦାନ ।

କୁଞ୍ଜଳ ଚଢ଼େଇ କଥା କହ ଦେବରାୟ
କି କହିଲା ତାକୁ ପୁଣି ଚତୁର୍ଥ ତନୟ ।
ବିଷ୍ଣୁ କହିଲେ ନୃପତି ଶୁଣ ମନ ଦେଇ
କୁଞ୍ଜଳ ଚ୍ୟବନ କଥା କହୁଛି ବୁଝାଇ ।
ଅତି ପବିତ୍ର ଏ ପୁଣି ସର୍ବ ପାପହର
ଶ୍ରଦ୍ଧା ଭକତିରେ ଏହା ଶୁଣେ ଯେଉଁ ନର ।
ସହସ୍ର ଗୋ ଦାନ କଲା ଫଳ ସେହି ପାଇ
ଗୋପୀନାଥ ବୋଲେ ହରି ହରି ବୋଲଭାଇ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ପିତୃ ଅଗ୍ରତେ ବିଜ୍ୱଳର ସକଳ
ବୃତାନ୍ତ ଚରିତେ ଶତତମୋଽଧ୍ୟୟଃ ।



## ଏକଶତତମ ଅଧ୍ୟାୟ

### କୁଞ୍ଜଳ ଅଗ୍ରେ ଚତୁର୍ଥ ପୁତ୍ରର ଆପଣା ବୃତ୍ତାନ୍ତ କଥନ

ସୁତମୁନି କହୁଛନ୍ତି ଶଉନକ ଆଗେ
ଦେବଦେବ ହୃଷୀକେଶ ଭକ୍ତ ଅନୁରାଗେ ।
ଅଙ୍ଗନନ୍ଦନ ନୃପତି ବେନର ଅଗ୍ରତେ
କହିଲେ ମଙ୍ଗଳମୟ କଥା ପୁଣି ଯେତେ ।
ତହିଁରେ ଏ କଥା ଗୋଟି ଅଟେ ପାପହର
ମହାତମା ଚ୍ୟବନ ଯେ ଅଟେ ଦ୍ୱିଜବର ।
ମୂଳେ ରହି ଶୁଣଇ ଯେ କୁଞ୍ଜଳ କହଇ
ଚତୁର୍ଥ ପୁତ୍ର ଯେ କପିଞ୍ଜଳ ନାମ ବହି ।
ତାହାକୁ ଡାକି କୁଞ୍ଜଳ କହେ ଆରେ ପୁଅ
କି ଅପୂର୍ବ ଦେଖିଅଛି ମୋ ଆଗରେ କୁହ ।
କପିଞ୍ଜଳ କହେ ତାତ ପଚାରିଲେ ଯାହା
କହୁଅଛି ମନ ଦେଇ ଶୁଣ ଏବେ ତାହା ।
ସେ ଅତି ବିଚିତ୍ର କଥା ଦେଖିଛି ନୟନେ
କେହି କେଭେ ଦେଖିନାହିଁ ଶୁଣିନାହିଁ କାନେ ।
ଭାଇମାନେ ଶୁଣନ୍ତୁ ତା ଶୁଣନ୍ତୁ ଆପଣ
ସେ ଅପୂର୍ବ କଥା ମାତା କରନ୍ତୁ ଶ୍ରବଣ ।
ଚନ୍ଦ୍ରମା ପ୍ରାୟ ଧବଳ କଇଳାସ ଗିରି
ତାର ସମସରି ଶୃଙ୍ଗ ନାହିଁ ତିନି ପୁରୀ ।
ସବୁ ଧାତୁ ସବୁ ତରୁ ତହିଁ ବିରାଜଇ
ଗଙ୍ଗାଜଳେ ସବୁବେଳେ ସ୍ନାନ କରୁଥାଇ ।
ସହସ୍ର ସହସ୍ର ନଦୀ ତହୁଁ ଫୁଟି ବହେ
ସହସ୍ର ସହସ୍ର ଜଳପୂର୍ଣ୍ଣ ସରେ ଶୋହେ ।
କେତେ ଯେ ପୋଖରୀ ତହିଁ ବ୍ୟାପୀସରୋବର
କ୍ରୀଡ଼ନ୍ତି ତହିଁରେ ହଂସ ସାରସ ଅପାର ।
ସବୁ ନଦୀ ପୁଣ୍ୟତୋୟା ପାପବିନାଶିନୀ
ବୃକ୍ଷେ ତହିଁ ବିରାଜନ୍ତି ହୋଇ ଶ୍ରେଣୀ ଶ୍ରେଣୀ ।
ଫଳ ପୁଷ୍ପରେ ସେ ବୃକ୍ଷେ ପାଉଛନ୍ତି ଶୋଭା
ଚନ୍ଦ୍ରପ୍ରାୟ ବିରାଜଇ ଗିରିବର ପ୍ରଭା ।
ଗନ୍ଧର୍ବ ଚାରଣ ସିଦ୍ଧ ଅପସରା ଗଣ
ସବୁବେଳେ କରୁଥାନ୍ତି ତହିଁ ବିଚରଣ ।
ଦେବତା କିନ୍ନରଙ୍କର କ୍ରୀଡ଼ା ଭୂମି ସେହି
ଦିବ୍ୟତରୁ ଦିବ୍ୟଗନ୍ଧ ସଦା ଥାଇ ତହିଁ ।
ନାନାରତ୍ନ ଅଛଇ ସେ କଇଳାସ ଶୃଙ୍ଗେ
ସ୍ଫଟିକ ବହୁତ ଶିଳା ଥାଇ ନାନାରଙ୍ଗେ ।
ସୂର୍ଯ୍ୟତେଜ ପ୍ରାୟ ତେଜପୁଞ୍ଜ ବିରାଜଇ
ଚନ୍ଦନ ବଉଳ ଗଛ ବହୁତ ଅଛଇ ।
ନୀଳ କଳା ଧଳାଫୁଲ ବୃକ୍ଷ ତହିଁ ଶୋହେ
ପକ୍ଷିଙ୍କ ମଧୁର ନାଦ ଗିରିକଥା କହେ ।
ଭ୍ରମଣ ଝଙ୍କାର ତହିଁ କୋକିଳ ଆଳାପ
ଶିବ ମନ୍ଦିର ତହିଁରେ ଅଛଇ ଅମାପ ।
ଶୁଭ୍ର କିରଣେ ଉଜ୍ଜ୍ୱଳ ସେ ସବୁ ମନ୍ଦିର
ଧବଳମୟ ସେ ଗିରି ଅପୂର୍ବ ସୁନ୍ଦର ।
ବହୁତ ସିଂହେ ସୈରିଭ ତହିଁରେ ଅଛନ୍ତି
ଦିଗ ଗଜ ନାନା ଗଜ ତହିଁ ବିରାଜନ୍ତି ।
ନାନାଜାତି ମୃଗ ନାନାଜାତି ଶାଖା ମୃଗ
ମୟୂରଙ୍କ କେକାରବେ ଗିରି ସବୁଦିଗ ।
ପୂରିବାରୁ ମନୋହର ସେହି କଇଳାସ
କନ୍ଦର କୂଟ ଲେପନ ସାନୁ ଯେ ଅଶେଷ ।
ଥିବାରୁ ଅତି ସୁନ୍ଦର ଦିଶେ ଗିରିବର
ନାନା ଅଉଷଧି ଅଛି ତହିଁରେ ଆବର ।
ପୁଣ୍ୟଆତ୍ମା ଜନଙ୍କର ବାସସ୍ଥାନ ସେହି
ଝରଣା ବହୁତ ତିହିଁ ଅଛଇ ଯେ ରହି ।
ଭିଲ୍ଲ କୋଳ ପୁଳିନ୍ଦ ଯେ ଅଛନ୍ତି ବହୁତ
ସେ ଗିରିରାଜ ବିକଟ ଶିଖରେ ଶୋଭିତ ।

ଅସଂଖ୍ୟ ଗୁହା ତହିଁରେ ଅଛି ପୁଣି ତାତ
କଉତୁକ ନାନାବିଧ ଅଛଇ ବହୁତ ।
ଗଙ୍ଗୋଦକ ବହିଯାଏ ସେ ଗିରିରୁ ପୁଣି
ସେ ଗିରିବରେ ଅଛନ୍ତି ପ୍ରଭୁ ଶୂଳପାଣି ।
ମୁଁ ଯାଇଁ ସେ ଗିରିପରେ ପହୁଞ୍ଚିଲି ତାତ
ଦେଖିଲି ତହିଁ ମୁଁ ପୁଣି ଅତି ଆଚମ୍ଭିତ ।
ଦେଖିନାହିଁ ଶୁଣିନାହିଁ ଯାହାକି ମୁଁ କାହିଁ
ତାହା କହୁଅଛି ଶୁଣ ତୁମ୍ଭେ ମନଦେଇ ।
ମେରୁଗିରି ଶିଖୁ ବହି ଆସେ ଗଙ୍ଗା ଜଳ
କଳକଳ ନାଦକରି ପଡ଼ଇ ଭୂତଳ ।
ହିମ କ୍ଷୀର ସୁନାପରି ବର୍ଣ୍ଣ ତାର ଦିଶେ
ସେ ପ୍ରବାହ କଇଳାସ ଶୃଙ୍ଗେ ଯାଇଁ ମିଶେ ।
ଜଳପଡ଼ି ତହିଁ ଏକ ମହାହ୍ରଦ ହୋଇ
ଦୀର୍ଘ ପ୍ରତିରେ ସେ ଦଶ ଯୋଜନ ଅଟଇ ।
ନିର୍ମଳ ଜଳ ତହିଁରେ ପହଁରନ୍ତି ହଂସ
ସେ ହ୍ରଦେ ସବୁ ବର୍ଣ୍ଣର ହଂସ କରି ବାସ ।
ସାମଗାନ କଲା ପ୍ରାୟ ଶୁଭେ ତାଙ୍କ ଧ୍ୱନି
ସେହି ସରୋବର ଶୋଭା କି କହିବି ପୁଣି ।
ବଡ଼ ଶିଳାଖଣ୍ଡ ପଡ଼ିଅଛି ତାର ତୀରେ
ହିମକନ୍ୟା ବସିଅଛି ସେ ଶିଳା ଉପରେ ।
କେଶ ତାହାର ମୁକ୍ତୁଳ ରୂପ ରତ୍ନମୟୀ
ଗୁଣ ଲକ୍ଷଣ ସକଳ ଅଛି ତାହା ତହିଁ ।
ଦିବ୍ୟ ଅଳଙ୍କାରମାନ ଘେନିଛି ସୁନ୍ଦରୀ
ଗିରିରାଜକୁମାରୀ କି ବରୁଣ କୁମାରୀ ।
କିବା ବ୍ରହ୍ମାର ଭାରିଯା ଅଗ୍ନିର ଭାରିଯା
ରୋହିଣୀ କିବା ଇନ୍ଦ୍ରର ପତ୍ନୀ ପୁଲୋମଜା ।
ଏରୂପେ ଯୁବତୀ କାହିଁ ଦେଖା ଶୁଣାନାହିଁ
ଅପୂର୍ବ ସୁନ୍ଦରୀମଣି ବସିଅଛି ତହିଁ ।
ଆହେ ତାତ କି କହିବି ରୂପ ଗୁଣ ଶୀଳ
ଅପୂର୍ବ ଗଠନ ଅଙ୍ଗ ପ୍ରତ୍ୟଙ୍ଗ ସକଳ ।
ଅଙ୍ଗକୁ ଚାହିଁ ବିଧାତା ଗଢ଼ିଛି ପ୍ରତ୍ୟଙ୍ଗ
ଦେହ ସୁନ୍ଦରକୁ ଚାହିଁ ତାର ଢଙ୍ଗଢ଼ାଙ୍ଗ ।
ଅପସରା ସୁରନାରୀ ନାଗ ଯକ୍ଷନାରୀ
ସୁନ୍ଦରପଣେ ତାହାକୁ ନୋହିବେ କେ ସରି ।
ତାପରି ରୂପ ସମ୍ପଦ ଆନ ପାଇ ନାହିଁ
ଶିଳା ଉପରେ ସେ କନ୍ୟା ଦୁଃଖେ ଅଛିରହି ।

ଏକାକେ ସୁସ୍ୱରେ ବାଳା କରଇ ରୋଦନ
ଅଶ୍ରୁବିନ୍ଦୁ ପଡ଼େ ମୁକ୍ତା ଫଳର ସମାନ ।
ସେ ନିର୍ମଳ ଅଶ୍ରୁ ବିନ୍ଦୁ ପଡ଼େ ସରୋବରେ
ପଦ୍ମଫୁଲ ସବୁ ଫୁଟେ ମିଶି ସେହି ନୀରେ ।
ସେ ସବୁ ପଦ୍ମଫୁଲର ବାସନା ଅପୂର୍ବ
ଅତି ସୁନ୍ଦର ଦିଶଇ ପଦ୍ମଫୁଲ ସର୍ବ ।
ଫୁଲ ସଉଗନ୍ଧ ବନ ମନକୁ ହରଇ
ଅକଳିତ ଅଶ୍ରୁ ବିନ୍ଦୁ ଫୁଲ ବିରାଜଇ ।
ହଂସ ସବୁ ପହଁରନ୍ତି ସେହି ସରୋବରେ
ଗଙ୍ଗା ନଦୀର ପ୍ରବାହ ତହିଁରୁ ବାହାରେ ।
ସେହି ନଦୀ ବହିଯାଇ ଗିରି କଇଳାସେ
ରତ୍ନ କନ୍ଦର ମଧ୍ୟରେ ମନୋହର ଦିଶେ ।
ଦୁଇ ଯୋଜନ ବିସ୍ତାର ସେ ନଦୀର ତହିଁ
ଶୀତଳ ସ୍ୱାଦୁ ନିର୍ମଳ ଜଳେ ପୂରିଥାଇ ।
ଜଳଚର ପକ୍ଷିଙ୍କର ସୁସ୍ୱର ନିନାଦ
ରାବଦେଇ ଖେଳୁଛନ୍ତି ତହିଁ ହଂସବୃନ୍ଦ ।
ମୁନିଜନେ ସ୍ନାନ କରୁଥାନ୍ତି ସେହି ଜଳେ
ସେ ନଦୀ ବିରାଜେ ନାନାବର୍ଣ୍ଣ ପଦ୍ମଫୁଲେ ।
ପଦ୍ମ ସଉଗନ୍ଧ ଜଳ ପାଇ ପକ୍ଷିକୁଳ
ଆନନ୍ଦରେ କରୁଥାନ୍ତି ତହିଁ କୋଳାହଳ ।
ସେ ରତ୍ନ ଗିରି ଦେବତା ଦାନବେ ପୂଜିତ
ରତ୍ନେଶ୍ୱର ମହେଶ୍ୱର ତହିଁ ଅବସ୍ଥିତ ।
ଆହେ ତାତ ତହିଁ ଏକ ମୁନି ମୁଁ ଦେଖିଲି
ତାହାଙ୍କ ସର୍ବାଙ୍ଗେ ଅସ୍ଥି ଚର୍ମ ଅଛି ଖାଲି ।
ଜଟାମଣ୍ଡଳେ ଆବୃତ ସର୍ବାଙ୍ଗ ତାଙ୍କର
କଟିରେ ଯେ କଉପୀନ ଦିଶଇ ସୁନ୍ଦର ।
ଶୂନ୍ୟରେ ରହି ଅଛନ୍ତି ମୁନି ଅନାହାରେ
କେବଳ ଭସ୍ମ ଭୂଷଣ ତପୀ କଳେବରେ ।
ଶୁଖିଲା ପତ୍ର ଭକ୍ଷଣ କରନ୍ତି ସେ ମୁନି
ଶିବ ଭକତ ସେ ତପୋଧନ ମହାଜ୍ଞାନୀ ।
ସେ ଅଶ୍ରୁବିନ୍ଦୁ ଜନିତ ପଦ୍ମଫୁଲ ଯେତେ
ରତ୍ନେଶ୍ୱର ଶମ୍ଭୁଶିରେ ତୋଳିଦିଏ ନିତ୍ୟେ ।
ଗୀତ ନୃତ୍ୟରେ ପ୍ରବୀଣ ସେହି ମୁନିବର
ଗୀତ ଗାଇ ନାଚଇ ସେ ଧରି ଶିବଦ୍ୱାର ।
ପୂଜା ସାରି ମଠକୁ ସେ ଆସି କାନ୍ଦେ ବସି
ଏ ଅପୂର୍ବ କହିଲି ମୁଁ ତାତ ତୋତେ ଆସି ।

ସେ ନାରୀ କିଏ କିପାଇଁ କରଇ ରୋଦନ
ସେ ପୁରୁଷବର କିଏ କିମ୍ବା ତପେ କ୍ଷୀଣ ।
ଶିବ ପୂଜି କାହିଁ ପାଇଁ ରୋଦନ କରଇ
ପଦ୍ମ ଫୁଲ କିମ୍ବା ତାର ଲୋତକେ ଫୁଟଇ ।
ମୋର ଏ ସନ୍ଦେହ ତୁଟି ଯାଉ କହ ତାହା
ପୁତ୍ର କପିଞ୍ଜଳ କଥା ଶୁଣି ପକ୍ଷି ନାହା ।
କହିବାକୁ ଆରମ୍ଭିଲା ତହିଁର କାହାଣୀ
ଚ୍ୟବନ ମୁନି ଯେ ମନେ ପାରଇ ତା ଶୁଣି ।
କୁଞ୍ଜଳ ବିସ୍ତାର କରି କହିଲା ସକଳ
ଦୀନ ଗୋପୀନାଥ କୁହେ ରଖ ଆଦିମୂଳ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ କୁଞ୍ଜଳ ଅଗ୍ରେ ଚତୁର୍ଥ ପୁତ୍ରର
ଆପଣା ବୃତ୍ତାନ୍ତ କଥନେ
ଏକାଧିକଶତତମୋଽଧ୍ୟାୟଃ ।



## ଦ୍ୱଧିକଶତତମ ଅଧ୍ୟାୟ

## କୁଞ୍ଜଳର କାମୋଦାହାସ୍ୟରୋଦନ ଜନିତ ପଦ୍ମ ବୃତ୍ତାନ୍ତ ଓ ଅଶୋକ ସୁନ୍ଦରୀ ବୃତ୍ତାନ୍ତ କଥନ

କୁଞ୍ଜଳ କହିଲା ବାବୁ ପଚାରିଲ ଯାହା
ବିସ୍ତାର କରି କହୁଛି ଶୁଣ ଏବେ ତାହା ।
ହର ପାର୍ବତୀର ଲୀଳା ତାହାର କାରଣ
ଏକ ଦିନକର କଥା ମନଦେଇ ଶୁଣ ।
କ୍ରୀଡ଼ା କରୁ କରୁ ଦିନେ ଦେବୀ ଯେ ପାର୍ବତୀ
ଈଶ୍ୱରଙ୍କୁ ବୋଇଲେ ଭୋନାଥ ପଶୁପତି ।
ଶରଧା ନ ଭାଙ୍ଗ ଚାଲ ନନ୍ଦନକାନନ
ହେଉ ହେଉ ବୋଇଲେ ଯେ ଦେବ ତ୍ରିଲୋଚନ ।
ନିଶ୍ଚେ ଦେଖାଇଣ ଦେବି ସେ ନନ୍ଦନବନ
ଯେବନ ସେବା କରନ୍ତି ଋଷି ମୁନି ଜନ ।
ଏହା କହି ପାର୍ବତୀଙ୍କି ଘେନି ସଙ୍ଗତରେ
ଯିବା ପାଇଁ ବାହାରିଲେ ଆନନ୍ଦ ମନରେ ।
କୋଟି କୋଟି ପ୍ରମଥ ଯେ ଗଣ ତାହାଙ୍କର
ପଦେ ପଦେ ଗୋଡ଼ାଇଲେ ନିରାୟୁଧ କର ।
ହଂସ ଚନ୍ଦ୍ର ପ୍ରାୟ ଶୁଭ୍ର ବୃଷଭ ଉପରେ
ବିଜେ କଲେ ପାର୍ବତୀଙ୍କି ଘେନି ସଙ୍ଗତରେ ।

ସେ ବୃଷଭ ଗୋଟି ବାବୁ ସର୍ବାଙ୍ଗ ସୁନ୍ଦର
ଆଭରଣେ ଅଧିକରେ ଶୋଭା କଳେବର ।
ଘଣ୍ଟାମାଳ ଲମ୍ବିଅଛି ତାହାର ଗଳାରେ
କିଙ୍କିଣି ମାଳ ବିରାଜେ ତାହାର ପୟରେ ।
ପିଠି ତାହାର ସୁନ୍ଦର ଓସାରିଆ ପୁଣି
ଚାମର ବିରାଜେ ତାର ପୃଷ୍ଠେ ପୁତ୍ରମଣି ।
ପାଟସୁତା ଗୁଛା ମୁକ୍ତାମାଳ ପାଏ ଶୋଭା
ସେ ବୃଷ ପିଠିରେ ପଡ଼େ ଦ୍ୱର ଗୌରୀପ୍ରଭା ।
ନନ୍ଦୀ ଭୃଙ୍ଗୀ ମହାକାଳ ସ୍କନ୍ଦ ଗଣେଶ୍ୱର
ବୀରଭଦ୍ର ପୁଷ୍ପଦନ୍ତ ଚଣ୍ଡୀ ମଣୀଶ୍ୱର ।
ଘଣ୍ଟାକର୍ଣ୍ଣ ମେଘନାଦ ପୁଳିନ୍ଦ ସୁବଳ
ଘଣ୍ଟାବହ କାଳିନ୍ଦ ଯେ ବୀର ଅତିବଳ ।
ବୀରବାହୁ ଚନ୍ଦ୍ରହାସ କେଶରୀ କିଙ୍କର
କୋଟି କୋଟି ରୁଦ୍ରଗଣ ଘେନି ସଙ୍ଗତର ।
ହର ପାର୍ବତୀଙ୍କି ବେଢ଼ି ଯାଉଛନ୍ତି ରଙ୍ଗେ
ନନ୍ଦନବନେ ବିଜେ ହର ଉମା ରଙ୍ଗେ ।
ସନକକୁ ଆଦିକରି ତପୋଧନ ଯେତେ
ନନ୍ଦନ ବନେ ମିଳିଲେ ଆସି ସେ ସମସ୍ତେ ।
ତହୁଁ ଗିରିଶ ଯେ ଗିରି ନନ୍ଦିନୀ କି ଚାହିଁ
ସୁନ୍ଦର ନନ୍ଦନବନ ଦେଖାନ୍ତି ଯେ ରହି ।
ବୋଲନ୍ତି ଗୋ ସଖି ଦେଖ ଏ ନନ୍ଦନବନ
ନାନା ଜାତି ବୃକ୍ଷ ଯୋଗୁଁ ପାଉଛି ଶୋଭନ ।
ନାନା ଜାତି ଫଳ ପୁଷ୍ପେ ବୃକ୍ଷେ ଶୋଭାପାନ୍ତି
ଦିବ୍ୟ କଦଳୀ ବନକୁ ଦେଖ ଗୋ ପାର୍ବତୀ ।
ଦେଖ ଦେଖ ଚମ୍ପାଫୁଲ ଫୁଟିଛି କେମନ୍ତେ
ତରା ପ୍ରାୟ ବିରାଜନ୍ତି ମଲ୍ଲୀଫୁଲ କେତେ ।
ମାଳତୀଡାଳେ ମାଳତୀ ଲତା ଶୋଭାପାଇ
ପାଟଳୀ ବନ ଫୁଲରେ ସୁନ୍ଦର ଦିଶଇ ।
ଚନ୍ଦନର ମନୋହର ଗନ୍ଧ କି ପ୍ରକାର
ଦେଖ ଗୋ ପାର୍ବତୀ ବଡ଼ ବଡ଼ ତରୁବର ।
ଦେଖ ଦେଖ ଦେବଦାରୁ ବନ ହୈମବତୀ
ଅତି ଉଚ୍ଚ ଶାଳବୃକ୍ଷ ଆଦି ଶୋଭାପାନ୍ତି ।
ଦେଖ ଦେଖ ଭବାନି ଗୋ ନାରିକେଳ ଧାଡ଼ି
ନଡ଼ିଆ ଶୋଭା ପାଆନ୍ତି ଚଉପାଶ ବେଢ଼ି ।
ଗୁଆ ପେଣ୍ଡା ବିରାଜଇ ଗୁଆ ବୃକ୍ଷ ଦେଖ
ଖଜୁରୀ କୋଳିରେ ଶୋଭାପାଏ କେଡ଼େ ବୃକ୍ଷ ।

ପଣସ ଗଛେ ପଣସ ଫଳିଛି କେମନ୍ତେ
ଅଗ୍ନିତୁଲ୍ୟ ସପ୍ତପର୍ଣ୍ଣ ବୃକ୍ଷ ଦେଖ କେତେ ।
ପରିମଳକୁ ସେ ବୃକ୍ଷେ କରୁଛନ୍ତି ବାନ୍ତି
ଦେଖ ଦେଖ ରାଜବୃକ୍ଷେ କେହ୍ନେ ଶୋଭାପାନ୍ତି ।
କଦମ୍ବ ତରୁର ଶୋଭା ଦେଖ ଗିରିସୁତେ
ଜାମୁଗଛ ଜାମୁକୋଳି ପଡ଼ଇ କେମନ୍ତେ ।
ନିମ୍ବବୃକ୍ଷ କଟୁ ଗନ୍ଧ କର ଗୋ ଆଘ୍ରାଣ
ଟଭା ଶୋଭା ଦେଖ ପ୍ରିୟେ ଦେଇ ମନପ୍ରାଣ ।
ନାରଙ୍ଗ ବୃକ୍ଷେ ନାରଙ୍ଗ ଫଳିବାର ଦେଖ
କି ସୁନ୍ଦର ଦିଶୁଅଛି ସିନ୍ଧୁ ବାର ବୃକ୍ଷ ।
ଶାଳ ପିଆଶାଳ ଶୋଭା ଦେଖ ଗୋ ପାର୍ବତୀ
ଅପୂର୍ବ ତିନ୍ଦୁକ ବନ ଦେଖ ହୈମବତୀ ।
ଉଦୁମ୍ବର ବନକୁ ଗୋ ଚାହଁ ଦେବୀ ବାରେ
ସୁନ୍ଦର କଇଥ ଫଳ ଦିଶେ କି ପ୍ରକାରେ ।
ପୁଷ୍ପ ସଉଗନ୍ଧଶୀଳୀ ଲକୁଚକୁ ଦେଖ
ଦେଖ ସ୍ଫୁଟନାକ ବୃକ୍ଷ ଚୂତଫଳ ବୃକ୍ଷ ।
ମେଘପ୍ରାୟ ନୀଳବର୍ଣ୍ଣ ରାଜାଦନ ବନ
କି ସୁନ୍ଦର ଦିଶେ ଶାଳବନ ତାଳବନ ।
ବିଶାଳ ହମାଳବନ କିରୂପରେ ଶୋହେ
ସୁନ୍ଦର ନନ୍ଦନବନ ଜନମନ ମୋହେ ।
ଏରୂପେ ବୃକ୍ଷେ ଦେଖାଇ ପାର୍ବତୀଙ୍କି ହର
ବୋଇଲେ ଔଷଧ ବୃକ୍ଷ ଅଛଇ ଆବର ।
କଳ୍ପବୃକ୍ଷ ସମ ବୃକ୍ଷ ଅଛଇ ଗୋ ସତୀ
ସକଳ କାମନା ଫଳ ସେ ବୃକ୍ଷେ ଦିଅନ୍ତି ।
ପୁଣ୍ୟଜନକ ତରୁଏ ଅଛନ୍ତି ବହୁତ
ଶୁଣ ଗୋ ପାର୍ବତୀ ନାନା ପକ୍ଷୀଙ୍କର ଗୀତ ।
କୋକିଳର କୁହୁ କୁହୁ ଧ୍ୱନି କି ସୁନ୍ଦର
ମକରନ୍ଦ ଲୋକେ ଦେଖ ଉଡ଼ନ୍ତି ଭ୍ରମର ।
ପକ୍ଷିଙ୍କର କୋଳାହଳ ଧରି ଶୁଣ ସ୍ତୁତି
ନାନାଜାତି ତରୁରାଜି ତହିଁ ବିରାଜନ୍ତି ।
ନାନା ଜାତି ମୃଗେ ଦେଖ ଖେଳନ୍ତି କେମନ୍ତେ
ବୃକ୍ଷୁଫଳ ଝଡ଼ିପଡ଼େ ପବନ ଆଘାତେ ।
ତହିଁରେ ଏ ବନଭୂମି ମୋଟା ପୂଜାପାଏ
ଦେଖିଲାମାତ୍ରେ ମନର ଆନନ୍ଦ ଜନ୍ମାଏ ।
ପୋଖରୀ ବାପୀକି ସଖି ଦେଖ ମନଦେଇ
ସୁଗନ୍ଧ ପଦ୍ମେ କେମନ୍ତେ ଜଳ ଶୋଭାପାଇ ।
ହସ କାରଣ୍ଡବ ପକ୍ଷିଙ୍କର ଜଳକେଳି
ସାଗରତୁଲ୍ୟ ବହୁତ ତଡ଼ାଗରେ ଝଳି ।
ଜନ ସଉଗନ୍ଧ ଏହାଙ୍କର ଚମତ୍କାର
ବନ ଚାରିଆଡ଼େ ଦେଖ ଅପ୍ସରା ନିକର ।
ଉତ୍ତମ ବିମାନ ଦେଖ ଅଛଇ ବହୁତ
ତହିଁରେ ଥିବା କଳସ ଦିଶେ ଗୋ କେମନ୍ତ ।
ସେ ବିମାନଯାକ ହେମଦଣ୍ଡେ ବିରାଜଇ
ଚୂନଲିପା କୋଠାଧଳା କେମନ୍ତେ ଦିଶଇ ।
କିନ୍ନର ଗନ୍ଧର୍ବଗଣ ଯହିଁ ତହିଁ ଦେଖ
କି ସୁନ୍ଦର ଦିଶେ ସୁର ସୁନ୍ଦରୀଙ୍କ ମୁଖ ।
ବଡ଼ ବଡ଼ ଯୋଗିମୁନି ବିରାଜନ୍ତି ବନେ
ବିରାଜଇ ଏହି ମନଗୋଟା ପୁଣ୍ୟସ୍ଥାନେ ।
ବନଶୋଭା ପାର୍ବତୀଙ୍କି ଦେଖାନ୍ତି ବୁଲାଇ
ପୁଣ୍ୟକାରୀ ଜନଙ୍କର ନିବାସ ଯେ ଭୂଇଁ ।
ଯେଉଁସ୍ଥାନ ସୁଖଶାନ୍ତି ଦିଅଇ ଆବର
ସେ ସ୍ଥାନମାନ ଦେଖାନ୍ତି ପାର୍ବତୀଙ୍କି ହର ।
ଆଦିତ୍ୟ ତୁଲ୍ୟ ପ୍ରତିମା ମୂରତି ଦେଖାନ୍ତି
ଦେଖି ଦେଖି ମିଳିଲେ ସେ କଳ୍ପବୃକ୍ଷ କତି ।
ବୃକ୍ଷସବୁ ଦେଖିସାରି ପାର୍ବତୀ କହନ୍ତି
ଏ ବୃକ୍ଷର ନାମ ମୋତେ କହ ପଶୁପତି ।
ଶଙ୍କର ବୋଇଲେ ବୃକ୍ଷମଧ୍ୟେ ବଡ଼ ଏହି
ଏହାର ମହିମା କହିଲେ ଯେ ନ ସରଇ ।
ଏ ବୃକ୍ଷର ପ୍ରତିଷ୍ଠା ଯେ ଅଛଇ ବହୁତ
ଦେବମଧ୍ୟେ ବଡ଼ ମଧୁସୂଦନ ଯେମନ୍ତ ।
ଗଙ୍ଗାମହିମା ଯେରୂପେ ନଦୀଙ୍କ ଭିତରେ
ଧାତା ବଡ଼ ଯେହ୍ନେ ସୃଷ୍ଟିକାରୀଙ୍କ ମଧ୍ୟରେ ।
ସୁଖକର ଦ୍ରବ୍ୟମଧ୍ୟେ ପୂର୍ଣ୍ଣଚନ୍ଦ୍ର ଯେହ୍ନେ
ଭୂତଗଣଙ୍କ ଭିତରେ ପୃଥିବୀ ଯେସନେ ।
ପାର୍ବତୀଙ୍କ ମଧ୍ୟେ ଯେହ୍ନେ ହିମାଳୟ ଗିରି
ଜଳାଶୟଙ୍କ ମଧ୍ୟରେ ସମୁଦ୍ର ଯେପରି ।
ମହାଓଷଧିମାନଙ୍କ ମଧ୍ୟ ଯେହ୍ନେ ଅନ୍ନ
ବିଦ୍ୟାମାନଙ୍କ ମଧ୍ୟରେ ଆତ୍ମ ବିଦ୍ୟା ଜାଣ ।
ପ୍ରାଣୀଙ୍କମଧ୍ୟେ ଯେସନେ ନରେନ୍ଦ୍ର ପ୍ରଧାନ
ତରୁଙ୍କ ମଧ୍ୟେ ଏ ତରୁ ଅଟଇ ତେସନ ।
ସର୍ବତିଥି ଦେବ ବିପ୍ର ପ୍ରିୟ ଏ ଅଟଇ
ପାର୍ବତୀ ବୋଇଲେ ତୁମ୍ଭେ ମୋରପ୍ରାଣସାଇଁ ।

କୃପାକରି କହ ଏହି ବୃକ୍ଷର ଯେ ଗୁଣ
ଶିବ ବୋଇଲେ ଯେ କାନ୍ତେ ମନଦେଇ ଶୁଣ ।
ପୁଣ୍ୟଆତ୍ମା ଜନ ଦେବ ଶ୍ରେଷ୍ଠଜନ ଯେତେ
ଦେବତୁଲ୍ୟ ଜନମାନେ ଆସି ଯେବେ ଏଥେ ।
ଏ ବୃକ୍ଷପାଖରେ ଯାହା ମାଗନ୍ତି ତା ପାନ୍ତି
ଏହାକୁ ଯେ କଳ୍ପଦ୍ରୁମ ନାମ ଦେଇଛନ୍ତି ।
ଏହି ଦ୍ରୁମସବୁ ଦ୍ରୁମଠାରୁ ବଡ଼ ଜାଣ
ଏହା ତହୁଁ ଉପୁଜଇ ପ୍ରିୟେ ସବୁ ପୁଣ୍ୟ ।
ଦୁର୍ଲଭ ଦ୍ରବ୍ୟ ଏ ତରୁ ଦିଅଇ ପାର୍ବତୀ
ଏହା ତହୁଁ ମୁନିଜନେ ତାହା ଘେନିଯାନ୍ତି ।
ଏ କାରଣୁ ବଡ଼ ବଡ଼ ଦେବଗଣ ଜାଣ
ଜୀବନୁ ତହୁଁ ଅଧିକ କରୁଥାନ୍ତି ଜ୍ଞାନ ।
ଧନରତ୍ନଠାରୁ ବଡ଼ ଏହାକୁ ମଣନ୍ତି
ଶମ୍ଭୁ ମୁଖୁ ଆଚମ୍ବିତ ଶୁଣି ହୈମବତୀ ।
ମନେ ମନେ ଭାବି ଘେନି ପତି ଅନୁମତି
ସ୍ତ୍ରୀରତ୍ନ ଏକମାଗିଲେ ଦେବୀ ଯେ ପାର୍ବତୀ ।
ସ୍ତିରୀରତ୍ନ ଉପୁଜିଲା ବୃକ୍ଷରୁ ତକ୍ଷଣେ
ତ୍ରିଭୁବନେ ସମନାହିଁ ତାର ରୂପଗୁଣେ ।
ବିଶ୍ୱବିମୋହିନୀ କନ୍ୟାରତ୍ନ ରୂପବତୀ
ଦେଖିଲାମାତ୍ରେ ଆଶ୍ଚର୍ଯ୍ୟ ହେଲେ ଗିରିପୁତ୍ରୀ ।
କାମସାହାଯ୍ୟକାରିଣୀ କନ୍ୟା ରତ୍ନମୟୀ
ଲାବଣ୍ୟନିଧି ପସରା ସୁଖ ସିଦ୍ଧଦାୟୀ ।
କ୍ରୀଡ଼ାର ଗୃହସ୍ୱରୂପା ସର୍ବାଙ୍ଗ ସୁନ୍ଦରୀ
ସର୍ବଗୁଣ ପରିପୂର୍ଣ୍ଣା ସୁବର୍ଣ୍ଣା ଗଉରୀ ।
କମଳ ଆୟତନେତ୍ରୀ ପଦ୍ମମୁଖୀ ସେହି
ଜାତିରେ ପଦ୍ମିନୀ ପଦ୍ମହସ୍ତା ସେ ଅଟଇ ।
ସୁବର୍ଣ୍ଣଠାରୁ ଅଧିକବର୍ଣ୍ଣ ଯେ ତାହାର
ଉଜ୍ଜ୍ୱଳକାନ୍ତି ଉତ୍ତମ ଗଠନ ଶରୀର ।
ବିମଳା ସୁତେଜା ପୁଣି ଲୀଳା ବିଳାସିନୀ
କୁଞ୍ଚିତ କେଶ ଲମ୍ବିତ ପୃଷ୍ଠ ଦେଶେ ପୁଣି ।
ସୁଗନ୍ଧ ପୁଷ୍ପରାଜିରେ ଭୂଷିତ ସୁନ୍ଦରୀ
ପ୍ରବଦ୍ଧକୁମ୍ଭା ସେ ବାଳା ସାକ୍ଷାତେ କି ଶିରୀ ।
କେଶପାଶ ବନ୍ଧନରେ ଶୋଭା ବିକାଶଇ
ସୀମନ୍ତ ପଥେ ମୁକ୍ତାମାଳ ଅଛି ଥୋଇ ।
ତରୁ ଶିର ପୁଲ ପ୍ରାୟ ଶିର ଫୁଲମାଳ
ସୀମନ୍ତ ମାଳତିଳକ ଯୋଗୁଁ ଶୋହେ ଭଲ ।

ଶୁକ୍ର ତାରାପ୍ରାୟ ସେହି ଉଜ୍ଜ୍ୱଳ ଦିଶଇ
ସେ କନ୍ୟାରତ୍ନର ପୁଣି ମରୁଭୁରୁ ଦୁଇ ।
ମଧ୍ୟେ ଶୋହେ ମୃଗନାଭି କସ୍ତୁରୀତିଳକ
ତାତେଜମୂଳତିଳକ ଜ୍ୟୋତି ଯେ ଅଧିକ ।
କେଶପାଶେ ଥିବା ତାର ମୁକ୍ତାଫଳ ଜାଳ
ଲଲାଟଫଳକ ଶୋଭା ବିସ୍ତାରେ କେବଳ ।
ନିଜପ୍ରଭାରେ ଚନ୍ଦ୍ରମା ଉଜ୍ଜ୍ୱଳ ଯେସନ
ରମ୍ୟଭୂଷଣେ ଶୋଭିତ ସେ ବାଳା ତେସନ ।
ଚନ୍ଦ୍ର ଯେହ୍ନେ ଶୋଭାପାଇ କରିଣ ବିସ୍ତାରି
ବିଶ୍ୱବିମୋହିନୀ ଶୋଭା ଛଟା ମୁଖେ ଧରି ।
ସେ ବାଳାମଣି ବିରାଜେ ସେ ତରୁନିକଟେ
ମୁଖଚନ୍ଦ୍ର ମଧ୍ୟେ ଏହି ପ୍ରଭେଦ ଯେ ଘଟେ ।
ଚନ୍ଦ୍ରମାକଳଙ୍କ ଯୁକ୍ତ ମୁଖ ନିଷ୍କଳଙ୍କ
କାଳା କଳାକ୍ଷୟ ବୃଦ୍ଧିପାଏ ସେ ଶଶାଙ୍କ ।
ନିତ୍ୟ ଅକଳଙ୍କ ମୁଖ ବାଳାର ଅଟଇ
ପଦ୍ମ ଜଳରେ ଲୁଚିଲା ମନେ ଲାଜପାଇ ।
ଦେଖିଲା ଏ ବାଳାମୁଖ ମୋ ତହୁଁ ଅଧିକ
ମୋ ସଉଗନ୍ଧ ବିକାଶ ବହେ ଏହା ମୁଖ ।
ଏହାଆଗେ କେଉଁଗର୍ବ ଦେଖାଇବି ମୁହିଁ
ଏମନ୍ତ ସେ ବୁଝିପାରି ଜଳ ଆଶ୍ରାନେଇ ।
ପଣ୍ଡିତମାନେ ତାହାର ରୂପ ଦେଖିକରି
ବୋଲନ୍ତି ଯେ କାମକୋଷାଗାର ଏହି ନାରୀ ।
ବାଳାର ଦଶନରତ୍ନ ଅତ୍ୟନ୍ତ ସୁନ୍ଦର
ହାସ୍ୟଲୀଳା କରେ ତାର ଶୋଭାକୁ ବିସ୍ତାର ।
ଅରୁଣ ଅଧର ବିମ୍ବେ ମୁଖ ଶୋଭାପାଇ
ସେହି ବାଳା ରତ୍ନମଣି ଶୁଭ୍ର ଯେ ବୋଲାଇ ।
ସୁନାସିକା ବୋଲାଇ ସେ ନାରୀରତ୍ନସାର
ରତ୍ନରେ ମଣ୍ଡିତ କର୍ଣ୍ଣ ଯୁଗଳ ତାହାର ।
ଉଜ୍ଜ୍ୱଳ ସେ ହେମକାନ୍ତି ତା କପୋଳ ଦୁଇ
ତିନିଗୋଟି ରେଖାଗ୍ରୀବାଦେଶେ ବିରାଜଇ ।
ସାକ୍ଷାତେ କି ସଉଭାଗ୍ୟ ଶୃଙ୍ଗାର ଭଣ୍ଡାର
କଠିନ ପୀନବର୍ତ୍ତୁଳ ତାର ପୟୋଧର ।
ଜଣାଯାଏ କାମରାୟେ ଅଭିଷେକପାଇଁ
କଳଶଯୁଗଳ ସେହିସ୍ଥାନେ ଅଛି ଥୋଇ ।
ସୁସମାନ କକ୍ଷଦୁଇ ଆବର ମାଂସାଳ
ସୁଲକ୍ଷଣ ଭୁଜଦ୍ୱୟ ସୁନ୍ଦର ବର୍ତ୍ତୁଳ ।

ପରମ ସୁନ୍ଦର ତାର ହସ୍ତ ପଦ୍ମ ଦୁଇ
ପଦ୍ମ ବର୍ଣ୍ଣ ସୁଶୀତଳ ଗୁଣ ଅଛି ବହି ।
ପଦ୍ମ ସ୍ୱସ୍ତିକର ଚିହ୍ନ ବିରାଜଇ ପୁଣି
ଦିବ୍ୟ ସୁଲକ୍ଷଣମାନ ଅଛି ସେହି ଘେନି ।
ଅଙ୍ଗୁଳି ପଦ୍ମ ମୃଣାଳ ପରାୟ ସରଳ
ଜଳବିନ୍ଦୁ ପ୍ରାୟ ନଖ ନିକର ସୁତୁଳ ।
ପଦ୍ମଗର୍ଭ ପ୍ରାୟ ତାର ଦେହ ବର୍ଣ୍ଣ ଦିଶେ
ସେ ବାଳା ସର୍ବାଙ୍ଗ ପଦ୍ମ ଫୁଲ ପ୍ରାୟ ବାସେ ।
ପଦ୍ମପ୍ରାୟ ସୁଶୋଭନା ସର୍ବ ସୁଲକ୍ଷଣୀ
ରକ୍ତୋତ୍ପଳ ଶୋଭା ଧରେ ତାର ପାଦବେନି ।
ପାଦ ଅଗ ନଖରତ୍ନ ଶୋଭାକୁ ବିକାଶେ
ଭାଗ୍ୟବତୀ କନ୍ୟାଙ୍କର ସୁଲକ୍ଷଣ ଦିଶେ ।
ଶାସ୍ତ୍ରେ ଯାହା ଲେଖିଛନ୍ତି ସୁଲକ୍ଷଣମାନ
ଏକନ୍ୟା ଅଙ୍ଗେ ବିରାଜେ ସେହି ସବୁ ଚିହ୍ନ ।
ସର୍ବ ଆଭରଣେ ଶୋଭାପାଇ ସେ ସୁନ୍ଦରୀ
ହାର କଙ୍କଣ ନୂପୁରେ ରଞ୍ଜିତା ଗଉରୀ ।
କାଞ୍ଚି ଦାମ କଟି ସୂତା ବିରାଜଇ ତାର
ପିନ୍ଧିଛି ସେ ନୀଳପାଟ ବସନ ଆବର ।
ସୁରକ୍ତ ଦିବ୍ୟ କୁଙ୍କୁମେ ବୋଳା ଶୋଭାପାଇ
ପାର୍ବତୀ ମନ କଳ୍ପନା ଭାବ ଅନୁଯାୟୀ ।
କଳ୍ପଦ୍ରୁମ ଗୁଣ ପାଇ ଉପୁଜିଲା ବାଳା
ଦେଖିଣ ପାର୍ବତୀ ଦେବୀ ଆନନ୍ଦେ ବିହ୍ୱଳା ।
ଶଙ୍କରଙ୍କୁ ବୋଇଲେ ହେ ଦେବ ମହେଶ୍ୱର
ଯେରୂପେ ବର୍ଣ୍ଣନା କଲ ମହିମା ଏହାର ।
ବିଡ଼ିଲି ବିଡ଼ିଲି ନାଥ ମିଛ ଯେ ନୁହଇ
ଯାହା କଳପନା କଲି ତାହା ବେଗେ ପାଇ ।
ଯେରୂପେ ଭାବିଲି ନାଥ ପାଇଲି ସେରୂପେ
ସୂତ ମୁନି କହୁଛନ୍ତି ମୁନିଙ୍କ ସମୀପେ ।
ସେହି ଚାରୁ ଗାତ୍ରୀ ହର ପାର୍ବତୀଙ୍କ ପାଦେ
ପ୍ରଣମି ବୋଇଲା କରଯୋଡ଼ି ରଖି ହୃଦେ ।
କୋମଳ ମଧୁର ସ୍ୱରେ ବୋଇଲା ଏମନ୍ତ
କି ନିମନ୍ତେ ମୋତେ ଜାତକଲ ତାତ ମାତ ।
ଏହାର କାରଣ ମୋତେ କହନ୍ତୁ ବୁଝାଇ
ପାର୍ବତୀ ବୋଇଲେ ଭଦ୍ରେ ଶୁଣ ମନଦେଇ ।
କଳପଦ୍ରୁମ ପରୀକ୍ଷା କରିବା ନିମନ୍ତେ
କଉତୁକେ ତୋର ରୂପ ମନାସିଲା ଚିତ୍ତେ ।
ତତକ୍ଷଣେ ଉପୁଜିଲୁ ତୁ ଗୋ ରୂପବତୀ
କଳପଦ୍ରୁମ ପ୍ରସାଦେ ତୋର ଉତପତ୍ତି ।
ତୋ ରୂପ ସମ୍ପଦ ଫଳ ପାଇଲି ତକ୍ଷଣେ
ଅଶୋକ ସୁନ୍ଦରୀ ନାମ ଦେଲି ତୋର କର୍ଣ୍ଣେ ।
ଅଶୋକା ସୁନ୍ଦରୀ ବୋଲି ଡାକିବେ ସମସ୍ତେ
ତୁ ମୋହର ପୁତ୍ରୀବୋଲି ଜାଣିବେ ଜଗତେ ।
ସର୍ବ ସଉଭାଗ୍ୟବତୀ ବୋଲାଇବୁ ତୁହି
ସୋମବଂଶରେ ନହୁଷ ହେବ ନରସାଇଁ ।
ପୁରନ୍ଦର ତୁଲ୍ୟ ରାଜା ହୋଇବ ନହୁଷ
ତୁ ତାର ଭାରିଯା ହେବୁ ସେ ତୋହର ଈଶ ।
ଗିରିଜା ଏରୂପେ ବର ଦେଇ ତାକୁ ଗଲେ
ଶଙ୍କର ସଙ୍ଗେ ଆନନ୍ଦେ କୈଳାସେ ମିଳିଲେ ।
ସେ ହର ପାର୍ବତୀ ପାଦତଳେ ରଖି ଚିତ୍ତ
ଅତିଦୀନ ଗୋପୀନାଥ କଲା ଏହି ଗୀତ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ଅଶୋକ ସୁନ୍ଦରୀ ବୃତ୍ତାନ୍ତ
କଥନେ ଦ୍ୱିଅଧିକଶତତମୋଽଧ୍ୟାୟଃ ।



## ତ୍ର୍ୟଧିକଶତ ଅଧ୍ୟାୟ

### ହୁଣ୍ଡ ଦୈତ୍ୟ କଥା

ପୁତ୍ରଙ୍କ ଆଗେ କୁଞ୍ଜଳ ପକ୍ଷୀ ଯେ କହଇ
ସକଳ ରମଣୀ ଶିରୋମଣି ଯେ ଅଟଇ ।
ନୃତ୍ୟ ଗୀତ ବିଚକ୍ଷଣା ସୁଚାରୁ ହାସିନୀ
ସର୍ବକାମ ଗୁଣ ଯୁତା ମଧୁର ଭାଷିଣୀ ।
ନନ୍ଦନବନେ ଜନମି ଅଶୋକ ସୁନ୍ଦରୀ
ରୂପବତୀ ଦେବକନ୍ୟା ସଙ୍ଗେ କ୍ରୀଡ଼ାକରି ।
ଭୋଗ ଉପଭୋଗ କରେ ଆନନ୍ଦ ମନରେ
ଏକ ଦିନକର କଥା ଶୁଣରେ କୁମରେ ।
ବିପ୍ରଚିତ୍ତି ଦାନବର ହୁଣ୍ଡନାମେ ସୁତ
ସ୍ୱଭାବେ ସେ ଅତି ଦୁଷ୍ଟ ପ୍ରଚଣ୍ଡ ଦୁର୍ଦ୍ଦାନ୍ତ ।
ସ୍ୱେଚ୍ଛାଚାରୀ ମହାକାମୀ ହୋଇସେ ଅସୁର
ନନ୍ଦନବନେ ପଶିଲା ପାପୀ ଦୁରାଚାର ।
ଅଶୋକ ସୁନ୍ଦରୀ ରୂପେ ତା ଦୃଷ୍ଟି ପଡ଼ିଲା
ତା ସର୍ବାଙ୍ଗ ଅଳଙ୍କାରେ ଭୂଷଣ ଦେଖିଲା ।

କାମଶରେ ବିଦ୍ଧହୋଇ ବୋଇଲା ଗୋଶୁଭେ
ତୁଗୋ କିଏ କାର କନ୍ୟାଦେଖିନାହିଁ କେଭେ ।
ଏ ନନ୍ଦନବନକୁ ଗୋ ଆସିଛ କିମ୍ପାଇଁ
ଅଶୋକ ସୁନ୍ଦରୀ କହେ ଶୁଣ ମନଦେଇ ।
ପୁଣ୍ୟମୟ ଶିବଙ୍କ ମୁଁ ଅଟଇ ଦୁହିତା
କାର୍ତ୍ତିକେୟ ଭଉଣୀ ମୁଁ ଗିରିଜା ମୋ ମାତା ।
ବାଳଭାବେ ଖେଳଇ ମୁଁ ଏ ନନ୍ଦନ ବନେ
କିଏ ତୁହି ପଚାରୁଛୁ କହ କି କାରଣେ ।
ହୁଣ୍ଡୁ କହେ ମୁହିଁ ବିପ୍ରଚିତ୍ତିର ନନ୍ଦନ
ଗୁଣବନ୍ତ ରୂପବନ୍ତ ସର୍ବ ସୁଲକ୍ଷଣ ।
ମୋର ନାମ ହୁଣ୍ଡୁ ମୁହିଁ ବଳବୀର୍ଯ୍ୟେ ଗର୍ବୀ
ସାକ୍ଷାତରେ ଦେଖୁଛତ ଯୁବାରୂପ ଛବି ।
ଦୈତ୍ୟଙ୍କ ମଧ୍ୟରେ ମୁହିଁ ଅଟଇ ପ୍ରଧାନ
ଦେବଲୋକେ ନାହିଁ କେହି ମୋହର ସମାନ ।
ମର୍ତ୍ତ୍ୟଲୋକେ ନାଗ ଲୋକେ ନ ପାଇବ କାହିଁ
ତପ ଯଶ ଧନ ବଳେ ମୋ ସମାନ ନାହିଁ ।
ବିଶାଳନୟନା ତୋର ରୂପକୁ ମୁଁ ଦେଖି
କାମ ପଞ୍ଚବାଣ ମାରି କଲାଣି ସେ ଦୁଃଖୀ ।
ଏଣୁ ତୋ ପାଦେ ଭୟରେ ପଶିଲି ଶରଣ
ଭାରିଯା ହୁଅ ତୁ ବାରେ ହୋଇ ସୁପ୍ରସନ୍ନ ।
ଅଶୋକ ସୁନ୍ଦରୀ ବୋଲେ ଶୁଣ ତା କାରଣ
କେଉଁ ଜନ ଗୁଣବନ୍ତ ଆବର କୁଳୀନ ।
ରୂପବନ୍ତ ସୁଲକ୍ଷଣ ଜନ ଯେ ହୁଅଇ
ସ୍ତିରୀ ସେ ପାତ୍ରକୁ ନିଶ୍ଚେ ବରଣ କରଇ ।
ଏହାହିଁ ସଂସାର ବିଧି ଲୋକ ବ୍ୟବହାର
ଆହେ ହୁଣ୍ଡୁ ଶୁଣ ଏବେ କାରଣ ତାହାର ।
ପିତା ମାତା ବର ବରି ଦେଇଛନ୍ତ ମୋତେ
ଏଣୁ ତାର ଭାରିଯା ମୁଁ ହୋଇଛି ଯୁଗତେ ।
ଆହେ ଦୈତ୍ୟ ରାଜଇନ୍ଦ୍ର କହୁଛି ତା ଶୁଣ
ଯେ କାରଣୁ ତୁମ୍ଭଙ୍କୁ ମୁଁ ନ କରେ ବରଣ ।
ଯେ କାଳେ ଶମ୍ଭୁର ଠାରୁ ନେଇ ଅନୁମତି
ମନରେ କଳ୍ପନା କଲେ ଦେବୀ ଯେ ପାର୍ବତୀ ।
ବୃକ୍ଷରାଜ କଳ୍ପଦ୍ରୁମ ପ୍ରସାଦରୁ ମୁହିଁ
ଉପୁଜିଲି ଆହେ ମହାମତି ଶୁଣ ତୁହି ।
ଦେବ ଦେବ ଶମ୍ଭୁଙ୍କର ସନମତି ପାଇ
ପାର୍ବତୀ ଦେବୀ କହିଲେ ମୋ ମୁଖ ଅନାଇ ।
ଆଲୋପୁତ୍ରୀ ମୋ ମାନସୁ ହେଲୁ ତୁହି ଜାତ
ମୋର କୁଳ ଉଦ୍ଧାର ତୁ କରିବୁ ନା ମାତ ।
ଦୁହିତା ଯେ ଦୁଇକୁଳ ଉଦ୍ଧାର କରଇ
ସ୍ୱାମୀକୁଳ ପିତୃକୁଳ ଜାଣ ଏହି ଦୁଇ ।
ପୁତ୍ର ଏକ କୁଳ ଜାଣ କାଇ ଉଦ୍ଧାର
କେବଳ ତା ପିତୃକୁଳ ଯାନ୍ତି ସ୍ୱର୍ଗପୁର ।
ଆମ୍ଭେ ଯାହାକୁ ଗୋ ଦେବୁଁ ସେତୋହରପତି
ତାହାକୁ ତେଜିଲେ ଭ୍ରଷ୍ଟା ହୋଇବୁ ଯୁବତୀ ।
ସୋମବଂଶେ ଜନମିବ ନହୁଷ ରାଜନ
ରୂପଗୁଣ ଶୀଳ ଧର୍ମ ଆତ୍ମା ସେହି ଜନ ।
ସେତୋରସ୍ୱାମୀହୋଇବ ଦେଲୁତାକୁତୋତେ
ବୁଦ୍ଧିମନ୍ତ ବିଜୟ ସେ ହୋଇବ ଜଗତେ ।
ବିଷ୍ଣୁତୁଲ୍ୟ ପରାକ୍ରମୀ ତେଜ ଅଗ୍ନିତୁଲ୍ୟ
ସର୍ବଜ୍ଞ ସେ ସତ୍ୟବାଦୀ ଯାଗଯଜ୍ଞ ଶୀଳ ।
କୁବେର ସମାନ ଧନୀ ଦାନୀ ପୁଣି ହେବ
ରୂପେ ସରିନୋହିବ ଯେ ତାକୁ କାମଦେବ ।
ସେ ତୋର ପତି ହୋଇବ ରଖିଥିବୁ ମନେ
କୁଳକଳଙ୍କିନୀ ହେବୁ ବରିଲେ ତୁ ଆନେ ।
ଗୁଣବନ୍ତ ପୁତ୍ର ଏକ ପାଇବି ଯେ ମୁହିଁ
ଗୁଣବନ୍ତ ଭର୍ତ୍ତା ଯୋଗୁଁ ଆହେ ଦୈତ୍ୟସାଇଁ ।
ଇନ୍ଦ୍ର ଉପେନ୍ଦ୍ରଙ୍କ ତୁଲ୍ୟ ହେବ ସେ କୁମର
ତା ନାମ ଯଯାତିହେବ ଜାଣ ଦୈତ୍ୟବୀର ।
ମହାଶମ୍ଭୁ ପରସାଦେ ହେବ ମହାବୀର
ଜଗତରେ ବିଷ୍ଣୁ ଧର୍ମ କରିବ ପ୍ରଚାର ।
ଏଣୁ ମୁହିଁ ପତିବ୍ରତା ଜାଣ ହୁଣ୍ଡୁ ବୀର
ପର ଭାରିଯାର ତୁମ୍ଭେ ହେବ କାହୁଁବର ।
ଏଣୁ ଏ ସ୍ଥାନକୁ ଛାଡ଼ିଯାଅ ଆନସ୍ଥାନେ
ତା ଶୁଣି ହସି ସେ ହୁଣ୍ଡୁ କୋମଳ ବଚନେ ।
କହଇ ସେହି ଅଶୋକ ସୁନ୍ଦରୀକି ଚାହିଁ
ଯାହା ତୁମ୍ଭେ କହିଲ ଏ ସଙ୍ଗତ ନୁହଇ ।
ଦେବ ଦେବୀଙ୍କର ବାକ୍ୟ ନୁହଇ ସଙ୍ଗତ
ନହୁଷନୃପତି ହେବ ସୋମବଂଶେ ଜାତ ।
ହୋଇନାହିଁ ଆଜିଯାଏ ହେବ କି ନହେବ
ହୋଇବ ଯେବେ ସେ ପିଲା ପୁଣି ଯୁବାହେବ ।
ସେହି ଯୁବା ହେବାବେଳେ ତୋ ବୟସଯିବ
ଯୁବାକାଳେ ତୋତେକାହୁଁ ସେହିବିଭାହେବ ।

ଯେବେ କି ବିଭାହୋଇବ ମନେ ତୁ ବିଚାର
ପୁତ୍ର କି ହେବ ବୟସ ନ ଥିଲେ ତୋହର ।
ଯଯାତିପୁତ୍ର ତୋ ଗର୍ଭୁ ହୋଇବ କେମନ୍ତେ
ଏହିକଥା ଅସମ୍ଭବ ଲାଗଇତ ମୋତେ ।
ମୋ ଆଗେ କହିଲ ତୁମ୍ଭେ କାହିଁ ନ କହିବ
କହିଲେତ ଉପହାସ ଲୋକରେ ପାଇବ ।
ଶାସ୍ତ୍ରକହେ ବୟସରେ ବଡ଼ହେବ ପତି
ଏଣୁ ସେ ପତିକି ଲୋକେ ବର ଯେ ବୋଲନ୍ତି ।
ବୟସରେ ସାନ ଯେଣୁ ହୁଅନ୍ତି ଯେ ସ୍ତିରୀ
ଏଣୁ ସେ ସ୍ତୀରୀସଂସାରେ କନ୍ୟାନାମ ଧରି ।
ଏଣୁ ଏହାକୁ ମୁଁ କହେ ଜାଣ ଅସଙ୍ଗତ
କେମନ୍ତେ ଏ କଥାକୁ ତୁ ମଣୁଛୁ ଗୋ ସତ ।
ଯୁବତୀର ଯଉବନ ଧନ ବରାନନେ
ସେ ଧନ ଗଲେ କିଭୋଗ ବିଚାର ଗୋମନେ ।
ବୃଥା ନ କର ଏ ଯୁବାବୟସ ତୋହର
ଏବେ ମଧୁମାଧବୀ ତୁ ବେଗେ ପାନକର ।
ମୋର ସଙ୍ଗେ ସୁଖ ଭୋଗକର ବିଶାଳାକ୍ଷୀ
ହୁଣ୍ଡକଥା ଶୁଣି ଭୟପାଇ ଶଶୀମୁଖୀ ।
ଦାନବ ଇନ୍ଦ୍ରକୁ ଚାହିଁ ବୋଇଲେ ସଧୀରେ
ନ ଥାଇ ଯେବେ ଏକଥାଗୋଟାଯେ ଶାସ୍ତ୍ରରେ ।
ଅଠାଇଶଯୁଗେ ହେବ ଯୁଗ ଯେ ଦ୍ୱାପର
ଶେଷ ଅବତାର ବାସୁଦେବର କୁମର ।
ଧର୍ମଆତ୍ମା ବଳରାମ ବୟସରେ ସାନ
ରେବତୀକନ୍ୟାର ପାଣି କରିବେ ଗ୍ରହଣ ।
ସେ କନ୍ୟା ଜନମିଅଛି ସତ୍ୟଯୁଗେ ପୁଣି
ଦ୍ୱାପରେ ରାମଧରିବେ ତାହାର ଯେ ପାଣି ।
ଏକଥାଗୋଟା କେମନ୍ତେ ହୋଇବ ତା କହ
ଶାସ୍ତ୍ରେ ନ ଥିଲେ ହୁଅନ୍ତା କାହୁଁ ଦୈତ୍ୟରାୟ ।
ରାମ ତହୁଁ ତିନିଯୁଗ ବଡ଼ ସେ ରେବତୀ
ବିଭାହୋଇ ସେ କେମନ୍ତେ ହେବ ପୁତ୍ରବତୀ ।
ଦ୍ୱାପରଯୁଗ ହୋଇବ ହୋଇନାହିଁ ପୁଣି
ଅସଙ୍ଗତ କହ ତୁମ୍ଭେ ଏହା ଜାଣି ଶୁଣି ।
ଆହୁରି ଦେଖ ଗନ୍ଧର୍ବସୁତା ମାୟାବତୀ
ପରମାସୁନ୍ଦରୀ ସେହି ଅପୂର୍ବ ଯୁବତୀ ।
ଦାନବରାଜ ଶମ୍ବର ନେଲା ତାକୁ ହରି
ରଖିଛି ଗୃହ ମଧରେ ଅତି ଯତ୍ନକରି ।
ଯଦୁପତି ମାଧବର ନନ୍ଦନ ଦ୍ୱାପରେ
ବୋଲାଇବ ମହାବୀର ପ୍ରଦ୍ୟୁମ୍ନ ସଂସାରେ ।
ସେ କେମନ୍ତେ ତାରପତି ହେବ ହୋଇସାନ
ଅସଙ୍ଗତ କହନ୍ତି କି ମହାତମା ଜନ ।
ବ୍ୟାସଆଦି ମୁନିଜନ ଜାଣ ବଡ଼ଜ୍ଞାନୀ
ତିନିକାଳର ଯେ କଥା ଜଣା ତାଙ୍କୁ ପୁଣି ।
ଭବିଷ୍ୟତ ଘଟଣା ଯା ଯାଇଛନ୍ତି କହି
ତାହାଙ୍କ କଥା ଅନ୍ୟଥା କଦାପି ନୁହଇ ।
ଜଗତର ପିତାମାତା ଶଙ୍କର ପାର୍ବତୀ
ତାହାଙ୍କ କଥା କି ଆନ ହେବ ଦୈତ୍ୟପତି ।
ସଙ୍ଗତ ବା ଅସଙ୍ଗତ କରିଥିଲେ ସତ
ତାହାଙ୍କ ବାକ୍ୟ ପଥରଗାରପ୍ରାୟ ନିତ୍ୟ ।
କାମଲୋଭେ ପଡ଼ି ପାପକଥା କହ ତୁମ୍ଭେ
ଦେବଶାସ୍ତ୍ର ବହିର୍ଭୂତ କଥାକହ ଲୋଭେ ।
କର୍ମ ଅନୁସାରେ ପୂର୍ବୁ ହୋଇଛି ବିଧାନ
ଶୁଭାଶୁଭ କର୍ମ ଜାଣ ବିଧି ନିବନ୍ଧନ ।
ଯାହାର ଯାହା ହେବାର ତା ନିଶ୍ଚେ ହୋଇବ
ବିପ୍ରଙ୍କ ମୁଖରୁ ସତକଥା ବାହାରିବ ।
ସେ ଯାହା କହିବେ ତାହା ନହୋଇବ ଆନ
ଶିବ ଶିବା ମୋର ଭାଗ୍ୟ ବିଚାର କରିଣ ।
ନହୁଷ ସଙ୍ଗେ ସଂଯୋଗ କରିଛନ୍ତି ମୋରେ
ଏହା ତୁମ୍ଭେ ବୁଜିପାରି ନ ରହ ଯେ ଏଥେ ।
ମୋର ମନ ବିଚଳିତ କରି ନ ପାରିବ
ପତିବ୍ରତା ଦୃଢ଼ଚିନ୍ତା ମୁଁ ଜାଣ ଦାନବ ।
ବେଗେ ଏଥୁଯାଆ ଶାପେପୋଡ଼ିଦେବି ତୋତେ
ବଳବନ୍ତ ହୁଣ୍ଡ ଶୁଣି ଗଲା ତହୁଁ ଭୀତେ ।
କେମନ୍ତେ ଭାରିଯା ମୋର ହୋଇବ ସୁନ୍ଦରୀ
ତକ୍ଷଣେ ହୁଣ୍ଡ ସେ ସ୍ଥାନଗୋଟା ଛାଡ଼ିକରି ।
ଅନ୍ତର୍ଦ୍ଧାନ ହୋଇ ତହୁଁ ଗଲା ଶୂନ୍ୟପଥେ
ଅସୁର ମାୟାରେ ପୁତ୍ର କି କହିବି ତୋତେ ।
ଆରଦିନ ତପୋମୟୀ ମାୟା ବିସ୍ତାରିଲା
ତପସ୍ୱିନୀନାରୀ ରୂପ ତକ୍ଷଣେ ଧଇଲା ।
ମାୟାକନ୍ୟା ହାସ୍ୟଲୀଳା କରି ତହୁଁ ଗଲା
ଅଶୋକ ସୁନ୍ଦରୀ ପାଶେ ପ୍ରବେଶ ହୋଇଲା ।
ବୋଇଲା ସୁଭଗେ ତୁହୀ କାହାର କୁମାରୀ
ଏକାକେ କିପାଇଁ ତପୋବନରେ ବିହରି ।

କିପାଇଁ କଠୋର ତପେ ତୋ ଶରୀର କ୍ଷୀଣ
ଫିଟାଇ ମୋ ଆଗେ କହ ତହିଁର କାରଣ ।
ମାୟାକନ୍ୟା ମାୟାବାକ୍ୟ ଶୁଣି ଶିବସୁତା
କହିଲା ତାକୁ ବୁଝାଇ ଆଜନମ କଥା ।
ମିତ୍ରତାପଣେ ସେ କିଛି ନ କଲା ଗୁପତ
ମାୟାବୁଝି ନ ପାରିଲା କହିଗଲା ସତ ।
ମାୟାକନ୍ୟା ବୋଲେ ସଖୀ ସାଧୁତୋରବ୍ରତ
ମହାସତୀ ପତିବ୍ରତା ଧନ୍ୟ ତୋର ଚିତ୍ତ ।
ମୁହିଁ ପତିବ୍ରତା ନାରୀ ପତିର ନିମନ୍ତେ
ଘୋରତପେ କ୍ଷୀଣଦେହ ଦେଖ ସଖିମୋତେ ।
ଦୁରାତ୍ମା ହୁଣ୍ଡୁ କରିଛି ମୋ ପତି ନିଧନ
ମୁଁ ତାହାପାଇଁ ତପରେ କଟାଇ ମୋ ଦିନ ।
ସେ ଦୁଷ୍ଟ ଦାନବରାୟ ମରିବ କେମନ୍ତେ
ସେ ମଲେ ଗୋ ସଖି ମୁହିଁ ରହିବି ନିଶ୍ଚିନ୍ତେ ।
ପବିତ୍ର ଆଶ୍ରମ ମୋର ଗଙ୍ଗା ନଦୀତୀରେ
ମୋର ଆଶ୍ରମକୁ ସଖି ଯିବା ଆସବାରେ ।
ମାୟାକନ୍ୟା ମାୟାବାକ୍ୟେ ମୋହିଲା ତାମନ
ବୁଝି ନ ପାରିଲା ମାୟା କନ୍ୟାର ବଚନ ।
ମାୟାକନ୍ୟା ମୋହେ ପଡ଼ି ଶିବର ନନ୍ଦିନୀ
ଆଗେ ଆଗେ ଯାଉଅଛି ସେ ମାୟା କାମିନୀ ।
ଶିବସୁତା ଗୋଡ଼ାଇଛି ପଛେ ପଛେ ତାର
ମାୟାରେ ତାକୁ ଭୁଲାଇ ନେଲା ଯେ ଅସୁର ।
ହେ ପୁତ୍ର ମେରୁର ଶିଖେ ଦାନବର ପୁରୀ
ତାର ନାମ ବଇଦୁର୍ଯ୍ୟ ସ୍ୱର୍ଗ ସମସରି ।
କାଞ୍ଚନାଖ୍ୟା ନାମେ ମହାଶମ୍ଭୁ ଅଛି ତହିଁ
ଅଶୋକ ସୁନ୍ଦରୀ ଦେଖି ମନେ ବିଚାରଇ ।
ଏକି ଆଚମ୍ବିତ ଅତି ଉଚ୍ଚ କୋଠାଘର
କଲଶ ଦଣ୍ଡ ଚାମର ଅଛଇ ଆବର ।
ନାନାବୃକ୍ଷେ ମେଘତୁଲ୍ୟ ନୀଳବର୍ଣ୍ଣ ବନ
ବାପୀ କୂପ ତଡ଼ାଗ ଯେ ନଦୀ ଉପବନ ।
ରତ୍ନମୟ ସୁବର୍ଣ୍ଣରେ ନିର୍ମିତ ପାଚେରୀ
ଧନ ଧାନ୍ୟେ ପୁରିଅଛି ସେହି ରମ୍ୟପୁରୀ ।
ଏମନ୍ତ ଦେଖି ସଖୀକି ପଚାରେ ସୁନ୍ଦର
ଏ କେଉଁ ଦେବତା ଗୃହ କହ ତା ବିସ୍ତାରି ।
ମାୟା କନ୍ୟା କହେ ସଖି ଯେ ଦୈତକୁ ପୂର୍ବେ
ଦେଖିଥିଲ ତାର ପୁର ଦେଖ ତୁଗୋ ଏବେ ।
ମୁଁ ସେହି ଦାନବରାଜ ରେ ବରବର୍ଣ୍ଣିନୀ
ମାୟାବଳେ ମୋ ପୁରକୁ ତୋତେ ଅଛିଆଣି ।
ଦାନବ ତାହାକୁ ଏହା କହି ତତକ୍ଷଣେ
କୈଳାସ ଶିଖର ତୁଲ୍ୟ ସେ ଚାରୁ ଭବନେ ।
ଶୁଶୋଭନ ହେମ ଗୃହ ଅଛଇ ବହୁତ
ବଳେ ଧରି ସେ ଅଶୋକ ସୁନ୍ଦରୀର ହାତ ।
ଦୋଳା ଭିତରେ ବସାଇ କନ୍ୟାରୂପ ତେଜି
ଆପଣା ରୂପ ଧଇଲା କାମବାଣେ ମଜ୍ଜି ।
କର ଦୁଇ ଯୋଡ଼ି କହେ ଶୁଣ ଗୋ ସୁନ୍ଦରୀ
ତୁ ଯାହା ମାଗିବୁ ତାହା ଦେବି ଆଣିକରି ।
ମୁଁ ତୋହର କାମାତୁର ସେବକ ଅଟଇ
ମୋତେ ଭଜି ଏହିପରେ ସୁଖେ ଥାଅ ରହି ।
ଅଶୋକ ସୁନ୍ଦରୀ କହେ ଦାନବ ଈଶ୍ୱର
ଟାଳି ନ ପାରିବ କେବେ ମନକୁ ମୋହର ।
ମୋହକୁ ମୁଁ ସ୍ଥାନ ଦେଇ ନପାରଇ ମନେ
ନପାଇ ପାରିବେ ତୋର ପ୍ରାୟ ପାପିଜନେ ।
ଦେବାଧମ ନରାଧମ ଦାନବ ଅଧମ
ମୋତେ ପାଇ ନପାରିବୁ ଜାଣରେ ଅଧମ ।
ପୁଣି ପୁଣି କହୁ ମୋତେ ନ ପାଉଛୁ ଲାଜ
କହୁ କହୁ କୋପେ ଜଳି ନିନ୍ଦେ ଅଗ୍ନିତେଜ ।
ସ୍କନ୍ଦାନୁଜା ତପସ୍ୱିନୀ କାଳ ଜିହ୍ୱା ପରି
ଦାନବ ସଂହାରୋଦ୍ୟତା ହେଲା ସେ ସୁନ୍ଦରୀ ।
ଦାନବାଧମକୁ ଚାହିଁ ବୋଇଲାରେ ପାପ
ଦେଉଅଛି ଏବେ ତୁହି ଘେନି ମୋର ଶାପ ।
ଏ କଠୋର କର୍ମ କରୁ ଆପେ ଯିବୁ ନାଶ
ସ୍ୱଜନ ବର୍ଗ ସହିତ ନାଶିବୁ ତୋ ବଂଶ ।
ଜଳନ୍ତା ନିଆଁକୁ ଆଣି ରଖୁ ସ୍ୱଇଚ୍ଛାରେ
ଅଶୁଭ ପକ୍ଷୀ ପୋଷିଲେ ରଖି ଯେହ୍ନେ ଘରେ ।
ତାହାର ନାଶ ହୁଅଇ କୁଳ ଜନ ଧନ
ମରିବେ ତୋ ପୁତ୍ର ନାତି ନାଶ ଯିବ ଧନ ।
ତୋ ଜୀବନ ତୋର ବଂଶ ତୋକୁଳ ସହିତେ
ମରିବେ ସଂଶୟ କିଛି ନରଖ ତୁ ଚିତ୍ତେ ।
ଆୟୁନନ୍ଦନ ନହୁଷ ମୋହର ଯେ ପତି
ତାପାଇଁ କଠୋର ତପ କରୁଥାଇ ନିତି ।
ତୁହି ମୋତେ ମାୟାବଳେ ଆଣିଅଛୁ ଧରି
ନହୁଷ ହସ୍ତରେ ମୃତ୍ୟୁ ନିଶ୍ଚୟ ତୋହରି ।

ଅଳପଦିନେ ମରିବୁ ଆରେ ଅଳ୍ପାୟୁଷ
ଦେଇଛନ୍ତି ଦେବ ଦେବ ମୋତେଏ ଆଦେଶ ।
ବିଜ୍ଞଜନେ ଲଭଇ କି ଗାଥା କଲେ ଗାନ
ସେ କଥା ଗୋଟା ଫଳଇ ନୁହଇ ତା ଆନ ।
ପ୍ରତ୍ୟକ୍ଷରେ ଦେଖାଯାଏ ଏ କଥା ସଂସାରେ
ବୁଝି ନ ପାରନ୍ତି ତାହା କୁବୁଦ୍ଧି ଯେ ନରେ ।
ଯାହାଠାରୁ ସୁଖ ଦୁଃଖ ଭୋଗିବାର ଥିବ
ତାହାଠାରୁ ସୁଖ ଦୁଃଖ ସେ ନିଷ୍ଟେ ଭୋଗିବ ।
ତାହା ଆନ କରି କେହି ନ ପାରିବେ ବଳେ
ତୁହି ତାହା ଭୋଗକର ଦୁଷ୍ଟ କର୍ମ ଫଳେ ।
ପରଦାର ପାପ ଭୋଗ କରିବୁ ନରକେ
ଯେସନ କେହି ସୁତୀକ୍ଷ୍ଣ ସୁଧାର ଖଡ଼ଗେ ।
ଅଙ୍ଗୁଳି ଆଗକୁ ଘଷେ କ୍ରୋଧେ ଅନ୍ଧହୋଇ
ତେସନ କାମାନ୍ଧ ତୁହି ହେଉ ମୋତେପାଇ ।
ସାହସିକ ଅତି ବୀର ପୁରୁଷ କି କେହି
ବର୍ଜିତ କ୍ରୁଦ୍ଧ ସିଂହର ସମ୍ମୁଖରେ ରହି ।
ତାହାର କେଶର ଛେଦି ପାରଇକି ବଳେ
ଜାଣୁ ଜାଣୁ ପାପିଷ୍ଠ ତୁ ପଶୁଛୁ ଅନଳେ ।
ନିୟମ ନିଷ୍ଠାରେ ଥାଇ ମୁହିଁ ତପସ୍ୱିନୀ
ଅଳ୍ପାୟୁ ଜନ କାମନା କରେ ମୋତେ ପୁଣି ।
କାଳ ତାକୁ ପଠାଇଛି ଜାଣିବ ନିଶ୍ଚୟ
ଜୀଇଥିବା କାଳସର୍ପ ଶିର ମଣିପ୍ରାୟ ।
ଆଣିବାକୁ ଇଚ୍ଛା କରି ମରନ୍ତି ଯେସନ
କାଳମାୟା ମୋହେ ପଡ଼ି ହୋଇବୁ ନିଧନ ।
ଏକମାତ୍ର ଆୟୁ ପୁତ୍ର ନହୁଷ ମୋ ପତି
ସେ ଏକା ଚାହିଁ ପାରିବ ମୋ ଦେହ ସମ୍ପତ୍ତି ।
ତା ବିନା ଆନ ନ ଚାହିଁ ପାରିବଯେ ମୋତେ
ଯେ ଚାହିଁବ ଜଳିଯିବ ନ ଯାଉ ପରତେ ।
କହି ତହୁଁ ସତୀ ଶୋକେ ଗଲା ଗଙ୍ଗାତୀରେ
ପତିପାଇ ତପ କଲା ସେ ଘୋର କଠୋରେ ।
ବୋଇଲା ତୋ ପାଇଁ ତପ କଲିରେ ଅସୁର
ନିଶ୍ଚୟ ନହୁଷ ହସ୍ତେ ମରଣ ତୋହର ।
ବଜ୍ର କଳ୍ପ ଆଶୀବିଷ ବାଣେ ତୋର ପ୍ରାଣ
ଯିବରେ ପାପିଷ୍ଠ ନିଷ୍ଟେ ଭାଙ୍ଗିବ ତୋ ଟାଣ ।
ଯେତେବେଳେ ଦେଖିବି ମୁଁ ରଣକ୍ଷେତ୍ରେ ତୁହି
ସୁକ୍ରୁ ସୁକ୍ରୁ ହେଉଥିବୁ ସେ କାଳରେ ମୁହିଁ ।

ପତି ହସ୍ତ ଧରି ସୁଖେ କରିବ ଗମନ
ଏହା କହି ଶିବସୁତା ତପେ ଦେଲା ମନ ।
ଗଙ୍ଗାତୀରେ ତପ କଲା ଅଶୋକ ସୁନ୍ଦରୀ
ହୁଣ୍ଡ ମରଣ ନିମନ୍ତେ ତପସ୍ୟା ଆଚରି ।
ଅଗ୍ନି ଯେହ୍ନେ ଜଳିଉଠେ ଶିଖା ବିସ୍ତାରିଣ
ଜିଭ ଲହ ଲହ କରି ପୋଡ଼ିଦିଏ ପୁଣ ।
ତେସନ ସେ ଦେବଦେବ ପୁତ୍ରୀ ମହାରୋଷେ
ଦୁସ୍ତର ତପସ୍ୟା କଲା ଗଙ୍ଗାନଦୀ ପାଶେ ।
ଅଗ୍ନିପ୍ରାୟ ତେଜ ତାର ଉଚ୍ଛୁଳି ପଡ଼ଇ
କୁଞ୍ଜଳ କହିଲା ପୁତ୍ର ଶୁଣ ମନଦେଇ ।
ଏହାକହି ଶିବସୁତା ଜଳେ କଲା ସ୍ନାନ
କାଞ୍ଚନାକ୍ଷୀ ଶମ୍ଭୁ ଗୃହେ ପଶିଲା ବହନ ।
ଶମ୍ଭୁ ଦରଶନକରି ଅଶୋକସୁନ୍ଦରୀ
ହୁଣ୍ଡ ବଧପାଇଁ ଘୋର ତପସ୍ୟା ଆଚରି ।
ଶାପ ପାଇ ପୋଡ଼ିଗଲା ହୁଣ୍ଡ ଦୈତ୍ୟମନ
ଅତିଦୁଃଖେ ସନ୍ତାପିତ ହୋଇ ଘନ ଘନ ।
କମ୍ପନ ନାମେ ମନ୍ତ୍ରୀକି ଆଣିଲା ଡକାଇ
ଶାପରକଥା କହିଲା ସକଳ ବୁଝାଇ ।
ଅଶୋକ ସୁନ୍ଦରୀ ଶିବନନ୍ଦିନୀ ଅଟଇ
ଶାପଦେଲା ସେହି ମୋତେ ମନରୋଷ ବହି ।
ତାହାର ପତି ନହୁଷ ହସ୍ତେ ମୋ ମରଣ
କି ବୁଦ୍ଧି କରିବା ଏବେ କହ ମନ୍ତ୍ରୀରାଣ ।
ଆୟୁରାଜାର ହେ ରାଣୀ ହୋଇଛି ଗର୍ଭିଣୀ
ନହୁଷ ରାଜା ଜନ୍ମିବ ତା ଗର୍ଭରୁ ପୁଣି ।
ତାର ଗର୍ଭ ନଷ୍ଟ କର ନାନାଦି ଉପାୟେ
କମ୍ପିନ ମନ୍ତ୍ରୀ କହିଲା ଶୁଣ ଦୈତ୍ୟରାୟେ ।
ଆୟୁର ପ୍ରିୟ ପତ୍ନୀକି ହରି ଘେନି ଆସ
ଏଠାରେ ଆମ୍ଭେ କରିବା ତାର ଗର୍ଭନାଶ ।
ଆପଣଙ୍କ ଶତ୍ରୁ ଜନ୍ମ ନୋହୁ ଯିବ ମରି
କିବା ଭୟ ଦେଖାଇଣ ତୁମ୍ଭେ ଦଣ୍ଡଧାରୀ ।
ନହୁଷପତ୍ନୀର ବେଗେ ଗର୍ଭପାତ କର
କି ଅବା ଜନମ ହେଉ ନହୁଷ ପାମର ।
ମାୟାବଳେ ହରି ଆଣି ପକାଇବା ମାରି
ଏ ତିନି କଥାରୁ ଯାହା କରନ୍ତୁ ବିଚାରି ।
ମନ୍ତ୍ରୀ କମ୍ପନର ସଙ୍ଗେ ସେ ହୁଣ୍ଡ ଦାନବ
ମନ୍ତ୍ରଣା କରି ପାଞ୍ଚିଲା ନାଶିବାକୁ ଗର୍ଭ ।

ଶ୍ରୀବିଷ୍ଣୁ କହିଲେ ଶୁଣ ବେନ ନରପତି
ଅଟଳ ଅଟଇ ସୋମ ବଂଶର ନୃପତି ।
ତାହାର ନନ୍ଦନକ୍ଷିତି ପତି ଆୟୁ ରାୟ
ତପୋବଳରେ ସେ କରି ଧର୍ମର ସଞ୍ଚୟ ।
ସର୍ବଉତ୍ତମ ହୋଇଲା ଆୟୁ ନରପତି
ଇନ୍ଦ୍ର ଉପେନ୍ଦ୍ର ସମାନ ପାଳଇ ସେ କ୍ଷିତି ।
ସତ୍ୟେ ଥାଇ ଦାନ ଯଜ୍ଞ କଲା ସେ ବହୁତ
ପୃଥିବୀରେ ଏକଛତ୍ର ତାହାର ରାଜତ୍ୱ ।
ସୋମବଂଶର ଭୂଷଣ ହୋଇଲା ସେ ରାୟ
ତାହାର ନୋହିଲା ଯହୁଁ ଗୋଟିଏ ତନୟ ।
ଅପୁତ୍ରିକ ଦୋଷେ ଅତି କଷ୍ଟ ସେ ପାଇଲା
ପୁତ୍ର ନିମନ୍ତେ ବହୁତ ଯତନ ସେ କଲା ।
ମହାମୁନି ଅତ୍ରିପୁତ୍ର ଦତ୍ତାତ୍ରେୟ ପାଶେ
ଗଲା ତହୁଁ ଆୟୁ ରାୟ ମନର ବିରସେ ।
ଦେଖିଲା ସେ ମହାମୁନି ମଦ ପିଉଛନ୍ତି
ରମଣ ସହିତେ କ୍ରୀଡ଼ା ମତ୍ତ ଦିନ ରାତି ।
ସେ ଧର୍ମାତ୍ମା ବାରୁଣୀରେ ମତ୍ତ ନିରନ୍ତର
ନାରୀଗଣେ ପରିବୃତ ସର୍ବଦା ଆବର ।
ଅଙ୍କେ ନାରୀ ଶିରୋମଣି ସୁନ୍ଦରୀ ଯୁବତୀ
ନାଚୁଛନ୍ତି ଗାଉଛନ୍ତି ବିଚଳିତ ମତି ।
ଅତି ମାତ୍ର ସୁରାପାନ କରନ୍ତି ସେ ମୁନି
କନ୍ଦରେ ପଇତା ନାହିଁ ଯୋଗୀଶ୍ୱର ପୁଣି ।
ଗଳେ ଶୋହେ ଦିବ୍ୟ ଫୁଲମାଳ ରତ୍ନହାର
ଅଗୁରୁ ଚନ୍ଦନେ ଅଙ୍ଗ ରଞ୍ଜିତ ତାଙ୍କର ।
ଏହି ରୂପେ ଦତ୍ତାତ୍ରେୟ ମୁନି ବିରାଜନ୍ତି
ଆୟୁ ରାଜା ଏହି ରୁପେ ତାହାଙ୍କୁ ଦେଖନ୍ତି ।
ଭକତି କରି ତାହାଙ୍କ ପାଦେ ରଖି ଲୟ
ଦଣ୍ଡବତ ପ୍ରଣମିଲେ ଆୟୁ ମହାରାୟ ।
ରାଜା ଆସିବାର ଜାଣି ମହାଯୋଗୀ ମୁନି
ମହା ଯୋଗରେ ବସିଲେ ବୁଜି ଚକ୍ଷୁ ବେନି ।
ପଡ଼ିଅଛି ଆୟୁ ରାଜା ତଳୁ ନ ଉଠଇ
ଶତରବରଷ ଏ ରୂପେ ଗଲା ଜାଣ ବହି ।
ଅଟଳ ଭକତି ଦେଖି ମୁନି ଭାଷି ଧ୍ୟାନ
ପଚାରିଲେ କି ନିମନ୍ତେ ଆସିଛ ରାଜନ ।
ଏତେ କଷ୍ଟ ପାଉଅଛ କିମ୍ପା ଏଥେ ପଡ଼ି
ମୁହିଁ ଅନାଚାରେ ମତ୍ତ ଆଚାରକୁ ଛାଡ଼ି ।

ବ୍ରହ୍ମତ୍ୱ ନାହିଁ ମୋହର ମାଂସଲୋଭୀ ମୁହିଁ
ମଦ ଖାଇ ମତ୍ତ ସଦା କ୍ରିୟା କର୍ମ ନାହିଁ ।
ରମଣୀଙ୍କ ସଙ୍ଗେ କ୍ରୀଡ଼ା ମୋର ଦିନରାତି
ବରଦାନ କରିବାର ନାହିଁ ମୋ ଶକତି ।
ଆନ ବ୍ରାହ୍ମଣର ସେବା କର ଯାଇଁ ରାୟ
ଆୟୁ ରାଜା ବୋଇଲେ ହେ ମୁନି ଦତ୍ତାତ୍ରେୟ ।
ତୁମ୍ଭ ତୁଲ୍ୟ ବ୍ରାହ୍ମଣ କି ଅଛଇ ଜଗତେ
ପରମ ଈଶ୍ୱର ତୁମ୍ଭେ ତ୍ରିଭୁବନ ହିତେ ।
ଅତ୍ରି ମୁନି ତପେ ତାର ବଂଶେ ଅବତାର
ସାକ୍ଷାତେ ଗୋବିନ୍ଦ ତୁମ୍ଭେ ପରମ ଈଶ୍ୱର ।
ବ୍ରହ୍ମ ଯାହାକୁ କହନ୍ତି ତୁମ୍ଭେ ସେହି ମୁନି
ତୁମ୍ଭ ମାୟା ନ ଜାଣନ୍ତି ରୁଦ୍ର ପଦ୍ମଯୋନି ।
ନମସ୍ତେ ନମସ୍ତେ ପ୍ରଭୁ ସର୍ବ କାମ ଦାତା
ବ୍ରାହ୍ମଣ ରୂପୀ ଆପଣ ଜଗତ କରତା ।
ସାକ୍ଷାତେ ଗରୁଡ଼ ଧ୍ୱଜ ତୁ ଦେବାଧିରାୟେ
ଅନନ୍ତ ମହିମା ତୋର ଶରଣ ତୋ ପାୟେ ।
ଶରଣାଗତ ବତ୍ସଳ ତୁହି ହୃଷୀକେଶ
ତୋହର ମହିମା ନାଥ ଅଶେଷ ଅଶେଷ ।
ଉଦ୍ଧାର କରନ୍ତୁ ମୋତେ ମୁଁ ତୋର ଶରଣ
ମାୟା ଆଶ୍ରା କରି ନାଥ ରହିଛ ଆପଣ ।
ଜଗତ ଜନର ନାଥ ତୁ ମଧୁସୂଦନ
ବିଶ୍ୱରୂପ ଗୋବିନ୍ଦ ହେ ଜଗତ କାରଣ ।
ମୁହିଁ ତୋ ପାଦେ ଶରଣ ରକ୍ଷାକର ମୋତେ
ମୋର ନମସ୍କାର ରହୁ ତୋର ପାଦାଗ୍ରତେ ।
କୁଞ୍ଜଳପକ୍ଷୀ ପୁତ୍ରଙ୍କ ଆଗରେ କହଇ
ଏମନ୍ତ ବହୁତ କାଳ ପୁଣି ଗଲା ବହି ।
ମତ୍ତ ହୋଇ ଦତ୍ତାତ୍ରେୟ କହିଲେ ରାଜାକୁ
ଏହି ଯେ କପାଳ ପାତ୍ର ନିଅ ତୁ ଏହାକୁ ।
ମଦ ମାଂସ ପାକ କରିଦିଅ ମୋତେ ଆଣି
ତତକ୍ଷଣେ ତାହା କଲେ ଆୟୁ ନୃପମଣି ।
ଆନନ୍ଦେ କପାଳ ପାତ୍ର ଆଣିଣ ତୁରିତେ
ମାଂସ ପାକ କଲେ କାଟି ଆପଣାର ହସ୍ତେ ।
ଖାଇବାପାଇଁ ମୁନିଙ୍କ ଆଗେ ଦେଲେ ଥୋଇ
ସ୍ୱହସ୍ତରେ ମଦ ଆଣି ଦେଲେକ ମିଶାଇ ।
ପ୍ରସନ୍ନ ଚିତ୍ତେ ବୋଇଲେ ତାଙ୍କୁ ମୁନିବର
ଏକାନ୍ତ ଗୁରୁ ସୁଶ୍ରୁଷା ଦେଖିଣ ତୋହର ।

ପ୍ରସନ୍ନେ ବୋଇଲୁ ରାଜା ତୋ ମଙ୍ଗଳ ହେଉ
ଦୁର୍ଲଭ ବର ତୁ ବେଗେ ମାଗ ରାଜା ଆୟୁ ।
ତୋ ମନ କାମନା ପୂର୍ଣ୍ଣ କରିବୁଁ ନିଶ୍ଚୟ
ରାଜା କହିଲେ ହେ ମୁନିବର ଦତ୍ତାତ୍ରେୟ ।
କୃପାକରି ଦିଅ ମୋତେ ଏକଇ ନନ୍ଦନ
ଯେବେ ମୋର ଭକତିରେ ହୋଇଲ ପ୍ରସନ୍ନ ।
ସେ ପୁତ୍ରଗୋଟି ସର୍ବଜ୍ଞ ହୋଇବ ଯେମନ୍ତେ
ଅଜେୟ ହେବ ସେ ପୁତ୍ର ପୁଣି ତ୍ରିଜଗତେ ।
ବୀର୍ଯ୍ୟବନ୍ତ ଗୁଣବନ୍ତ ତେଜୋବନ୍ତ ହେବ
ଯୁଦ୍ଧରେ ତାକୁ ହାରିବେ ଦେବତା ଦାନବ ।
କ୍ଷତ୍ରିୟ ନାଗ ଗନ୍ଧର୍ବ ନ ପାରିବେ ରଣେ
ଭକ୍ତି ରଖିଥିବ ଗୋରୁ ଦେବତା ବ୍ରାହ୍ମଣେ ।
ଧର୍ମରେ କରିବ ପୁଣି ପରଜା ପାଳନ
ଯାଗ ଯଜ୍ଞ କରୁଥିବ ଦେଉଥିବ ଦାନ ।
ଶରଣାଗତ ବତ୍ସଳ ହେବ ମାନ ଶୂର
ଦାନ ଶୂରଭୋଗୀ ହେବ ମହାତ୍ମା ଆବର ।
ବେଦଶାସ୍ତ୍ରେ ଧନୁର୍ବେଦେ ନିପୁଣ ହୋଇବ
ନିର୍ମଳ ମତି ସେ ଧୀର ବୀର ବୋଲାଇବ ।
ବଂଶ ଗୌରବ ରଖିବ ହେବ ରୂପବନ୍ତ
ଯେବେ କୃପାକଲ ଦିଅ ପୁତ୍ରେକ ଏମନ୍ତ ।
ଦତ୍ତାତ୍ରେୟ କହିଲେ ଯେ ଏହିରୂପେ ହେଉ
ବଂଶଧର ପୁତ୍ର ଏକ ପାଇବୁରେ ଆୟୁ ।
ପୁଣ୍ୟାତ୍ମା ସେ ହେବ ଜୀବେ ଦୟା ଥିବତାର
ବଇଷ୍ଣବ ଅଂଶ ଘେନି ହେବ ଅବତାର ।
ଇନ୍ଦ୍ରତୁଲ୍ୟ ସାର୍ବଭୌମ ରାଜା ହେବ ସେହି
ଏହିରୂପେ ବର ଦେଇ ଫଳ ପୁଣି ଦେଇ ।
ବୋଇଲେ ଏ ଫଳଗୋଟି ରାଣୀ ହସ୍ତେ ଦେବ
ଏ ଫଳଗୋଟି ତୋ ରାଣୀ ଭକ୍ଷଣ କରିବ ।
କଲ୍ୟାଣ କରିଣ ମୁନି ହେଲେ ଅନ୍ତର୍ଦ୍ଧାନ
ଫଳ ଘେନିଣ ସେଠାରୁ ଅଇଲେ ରାଜନ ।
ଗୋପୀନାଥ ବୋଲେ ଆହେ ପ୍ରଭୁ ଦତ୍ତାତ୍ରେୟ
ତୋ ପାଦେ ଶରଣ ମୋର ଦୁଃଖ ଯାଉକ୍ଷୟ ।
ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ହୁଣ୍ଡ ଦୈତକଥା
ଚରିତେ ତ୍ର୍ୟଧିକଶତତମୋଽଧ୍ୟାୟଃ ।

## ଚତୁରାଧିକଶତ ଅଧ୍ୟାୟ

### ଆୟୁ ଔରସେ ଇନ୍ଦୁମତୀର ଗର୍ଭ

କୁଞ୍ଜଳ କହିଲା ଶୁଣ ଆରେ ପୁତ୍ରମଣି
ଅନ୍ତର୍ଦ୍ଧାନ ହେଲେ ତହୁଁ ଦତ୍ତାତ୍ରେୟ ମୁନି ।
ମହାରାଜା ଆୟୁ ଆସେ ଆପଣାର ପୁରେ
ଆନନ୍ଦ ମନେ ପ୍ରବେଶ ଇନ୍ଦୁମତୀ ଘରେ ।
ଇନ୍ଦ୍ରଭୁବନ ପରାୟ ସେ ପୁରୀ ସୁନ୍ଦର
ସକଳ ଶିରୀସମ୍ପଦେ ପୂରିଛି ଆବର ।
ସ୍ୱର୍ଗେଯେହ୍ନେ ଦେବରାୟ ମର୍ତ୍ତ୍ୟେତେହ୍ନେଆୟୁ
ଅତି ବୁଦ୍ଧିମନ୍ତ ରାଜା ଅଟଇ ଯେ ସେହୁ ।
ସ୍ୱର୍ଭାନୁ ନନ୍ଦିନୀ ଇନ୍ଦୁମତୀ ତାର ରାଣୀ
ମୁନିଦେବା ଫଳକୁ ସେ ଭକ୍ଷିଲାକ ପୁଣି ।
ଦିବ୍ୟ ତେଜୋମୟ ଗର୍ଭ କଲା ସେ ଧାରଣ
ରାତ୍ରେ ସେହି ଇନ୍ଦୁମତୀ ଦେଖିଲା ସ୍ୱପନ ।
ତେଜୋବନ୍ତ ବିପ୍ର ଏକ ତା ପୁରକୁ ଆସି
ଦିବାଭାଗ ସୂର୍ଯ୍ୟ ପ୍ରାୟ ତେଜକୁ ପ୍ରକାଶି ।
ମୁକୁତାମାଳ ଲମ୍ବିଛି ଗଳାରେ ତାହାର
କଣ୍ଠେ ଶ୍ୱେତ ଫୁଲମାଳ ଦିଶଇ ସୁନ୍ଦର ।
ସର୍ବ ଆଭରଣେ ସର୍ବ ଅଙ୍ଗ ଶୋଭାପାଇ
ଦିବ୍ୟ ଗନ୍ଧ ଲିପିବାରୁ ସର୍ବାଙ୍ଗ ବାସଇ ।
ଚାରିଭୁଜେ ଶଙ୍ଖଚକ୍ର ଗଦା ଅସି ଧରି
ଧଳାଛତା ଶିରେ ଶୋଭାପାଇ ଚନ୍ଦ୍ରପରି ।
ଦିବ୍ୟ ଆଭରଣେ ସେହି ଭୂଷିତ ସୁନ୍ଦର
ବିରାଜେ ହାର କଙ୍କଣ କେୟୁର ନୂପୁର ।
କୁଣ୍ଡଳ ଯୁଗଳ ଚନ୍ଦ୍ରବିମ୍ବ ଅନୁକାରୀ
ଇନ୍ଦୁମତୀ ରାଣୀକି ସେ ଉଚ୍ଚେ ଡାକିକରି ।
କ୍ଷୀର ପୂର୍ଣ୍ଣ ଶଙ୍ଖେ ତାକୁ କରାଇଲା ସ୍ନାନ
ମୁଖ ପ୍ରାନ୍ତେ ଶ୍ୱେତନାଗ କଲା ନିକ୍ଷେପଣ ।
ସହସ୍ର ଶିରା ସେ ନାଗ ତେଜୋବନ୍ତ ଅତି
ରୂପବନ୍ତ ସେ ଆବର ଉଜ୍ଜ୍ୱଳ ତା ଜ୍ୟୋତି ।
ମୁକ୍ତାହାର ଲମ୍ବାଇଲା ରାଣୀର ଗଳାରେ
ଏକ ପଦ୍ମଫୁଲ ଦେଇ ରାଣୀର ହସ୍ତରେ ।
ସେ ସ୍ଥାନଛାଡ଼ି ତକ୍ଷଣେ ସ୍ୱସ୍ଥାନକୁ ଗଲା
ଏମନ୍ତେ ଶୁଭ ସ୍ୱପନ ରାଣୀ ଯେ ଦେଖିଲା ।

ଚେଇଁଉଠି ଇନ୍ଦୁମତୀ କହେ ରାଜାଆଗେ
କିଛିକାଳ ଭାବି ପୁଣି ଆୟୁ ରାଜା ବେଗେ ।
ପୁରୋହିତ ତାଙ୍କର ଯେ ଶଉନକ ମୁନି
ତାହାଙ୍କୁ ଡକାଇ ଆଣି ପଚାରିଲେ ପୁଣି ।
ସ୍ୱପନ ଘଟଣା ଯାକ ଶୁଣି ମୁନିବର
ବୋଇଲେ ଯେ ଦତ୍ତାତ୍ରେୟ ଦେଇଥିଲେ ବର ।
ଖାଇବାକୁ ଦେଇଥିଲେ ରାଣୀକି ଯେ ଫଳ
ତୁମ୍ଭେ ସେ ଫଳକୁ ଆଣିଦେଲ କି ନଦେଲ ।
ନୃପତି ବୋଇଲେ ଫଳ ଭିକ୍ଷିଲେ ଯେ ରାଣୀ
ଶଉନକ ବୋଇଲେ ଯେ ପୁଣି ତାହା ଶୁଣି ।
ଦତ୍ତାତ୍ରେୟ ପରସାଦେ ବିଷ୍ଣୁ ଅଂଶେ ଜାତ
ହୋଇବ ତୋର କୁମର ଆହେ ନରନାଥ ।
ଏଥିରେ ସନ୍ଦେହ ନାହିଁ ଜାଣିଥା ରାଜନ
ବୀର୍ଯ୍ୟବନ୍ତ ପୁତ୍ର ଇନ୍ଦ୍ର ଉପେନ୍ଦ୍ର ସମାନ ।
ଜନମିବ ନିଶ୍ଚେ ରାଜା କହୁଅଛି ସତ୍ୟ
ଧନୁର୍ବେଦ ପାରଦର୍ଶୀ ହେବ ସେହି ପୁତ୍ର ।
ସୋମ ବଂଶ ବରଧନ ହେବ ସେ ନନ୍ଦନ
ଚାରିବେଦ ସବୁଶାସ୍ତ୍ରେ ପଢ଼ିବ ରାଜନ ।
ଏରୂପେ ରାଜାକୁ କହି ଶଉନକ ଗଲେ
ରାଜାରାଣୀ ଦୁହେଁ ଅତି ଆନନ୍ଦେ ରହିଲେ ।
ଦୀନ ଗୋପୀନାଥ ବୋଲେ ବୋଲ ହରିହରି
ହିରନାମ ନାବେ ଚଢ଼ି ଭବୁ ଯାଅ ତରି ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ଆୟୁ ଔରଷେ ଇନ୍ଦୁମତୀର ଗର୍ଭ
ଚରିତେ ଚତୁରଧିକଶତତମୋଽଧ୍ୟାୟଃ ।



## ପଞ୍ଚାଧିକଶତ ଅଧ୍ୟାୟ

### ହୁଣ୍ଡୁ ଦୈତ୍ୟର ଇନ୍ଦୁମତୀ ପୁତ୍ର ହରଣ

କୁଞ୍ଜଳ କହିଲା ଦିନେ ହୁଣ୍ଡୁର ନନ୍ଦିନୀ
ଖେଳିବା ନିମନ୍ତେ ଗଲା ସଖୀ ସଙ୍ଗେ ଘେନି ।
ଆନନ୍ଦ ମନେ ମିଳିଲା ନନ୍ଦନ କାନନେ
କଥାବାର୍ତ୍ତା ହେଉଥିଲେ ସୁସିଦ୍ଧ ଚାରଣେ ।
ଆୟୁ ରାଜାର ହୋଇବ ଏକଇ ନନ୍ଦନ
ବିଷ୍ଣୁ ତୁଲ୍ୟ ପରାକ୍ରମୀ ମହାବଳବାନ ।
ହୁଣ୍ଡୁ ଦାନବକୁ ସେହି କରିଣ ବିନାଶ
ଅଶୋକ ସୁନ୍ଦରୀ ତପେ ପାଉଅଛି କ୍ଳେଶ ।
ଏ ଦୁଃଖ ଦାୟକ ଅତି ଅପ୍ରିୟ ବଚନ
ଶୁଣି ହୁଣ୍ଡୁ ନନ୍ଦିନୀର ମନ ଛନ ଛନ ।
ପିତାର ପାଶେ ସଂକ୍ଷେପି କହିଲା ସକଳ
ବିସ୍ମୟ ହୋଇଲା ଶୁଣି ହୁଣ୍ଡୁ ମହୀପାଳ ।
ଅଶୋକ ସୁନ୍ଦରୀ ଶାପ ପଡ଼ିଲା ତା ମନେ
ମୋ ବିନାଶେ ତପ କରେ ଗଙ୍ଗାତୀରବନେ ।
କାଳ ତାକୁ ଘୋଟିବାରୁ ସେ ଦୁଷ୍ଟ ଅସୁର
ଇନ୍ଦୁମତୀ ଗର୍ଭନାଶେ ହୋଇଲା ତତ୍ପର ।
ସେହିଦିନୁ ଇନ୍ଦୁମତୀ ଛିଦ୍ରକୁ ଖୋଜିଲା
ବିଷ୍ଣୁତେଜେ ତା ପାଖକୁ ପଶି ନ ପାରିଲା ।
ଉଦାର ରୂପ ଗୁଣରେ ନିପୁଣା ସେ ରାଣୀ
ସୂର୍ଯ୍ୟ ବିମ୍ବପ୍ରାୟ ତେଜ ବିକାଶେ ତରୁଣୀ ।
ନିରତେ ଜଗି ଅଛନ୍ତି ରକ୍ଷକେ ତାହାକୁ
ଦୁରନ୍ତ ଦାନବ ପଶି ନ ପାରେ ପାଖକୁ ।
ଦୁରୁ ନାନା ବିଭୀଷିକା ଦୈତ୍ୟ ଦେଖାଇଲା
ବିଷ୍ଣୁ ତେଜେ ଗର୍ଭତାର ବିନଷ୍ଟ ନୋହିଲା ।
ନ ଡ଼ରିଲା ଇନ୍ଦୁମତୀ ଚମକିଲା ନାହିଁ
ବାଳକ କ୍ରମେ ବଢ଼ଇ ତା ଗର୍ଭରେ ରହି ।
ଦାନବ ଉଦ୍ୟମ ସବୁ ହୋଇଲା ବିଫଳ
ଶୁଖିଗଲା ଦାନବର ବଦନ ମଣ୍ଡଳ ।
ଚାହୁଁ ଚାହୁଁ ଶତବର୍ଷ ପୂର୍ଣ୍ଣ ହୋଇଗଲା
ପ୍ରସବର କାଳ ଯହୁଁ ନିକଟ ହୋଇଲା ।
ସ୍ୱର୍ଭାନୁ ନନ୍ଦିନୀ ସେହି ଇନ୍ଦୁମତୀ ରାଣୀ
ପୁତ୍ର ଏକ ପ୍ରସବିଲା ହୋଇଛି ରଜନୀ ।
ପୁତ୍ର ତେଜେ ଅନ୍ଧକାର ନ ରହିଲା ଘରେ
ସୂର୍ଯ୍ୟ ଉଦେହେଲେ ଯେହ୍ନେ ଗଗନମଣ୍ଡଳେ ।
ସୁତ ମୁନି କହିଲେ ଯେ ଏଥୁ ଅନନ୍ତରେ
ଦାସୀ ଏ ଯାଇ ପଶିଲା ସୂତିକା ଗୃହରେ ।
ଅଶୁଚି ଦୁଷ୍ଟା ସେ ଦାସୀ ଆଚାର ରହିତା
ହୁଣ୍ଡୁ ତାହା ଜାଣିପାରି ମନେ କରି ଚିନ୍ତା ।
ସେଦାସୀଦେହରେ ଦୈତ୍ୟ ହୋଇଲାପ୍ରବେଶ
ସୂତିକା ଗୃହେ ରହିଲା ମାୟାରେ ରାକ୍ଷସ ।
ରଜନୀ ଅର୍ଦ୍ଧେ ନିଦ୍ରାରେ ଶୋଇଲେସମସ୍ତେ
ନିଦ୍ରାବାରି ସେ ଦାନବ ପୁତ୍ର ଧରି ହସ୍ତେ ।

କବାଟ ଫିଟାଇ ଘରୁ ଅଇଲା ବାହାରି
ବେଗେ ଘେନି ପଳାଇଲା କାଞ୍ଚନାଖ୍ୟ ପୁରୀ ।
ବିପୂଳା ନାମେ ତାହାର ପାଟ ମହାଦେଈ
ତାହାକୁ ଏକାନ୍ତେ ଡାକି କହେ ଦୈତ୍ୟସାଇଁ ।
ଏ ବାଳକ ଗୋଟି ପ୍ରିୟେ ମୋ ପ୍ରାଣ ବଇରୀ
ବନ୍ଧନ କରାଅ ବେଗେ ସ୍ୱହସ୍ତରେ ମାରି ।
ନିଷ୍ଠୁର ପଣେ ଏହାକୁ ଖଣ୍ଡ ଖଣ୍ଡକର
ରନ୍ଧନ କଲେ ମୁଁ ତାହା କରିବି ଆହାର ।
ସ୍ୱାମୀବାକ୍ୟ ଶୁଣି ଚିନ୍ତା କରେ ସେ ବିପୁଳା
ଏଡ଼େ ନିଷ୍ଠୁର କିମ୍ପାଇଁ ମୋସ୍ୱାମୀହୋଇଲା ।
ଦୟାକ୍ଷମା ଛାଡ଼ିଗଲା କିମ୍ପାଇଁ ତାହାଙ୍କୁ
ମନ କି ବଳିବ ଏହି ଶିଶୁ ମାରିବାକୁ ।
ଦେବଗର୍ଭ ପ୍ରତିମା ସେ ସର୍ବ ସୁଲକ୍ଷଣ
ଏ ପୁତ୍ରକୁ କି କାରଣେ କରିବ ଭକ୍ଷଣ ।
କାରୁଣ୍ୟ ସିନ୍ଧୁରେ ବୁଡ଼ି ଗଲା ତାର ମନ
ବିପୁଳା ରାଣୀ ଏମନ୍ତ ଭାଳି କିଛି କ୍ଷଣ ।
ସ୍ୱାମୀକି ଚାହିଁ ବୋଇଲା ହେ ଦନୁଜ ପତି
କିମ୍ପାଇଁ ତୁମ୍ଭର ହେଲା ଏଡ଼େ ପାପମତି ।
ଲଜ୍ଜା ଘୃଣା ଦୟା କ୍ଷମା ତେଜିଲ କେମନ୍ତେ
ବାଳ ଶିଶୁ ମାରିବାକୁ କହୁଅଛ ମୋତେ ।
ଏ ସୁନ୍ଦର ଶିଶୁ ଗୋଟି ଦିଶେ ଦେବ ପ୍ରାୟ
ଏହାକୁ ଖାଇଲେ ପେଟ ପୂରିବ କି ରାୟ ।
ରାଣୀକି ଚାହିଁ ଦୁରାତ୍ମା ହୁଣ୍ଡୁ ଯେ କହିଲା
ଅଶୋକ ସୁନ୍ଦରୀ ଶାପ ଦେଇଛି ବୋଇଲା ।
ଆପଣା ଦୋଷ ଲୁଚାଇ ରହିଲା ଅସୁର
ଅଶୋକ ସୁନ୍ଦରୀ ଦୋଷ କହିଲା ଅପାର ।
ରାଣୀ ଶୁଣି ବିଚାରିଲା ଏ ଶିଶୁ ବଇରୀ
ଏହାକୁ ନ ପାଇଲେ ମୋ ସ୍ୱାମୀ ଯିବେ ମରି ।
ଏଣୁ ଏ ବାଳକ ମଧ ମାରିବି ଏହାକୁ
ଏମନ୍ତ ଭାଳି ଡାକିଲା ଦାସୀ ଯେ କଳାକୁ ।
ବୋଇଲା ମେକଳା ତୁଗୋ ଏ ଶିଶୁକୁ ନିଅ
ପନିକିରେ ଖଣ୍ଡ ଖଣ୍ଡ କରି କାଟି ଦିଅ ।
ସୁପକାର ଯେ ରନ୍ଧନ କରୁ ଯତ୍ନ କରି
ମେକଳା ଦାସୀ ଶିଶୁକୁ ବେଗେ ନେଲା ଧରି
ସୁପକାରକୁ ଡାକିଣ ବୋଇଲା ଏମନ୍ତ
ଏ ଶିଶୁର ମାଂସକାଟି ରାନ୍ଧ ହେ ତୁରିତ ।

ରାଜାର ଲୋଭ ବଢ଼ିଛି ଖାଇବାକୁ ମାଂସ
ଉତ୍ତମ ରୂପେ ରାନ୍ଧିବ ରାଜାଜ୍ଞା ବିଶେଷ ।
ସୂପକାର ଏହା ଶୁଣି ଦାସୀ ହସ୍ତୁ ନେଲା
ଶସ୍ତ୍ରଧରି ମାରିବାକୁ ତ୍ୱରିତେ ଆସିଲା ।
ଦେବ ଦେବ ଦତ୍ତାତ୍ରେୟ ମହିମା ବଳର
ସୂପକାରକୁ ସେ ଶିଶୁ ଦେଖି କରି ଦୂର ।
ହସିଲା ପୁଣି ତାହାକୁ କୋଣେଇ ଚାହିଁଲା
ଦେଖି ସୂପକାର ଚିତ୍ତେ ଦୟା ଉପୁଜିଲା ।
ଦାସୀକି ଡାକି ବୋଇଲା ସେହି ସୁପକାର
ଦେଖ ଏ ଶିଶୁକୁ ଦାସୀ ଅପୂର୍ବ ସୁନ୍ଦର ।
ରାଜ ଲକ୍ଷଣ ବହୁତ ବିରାଜେ ଶରୀରେ
ହୋଇଛି ଏ ଶିଶୁ ଜାତ ପବିତ୍ର ବଂଶରେ ।
ଦାସୀ ବୋଇଲା କହିଲ ଯାହା ତୁମ୍ଭେ ସତ
ଏହାକୁ ମାରିବାପାଇଁ ନ ବଳଇ ସତ ।
କାହାର ପୁଅ କେମନ୍ତେ ଦୁରାତ୍ମା ଆଣିଲା
ଏହାର ମାଂସ ଖାଇବ ବୋଲି ଯେବୋଇଲା ।
ଏ ଶିଶୁ ଗୋଟି ସୁକର୍ମା ହେବ ବଂଶଧର
ସହଜେ ନ ଯିବ ଜାଣ ଜୀବନ ଏହାର ।
ଶତ ଶତ ଆପଦରୁ ଏ ଶିଶୁ ବଞ୍ଚିତ
ସମୁଦ୍ରେ ବୁଡ଼ି ଏହାର ଜୀବନ ନ ଯିବ ।
ପୋଡ଼ି ନ ମାରିବ ଏହି ଶିଶୁ କର୍ମବନ୍ତ
ଦଇବ ଏହାକୁ ସାହା କେଡ଼େ ରୂପବନ୍ତ ।
ଏଣୁ ସିନା ପୁଣ୍ୟକର୍ମ କରୁଥାନ୍ତି ଲୋକେ
କର୍ମବଳେ ଦୀର୍ଘାୟୁଷ ହୁଅନ୍ତି ପ୍ରତ୍ୟକ୍ଷେ ।
କର୍ମବଳେ ସୁଖ ମିଳେ ଏ ଲୋକ ପ୍ରବାଦ
କର୍ମର ବଳ ଅଧିକ କର୍ମହିଁ ଅବାଧ ।
କର୍ମହିଁ ପାଳଇ ପୁଣି ରଖଇ ତାରଇ
କର୍ମହିଁ ପ୍ରାଣୀମାନଙ୍କୁ ଜାଗ୍ରତ କରଇ ।
କର୍ମହିଁ କରେ ଲୋକକୁ ମୂରତି ପ୍ରଦାନ
ମଇତ୍ର ଯୁଟାଇ ଦିଏ କର୍ମ ବଳବାନ ।
ଦାନ ପୂଣ୍ୟ କରୁଥାନ୍ତି ଏଣୁ ପୁଣ୍ୟଜନ
ପ୍ରିୟ କଥା କହି ତୋଷୁଥାନ୍ତି ପ୍ରାଣୀ ମନ ।
ପର ଉପକାର ସଦା କରୁଥାନ୍ତି ପୁଣି
କର୍ମଯୋଗୁଁ ନାନାଯୋନି ଭ୍ରମୁଥାନ୍ତି ପ୍ରାଣୀ ।
କର୍ମବଳେ ପ୍ରାଣୀଙ୍କର ଜନମ ମରଣ
ନିଜ କର୍ମବଳେ ମୃତ୍ୟୁ ପାଇ ଯେଉଁଜନ ।

ତାର ପିତା ମାତା ତାକୁ ରଖି ନ ପାରିବେ
ରାଜନ ଭାଇ କୁଟୁମ୍ବ ସ୍ୱଜନ ବାନ୍ଧବେ ।
ସୁତମୁନି କହିଲେ ସେ ଆୟୁର ନନ୍ଦନ
ଦେଖ କର୍ମବଳୁ ରକ୍ଷାପାଏ ତା ଜୀବନ ।
କର୍ମବଳେ ପାଚକର ଦୟା ଉପୁଜିଲା
କର୍ମବଳେ ମାରୁଥିବା ଦାସୀ ନ ମାଇଲା ।
ସୂପକାର ଦାସୀ ଦୁହେଁ ମିଳି ରକ୍ଷାକଲେ
ଦାସୀ ତାକୁ ଘେନିଗଲା ସେହି ରାତ୍ରିକାଳେ
ବଶିଷ୍ଠ ମୁନି ଆଶ୍ରମ ଦ୍ୱାରେ ନେଇ ଥୋଇ
ସୂପକାର ନିକଟକୁ ଅଇଲାକ ଧାଇଁ ।
ହରିଣ ମାରି ସେ ରାତ୍ରେ ଆଣି ସୂପକାର
ତାହାର ମାଂସକୁ ଯତ୍ନେ ରାନ୍ଧିଲା ସତ୍ୱର ।
ରାଜାକୁ ପରଷିଦେଲା ହୁଣ୍ଡୁ ତା ଖାଇଲା
ମାଂସ ଖାଇ ମନେ ମନେ ଆନନ୍ଦ ହୋଇଲା ।
ମନେ ବିଚାରିଲା ନାଶ ଗଲା ମୋ ବଇରୀ
ଦତ୍ତାତ୍ରେୟ ବରକୁ କେ ପାରେ ଆନକରି ।
କୁଞ୍ଜଳ କହିଲା ସେହି ରାତି ଗଲା ପାହି
ବଶିଷ୍ଠ ମୁନି ଦେଖିଲେ କବାଟ ଫିଟାଇ ।
ପୂର୍ଣ୍ଣଚନ୍ଦ୍ର ପ୍ରାୟ ମୁଖ ବାଳକ ସୁନ୍ଦର
ବିରାଜେ ରାଜ ଲକ୍ଷଣ ଶରୀରେ ତାହାର ।
ସୁନ୍ଦର ନୟନ ପୁଣି ତେଜୋବନ୍ତ ଅତି
ମୁନିଙ୍କି ଡାକି ବଶିଷ୍ଠ ମୁନି ଯେ କହନ୍ତି ।
ଦେଖ ଆସି ମୁନିଜନେ ଏକ ଆଚମ୍ବିତ
ରାତ୍ରେ ଆଣି କେ ଥୋଇଲା ଏ ବଡ଼ ଅଦ୍ଭୁତ ।
ଏ ଶିଶୁ ଲକ୍ଷଣବନ୍ତ ରୂପବନ୍ତ ଅତି
ଦେବୀ ବା ଗାନ୍ଧର୍ବୀ ଗର୍ଭୁ ଏହୁ ଉତପତ୍ତି ।
ବହୁତ ରାଜ ଲକ୍ଷଣ ବିରାଜେ ଶରୀରେ
କୋଟି କନ୍ଦର୍ପକୁ ଜିଣି ଛବି ଏହି ଧରେ ।
ମୁନିଜନେ ଦେଖିଲେ ଯେ କଉତୁକ ପାଇ
ଆନନ୍ଦମନେ ଶିଶୁକୁ ଦେଖନ୍ତି ନିଠାଇ ।
ଧର୍ମାତ୍ମା ବଶିଷ୍ଠ ମୁନି ଯୋଗରେ ବସିଲେ
ଜ୍ଞାନନେତ୍ରେ ଦେଖିପାରି ମନରେ ଜାଣିଲେ ।
ବୁଝି ପାରିଲେ ଏ ଆୟୁ ରାଜାର ନନ୍ଦନ
ଦତ୍ତାତ୍ରେୟ ମୁନିବରେ ଏହାର ଜନମ ।
ହୁଣ୍ଡୁ ଦୈତ୍ୟ ରାତ୍ର ଆଣି ରଖିଥିଲା ପୁରେ
ଏହା ପ୍ରାଣରକ୍ଷା କଲେ ଦାସୀ ସୂପକାରେ ।
ରାତ୍ରେ ଦାସୀ ଥୋଇଦେଇଗଲା ମୋଦୁଆରେ
ହୁଣ୍ଡଦୈତ୍ୟ ବଧହେବ ଏହାର ହସ୍ତରେ ।
ଜାଣିପାରି ସେ ବଶିଷ୍ଠ ବ୍ରହ୍ମାର ନନ୍ଦନ
ହସ୍ତରେ ତୋଳିଧଇଲେ ସ୍ୱର୍ଗେ ଦେବଗଣ ।
ପୁଷ୍ପବୃଷ୍ଟି କଲେ ସେହି ବାଳକର ଶିରେ
ସୁସ୍ୱରେ ଗୀତ ଗାଇଲେ ଗନ୍ଧର୍ବ କିନ୍ନରେ ।
ଋଷିଗଣେ ବେଦମନ୍ତ୍ରେ କଲେ ତାଙ୍କୁ ସ୍ତୁତି
ବଶିଷ୍ଠ ଶିଶୁକୁ ବର ପ୍ରଦାନ କରନ୍ତି ।
ନହୁଷ ନାମ ତୋହର ହୋଇଲା ନନ୍ଦନ
ଯେଣୁ ପରାଭବ ଦେଇ ନ ପାରିଲେ ଜନ ।
ବାଳକାଳେ ଯେଣୁ ତୁହି ନୋହିଲୁ ନିହତ
ଏଣୁ ନହୁଷ ନାମରେ ହୋଇଲୁ ବିଖ୍ୟାତ ।
ଦେବପୂଜ୍ୟ ହୋଇବୁରେ ଆୟୁର କୁମର
ଜାତକର୍ମ ଆଦିକର୍ମ କଲେ ଦ୍ୱିଜବର ।
ମହାମତି ଆୟୁପୁତ୍ର କ୍ରମେ ଯେ ବଢ଼ିଲା
ବଶିଷ୍ଠଙ୍କୁ ଗୁରୁକରି ସମସ୍ତ ପଢ଼ିଲା ।
ତାଙ୍କ ଗୁରୁଭକ୍ତି ଦେଖି ବ୍ରହ୍ମାର କୁମର
ଶାସ୍ତ୍ରର ତତ୍ତ୍ୱଷଡ଼ଙ୍ଗ ଦେବ ଯେ ଆବର ।
ଧନୁର୍ବେଦ ଅସ୍ତ୍ରଶିକ୍ଷା ମଲ୍ଲବିଦ୍ୟା ଯେତେ
ଜ୍ଞାନଶାସ୍ତ୍ର ନ୍ୟାୟଶାସ୍ତ୍ର ଜ୍ୟୋତିଷ ସହିତେ ।
ଅସ୍ତ୍ରଶସ୍ତ୍ରର ଆଧାନ ସନ୍ଧାନ ଯେ ବିଧି
ଶିଖାଇଲେ ମୁନିବର ରାଜନୀତି ଆଦି ।
ବଶିଷ୍ଠ ପ୍ରସାଦେ ହେଲା ପୁତ୍ର ଗୁଣବନ୍ତ
ଧନୁଧରି ମୃଗବଧ କଲା ସେ ବହୁତ ।
ଗୋପୀନାଥ ଦତ୍ତାତ୍ରେୟ ଚରଣେ ଶରଣ
ଅବଶ୍ୟ ମୋ ମନବାଞ୍ଛା ହୋଇବ ପୂରଣ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ହୁଣ୍ଡଦୈତ୍ୟର ଇନ୍ଦୁମତୀ
ପୁତ୍ରହରଣେ ପଞ୍ଚାଧିକଶତତମୋଽଧ୍ୟାୟଃ ।

## ଷଷ୍ଠାଧିକଶତ ଅଧ୍ୟାୟ

### ଇନ୍ଦୁମତୀ ଶୋକ

କୁଞ୍ଜଳ କହିଲା ଆୟୁରାଜାର ଯେ ରାଣୀ
ସ୍ୱର୍ଭାନୁନନ୍ଦିନୀବର ବର୍ଣ୍ଣିନୀ ସେ ପୁଣି ।

ଦେବତୁଲ୍ୟ ପୁତ୍ରକୁ ସେ ନ ଦେଖି ନୟନେ
ଭୂମିରେ ପଡ଼ିଲା ମୂର୍ଚ୍ଛାଯାଇ କିଛିକ୍ଷଣେ ।
ଉଠିକାନ୍ଦେ ଇନ୍ଦୁମତୀ ଆହାରେ ନନ୍ଦନ
କିଏ ଘେନିଗଲା ମୋର ଖୋଳିଣ ନୟନ ।
ଉଚ୍ଚସ୍ୱରେ ଶୋକକରେ ପୁତ୍ରପୁତ୍ର ବୋଲି
କେତେକଷ୍ଟେ ବାବୁତୋତେ ମୁହିଁ ପାଇଥିଲି ।
କେ ନେଲା ମୋର ଜୀବନଧନ ଚୋରିକରି
ଏଡ଼େ ନିଷ୍ଠୁର ଦାରୁଣ ହୃଦୟ ତାହାରି ।
ସର୍ବ ସୁଲକ୍ଷଣ ପୁତ୍ର କେହୁ ନେଲା ରାତ୍ରେ
ଧୂଳିପକାଇ ଦେଇଣ ମୋର ବେନି ନେତ୍ରେ ।
ତୋପାଇଁ ବାବୁରେ କଲି ଘୋର ତପ ପୁଣି
ଆଚାର ନିଷ୍ଠା ନିୟମେ ରହି ପୁତ୍ରମଣି ।
ତୋପାଇଁ ବାବୁରେ ମୁହିଁକଲି କେତେବ୍ରତ
ବିପ୍ରଙ୍କୁ ଭୋଜନଦିଏ ତୋପାଇଁ ମୁଁ ନିତ୍ୟ ।
ଦେବାଦେବୀ ପୂଜାକରେ ତୋପାଇଁ ନନ୍ଦନ
ଦାରୁଣ କଷ୍ଟ ସହିଲା ଏ ମୋର ଜୀବନ ।
ପୁଣ୍ୟମୂର୍ତ୍ତି ମହାତମା ମୁନି ଦତ୍ତାତ୍ରେୟ
ସୁପ୍ରସନ୍ନେ ଦେଇଥିଲେ ଏକଟି ତନୟ ।
କହିଥିଲେ ହେବ ପୁତ୍ର ଅଜର ଅମର
ଜିଣି ନ ପାରିବେ ଏକ ହେଲେ ତିନିପୁର ।
ବାଳକାଳେ କିଏହରିନେଲା ବାବୁ ତୋତେ
ଦତ୍ତାତ୍ରେୟ କଥା ମିଛ ହୋଇଲା କେମନ୍ତେ ।
ଯେଉଁ ମୁନି ସାକ୍ଷାତରେ ବିଷ୍ଣୁ ଅବତାର
ତା କଥା ଅନ୍ୟଥା କଲା କେବଣ ପାମର ।
ହା ପୁତ୍ର ହା ତାତ ବାବୁ ହା ବତ୍ସ ହା ଧନ
ହା ଗୁଣ ନିଳୟପୁତ୍ର ହା ମୋର ନୟନ ।
କେଣେ ଗଲୁ ବାବୁ ମୁହିଁ କି କରିବି କହ
ନ ଧରି ପାରିବି ବାବୁ ଏ ମୋହର ଦେହ ।
ନିଶ୍ଚେ ଜୀବ ଛାଡ଼ିଯିବ ଆରେ ଗୁଣମଣି
ଆରଜନମର ପାପ ଫଳିଲା କି ପୁଣି ।
ଜାଣିଲି ଏ ଜନମେ ମୁଁ କରିନାହିଁ ପାପ
ତୋପାଇଁ କେତେଯେ କଷ୍ଟପାଇଲା ତୋବାପ ।
ଭଲରୂପେ ମୁହିଁ ବୁଝିପାରିଲଇଁ ଏବେ
ସଞ୍ଚିତଧନ କାହାର ହରିଥିଲି ପୂର୍ବେ ।
ନ୍ୟାସ ଅପହାର ପାପଫଳେ ଏ ଘଟିଲା
ତେଣୁ ସେ ମୋ ହୃଦ ଧନହରି ଘେନିଗଲା ।
କିବା ମୁଁ ପାପିନୀ ପୂର୍ବେ କାହାର ସହିତେ
ଛନ୍ଦ କପଟରେ କଷ୍ଟ ଦେଇଥିଲି ଚିତ୍ତେ ।
ସେ ଦୋଷୁଁ ମୋ ମନେକଷ୍ଟ ହେଲା ଆଣିବିହି
କିବା କାହା ରତ୍ନହରି ଆଣିଥିଲି ମୁହିଁ ।
ତେଣୁ ସେ ମୋ ପୁତ୍ର ରତ୍ନହରି ଘେନିଗଲା
ମୋ କର୍ମଦୋଷରୁ ସିନା କରମଣିଗଲା ।
କିବା ପୂର୍ବେ ବିପ୍ର ସଙ୍ଗେ କରିଗଲି ତର୍କ
ସେ ଦୋଷୁଁ ପାଇଲି ନିଦାରୁଣ ପୁତ୍ରଶୋକ ।
ଶିଶୁବଧ କରିଥିଲି କିବା ଜନ୍ମାନ୍ତରେ
ସେ ଦୋଷ ଫଳିଲା କିବା ଆସି ଏ ଜନ୍ମରେ ।
କିବା ବୈଶ୍ୱଦେବ ଅନ୍ନ ମାଗୁଥିବା ଜନେ
ପୂର୍ବେ ଦେଇ ନ ଥିବାରୁ ଫଳେ ଏ ଜନମେ ।
ଶୋକେ ଇନ୍ଦୁମତୀ କାନ୍ଦେ ପୁତ୍ର ପୁତ୍ର କହି
ଭୂମିରେ ଗଡ଼ଇ ପୁଣି ଉଠଇ ବସଇ ।
କ୍ଷଣେ ମୂର୍ଚ୍ଛାଯାଇ କ୍ଷଣେ ଲଭଇ ଚେତନା
କେତେ ସହିଲି ମୁଁ ବାବୁ ଗର୍ଭର ବେଦନା ।
ସବୁ କଷ୍ଟଯାକ ମୋର ହେଲା ଅକାରଣ
ଦେଖାଇ ହରାଇନେଲା ବିଧାତା ଦାରୁଣ ।
କାଦୋଷ ଦେବଇଁ ମୋର କର୍ମଦୋଷ ସିନା
ଦାସୀଗଣ ମୁଖୁ ଶୁଣି ଆୟ ମହାମନା ।
ଧୈର୍ଯ୍ୟଧରି ନ ପାରିଲେ ଶୋକରେ ଅଧୀର
କ୍ରୋଧରେ ବୋଇଲି ମୁହିଁ ଜାଣିଲି ଏଥର ।
ତପଫଳ ନାହିଁ କିଛି ଦାନଫଳ ନାହିଁ
ଥିଲେ କି ମୋ ପୁତ୍ର ହରି ନିଅନ୍ତା କି କେହି ।
ସୁପ୍ରସନ୍ନେ ଦତ୍ତାତ୍ରେୟ ଦେଇଥିଲେ ବର
ବିଜୟୀ ଅଜେୟ ହେବ ତୋହର କୁମର ।
ଗୁଣବନ୍ତ ରୂପବନ୍ତ ବିଦ୍ୟାବନ୍ତ ହେବ
ସେ ବାରଗୋଟା ଅନ୍ୟଥା କଲା ଯେ ଦଇବ ।
ବିଷ୍ଣୁବର ଆନହେବା ଶୁଣିନାହିଁ କାହିଁ
ଦୁଃଖେ ରୋଦନ କରଇ ମୁଣ୍ଡେ ହାତଦେଇ ।
ହରି ହରି ବୋଲଭାଇ ଦୁଃଖଯାଉ ଦୂର
ହରିନାମ ଏକା ଭାଇ ଏ ସଂସାରେ ସାର ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ଇନ୍ଦୁମତୀ ଶୋକ ଚରିତେ
ଷଡ଼ଧିକଶତତମୋଽଧ୍ୟାୟଃ ।

## ସପ୍ତାଧିକଶତ ଅଧ୍ୟାୟ

### ନାରଦ ରାଜାସମୀପେ ନହୁଷ ବୃତ୍ତାନ୍ତ କଥନ

କୁଞ୍ଜଳ କହିଲା ପୁତ୍ର ଏଥୁ ଅନନ୍ତରେ
ନାରଦମୁନି ଅଇଲେ ସ୍ୱର୍ଗରୁ ଶୂନ୍ୟରେ ।
ଆୟୁର ପାଶରେ ବସି କହିଲେ ରାଜନ
ବୃଥା କିମ୍ପା ବସି ତୁମ୍ଭେ କରୁଛ ରୋଦନ ।
ଦତ୍ତାତ୍ରେୟ ମୁନିବର ଆନ କି ହୋଇବ
ଦେବଙ୍କ ମଙ୍ଗଳପାଇଁ ଘଟାଇ ଦଇବ ।
ଏହା ଜାଣି ଶୋକ ତେଜ ତୁହୋ ନୃପବର
ଅଚିରେ ପାଇବୁ ପୁତ୍ର ସମ ଉପେନ୍ଦ୍ରର ।
ଗୁଣବନ୍ତ ଜ୍ଞାନବନ୍ତ କଳାବନ୍ତ ହୋଇ
ତୋ ଘରକୁ ଆସିବ ସେ ଶୋକ ତେଜତୁହି ।
କାଳ ଘୋଟିବାରୁ ତାକୁ ରାତ୍ରେ ମାୟା କରି
ଆପଣା ଗୃହକୁ ବଳେ ନେଇଅଛି ହରି ।
ମହାବଳ ବୀର୍ଯ୍ୟବନ୍ତ ତୋହର କୁମର
ତାହାକୁ ମାରି ଆସିବ ତୋ ପୁତ୍ର ତୋ ଘର ।
ଇନ୍ଦ୍ର ଉପେନ୍ଦ୍ର ସମାନ ତେଜୋବନ୍ତ ହେବ
ନିତ୍ୟ ପୁଣ୍ୟବଳେ ଇନ୍ଦ୍ରପଦ ସେ ପାଇବ ।
ଏହା କହି ଚଳିଗଲେ ସେ ନାରଦ ମୁନି
ଡକାଇଲେ ଅନୁଚର ଗଣ ନୃପମଣି ।
ନାରଦ କଥାକୁ ତାହିଁ ରହିଲେ ନିଶ୍ଚିନ୍ତେ
ନାରଦ କଥା କହିଲେ ରାଣୀର ଅଗ୍ରତେ ।
ଦତ୍ତାତ୍ରେୟ ପରସାଦେ ପୁତ୍ର ଅଛି ବଞ୍ଚି
ତାହାକୁ ରଖି ଅଛନ୍ତି ପ୍ରଭୁ ଶିରୀବତ୍ସି ।
ଆଗୋ ବରାନନେ ପୁତ୍ର ଯେ ନେଇଛି ହରି
ଆସିବ ପୁତ୍ର ତାହାକୁ ସଂଗ୍ରାମରେ ମାରି ।
ନାରଦ ମୁନି ଏ କଥା କହିଗଲେ ମୋତେ
ଶୋକ ମୋହ ତ୍ୟାଗକରି ରହଗୋ ନିଶ୍ଚିନ୍ତେ ।
ନାରଦ ମୁନିର କଥା ନୋହେ କେଭେ ମିଛ
ଅଜର ଅମର ଦତ୍ତାତ୍ରେୟ ବରେ ବତ୍ସ ।
ରାଜା ରାଣୀ ଏହା ଭାଳି ତ୍ୟାଗକଲେ ଶୋକ
ଅପେକ୍ଷା କରି ରହିଲେ ନାରଦଙ୍କ ବାକ୍ୟ ।
ଦତ୍ତାତ୍ରେୟ ମୁନିପାଦେ ପଶିଲେ ଶରଣ
ଯାହା ପରସାଦେ ପୁତ୍ର ନ ପାଇ ମରଣ ।
ସୁଧୀର ସୁଗୁଣବନ୍ତ ହୋଇ ବିଦ୍ୟାବନ୍ତ
ମୋହର ଘରେ ଆସିବ ଦେଖିବ ଏ ନେତ୍ର ।
ଏମନ୍ତ ଭାବି ସେ ବେନି ଶୋକ ପରିହରି
ଦୀନ ଗୋପୀନାଥ ବୋଲେ ବୋଲ ହରିହରି

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ନାରଦ ରାଜାସମିପେ ନହୁଷ
ବୃତ୍ତାନ୍ତ କଥନେ ସପ୍ତାଧିକଶତତମୋଽଧ୍ୟାୟଃ ।



## ଅଷ୍ଟାଧିକଶତ ଅଧ୍ୟାୟ

### ନହୁଷର ହୁଣ୍ଡ ଦୈତ୍ୟବଧୋଦୋୟଗ

କୁଞ୍ଜଳ କହିଲେ ଦିନେ ବ୍ରହ୍ମାର ନନ୍ଦନ
ବଶିଷ୍ଠ ମୁନି ଯେ ଗୁଣି ବିଜ୍ଞ ତପୋଧନ ।
ନହୁଷକୁ ଡାକି ସେହି କହିଲେ ଏମନ୍ତ
ଆରେ ବାବୁ ବନକୁ ତୁ ଯାଇଣ ତ୍ୱରିତ ।
ଫଳ ମୂଳ ଆଣିଦିଅ ବିଳମ୍ବ ନ କରି
ନହୁଷ ବନକୁ ଗଲା ଧନୁଶର ଧରି ।
ବନକୁ ଯାଇ ଶୁଣିଲା ଏହି ଶୂନ୍ୟବାଣୀ
ଆୟୁ ନୃପତିର ମହା ପ୍ରାଜ୍ଞ ପୁତ୍ରମଣୀ ।
ଇନ୍ଦୁମତୀ ରାଣୀ ଗର୍ଭୁ ଜନମ ତାହାର
ତା ନାମ ନହୁଷ ସେହି ବଳବନ୍ତ ବୀର ।
ଜନମବେଳୁ ସେ୍ ପିତା ମାତା ଛାଡ଼ିକରି
ରହିଛି ଏକାକେ ବୀର ବନରେ ବିହରି ।
ତା ବିଚ୍ଛେଦେ ଇନ୍ଦୁମତୀ କରଇ ରୋଦନ
ଅତି ଦୁଃଖେ ରହିଅଛି ସେ ଆୟୁ ରାଜନ ।
ମାୟାରେ ଦାନବ ରାତ୍ରେ ହରି ତାକୁ ଆଣି
ମାରୁଥିଲା ରକ୍ଷା କଲେ ଦତ୍ତାତ୍ରେୟ ମୁନି ।
ତାପାଇଁ ତପସ୍ୟା କରେ ଅଶୋକ ସୁନ୍ଦରୀ
ଅପୂର୍ବ ଯୁବତୀ ସେହି ପାର୍ବତୀ କୁମାରୀ ।
ତାକୁ ବିଭାକରି କେବେ ଘରକୁ ସେ ଯିବ
ମାତା ପିତାଙ୍କର ପୁତ୍ର ଶୋକ ନିବାରିବ ।
ଏମନ୍ତେ ଶୂନ୍ୟର ବାଣୀ ଶୁଣି ସେ ନହୁଷ
ବିସ୍ମୟ ହୋଇ ମନରେ ଭାବିଲା ଅଶେଷ ।
ରମ୍ୟ ଫଳ ମୂଳ ଘେନି ଆଶ୍ରମକୁ ଗଲା
ବଶିଷ୍ଠଙ୍କ ଆଗେ କରଯୋଡ଼ି ଉଭା ହେଲା ।

ବୋଇଲା ଭକତି ଭରେ ନମିତ କନ୍ଧରେ
ଶୂନ୍ୟ ବାଣୀ ଶୁଣି ଯାହା ଶୁଣିଲି ବନରେ ।
ନହୁଷ ନାମରେ ଏକ ଆୟୁର ନନ୍ଦନ
ଯେ ରାତ୍ରେ ହୋଇଲା ସେହି ଗର୍ଭୁ ଉତପନ୍ନ ।
ମାୟାରେ ଦାନବ ତାକୁ ଆଣିଲାକ ହରି
ତା ବିଚ୍ଛେଦେ ଇନ୍ଦୁମତୀ ମାତା ଶୋକ କରି ।
ଅତି ଦୁଃଖେ ରହିଅଛି ପୁତ୍ରର ବିଚ୍ଛେଦେ
ସେ ଧୀର ନହୁଷ ବଞ୍ଚିଅଛି ଅପ୍ରମାଦେ ।
ତା ପାଇଁ ତପସ୍ୟା କରେ ଅଶୋକ ସୁନ୍ଦରୀ
ଯୁବତୀ ରତ୍ନ ସେ ଶିବ ପାର୍ବତୀ କୁମାରୀ ।
ଶୁଣି ମୋ ମନେ ସଂଶୟ ଉପୁଜିଲା ପୁଣି
କେଉଁ ନହୁଷ ସେ କିଏ ଆୟୁ ନୃପମଣି ।
ଇନ୍ଦୁମତୀ କିଏ କାହିଁ ଅଶୋକ ସୁନ୍ଦରୀ
ଆହେ ଗୁରୁ ଏ ସଂଶୟ ଦିଅନ୍ତୁ ନିବାରି ।
ନହୁଷ ନାମଧାରୀ କି ଅନ୍ୟ ଅଛି କେହି
ଆହେ ଗୁରୁ ଏ ସନ୍ଦେହେ ପଡ଼ିଅଛି ମୁହିଁ ।
ବଶିଷ୍ଠ ବୋଇଲେ ଶୁଣ ନହୁଷ କୁମର
ଆୟୁ ନାମେ ରାଜା ସପ୍ତଦ୍ୱୀପ ଅଧୀଶ୍ୱର ।
ତା ଭାରିଯା ଇନ୍ଦୁମତୀ ସେ ସତ୍ୟ ମୂରତି
ଧର୍ମରେ ସର୍ବଦା ଥାଏ ତାହାର ଯେ ମତି ।
ତାରଗର୍ଭୁ ତୁହି ଜାତ ଆୟୁ ଔରସେ
ଦତ୍ତାତ୍ରେୟ ମୁନିବରେ ଜାତ ବିଷ୍ଣୁ ଅଂଶେ ।
ସୋମବଂଶର ଭୂଷଣ ତୁହିରେ କୁମର-
ଜନ୍ମକାଳେ ତୋତେ ହରି ଆଣିଲା ଅସୁର ।
ଦତ୍ତାତ୍ରେୟ ପରସାଦେ ତୋ ମୃତ୍ୟୁ ନ ହେଲା
ଅସୁର ଦାସୀ ମୋଦ୍ୱାରେ ରାତ୍ରେଥୋଇଗଲା ।
ମୁଁ ଶିଷ୍ୟ ରୂପେ ପାଳିଲି ତୋତେରେନହୁଷ
ସମସ୍ତେ ଜାଣନ୍ତି ତୋତେ ବଶିଷ୍ଠର ଶିଷ୍ୟ ।
ଦଶ କର୍ମରେ ମୁଁ ଏଥେ କଲଇଁ ସଂସ୍କାର
ଦତ୍ତାତ୍ରେୟ ବରେ ତୁହି ଅଟୁ ମହାବୀର ।
ଅଶୋକ ସୁନ୍ଦରୀ ଶିବ ଶିବାର ଦୁହିତା
ତୋତେ କନ୍ୟାଦେଇଛନ୍ତି ତାର ପିତାମାତା ।
ସେ ଦିନୁ ସେ ତପ କରେ ତୋହର ନିମନ୍ତେ
ଅପୂର୍ବ ସୁନ୍ଦରୀ ସେହି ଏ ତିନି ଜଗତେ ।
ମହାସତି ପତିବ୍ରତା ସେ ଚାରୁହାସିନୀ
ରୂପବତୀ ଗୁଣବତୀ ସେ ଶିବ ନନ୍ଦିନୀ ।
ଗଙ୍ଗାତୀରେ ତପ କରୁଥିଲା ସେ ସୁନ୍ଦରୀ
ଦାନବେନ୍ଦ୍ର ହୁଣ୍ଡ ଦିନେ ତାକୁ ଦେଖିକରି ।
କାମବାଣେ ମତ୍ତ ହୋଇ କହିଲା ଏମନ୍ତ
ମୋତେରେ ସୁନ୍ଦରୀ ଭଜ ମୁଁ ଦନୁଜ ନାଥ ।
ଅଶୋକସୁନ୍ଦରୀ କହେ ମୁହିଁ ବିବାହିତା
ନହୁଷକୁ ଦେଇଛନ୍ତି ମୋର ପିତା ମାତା ।
ମନା କରିବାରୁ ମାୟାବଳେ ସେ ଅସୁର
ତାକୁ ହରି ଘେନିଗଲା ଆପଣାର ପୁର ।
ମାୟା ତେଜି ଧରନ୍ତେ ସେ ଅସୁର ମୂରତି
ଜାଣିପାରି ଶାପ ତାକୁ ଦେଲେ ମହାସତୀ ।
ନହୁଷ ହସ୍ତେ ତୋହର ନିଶ୍ଚୟ ମରଣ
ମାୟାବଳେ କଲା ତେଣୁ ତୋତେ ସେ ହରଣ ।
ଦତ୍ତାତ୍ରେୟ ପ୍ରଭାବରୁ ତୋ ମୃତ୍ୟୁ ନୋହିଲା
ଏବେ ମୋର ବୋଲକରି ଆରେ ଆୟୁବଳା ।
ଦେବ ଦାନବେ ଅବଧ ବିପ୍ରଚିତ୍ତି ସୁତ
ତୋହର ହସ୍ତେ ମରଣ ତାହାର ନିୟତ ।
ସେ ଦାନବ ଅଧମକୁ ବେଗେ ଯାଇ ମାର
ଗଙ୍ଗାତୀରେ ପୁର କରି ରହିଛି ଅସୁର ।
ବଡ଼ ପ୍ରତାପୀ ଅଟଇ ହୁଣ୍ଡ ଦୈତ୍ୟପତି
ତାକୁ ମାରି ବିଭାହୁଅ ତହିଁ ମହାସତୀ ।
କାରାଗାରେ ରହିଅଛି ସେ ସୁନ୍ଦରୀ ମଣି
ତାର ସ୍ୱାମୀ ହୁଅ ବାବୁ ଧରି ତାର ପାଣି ।
ମୁନି ମୁଖୁ ସବୁ ଶୁଣି ସେ ନହୁଷ ବୀର
ଆଶ୍ଚର୍ଯ୍ୟ ହୋଇ ବୋଇଲେ ଏକି ଚମତ୍କାର ।
କ୍ରୋଧଭର ଅଗ୍ନି ତୁଲ୍ୟ ଦିଶିଲେ ନହୁଷ
ବୋଇଲେ ନିଶ୍ଚେ ହୁଣ୍ଡକୁ କରିବି ବିନାଶ ।
ଏକାଯିବି କାହାକୁ ମୁଁ ନନେବି ସଙ୍ଗତେ
ଗୋପୀନାଥ ହରି ହରି ବୋଲଇ ନିରତେ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ଚ୍ୟବନ ଚରିତେ
ନହୁଷର ହୁଣ୍ଡଦୈତ୍ୟବଧ ଉଦ୍‌ଯୋଗେ
ଅଷ୍ଟାଧିକ ଶତତମୋଽଧ୍ୟାୟଃ ।



## ନବାଧିକଶତ ଅଧ୍ୟାୟ
## ଅଶୋକ ସୁନ୍ଦରୀ ନିକଟେ ହୁଣ୍ଡୁର ନହୁଷ ବୃତ୍ତାନ୍ତ କଥନ

କୁଞ୍ଜଳ କହିଲା ଶୁଣ ଏଥୁ ଅନନ୍ତରେ
ଆୟୁପୁତ୍ର ପ୍ରଣମିଲା ବଶିଷ୍ଠ ପୟରେ ।
ତାଙ୍କ ଅନୁମତି ନେଇ ଧରି ଧନୁଶର
ବାହାରିଲା ହୁଣ୍ଡୁ ସଙ୍ଗେ କରିବ ସମର ।
ଯେତେବେଳେ ହୁଣ୍ଡୁ ଆୟୁ ପୁତ୍ରକୁ ଆଣିଲା
ସୂପକାର ହସ୍ତେ ତାକୁ ରାନ୍ଧିବାକୁ ଦେଲା ।
ରୂପବନ୍ତ ଗୁଣବନ୍ତ ଦେବତୁଲ୍ୟ ଦେଖି
ଦୟାକରି ନ ମାଇଲା ହୋଇ ବଡ଼ଦୁଃଖୀ ।
ହରିଣ ମାଂସ ଦୈତ୍ୟକୁ ରାନ୍ଧିବାଢ଼ି ଦେଲା
ସ୍ୱାଦୁମାଂସ ଖାଇ ହୁଣ୍ଡୁ ଆନନ୍ଦ ହୋଇଲା ।
ଅଶୋକଶୁନ୍ଦରୀ ପାଶେ ମିଳିଲା ସେ ଯାଇ
କାମବାଣ ଆଘାତରେ ହତଜ୍ଞାନ ହୋଇ ।
ବୋଇଲା ତୋ ପତି ଆୟୁ ପୁତ୍ରକୁ ଭକ୍ଷିଲି
ଜନମ ଦିନ ରାତ୍ରରେ ମୁଁ ହରି ଆଣିଲି ।
ଏବେ ଚାରୁଅଙ୍ଗ କର ମୋ ପାଣିଗ୍ରହଣ
ବୃଥା ନ କର ତୋହର ନବ ଯଉବନ ।
ଭୋଗ ଉପଭୋଗ କରି ସୁଖେ ଦିନ ହର
ତା ଶୁଣି ଶିବକନ୍ୟା ଦେଲା ପ୍ରତ୍ୟୁତ୍ତର ।
ଦେବଦତ୍ତ ପତି ମୋର ଅଜର ଅଦୋଷ
ତାହାର ଯେ ମୃତ୍ୟୁ ନାହିଁ ଜାଣିଥା ରାକ୍ଷସ ।
ସେ ଦୁଷ୍ଟ ଦାନବ ପୁଣି ବୋଲେ ହସିକରି
ନହୁଷକୁ ମୁଁ ଭକ୍ଷିଲି ଆଜିରେ ସୁନ୍ଦରୀ ।
ଜନମ ଦିନ ମୁଁ ରାନ୍ଧି ଖାଇଲି ତା ମାଂସ
ଅଶୋକସୁନ୍ଦରୀ ଶୁଣିକରି ମହାରୋଷ ।
ବୋଇଲା ମୋ ତପ ସତ୍ୟବଳେ ସେ ନହୁଷ
ନିଶ୍ଚୟ ଦୀର୍ଘାୟୁ ହେବ ଜାଣିଥା ରାକ୍ଷସ ।
ବଞ୍ଚିବାକୁ ଇଚ୍ଛା ଯେବେ ଥାଏ ଦୁରାଚାର
ବେଗେ ଏଥୁ ପଳା ଶାପ ଦେବି ପୁନର୍ବାର ।
ହୁଣ୍ଡୁ ଦୈତ୍ୟ ସଙ୍ଗତେ ଯେ ସୂପକାର ଥିଲା
ଶିବସୁତା କଥାଶୁଣି ରାଜାକୁ ବୋଇଲା ।
ଏ ନାରୀକି ତେଜି ଆନ ନାରୀ ଭଜ ଯାଇ
ଏଠାରେ ନ ରହ ଆସ ଯିବା ବେଗହୋଇ ।
ପାପିଷ୍ଠ ହୁଣ୍ଡୁ ତା କଥା ମାନି ବେଗେ ଗଲା
ଆପଣା ଭାରିଯା ଠାରେ ଯାଇଁ ରତ ହେଲା
ଦାସୀ ସୂପକାର କର୍ମ ନ ଜାଣେ ଅସୁର
ଭାରିଯା ଆଗେ କହିଲା ସବୁ ସମାଚାର ।
ବଇରୀ ମରଣେ ଦୁହେଁ ଆନନ୍ଦ ହୋଇଲେ
ସୂତମୁନି ମୁନିଙ୍କର ଆଗରେ କହିଲେ ।
ଘୋରତପ ଆରମ୍ଭିଲା ଅଶୋକ ସୁନ୍ଦରୀ
ଦୁଃଖ ଶୋକେ ଆପଣାର ଦେହ କୃଶକରି ।
ନିରତେ ସେ କାନ୍ତ ଚିନ୍ତା କରଇ ଏକାନ୍ତେ
ବୋଇଲା ବୁଦ୍ଧି ଉଦ୍ୟମ ଉପାୟରେ ଦୈତ୍ୟେ ।
କି ନ କରି ପାରନ୍ତି ଏ ପାପୀ ଦୁରାଚାର
ମାୟାବଳେ ମୋତେ ହରି ଆଣିଲା ଆବର ।
ସେହି ମାୟାବଳେ ଆୟୁ ପୁତ୍ରକୁ ଆଣିଣ
କରିଛି କି ସେହି ରାତ୍ରେ ତାହାକୁ ଭକ୍ଷଣ ।
ଦଇବ ଯୋଗେଯାହା କି ହେବ ଅବାହୋଏ
ଉଦ୍ୟମଯୋଗେ ସେକଥାଗୋଟା ଦେଖାଯାଏ ।
ଉଦ୍ୟମ କର୍ମ ଏ ଦୁଇ ମଧ୍ୟେ କେ ପ୍ରଧାନ
ହେବା କଥା କାହୁଁ ପୁଣି ହୋଇବ ନିଧନ ।
ବେଦ ପ୍ରତିଷ୍ଠା କିରୂପେ ରହିବ ଆବର
ଦେବତାଙ୍କ କଥା ଆନ ହେବ କିପ୍ରକାର ।
ଏରୂପେ ବହୁତ ଭାଳେ ଅଶୋକ ସୁନ୍ଦରୀ
ବିଦୁର ନାମେ କିନ୍ନର ସଙ୍ଗେ ତାରା ନାରୀ ।
ସେ ଆସି ମିଳିଲା ତହିଁ ମହାତନୁ ତାର
ନାସା ଅତି ଦୀର୍ଘ ନାଭି ଉର୍ଦ୍ଧ୍ୱ ନିରାକାର ।
ପକ୍ଷଦ୍ୱୟ ଶୂନ୍ୟଦେହ ଭୁଜ ତାର ଦୁଇ
ବାଉଁଶ ବାଡ଼ି ତାହାର ହସ୍ତରେ ଅଛଇ ।
ହାର କଙ୍କଣରେ ଶୋଭାପାଏ ସେହି ପୁଣ
ଦିବ୍ୟ ଗନ୍ଧରେ ତାହାର ସର୍ବାଙ୍ଗ ଲେପନ ।
ଶଙ୍କର ସୁତାକୁ ଚାହିଁ ବୋଇଲା କିନ୍ନର
ଆଗୋ ଦେବକିମ୍ପା ଚିନ୍ତା ମନରେ ତୋହର ।
ମୁଁ ବିଷ୍ଣୁ ଭକ୍ତ କିନ୍ନର ମୋ ନାମ ବିଦୂର
ପଠାଇ ଅଛନ୍ତି ମୋତେ ସକଳ ଅମର ।
ବୁଝାଇ କହିବା ପାଇଁ ଆସିଅଛି ତୋତେ
ନହୁଷ ପାଇଁ ଦୁଃଖିତା ନ ହୁଅ କିଞ୍ଚିତେ ।
ଯେ କର୍ମ କରିଛି ସେହି ହୁଣ୍ଡୁ ପାପାଚାର
ଏ କର୍ମ କେ ନ କରିବ ନିର୍ଦ୍ଦୟ ନିଷ୍ଠୁର ।

ଆୟୁପୁତ୍ର ଜନ୍ମଦିନ ରାତ୍ରେ ହରିଆଣି
ରାନ୍ଧିବା ନିମନ୍ତେ ତାକୁ ନେଲା ତାର ରାଣୀ ।
ଦେବଙ୍କ ଉପାୟ ବଳେ ସେ ରକ୍ଷା ପାଇଲା
ତା ବଞ୍ଚିବା କଥା ହୁଣ୍ଡ ଦୈତ୍ୟ ନଜାଣିଲା ।
ସେ ଜାଣେ ନହୁଷ ମାଂସ କଲି ମୁଁ ଭକ୍ଷଣ
ସେ କଥା ଗୋଟା କହିଲା ଦାନବ ଅଧମ ।
ପୂର୍ବ ପୁଣ୍ୟ କର୍ମବଳେ ଜୀଇଛି ତୋ ପତି
ମନ ମଧ୍ୟରେ ବିଚାର କର ମହାସତୀ ।
ନିଜ ପୁଣ୍ୟବଳେ ଯାର ଆୟୁଷ ନିର୍ମାଣ
ଘାତକ ଯେ ମହାପାପୀ ଦୁରାଚାରିଗଣ ।
କରୁଥାନ୍ତି ତାହାପାଇଁ ନାନାଦି ଉପାୟ
କେମନ୍ତେ ଏହାର ଯଶ ପ୍ରାଣ ଯିବ କ୍ଷୟ ।
ବିଷ ଦିଅନ୍ତି ତାହାକୁ ଶସ୍ତ୍ର ପ୍ରହାରନ୍ତି
ମୋହନ ସ୍ତମ୍ଭନ ଆଦି ଉପାୟ କରନ୍ତି ।
ରକ୍ଷାପାଏ ପୁଣ୍ୟବଳେ ପୁଣ୍ୟକାରୀ ଜନ
ପାପୀ ଉପାୟ ବିଫଳ ହୁଅଇ ଗୋ ଜାଣ ।
ଦେବତା ଆବର ପୁଣ୍ୟ ଯାହାକୁ ରଖନ୍ତି
ଯନ୍ତ୍ର ମନ୍ତ୍ର ତନ୍ତ୍ର ଶସ୍ତ୍ର ତାକୁ ନ କାଟନ୍ତି ।
ଅନଳ ବନ୍ଧନ ବିଷ ଜଳୁ ରକ୍ଷାପାଇଁ
ଯନ୍ତ୍ର ତନ୍ତ୍ର ଆଦି ସବୁ ଜାଣ ଭସ୍ମଯାଇ ।
ପୁଣ୍ୟାତ୍ମା ଜନର କିଛି ନୋହେ ଅପକାର
ଆୟୁ ପୁତ୍ରର ରକ୍ଷକ ଦେବତା ନିକର ।
ପୁଣ୍ୟରାଶି ତପୋନିଧି ମହାବଳ ସେହି
ଆବର ନହୁଷ ମହା ବୀର ଯେ ଅଟଇ ।
ତପ ସତ୍ୟ ପୁଣ୍ୟଯମ ଦମ ରଖେ ତାକୁ
ତାପାଇଁ ଦୁଃଖ ନକର କହୁଛି ତୁମ୍ଭଙ୍କୁ ।
ଅକାରଣ ଶୋକ ତୁମ୍ଭେ ଆଉ ଗୋ ନକର
ସେହି ଧର୍ମଆତ୍ମା ଆଜ ରାଜାର କୁମର ।
ବଞ୍ଚି ରହିଅଛି ବନେ ମାତା ପିତା ବିନେ
ତପୀଏ ପାଳନ୍ତି ତାକୁ ରଖି ତପୋବନେ ।
ବେଦ ଆଉ ବେଦାଙ୍ଗର ତତ୍ତ୍ୱ ସେ ଜାଣଇ
ଧନୁର୍ବେଦରେ ପରାଗ ସେହୁ ଯେ ଅଟଇ ।
ଚନ୍ଦ୍ର ଯେହ୍ନେ ବିରାଜଇ ନିଜ କଳା ଘେନି
ସେ ତେମନ୍ତ ବିରାଜଇ ଆଗୋ ସୁଲକ୍ଷଣୀ ।
ପରବୀରହନ୍ତା ସୁର ପ୍ରିୟ ସେ ନହୁଷ
ବିଦ୍ୟା ପୁଣ୍ୟ ତପୋବଳେ ବିସ୍ତାରିବ ଯଶ ।

ହୁଣ୍ଡ ଦୈତ୍ୟ ମାରି ତୋତେ ଲଭିବ ନିଶ୍ଚୟ
ପୃଥିବୀରେ ହେବ ସେହି ଏକ ଛତ୍ର ରାୟ ।
ସ୍ୱର୍ଗ ଇନ୍ଦ୍ରପ୍ରାୟ ସେହି ମହୀନ୍ଦ୍ର ହୋଇବ
ତୋତେ ଘେନି ସୁଖେ ପ୍ରଜାଗଣଙ୍କୁ ପାଳିବ ।
ତା ଠହୁଁ ତୁ ଇନ୍ଦ୍ରତୁଲ୍ୟ ପୁତ୍ର ଗୋ ପାଇବୁ
ସେ ପୁତ୍ରର ମୁଖ ଦେଖି ଆନନ୍ଦ ହୋଇବୁ ।
ସେ ପୁତ୍ରର ନାମ ଜାଣ ହୋଇବ ଯଯାତି
ଶତ କନ୍ୟା ପାଇବୁ ତୁ ଅତି ରୂପବତୀ ।
ସେ କନ୍ୟାଙ୍କ ପୁଣ୍ୟେ ଇନ୍ଦ୍ର ହୋଇବ ନହୁଷ
ତୋ ପୁତ୍ର ଯଯାତି ରାଜା ହେବ ଦୀର୍ଘାୟୁଷ ।
ମହାତେଜା ଚାରିପୁତ୍ର ହୋଇବ ତାହାର
ବଳବନ୍ତ ବୀର୍ଯ୍ୟବନ୍ତ ହେବେ ଧନୁର୍ଦ୍ଧର ।
ପ୍ରଥମ ପୁତ୍ରର ନାମ ହୋଇବ ଯେ ତୁରୁ
ଦ୍ୱିତୀୟ ଯେ ପୁରୁ ପୁଣି ତୃତୀୟ ଯେ କୁରୁ ।
ଚତୁର୍ଥ ପୁତ୍ର ଗୋଟି ଯେ ଯଦୁ ବୋଲାଇବ
ବୀର୍ଯ୍ୟବନ୍ତ ବଳବନ୍ତ ତେଜୋବନ୍ତ ହେବ ।
ମହାତ୍ମା ଯଦୁର ହେବେ ପୁତ୍ରଗଣ ଯେତେ
ସିଂହତୁଲ୍ୟ ପରାକ୍ରମୀ ହୋଇବେ ସମସ୍ତେ ।
ତାଙ୍କ ନାମ କହୁଅଛି ଶୁଣ ଦେଇ ମନ
ଭୋଜ ଭୀମକ ଅନ୍ଧକ ଏହି ତିନିଜଣ ।
ଆବର କୁଞ୍ଜର ବୃଷ୍ଟି ସୁଧର୍ମ ଏ ତିନି
ସତ୍ୟାଧାର ଶ୍ରୁତସେନ ଶ୍ରୁତାଧାର ପୁଣି ।
କାଳଦଂଷ୍ଟ୍ର କାଳଜିତ ଏ ଦୁଇ ଆବର
ମହା ବୀର୍ଯ୍ୟବନ୍ତ ହେବେ ଯଦୁର କୁମର ।
ଯାଦବ ନାମେ ବିଖ୍ୟାତ ସଂସାରେହୋଇବେ
ସହସ୍ର ସହସ୍ର ପୁତ୍ର ନାତି ପୁଣି ହେବେ ।
ଏରୂପେ ନହୁଷ ବଂଶ ପ୍ରତିଷ୍ଠା ପାଇବ
ଅଳପ ଦିନେ ତୋ ପତି ଏଠାକୁ ଆସିବ ।
ହୁଣ୍ଡ ଦାନବ କୁମାରୀ ଘେନିଯିବ ତୋତେ
ଇନ୍ଦୁମତୀର ଲୋତକ ଗଡ଼ଇ ନିରତେ ।
ମାନଧାତା ପୁତ୍ର ତାହାଦେବ ପୋଛି କରେ
ଆୟୁରାଜା ଦୁଃଖ ଦୂର କରିଣ ସତ୍ୱରେ ।
କୁଳ ଉଦ୍ଧାରିବ ସୁରେ ପ୍ରଜାଙ୍କୁ ପାଳିବ
ଦେବେ ଯାହା କହିଥିଲେ କହିଲି ତା ସର୍ବ ।
ଏବେ ଦୁଃଖ ଶୋକ ଛାଡ଼ିରହିଥା ଗୋ ସୁଖେ
ଅଶୋକ ସୁନ୍ଦରୀ କହେ ବିଦୁର ସମ୍ମୁଖେ ।

ଏରୂପେ ଯେବେ କି କହିଛନ୍ତି ଦେବଗଣ
ସତ କୁହ ମୋ ସ୍ୱାମୀ କି ମାଡ଼ିବେ ଏ ସ୍ଥାନ ।
ବିଦୁର କିନ୍ନର କହେ ଶୁଣ ଗୋ ସୁନ୍ଦରୀ
ଅବିଳମ୍ବେ ସ୍ୱାମୀ ମୁଖ ଦେଖିବୁ କିପରି ।
ବିଦୁର ଏକଥା କହି ଗଲା ଦେବାଳୟେ
ଶିବ ସୁତା ଶୋକ ତେଜି ରହିଲା ନିର୍ଭୟେ ।
ଦୀନ ଗୋପୀନାଥ ବୋଲେ ବୋଲ ହରିହରି
ବିପଦ-ସାଗରୁ ନିଶ୍ଚେ ହେଳେ ଯିବ ତରି ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ଚ୍ୟବନ ଚରିତେ ବେନୋପାଖ୍ୟାନେ ଅଶୋକ ସୁନ୍ଦରୀ ନିକଟେ ହୁଣ୍ଡୁର ନହୁଷ ବୃତ୍ତାନ୍ତ ବର୍ଣ୍ଣନେ ନବାଧିକ ଶତତମୋଽଧ୍ୟାୟଃ ।



## ଦଶାଧିକଶତ ଅଧ୍ୟାୟ

### ନହୁଷକୁ ବଶିଷ୍ଠାଦିଙ୍କର କଲ୍ୟାଣ

କୁଞ୍ଜଳ କହିଲା ସେହି ନହୁଷ ତକ୍ଷଣେ
ବଶିଷ୍ଠ ଆଦି ଯେତେକ ଥିଲେ ମୁନିଗଣେ ।
ତାହାଙ୍କୁ ଆମନ୍ତ୍ରି ଯିବାପାଇଁ କଲ ମନ
ଦାନବାଧମ ହୁଣ୍ଡୁକୁ କରିବ ନିଧନ ।
ଆୟୁପୁତ୍ରକୁ କଲ୍ୟାଣ କଲେ ମୁନିଜନେ
ବଶିଷ୍ଠ ଆଦି ଥିଲେକ ଯେତେ ତପୋଧନେ ।
ଦୁନ୍ଦୁଭି ବାଦ୍ୟ ବାଜିଲା ଏକାଳେ ଗଗନେ
ଆନନ୍ଦରେ ମଗ୍ନହେଲେ ସୁରାଙ୍ଗନାମାନେ ।
ଦେବେ ପୁଷ୍ପ ବରଷିଲେ ନହୁଷର ଶିରେ
ସହସ୍ରାକ୍ଷ ସୁରଗଣ ଘେନି ସଙ୍ଗତରେ ।
ନହୁଷକୁ ଅସ୍ତ୍ର ଶସ୍ତ୍ର କଲେକ ପ୍ରଦାନ
ସେ ଅସ୍ତ୍ର ସବୁ ଆଦିତ୍ୟ ତେଜର ସମାନ ।
ଦେବ ଅସ୍ତ୍ର ପାଇ ସେହି ଆୟୁର କୁମର
ଦିବ୍ୟରୂପେ ବିରାଜିଲା ମହୀର ଉପର ।
ଏଥୁଅନ୍ତେ ଦେବଗଣେ ବୋଇଲେ ଇନ୍ଦ୍ରଙ୍କୁ
ଏକ ଦିବ୍ୟରଥ ଦିଅ ଏହି ନହୁଷକୁ ।
ଦେବଙ୍କ ମନର କଥା ଇନ୍ଦ୍ର ବୁଝିପାରି
ମାତଳି ସାରଥିକି ସେ ପାଶକୁ ହକାରି ।
ବୋଇଲେ ଆୟୁପୁତ୍ରକୁ ଦିଅ ଏକରଥ
ଅକ୍ଷୟ ଅତୁଟ ରଥଥିବ ଧ୍ୱଜ ଛତ୍ର ।
ସାରଥି ହୋଇବ ତୁମ୍ଭେ ଏହୁ ନହୁଷର
ମରିବ ଯେମନ୍ତେ ବିପ୍ରଚିତ୍ତିର କୁମର ।
ହେଉ କହି ସେ ମାତଳି ରଥ ଘେନିଗଲା
ଆୟୁପୁତ୍ର ନହୁଷର ଆଗରେ ମିଳିଲା ।
ବୋଇଲା ହେ ଧର୍ମଆତ୍ମା ବସ ଏହିରଥେ
ବିଜୟୀ ହୋଇବ ତୁମ୍ଭେ ଆଜି ରଣକ୍ଷେତ୍ରେ ।
ଏ ରଥକୁ ଦେଇଛନ୍ତି ସହସ୍ର ଲୋଚନ
ମାତଳି ସାରଥି ଜାଣ ଅଟେ ମୋର ନାମ ।
ଇନ୍ଦ୍ର କହିଛନ୍ତି ତୁ ଯେ ନୃପତି ଈଶ୍ୱର
ସଂଗ୍ରାମେ ପାପାତ୍ମା ହୁଣ୍ଡୁ ଦାନବକୁମାର ।
ରାଜେନ୍ଦ୍ର ନହୁଷ ଶୁଣି ଆନନ୍ଦ ହୋଇଲେ
ମାତଳିକି ଚାହିଁ ପୁଣି ଏମନ୍ତ ବୋଇଲେ ।
ବଶିଷ୍ଠ ଆବର ଦେବଗଣ ପରସାଦେ
ମାରିବି ସେ ଦାନବକୁ ଯୁଦ୍ଧେ ଅପ୍ରମାଦେ ।
ନହୁଷ କହିଲାବେଳେ ଦେବ ଚକ୍ରଧର
ନିଜ ଚକ୍ରୁ ଏକଚକ୍ର କରିଣ ବାହାର ।
ଆନନ୍ଦେ ନହୁଷ ହସ୍ତେ ଦେଲେ ନେଇତାହା
ତେଜୋବନ୍ତ ଶୂଳଦେଲେ ପାର୍ବତୀର ନାହା ।
ଶଙ୍କର ପ୍ରାୟ ଦିଶିଲା ନହୁଷ ସେ କାଳେ
ବ୍ରହ୍ମା ସ୍ୱୟଂ ବ୍ରହ୍ମ ଅସ୍ତ୍ର ଆଣି ସମର୍ପିଲେ ।
ପାଶ ଅସ୍ତ୍ରଦେଲେ ଆଣି ଆପଣେ ବରୁଣ
ଚନ୍ଦ୍ର ଶଙ୍ଖଦେଲେ ତାର ନାଦେ ତେଜିୟାନ ।
ବଜ୍ରଶକ୍ତି ଇନ୍ଦ୍ରଦେଲେ ବାୟୁ ଧନୁଶର
ଆଗ୍ନେୟ ଅସ୍ତ୍ର ପ୍ରଦାନ କଲେ ବୈଶ୍ୱାନର ।
ନାନାବିଧ ଦେବ ଅସ୍ତ୍ରମାନ ଦେଲେ ଦେବେ
କୁଞ୍ଜଳ କହଇ ଶୁଣ ପୁତ୍ର ତୁହୋ ଏବେ ।
ଦେବତାଙ୍କଠାରୁ ପୂଜାପାଇ ଆୟୁ ସୁତ
ବଶିଷ୍ଠ ଆଦି ଯେତେକ ଥିଲେ ତପୋବନ୍ତ ।
ତାହାଙ୍କ କଲ୍ୟାଣ ଘେନି ବିଜେକଲା ରଥେ
ଭାସ୍କର ରଥ ତା ନାମ ଗମେ ଶୂନ୍ୟପଥେ ।
ବହୁତ କ୍ଷୁଦ୍ର ଘଣ୍ଟାରେ ମଣ୍ଡିତ ସେ ରଥ
ସ୍ୱର୍ଗପଥେ ତେଜୋବନ୍ତ ଯେସନେ ଆଦିତ୍ୟ ।
ସେ ରଥେ ଶୋଭା ପାଇଲା ନହୁଷ ତେସନ
ଦୈତ୍ୟଙ୍କ ଶିରେ ଢ଼ାଳିଲା ପ୍ରତାପ କିରଣ ।
ଯହୁଁ ହୁଣ୍ଡୁ ଦୈତ୍ୟେଥିଲା ନିଜ ବଳ ଘେନି
ମାତଳି ସେ ରଥ ବାହିନେଲା ତାହା ଜାଣି ।

ପବନ ପରାୟ ରଥ କରଇ ଗମନ
ମାତଳି ଯେଣୁ ସାରଥି ମଧ୍ୟରେ ପ୍ରଧାନ ।
ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ
ବେନୋପାଖ୍ୟାନେ
ନହୁଷାଖ୍ୟାନେ
ଦଶାଧିକ ଶତତମୋଽଧ୍ୟାୟଃ ।



## ଏକାଦଶାଧିକଶତ ଅଧ୍ୟାୟ

### ନହୁଷ ଆଗମନୋତ୍ସବ

କହଇ କୁଞ୍ଜଳପକ୍ଷୀ ଶୁଣ ନୃପବର
ସୁରରାଜପ୍ରାୟ ବୀର ନହୁଷ କୁମର ।
ସଂଗ୍ରାମ କରିବାପାଇଁ ଯହୁଁ ବାହାରିଲେ
କଉତୁକେ ସୁରନାରୀ ଗୀତ ଯେ ଗାଇଲେ ।
ରମ୍ଭାଆଦି ଅପସରାଗଣ ମେଳହୋଇ
ଅତିଉତ୍ସୁକେ ନାଚିଲେ କଉତୁକ ପାଇ ।
ରୂପଅଳଙ୍କାଯୁତା ଗନ୍ଧର୍ବୀ କିନ୍ନରୀ
ସୁସ୍ୱରେ ଗୀତଗାଇଲେ ତାଳମାନ ଧରି ।
ଦୁରାତ୍ମା ହୁଣ୍ଡୁରପୁରୀ ଦିବ୍ୟ ମନୋହର
ନନ୍ଦନ ଉପବନରେ ଭୂଷଣ ଆବର ।
ସୁନାକଳସରେ ଶୋଭା ପାଉଅଛି ପୁରୀ
ସାତଗୋଟା କକ୍ଷାଅଛି ବୁଲୁଛି ଗଉରୀ ।
ଦଣ୍ଡ ପତାକାରେ ଘର ସବୁ ସୁଶୋଭନ
ତୋରଣ ଅଗଣା ଶୋଭା ଅତି ବିତପନ ।
ପୁରଗୃହ ଶ୍ରେଣୀ କିବାକୈଳାସଶିଖର
ଗଗନ ସ୍ପରଶୀ ଉଚ୍ଚ ପରମ ସୁନ୍ଦର ।
ବନ ଉପବନ ତହିଁ ଅଛଇ ବହୁତ
ସାଗରତୁଲ୍ୟ ତଡ଼ାଗ ଅଛି ଶତଶତ ।
ଉତ୍ପଳ ରକତପଦ୍ମ ଅଛି ସବୁଜଳେ
ରତନମୟ ପାଚେରୀ ବୁଲିଛି ସୂଦ୍ଧଳେ ।
ଶତଶତ ଅଟ୍ଟାଳିକା ତହିଁରେ ଅଛଇ
ଚାରିପାରୁଶ ବେଢ଼ିଛି ଜଳପୂର୍ଣ୍ଣ ଖାଇ ।
ମହାରତ୍ନ ଗଜ ଅଶ୍ୱ ସୁନ୍ଦରୀ ରମଣୀ
ଏମନ୍ତ ଉତ୍ତମପୁରୀ ଦେଖି ବୀରମଣି ।
ଆବର ଦେଖିଲେ ପୁରପ୍ରାନ୍ତେ ଦିବ୍ୟବନ
ନନ୍ଦନବନେ ଯେସନ ସହସ୍ର ଲୋଚନ ।
ତେସନ ସେ ବନମଧ୍ୟେ ପଶିଲା ନହୁଷ
ମାତଳି ରଥ ବାହୁଛି ହୋଇଣ ହରଷ ।
ରଥୁ ଉତୁରିଲା ବନମଧ୍ୟେ ନଦୀତୀରେ
ରୂପବତୀ ଦିବ୍ୟନାରୀ ମିଳିଲେ ସେଠାରେ ।
ଗନ୍ଧର୍ବେ ଗାଇଲେଗୀତ ବନ୍ଦିକଲେ ସ୍ତୁତି
ମଧୁରକିନ୍ନର ଗୀତ ଶୁଣେ ନରପତି ।
ପ୍ରଶଂସା ଗାଇଲେ ଆସି ଭାଟ ଏକବାରେ
ଦୀନଗୋପୀନାଥ ମନ ଅଚ୍ୟୁତ ପୟରେ ।
ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ
ବେନୋପାଖ୍ୟାନେ ନହୁଷ ଆଗମନୋତ୍ସବେ
ମାହାତ୍ମ୍ୟେ ନହୁଷାଖ୍ୟାନ
ଏକାଦଶାଧିକଶତତମୋଽଧ୍ୟାୟଃ ।



## ଦ୍ୱାଦଶାଧିକଶତ ଅଧ୍ୟାୟ

### ଅଶୋକ ସୁନ୍ଦରୀର ତପଭଙ୍ଗ

କୁଞ୍ଜଳ କହଇ କପିଞ୍ଜଳ ଯେ ଶୁଣଇ
ସୁରାଙ୍ଗନାମାନେ ଯହୁଁ ଆସି ଗୀତଗାଇ ।
ଶମ୍ଭୁ ପୁତ୍ରୀ ଯେ ବ୍ୟାକୁଳା ଚିନ୍ତିତା ହୋଇଲା
ତୁରିତେ ଆସନତେଜି ସେଠାକୁ ଅଇଲା ।
ଅତି ଉତ୍ସାହେ ଆସଇ ସେହି ତପସ୍ୱିନୀ
ଦେଖିଲା ରାଜପୁତ୍ରକୁ ସେ ବରକାମିନୀ ।
ଦିବ୍ୟ ଆଭରଣ ଦିବ୍ୟବସନେ ଭୂଷିତ
ଦେବତାସମାନ ରୂପ ସୁଗନ୍ଧ ଲେପିତ ।
ଦିବ୍ୟମାଳାରେ ମଣ୍ଡିତ ବିରାଜଇ ଜ୍ୟୋତି
ଦିବ୍ୟ ଲକ୍ଷଣ ଦେଖିଣ ଭାଳଇ ଯୁବତୀ ।
ଏହିକି ବିଜ୍ଞଗନ୍ଧର୍ବ କିବା ବିଦ୍ୟାଧର
ନାଗନନ୍ଦନ କି ଅବା କେବଣ ଅମର ।
ଏମନ୍ତ ପୁରୁଷ କାହିଁ ଦେଖିନାହିଁ ମୁହିଁ
ଯକ୍ଷ ଲକ୍ଷଣତ କିଛି ଏହା ତହିଁ ନାହିଁ ।
ଲୀଳାଗତିରୁ ଏହାର ଜଣାଯାଏ ବୀର
ଏହି ନିଶ୍ଚୟ ହୋଇବ ଦେବ ପୁରନ୍ଦର ।
କିବା ସ୍ୱୟଂ ଶମ୍ଭୁ ଏହି କିବା କାମରାୟ
ପିତୃସଖା ଧନପତି ପୌଲସ୍ତ ତନୟ ।
ଏରୂପେ ମନେ ଭାଳଇ ଅଶୋକସୁନ୍ଦରୀ
ରୂପ ଗୁଣବତୀ ସଖୀରମ୍ଭା ଅପସରୀ ।

ହସି ହସି ତାକୁ ଯେ ବୋଇଲା ଏମନ୍ତ
ଦୀନ ଗୋପୀନାଥ ବୋଲେ ଅଚ୍ୟୁତଅଚ୍ୟୁତ ।
ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ
ବେନୋ ପାଖ୍ୟାନେ ଅଶୋକ ସୁନ୍ଦରୀର
ତପଭଗ୍ନ ବୃତ୍ତାନ୍ତେ ଦ୍ୱାଦଶା-
ଧିକଶତତମୋଽଧ୍ୟାୟଃ ।



## ତ୍ରୟୋଦଶାଧିକଶତ ଅଧ୍ୟାୟ

### ରମ୍ଭାସହିତ ଅଶୋକସୁନ୍ଦରୀର ନହୁଷଦର୍ଶନ

ରମ୍ଭା କହିଲା ଗୋଶୁଭେ ତପ ଛାଡ଼ିକରି
କି ଦେଖୁଛ କହ ମନକଥା ଯେ ତୋହରି ।
ପୁରୁଷ ଚିନ୍ତାରେ ତପ ବିଘ୍ନ ହୋଏ ଜାଣ
ଶୁଣି ଅଶୋକ ସୁନ୍ଦରୀ କହିଲେ ଯେ ପୁଣ ।
ନହୁଷ ପାଇଁ ତପରେ ମନ ଲୀନ ମୋର
ମୋମନ ଟାଳି ନପାରେ ସୁର କି ଅସୁରେ ।
ଉରଗଗଣ ନୋହିବେ କେବେ ସମରଥ
ଏହାକୁ ଦେଖି ମୋ ମନ କିମ୍ପା ବିଚଳିତ ।
ଏହା ସଙ୍ଗେ ରମିବାକୁ ଉତ୍ସୁକ ବଢ଼ଇ
ଆଗୋ ବରାନନେ କେବେ ଏହା ଘଟିନାହିଁ ।
ଜାଣିଥିଲେ କହ ସଖି ଏଥିର କାରଣ
ନହୁଷ ଭାରିଯା ମୁହିଁ ବିଧାତା ଭିଆଣ ।
ଏ ପୁରୁଷପ୍ରତି କିମ୍ପା ମୋ ମନ ବଳଇ
ରମ୍ଭା କହିଲା ଭାମିନୀ ଶୁଣ ମନଦେଇ ।
ସନାତନ ଆତ୍ମା ବହୁଜ୍ଞାନ ରୂପେ ଥାଏ
ସବୁରି ଦେହରେ ସଖି ତୋରମୋର ନୋହେ ।
ଯେବେ କି ସେ ଇନ୍ଦ୍ରିୟର ମୋହପାଶେ ବଦ୍ଧ
ତଥାପି ସେ ଆତ୍ମାଜାଣ ନିରନ୍ତର ସିଦ୍ଧ ।
ଜ୍ଞାନବିଜ୍ଞାନ ରୂପିଣୀ ଚିତ୍‌କଳାରୂପିଣୀ
ପ୍ରକୃତିକି ନ ଜାଣଇ ସେହି ଆତ୍ମା ପୁଣି ।
ଶୁଦ୍ଧ ପୁଣି ଧର୍ମଜ୍ଞ ଏ ଆତ୍ମା ଗୋ ସୁନ୍ଦରୀ
ଏଣୁ ଏ ମହାମତିକି ତୁ ଗୋ ଦେଖିକରି ।
ଟଳିପଡ଼ଇ ତୋହର ସନ୍ତାପିତ ମନ
ପାପଛାଡ଼ି ସତ୍ୟପଥେ କରଇ ଗମନ ।
ଏ ଆୟୁପୁତ୍ର ତୋ ପତି ସନ୍ଦେହ ଯେ ନାହିଁ
ପାପପୁରୁଷ ଦର୍ଶନେ ମନ ଭୟପାଇ ।
ଆୟୁପୁତ୍ର ତୋର ସ୍ୱାମୀ ବିଧାତା ଭିଆଣ
ଏହାଶୁଣି ତୋର ଆତ୍ମା ରଖିଛି ତା ପୁଣ ।
ତା ଭାବେମଜ୍ଜି ତୋଆତ୍ମା ରହିଅଛି ସତ୍ୟେ
ଅନ୍ୟଭାବ ନ ଜାଣଇ ଜାଣେ ଆୟୁପୁତ୍ରେ ।
ଆଗତପତିକି ଜାଣି ନ ପାରେ ପ୍ରକୃତି
ଏରୂପେ ଜାଣି ତୋ ଆତ୍ମାଧାଏଁ ଏହାପ୍ରତି ।
ଆତ୍ମାସବୁ ଜାଣେ ସଖି ଆତ୍ମା ସନାତନ
ଏ ବୀର୍ଯ୍ୟବନ୍ତ ପୁରୁଷ ନହୁଷ ୟା ନାମ ।
ବୀରେନ୍ଦ୍ରଯୋଗୁଁ ତୋ ମନ ଦେଖିଣ ଟଳଇ
ସତ୍ୟ ସମ୍ବନ୍ଧଥିବାରୁ ସ୍ୱଇଚ୍ଛାରେ ଧାଇଁ ।
ଏହାକୁ ଯେ ଆୟୁପୁତ୍ର ଜାଣି ଧାଏଁ ବେଗେ
ଅନ୍ୟପୁରୁଷେ ନ ଧାଏଁ କହିଲି ତୋ ଆଗେ ।
ତୋହର ମନର ଭାବ ଦେଲଇଁ ଫିଟାଇ
ମହାଭୟଙ୍କର ହୁଣ୍ଡ ଦାନବ ଅଟଇ ।
ଏ ପୁରୁଷ ତା କୁମାରୀ ତୋତେଯିବ ଘେନି
ପ୍ରବେଶ ହୋଇବ ଯାଇଁ ଆୟୁ ରାଜଧାନୀ ।
ଏ ବୀରମଣିକି ହରି ଆଣିଲା ଦଇତ
ପୁଣ୍ୟବଳେ ଏ ପୁରୁଷ ରହିଲା ଜୀବିତ ।
ବାଳକାଳୁଁ ଏ ପୁରୁଷ ସ୍ୱଜନ ବିରହୀ
ବନେ ବଢ଼ିଲା ଏ ପିତୃ ମାତୃ ଶୂନ୍ୟ ହୋଇ ।
ତୋତେ ଘେନି ପିତୃ ଗୃହେ କରିବ ଗମନ
ଶିବନନ୍ଦିନୀ ରମ୍ଭାର ପୁଣି ଏ ବଚନ ।
ଅତିଆନନ୍ଦରେ ତାକୁ ବୋଇଲା ଯେ ପୁଣି
ସତ କହ ରମ୍ଭା ସଖି ଅଛ ଯେବେ ଜାଣି ।
ଏହିକି ସେ ସତ୍ୟ ବୀର୍ଯ୍ୟବନ୍ତ ମୋର ପତି
ଶୋକେ ଆକୁଳ ବିହ୍ୱଳ ଏ ମୋହର ମତି ।
ଏହା ପ୍ରତି ଧାଉଁଅଛି ଏକାନ୍ତେ ସଜନୀ
ମନ ସମାନ ଦେବତା ନାହିଁ ପୁର ତିନି ।
ସୁନିଶ୍ଚିତ ବିଷୟକୁ ମନ ଏକା ଜାଣେ
ପ୍ରତ୍ୟକ୍ଷେ ସୁଚିତ୍ର ସତ୍ୟ ଦେଖିଲି ଏକ୍ଷଣେ ।
ଚାରୁହାସିନୀ ଗୋ ସଖି କି କହିବି ତୋତେ
ଏହାକୁ ଦେଖି ମୋ ମନ ଧାମଇଁ ଯେମନ୍ତେ ।
ନ ଧାଇଁବ କାମତୁଲ୍ୟ ପୁରୁଷ ଦର୍ଶନେ
ଆନ ସଖୀ ସଙ୍ଗେ ଯିବି ଏହା ସନ୍ନିଧାନେ ।
ରମ୍ଭାକୁ ଏରୂପେ କହି ଅଶୋକ ସୁନ୍ଦରୀ
ନହୁଷ ପାଶେ ଯିବାକୁ ମନ ମନ କରି ।

ରମ୍ଭା ବୋଇଲା ଗୋ ଦେବି ନଯାଉକିପାଇଁ
ସୂତ କହିଲେ ଏରୂପେ କଥାବାର୍ତ୍ତା ହୋଇ ।
ପୁଣି ପାଞ୍ଚିଲା ସୁନ୍ଦରୀ ଆପଣାର ମନେ
ସଖୀକିବୋଇଲା ଯା ଗୋ ରାଜା ସନ୍ନିଧାନେ ।
ଏକଥା ସବୁ ବୁଝାଇ କହିବ ତାହାଙ୍କୁ
ରମ୍ଭାବୋଲେ ସଖିଯିବି ମୁଁ ରାଜା ପାଶକୁ ।
ତୋହର ଭଲ ଯେମନ୍ତେ ହେବ ତା କରିବି
ଏମନ୍ତ କହି ସେଠାରୁ ଗଲା ରମ୍ଭାଦେବୀ ।
ଧନୁର୍ଦ୍ଧର ଇନ୍ଦ୍ରତୁଲ୍ୟ ସେ ରାଜନନ୍ଦନ
ରମ୍ଭା ତା ପାଖେ ପହୁଞ୍ଚି କହିଲା ଏସନ ।
ଆହେ ଆୟୁପୁତ୍ର ମୁହିଁ ରମ୍ଭା ଆସିଅଛି
ଶିବସୁତା ତୁମ୍ଭ ପାଶେ ମୋତେ ପଠାଇଛି ।
ପୂର୍ବେ ଦେବଦେବ ଶିବ ଜାଣ ତୁମ୍ଭ ପାଇଁ
ଲୋକଦୁର୍ଲ୍ଲଭ ଭାରିଯା ଗୋଟିଏ ଗଢ଼ାଇ ।
ଇନ୍ଦ୍ରଆଦି ଦେବଗଣ ତପୋଧନଗଣ
ଗନ୍ଧର୍ବ ପନ୍ନଗ ସିଦ୍ଧି କିନ୍ନର ଚାରଣ ।
ଏହା ଭିନ୍ନ ବଡ଼ବଡ଼ ନରପତି ଯେତେ
ଏହାଙ୍କୁ ସେ କନ୍ୟାରତ୍ନ ଦୁର୍ଲଭ ଯୁଗତେ ।
ତୁମ୍ଭପାଇଁ ହୋଇଅଛି ଏଥେ ଉପସ୍ଥିତ
ମନଦେଇ ଶୁଣ କହେ ତହିଁର ବୃତ୍ତାନ୍ତ ।
ସେହି ସ୍ତିରୀରତ୍ନ ପୁଣ୍ୟ ପୁଞ୍ଜରେ ନିର୍ମିତ
ଅଶୋକସୁନ୍ଦରୀ ନାମେ ସେ ନାରୀ ବିଖ୍ୟାତ ।
ତୁମ୍ଭର ନିମନ୍ତେ ସେହି ନାରୀ ତପସ୍ୱିନୀ
କଠୋର ତପେ କାଟଇ ଦିବସ ରଜନୀ ।
ଏହା ଜାଣି ତା କାମନା ପୂର୍ଣ୍ଣକର ତୁମ୍ଭେ
ତୁମ୍ଭ ଭିନ୍ନ ଆନକୁ ସେ ମନରେ ନ ଭାବେ ।
ନହୁଷ ଏକଥା ଶୁଣି ବୋଇଲେ ରମ୍ଭାକୁ
ତୁମ୍ଭେ ଯେଉଁ କଥା ଆଜି କହିଲ ଆମ୍ଭଙ୍କୁ ।
ତାହା ସବୁ ଜାଣିଅଛି ପୂର୍ବରୁ ଗୋ ରମ୍ଭେ
ମହାତ୍ମା ବଶିଷ୍ଠ ସବୁ କହିଥିଲେ ପୂର୍ବେ ।
ତହିଁର କାରଣ ଭଦ୍ରେ କହୁଅଛି ଶୁଣ
ହୁଣ୍ଡ ଦାନବକୁ ବଧ ନକଲେଗୋ ଜାଣ ।
ବାରାଙ୍ଗନା ଅଙ୍ଗ ସଙ୍ଗ ନ କରିବି ମୁହିଁ
ତୁମ୍ଭେ ତାକୁ କହିବ ମୁଁ ସକଳ ଜାଣଇ ।
ମୋ ନିମନ୍ତେ ଜନ୍ମ ତାର ତପସ୍ୟାହିଁ ତାର
ବିଧି ନିର୍ବନ୍ଧ ଭାରିଯା ଅଟେ ସେ ମୋହର ।
ମୋ ପାଇଁ ନିୟମ ନିଷ୍ଠା ବ୍ରତ ଆଦି କରେ
ପାପାତ୍ମା ଦାନବ ହରି ଆଣିଅଛି ଘରେ ।
ନହୁଷ ଏକଥା କହି ଦେଲାକ ମେଲାଣି
ଆନନ୍ଦେ ଅଇଲା ତହୁଁ ରମ୍ଭା ସୁଲକ୍ଷଣୀ ।
ଶିବସୁତା ଆଗେ ସବୁ ସଂକ୍ଷେପି କହିଲା
ଶୁଣି ଆନନ୍ଦ ସମୁଦ୍ରେ ସୁନ୍ଦରୀ ମଜ୍ଜିଲା ।
ରମ୍ଭାକୁ ଚାହିଁ ବୋଇଲା ଚାଲ ଗୋ ଦେଖିବା
ସ୍ୱାମୀ କେଡ଼େ ବଳବନ୍ତ ବାରେ ପରଖିବା ।
ପ୍ରତାପୀ ଦାନବବଧ କରିବେ କେମନ୍ତେ
ହରିନାମ ଭଜୁଥାଇ ଗୋପୀନାଥ ନିତ୍ୟେ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ରମ୍ଭାସହିତ ଅଶୋକ ସୁନ୍ଦରୀର
ନହୁଷ ବିଷୟେ କଥନେ ନହୁଷାଖ୍ୟାନେ
ତ୍ରୟୋଦଶାଧିକଶତତମୋଽଧ୍ୟାୟଃ ।



## ଚତୁର୍ଦ୍ଦଶାଧିକଶତ ଅଧ୍ୟାୟ

### ନହୁଷ ସଙ୍ଗେ ହୁଣ୍ଡ ଦୈତ୍ୟର ଯୁଦ୍ଧ

କୁଞ୍ଜଳ କହିଲା ପୁଣି ଏଥୁ ଅନନ୍ତରେ
ହୁଣ୍ଡ ଚାରଗଣ ସବୁ ଶୁଣି ଗୁପତରେ ।
ରମ୍ଭା ନହୁଷ ସମ୍ବାଦ ଶୁଣିଥିଲେ ଯାହା
ଦୈତ୍ୟ ରାଜ ହୁଣ୍ଡଆଗେ କହିଲେକତାହା ।
ହୁଣ୍ଡ ତାହାଶୁଣି କ୍ରୋଧେ ବୋଇଲା ଦୂତକୁ
ମୋ ଆଜ୍ଞାରେ ଯାଅ ସେହି ପୁରୁଷ ପାଖକୁ ।
ନିର୍ଭୟେ ପଚାରି ଆସ କହିଲି ରେ ବୀର
ସେ ପୁରୁଷ କିଏ କିପାଁ କହିଲା ସେ କଥା ।
ଶିବ ନନ୍ଦିନୀକି କିପାଁ କହିଲା ସେ କଥା
ଏହିକ୍ଷଣି କଟାଯିବ ଗଳାରୁ ତା ମଥା ।
ନ ଜାଣେ କି ହୁଣ୍ଡ ଯମ ଉପରେ ଯେ ଯମ
ଜାଣିଲି ମରିବ ନିଶ୍ଚେ ସେ ପୁରୁଷାଧମ ।
ପ୍ରଭୁ ଆଜ୍ଞା ଶିରେ ଘେନି ବେଗେ ଗଲା ଦୂତ
ନିର୍ଜନବନେ ଦେଖିଲା ନହୁଷର ରଥ ।
ରତ୍ନ ଖଞ୍ଜା ହେବାରୁ ସେ ଦିଶେ ଦାଉଦାଉ
ବିଚାରିଲେ ଦେବରଥ ପାଇଲା ଏ କାହୁଁ ।

ଉଚ୍ଚୈଶ୍ରବା ଅଶ୍ୱେ ଯୋଗ ଅତି ସୁଲକ୍ଷଣ
ମାତଳି ସାରଥି ପଣେ ଅତି ବିଚକ୍ଷଣ ।
ବିଚାରଇ ଅଟଇ ଏ ଇନ୍ଦ୍ରର ସାରଥି
ଏ କିପାଇଁ ଆସି ପୁଣି ରହିଅଛି ଏଥି ।
ଦେବଧନୁ ଦେବଶର ବିରାଜଇ ରଥେ
ପୁରୁଷବରଙ୍କୁ ପୁଣିଦେଖି ବେନି ନେତ୍ରେ ।
ବିଚାରଇ ଇନ୍ଦ୍ର କି ବା ଉପେନ୍ଦ୍ର ଏ ହେବ
ସୁନ୍ଦରପଣେ ନିନ୍ଦଇ କୋଟି କାମଦେବ ।
ବୟସ ଅତି ଅଳପ ତେଜ ଭୟଙ୍କର
ନିର୍ଭୟେ ପାଖକୁ ଯାଇଁ ପଚାରେ କିଙ୍କର ।
କିଏ ତୁମ୍ଭେ କି ନିମନ୍ତେ ଆସିଛ ଏଠାକୁ
ସଙ୍ଗେ ଘେନି ରଥ ଅଶ୍ୱ ପୁଣି ସାରଥିକୁ ।
ଦିବ୍ୟ ଧନୁ ଦିବ୍ୟଶର ଅଛଇ ବହୁତ
ଦେବ ଆୟୁଧରେ ଶୋଭାପାଏ ତୁମ୍ଭ ରଥ ।
ଲୋକ ଭୟଙ୍କର ଭୀମ ମୂରତି ତୁମ୍ଭର
କେ ତୁମ୍ଭଙ୍କୁ ପଠାଇଛି କହ ଆହେ ବୀର ।
କେତେ କାର୍ଯ୍ୟେ ଆସିଅଛ କହ ତା ଫିଟାଇ
ରମ୍ଭା ସଙ୍ଗେ କଥା ବାର୍ତ୍ତା ହୋଇଲ କିପାଇଁ ।
ଶିବ ଦୁହିତା ସହିତେ କି କଥା ତୁମ୍ଭର
ମୋ ଆଗେ ଏସବୁ କଥା କହକିନା ବୀର ।
ଦେବ ଦାନବେ ମର୍ଦ୍ଦନ ହୁଣ୍ଡ ଦୈତ୍ୟରାୟ
ବିପ୍ରଚିତ୍ତି ଦାନବର ଅଟଇ ତନୟ ।
ଯାର ନାମେ ତ୍ରିଭୁବନ ଚମକି ପଡ଼ଇ
ତାହାକୁ କି ତୋର ତିଳେମାତ୍ର ଭୟନାହିଁ ।
ଯେବେ ବଞ୍ଚିବାକୁ ଚାହୁଁ ରେ ପୁରୁଷାଧମ
କହିଲେ ମୋ ଆଗେ ପାଇପାରୁ ପରିତ୍ରାଣ ।
କାଳର ଉପରେ କାଳ ସେ ଦାନବ ରାୟ
ଦିଗପାଳଙ୍କର ମନେ ଜାତ କରେ ଭୟ ।
କହେ ବେଗେ ଏଥୁ ପଳା ବିଳମ୍ବ ନ କରି
ଦୁର୍ଦ୍ଧର୍ଷ ଦାନବରାଜ ହୁଣ୍ଡର ଏ ପୁରୀ ।
ଦୂତର ମୁଖୁଁ ଏମନ୍ତ ଶୁଣି ସେ ନହୁଷ
ନିର୍ଭୟେ କହିଲେ ଶୁଣ ଶୁଣରେ ରାକ୍ଷସ ।
ବଳବନ୍ତ ଆୟୁନାମେ ବିଖ୍ୟାତ ରାଜନ
ସପ୍ତଦ୍ୱୀପା ମହୀକି ଯେ କରଇ ପାଳନ ।
ମୁଁ ତାର ନନ୍ଦନ ମୋର ନାମ ଯେ ନହୁଷ
କରିବି ଦାନବକୁଳ ସମୂଳେ ବିନାଶ ।

ଦେବ ଦ୍ୱିଜମାନବଙ୍କ ମଧ୍ୟେ ପୂଜାପାଇ
ରଥ ଘେନି ଆସିଅଛି ସଂହାରିବା ପାଇଁ ।
ରେ ଅସୁର ତୋର ପ୍ରଭୁ ହୁଣ୍ଡ ଦୁରାଚାର
ଜନ୍ମକାଳେ ମୋତେ ଚୋରି କରିଥିଲା ଚୋର ।
ଏ ଶିବସୁତାକୁ ଚୋରି କରିଅଛି ପୁଣି
ହୁଣ୍ଡବଧ ପାଇଁ ତପ କରେ ଏ ତରୁଣୀ ।
ସୂତିକା ଗୃହରୁ ମୋତେ ମାୟାବଳେ ହରି
ରାନ୍ଧିବା ପାଇଁ ସେ ଦେଲା ଦାସୀକି ହକାରି ।
ଦାସୀ ସୂପକର ହସ୍ତେଦେଲା ନେଇ ମୋତେ
ସେହି ମୁହିଁ ଆସିଅଛି ମାରିବା ନିମନ୍ତେ ।
ଏ କଥା ଯାଇ ତୁ ହୁଣ୍ଡ ଦାନବକୁ କହ
ସବଂଶେ ଦେଖିବ ଆଜି ନିଶ୍ଚେ ଯମଗୃହ ।
ରଖି ନ ପାରିବେ ତାକୁ ତିନିପୁରେ କେହି
ପରିଚୟ ପାଇଲୁତ କହ ଯାରେ ତୁହି ।
ନହୁଷ ବଚନ ଶୁଣି ଫେରିଗଲା ଦୂତ
ବୁଝାଇ କହନ୍ତେ ସବୁ ଶୁଣି ହୁଣ୍ଡ ଦୈତ୍ୟ ।
କୋପେ ଦିଶିଲା ପ୍ରଚଣ୍ଡ ଅନଳ ପରାୟ
ବୋଇଲା ଜାଣିଲି ଦାସୀ ସୂପକାର ଦ୍ୱୟ ।
ଶତ୍ରୁକୁ ନ ମାରି ରୋଗ ବଢ଼ାଇଲେ ମୋର
ଯାହା ହେଉ ଆଗ ତାକୁ କରିବି ସଂହାର ।
ପଶ୍ଚାତେ ମୁଁ ଶିବସୁତ ପ୍ରାଣ ସଂହାରିବି
ତହୁଁ ସ୍ୱର୍ଗେ ପଶି ଦେବଗଣଙ୍କୁ ମାରିବି ।
ତଦନ୍ତେ ଘେନିବି ଦାସୀ ସୂପକାର ପ୍ରାଣ
ଏମନ୍ତ ମନରେ ଭାଳି ହୁଣ୍ଡ ଦୈତ୍ୟରାଣ ।
ସାରଥିକି ବୋଇଲା ମୋ ରଥ ଆଣ ସାଜି
ଯୋଚିବୁ ତୁ ବାଛି ବାଛି ଭଲ ଭଲ ବାଜି ।
ସେନାପତିକି ବୋଇଲା ସୈନ୍ୟ ସଜକର
ଶୂର ହସ୍ତୀଙ୍କି ସାଜନ୍ତୁ ମାହୁନ୍ତେ ଆବର ।
ଛତ୍ର ଚାମର ସହିତ ଅଶ୍ୱ ସାଜିଆଣ
ଆସନ୍ତୁ ଯୋଦ୍ଧା ପାଇକେ ମହାବୀରଗଣ ।
ଆଜ୍ଞା ପାଇ ସେନାପତି ସାଜିଲା ତେମନ୍ତ
ସାରଥି ଜାଣି ଆଗରେ ରଖିଲା ତା ରଥ ।
ଚତୁରଙ୍ଗ ବଳ ଘେନି ହୁଣ୍ଡ ପାପାଚାରୀ
ଯୁଦ୍ଧକୁ ବାହାରେ ହୋଇ ଚାପବାଣଧାରୀ ।
ଧନୁ ଧରି ଇନ୍ଦ୍ର ରଥେ ବସିଲା ନହୁଷ
ଦିଶିଲା ସେ ତେତେବେଳେ ଆଦିତ୍ୟସଦୃଶ ।

ଶସ୍ତ୍ରଧାରୀ ଶ୍ରେଷ୍ଠ ଦେବ ଦାନବେ ଅଧୃଷ୍ୟ
ଦେଖି ତାକୁ ଦେବଗଣ ହୋଇଲେ ହରଷ ।
ସୁତମୁନି କହନ୍ତି ଯେ ଏଥୁ ଅନନ୍ତରେ
ଚାରିପାଖ ଘେରି ବାଣ ମାଇଲେ ଅସୁରେ ।
ଖଡ଼ଗ ଶକତି ପାଶ ପରଶ୍ୱଧ ଶୂଳ
ମାରି ଯୁଝନ୍ତି ନହୁଷ ସଙ୍ଗେ ଦୈତ୍ୟବଳ ।
ଗିରିସ୍ଥିତ ମେଘ ପ୍ରାୟ ଦୈତ୍ୟେ ଗରଜନ୍ତି
ପ୍ରତାପୀ ଆୟୁ ନନ୍ଦନ ନ କରିଣ ଭୀତି ।
ଇନ୍ଦ୍ରଧନୁ ତୁଲ୍ୟ ଧନୁ ଧରିଣ ଟଙ୍କାରି
ଦାନବଗଣଙ୍କ ମନେ ଭୟ ଜାତ କରି ।
ବଜ୍ର ଫୁଟିଲା ପରାୟ ଶବଦେକ ହେଲା
ସେ ମହା ଶବଦ ଦାନବଙ୍କୁ ମୋହ କଲା ।
ବଳ ଭାଙ୍ଗିଗଲାଦୈତ୍ୟେ ହୋଇଲେ ଚକିତ
ଗୋପୀନାଥ ବୋଲେନିତ୍ୟେ ଅଚ୍ୟୁତ ଅଚ୍ୟୁତ

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ
ବେନୋପାଖ୍ୟାନେ ନହୁଷ ସଙ୍ଗେ
ହୁଣ୍ଡୁଦୈତ୍ୟର ଯୁଦ୍ଧ ଚରିତେ
ଚତୁର୍ଦ୍ଦଶାଧିକ
ଶତତମୋଽଧ୍ୟାୟଃ ।



## ପଞ୍ଚଦଶାଧିକଶତ ଅଧ୍ୟାୟ

### ହୁଣ୍ଡୁଦୈତ୍ୟ ବଧ

କୁଞ୍ଜଳ ପକ୍ଷୀ କହିଲା ଏଥୁ ଅନନ୍ତରେ
ମହାତ୍ମା ନହୁଷ ଧନୁଶର ଧରି କରେ ।
ସଂଗ୍ରାମରେ ବିରାଜିଲା ଦେବେନ୍ଦ୍ର ପରାୟ
ଦେଖି ମନେ ବିଚାରିଲେ ଦେବତା ନିଚୟ ।
କାଳ ଯେମନ୍ତେ କ୍ରୋଧରେ ଲୋକ ସଂହରଇ
ଏ କି ତେହ୍ନେ ଦାନବଙ୍କୁ ସଂହାରିବା ପାଇଁ ।
ଅସ୍ତ୍ର ଧରି ବାହାରିଲା ଏ ନୃପନନ୍ଦନ
କ୍ରୋଧଭରେ ସେ ନହୁଷ ଧରି ଶରାସନ ।
ବାଛି ବାଛି ଶରମାରି ସଂହାର ଅସୁର
ସୂର୍ଯ୍ୟ ତେଜ ପ୍ରାୟ ତେଜୋବନ୍ତ ସେହିଶର ।
ବଳେ ବୃକ୍ଷ ଉପାଡ଼ଇ ପବନ ଯେସନ
ତେସନ ନହୁଷ କଲା ଅସୁର ନିଧନ ।

ବାୟୁ ଯେହ୍ନେ ମେଘବ୍ୟୁହ ଛିନ୍ନ ଭିନ୍ନ କରେ
ମଦୋତ୍କଟ ଦାନବଙ୍କୁ ତେସନ ସମରେ ।
ସୁତୀକ୍ଷ୍ଣ ଶର ନିକରେ ପକାଇ ବିଦାରି
ନହୁଷର ଶରବୃଷ୍ଟି ମେଘବୃଷ୍ଟି ପରି ।
ସହି ନପାରି ଦାନବେ ମଲେ ପଡ଼ି ରଣେ
କେହି ବା ଆଘାତ ପାଇ ପଳାଇଲେ ବଣେ ।
କେହି ଡରେ ପଳାଇଲେ ସଂଗ୍ରାମରେ ଜିଣ
ସୂତମୁନି କହିଲେ ହେ ମୁନିଜନେ ଶୁଣ ।
ସୈନ୍ୟ ମରିବାର ଦେଖି ସେ ହୁଣ୍ଡୁ ଅସୁର
ନହୁଷର ତେଜ ଦେଖି କ୍ରୋଧରେ ଅଧୀର ।
ରହ ରହ କହି ତାର ଛାମୁରେ ମିଳିଲା
ଆୟୁ ନନ୍ଦନକୁ ଚାହିଁ ଏମନ୍ତ ବୋଇଲା ।
ନିଶ୍ଚେ ଆଜି କାଟିବଇଁ ଏ ତୋହର ଶିର
ଦେଖ ସଂଗ୍ରାମେ ମିଳିଲା ଆସି ହୁଣ୍ଡୁବୀର ।
ପାପଚେତା ମାନବ ତୁ ମାରିବଇଁ ତୋତେ
ଏହା କହି ଧନୁଶର ଧଇଲା ତୁରିତେ ।
ଅଗ୍ନିଶିଖା ତୁଲ୍ୟ ବାଣ ଧରି ଶୋଭାପାଇ
ଛତ୍ର ତାହାର ମସ୍ତକ ଉପରେ ଉଡ଼ଇ ।
ଦେଖି ନହୁଷ ବୋଲଇ ମାତଳିକି ଚାହିଁ
ଅସୁର ଆଗକୁ ମୋର ରଥ ନିଅ ବାହି ।
ନହୁଷ ମୁଖୁ ଏମନ୍ତ ଶୁଣି ସେ ମାତଳି
ବାୟୁତୁଲ୍ୟ ବେଗଗାମି ଅଶ୍ୱଦେଲା ଚାଳି ।
ଆକାଶୁ ଖସି ପଡ଼ିବା ହଂସଶ୍ରେଣୀ ପ୍ରାୟ
ତେସନ ଶୂନ୍ୟ ଖସିଲେ ରଥ ଚାରି ହୟ ।
ଚନ୍ଦ୍ରବର୍ଣ୍ଣ ଛତ୍ର ଅଛି ସେ ରଥ ଉପରେ
ନାନା ବର୍ଣ୍ଣର ପତାକା ଉଡ଼େ ସେ ରଥରେ ।
ରଥେ ଥାଇ ଆୟୁପୁତ୍ର ତେଜ ବିକ୍ରମରେ
ସୂର୍ଯ୍ୟ ପ୍ରାୟ ବିରାଜିଲା ସଂଗ୍ରାମ ଭୂମିରେ ।
ହୁଣ୍ଡୁ ଦୈତ୍ୟ ନିଜ ତେଜେ ବିରାଜିଲା ରଥେ
ସକଳ ଆୟୁଧ ଧରି ଆସେ ବୀର ବ୍ରତେ ।
ଦାରୁଣ ରଣ ହୋଇଲା ଦୁଇ ବୀରଙ୍କର
ଦେଖି ବିସ୍ମୟ ହୋଇଲେ ଅମର ନିକର ।
ବେଳୁଁ ବେଳ ହେଲା ମହା ଭୟଙ୍କର ରଣ
ହୁଣ୍ଡୁ ଦାନବ ବିନ୍ଧଇ ଶାଣଦିଆ ବାଣ ।
ଗଳା ମୁଖେ କଙ୍କପତ୍ର ବାଣେ ଶୋଭାପାନ୍ତି
ନହୁଷ ବାହୁଯୁଗଳେ ଆସି ସେ ପଡ଼ନ୍ତି ।

ନହୁଷର ଲଲାଟକୁ ବିନ୍ଧେ ପାଞ୍ଚବାଣ
ରାଜା କରି ନ ପାରିଲା ବାଣ ନିବାରଣ ।
ଭକଭକ ହୋଇ ତହୁଁ ରୁଧିର ବହଇ
ଉଦେ ସୂର୍ଯ୍ୟପ୍ରାୟ ରାଜାଶୋଭା ବିକାଶଇ ।
ଦାନବ ପୁରୁଷ ପଣ ଦେଖି ସେ ନହୁଷ
ବୋଇଲେ ତୁ କିଛିକାଳ ରହରେ ରାକ୍ଷସ ।
ନହୁଷ ଏ କଥା କହି କ୍ରୋଧରେ ଅଧୀର
ଦଶବାଣ କଲେ ଦୈତ୍ୟ ମୁଖରେ ପ୍ରହାର ।
ଆବର ଲଲାଟ ହସ୍ତେ ପଡ଼ିଲା ସେ ବାଣ
ମୁର୍ଚ୍ଛାଯାଇ ପଡ଼ିଲା ସେ ରଥେ ଦୈତ୍ୟରାଣ ।
ହରଷେ ଦେବ ଚାରଣ ସିଦ୍ଧଗଣ ଯେତେ
ନହୁଷର ଜୟ ଜୟ ବୋଇଲେ ସମସ୍ତେ ।
ବାରମ୍ବାର ଜୟ ଶଙ୍ଖ ବଜାଇଲେ ପୁଣି
ହୁଣ୍ଡୁର କର୍ଣ୍ଣେ ପଶିଲା ସେହି ଜୟଧ୍ୱନି ।
ତକ୍ଷଣେ ଦାନବଉଠି ଧନୁଏ ଧଇଲା
ଆଶୀବିଷ ତୁଲ୍ୟ ଶର ଯୋଖିଣ ବୋଇଲା ।
ରହ ରହ ସଂଗ୍ରାମରେ ମୁହିଁ ମରିନାହିଁ
ମୂର୍ଚ୍ଛାଯାଇ ପଡ଼ିଥିଲି ବାଣାଘାତ ପାଇ ।
ଏହା କହି ବିନ୍ଧିଦେଲା ଏକୋଇଶ ବାଣ
ସେ ସକଳ ବାଣେ ଗଲେ ଗର୍ଜନ କରିଣ ।
ଏକବାଣ ଗଳିଗଲା ନହୁଷ ମୁଷ୍ଟିରେ
ଚାରିବାଣ ଗଳିଗଲା ଆବର ବାହୁରେ ।
ଚାରିବାପ ଚାରି ଅଶ୍ୱପୃଷ୍ଟେ ଗଲା ଗଳି
ପାଞ୍ଚବାଣେ ଇତସ୍ତତ ହୋଇଲା ମାତଳି ।
ରଥ ଛତ୍ରରେ ପଡ଼ିଲା ଯାଇଁ ଏକବାଣ
ରଥଚକେସାତଗୋଟା ବାଣ ପଡ଼େ ପୁଣ ।
ଧ୍ୱଜରେ ପଡ଼ିଲା ତିନି ଧ୍ୱଜଦଣ୍ଡେ ତିନି
ଦୈତ୍ୟର ବାଣେ ବିଦୀର୍ଣ୍ଣହେଲେ ସର୍ବେପୁଣି ।
ସେହି ଦୈତ୍ୟ ଦୁରାତ୍ମାରଆଦାନ ନିଦାନ
ଲକ୍ଷ୍ୟମୋକ୍ଷ ଦେବଗଣେ କରି ଦରଶନ ।
ମୁଖ ଶୁଖିଗଲା ସର୍ବେ ହୋଇଲେ ବିସ୍ମୟ
ତା ପୁରୁଷପଣ ଦେଖି ଆୟୁର ତନୟ ।
ବୋଇଲେ ଜାଣିଲି ତୁହି ଅଟୁ ମହାଶୂର
ରଣ ପଣ୍ଡିତ ତୁ କୃତବିଦ୍ୟ ପୁଣି ବୀର ।
ଏହା କହି ଧନୁଧରି ଗୁଣକୁ ଓଟାରି
ତାହାର ଧ୍ୱଜ ଛେଦିଲେ ତିନିବାଣ ମାରି ।

ରଥଧ୍ୱଜ ଛିଡ଼ି ତାର ଭୂମିରେ ପଡ଼ିଲା
ଚାରିବାଣେ ଦାନବର ଚାରି ଅଶ୍ୱ ମଲା ।
ଏକବାଣେ ଛତ୍ରକାଟି କଲେ ଖଣ୍ଡ ଖଣ୍ଡ
ଦଶବାରେ କାଟିଲେ ତା ସାରଥିର ମୁଣ୍ଡ ।
ଦଶବାଣେ ଦାନବର କବଚ କାଟିଲେ
ସର୍ବାଙ୍ଗ ତାର ତିରିଶି ବାଣରେ ଫୋଡ଼ିଲେ ।
ହତାଶ୍ୱ ହତସାରଥି ହୋଇ ସେ ଅସୁର
ଶର ବରଣ କଲା ସେ ଧରି ଧନୁଶର ।
ନହୁଷ ସେ ଧନୁକାଟି କଲେ ଖଣ୍ଡ ଖଣ୍ଡ
ପ୍ରତାପୀ ଦାନବ ଦେଖି କ୍ରୋଧରେ ପ୍ରଚଣ୍ଡ ।
ଖଡ୍‌ଗ ଚର୍ମ ଧରି ଧାଇ ଅଇଲା ଅସୁର
ତୀକ୍ଷ୍ଣ ଶରେ କଟିଲେ ତା ଆୟୁର କୁମର ।
ଚର୍ମକୁ କାଟିଲେ ତାର କ୍ଷର୍ପଶର ମାରି
ଦୁଷ୍ଟ ଆତ୍ମା ହୁଣ୍ଡୁ ତହୁଁ ମହାକୋପ କରି ।
ଚାରି ଆଡ଼କୁ ଅନାଇ ଧଇଲା ମୁଦ୍‌ଗର
ନହୁଷ ଚାହିଁଲେ ବେଗେ ଆସଇ ଅସୁର ।
ସୁତୀକ୍ଷ୍ଣ କ୍ଷୁର ପ୍ରବାଣ ମାରି ରାଜା ସୁତ
ଶୂନମାର୍ଗେ ମୁଦ୍‌ଗରକୁ କାଟିଲେ ତ୍ୱରିତ ।
ଦଶଖଣ୍ଡ ହୋଇ ଖସି ଭୂମିରେ ପଡ଼ିଲା
ତା ଦେଖି କୋପେ ଦାନବ ଗଦାଏ ଧଇଲା ।
ବୁଲାଇ ଆସନ୍ତେ ବେଗେ ଦେଖି ରାଜା ବଳା
ହସ୍ତରେ ଧଇଲେ ତୀକ୍ଷଣ ଧାର ଖଡ୍‌ଗଫଳ ।
ଗଦା ସହିତ ଅସୁର ବାହୁକୁ କାଟିଲେ
ବଜ୍ର ଫୁଟିଲେ ଯେସନ ଘୋର ଶବ୍ଦକରେ ।
ତେସନ ଶବ୍ଦ କରି ସେ ଭୂମିରେ ପଡ଼ିଲା
ଆଁ କରି ଗିଳିବାକୁ ଅସୁର ଧାଇଁଲା ।
ତା ଦେଖି ନହୁଶ ବେଗେ ଶକତିଏ ଧରି
ଫୋଡ଼ିଦେଲେ ଦାନବର ଛାତିକି ଯେମାରି ।
ବଜ୍ରାହତ ଗିରିପ୍ରାୟ ପଡ଼ିଲା ଭୂତଳେ
ଅସୁରେ ପଳାଇ ଗଡ଼ି ଭିତରେ ଲୁଚିଲେ ।
ପାତାଳ ପୁରକୁ କେହି ଭୟରେ ପଳାଇ
ତା ଦେଖି ଆନନ୍ଦ ହେଲେ ସ୍ୱର୍ଗେ ଶଚୀସାଇଁ ।
ଦେବତା ଗନ୍ଧର୍ବ ଯକ୍ଷ କିନ୍ନର ଚାରଣ
ଆନନ୍ଦ ହେଲେ ଦେଖି ସେ ଅସୁର ମରଣ ।
ନହୁଷ ଆନନ୍ଦ ଶିବନନ୍ଦିନୀକି ପାଇ
ଦ୍ୱିଜ ଗୋପୀନାଥ ଭଜେ କମଳାର ସାଇଁ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ହୁଣ୍ଡ ଦୈତ୍ୟ ବଧ
ଚରିତେ ପଞ୍ଚଦଶା-
ଧିକଶତତମୋଽଧ୍ୟାୟଃ ।



## ଷୋଡ଼ଶାଧିକଶତ ଅଧ୍ୟାୟ

## ଅଶୋକସୁନ୍ଦରୀ ସହିତ ନହୁଷର ବଶିଷ୍ଠାଶ୍ରମେ ପ୍ରବେଶ

କୁଞ୍ଜଳ କହିଲା ଦେଖି ଅଶୋକ ସୁନ୍ଦରୀ
ଆନନ୍ଦେ ସଙ୍ଗତେ ଘେନି ରମ୍ଭା ସହଚରୀ ।
ବିଜୟୀ ନହୁଷ ପାଶେ ପ୍ରବେଶି ବୋଇଲା
ଏତେଦିନେ ଶମ୍ଭୁଙ୍କର ବଚନ ଫଳିଲା ।
ମୁହିଁ ତୁମ୍ଭ ଧର୍ମପତ୍ନୀ ଅଟେ ତପସ୍ୱିନୀ
ବିଧାତା ଭିଆଣ କରି ରଖିଅଛି ପୁଣି ।
ଯେବେ କି ଧର୍ମରେ ଇଚ୍ଛାଥାଏ ଆହେ ବୀର
ତେବେ ମୋ ପାଣି ଗ୍ରହଣ କରନ୍ତୁ ସତ୍ୱର ।
ତୁମ୍ଭ କାମନାରେ ତପ କରଇ ନିରତେ
ସେ ଧର୍ମବଳେ ପାଇଲି ମୁଁ ତୁମ୍ଭଙ୍କୁ ଏଥେ ।
ନହୁଷ ବୋଇଲେ ଭଦ୍ରେ କହୁଛ ଯା ସତ
ଗୁରୁଙ୍କୁ ପଚାରି ପଛେ ଧରିବି ମୁଁ ହସ୍ତ ।
ମୁହୂର୍ତ୍ତ କାଳ ଅପେକ୍ଷା କର ଗୋ ଭାମିନୀ
ଏ ମୋର ରଥରେ ବସ୍ ଏ ରମ୍ଭାକୁ ଘେନି ।
ରାଜା ଆଜ୍ଞା ପାଇ ଦୁହେଁ ରଥରେ ବସିଲେ
ବଶିଷ୍ଠ ଆଶ୍ରମେ ଯାଇ ପ୍ରବେଶ ହୋଇଲେ ।
ଆଶ୍ରମବାସୀଙ୍କି ଦେଖି ରଥରୁ ଓହ୍ଲାଇ
ପ୍ରଣମିଲେ ଶିବସୁତା ଘେନି ନରସାଇଁ ।
ତହୁଁ ସେ ଗଲେ ସମସ୍ତେ ଆଶ୍ରମ ଭିତରେ
ପଡ଼ିଲେ ଯାଇ ବଶିଷ୍ଠ ମୁନିଙ୍କ ପୟରେ ।
କହିଲେ ସକଳ କଥା ଗୁରୁଙ୍କର ଆଗେ
ଆଲିଙ୍ଗନ କଲେ ମୁନି ତାଙ୍କୁ ବାହୁଯୁଗେ ।
ଶୁଭ ତିଥି ଶୁଭ ବେଳା ଶୁଭଲଗ୍ନ ଧରି
ଅଗ୍ନି ବିପ୍ର ସାକ୍ଷୀରଖି ବିଭାଘର କରି ।
ରାଜଦମ୍ପତୀଙ୍କି ମୁନି ବାଞ୍ଛିଲେ କଲ୍ୟାଣ
ମେଲାଣି ଦେଇ କହିଲେ ମୋର କଥାଶୁଣ ।
ବେଗେ ଯାଇଁ ପିତା ମାତା ଦରଶନ କର
ତୁମ୍ଭଙ୍କୁ ପାଇ ଆନନ୍ଦ ହୋଇବେ ଅପାର ।
ପର୍ବଦିନେ ସିନ୍ଧୁଜଳ ଉଚ୍ଛୁଳେ ଯେସନେ
ଆନନ୍ଦ ଜଳ ନୟନୁ ଉଚ୍ଛୁଳିବ ତେହ୍ନେ ।
ଗୁରୁ ଆଜ୍ଞା ଶିରେ ଘେନି ନହୁଷ ରାଜନ
ଅଶୋକସୁନ୍ଦରୀ କର ଦୁଇକି ଧରିଣ ।
ଦେବରଥେ ବସିଲେ ସେ ମାଗିଣ ମେଲାଣି
ମାତଳି ରଥ ବାହିଲା ବେଳ କାଳ ଜାଣି ।
ସୁତମୁନି କହିଲେ ଯେ ଏଥୁ ଅନନ୍ତରେ
ମେନକାକୁ ପଠାଇଲେ ବିଚାରି ଅମରେ ।
ବୁଡ଼ିଛି ଶୋକ ସାଗରେ ଆୟୁରାଜା ରାଣୀ
ତାଙ୍କ ଆଗେ କହିଆସୁ ଏହି ଶୁଭବାଣୀ ।
ଅପସରା ମେନକା ଯେ ଅଇଲା ତକ୍ଷଣେ
ଇନ୍ଦୁମତୀକି କହିଲା ଆଗୋ ସୁଲକ୍ଷଣେ ।
ଶୋକ ତେଜି ପୁତ୍ର ପୁତ୍ରବଧୂ ମୁଖ ଦେଖ
ତୋତେ ଯେ ଦାନବ ଦେଇଥିଲା ପୁତ୍ରସୁଖ ।
ସେ ପୁତ୍ରହାରୀ ପାପିଷ୍ଠ ଦାନବକୁ ମାରି
ଅଶୋକସୁନ୍ଦରୀ ଯେହୁ ଶିବର କୁମାରୀ ।
ତାକୁ ବିଭାହୋଇ ସଙ୍ଗେ ଘେନି ଦେବରଥେ
ଆସୁଅଛି ଏହିକ୍ଷଣି ପହଞ୍ଚିବ ଏଥେ ।
ଆଦ୍ୟପ୍ରାନ୍ତ କରି ସବୁ ମେନକା କହିଲା
ପୁତ୍ର ଗଲାକାଳୁ ଯାହା ଯାହା ଘଟିଥିଲା ।
ଇନ୍ଦୁମତୀ ଆନନ୍ଦରେ କହିଲା ଗୋ ସଖି
ସତେକି ପୁତ୍ରକୁ ମୋର ନୟନରେ ଦେଖି ।
ତୋହର ଏହି ବଚନ ସାକ୍ଷାତେ ଅମୃତ
ମନ ମଧ୍ୟରେ ଉତ୍ସାହ କରୁଅଛି ଜାତ ।
ଜୀବନ ଆଦି ସର୍ବସ୍ୱ ତୋତେ ଦେବା ବିଧି
ଏମନ୍ତେ ସେ ମେନକାକୁ ବଚନରେ ବୋଧି ।
ଜଣାଇଲେ ଯାଇ ରାଣୀ ରାଜାର ଛାମୁରେ
ମହାବାହୁ ତୁମ୍ଭପୁତ୍ର ପହୁଞ୍ଚିବ ଘରେ ।
ବରାଙ୍ଗନା ମେନକା ଯେ କହିଗଲା ମୋତେ
ଶିବର ନନ୍ଦିନୀ ଅଛି ପୁତ୍ରର ସହିତେ ।
ସ୍ୱାମୀଆଗେ ଏହାକହି ରହିଲା ମଉନେ
ରାଜଇନ୍ଦ୍ର ଆୟୁ ଶୁଣି କହିଲା ଏସନେ ।
ଆଗୋପ୍ରିୟେ ନାରଦ ଯେ କହିଥିଲେ ପୂର୍ବେ
ପୁତ୍ରର ନିମନ୍ତେ ଦୁଃଖ ନ କର ତୁ ଏବେ ।

ବଳବୀର୍ଯ୍ୟେ ଦାନବକୁ ମାରି ତୋ କୁମର
ବିଭା ହୋଇ ଘରକୁ ଯେ ଆସିବ ତୁମ୍ଭର ।
ମୁନି କଥା ମିଛ କାହୁଁ ହୋଇବ ଗୋ ସତୀ
ମୁନିବର ଦତ୍ତାତ୍ରେୟ ଦେବ ଶିରୀପତି ।
ତୁମ୍ଭେ ଆମ୍ଭେ ସେବିଥିଲେ ସେମୁନିକି ତପେ
ସେ ଆମ୍ଭଙ୍କୁ ଦେଇଥିଲେ ପୁତ୍ର ଯେଉଁରୂପେ ।
ବଇଷ୍ଣବ ଅଂଶଧାରୀ ଆମ୍ଭର କୁମର
ମାରିବ କାହୁଁ ସେ ଛାର ପାପୀ ଦୁରାଚାର ।
ମାରିବାକୁ ନେଇଥିଲା ତା ହସ୍ତେ ସେ ମଲା ।
ଦତ୍ତତ୍ରେୟ କହିଥିବା କଥା ଗୋ ଫଳିଲା ।
ପ୍ରଜାପାଳ ମହାବଳ ପୁତ୍ର ତୁ ପାଇବୁ
ସର୍ବଦୈତ୍ୟନାଶକାରୀ ହୋଇବ ସେ ବାବୁ ।
ବଇଷ୍ଣବ ଅଂଶେ ଜାତ ହେବ ସେ କୁମର
ଏମନ୍ତ ବିଚାରି ଦୁହେଁ ଉଠିଲେ ସତ୍ୱର ।
ପୁତ୍ର ଆସିବାର ଜାଣି କଲେ ମହୋତ୍ସବ
ଉଚ୍ଚରେ ବୋଇଲେ ହରି ଗୋବିନ୍ଦ ମାଧବ ।
ବାରମ୍ବାର କଲେ ଦୁହେଁ ଶ୍ରୀବିଷ୍ଣୁ ସ୍ମରଣ
ବିଷ୍ଣୁ ସୁରଧର୍ମ ଯୁକ୍ତ ବିଷ୍ଣୁ ନାରାୟଣ ।
ଆନନ୍ଦସ୍ୱରୂପ ବିଷ୍ଣୁ ଏକା ଦୁଇନାହିଁ
ପରମ ଅର୍ଥଦାୟକ ବିଷ୍ଣୁ ଭାବଗ୍ରାହୀ ।
କ୍ଲେଶ ଅପହାରୀ ବିଷ୍ଣୁ ଏକା ସୁଖଦାତା
ସାଧୁ ବଇଷ୍ଣବଙ୍କର ମୁକତି ପ୍ରଦାତା ।
ଦୀନ ଗୋପୀନାଥ ସଦା ଶ୍ରୀବିଷ୍ଣୁ ଶରଣ
ଘୋର ବିପଦ ସାଗରୁ ତରିବା କାରଣ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ଅଶୋକ ସୁନ୍ଦରୀ ଓ ନହୁଷର
ବଶିଷ୍ଠାଶ୍ରମେ ପ୍ରବେଶ
ଷୋଡ଼ଶାଧିକଶତତମୋଽଧ୍ୟାୟଃ ।



## ସପ୍ତଦଶାଧିକଶତ ଅଧ୍ୟାୟ

### ହସ୍ତିନାପୁରେ ନହୁଷର ରାଜ୍ୟାଭିଷେକ

କୁଣ୍ଡଳ କହିଲା ସେହି ନହୁଷ ରାଜନ
ଅଶୋକସୁନ୍ଦରୀ ରମ୍ଭା ଦୁହିଙ୍କି ଘେନିଣ ।
ଇନ୍ଦ୍ରଦତ୍ତ ଦିବ୍ୟରଥ ଆରୋହଣ କରି
ପ୍ରବେଶ ହୋଇଲେ ଆସି ହସ୍ତିନା ନଗରୀ ।
ଉତ୍ତମ ଗୃହେ ମଣ୍ଡିତ ସେ ହସ୍ତିନା ପୁର
ହେମ ତୋରଣ ପତାକା ରଞ୍ଜିତ ଆବର ।
ଗୀତ ବାଦ୍ୟ ନୃତ୍ୟ ବନ୍ଦୀଚାରଣେ ଶୋଭିତ
ଦେବତା ପ୍ରାୟେ ଦିଶନ୍ତି ପୁରୁଷ ସମସ୍ତ ।
ଦେବୀରୂପେ ବିରାଜନ୍ତି ନାରୀଗଣେ ତହିଁ
ଗଜ ରଥ ଅଶ୍ୱ କେତେ ତାର ସଂଖ୍ୟାନାହିଁ ।
ବେଦଧ୍ୱନି ବୀଣାଧ୍ୱନି ଶୁଭେ ଠାବେ ଠାବେ
ବନ ଉପବନ ବାମ୍ପୀ ପୋଖରୀ ଯେ ଶୋଭେ ।
ଏମନ୍ତ ପୁରେ ନହୁଷ ହୋଇଲା ପ୍ରବେଶ
ବେଦ ମନ୍ତ୍ର ପଢ଼ି ବିପ୍ରେ କଲେକ ଆଶିଷ ।
ପୁର ମଧ୍ୟେ ପଶି ପିତା ମାତାଙ୍କୁ ଦେଖିଲେ
ପିତା ମାତା ପାଦଧରି ଭୂମିରେ ଶୋଇଲେ ।
ଶାଶୁ ଶ୍ୱଶୁରଙ୍କ ପାଦେ ଅଶୋକ ସୁନ୍ଦରୀ
ବାର ବାର ଶତ ଶତ ଦଣ୍ଡବତ କରି ।
ରମ୍ଭା ରାଜଦମ୍ପତୀକି ପ୍ରଣମିଲେ ଯାଇ
ଅଶୋକ ସୁନ୍ଦରୀ ତାର ସଙ୍ଗତେ ଅଛଇ ।
ନହୁଷ ପିତା ପାଦରେ କରି ନମସ୍କାର
ମାତାର ଚରଣ ଦୁଇ ବନ୍ଦି ପୁନର୍ବାର ।
ନୀରୋଗରେ ଅଛଇତ ଏ ତୁମ୍ଭ ଶରୀର
ରୋମ ଟାଙ୍କୁରି ଉଠିଲା ରାଜା ରାଣୀଙ୍କର ।
ଆୟୁ ବୋଇଲେରେ ବାବୁତୋ ମୁଖଦର୍ଶନେ
ପଳାଇଲା ରୋଗ ଶୋକ ଛାଡ଼ିଣ ଏକ୍ଷଣେ ।
ପରମ ସନ୍ତୋଷ ଆଜି ସକଳ ଜଗତ
ତୋ ତୁଲ୍ୟ ତେଜସ୍ୱୀ ପୁତ୍ର ହେବାରୁ ସମ୍ଭୁତ ।
ମୋ ବଂଶ ଉଦ୍ଧାରି ମୁହିଁ ଉଦ୍ଧାରିଲି ଆପେ
ଇନ୍ଦୁମତୀ ରାଣୀ କହେ ପୁତ୍ରର ସମୀପେ ।
ଆରେ ବାବୁ ପୂର୍ବକାଳେ ଚନ୍ଦ୍ରର କିରଣେ
ମହୋଦଧି ଜଳ ବଢ଼ି ଉଛୁଳେ ଯେସନେ ।
ତେସନ ବାବୁ ତୋ ମୁଖ ଚନ୍ଦ୍ର କିରଣରେ
ମୋ ଆନନ୍ଦ ସିନ୍ଧୁ ବଢ଼ି ଉଛୁଳେ ଶରୀରେ ।
ଏରୂପେ ପୁତ୍ରକୁ ଇନ୍ଦୁମତୀ ରାଣୀ କହି
ଧେନୁ ଯେହ୍ନେ ବାଛୁରୀକି ଦେଖିଣ ସୁଙ୍ଘଇ ।
ତେସନ ପୁତ୍ରକୁ ବେଗେ କରି ଆଲିଙ୍ଗନ
ପୁଣି ତାର ମସ୍ତକକୁ କଲେକ ଆଘ୍ରାଣ ।
ବହୁତ କଲ୍ୟାଣ କଲେ ପୁତ୍ର ମୁଖ ଚାହିଁ
ଏଥୁଅନ୍ତେ ସୁତମୁନି ମୁନିଙ୍କି ଯେ କହି ।

ନହୁଷ ମାତାଙ୍କୁ କହି ଆପଣା ବୃତ୍ତାନ୍ତ
କହିଲେ ଶିବସୁତାର ଜନମ ଯେମନ୍ତ ।
ବଶିଷ୍ଠ ପାଳିବା କଥା ରାକ୍ଷସ ମରିବା
ଯେମନ୍ତ ହେଲା ଅଶୋକ ସୁନ୍ଦରୀର ବିଭା ।
ସଂକ୍ଷେପି ସବୁ କହିଲେ ମାତା ପିତା ଆଗେ
ଆନନ୍ଦ ହେଲେ ତା ଶୁଣି ପୁତ୍ର ଅନୁରାଗେ ।
ତହୁଁ ସେ ନହୁଷବୀର ଧରି ଧନୁଶର
ଇନ୍ଦ୍ରଦତ୍ତ ରଥଚଢ଼ି ହୋଇଲେ ବାହାର ।
ସପତଦ୍ୱୀପା ମହୀକି ଜୟକରି ଧନ
ପିତାପାଦେ ସମର୍ପିଲା ରାଜାକଲେ ଦାନ ।
ନିତି ପୁଣ୍ୟ କର୍ମକରି ପିତା ମନତୋଷେ
ଆୟୁ ରାଜସୁୟ ଯଜ୍ଞ କଲେକ ହରଷେ ।
ପୁତ୍ର ସାହାପାଇ ଆୟୁକଲେ ମହାଯଜ୍ଞ
ଦେବଗଣଙ୍କୁ ତୋଷିଲେ ଦେଇ ହବିର୍ଭାଗ ।
ନିୟମ ସଂଯମଦାନ ବ୍ରତ ଯଶ ପୁଣ୍ୟ
କରି କୃତ୍ୟ କୃତ୍ୟ ହେଲେ ସେ ଆୟୁରାଜନ ।
ହସ୍ତିନାପୁରକୁ ଦେବଗଣ ଆସିକରି
ନହୁଷଙ୍କ ଅଭିଷେକ କଲେ ଦିନଧରି ।
ସିଦ୍ଧଗଣ ମୁନିଗଣ ନୃପତି ସହିତେ
ରାଜ୍ୟଭାର ନହୁଷଙ୍କୁ ଦେଇଣ ନିଶ୍ଚିନ୍ତେ ।
ସସ୍ତ୍ରୀକରେ ଅଭିଷିକ୍ତ ହେଲେ ସେ ନହୁଷ
ସଶରୀରେ ଆୟୁରାଜା କଲେ ସ୍ୱର୍ଗବାସ ।
ଇନ୍ଦ୍ରପଦ ଭୋଗକରି ବ୍ରହ୍ମପୁରେ ଯାଇ
ସେ ପୁରେ ମୁନିଜନଙ୍କଠାରୁ ପୂଜାପାଇ ।
ତହୁଁ ପୁଣି ଶିବ ପୁରେ ପାଇଣ ଆଦର
ଶ୍ରୀବିଷ୍ଣୁ ପୁରେ ରହିଲେ ଆୟୁ ନୃପବର ।
ଯେମନ୍ତେ ପିତାମାତାର ଉଦ୍ଧାର କରତା
ଧର୍ମାତ୍ମା ଜ୍ଞାନୀ ପଣ୍ଡିତ କୁଳ ଉଦ୍ଧାରନ୍ତା ।
ନହୁଷ ଜନମିଥିଲେ ଏ ମହୀମଣ୍ଡଳେ
ସେହିରୂପେ ପୁଣ୍ୟକାରୀ ପୁରୁଷ ସକଳେ ।
ପୁଣ୍ୟକରି ସାଧୁପୁତ୍ର କରିବେକ ଜାତ
କିହେବ ଅସାଧୁପୁତ୍ର ଜନମି ବହୁତ ।
କହିଲି ନହୁଷ କଥା ପୁତ୍ର କପିଞ୍ଜଳ
ଆଉ କି କହିବି କହ କହିଲା କୁଞ୍ଜଳ ।
ଯେ ଶୁଣଇ ଆୟୁପୁତ୍ର ନହୁଷ ଚରିତ
ଭୋଗ ଉପଭୋଗ ସେହି କରଇ ବହୁତ ।
ଅନ୍ତକାଳେ ସେହିଜନ ବିଷ୍ଣୁପଦ ପାଇ
ଅଚ୍ୟୁତପାଦୁକା ନିତ୍ୟ ଗୋପୀନାଥ ଧାଇ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ଗୁରୁତୀର୍ଥ ମହାତ୍ମ୍ୟେ ଚ୍ୟବନ-
ଚରିତେ ନହୁଷ ରାଜ୍ୟାଭିଷେକେ
ସପ୍ତଦଶାଧିକଶତତମୋଽଧ୍ୟାୟଃ ।



## ଅଷ୍ଟାଦଶାଧିକଶତ ଅଧ୍ୟାୟ

## ହୁଣ୍ଡୁପୁତ୍ର ବିହୁଣ୍ଡ ଚରିତ

କପିଞ୍ଜଳ କହେ ସବୁ ଶୁଣିଲି ଭୋ ତାତ
ଗଙ୍ଗାତୀରେ ଯେ ରମଣୀକରେ ଅଶ୍ରୁପାତ ।
ତା ଲୋତକ ବିନ୍ଦୁ ଯାଇ ଜଳରେ ପଡ଼ଇ
ସୁଗନ୍ଧ ଦିବ୍ୟକମଳ ତହୁଁ ଉପୁଜଇ ।
ଅସ୍ଥିଚର୍ମ ଶେଷ ଏକ ଜଟା ଚୀରଧାରୀ
ସେ ପଦ୍ମକୁ ତୋଳି ନିତ୍ୟ ଶିବ ପୂଜାକରି ।
ସେ କଥାଗୋଟାତ ତାତ ନ କହିଲ ମୋତେ
କିଏ ସେହି ନାରୀ କିମ୍ପା କାନ୍ଦଇ ନିରତେ ।
କିମ୍ପାଇଁ ସେ ଲୋତକରୁ ପଦ୍ମହୁଏ ଜାତ
ଶିବଙ୍କୁ ସେ ପୂଜା କରେ ସେ ପଦ୍ମରେ ନିତ୍ୟ ।
ସେ ପୁରୁଷ କିଏକିମ୍ପା ଚିର ଜଟାଧାରୀ
କହିବାହେଉ ଭୋ ତାତ ଏସବୁ ବିସ୍ତାରି ।
ଏ ଅଦ୍ଭୁତ କଥାଯାକ ନ କହୁଛ ମୋତେ
ଯେବେ ମୁହିଁ ପ୍ରିୟ ପୁତ୍ର ଅଟଇ ଯୁକତେ ।
କୃପାକରି ଏ ସନ୍ଦେହ ଫିଟାଇବ ମୋର
କୁଞ୍ଜଳପକ୍ଷୀ ବୋଇଲା ଶୁଣରେ କୁମର ।
ଦଇବକୃତ ବୃତ୍ତାନ୍ତ ସର୍ବ ପାପହାରୀ
ଶ୍ରୀବିଷ୍ଣୁ ଚରିତ ତୋତେ କହିବା ବିସ୍ତାରି ।
ହୁଣ୍ଡୁନାମେ ଯେଉଁ ମହାବୀର୍ଯ୍ୟ ଦୈତ୍ୟଥିଲା
ନହୁଷ ରାଜା ତାହାକୁ ସଂଗ୍ରାମେ ମାଇଲା ।
ତାହାର ପୁତ୍ରର ନାମ ବିହୁଣ୍ଡ ଅଟଇ
ସେ ବିହୁଣ୍ଡ ତପ କରୁଥିଲା ବନେ ରହି ।
ଅମାତ୍ୟ ସୈନ୍ୟ ସହିତ ପିତାର ମରଣ
ଚାରଙ୍କ ମୁଖୁ ଏକଥା କରିଣ ଶ୍ରବଣ ।
ଦେବଗଣଙ୍କ ଉପରେ ମହାକ୍ରୋଧ କଲା
ଘୋରବନେ ରହି ଘୋରତପ ଆଚରିଲା ।

ତାର ତପ ଦେଖି ଭୟ କଲେ ଦେବଗଣ
ମହାଯୋଦ୍ଧା ସେହି ଦୁଷ୍ଟ ହୁଣ୍ଡୁର ନନ୍ଦନ ।
ବିଚାରିଲେ ଏ ଦୁରାତ୍ମା ତ୍ରିପୁର ନାଶିବ
ପ୍ରତିଜ୍ଞା ତାହାର ପିତୃ ବଇରୀ ସାଧିବ ।
ଦେବବ୍ରାହ୍ମଣ କଣ୍ଟକ ସେହି ପାପାଚାରୀ
ନାନା ଉପଦ୍ରବ କରେ ପ୍ରଜାଙ୍କୁ ସଂହାରି ।
ସେ ପୁଣି ତପ କରଇ ରହି ନିରାହାରେ
ତାର ତପ ତେଜ ବିକାଶଇ ତିନିପୁରେ ।
ଇନ୍ଦ୍ର ଆଦି ଦେବଗଣ ଏମନ୍ତ ବିଚାରି
ଦାନବର ତପତେଜ ସେ ସହି ନପାରି ।
ଶ୍ରୀବିଷ୍ଣୁ ଚରଣତଳେ ପଶିଲେ ଶରଣ
ଉଚ୍ଚରେ ବୋଇଲେ ରଖ ରଖ ନାରାୟଣ ।
ରଖ ରଖ ଶଙ୍ଖ ଚକ୍ର ଗଦା ପଦ୍ମଧାରୀ
ଜଗତଜନର ନାଥ ହେ ପ୍ରଭୁ ଶ୍ରୀହରି ।
ଶରଣ ପଶିଲୁଁ ଭୟେ ଆମ୍ଭେ ଦେବଗଣ
ଦେବଙ୍କ ଆକାଶବାଣୀ ଶୁଣି ନାରାୟଣ ।
ବୋଇଲେ ହେ ଦେବଗଣ ନହୁଅ କାତର
ଉପାୟେ ମୁହିଁ ମାରିବି ସେ ଦୁଷ୍ଟ ଅସୁର ।
ତୁମ୍ଭେମାନେ ସୁସ୍ଥହୋଇ ଥାଅ ସ୍ୱର୍ଗପୁରେ
ଦେବକଣ୍ଟକ ବିହୁଣ୍ଡ ଯିବ ଯମପୁରେ ।
ଦେବଙ୍କୁ ପ୍ରବୋଧି ତହୁଁ ଦେବ ଜନାର୍ଦ୍ଦନ
ମାୟା ଆଶ୍ରା କରିଗଲେ ନନ୍ଦନକାନନ ।
ଅପୂର୍ବ ନାରୀରୂପରେ ରହିଲେ ଶ୍ରୀହରି
ବିଶ୍ୱବିମୋହିନୀ ସେହି ତ୍ରୈଲୋକ୍ୟ ସୁନ୍ଦରୀ ।
ରୂପ ଲାବଣ୍ୟନିଧି ସେ ଶ୍ରୀବିଷ୍ଣୁର ମାୟା
ବିହୁଣ୍ଡ ବଧକରିବାପାଇଁ ନାରୀ କାୟା ।
ଅତୁଳରୂପେ ବିକାଶ ପାଇଲେ ସେ ବନେ
କୁଞ୍ଜଳପକ୍ଷୀ କହଇ ପୁତ୍ର ସନ୍ନିଧାନେ ।
ଏଥୁ ଅନନ୍ତରେ ସେହି ବିହୁଣ୍ଡ ଦଇତ
ସ୍ୱର୍ଗରେ ଦେବଗଣଙ୍କୁ ମାରିବା ନିମିତ୍ତ ।
ପ୍ରତିଜ୍ଞାକରି ଗଗନମାର୍ଗରେ ସେ ଗଲା
ନନ୍ଦନବନେ ସେ ମାୟାନାରୀକି ଦେଖିଲା ।
ମାୟାମୋହେ ପଡ଼ି ଦୈତ୍ୟ ହୋଇଲା ବିହ୍ୱଳ
କାମବାଣରେ ତା ଚିତ୍ତ ଅତ୍ୟନ୍ତ ଚଞ୍ଚଳ ।
ଜାଣି ନ ପାରିଲା ମୂଢ଼ ଏ କାଳରୂପିଣୀ
ବରବର୍ଣ୍ଣିନୀ ମୋହର ବଧର କାରିଣୀ ।

ନବ ହେମପ୍ରଭା ସପ୍ତଦ୍ରବିଣ ପସରା
ଦେଖିତାକୁ ଲୋଭେପଡ଼ି ବୋଲେଆଗୋଧୀରା ।
ମୋର ଚିତ୍ତ ପ୍ରମାଥିନୀ ବରାରୋହା ତୁହି
କାହା ଭାରିଯା ଶରଣ ନେଲି ତୋର ମୁହିଁ ।
ସଙ୍ଗମ ଦେଇ ମୋହର ପ୍ରାଣ ରକ୍ଷାକର
ତୁ ଯାହା ମାଗିବୁ ତାହା ଦେବି ରାମାବର ।
ବୋଇଲା ସେ ମାୟାନାରୀ ହେ ଦାନବମଣି
ଯେବେ ମୋତେ ଭୋଗକରିବାକୁ କହୁପୁଣି ।
ମୁଁ ଯାହା ମାଗିବି ଯେବେ ଦେଇପାରୁ ଆଣି
ସତ୍ୟ କହୁଛି ତୋହର ହୋଇବି ଘରଣୀ ।
ବିହୁଣ୍ଡ କହଇ ସତ୍ୟ ସତ୍ୟ ଏ ମୋହର
ଦେବଦାନବେ ଦୁର୍ଲ୍ଲଭ ହେଲେ ହେଁ ସତ୍ୱର ।
ଆଣିଦେବି ତୋତେ ପ୍ରିୟେ କହକିନା ବେଗେ
ମାୟାନାରୀ କହଇ ସେ ଦାନବର ଆଗେ ।
କାମୋଦ ସମ୍ଭବ ଫୁଲ ସାତକୋଟି ଦେଇ
ଶଙ୍କର ପୂଜି ଆସିଲେ ହେବୁ ମୋର ସାଇଁ ।
ସେ ସୁଗନ୍ଧ ଛଡ଼ାଫୁଲ ମାଳା ମୋର ଗଳେ
ଲମ୍ବାଇବୁ ଯେବେ ଆସି ପ୍ରେମ କୁତୂହଳେ ।
ବିହୁଣ୍ଡ ବୋଇଲା ଦେବୀ କରିବି ମୁଁ ଏହା
କାମୋଦ ଫୁଲେ ପୂଜିବି ପାର୍ବତୀର ନାହା ।
ସେ ଫୁଲମାଳ ଲମ୍ବାଇ ଦେବି ତୋରଗଳେ
ତୋ ମନକାମନା ପୂର୍ଣ୍ଣ କରିବି ଗୋ ବାଳେ ।
ଏହା କହି ସେ ଅସୁର ତହୁଁ ବେଗେ ଗଲା
କାଳ କରାଳ କବଳେ ପଡ଼ି ସେ ଖୋଜିଲା ।
ମନମଥ ଶରେ ତାର ସର୍ବାଙ୍ଗ ଅଥୟ
ଶ୍ରୀବିଷ୍ଣୁ ମାୟାରେ ଦୈତ୍ୟହୋଇ ପୁଣିମୋହ ।
ଦିବ୍ୟବନେ ଉପବନେ ପଶିଣ ଖୋଜଇ
ଯାହାକୁ ଦେଖଇ ତାକୁ ପରି ପଚାରଇ ।
କାହିଁ ଖୋଜି ନ ପାଇଲା ସେ ମୂଢ଼ ଅସୁର
ଯହିଁତହିଁ ବୁଲି ଖୋଜେ ନାହିଁ ତାର ଡ଼ର ।
ମହାଜନମାନେ ତାକୁ କହିଲେ ଏମନ୍ତ
କାମୋଦ ନାମରେ ବୃକ୍ଷ ନାହିଁ ଆହେଦୈତ୍ୟ ।
ପଚାରି ପଚାରି ଖୋଜି ଖୋଜି ସେ ନ ପାଇ
ଦୈତ୍ୟ ଗୁରୁ ଶୁକ୍ରମୁନି ପାଶକୁ ସେ ଯାଇଁ ।
ଭକତିରେ ତାଙ୍କ ପାଦେ କରି ନମସ୍କାର
ବୋଇଲା ଭୋ ଗୁରୁଦେବ ମୁଁ ତୋରକିଙ୍କର ।

କାମୋଦ ତରୁ ଦେଖାଇ ଦିଅ ଦୟାକରି
ଏମନ୍ତ ଶୁଣି ବୋଇଲେ ଶୁକ୍ର ତପଚାରୀ ।
କାମୋଦ ନାମରେ ବୃକ୍ଷ କାହିଁ ଗୋଟାନାହିଁ
କାମୋଦ ନାମେ ଗୋଟିଏ ରମଣୀ ଅଛଇ ।
କଥା ପ୍ରସଙ୍ଗେ ସେ ନାରୀ ଯେବେ କି ଅଛଇ
ପୀତବର୍ଣ୍ଣ ପଦ୍ମଫୁଲ ତହୁଁ ଉପୁଜଇ ।
ସେ ଫୁଲର ସଉଗନ୍ଧ ଅତି ମନୋହର
ତହୁଁ ଏକ ଫୁଲେ ଯେବେ ପୂଜିବ ଶଙ୍କର ।
ତା ମନ କାମନା ପୂର୍ଣ୍ଣ ହୋଇବ ତକ୍ଷଣେ
କାମୋଦ ପୁଷ୍ପ ବୋଲାଇ ସେହି ତ୍ରିଭୁବନେ ।
ରୋଦନ କଲେ ସେ ନାରୀ ଲୋତକୁ ତାହାର
ଉପୁଜଇ ଗନ୍ଧହୀନ ପୁଲ ଯେ ଅପାର ।
ସେ ଫୁଲ ସବୁକୁ ଜାଣ ଛୁଇଁ ନ ଯୋଗାଇ
ଛୁଇଁଲେ ତାକୁ ତକ୍ଷଣେ ଲକ୍ଷ୍ମୀ ଛାଡ଼ିଯାଇ ।
ଏମନ୍ତ ଶୁଣି ବୋଇଲା ବିହୁଣ୍ଡ ଅସୁର
କାହିଁ ଅଛି ସେ ରମଣୀ କହ ମୁନିବର ।
ଶୁକ୍ର ବୋଇଲେ ସେପୁଣ୍ୟମୟ ଗଙ୍ଗାଦ୍ୱାରେ
ମହାପାତକ ନାଶନ ବୋଲାଇ ସଂସାରେ ।
ବିଶ୍ୱକର୍ମା ଗଢ଼ିଅଛି କାମୋଦାଖ୍ୟ ପୁରେ
କାମୋଦା ରମଣୀ ଅଛି ସେ ପୁର ମଧରେ ।
ନାନା ଆଭରଣେ ସେହି ହୋଇଛି ଭୂଷଣ
ଦେବତାମାନେ ପୂଜନ୍ତି ତାକୁ ଦୈତ୍ୟରାଣ ।
ଦିବ୍ୟ ଭୋଗରେ ଅଛଇ ସେ ରମଣୀମଣି
ସେହି ବରା ଅପସରା ଅପୂର୍ବ ତରୁଣୀ ।
ତୁ ତହିଁକି ଯାଇ ତାକୁ ପୂଜା କରି ଯେବେ
ଉପାୟେ ହସାଇ ପାରୁ ପାଇବୁ ତୁ ତେବେ ।
ଏମନ୍ତ କହି ସେ ଶୁକ୍ର ରହିଲେ ମଉନେ
ଗୋପୀନାଥ ମନ ରହୁ କୃଷ୍ଣ ପଦଧ୍ୟାନେ ।

ଇତି ଶ୍ରୀ ପଦ୍ମପୁରଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ଗୁରୁତୀର୍ଥମାହାତ୍ମ୍ୟେ କାମୋ-
ଦାଖ୍ୟାନେ ଅଷ୍ଟାଦଶାଧିକ-
ଶତତମୋଽଧ୍ୟାୟଃ ।



## ଊନବିଂଶାଧିକଶତ ଅଧ୍ୟାୟ

## କାମୋଦା ଜନ୍ମ ବୃତ୍ତାନ୍ତ

ପଚାରିଲା କପିଞ୍ଜଳ ପକ୍ଷୀ ଭୋ ପିଅର
ସେ କାମୋଦା କିଏ ଜାତହେଲା କି ପ୍ରକାର ।
ସେ ହସିଲେ ପୁଷ୍ପଜାତ ହୁଅଇ କିମ୍ପାଇଁ
ସୁର ଅସୁରେ ଦୁର୍ଲଭ ସେ ପୁଣି ଅଟଇ ।
ମନୋହର ସଉଗନ୍ଧ ସେ ଫୁଲର ପୁଣି
ସେ ଫୁଲେ କିମ୍ପା ସନ୍ତୋଷ ଦେବ ଶୂଳପାଣି ।
ଦୁର୍ଲଭ କିମ୍ପାଇଁ ହେଲା ଅନ୍ୟ ଦେବଙ୍କର
ସୁଗନ୍ଧ ନ ହୁଏ କିମ୍ପା ଲୋତକ ଫୁଲର ।
ହାସଂ ଫୁଲର କି ଗୁଣ କହ ତାତ ମୋତେ
ଲୋତକ ଜାତ ଫୁଲର ଦୋଷ ଅଛି କେତେ
ଏ ସବୁ କଥା ବିସ୍ତାରି କହିବା ବୁଝାଇ
ଏମନ୍ତ ଶୁଣି କୁଞ୍ଜଳ ପକ୍ଷୀ ଯେ କହଇ ।
ଦେବଗଣ ଦୈତ୍ୟଗଣ ହୋଇ ଏକ ମେଳ
ପୂର୍ବେ ଯେ ମନ୍ଥନ କଲେ ସମୁଦ୍ରର ଜଳ ।
ସେ କ୍ଷୀର ସମୁଦ୍ରୁ ଚାରି କନ୍ୟାରତ୍ନ ଜାତ
ତା ଉତ୍ତାରୁ ଜାତ ଭାଣ୍ଡ ସହିତ ଅମୃତ ।
ପ୍ରଥମେ ବରୁଣ ସୋମ ଏହି କନ୍ୟା ଚାରି
ତଦନ୍ତେ କଳଶସ୍ଥିତ ଅମୃତ ବାହାରି ।
ସେ ଚାରି କନ୍ୟାର ନାମ ଶୁଣ ମନଦେଇ
ଏକ ଜଣକର ନାମ ସୁଲକ୍ଷ୍ମୀ ଅଟଇ ।
ଦ୍ୱିତୀୟା ନାମ ବାରୁଣୀ ଜ୍ୟେଷ୍ଠାନାମଜ୍ୟେଷ୍ଠ
କାମୋଦ ନାମେବିଖ୍ୟାତା ଯେକନ୍ୟା କନିଷ୍ଠ ।
ବଡ଼ ଶ୍ରେଷ୍ଠ ହେବାରୁ ସେ ଜ୍ୟେଷ୍ଠା ବୋଲାଇଲା
ସେହି କନ୍ୟାଲୋକ ପୂଜ୍ୟା ସର୍ବଦା ହୋଇଲା ।
ପାନରୂପା ବାରୁଣୀ ଯେ ଜଳଫେଣୁ ଜାତ
ଅମୃତ ତରଙ୍ଗ ହେଲା କାମୋଦା ସମ୍ଭୁତ ।
ଅମୃତରୁ ସୋମ ଲକ୍ଷ୍ମୀ ଏ ଦୁହେଁ ଜନମ
ତ୍ରୈଲୋକ୍ୟ ଭୂଷଣ ଶିବପ୍ରିୟ ହେଲା ସୋମ ।
ବାରୁଣୀ ଦେବଙ୍କ ମୃତ୍ୟୁ ରୋଗ ବିନାଶିନୀ
ଜ୍ୟେଷ୍ଠା ଜନହିତାକାଂକ୍ଷୀ ପୁଣ୍ୟ ପ୍ରଦାୟିନୀ ।
ଅମୃତଜାତା କାମୋଦା ବିଷ୍ଣୁ ପ୍ରୀତିକରୀ
ତୁଳସୀ ବୃକ୍ଷ ରୂପକୁ ଧରିବ ସୁନ୍ଦରୀ ।

ସେ ତୁଳସୀ ପତ୍ର ଏକ କୃଷ୍ଣଙ୍କୁ ଯେ ଦେବ
ଶ୍ରୀକୃଷ୍ଣଙ୍କ ମନରୁ ସେ ପାଶୋରି ନ ଯିବ ।
ମନେ ମନେ ଭାଳୁଥିବ ତାହା ପ୍ରତିଦିନ
କିକଲେ କି ଦେଲେ ତୋଷ ହେବ ଏହା ମନ ।
ଏ ରୂପେ କାମୋଦା ପୂର୍ବେ ସମୁଦ୍ରରୁ ଜାତ
ହସିଲା ମାତ୍ରେ ତାହାର ମୁଖରୁ ବହୁତ ।
ସୁଗନ୍ଧ ଅମ୍ଳାନ ପୁଷ୍ପ ଫୁଟି ବାହାରଇ
ହରିହର ବ୍ରହ୍ମାଙ୍କୁ ଯେ ସେ ପୁଷ୍ପେ ପୂଜଇ ।
ଦେବେ ସନ୍ତୋଷେ ତା ମନ କାମନା ପୂରାନ୍ତି
ସେ ଯାହା ମାଗଇ ତାକୁ ତକ୍ଷଣେ ଦିଅନ୍ତି ।
ସେ କାମୋଦାଯେବେ ଦୁଃଖେକରଇ ରୋଦନ
ସେ ଲୋତକୁ ଜାତ ପୁଷ୍ପ ସଉରଭ ହୀନ ।
ତହିଁରେ ଯେ ପୂଜାକରେ ଦେବ ଶୂଳପାଣି
ତା ମନେ ଦୁଃଖ ସନ୍ତାପ ଉପୁଜଇ ପୁଣି ।
ଯେ ପାପମତି ଏ ଫୁଲେ ଦେବ ପୂଜାକରେ
ତାହାକୁ ଦୁଃଖ ଦିଅନ୍ତି ଦେବେ ନିରନ୍ତରେ ।
କାମୋଦା ଆଖ୍ୟାନବାବୁ କହିଲିମୁଁ ତୋତେ
ଯାହାକଲେ ଶୁଣ ଏବେ ବିଷ୍ଣୁ ଏଥୁଅନ୍ତେ ।
ଦାନବ ସାହସ ପୁଣି ବିକ୍ରମକୁ ଭାଳି
ନାରଦେ ଡାକି ରହିଲେ ଯାଅ ତପଶାଳୀ ।
ଦୁରାପଦ ପାମରକୁ କରିବ ମୋହିତ
ନାରଦ ଗଲେ ଅଛଇ ଯହିଁ ସେ ଦଇତ ।
ହସି ହସି ତାର ପାଶେ ମିଳିଲେ ସେ ଯାଇଁ
କହିଲେ ହେ ଦୈତ୍ୟରାଜ କହ କାହିଁପାଇଁ ।
କି କାର୍ଯ୍ୟ ନିମନ୍ତେ ଏତେ ଆତୁର ତୋହର
କାହିଁ ପାଇଁ ଯାଉଅଛ ହୋଇ ତର ତର ।
ଦୈତ୍ୟ ନମସ୍କାର କରି କହେ ଯୋଡ଼ି କର
ଯାଉଛି କାମୋଦ ଫୁଲ ପାଇଁ ଦ୍ୱିଜବର ।
ନାରଦ ବୋଇଲେକହ ସେ ଫୁଲେକି କାର୍ଯ୍ୟ
ଆମୂଳ କରି କହିଲା ସବୁ ଦୈତ୍ୟରାଜ ।
ନନ୍ଦନବନେ ଅଛଇ ଏକ ବରନାରୀ
ତାକୁ ଦେଖି କାମବାଣେ ହୋଇଲି ମୁଁ ଘାରି ।
ସେ ବୋଇଲା ସାତକୋଟି କାମୋଦ ପୁଷ୍ପରେ
ଶିବ ପୂଜାକରି ସାରି ସେ ଫୁଲ ହାରରେ ।
ମୋତେ ବରିଲେ ମୁଁ ହେବି ଭାରିଯା ତୋହର
ତେଣୁ କାମୋଦାଖ୍ୟ ପୁରେ ଗମନ ମୋହର ।
କାମୋଦାକୁ ହସାଇବି ତା ମନ ଉଲ୍ଲାସେ
ବାରମ୍ବାର ହସିବ ସେ ଗଦଗଦ ଭାଷେ ।
ସେ ହାସ୍ୟରୁ ଜନମିବ ପୁଷ୍ପ ବହୁତର
ଯେ ପୁଷ୍ପେ ପୂଜା କରିବି ଦେବଦେବ ହର ।
ପୂଜାରେ ପ୍ରସନ୍ନ ହୋଇ ବରଦେବ ମୋତେ
ନାରଦ କହିଲେ ଦୈତ୍ୟରାଜ କହେତୋତେ ।
କାମୋଦାଖ୍ୟ ପୁରେ ତୁହୋ ନକର ଗମନ
ସର୍ବଦୈତ୍ୟ କ୍ଷୟକାରୀ ହେବ ଜନାର୍ଦ୍ଦନ ।
ସେ ପୁର ଜଗି ଅଛନ୍ତି ଚକ୍ରଧରି କରେ
ଗଲାମାତ୍ରେ ଯିବୁ ତୁହୋ ଶମନ ନଗରେ ।
ଯେ ଉପାୟେ କାମୋଦାଖ୍ୟ ଫୁଲ ତୁ ପାଇବୁ
ସେ ଉପାୟଗୋଟା ଆମ୍ଭେ କହିଦେବା ବାବୁ ।
ଏ ପୁଷ୍ପ ପଡ଼ିବ ଗଙ୍ଗାନଦୀ ମଧ୍ୟେ ଆସି
ଗଙ୍ଗାର ସ୍ରୋତ ଜଳରେ ତାହା ଭାସି ଭାସି ।
ଆସୁଥିବା ବେଳେ ଧରି ପୂଜିବୁ ଶଙ୍କର
ତହିଁରେ ମନ କାମନା ପୂର୍ଣ୍ଣହେବ ତୋର ।
ଦୈତ୍ୟକୁ ଏରୂପେ ମୋହି ନାରଦ ଚଳିଲେ
ଯାଉ ଯାଉ ବାଟରେ ସେ ଏମନ୍ତ ଭାଳିଲେ ।
କେମନ୍ତେ ଦୁଃଖେ କାନ୍ଦିବ କାମୋଦା ସୁନ୍ଦରୀ
କାମୋଦା ପୁରେ ମିଳିଲେ ତହୁଁ ତପଚାରୀ ।
ଦ୍ୱିଜଗୋପୀନାଥ ବୋଲେ ବୋଲ ହରି ହରି
ହରି ବୋଇଲେ ସଂସାରୁ ହେଲେ ଯିବ ତରି ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ଚ୍ୟବନଚରିତେ ଗୁରୁତୀର୍ଥ
ମାହାତ୍ମ୍ୟେ କାମୋଦାଖ୍ୟାନେ ଊନ-
ବିଂଶତ୍ୟଧିକଶତତମୋଽଧ୍ୟାୟଃ ।



## ବିଂଶତ୍ୟଧିକଶତ ଅଧ୍ୟାୟ

## କାମୋଦା ପୁରେ ନାରଦ ପ୍ରବେଶ ଓ କାମୋଦା ସହିତ ବାକ୍ୟାଳାପ

କୁଞ୍ଜଳ କହିଲା ତହୁଁ ଦେବର୍ଷି ନାରଦ
କାମୋଦା ପୁରକୁ ଦେଖି ଲଭିଲେ ବିଷାଦ ।
ସର୍ବଦେବ ସମାକୁଳ ସେ ସମୃଦ୍ଧିମନ୍ତ
କାମୋଦାକୁ ଗୃହମଧ୍ୟେ ଦେଖି ତପୋବନ୍ତ ।

ସର୍ବକାମ ସମାକୁଳା ହୋଇ ବସିଅଛି
ପହୁଞ୍ଚିଲେ ତା ପାଖରେ ବିଧାତାର ବହ୍ନି ।
ମୁନିଙ୍କି ଦେଖି କାମୋଦା କୁଶଳ ପଚାରି
ଦିବ୍ୟାସନେ ବସାଇଲା ପାଦ ପୂଜା କରି ।
ପଚାରିଲେ କାମୋଦାକୁ ତହୁଁ ମୁନିବର
ବିଷ୍ଣୁ ତେଜରୁ ଜନମ ଅଟଇ ତୁମ୍ଭର ।
ସୁଖରେ ଅଛତ ତୁମ୍ଭେ କହ ଗୋ କାମୋଦେ
କାମୋଦା ବୋଲେ କୁଶଳ ବିଷ୍ଣୁ ପରସାଦେ ।
ତୁମ୍ଭ କଲ୍ୟାଣେ ଭୋ ମୁନି କୁଶଳେ ଅଛଇ
କଥାଏ ମୁଁ ପଚାରିବି ହେ ମୁନି ଗୋସାଇଁ ।
ଜ୍ଞାନଧ୍ୱଂସୀ ମହାମୋହ ମୋ ଅଙ୍ଗରେ ଜାତ
ସେ ମୋହ ବ୍ୟାପି ରହିଛି ସକଳ ଜଗତ ।
ତେଣୁ ମର୍ତ୍ତ୍ୟ ଲୋକ ଜନପ୍ରାୟ ନିଦ୍ରା ଗଲି
ଦାରୁଣ ସ୍ୱପନ ଏକ ଭୋମୁନି ଦେଖିଲି ।
କେ ଯେହ୍ନେ କହୁଛି ଆସି ମୋ ଆଗରେ ରହି
ଅବ୍ୟକ୍ତ ଯେ ହୃଷୀକେଶ ସଂସାର ଆସଇ ।
ଏମନ୍ତ ସ୍ୱପନ ଦେଖି ମୁଁ ଅତି ଦୁଃଖିତା
ତୁମ୍ଭେ ଯେଣୁ ମହାଜ୍ଞାନୀ ମୁନି ସର୍ବଜ୍ଞାତା ।
ସ୍ୱପନ କାରଣ ମୋତେ କହନ୍ତୁ ବୁଝାଇ
ନାରଦ କହିଲେ ଭଦ୍ରେ ଶୁଣ ମନ ଦେଇ ।
ବାତ ପିତ୍ତ ଶ୍ଳେଷ୍ମ ସନ୍ନିପାତୁଁ ସ୍ୱପ୍ନଜାତ
ଏ ଚାରି ପ୍ରକାର ସ୍ୱପ୍ନ ଜଗତେ ବିଖ୍ୟାତ ।
ଏ ଚାରି ସ୍ୱପ୍ନ କେବଳ ମାନବେ ଦେଖନ୍ତି
ମର୍ତ୍ତ୍ୟପୁରେ ଜନମିଲେ ଘାରେ ନିଦ୍ରାବତୀ ।
ଦେବଗଣଙ୍କର ନିଦ୍ରା ନାହିଁ ସ୍ୱପ୍ନ ନାହିଁ
ସୂର୍ଯ୍ୟ ଉଦୟ କାଳେ ଯେ ସ୍ୱପ୍ନ ଦେଖାଯାଇ ।
ସେ ଉତ୍ତମ ସାଧୁ ସ୍ୱପ୍ନ ଦିଏ ପୁଣ୍ୟ ଫଳ
ଆଗୋ ଶୁଭେ କହୁଛି ମୁଁ ସ୍ୱପନ ସକଳ ।
ମହାବାତ ଆନ୍ଦୋଳନେ ଜଳ ଯେହ୍ନେ ଚଳି
ଛୋଟ ଛୋଟ ଜଳକଣା ସେ ସବୁ ଉଚ୍ଛୁଳି ।
ନିର୍ମଳ ଆକାରେ ଆସି ପଡ଼ଇ ବାହାରେ
ଦୃଶ୍ୟାଦୃଶ୍ୟଭାବେ ଲୟପାନ୍ତି ସେ ସେଠାରେ ।
ସ୍ୱପନ ସ୍ୱରୂପ ଜାଣ ଅଟଇ ତେସନ
ତାହା ମୁହିଁ କହୁଅଛି ଶୁଣ ଦେଇ ମନ ।
ରାଗ ଦ୍ୱେଷ ଶୂନ୍ୟ ଆତ୍ମା ଶୁଦ୍ଧ ଯେ ବିରକ୍ତ
ପଞ୍ଚଭୂତ ଆତ୍ମା ମଧ୍ୟେ ଏ ଆତ୍ମା ଗୁପତ ।
ଛବିଶ ତତ୍ତ୍ୱ ଭିତରେ ବିରାଜେ ନିଶ୍ଚଳେ
ସେହି ଶୁଦ୍ଧ ଆତ୍ମା ନିତ୍ୟ କା ସଙ୍ଗେ ନମିଳେ ।
ପ୍ରକୃତିର ସଙ୍ଗବଶେ ସେ ଆତ୍ମା ଯେ ବେଳେ
ସ୍ଥାନଭ୍ରଷ୍ଟ ହୋଇ ବାୟୁରୂପେ ପୁଣି ଚଳେ ।
ସ୍ୱଭାବେ ସେ ଜ୍ୟୋତିରୂପପରମାତ୍ମାରୁସେବେଳେ
ବାହାରି ପଡ଼େ ଆରେକ ଜ୍ୟୋତି ସୁନିର୍ମଳେ ।
ସେ ଜ୍ୟୋତି ଗୋଟି ଜୀବାତ୍ମାତେଜ ଏହାମୂଳ
ସେ ତେଜକୁ ଅନ୍ତରାତ୍ମା କହନ୍ତି ସକଳ ।
ଜଳ ଜାତ ଅମ୍ବୁକଣା ଜଳୁଁ ଯେହ୍ନେ ଭିନ୍ନ
ଅନ୍ତରାତ୍ମାରୁ ଜୀବାତ୍ମା ଅଭିନ୍ନ ତେସନ ।
ଏ ଆତ୍ମାଟି ପୃଥ୍ୱୀ ବାୟୁ ଜଳ ଅଗ୍ନି ଶୂନ୍ୟ
ମନ ଅଂଶୀ ଏହି ପଞ୍ଚଭୂତ ଆତ୍ମା ଜାଣ ।
ଯେ ଆତ୍ମାରେ ଏହା ସାର ଭାଗ ରହେଯାଇ
ଯେବେ ପଞ୍ଚଭୂତ ଆତ୍ମା ସଙ୍ଗ ଆତ୍ମାପାଇ ।
ସେବେଳେ ସେଆତ୍ମାରେ ଏ ଆତ୍ମାହୋଏଲୀନ
ରମ୍ଯାନିଷ୍ଠା ପ୍ରକୃତି ଗୋ ବରାନନେ ଜାଣ ।
ଏରୂପେ ପିଣ୍ଡ ବ୍ରହ୍ମାଣ୍ଡ ପଞ୍ଚଭୂତାତ୍ମକ
ସୃଷ୍ଟି କରଇ ସଂହାର କରଇ ଅନେକ ।
ସେ ଦୁଇରୁ ଏକ କରେ ପିଣ୍ଡ ଉତ୍ପାଦନ
ଆରେକ କରେ ତାହାର ବିନାଶ ସାଧନ ।
ପୁଣି ତାକୁ ଅନ୍ୟ ପିଣ୍ଡେ ଉତ୍ପାଦନ କରେ
ପ୍ରକୃତି ପୁରୁଷ ଦୁହେଁ ଜାଣ ଏ କ୍ରମରେ ।
ଲୀଳା ବିଳାସେ ଏ ସୃଷ୍ଟି ପ୍ରବାହେ ପ୍ରବର୍ତ୍ତି
ଭିନ୍ନରୂପେ ଯେହ୍ନେ ଜଳ ତରଙ୍ଗ ଉତ୍ପତ୍ତି ।
ଜଳର ଆକାରେ ଲୟ ପାଏ ବାରେବାରେ
ପ୍ରକୃତିରୁ ଏ ବ୍ରହ୍ମାଣ୍ଡ ପିଣ୍ଡ ଯେ ବାହାରେ ।
ସେ ପ୍ରକୃତି ରୂପେ ପୁଣି ପୁଣି ଲୀନଯାଇ
ଏରୂପେ ସୃଷ୍ଟି ସଂହାର ଜାଣ ହୋ ହୁଅଇ ।
ଏ ଜଳ ତରଙ୍ଗ ଜାଣି ଏହା ଦୃଷ୍ଟାନ୍ତର
ଆଗୋ ଦେବି ନାଶନାହିଁ ଜାଣ ଏ ଆତ୍ମାର ।
ଶୂନ୍ୟ ବାୟୁ ଅଗ୍ନି ଜଳ ପୃଥ୍ୱୀ ନୋହେନାଶ
ଏହି ମହା ପଞ୍ଚଭୂତ ଆତ୍ମା ସହବାସ ।
ଆସୁଥାନ୍ତି ଯାଉଥାନ୍ତି ଏହି ମାତ୍ର ଶୁଭେ
ଆତ୍ମା ପଞ୍ଚଭୂତ ନିତ୍ୟ ଜାଣ ତୁଗୋ ଏବେ ।
କେବଳ ମାତ୍ର ସଂଘାତ ନାଶ ଏହାଙ୍କର
ବ୍ରହ୍ମାଣ୍ଡ ପିଣ୍ଡ ବିନାଶ ପାଏ ନିରନ୍ତର ।

ସୂତ ମୁନି କହନ୍ତି ଯେ ଶଉନକ ଦ୍ୱିଜ
ବିଷୟ ସମୂହର ଯେ ଦୋଷ ସ୍ୱଭାବଜ ।
ରାଗ ଦ୍ୱେଷ ଆଦିରେ ଯେ ହୁଏ ଅଭିହିତ
ସେ ସକଳ ପିଣ୍ଡର ଯେ ବିନଷ୍ଟ ନିଶ୍ଚିତ ।
ପଞ୍ଚଭୂତର ବିନାଶ କେବେ ନ ହୁଅଇ
ପିଣ୍ଡ ସମୂହର ଅନ୍ତ ଭାଗେ ରହିଥାଇ ।
ଅଗ୍ନିରୁ ସ୍ଫୁଲିଙ୍ଗ ଜନ୍ମ ବିନାଶ ଯେମନ୍ତ
ଅନ୍ତରାତ୍ମାରୁ ଜୀବାତ୍ମା ପୁଣି ପଞ୍ଚଭୂତ ।
ପ୍ରକାଶ ପାଇ ତେସନ ବିନାଶ ହୁଅଇ
ବିଶୁଦ୍ଧ ଆତ୍ମା ପରମ ବ୍ରହ୍ମ ଯେ ବୋଲାଇ ।
ସେ ଆତ୍ମା ଥାଇ ନିୟତ ଚେତନା ରୂପରେ
ପ୍ରକୃତିର ତ୍ରିଗୁଣ ଏ ଆତ୍ମାକୁ ଆବରେ ।
ଅନ୍ନ ଆହାର ଆଦିରେ ଏହି ପୁଷ୍ଟି ପାଇ
ସୁଖ ଯାକ ଅନୁଭବ ଏ ପୁଣି କରଇ ।
ସେ ସୁଖ ଅନୁଭବରୁ ମୋହ ହୋଏ ତାର
ଆତ୍ମାସଙ୍ଗେ ମନ ମୋହେ ପଡ଼ଇ ଅବାର ।
ଲୟ କାରିଣୀ ତାମସୀ ନିଦ୍ରା ଘୋଟେ ଆସି
ଏହି ନିଦ୍ରା ଜାଣ ରାତ୍ରି ରୂପକୁ ପ୍ରକାଶି ।
ସୂର୍ଯ୍ୟ ସ୍ୱରୂପ ସେ ଆତ୍ମା ଆପଣେ ବିକାଶେ
ପ୍ରକୃତ ପଠାନ୍ତେ ନାଡ଼ି ବାଟ ଦେଇଆସେ ।
ମେରୁ ଲଙ୍ଘି ତାର ପଛେ ଯାଇ ସେ ରହଇ
ତାର ଉଦୟ ପର୍ଯ୍ୟନ୍ତେ ରାତ୍ରି ଯେ ବୋଲାଇ ।
ବିଷୟ ଅନ୍ଧାରୁ ଆତ୍ମା ଯେବେ ମୁକ୍ତି ପାଇ
ରାତ୍ରି ଅବସାନେ ପୁଣ ଦିବସ ବୋଲାଇ ।
ପିଣ୍ଡ ମଧ୍ୟସ୍ଥିତ ପଞ୍ଚତତ୍ତ୍ୱ ସାହାଯ୍ୟରେ
ଜନ୍ମାନ୍ତର ଭାବ ସବୁ ପୁଷ୍ଟି ଲାଭ କରେ ।
ସେ ସବୁଭାବେ ଆକ୍ରାନ୍ତ ଅନ୍ତରାତ୍ମା ଜାଣ
ଆତ୍ମା କେବେ ନ ହୁଅଇ ଭିନ୍ନ ସେ ଅଭିନ୍ନ ।
ଏଣୁ ପିଣ୍ଡର ସମ୍ବନ୍ଧ ତ୍ୟାଗ କଲା ପରେ
ଉଚ୍ଚ ନୀଚ ଭାବ ସବୁ ଆସଇ ସଂସାରେ ।
ସେହି ଭାଗବତ ଦୋଷେ ସେ ବଦ୍ଧ ହୁଅଇ
ପ୍ରାଣରୂପେ ଜୀବାତ୍ମା ଯେ ଦେହକୁ ରଖଇ ।
ଉଦ୍ଧାନ ବାୟୁରୂପେ ସେ ଦେହମଧ୍ୟେ ଥାଇ
ତୀବ୍ରଭାବେ ସ୍ଫୁରନ୍ତେ ଯେ ଶବଦ ହୁଅଇ ।
ବାୟୁ ପୂର୍ଣ୍ଣହୋଇ ଶୁଷ୍କଭସ୍ତ୍ରୀ ଯେଉଁପରି
ଶ୍ୱାଦ ସହିତ ଶବଦ କରେ ସେହପରି ।

ବେଗବନ୍ତ ଯେ ଉଦ୍ଧାନ ବାୟୁ ଶବ୍ଦ କରେ
ବଳବନ୍ତ ହୁଏ ସେହି ଆତ୍ମା ପ୍ରଭାବରେ ।
ଉଦ୍ଧାନ ପ୍ରଭାବେ ଦେହ ମୋହନେ ଆଚ୍ଛନ୍ନ
ତେଣୁ ମୃତକଳ୍ପ ହୋଇ ପଡ଼େ ଦେହ ଜାଣ ।
ନିଦ୍ରାରୂପିଣୀ ଯେ ମହାମାୟା ଯେତେବେଳେ
ସେ ଦେହଯାକ ସମସ୍ତ ବାସଇ ପ୍ରବଳେ ।
ହୃଦ କଣ୍ଠ ମୁଖ ନାସା ନାଭି ବାହୁ ଦୁଇ
ଏସବୁ ସ୍ଥଳେ ପ୍ରଭାବ ବିସ୍ତାର କରଇ ।
ଆତ୍ମ ପ୍ରଭାବରୁ ଏହା ବଳ ବଢ଼େ ଯହୁଁ
ଦେହ ଆକ୍ରମି ବଳକୁ ସମ୍ବୋଧଇ ତହୁଁ ।
ରଜ୍ଜୁ ବନ୍ଧା ହୋଇଥିବା ପଦାର୍ଥ ଯେମନ୍ତେ
ସମ୍ବନ୍ଧ ରଜ୍ଜୁ ମୂଳରୁ କୀଳାର ସହିତେ ।
ଆତ୍ମା ସଙ୍ଗେ ପ୍ରାଣ ବାୟୁ ନିବଦ୍ଧ ତେସନ
ଅୟି ଶୁଭାନନେ ଅନ୍ତରାତ୍ମା ସଙ୍ଗେ ଜାଣ ।
ପ୍ରାଣବାୟୁର ଏରୂପେ ରହିଛି ସଂଯୋଗ
ସନ୍ଦେହ ନ କର ଭଦ୍ରେ କହିଛି ତା ଆଗ ।
ସେ ଅନ୍ତରାତ୍ମା ରାଜସୀ ବୁଦ୍ଧି ପ୍ରେରଣୀରେ
ପୂର୍ବ ଜନ୍ମ ଉପାଜତ ବାସାନାନୁସାରେ ।
ଇତଃସ୍ତତ ହୋଇ ନିରନ୍ତର ଧାଉଁଥାଇ
ମହା ବୁଦ୍ଧିମନ୍ତେ ସେହି ଆତ୍ମା ଯେ ଅଟଇ ।
ଆପଣା ଇଚ୍ଛାନୁସାରେ ସେ ସବୁ ବିଷୟେ
ଆନନ୍ଦ ଉପଭୋଗକୁ କରଇ ହୃଦୟେ ।
ଏରୂପେ ବିଷୟ ଅନୁଭବହିଁ ସ୍ୱପନ
ଉତ୍ତମ ଅଧମ ପୁଣି ହୁଅଇ ମଧ୍ୟମ ।
କର୍ମଭେଦ ଅନୁସାରେ ନାନାବିଧ ହୁଏ
ସ୍ୱପ୍ନରେ ଯେବେକି ଗିରି ଦୁର୍ଗ ଦେଖାଯାଏ ।
ଗହୀର ଗର୍ତ୍ତ ଆଦି ଯେ ଉଚ୍ଚନୀଚ ସ୍ଥାନ
ବାତିକ ବୋଲାଇ ଜାଣ ଏ ସବୁ ସ୍ୱପନ ।
ଜଳ ନଦୀ ତଡ଼ାଗ ଯେ ଜଳମୟ ଦେଶ
ଏ ସବୁ ସ୍ୱପ୍ନ ଜାଣିବ କଫଜ ବିଶେଷ ।
ଅଗ୍ନି କାଞ୍ଚନ ଆଦି ଯେ ତଇଜସ ଦ୍ରବ୍ୟ
ପିତ୍ତଜ ସ୍ୱପନ ବୋଲି ଦେବି ଗୋ ଜାଣିବ ।
ଅବଶ୍ୟମ୍ଭାବୀ ଯେ ସବୁ ସ୍ୱପ୍ନ ଫଳ ଶୁଣ
ପ୍ରତ୍ୟୁଷ କାଳେ ଦେଖିବ ଯେବଣ ସ୍ୱପନ ।
କର୍ମଭେଦ ଅନୁସାରେ ବରାରୋହେ ଏହି
ଲାଭାଲାଭ ଭବ୍ୟାଭବ୍ୟ ସୂଚାଇ ଦିଅଇ ।

ତୁମ୍ଭେ ସ୍ୱପ୍ନେ ଦେଖିଛ ଯା ହେ ବରବର୍ଣ୍ଣିନୀ
ତାହା ସେରୂପେ ଫଳିବ ଥାଅ ସତମଣି ।
ଶ୍ରୀବିଷ୍ଣୁ ଏହି ସଂସାରେ କରିବେ ଗମନ
ସେଥିପାଇଁ ତୁମ୍ଭେ ଦେଖ ଏହି ଦୁଃସ୍ୱପନ ।
ହରିହରି ବୋଲଭାଇ ଦୁଃଖ ଯାଉ ଦୂରେ
ଗୋପୀନାଥ ଯେ ଶରଣ ଅଚ୍ୟୁତ ପୟରେ ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ଚ୍ୟବନ
ଚରିତେ ଗୁରୁତୀର୍ଥ ମାହାତ୍ମ୍ୟେ ବେନୋ-
ପାଖ୍ୟାନେ କାମୋଦାଖ୍ୟାନେ
ବିଂଶତ୍ୟଧିକଶତତମୋଽଧ୍ୟାୟଃ ।



## ଏକବିଂଶାଧିକଶତ ଅଧ୍ୟାୟ

## ଭୃଗୁଶାପେ ବିଷ୍ଣୁର ଦଶାବତାର କ୍ଳେଶ ବର୍ଣ୍ଣନ

କାମୋଦା କହେ ଯାଅନ୍ତ ଦେବେନଜାଣନ୍ତି
ଏ ସକଳ ଲୋକଯାକ ଯହିଁ ଲୀନ ପାନ୍ତି ।
ଏକମାତ୍ର ଆତ୍ମା ବୋଲି କହନ୍ତି ଯାହାକୁ
ହେ ନାରଦ ଶୁଣ ଯାହା କହୁଛି ତୁମ୍ଭଙ୍କୁ ।
ଯାହାରା ମାୟା ପ୍ରପଞ୍ଚ ଅଟେ ଏ ସଂସାର
କି ହେତୁ ଜଗତପତି ସ୍ୱାମୀ ଯେ ଆମ୍ଭର ।
ଅସାର ମାୟା ସଂସାରେ କରିବେ ଗମନ
ପାପ ପୁଣ୍ୟ କର୍ମେ ବଦ୍ଧ ହୋଇ ନରରାଣ ।
ଗମନ କରୁଥାନ୍ତି ଏ ଅସାର ସଂସାରେ
ହରି କିମ୍ପାଇଁ ଗମନ କରିବେ ତହିଁରେ ।
ନାରଦ ବୋଇଲେ ଦେବୀ କହୁଛି ତା ଶୁଣ
ପ୍ରତିଜ୍ଞା କରିଥିଲେ ସେ ଭୃଗୁଆଗେ ପୁଣ ।
ତୋହର ଯଜ୍ଞ ମୁଁ ରକ୍ଷା କରିବି ନିଶ୍ଚୟ
ଇନ୍ଦ୍ରବାକ୍ୟେ ଦାନବଙ୍କୁ କଲେ ଯାଇ କ୍ଷୟ ।
ଭୃଗୁ ଯଜ୍ଞ ଛାଡ଼ି ଯିବା ଜାଣିଣ ଅସୁରେ
ଯଜ୍ଞ ଧ୍ୱଂସ କରିବାରୁ ଭୃଗୁ କୋପଭରେ ।
ଅଭିଶାପ ଦେଲେ ହରି ହୁଅ କଳୁଷିତ
ମର୍ତ୍ତ୍ୟପୁରେ ଦଶବାର ହୁଅ ତୁମ୍ଭେ ଜାତ ।
ଏରୂପେ ମୁନିର ଶାପ ପାଇ ଜନାର୍ଦ୍ଦନ
କର୍ମଫଳ ଭୋଗୁଛନ୍ତି ସଂସାରେ ରହିଣ ।

ଆଗୋ ଦେବୀ ତେଣୁ ତୁମ୍ଭେ ଦେଖ ଦୁଃସ୍ୱପନ
ଏହାକହି ବ୍ରହ୍ମଲୋକେ ଗଲେ ତପୋଧନ ।
ସେ କାମୋଦାକୃଷ୍ଣ ଦୁଃଖେ ହୋଇଣ ଦୁଃଖିତ
ଗଙ୍ଗାତୀରେରେ ଜଳପାଖେ ବସି ପୋତିମାଥ ।
ହାହା କୃଷ୍ଣ କହି କଲେ ଉଚ୍ଚରେ ରୋଦନ
ଲୋତକ ବିନ୍ଦୁ ନୟନୁ ଝରେ ଘନ ଘନ ।
ସେ ବିନ୍ଦୁଯାକ ପଡ଼ଇ ଗଙ୍ଗାନଦୀ ଜଳେ
ଫୁଟି ପଦ୍ମଫୁଲ ଭାସିଯାଏ ସ୍ରୋତନୀରେ ।
ବିଷ୍ଣୁ ମାୟାରେ ମୋହିତ ହୋଇଣ ଅସୁର
ଆନନ୍ଦେ ସେ ଫୁଲ ଦେଇ ପୂଜଇ ଶଙ୍କର ।
ଦୁଃଖଜାତ ପଦ୍ମ ବୋଲି ଜାଣି ନ ପାରଇ
ସାତକୋଟି ପଦ୍ମଫୁଲେ ଶିବଙ୍କୁ ପୂଜଇ ।
ଶିବଙ୍କୁ ବୋଇଲେ କୋପେ ଜଗଦ୍ଧାତ୍ରୀଯାଇ
ଆହେ ମହାମତି କେଡ଼େ ଦୁଷ୍ଟ ଏ ଅଟଇ ।
ଶୋକଜାତ ପଦ୍ମଫୁଲ ଗଙ୍ଗାଜଳେ ଭାସେ
କାମାକୁଳ ଚିତ୍ତେ ତାହା ଆଣଇ ହରଷେ ।
ତହିଁରେ ତୁମ୍ଭଙ୍କୁ ପୂଜେ ଏହି ପାପମତି
ଶଙ୍କର ଶୁଣି ବୋଇଲେ ଜାଣଗୋ ପାର୍ବତୀ ।
ଯେ ଯେମନ୍ତ ଭାବେ ଫଳ ତେମନ୍ତ ତାହାର
ସତ୍ୟ ଧ୍ୟାନ ବିହୀନ ଏ ଅସୁର ପାମର ।
କାମୋଦା ହରଷ ଜାତ ଫୁଲ କି ପାଇବ
ନିଜ ତେଜ ବଧକର ଦେବୀ ଗୋ ଦାନବ ।
ଶମ୍ଭୁ ବାକ୍ୟପାଇ ଦେବୀ ବୋଇଲେ ଭୋନାଥ
ଏ ଦୁଷ୍ଟ ଦୈତ୍ୟକୁ ନିଶ୍ଚେ କରିବି ନିହତ ।
ବ୍ରାହ୍ମଣ ରୂପ ଧଇଲେ ଦେବୀ ତତକ୍ଷଣେ
ଦୁଷ୍ଟ ଦାନବକୁ ବଧ କରିବା କାରଣେ ।
ପାରିଜାତ ଫୁଲେ ପୂଜାକଲେ ପ୍ରାଣେଶ୍ୱର
ଏ ସମୟେ ପାପାଚାରୀ ସେ ଦାନବ ବୀର ।
ତାହାଙ୍କ ପୂଜାରେ ବିଘ୍ନ କଟାଇଲା ଆସି
ବିଷ୍ଣୁ ମାୟାବତୀ ରୂପ ସୁମରି ସେ ଦୋଷୀ ।
କାମଶର ପୀଡ଼ାପାଇ ହୋଇଲା ଆକୁଳ
ବଳବନ୍ତ କନ୍ଦର୍ପ ଯେ ବିନ୍ଧେ ବାଣଜାଳ ।
ମୂର୍ଚ୍ଛାଯାଇ ବାରମ୍ବାର କରଇ ରୋଦନ
ସେହି ଦୁରାତ୍ମାକୁ କାଳ କଲା ଆକର୍ଷଣ ।
ଶୋକଜାତ ପଦ୍ମଫୁଲ ଘେନିଣ ଅଇଲା
ଶିବପୂଜାର ନିମନ୍ତେ ସେଠାରେ ମିଳିଲା ।

ପାରିଜାତ ଫୁଲେ କାଢ଼ି ଶୋକଜାତ ଫୁଲେ
ଶିବ ପୂଜାକରେ ନେତ୍ର ଅଶ୍ରୁବିନ୍ଦୁ ଗଳେ ।
ସେ ବିନ୍ଦୁ ପଡ଼ଇ ଫୁଲସଙ୍ଗେ ଶମ୍ଭୁଶିରେ
ଦେବୀ ତାକୁ ପଚାରିଲେ ବ୍ରାହ୍ମଣ ବେଶରେ ।
କିଏ ତୁମ୍ଭେ କିମ୍ବା ମନ ଶୋକର ଆକୁଳ
ଅପବିତ୍ର ଶୋକଜାତ ଅଶ୍ରୁ ବିନ୍ଦୁଜଳ ।
ପଡ଼େ ଶମ୍ଭୁଶିରେ ଏକି ପୂଜା ଯେ ତୁମ୍ଭର
ବିହୁଣ୍ଡ କହିଲା ତୁହୋ ଶୁଣ ଦ୍ୱିଜବର ।
ପୂର୍ବେ ମୁହିଁ ଦେଖିଥିଲି ଏକଇ କାମିନୀ
ସର୍ବ ସଉଭାଗ୍ୟବତୀ ସର୍ବ ସୁଲକ୍ଷଣୀ ।
ଆୟତନସ୍ୱରୂପା ସେ କନ୍ଦର୍ପ ରାଜାର
ତାହାତୁଲ୍ୟ ରୂପବତୀ ନାହିଁ ଏ ସଂସାର ।
କାମବାଣ ପୀଡ଼ାପାଇ କହିଲି ମୁଁ ତାକୁ
ସେ ବୋଇଲା ଯେବେ ତୁହି ପୂଜିବୁ ଶିବଙ୍କୁ ।
କାମୋଦ ନାମକ ଫୁଲ ସାତକୋଟି ଦେଇ
ସେ ଫୁଲମାଳ କରିଣ ମୋ ଗଳେ ଲମ୍ବାଇ ।
ପାରିବୁ ଯେବେ ତୁ ତୋର ହୋଇବି ଭାରିଯା
ତେଣୁ ମୁଁ କାମୋଦ ଫୁଲେ କରେ ଶିବପୂଜା ।
ଦେବୀ ବୋଇଲେ ଦୁରାତ୍ମା ତୋହଭକ୍ତିକାହିଁ
ଧ୍ୟାନନାହିଁ ଜ୍ଞାନନାହିଁ କି ପୂଜିବୁ ତୁହି ।
କାମୋଦାର ରୂପ କହ ତୁହି କି ପ୍ରକାର
ତାର ହାସ୍ୟଜାତ ଫୁଲ ଅତି ମନୋହର ।
ତାହାର ସଉଗନ୍ଧରେ ତିନିପୁର ମୋହ
ତୁ କାହୁଁ ତାହା ପାଇଲୁ ମୋଆଗରେ କହ ।
ବିହୁଣ୍ଡ ବୋଇଲା ଭାବ ଧ୍ୟାନ ନ ଜାଣଇ
କାମୋଦାକୁ ମୁହିଁ କେବେ ନେତ୍ରେଦେଖିନାହିଁ ।
ଗଙ୍ଗାଜଳେ ଭାସି ଆସେ ଏ ପୁଷ୍ପ ସକଳ
ମୁଁ ତହିଁରେ ଶମ୍ଭୁ ପୂଜା କରଇ କେବଳ ।
ମହାତମା ଶୁକ୍ର ମୋତେ କହିଛନ୍ତି ଏହା
ତେଣୁ ନିତି ପୂଜାକରେ ମୁଁ ପାର୍ବତୀ ନାହା ।
ପଚାରିଲ ଯାହା ସବୁ କହିଲି ତୁମ୍ଭଙ୍କୁ
ଏମନ୍ତ ଶୁଣି ବୋଇଲେ ଦେବୀ ଯେ ତାହାକୁ ।
କାମୋଦା ରୋଦନଜାତ ଫୁଲେ ତୁହି ନିତି
ଶିବ ପୂଜାକରୁ ଆରେ ମୂଢ଼ ପାପମତି ।
ଯେମନ୍ତ ପୂଜା ତୋହର ଫଳ ଯେ ତେମନ୍ତ
ଦୋଷୀ ତୁହି ତୋତେ ଦଣ୍ଡ ଦେବାର ଉଚିତ ।
କଲାକର୍ମ ଜାତଫଳ ଭୋଗିବୁ ପାମର
କାଳ ତାକୁ ଘୋଟିବାରୁ ସେହି ଦୁରାଚାର ।
ବୋଇଲେ ମୋପୂଜା ନିନ୍ଦୁ ଭୟତୋରନାହିଁ
ଏ ତୀକ୍ଷ୍ଣ ଖଡ଼ଗେ ଶିର କାଟିବଇଁ ମୁହିଁ ।
ଏହାକହି ଖଡ଼ଗଧରି ଅଇଲା ସେ ଧାଇଁ
ଦାନବର କୋପ ଦେଖି ଦେବୀକୋପେଚାହିଁ ।
ହୁଁକାର ନାଦେ ଦୈତ୍ୟକୁ କଲେଭୂମିସାତ
ବଜ୍ରାହତ ଗିରିପ୍ରାୟ ପଡ଼ିଲା ଦଇତ ।
ପ୍ରାଣବାୟୁ ଉଡ଼ିଗଲା ଜ୍ଞାନଶୂନ୍ୟ ହେଲା
ଲୋକହିଂସକ ଦାନବ ପଡ଼ି ଯହୁଁ ମଲା ।
ସର୍ବ ଦୁଃଖ ତାପଶୂନ୍ୟ ହୋଇଲେ ସକଳେ
ଆନନ୍ଦ ଯେ ଉପୁଜିଲା ଅମର ମଣ୍ଡଳେ ।
ରେ ବତ୍ସ ଯା ପଚାରିଲୁ କହିଲି ତା ତୋତେ
ଶ୍ରୀବିଷ୍ଣୁ କହନ୍ତି ବେନ ରାଜାର ଅଗ୍ରତେ ।
ଅଣ୍ଡଜରାଜ କୁଞ୍ଜଳ କପିଞ୍ଜଳ ଆଗେ
ଏ କଥାଗୋଟା କହିଲା ପୁତ୍ର ଅନୁରାଗେ ।
ଦ୍ୱିଜ ଗୋପୀନାଥ ବୋଲେ ବୋଲ ହରିହରି
ଘୋର ଦୁସ୍ତର ସଂସାର ସିନ୍ଧୁ ଯିବ ତରି ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ଗୁରୁତୀର୍ଥମାହାତ୍ମ୍ୟେ ଚ୍ୟବନ
ଚରିତେ କାମୋଦାଖ୍ୟାନେ
ଏକବିଂଶାଧିକଶତତମୋଽଧ୍ୟାୟଃ ।



## ଦ୍ୱାବିଂଶାଧିକଶତ ଅଧ୍ୟାୟ

### କୁଞ୍ଜଳର ଆତ୍ମବୃତ୍ତାନ୍ତ କଥନ

ଶ୍ରୀବିଷ୍ଣୁ କହିଲେ ଶୁଣ ବେନ ନରପତି
ଧର୍ମପକ୍ଷୀ କୁଞ୍ଜଳ ଯେ ପ୍ରିୟ ପୁତ୍ର ପ୍ରତି ।
ଏ ସବୁ କଥା କହିଣ ରହିଲା ମଉନେ
ଚ୍ୟବନ ଯେ ବଟତଳେ ବସି ସବୁ ଶୁଣେ ।
ସେ ମହା ଶୁକକୁ ଚାହିଁ ବୋଇଲା ଏମନ୍ତ
କିଏ ତୁମ୍ଭେ ମୋ ଆଗରେ କହ ତାହା ସତ ।
ପକ୍ଷୀରୂପଧାରୀ ଧର୍ମ ବକତା କି ତୁମ୍ଭେ
ଗନ୍ଧର୍ବ କି ବିଦ୍ୟାଧର କହ କେଉଁଦେବେ ।

କାହାପାଶେ ପାପମୟୀ ପକ୍ଷୀଯୋନି ପାଇ
ଏ ଜ୍ଞାନ କାହୁଁ ପାଇଲ କହ ପକ୍ଷୀ ହୋଇ ।
ଇନ୍ଦ୍ରିୟକୁ ଅତିକ୍ରମି ଏ ଜ୍ଞାନ ତୁମ୍ଭର
କେମନ୍ତେ ଉଦେ ହୋଇଲା କହ ପକ୍ଷିବର ।
କେଉଁ ପୁଣ୍ୟେ କେଉଁ ତପେ ପାଇଲ ଏ ଜ୍ଞାନ
କିବା ତୁମ୍ଭର ସ୍ୱରୂପ କରିଛ ଗୋପନ ।
ସିଦ୍ଧ କି ଦେବତା ତୁମ୍ଭେ କହ ମୋ ଆଗରେ
କୁଞ୍ଜଳ କହିଲା ସିଦ୍ଧ ଶୁଣ ତୁହୋ ବାରେ ।
ମୁଁ ତୋତେ ଜାଣଇ ତୋର କୁଳଗୋତ୍ରଜାଣେ
ଯହିଁପାଇଁ ଲିପ୍ତ ତୁମ୍ଭେ ମେଦିନୀ ଭ୍ରମଣେ ।
ବିଦ୍ୟା ତପ ପ୍ରଭାବ ଏ ସବୁ ଜଣା ମୋତେ
ଶୁଭ ହେଉ ତୁମ୍ଭର ଏ ଆଗମନ ଏଥେ ।
ଶୀତଳ ଛାୟାରେ ରହି ପବିତ୍ର ଆସନେ
ବସି କରି ମୋର କଥା ଶୁଣ ସାବଧାନେ ।
ଅବ୍ୟକତ ଆଦି ପୁରୁଷରୁ ବ୍ରହ୍ମା ଜାତ
ବ୍ରହ୍ମା ତହୁଁ ପ୍ରଜାପତି ହୋଇଲେ ସମ୍ଭୁତ ।
ଭୃଗୁମୁନି ଅଟନ୍ତି ଯେ ବ୍ରହ୍ମାର ନନ୍ଦନ
ବ୍ରହ୍ମମୟ ଦ୍ୱିଜ ସେହୁ ଅତି ଗୁଣବାନ ।
ଭାର୍ଗବନାମେ ହୋଇଲା ପୁତ୍ରେକ ତାହାର
ସର୍ବ ଧର୍ମ ଅର୍ଥ ତତ୍ତ୍ୱ ଜାଣେ ଦ୍ୱିଜବର ।
ତା ବଂଶେ ଜାତ ତୋ ନାମ ଅଟଇ ଚ୍ୟବନ
ମୁଁ ଯାହା କହୁଛି ତାହା ଶୁଣ ଦେଇ ମନ ।
ତା ନା ଦେବ କି ଗନ୍ଧର୍ବ କିବା ବିଦ୍ୟାଧର
କଶ୍ୟପର କୁଳେ ଜାତ ଏକ ଦ୍ୱିଜବର ।
ସେ ବେଦ ବେଦାଙ୍ଗତତ୍ତ୍ୱ ସକଳ ଜାଣଇ
ସର୍ବ ଧର୍ମ ପ୍ରକାଶକ ସେ ଦ୍ୱିଜ ଅଟଇ ।
ବିଖ୍ୟାତ ନାମ ତାହାର ଅଟେ ବିଦ୍ୟାଧର
କୁଳବନ୍ତ ଗୁଣବନ୍ତ ଶ୍ରୀମନ୍ତ ଆବର ।
ଆଚାରବନ୍ତ ତପସ୍ୱୀ ସ୍ୱଭାବ ଉତ୍ତମ
ତାହାର ଯେ ତିନିଗୋଟି ପୁତ୍ର ହେଲା ଜନ୍ମ ।
ବସୁଶର୍ମା ନାମଶର୍ମା ଧର୍ମଶର୍ମା ନାମେ ,
ତା ମଧ୍ୟେ ମୁଁ ଧର୍ମଶର୍ମା ଥାଇ ଗୁଣହୀନେ ।
ବଡ଼ଭାଇ ବସୁଶର୍ମା ଚାରିବେଦ ଜାଣେ
ଆଚାର ବିଦ୍ୟା ଆଦିରେ ଭୂଷଣ ସୁଗୁଣେ ।
ମଝିଆଭାଇ ଯେ ନାମ ଶର୍ମା ତାହାପରି
ବୁଦ୍ଧିମନ୍ତ ଗୁଣବନ୍ତ ଥିଲା ଯେ ଆଚାରୀ ।

କେବଳ ମୁଁ ଏକମାତ୍ର ମହାମୂର୍ଖ ସାନ
ବିଦ୍ୟାର ଅର୍ଥଭାବରେ ନ ଦିଅଇଁ କାନ ।
ଗୁରୁଘରକୁ ନ ଯାଇ ପାଠ ନ ପଢ଼ଇ
ମୋ କଥା ମୋ ପିତା ଚିନ୍ତା ନିତ୍ୟ କରୁଥାଇ ।
ଧର୍ମଶର୍ମା ନାମ ନିରର୍ଥକ ଏ ପୁତ୍ରର
କେମନ୍ତେ ରହିବ ମହୀତଳେ ମୂର୍ଖନର ।
ଏମନ୍ତ ଭାଳି ଦୁଃଖିତେ କହିଲେ ସେ ମୋତେ
ଗୁରୁଘରେ ପାଠ ପଢ଼ ଯାଇ ତୁହି ନିତ୍ୟେ ।
ପିତା ମୁଖୁ ଏହା ଶୁଣି ମୁଁ ବୋଇଲି ତାତ
ଯିବି ନାହିଁ ଗୁରୁ ମୋତେ ମାରିବେ ବହୁତ ।
ଭ୍ରୁଭଙ୍ଗିରେ ଚାହିଁବେ ସେ ଗାଳିଦେବେ ପୁଣି
ଦୁଃଖ ପାଇ ନ ମିଳଇ ତହିଁ ଅନ୍ନପାଣି ।
ଦିବାରାତ୍ର ନିଦ୍ରା ନାହିଁ କିଛିନାହିଁ ସୁଖ
ଏଣୁ ମୁଁ ନ ଯିବି ନ ସହିବି ଏତେ ଦୁଃଖ ।
ପାଠ ନ ପଢ଼ିବି ଖେଳ ଖେଳୁଥିବି ତାତ
ଖାଇବି ପିଇବି ପିଲାମାନଙ୍କ ସହିତ ।
ଖେଳ ଖେଳୁଥିବି ନିତି ତୁମ୍ଭ ପରସାଦେ
ଏହା ଶୁଣି ପିତା ପୁଣି କହିଲେ ବିଷାଦେ ।
ଏମନ୍ତ ସାହସ ପୁତ୍ର ଆଉ ତୁ ନ କର
ପାଠ ପଢ଼ାରେ ତୁ ମନ ଦିଅ ନିରନ୍ତର ।
ପାଠ ପଢ଼ିଲେ ରେ ବାବୁ ପାଇବୁ ତୁ ସୁଖ
ଯଶ କୀର୍ତ୍ତି ଜ୍ଞାନ ସ୍ୱର୍ଗ ଆବର ଯେ ମୋକ୍ଷ ।
ବିଦ୍ୟା ରୋଗ ଦୁଃଖ ପଛେ ସୁଖକୁ ଦିଅଇ
ଏଣୁ ପୁତ୍ର ପାଠ ପଢ଼ ଗୁରୁଘରେ ଯାଇଁ ।
ପିତା କଥା ନ ଶୁଣିଲି କଲି ଧନ ନାଶ
ପ୍ରତିଦିନ ଲୋକମୁଖେ ପାଇ ଉପହାସ ।
ଠାବେ ଠାବେ ଶୁଣୁଥାଇ ମୁହିଁ ନିନ୍ଦାବାଣୀ
ବେଳୁଁ ବେଳ ଲାଜମୋତେ ଖାଇଲା ଯେ ପୁଣି ।
ତହୁଁ ପାଠ ପଢ଼ିବାକୁ ମୋ ମନ ବଳିଲା
କାହିଁ କାହାକୁ ମୁଁ ଗୁରୁପାଇବି ଯେ ଭଲା ।
ଏହି ଚିନ୍ତାରେ ମୋ ମନ ସର୍ବଦା ବ୍ୟାକୁଳ
ଦୁଃଖ ଶୋକେ ରହିକଷ୍ଟେ କାଟୁଥାଇ କାଳ ।
କିରୂପେ ପାଠ ପଢ଼ିବି ଗୁଣବନ୍ତ ହେବି
କିରୂପେ ସ୍ୱର୍ଗେ ବସିବି ମୁକତି ପାଇବି ।
ଏହି ଚିନ୍ତାରେ ମୁଁ ବୁଢ଼ା ହେଲି ଦ୍ୱିଜବର
ଦିନେ ଏକ ଦେଉଳକୁ ଗଲି ଦୁଃଖଘୋର ।

ପୂର୍ବଭାଗ୍ୟ ମୋର ଉଦେ ହେଲା ଦେଖତହିଁ
ଭେଟିଲେ ସିଦ୍ଧ ପୁରୁଷ ଏକ ଜାଣ ମୁହିଁ ।
ହେ ବିପ୍ର ସେ ନିରାଶ୍ରୟ ସଦା ଜିତହାର
ସଦାନନ୍ଦ ନିସ୍ପୃହ ସେ ଯୋଗୀନ୍ଦ୍ର ଆବର ।
ଜିତେନ୍ଦ୍ରିୟ ପରଂବ୍ରହ୍ମେ ଲୟେ ରଖିଥାଇ
ଜ୍ଞାନଧ୍ୟାନ ସମାଧିରୁ ଚିତ୍ତ ନ ଟଳଇ ।
ମୁଁ ତାହାର ଆଶ୍ରାନେଲି ବିଶୁଦ୍ଧ ଭାବରେ
ଭକତିରେ ପ୍ରଣମିଲି ତାକୁ ନତଶିରେ ।
ନମସ୍କାର କରି ତାଙ୍କ ଆଗେ ହେଲି ଉଭା
ଦୀନ ମନ୍ଦଭାଗ୍ୟ ମୋତେ ଦେଖିଣ ଅଶୋଭା ।
ପଚାରିଲେ କି ନିମନ୍ତେ ତୁମ୍ଭେ ଶୋକକର
ଦୁଃଖ ଭୋଗ କରୁଅଛ କି ବାଞ୍ଛା ତୁମ୍ଭର ।
ମୋର ପୂର୍ବକଥା ଯାକ କହିଲି ତୁମ୍ଭଙ୍କୁ
ପଚାରିଲି ପୁଣି ସେହି ସିଦ୍ଧ ପୁରୁଷଙ୍କୁ ।
କି କର୍ମ କଲେ ସର୍ବଜ୍ଞ ହୁଅଇ ଯେ ନର
ତାହାପାଇଁ ଶୋକ ଦୁଃଖଦେଖୁଛ ମୋହର ।
ତୁମ୍ଭେ ଯେ ବଚନସିଦ୍ଧା ମହାଯୋଗୀ ଜ୍ଞାନୀ
ତୁମ୍ଭେ ମୋର ଏକମାତ୍ର ଗତିବୋଲି ଜାଣି ।
ବୁଝିପାରିଲେ ସେ ମହାତମା ମନ ମୋର
ଦୀନ ଗୋପୀନାଥ ଭଜେ ଅଚ୍ୟୁତ ପୟର ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ କୁଞ୍ଜଳର ଆତ୍ମ -
ବୃତାନ୍ତ ବର୍ଣ୍ଣନେ ଦ୍ୱାବିଂଶତ୍ୟଧିକ
ଶତତମୋଽଧ୍ୟାୟଃ ।



## ତ୍ରୟୋବିଂଶତ୍ୟଧିକଶତ ଅଧ୍ୟାୟ

### କୁଞ୍ଜଳର ଜ୍ଞାନଲାଭ ଓ ଶୁକଯୋନି ଲାଭ

ସିଦ୍ଧ କହିଲେ ତୋ ଆଗେ କହୁଛି ମୁଁ ଜ୍ଞାନ
ତାର ଦେହ ହସ୍ତପଦ ଚକ୍ଷୁ ନାସା କର୍ଣ୍ଣ ।
ଅସ୍ଥି ଚର୍ମ କିଛି ନାହିଁ ଦେଖିନାହିଁ କେହି
ଅକାର ବର୍ଜିତ ତାର ଚିହ୍ନ ବର୍ଣ୍ଣ ନାହିଁ ।
ସକଳ କଥା ଜାଣଇ ସେହି ସେହି ଜ୍ଞାନ
ରାତ୍ରି ଅବସାନେ ସୂର୍ଯ୍ୟ ଉଦେହେଲେଦିନ ।
ଦିବା ଅବଶାନେ ଜ୍ଞାନ ପ୍ରକାଶଇ ଶଶୀ
ଗୃହ ପ୍ରକାଶକ ଦୀପ ଅନ୍ଧାର ବିନାଶି ।
ଲୋକ ମଧ୍ୟେ ଏ ସକଳ ରହିଥାନ୍ତି ପୁଣି
ତେଜରେ ଜ୍ଞାନ ପଦକୁ ନ ଦେଖନ୍ତି ରାଣୀ ।
ତାହା କହୁଅଛି ଶୁଣ ତୁମ୍ଭେ ସାବଧାନେ
ବିଷ୍ଣୁ ମାୟାରେ ମୋହିତ ହୋଇ ମୂଢ଼ଜନେ ।
ଜାଣି ନ ପାରନ୍ତି ଜ୍ଞାନ ଦେହମଧ୍ୟେ ଥାଏ
ଉପମା ନାହିଁ ତାହାର ଜ୍ଞାନ ତେଜୋମୟେ ।
ଧ୍ୟାନବଳେ ଜ୍ଞାନ ପଦ ହୁଅଇ ଯେ ଦୃଶ୍ୟ
ସୂର୍ଯ୍ୟ ଆଦି ତେଜରେ ସେ ନୁହଇ ପ୍ରକାଶ ।
ନ ଥିଲେହେଁ ହସ୍ତ ପଦ ଚକ୍ଷୁ ନାସା କର୍ଣ୍ଣ
ଯହିଁ ତହିଁ କରିପାରେ ସେ ଜ୍ଞାନ ଗମନ ।
ସବୁ ସେ ଧରିପାରଇ ସବୁ ଦେଖିପାରେ
ସବୁ ସୁଙ୍ଘିପାରେ ସବୁ କଥା ଶୁଣିପାରେ ।
ସବୁ ଅନ୍ଧକାର ସେହି ବିନାଶି ପାରଇ
ଜ୍ଞାନତୁଲ୍ୟ ଦୀପ ଆଉ ଜାଣ କାହିଁ ନାହିଁ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳାଦି ସ୍ଥାନ କି ଅସ୍ଥାନ
ଯହିଁ ତହିଁ ସର୍ବତ୍ରହିଁ ଦୃଶ୍ୟ ସେହି ଜ୍ଞାନ ।
ଜ୍ଞାନ କାୟା ମଧ୍ୟେ ଥାଏ ନ ପାଏ କୁବୁଦ୍ଧି
କହିବା ଜ୍ଞାନର ସ୍ଥାନ ଜନମ ଯେ ବିଧି ।
ଜ୍ଞାନ ସଦାଥାଇ ପ୍ରାଣିଗଣଙ୍କ ହୃଦରେ
ମୋହକୁ ପୋଡ଼ଇ ଯେହ୍ନୁ ବିବେକ ଅଗ୍ନିରେ ।
କାମାଦୀ ସୁଖ ଭୋଗକୁ ପୋଡ଼ଇ ଆବର
ସର୍ବଶାନ୍ତିମୟ ହୋଇ ଇନ୍ଦ୍ରିୟ ନିକର ।
ଜୟ କଳାପରେ ଜନମିବ ଯେଉଁଜ୍ଞାନ
ତେଣେ ସର୍ବ ତତ୍ତ୍ୱ ଅର୍ଥ କରିବ ଦର୍ଶନ ।
ଜ୍ଞାନ ତତ୍ତ୍ୱମୂଳ ପୁଣି ସର୍ବଜ୍ଞ ନିର୍ମଳ
ଏଣୁ ଆଶ୍ରାକରେ ତୁମ୍ଭେ ଶାନ୍ତିକି କେବଳ ।
ସକଳ ସୁଖବର୍ଦ୍ଧିନୀ ଅଟଇ ସେ ଶାନ୍ତି
ଜିତହାର ଜିତେନ୍ଦ୍ରିୟ ହୋଇ ତୁମ୍ଭେ ନିତି ।
ଶତ୍ରୁ ମିତ୍ରେ ଆତ୍ମ ପରେ ସମଦର୍ଶୀ ହୁଅ
କାହାର ମିତ୍ର କାହାର ବଇରୀ ନ ହୁଅ ।
ମିତ୍ରତା ପୁଣି ଶତ୍ରୁତା ଦୂରୁ ପରିହର
ସଙ୍ଗ ଛାଡ଼ି ଏକାନ୍ତରେ ରହି ଦ୍ୱିଜବର ।
କାହିଁରେ ସ୍ପୃହା ନ ରଖି ରହିଥା ନିଶ୍ଚିନ୍ତେ
ଆରେ ବସ କରିପାରୁଯେବେ ତୁ ଏମନ୍ତେ ।

ଏକଠାବେ ରହି ତିନି ଭୁବନର କଥା
ମୋ ପ୍ରସାଦେ ଜାଣିବୁ ତୁ ନୋହିବ ଅନ୍ୟଥା ।
କୁଞ୍ଜଳ କହଇ ଶୁଣ ହେ ଦ୍ୱିଜ ଚ୍ୟବନ
ସେ ସିଦ୍ଧ ପୁରୁଷ ଦେଲେ ମୋତେ ଏହିଜ୍ଞାନ ।
ସେ ଗୁରୁବାକ୍ୟ ପାଳନ କରୁଥାଇ ନିତି
ତ୍ରିଭୁବନେ ଯାହା ଯାହା ଘଟେ ଦିବାରାତି ।
ଏକସ୍ଥାନେ ଥାଇ ସବୁ ଦୃଶ୍ୟ ହୁଏ ମୋତେ
ଶ୍ରୀଗୁରୁ ପ୍ରସାଦେ ସବୁ ଜାଣଇ ମୁଁ ନିତ୍ୟେ ।
କହିଲି ନିଜ ବୃତ୍ତାନ୍ତ ସକଳ ତୋ ଆଗେ
ଆଉ କି କହିବି କହ ଦ୍ୱିଜବର ବେଗେ ।
ଚ୍ୟବନ ବୋଇଲେ ଆହେ ଜ୍ଞାନିଗଣବର
ଏ ପକ୍ଷୀଯୋନି ପାଇଲ ତୁମ୍ଭେ କି ପ୍ରକାର ।
ମୋ ସନ୍ଦେହ ଦୂରକର କହି ତା କାରଣ
କୁଞ୍ଜଳ କହିଲା ତାହା କହୁଅଛି ଶୁଣ ।
ସଂସର୍ଗରୁ ପାପ ପୁଣ୍ୟ ହୁଅଇ ଜନମ
ଏଣୁ ବିଶୁଦ୍ଧ ପବିତ୍ର ଆତ୍ମା ଯେତେ ଜନ ।
ଅଭବ୍ୟ ବିରୁଦ୍ଧ ଲୋକ ସଂସର୍ଗ ତେଜିବେ
ସଂସର୍ଗ ଦୋଷର କଥା କହେ ଶୁଣ ଏବେ ।
ଦିନେ ଗୋଟିଏ ଲୁବ୍‌ଧକ ଶୁକ ଶିଶୁ ଧରି
ପିଞ୍ଜରା ଭିତରେ ତାକୁ ରଖି ଯତ୍ନକରି ।
ଗ୍ରାମକୁ ନେଲା ବିକିରି କରିବା ମାନସେ
ଶୁକ ଶିଶୁ ଗୋଟି ଅତି ସୁନ୍ଦର ଯେ ଦିଶେ ।
ଅତି କୋମଳ ତାହାର ମଧୁର ବଚନ
ସୁନ୍ଦର ଦେଖି ତାକୁ ଏକଇ ବ୍ରାହ୍ମଣ ।
ପ୍ରୀତିପଣେ ଶୁକ ଶିଶୁ ଦେଲା ଆଣି ମୋତେ
ଆହେ ଦ୍ୱିଜବର ମୁହିଁ ସେ ଶୁକକୁ ନିତ୍ୟେ ।
ଜ୍ଞାନଧ୍ୟାନ ପରାୟଣ ହେଲେ ହେଁ ବିଶେଷେ
ବାଳଭାବେ ସେହି ଶୁକ ମୋ ହସ୍ତରେ ବସେ ।
ମୁଁ ତାହାର କଉତୁକ ବାକ୍ୟେ ମୁଗ୍‌ଧ ହେଲି
ପୁତ୍ରପ୍ରାୟ ସେ ଶୁକକୁ ସ୍ନେହରେ ପାଳିଲି ।
ପିତା ପିତା ବୋଲି ମୋତେ ସେଶୁକଡାକଇ
ସ୍ନାନକର ଦେବାର୍ଚ୍ଚନକର ବୋଲି କହି ।
ଏରୂପେ ଚାଟୁ ବଚନ କହଇ ସେ ମୋତେ
ସେ ଶୁକ ବଚନେ ମୁଗ୍‌ଧହୋଇ ମୁହିଁନିତ୍ୟେ ।
ଜ୍ଞାନ ଧ୍ୟାନ ପାସୋରିଲି ସ୍ନେହଲୋଭେ ପଡ଼ି
ଦିନେ ଫଳ ପୁଷ୍ପପାଇଁ ଗଲି ତାକୁ ଛାଡ଼ି ।
ବିରାଡ଼ି ଖାଇଲା ଶୁକ ଶିଶୁକୁ ମୋ ଘରେ
ସାଧୁ ସଙ୍ଗୀଏ କହିଲେ ଯାଇଁ ମୋଆଗରେ ।
ବିରାଡ଼ି ଖାଇଲା ଶୁକ ଶିଶୁକୁ ତୁମ୍ଭର
ତା ମରଣ ବାର୍ତ୍ତା ଶୁଣି ମନ ମୋ ଅସ୍ଥିର ।
ଅତି ଦୁଃଖେ ପୀଡ଼ାପାଇ ମୋହରେ ପଡ଼ିଲି
ଚିତ୍ତ ବିଚଳିତ ହେଲା ତାହାକୁ ଲୋଡ଼ିଲି ।
ହାହା ରାମଚନ୍ଦ୍ର କହି କଲଇ ରୋଦନ
ହା ଶୁକରାଜ ତୁ କେଣେ କଲୁରେ ଗମନ ।
ହା ଶ୍ଳୋକରାଜ କହି ମୁଁ ବିଳପିଲି କେତେ
ନିଜକର୍ମ ଦୋଷେ ଦୁଃଖ ସନ୍ତାପିତ ଚିତ୍ତେ ।
ତା ରୂପେ ତା କଥା ତାର ଅବୟବ ଚିନ୍ତି
ଗୁରୁ ଦେଇଥିବା ଜ୍ଞାନ ପାଇଲା ବିସ୍ମୃତି ।
ତହୁଁ ଯେ ଘଟନା ହେଲା ମନଦେଇ ଶୁଣ
ସେ ଶୁକ ଶିଶୁର ଗୁଣ କରିଣ ସ୍ମରଣ ।
ହା ବତ୍ସ ହା ବତ୍ସ କହି କଲଇ ବିଳାପ
ତୋ ବିନା କେହି ମୋହର ନାହିଁ ଆରେବାପ ।
ଖାଇବାକୁ କେ ଡାକିବ ବାପବାପା ବୋଲି
ଶେଯରୁ କେ ଉଠାଇବ କହ ବାବୁ କାଲି ।
ନିର୍ଜନ ବନେ ତୁ ମୋତେ ଛାଡ଼ିଗଲୁ କେଣେ
ମୁଁ ତୋର କି ଦୋଷକଲି ନ କହୁ ପ୍ରସନ୍ନେ ।
ଏ ରୂପେ କରୁଣ ବାକ୍ୟେ ବିଳପିଲି କେତେ
ଶୋକେ ପଡ଼ି ପୀଡ଼ାପାଇ ତାର ରୂପ ଚିନ୍ତେ ।
ମୋହ ଯାଇଁଣ ପଡ଼ିଲି ମୃତ୍ୟୁ ହେଲା ମୋର
ମରଣ କାଳେ ଯାଦୃଶ ଭାବନା ଯାହାର ।
ତାଦୃଶ ମତି ମୋହର ଥିଲା ମୃତ୍ୟୁବେଳେ
ତାଦୃଶ ରୂପ ପାଇଲି ମୁଁ ଜନମ କାଳେ ।
ଜନ୍ମସ୍ମୃତି ବିଧାୟକ ଗର୍ଭବାସ ପାଇ
ପୂର୍ବଜନ୍ମ କଷ୍ଟ ଚେଷ୍ଟା ମନରେ ପଡ଼ଇ ।
ଗର୍ଭେଥାଇ ମୁହିଁ ଘୋର ଅନୁତାପ କଲି
ମୁଁ ପାପୀ ଅକୃତଆତ୍ମା କି କର୍ମ ନକଲି ।
ଶ୍ରୀଗୁରୁଙ୍କୁ ଚିନ୍ତାକରି ଗର୍ଭେ ଥିଲାବେଳେ
ସର୍ବଜ୍ଞା ଜ୍ଞାନ ଜନ୍ମିଲା ସେହି ଧ୍ୟାନବଳେ ।
ଶ୍ରୀଗୁରୁ ପ୍ରସାଦେ ପୁଣି ପାଇଲି ସେ ଜ୍ଞାନ
ତାଙ୍କ ସ୍ୱଚ୍ଛ ବାକ୍ୟୋଦକ କଲ ଯହୁଁ ପାନ ।
ଅନ୍ତର ବାହାର ମଳ ହୋଇଲା ଧଉତ
ଶୁକପକ୍ଷୀ ଜାତିରେ ମୁଁ ହୋଇଲଇଁ ଜାତ ।

ଶୁକପକ୍ଷୀ ରୂପଭାବେ ମଜ୍ଜି ଯେଣୁ ମଲି
ସେ କାରଣୁ ଶୁକପକ୍ଷୀ ଜନମ ଲଭିଲି ।
ଯେରୂପ ଭାବନା କରେ ମୃତ୍ୟୁକାଳେ ପ୍ରାଣୀ
ସେହିରୂପେ ଜନମ ସେ ହୁଏ ପୁଣି ପୁଣି ।
ସେହି ଭାବ ସେହି ସତ୍ତା ସ୍ୱରୂପ ତେମନ୍ତ
ଘେନି ପୁଣି ମାତୃଗର୍ଭେ ହୁଅଇ ସମ୍ଭୁତ ।
ଆହେ ଦ୍ୱିଜ ମୃତ୍ୟୁକାଳ ଭାବ ଅନୁସାରେ
ମୁଁ ଅତୁଳ ଜ୍ଞାନ ଲାଭ କଲି ଏ ଜନ୍ମରେ ।
ତେଣୁ ମୁଁ ସକଳ ନାଶି ପାରେ ଥାଇ ଏଥେ
ଭୂତ ଭବିଷ୍ୟତ ବର୍ତ୍ତମାନ କଥା ଯେତେ ।
ଗୁରୁତୀର୍ଥ ଠାରୁ ତୀର୍ଥ ନାହିଁ ଦ୍ୱିଜବର
ଯେଣୁ ସଂସାର ସାଗରୁ ପାଇବ ଉଦ୍ଧାର ।
ତୁମ୍ଭେ ଯାହା ପଚାରିଲ ଭାର୍ଗବନନ୍ଦନ
କହିଲି ମୁଁ ତୁମ୍ଭ ଆଗେ ମୋହର ଜନମ ।
ଆବର ସକଳ କଥା କହିଲି ବୁଝାଇ
ଘଟେ ଥିବା ଜଳ ବାହ୍ୟ ମଳ ବିନାଶଇ ।
ଗୁରୁତୀର୍ଥ ଜନ୍ମାନ୍ତର କୃତ୍ୟ ପାପ ନାଶେ
ଏଣେ ସଂସାର ସାଗରୁ ତରିବ ବିଶେଷେ ।
ଗୁରୁତୀର୍ଥହିଁ ଉତ୍ତମ ଜଙ୍ଗମ ଯେ ତୀର୍ଥ
ଶ୍ରୀବିଷ୍ଣୁ କହିଲେ ଶୁଣ ତୁହୋ ନରନାଥ ।
ଏ କଥା କହି ସେ ଶୁକ ରହିଲା ମଉନେ
ଜଙ୍ଗମ ତୀର୍ଥ କହିଲି ତବ ସନ୍ନିଧାନେ ।
ଇଚ୍ଛା ଅନୁସାରେ ତୁହୋ ମାଗ ଏବେ ବର
ବେନ କହିଲେ ହେ ଶଙ୍ଖଚକ୍ର ଗଦାଧର ।
ସ୍ୱର୍ଗ କିବା ଆନ କିଛି ମୁହିଁ ନ ମାଗଇ
କେବଳ ଏ ତୁମ୍ଭ ଦେହେ ମୁଁ ଲୀନ ହେବଇଁ ।
ଏହି ବର ମାଗୁଅଛି ଦିଅ ଜନାର୍ଦ୍ଦନ
ଶ୍ରୀବିଷ୍ଣୁ କହିଲେ ଶୁଣ ହେ ବେନରାଜନ ।
ରାଜସୂୟ କିବା ଅଶ୍ୱମେଧ ଯାଗକର
ଗୋଭୂମି ହରିଣ୍ୟ ଧନ୍ୟ ଆଦି ଦାନ କର ।
ଦାନେ ବ୍ରହ୍ମହତ୍ୟା ଆଦି ଘୋର ପାପଯାଏ
ଦାନେ ଚଉବର୍ଗ ଫଳ ସିଦ୍ଧି ଲାଭ ହୋଏ ।
ଏଣୁ ତୁମ୍ଭେ ମୋ ଉଦ୍ଦେଶ୍ୟେଦାନ କରଯାଇ
ଯେ ଭାବେ ମୋର ଉଦ୍ଦେଶ୍ୟ ଦେବ ନରସାଇଁ ।
ସେ ଭାବେ ତୁମ୍ଭର ପୂର୍ଣ୍ଣ ହୋଇବ ଏ ସତ୍ୟ
ଋଷି ଦର୍ଶନ ସ୍ମରଣେ ପାପ ହେବ ହତ ।
ଯଜ୍ଞାନ୍ତେ ମୋଦେହେ ଲୀନ ହୋଇବୁ ନୃପତି
ଏହାକହି ଅନ୍ତର୍ଦ୍ଧାନେ ଗଲେ ଶିରୀପତି ।
ଦୀନ ଗୋପୀନାଥ ନିତ୍ୟ ବୋଲେ ହରିହରି
ଦୁସ୍ତର ଘୋର ସଂସାରୁ ଯିବାପାଇଁ ତରି ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
ପାଖ୍ୟାନେ ଗୁରୁତୀର୍ଥମାହାତ୍ମ୍ୟେ କୁଞ୍ଜଳର
ଜ୍ଞାନଲାଭ ଚରିତେ ତ୍ରୟୋବିଂଶତ୍ୟଧିକ
ଶତତମୋଽଧ୍ୟାୟଃ ।



## ଚତୁର୍ବିଂଶାଧିକଶତ ଅଧ୍ୟାୟ

### ବେନକୃତ ପୃଥୁ ପ୍ରଶଂସା

ସୁତ କହିଲେ ଅନ୍ତର ହୁଅନ୍ତେ ଶ୍ରୀହରି
ଚିନ୍ତାରେ ଆକୁଳ ହୋଇ ବେନ ଦଣ୍ଡଧାରୀ ।
ବୋଇଲେ ଦେବାଧିରାୟବିଷ୍ଣୁ କେଣେଗଲେ
ଏରୂପେ ଭାଳି ହରଷେ ପୃଥୁକୁ କହିଲେ ।
ମହାପାତକୁ ଉଦ୍ଧାର କର ପୁତ୍ର ମୋତେ
ବଂଶ ଉଜ୍ଜ୍ୱଳ କାରକ ପୁତ୍ର ତୁ ଜଗତେ ।
ଯେ ବଂଶକୁ କଳୁଷିତ କରିଥିଲି ମୁହିଁ
ଗୁଣବଳେ ସେ ବଂଶକୁ ପ୍ରକାଶିଲୁ ତୁହି ।
ଅଶ୍ୱମେଧ ଯଜ୍ଞ ମୁହିଁ କରିବି ସଂପ୍ରତି
ଦାନ ଦେବି ଯେଣେ ତୃପ୍ତ ହୋଇବେ ଶ୍ରୀପତି ।
ତୋ ସହାୟେ ବିଷ୍ଣୁଲୋକେ କରିବି ଗମନ
ଯଜ୍ଞର ସମ୍ଭାର ବାବୁ କର ଆୟୋଜନ ।
ବେନରାଜା ମୁଖୁଁ ଶୁଣି ସେ ପୃଥୁ ନୃପତି
ବୋଇଲେ ହେ ମହାରାଜ ପାଳ ଏହି କ୍ଷିତି ।
ମନୋରମ ଭୋଗ ସବୁ ଉପଭୋଗ କର
ଯଜ୍ଞେ ଜନାର୍ଦ୍ଦନ ପୂଜା କର ହେ ପିଅର ।
ଏକଥା କହି ପ୍ରଣମି ସେ ପୃଥୁ ରାଜନ
ଧନୁଶର ଧରି ପାଶେ ଡ଼ାକି ଭଟଗଣ ।
ବୋଇଲେ ହେ ଭଟଗଣ ତୁମ୍ଭେମାନେ ଯାଇଁ
ମହୀରେ ଘୋଷଣା କର ବୁଲି ସାଇ ସାଇ ।
କାୟ ମନ ବଚନରେ ପାପ ଯେ କରିବ
ସେ ଜନ ମୋହର ବଧ ନିଶ୍ଚୟ ହୋଇବ ।
ଦାନ ଦେଉଥିବେ ଜନେ ହୋଇବି ମତ୍ସର
ଜନାର୍ଦ୍ଦନଙ୍କୁ ପୂଜିବେ ଯଜ୍ଞରେ ଆବର ।

ବେନ ନନ୍ଦନ ଏରୂପେ ରାଜ୍ୟେ ଶିକ୍ଷାଦେଇ
ଉପଯୁକ୍ତ ଭୃତ୍ୟେ ରାଜ୍ୟଭାର ସମର୍ପଇ ।
ତପସ୍ୟା ଅର୍ଥେ ବନକୁ କଲାକ ଗମନ
ଦୋଷ ତେଜି ନିରୋଧିଲା ନିଜ ଇନ୍ଦ୍ରିଗଣ ।
ଶତବରଷ ରହିଲା ବନେ ଅନାହାରେ
ତାରତପେ ସୁପ୍ରସନ୍ନ ହୋଇ ବେଦବରେ ।
ବୋଇଲେ ଭୂପତି କିମ୍ପା କରୁଛୁ ତୁ ତପ
ପୃଥୁ ବୋଇଲେ ଯେ ବେନରାଜାମୋର ବାପ ।
ସେ ନରାଧମ ତା ରାଜ୍ୟେ ପାପ ଆଚରିବ
ବିଷ୍ଣୁଚକ୍ର ତାର ଶିର ତକ୍ଷଣେ ଛେଦିବ ।
କାୟମନ ବଚନରେ ହେଲେ ପାପାଚାରୀ
ତା ଶିର ଛିଡ଼ି ପଡ଼ିବ ପକ୍ୱଫଳ ପରି ।
ଏହି ବର ମାଗୁଅଛି ଆହେ ସୁରେଶ୍ୱର
ପ୍ରଜାପାପେ ଲିପ୍ତଯେହ୍ନେ ନୋହିବେ ପିଅର ।
ଆହେ ଚତୁର୍ମୁଖ ବ୍ରହ୍ମା ତୋତେ ନମସ୍କାର
ପ୍ରସନ୍ନ ହୋଇଲ ଯେବେ ଦିଅ ଏହିବର ।
ବ୍ରହ୍ମା ବୋଇଲେରେ ପୃଥୁ ନିଶ୍ଚୟ ତାହେବ
ତୋଯୋଗୁଁ ପବିତ୍ରହୋଇ ବିଷ୍ଣୁଲୋକେଯିବ ।
ବର ଦେଇ ଚଳିଗଲେ ତହୁଁ ବେଦବର
ପୃଥୁ ଫେରି ଆସି ପୁଣି ନେଲେ ରାଜ୍ୟଭାର ।
ପୃଥୁରାଜ୍ୟେ ପାପଚାରୀ ନ ରହିଲେ ଜଣେ
ସୁଦର୍ଶନଚକ୍ର ବୁଲୁଥାଇ ଅନୁକ୍ଷଣେ ।
ଦାନଧର୍ମ କରି ପ୍ରଜା ସଦାଚାରୀ ହେଲେ
ପୃଥୁ ପରସାଦେ ସର୍ବେ ସୁଖରେ ରହିଲେ ।
ଦୀନ ଗୋପୀନାଥ ବୋଲେବୋଲ ହରିହରି
ହରି ଏକା ଭବସିନ୍ଧୁ କରି ପାରେ ପାରି ।

ଇତି ଶ୍ରୀ ପଦ୍ମପୁରାଣେ ଭୂମିଖଣ୍ଡେ ବେନୋ-
କୃତ ପୃଥୁ ପ୍ରଶଂସା ଚରିତେ
ଚତୁର୍ବିଂଶତ୍ୟଧିକଶତ-
ତମୋଽଧ୍ୟାୟଃ ।



## ପଞ୍ଚବିଂଶତ୍ୟଧିକଶତ ଅଧ୍ୟାୟ

### ବେନର ଅଶ୍ୱମେଧାଦିଯଜ୍ଞ ଓ ସଶରୀରେ ବିଷ୍ଣୁଲୋକେ ଗମନ ଏବଂ ଭୂମି-ଖଣ୍ଡର ଫଳଶ୍ରୁତି

ସୂତ ବୋଇଲେ ଧାର୍ମିକ ପୃଥୁ ମହାରାୟେ ।
ପିତା ଆଜ୍ଞାପାଇ ଯାଗ ସାମଗ୍ରୀ ଭିଆଏ ।
ନାନାଦେଶରୁ ବ୍ରାହ୍ମଣ ନିମନ୍ତ୍ରିଣ ଆଣି
ଅଶ୍ୱମେଧ ଯଜ୍ଞ କଲେ ବେନ ନୃପମଣି ।
ଅସଂଖ୍ୟଦାନ ସେ ଦେଲେ ବିପ୍ରଙ୍କ ହସ୍ତରେ
ତହୁଁ ବିଷ୍ଣୁଲୋକେ ରାଜା ଗଲେ ସଶରୀରେ ।
ଶ୍ରୀବିଷ୍ଣୁ ସହିତେ ନିତ୍ୟ କରନ୍ତି ବିହାର
ଏ ବେନରାଜା ଚରିତ ସର୍ବ ପାପହର ।
ଆବର ଏ ସର୍ବଦୁଃଖ ବିନାଶନକାରୀ
କହିଲି ମୁଁ ତୁମ୍ଭ ଆଗେ ସକଳ ବିସ୍ତାରି ।
ପିତା ସ୍ୱର୍ଗଯାନ୍ତେ ତହୁଁ ପୃଥୁ ନରପତି
ତିନିଭୁବନ ସହିତ ଯେ ସାଗର ପୃଥ୍ୱୀ ।
ଦୋହନ କରି ବିପ୍ରଙ୍କୁ କଲା ସୁରଞ୍ଜିତ
ଭୂମିଖଣ୍ଡର ମହିମା ଶୁଣ ଦେଇ ଚିତ୍ତ ।
ଆଦ୍ୟସୃଷ୍ଟି ଖଣ୍ଡ ତହୁଁ ପୁଣି ଭୂମିଖଣ୍ଡ
ଏ ଭୂମିଖଣ୍ଡ ଅଟଇ ଜାଣ ପୁଣ୍ୟଭାଣ୍ଡ ।
ଏଥିରୁ ଯେ ଏକଶ୍ଳୋକ ମନଦେଇ ଶୁଣେ
ଦିନକର ପାପନାଶ ଯାଇ ତତକ୍ଷଣେ ।
ବିଶୁଦ୍ଧଭାବେ ଯେ ଶୁଣେ ଏକଇ ଅଧ୍ୟାୟ
ତାର ପୁଣ୍ୟ କହି ନୋହେ ହେ ବିପ୍ର ନିଚୟ ।
ଉତ୍ତମ ବିପ୍ରକୁ ଡାକିଆଣି ପର୍ବଦିନେ
ଯେ ଫଳ ହୁଅଇ ଜାଣ ଗୋସହସ୍ର ଦାନେ ।
ସେ ଫଳ ପାଇ ଶ୍ରୀବିଷ୍ଣୁ ହୁଅନ୍ତି ପ୍ରସନ୍ନ
କଳିଯୁଗେ ଯେ ପଢ଼ଇ ଏ ପଦ୍ମପୁରାଣ ।
ବାଧାବିଘ୍ନ ନ ଘଟଇ କଦାପି ତାହାକୁ
ବ୍ୟାସ ବୋଇଲେ କିହେତୁ କହ ତା ଆମ୍ଭଙ୍କୁ ।
ବ୍ରହ୍ମା ବୋଇଲେ ଯେ ଅଶ୍ୱମେଧେଯେଉଁଫଳ
ଏ ପଦ୍ମପୁରାଣେ ମିଳେ ସେ ଫଳ ସକଳ ।
କଳିଯୁଗେ ସୁଦାରୁଣ ନାନା ଦୁଃଖ ଯେତେ
ସବୁ ତୁଟିଯାଏ ଏହା ଶୁଣଇ ଯେ ନିତ୍ୟେ ।

କଳିଯୁଗେ ଅଶ୍ୱମେଧ ନ ପାରିବେ କରି
ଏ ପୁରାଣ ଜାଣ ଅଶ୍ୱମେଧ ଯଜ୍ଞସରି ।
ଅଶ୍ୱମେଧ ଯଜ୍ଞେ ସ୍ୱର୍ଗ ମୋକ୍ଷଫଳ ମିଳେ
ପୁଣ୍ୟକରି ନପାରନ୍ତି ଗୋପୀ କେତେବେଳେ ।
ମହାପାପୀ ଅଟନ୍ତି ଯେ କଳିଯୁଗ ନରେ
ଏ ପୁଣ୍ୟ ପୁରାଣ ପଦ୍ମ ନାମକୁ ଯେ ଧରେ ।
ପଢ଼ିଲେ ଶୁଣିଲେ ପୁଣ୍ୟ ଅଶ୍ୱମେଧ ତୁଲ୍ୟ
ନୋହିଲେ ନରକାର୍ଣ୍ଣବ ଭୋଗହିଁ କେବଳ ।
ଚଉବର୍ଗ ସାଧନ ଯେ ଏ ପୁଣ୍ୟ ପୁରାଣ
ଶୁଣ ଯାମୁଖୁଁ କରିବ ଏହାକୁ ଶ୍ରବଣ ।
ଏ ପଦ୍ମପୁରାଣ ଶୁଣୁଥାଇଁ ଯେଉଁନର
ତା ମୁଖୁଁ ଶୁଣିଲେ ସାଧ ଚଉବର୍ଗ ତାର ।
ଅଶ୍ୱମେଧ ଯଜ୍ଞ ଆଦି ନଷ୍ଟ କଳିଯୁଗେ
ବେଦ ବେଦାଙ୍ଗ ରହନ୍ତି ଯାଇଁ ପୁଣି ସ୍ୱର୍ଗେ ।
ଏଣୁ ଆହେ ମହାମତି ଶ୍ରଦ୍ଧାରେ ଯେ ନର
ଭଗବତ ପରାୟଣ ଧର୍ମାତ୍ମା ଆବର ।
ଭାର୍ଯ୍ୟା ପୁତ୍ର ସହିତରେ ଶୁଣିବ ପୁରାଣ
ପ୍ରଥମେ ଶ୍ରବଣେ ଶ୍ରଦ୍ଧା ବଳଇ ସେ ପୁଣ ।
ଶୁଣିଲା ବେଳେ ଯେ ବାଧାବିଘ୍ନ ନ ଘଟଇ
ବକ୍ତାର ଶ୍ରୋତାର ଯେବେ ଅଶ୍ରଦ୍ଧା ହୁଅଇ ।
ଶୁଣିଲା ବେଳେ ଯେବେ କି ଜନମଇ ଲୋଭ
ଦାରୁଣ ମହାମୋହକୁ ପଠାନ୍ତି ମାଧବ ।
ସେ ମୋହ ସେହି ଶ୍ରୋତାକୁ ବିନାଶ କରଇ
ଦୋଷୀ ଯେ ଦୋଷ ଖୋଜଇ ନିନ୍ଦୁକନିନ୍ଦଇ ।
ପାପୀ ଯେ ନାନାଦି ବିଘ୍ନ ତହିଁରେ ଘଟାଇ
ଏହି ବିଘ୍ନମାନ ନ୍ୟାସ ତହିଁରେ ଅଛଇ ।
ଯେବେ କି ବିଘ୍ନ ଘଟିବ ହୋମ ଯେ କରିବ
ବଇଷ୍ଣବ ମହାମନ୍ତ୍ରେ ଆହୁତି ଯେ ଦେବ ।
ବିଷ୍ଣୁ ସୁକ୍ତରେ ବା ବିଷ୍ଣୁ ବିରାଟ ମନ୍ତ୍ରରେ
ସହସ୍ର ଶୀର୍ଷାମନ୍ତ୍ରରେ ଆବ୍ରହ୍ମ ମନ୍ତ୍ରରେ ।
ଇଦଂ ବିଷ୍ଣୁମନ୍ତ୍ରେ ଅବା ତ୍ରିଅମ୍ବିକ ମନ୍ତ୍ରେ
ଦ୍ୱାଦଶାକ୍ଷର ମନ୍ତ୍ରେ ବା ବୃହସାମ ମନ୍ତ୍ରେ ।
ହୋମ କଲେ ବିଘ୍ନବାଧା ନ ରହିବ କିଛି
ଯାହାର ହୋମ କରିବ ସତ୍ୟବତୀ ବସି ।
ଶଏ ଆଠ ଆହୁତି ଦେବତା ମନ୍ତ୍ରେ ଦେବ
ପଳାଶକାଠ ସମିଧ ତହିଁ ଲୋଡ଼ା ହେବ ।

ତିଳ ମିଶାଇଣ ଦେବ ଘୃତରେ ଆହୂତି
ଗ୍ରହଙ୍କୁ ପୂଜା କରିବ ଥାପି ଗଣପତି ।
ସୁରେଶ୍ୱରୀ ଶାରଦାଙ୍କୁ ପୂଜିବ ଆବର
ଅଗ୍ନି ମହାମାୟା ଚଣ୍ଡୀ କ୍ଷେତ୍ର ପାଳଙ୍କର ।
ପୂଜାସାରି ସ୍ୱ ସ୍ୱ ମନ୍ତ୍ରେ ଆହୁତି ଯେ ଦେବ
ତିଳ ତଣ୍ଡୁଳ ଘୃତରେ ହୋମ ଯେ କରିବ ।
ବ୍ରାହ୍ମଣଙ୍କୁ ଧନ ଦାନ କରିବ ହେ ତାତ
ଦାନର ଦକ୍ଷିଣା ଦେବ ଧେନୁର ସହିତ ।
ଏହାକଲେ ବିଘ୍ନ ସବୁ ନ ଘଟିବ ତହିଁ
ପୁରାଣ ପାଠର ଫଳ ସାଙ୍ଗେ ସାଙ୍ଗେ ପାଇ ।
ନ କଲା ଲୋକର ବିଘ୍ନ କହୁଅଛି ଶୁଣ
ରୋଗ ଜନମଇ ଅଙ୍ଗେ ପୀଡ଼ାପାଏ ପୁଣ ।
ଭାର୍ଯ୍ୟା ଶୋକ ପୁତ୍ରଶୋକ ହୋଏ ଧନହାନି
ନାନାରୋଗେ ନାନା କଷ୍ଟପାଏ ଆହେ ମୁନି ।
ନିର୍ଦ୍ଧନୀ ଲୋକ ଶୁଣିବ ଉପବାସ କରି
ଏକାଦଶୀରେ ଭକ୍ତିରେ ପୂଜିବ ଶ୍ରୀହରି ।
ଷୋଳଗୋଟି ଉପଚାର ତାଙ୍କୁ ସମର୍ପିବ
ଚିତ୍ତ ଅନୁସାରେ ବିପ୍ରଗଣେ ଭୋଜିଦେବ ।
କେଶବଙ୍କୁ ଘୃତ ଅନ୍ନ କରି ନିବେଦିବ
ବାନ୍ଧବ ଭାରିଯା ପୁତ୍ର ଘେନି ତା ଭୁଞ୍ଜିବ ।
ସମ୍ପୂର୍ଣ୍ଣ ପୁରାଣଯାକ କରିବ ଶ୍ରବଣ
ଚତୁର୍ବର୍ଗ ଫଳ ସେହି ପାଏ ତତକ୍ଷଣ ।
ସତ୍ୟ ଯୁଗର ଯେ ନରେ ନିଷ୍ପାପୀ ଅଟନ୍ତି
ସମ୍ପୂର୍ଣ୍ଣ କରି ଏ ପଦ୍ମ ପୁରାଣ ଶୁଣନ୍ତି ।
ପାଦ ସହିତେ ଏ ଜାଣ ଏକଲକ୍ଷ ଶ୍ଳୋକ
ପଦ୍ମପୁରାଣ ଶୁଣନ୍ତି ତ୍ରେତାଯୁଗ ଲୋକ ।
ଅର୍ଦ୍ଧଲକ୍ଷ ଦ୍ୱିସହସ୍ର ଶ୍ଳୋକ ଏ ପୁରାଣ
ଚଉବର୍ଗ ଫଳପାନ୍ତି ଶ୍ରୋତା ବକ୍ତାଜନ ।
ଭୋଗ ଶେଷକରି ପୁଣି ହରିଙ୍କି ଲଭନ୍ତି
ଦ୍ୱାପରେ ଯେ ପରମାତ୍ମା ବ୍ରହ୍ମ ପ୍ରଜାପତି ।
ବାଇଶୀ ସହସ୍ର ଶ୍ଳୋକ ବୋଲି କହିଛନ୍ତି
କଳିଯୁଗେ ଏହାସଂଖ୍ୟା ଶୁଣ ମହାମତି ।
ସଂହିତା ସହିତେ ପୁଣି ଏ ପଦ୍ମପୁରାଣ
ଦ୍ୱାଦଶ ସହସ୍ର ଶ୍ଳୋକ ପଢ଼ାଯାଏ ପୁଣ ।
ବଇଷ୍ଣବଗଣ ଏହା ଶୁଣନ୍ତି ପଢ଼ନ୍ତି
ଚାରି ଯୁଗର ଏ ପଦ୍ମପୁରାଣ ଭକତି ।

ସଂହିତା ସହିତ ଏକ ଅର୍ଥ ଏକ ଭାବ
ଦ୍ୱାଦଶ ସହସ୍ର ଶ୍ଳୋକ ବିନାଶ ପାଇବ ।
ଏହା ଭୂମିଖଣ୍ଡ ହେବ କଳିଯୁଗେ ପୁଣି
ତାକୁ ଶୁଣି ପାପୁଁ ମୁକ୍ତ ହେବେ ସର୍ବପ୍ରାଣୀ ।
କିଛି ଦୁଃଖ କିଛି ରୋଗ ନ ରହିବ ଜାଣ
ତପ ଦାନ ଆଦିସବୁ ଛାଡ଼ି ଏ ପରାଣ ।
ଶୁଣିଲେ ସବୁ ପୁଣ୍ୟର ଫଳ ସେ ପାଇବେ
ସୃଷ୍ଟି ଖଣ୍ଡରୁ ଯେ ନରେ ଆରମ୍ଭ କରିବେ ।
ତହୁଁ ଭୂମିଖଣ୍ଡ ତହୁଁ ପୁଣି ସ୍ୱର୍ଗଖଣ୍ଡ
ପାତାଳ ଖଣ୍ଡ ଆବର ଉତ୍ତର ଯେ ଖଣ୍ଡ ।
ଏମନ୍ତେ ଏ ପାଞ୍ଚଖଣ୍ଡ ଏ ପଦ୍ମପୁରାଣ
ଭକତିରେ ଯେଉଁ ନରେ କରନ୍ତି ଶ୍ରବଣ ।
ଗୋ ସହସ୍ର ଦାନ ଫଳ ମିଳଇ ତାହାଙ୍କୁ
ସୁତମୁନି କହୁଛନ୍ତି ସମସ୍ତ ମୁନିଙ୍କୁ ।
ଭାଗ୍ୟବଳେ ଏହି ପାଞ୍ଚଖଣ୍ଡ ମିଳେ ଜାଣ
ମୋକ୍ଷହୁଏ ଯେ ଏହାକୁ କରଇ ଶ୍ରବଣ ।
ଦ୍ୱିଜ ଗୋପୀନାଥ ବୋଲେ ବୋଲହରିହରି
ହରି ବୋଇଲେ ସଂସାର ସିନ୍ଧୁ ଯିବ ତରି ।

ଇତି ଶ୍ରୀ ପଦ୍ମପୁରାଣେ ପଞ୍ଚପଞ୍ଚାଶ ସହସ୍ର ସଂହିତାୟାଂ ଭୂମିଖଣ୍ଡେ
ବେନୋପାଖ୍ୟାନେ ପଞ୍ଚବିଂଶତ୍ୟାଧିକ ଶତତମୋଽଧ୍ୟାୟଃ ।

**ସମ୍ପୂର୍ଣ୍ଣ**

# ଧର୍ମଗ୍ରନ୍ଥ ଷ୍ଟୋର

## ପ୍ରକାଶିତ ନୂତନ ପୁସ୍ତକ

ମା' ମହାକାଳୀ ଓ ଉଗ୍ରତାରିକା ପୁରାଣ

ଯୁଗେ ଯୁଗେ ମହାପୁରୁଷଙ୍କ ମହତ ଉପଦେଶ

ଶଗୁନ ବିଚାର ବା ଅଶୁଭ ସଂକେତ

ଘରୋଇ ଉଦ୍ୟୋଗ

ସିଲେଇ କଟିଂ ଓ ଏମ୍ବ୍ରୋଡ଼ରି ଶିକ୍ଷା

ଦୀନକୃଷ୍ଣ ପଦ୍ୟାବଳୀ

ପଣ୍ଡିତ ସାରସଂଗ୍ରହ ବା ଯାହା ଖୋଜିବ ତାହା ପାଇବ

ଶ୍ରୀମଦ୍ ଈଶ୍ୱରଗୀତା

ବୃହତ୍ ସ୍ତୁତି ମଞ୍ଜରୀ

ଶ୍ରୀ ଶିବସ୍ତବାଞ୍ଜଳି

ମୁକ୍ତି ପଥର ସହାୟକ ଆଧ୍ୟାତ୍ମିକ ପ୍ରବଚନମାଳା

ଶ୍ରୀରାମ କଥାମୃତ

ଭକ୍ତିତରଙ୍ଗ ଗଳ୍ପମାଳା

ପିଲାଙ୍କ ମହାଭାରତ କଥା

ଶ୍ରୀସାଇ ସତ୍‌ଚରିତ

ବୃହତ୍ ରାମାର୍ଚ୍ଚନ ଚନ୍ଦ୍ରିକା

ଶ୍ରୀକ୍ଷେତ୍ର ତତ୍ତ୍ୱ ଓ ଶ୍ରୀ ଜଗନ୍ନାଥଙ୍କ ନବକଳେବର

ମହର୍ଷି କୃଷ୍ଣ ଦ୍ୱୈପାୟନ ବେଦବ୍ୟାସ କୃତ

# ପଦ୍ମ ପୁରାଣ

## ବ୍ରହ୍ମଖଣ୍ଡ

ଲେଖକ : ଚୌଧୁରୀ ଶ୍ରୀ ମଧୁସୂଦନ ମହାପାତ୍ର

(ନୂତନ ମୁଦ୍ରଣ)

ପ୍ରକାଶକ :

ଧର୍ମଗ୍ରନ୍ଥ ଷ୍ଟୋର



ପ୍ରାପ୍ତିସ୍ଥାନ :

ଧର୍ମଗ୍ରନ୍ଥ ଷ୍ଟୋର

ପ୍ରତିଷ୍ଠାତା : ଶ୍ରୀ ବିଦ୍ୟାଧର ସାହୁ

ପ୍ରୋ : ମହିମା ପ୍ରସାଦ ସାହୁ

ଅଲିଶାବଜାର, କଟକ - ୭୫୩ ୦୦୨

ଫୋନ : ୨୫୦୮୨୯୬

# ସୂଚିପତ୍ର


| ବିଷୟ | ପୃଷ୍ଠାଙ୍କ |
|---|---|
| ମଙ୍ଗଳା ଚରଣ | ୧ |
| ହରିମନ୍ଦିର ଲେପନ ମାହାତ୍ମ୍ୟ | ୨ |
| ଦୀପଦାନ ମାହାତ୍ମ୍ୟ | ୩ |
| ଜୟନ୍ତୀ ମାହାତ୍ମ୍ୟ | ୪ |
| ପୁତ୍ରଲାଭ ଉପାୟ କଥନ | ୫ |
| ବୈକୁଣ୍ଠ ପ୍ରାପ୍ତିର ଉପାୟ | ୬ |
| ରାଧାଷ୍ଟମୀ ମାହାତ୍ମ୍ୟ | ୬ |
| ସମୁଦ୍ର ମନ୍ଥନୋଦ୍ୟୋଗ ବର୍ଣ୍ଣନ | ୭ |
| ସମୁଦ୍ର ମନ୍ଥନ | ୮ |
| ଲକ୍ଷ୍ମୀ ଉତ୍ପତ୍ତି କଥନ | ୯ |
| ଲକ୍ଷ୍ମୀବ୍ରତ ବିବରଣ | ୧୦ |
| ବ୍ରାହ୍ମଣ ପାଳନ ଉପାଖ୍ୟାନ | ୧୩ |
| ଜନ୍ମାଷ୍ଟମୀ ମାହାତ୍ମ୍ୟ କଥନ | ୧୪ |
| ବ୍ରାହ୍ମଣ ମାହାତ୍ମ୍ୟ କଥନ | ୧୭ |
| ହରିବାସର ମହାତ୍ମ୍ୟ କଥନ | ୧୮ |
| ହରିପରିଚର୍ଯ୍ୟା ମାହାତ୍ମ୍ୟ କଥନ | ୧୯ |
| ବିଷ୍ଣୁପାଦୋଦକ ମାହାତ୍ମ୍ୟ | ୨୦ |
| ଅଗମ୍ୟା ଗମନ, ପାପାପନୋଦନ, ଉପାୟ ବର୍ଣ୍ଣନ | ୨୦ |
| ବିବିଧ ପାପନୋଦନପାୟ ବର୍ଣ୍ଣନ | ୨୨ |
| ଦାମୋଦର ପୂଜା ମାହାତ୍ମ୍ୟ କଥନ | ୨୩ |
| କାର୍ତ୍ତିକମାସ କୃତ କଥନ | ୨୪ |
| ତୁଳସୀ ମାହାତ୍ମ୍ୟ ବର୍ଣ୍ଣନ | ୨୬ |
| ବିଷ୍ଣୁ ପଞ୍ଚକ ମାହାତ୍ମ୍ୟ କଥନ | ୨୭ |
| ବିବିଧ ଦାନ ମାହାତ୍ମ୍ୟ ବର୍ଣ୍ଣନ | ୨୯ |
| ନାମକୀର୍ତ୍ତନ ବିଧାନ ବର୍ଣ୍ଣନ | ୩୦ |
| ପ୍ରତିଶ୍ରୁତି ପାଳନ ମାହାତ୍ମ୍ୟ କଥନ | ୩୨ |




# ପଦ୍ମ ପୁରାଣ

## ବ୍ରହ୍ମଖଣ୍ଡ

### ମଙ୍ଗଳାଚରଣଂ

(ଓଁ ନମୋଃ ଭଗବତେ ବାସୁଦେବାୟ ।)

ଗଣେଶ ବ୍ରହ୍ମେଶ ସୁରେଶ ଶେଷାଃ
ସୁରାଶ୍ଚ ସର୍ବେ ମନବୋ ମୁନୀନ୍ଦ୍ରାଃ ।
ସରସ୍ୱତୀ ଶ୍ରୀ ଗିରିଜାଦିକାଶ୍ଚ
ନମନ୍ତି ଦେବାଃ ପ୍ରଣମାମି ତଂ ବିଭୁଂ ।।

ବନ୍ଦେ କୃଷ୍ଣଂ ଗୁଣାତୀତଂ ପରଂ ବ୍ରହ୍ମାଚ୍ୟୁତଂ ଯତଃ ।
ଆବିର୍ବଭୁବୁଃ ପ୍ରକୃତି ବ୍ରହ୍ମା ବିଷ୍ଣୁ ଶିବାଦୟଃ ।
ନାରାୟଣଂ ନମସ୍କୃତ୍ୟଂ ନରଂଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ଚୈବ୍ୟ ତତୋଜୟ ମୁଦୀରୟେତ୍ ।।

## ପ୍ରଥମ ଅଧ୍ୟାୟ

ଶ୍ରୀ ଶ୍ରୀ ଗଣେଶାୟ ନମଃ ।

ବନ୍ଦଇ ଶ୍ରୀ ଗଣନାଥ ଗଉରୀ କୁମର
ପୁଷ୍ପହାର ତୁଲ୍ୟ ମୋର କଣ୍ଠେ ବିଜେକର ।
ସତ୍ୟଯୁଗେ ଆଦିମାତା ଚରଣୁ ସମ୍ଭୁତ
ଅରୁପ ଅରୁଣ ଜ୍ୟୋତିଃ ଘଟ ବିଶ୍ୱରୂପ ।
ବ୍ୟାସଦେବଙ୍କ ରଚିତ ଏ ପଦ୍ମପୁରାଣ
ପ୍ରାକୃତ ଭାଷାରେ ମୁହିଁ କରିବି ବର୍ଣ୍ଣନ ।
ବନ୍ଦଇ ହର ଗଉରୀ କଇଳାସ ବାସୀ
ତୁମ୍ଭେ ଦୟାକର ମୋର କଣ୍ଠତଟେ ବସି ।
ସରସ୍ୱତୀ ଭଗବତୀ ପାଦେ ନମସ୍କାର
ଚରଣେ ଦୟିନୀ ମୋର କଣ୍ଠେ ବିଜେକର ।
ତୁମ୍ଭେ ଅନୁଗ୍ରହ କଲେ ଲେଖିବି ପୁରାଣ
ଜୟ ଜୟ ଦୀନବନ୍ଧୁ ଅଗତି ତାରଣ ।
ସର୍ବବ୍ୟାପୀ ବିଶ୍ୱପିତା ଅନାଦି କାରଣ
ତାହାଙ୍କ ଚରଣେ ମୁହିଁ କରୁଛି ପ୍ରଣାମ ।
ଗୁଣାତୀତ ପରଂବ୍ରହ୍ମ କୃଷ୍ଣଙ୍କ ଚରଣେ
ବାରମ୍ବାର ନମଇଁ ମୁଁ ପରସନ୍ନ ମନେ ।
ଦେବୀ ସରସ୍ୱତୀ ପାଦେ କରିଣ ପ୍ରଣାମ
ଜୟ ଜୟ ଉଚ୍ଚାରିବ ସାଧୁମତିମାନ ।

ସବୁକଥା ଅଛି ପଦ୍ମଶ୍ରୀ ମହାପୁରାଣେ
ପୁରାଣ ମଧରେ ସାର ଅଟଇ ପ୍ରମାଣେ ।
ପୁରାଣରୁ ସଂଶୟ ଯେ ହୁଅଇ ଭଞ୍ଜନ
ହରିଭକ୍ତି ପ୍ରଦ ଆଉ ତତ୍ୱ ବିବର୍ଦ୍ଧନ ।
ଏକମନେ ଯେହୁ ଏହା କରେ ଅଧ୍ୟୟନ
ଅଥବା ଏକାଗ୍ରଚିତ୍ତେ କରଇ ଶ୍ରବଣ ।
ସକଳ କାମନା ତାର ପରିପୂର୍ଣ୍ଣ ହୁଏ
ମୁକ୍ତିକାମୀ ମୁକ୍ତିଲଭେ ମିଥ୍ୟା କଥା ନୋହେ ।
ଜୈମିନୀଙ୍କୁ ବ୍ୟାସଦେବ ଏହା କହିଥିଲେ
ଯାହା କହିଥିଲେ ତାହା ତୁମ୍ଭେ ଶୁଣ ଭଲେ ।
ପ୍ରଭୁଙ୍କ କୃପାରୁ ଏହା ଭାଷାରେ କହୁଛି
ସାଧୁଜନେ ମୋର ଦୋଷ ନଧରିବ କିଛି ।

### ଶୌନକ ଉବାଚ

ଶୌନକ ପୁଛନ୍ତି ସୁତ କହ ତୁମ୍ଭେ ମୋତେ
ଏ ପଦ୍ମପୁରାଣ ମୁହିଁ ଶୁଣିବି କିଋତେ ।
କଳିକାଳେ ପ୍ରାଣୀମାନେ କୁକର୍ମ କରିଣ
କିପରି ଉଦ୍ଧାରହେବେ କହ ମୋତେ ପୁଣ ।

**ସୁତ ଉବାଚ**

ଶୁଣିଣ ସେ ସୁତମୁନି କହନ୍ତି ବୁଝାଇ
ବୈଷ୍ଣବ ଲକ୍ଷଣ ମାର୍ଗ ଶୁଣ ମନଦେଇ ।

**ବୈଷ୍ଣବଲକ୍ଷଣ ବର୍ଣ୍ଣନ**

ସାଧୁସଙ୍ଗ ଗୁଣେ ଶାସ୍ତ୍ର ଶ୍ରବଣ ହୁଅଇ ।
ତହିଁରୁ ସେ ହରିଭକ୍ତି ଜ୍ଞାନ ହୋଇଥାଇ
ବୈଷ୍ଣବ ଗୁଣଟି ଯାକୁ ଶ୍ରଦ୍ଧା ନ ଲାଗଇ ।
ବ୍ରାହ୍ମଣ ହୋଇଲେ ସେହି ଚଣ୍ଡାଳ ବୋଲାଇ
କୃଷ୍ଣର କଥାକୁ ଯେହୁ କର୍ଣ୍ଣପଥେ ଶୁଣେ
ବୈଷ୍ଣବ ବୋଲିଣ ତାକୁ ଶାସ୍ତ୍ରମଧ୍ୟେ ଗଣେ ।
କୃଷ୍ଣକଥାରମ୍ଭେ ଯେହୁ ବିଘ୍ନକରେ ଜାତ
ଶତକଳ୍ପଯାଏ ଯେହୁ ନରକେ ପତିତ ।
ପୁରାଣ ଶୁଣି ଯେ ନିନ୍ଦା ଉପହାସ କରେ
ରୌରବ ନର୍କରେ ସେହୁ ନିଶ୍ଚେ ବାସକରେ ।
କୃଷ୍ଣଚରିତ ଶୁଣି ଯେ ଆନନ୍ଦିତ ହୁଏ
ବ୍ରହ୍ମହତ୍ୟା ସ୍ତିରୀହତ୍ୟା ସବୁ ନାଶଯାଏ ।
ଶ୍ରଦ୍ଧାରେ ଯେ କୃଷ୍ଣନାମ କର୍ଣ୍ଣେ ଶୁଣୁଥାଇ
ବହୁପାପ କଲେ ମଧ୍ୟ ବିନାଶ ହୁଅଇ ।
ବୈଷ୍ଣବର ପାଦରଜ ମସ୍ତକେ ଯେ ଧରେ
ସବୁ ପାପ ନାଶି ସେହୁ ବସେ ବୈକୁଣ୍ଠରେ ।
କାମ, କ୍ରୋଧ, ଲୋଭ, ମୋହ, ହିଂସାଯାର ନାହିଁ
ପିତୃଭକ୍ତ ଦୟାଯୁକ୍ତ ଯେ ପ୍ରାଣୀ ଅଟଇ ।
ପରିହିତେ ରତ ସତ୍ୟଭାଷୀ ଯେହୁ ହୁଏ
ପରସ୍ତିରୀଙ୍କୁ ମାତାର ପ୍ରାୟେ ମଣୁଥାଏ ।
ଦେବେ ଦ୍ୱିଜେ ବ୍ରତେ ଯାର ଭକ୍ତି ରହିଥାଏ
ତୁଳସୀମାଳା ଧରିଣ ହରିନାମ ଗାଏ ।
ତୁଳସୀର ପତ୍ର ଯେହୁ କର୍ଣ୍ଣେ ଥାଏ ଘେନି
ବୈଷ୍ଣବ ବୋଲିଣ ତାକୁ ଶାସ୍ତ୍ରରେ ବଖାଣି ।
ପାଷାଣ୍ଡସଙ୍ଗ ବ୍ରାହ୍ମଣେ ଦ୍ୱେଷ ଯାର ନାହିଁ
ଶ୍ରଦ୍ଧାରେ ହିରପୂଜା ଯେ ନିତ୍ୟ କରୁଥାଇ ।
କନ୍ୟାଦାନ ଅତିଥିର ସେବା ଯେହୁ କରେ
ବୈଷ୍ଣବ ବୋଲିଣ ତାକୁ ବୋଲନ୍ତି ସଂସାରେ ।
ଯାହାର ଗୃହରେ ଶାଳଗ୍ରାମ ପୂଜାପାଏ
ବ୍ରାହ୍ମଣ ଦ୍ରବ୍ୟକୁ ବିଷପରି ମଣୁଥାଏ ।
ଶ୍ରଦ୍ଧାରେ ଯେ ଦୀପଦାନ କରେ ଶ୍ରୀହରିରେ
ବୈଷ୍ଣବ ବୋଲିଣ ତାକୁ ବୋଲନ୍ତି ସଂସାରେ ।
ବୈଷ୍ଣବଲକ୍ଷଣ ଯେହୁ ପଢ଼ଇ ଶ୍ରଦ୍ଧାରେ
ସବୁପାପା ନାଶି ସେହୁ ବସେ ବୈକୁଣ୍ଠରେ ।
ବ୍ରହ୍ମଖଣ୍ଡ ମନୋହର ଲଳିତ ଆଖ୍ୟାନ
ସମସ୍ତଙ୍କ ହିତେ ମୁହିଁ କରିଲି ବଖାଣ ।
ଏ ପଦ୍ମ ପୁରାଣ ଅଟେ ସୁଧାମୟ ବାଣୀ
ମଧୁସୂଦନ ଭାବଇ କମ୍ପୁ ଚକ୍ରପାଣି ।

ଇତି ଶ୍ରୀ ପଦ୍ମପୁରାଣେ ବ୍ରହ୍ମଖଣ୍ଡେ ବୈଷ୍ଣବଲକ୍ଷଣନାମ ପ୍ରଥମ ଅଧ୍ୟାୟ ।



## ଦ୍ୱିତୀୟ ଅଧ୍ୟାୟ

### ହରିମନ୍ଦିର ଲେପନ ମାହାତ୍ମ୍ୟ

**ଶୌନକ ଉବାଚ**

ଶୌନକ ପୃଚ୍ଛନ୍ତି ସୂତ ମୁନି ମୁଖ ଚାହିଁ
ପଦ୍ମପୁରାଣର ଭେଦ କହିବ ବୁଝାଇ ।
କେଉଁ କର୍ମଫଳେ ନର ବୈକୁଣ୍ଠକୁ ଯାଇ
କେଉଁ କର୍ମକଲେ ନର ନରକେ ପଡ଼ଇ ।

**ସୁତ ଉବାଚ**

ସୁତ କହୁଛନ୍ତି ସେହି ଅତି ଗୁପ୍ତକଥା
ଯାହା ପଚାରିଲ ମୁନି ଶୁଣ ସେହି କଥା ।
ଯେ ବ୍ୟକ୍ତି ହରିମନ୍ଦିର ଶୁଦ୍ଧେ ଧୌତକରେ
ନିଶ୍ଚୟ ସେ ଅନ୍ତେଯାଇ ବସେ ବୈକୁଣ୍ଠରେ
ପୂର୍ବେ ଦ୍ୱାପର ଯୁଗରେ ଦଣ୍ଡକ ନାମେଣ
ଚୋର ମିଥ୍ୟାବାଦି ମିତ୍ରଘ୍ନ ସେକ୍ରୂର ପୁଣ ।
ପରସ୍ତ୍ରୀ ହରଣ ସେହୁ ସୁରାପାନ କରେ
ଶରଣାଗତ ଜନଙ୍କୁ ଗୋଡ଼ାଇଣ ମାରେ ।
ଏକଦିନ ସେହି ଚୋର ମନ୍ଦିରେ ପଶିଲା
କାଦୁଅ ମେଞ୍ଚାଏ ତାର ପାଦେ ଲାଗିଥିଲା ।
କାଦୁଅ ପୋଛିଣ ଭିତରକୁ ସେହି ଗଲା
କାଦୁଅ ଲାଗିଣ ଭୂମି ସମତଳ ହେଲା ।
ଦ୍ୱାର ଫିଟାଇ ଗୃହରେ ପ୍ରବେଶ ସେ ହେଲା
ରାଧାକୃଷ୍ଣ ଶୋଇଛନ୍ତି ପଲଙ୍କେ ଦେଖିଲା ।
ତହୁଁ ସେ ପ୍ରଣାମ କରି ମନେ ମନେ ଭାବି
ବୋଇଲା ଦ୍ରବ୍ୟନେବି କି ପ୍ରତିମାକୁ ନେବି ।

ପ୍ରତିମା ଚୋରାଇ ନେଇ ମୁହିଁ କି କରିବି
ଆନ ଦ୍ରବ୍ୟ ନେଲେ ସିନା କୁଟୁମ୍ବ ପୋଷିବି ।
ଏହିପରି ମନେ ଭାବି ବାନ୍ଧି କେତେ ଦ୍ରବ୍ୟ
ଯାଉଁ ଯାଉଁ ପଥରେ ଯେ ପଡ଼ିଥିଲା ସର୍ବ ।
ସେ ଶବ୍ଦରେ ଲୋକମାନେ ଉଠିଣ ଅଇଲେ
ଚୋରପଳାଇଯିବାର ନେତ୍ରେ ସେ ଦେଖିଲେ ।
ପଥରେ ଚୋରକୁ କାଳ ସର୍ପ ଯେ ଦଂଶିଲା
ନିଷ୍ପାପ ଦେହରେ ପୁଣି ମୃତ୍ୟୁ ସେ ଲଭିଲା ।
ଯମଦୂତମାନେ ନେଇ ରାଜାପାଶେ ଦେଲେ
ଚିତ୍ରଗୁପ୍ତ ପାଞ୍ଜି ଦେଖି ଫଳ ଯେ କହିଲେ ।
ପୃଥିବୀରେ ସବୁପାପ କରିଛି ଏ ନର
ସୁକୃତ ଏହାର ଅଛି ପରା କିଞ୍ଚିତର ।
ଚୋରିକରି ଯାଇଥିଲା ବିଷ୍ଣୁଙ୍କ ମନ୍ଦିର
କାଦୁଅ ପୋଛିଣ ସମତଳକଲା ଦ୍ୱାର ।
ଭକ୍ତିଭାବେ ରାଧା ଶ୍ୟାମ କଲାକ ଦର୍ଶନ
ଦେହୁ ତାର ପାପରାଶି ହୋଇଅଛି ଲୀନ ।
ଏହା ଶୁଣି ଯମରାଜା ସୁବର୍ଣ୍ଣ ରଥରେ
ବସାଇଣ ତାକୁ ଛାଡ଼ିଦେଲା ବୈକୁଣ୍ଠରେ ।
ମନ୍ଦିର ଲିପିବାରୁ ସେ ବୈକୁଣ୍ଠ ପାଇଲା
ମଧୁସୂଦନ ଦର୍ଶନେ ପାପ କ୍ଷୟ ଗଲା ।
ସୁତ ମୁନି କହିଲେ ଯେ ଶୌନକ ଆଗର
ହରିମନ୍ଦିର ଲେପନ ପଦ୍ମପୁରାଣର ।
ଶୁଣିଣ ସୁଜନମାନେ ବୋଲ ହରିନାମ
ମଧୁସୂଦନ କହଇ ମୁହିଁ ମୂଢ଼ଜନ ।

ଇତି ଶ୍ରୀ ପଦ୍ମପୁରାଣେ ବ୍ରହ୍ମଖଣ୍ଡେ ହରିମନ୍ଦିର ଲେପନ
ମାହାତ୍ମ୍ୟ ନାମ ଦ୍ୱିତୀୟ ଅଧ୍ୟାୟ ।



## ତୃତୀୟ ଅଧ୍ୟାୟ

### ଦୀପଦାନ ମହାତ୍ମ୍ୟ

ସୁତକହିଲେ ଶୌନକ ଶୁଣ ମନଦେଇ
କାର୍ତ୍ତିକବ୍ରତ କରିଲେ କେଉଁ ଫଳ ପାଇ ।
ତାହା ମୁହିଁ କହୁଅଛି ମନଦେଇ ଶୁଣ
କାର୍ତ୍ତିକବ୍ରତ କରିଲେ ବୈକୁଣ୍ଠେ ଗମନ ।
କାର୍ତ୍ତିକେ ମତ୍ସ୍ୟ ମୈଥୁନ ତ୍ୟାଗ ନକରିଲେ
ମର୍ତ୍ତ୍ୟରେ ଶୂକର ହୋଇ ଜନ୍ମଲାଭ କରେ ।
ବିଷ୍ଣୁଙ୍କୁ ତୁଳସୀପତ୍ରେ ପୂଜାକରେ ଯେହୁ
କୋଟି ଅଶ୍ୱମେଧ ଫଳ ଲାଭକରେ ସେହୁ ।
ଫଳ ପୁଷ୍ପ ଦୀପ ଯେହୁ କାର୍ତ୍ତିକରେ ଦିଏ
କୋଟି ଜନ୍ମ କୃତ ପାପ ତାର କ୍ଷୟ ହୁଏ ।
କାର୍ତ୍ତିକେ ବିଷ୍ଣୁଙ୍କୁ ପୂଜାକଲେ ପଦ୍ମପୁଷ୍ପେ
ବିଷ୍ଣୁ ପଦ ପ୍ରାପ୍ତିହୋଇ ବୈକୁଣ୍ଠରେ ବସେ ।
କାର୍ତ୍ତିକ ମାସରେ ପ୍ରାତଃ ସ୍ନାନ କରେ ଯେହୁ
ସନ୍ଧ୍ୟାରେ ପ୍ରଦୀପ ଦାନ କରେ ସୂର୍ଯ୍ୟ ଥାଇଁ ।
ହରିଗୃହେ ଘୃତ ଦୀପ ଜାଳିଲେ ଶ୍ରଦ୍ଧାରେ
ବ୍ରହ୍ମହତ୍ୟା ପାପନାଶି ବସେ ବୈକୁଣ୍ଠରେ ।
ତ୍ରେତା ଯୁଗରେ ବୈକୁଣ୍ଠ ବୋଲିଣ ବ୍ରାହ୍ମଣ
ସରଳ ସୁଶୀଳ ସେହୁ ଅଟେ ପୁଣ୍ୟବାନ ।
କାର୍ତ୍ତିକ ମାସେ ମନ୍ଦିରେ ଘୃତ ଦୀପଦେଇ
ଚାଲିଗଲା ପରେ ଏକ ମୂଷିକ ଆସଇ ।
ମୂଷିକ ଆସିଣ ଦୀପୁଁ ଘୃତ ପାନକଲା
ଘୃତ ପିଇବାରୁ ଦୀପ ଜ୍ୱଳିଣ ଉଠିଲା ।
ଅଗ୍ନି ଦର୍ଶନରେ ମୂଷା ବେଗେ ପଳାଇଲା
ସର୍ପଦଂଶନରେ ପଥେ ତାର ପ୍ରାଣଗଲା ।
ମୂଷିକକୁ ନେବାପାଇଁ ଯମଦୂତେ ଗଲେ
ପାଶରେ ବାନ୍ଧନ୍ତେ ବିଷ୍ଣୁଦୂତ ସେ ଅଇଲେ ।
ବୋଇଲେ ଏହାକୁ ବାନ୍ଧି ନେଉଅଛ କାହିଁ
ତାର ପୁଣ୍ୟ କଥା ପରା ତୁମ୍ଭେ ଜାଣ ନାହିଁ ।
ବିଷ୍ଣୁଙ୍କ ମନ୍ଦିରେ ଦୀପ ତେଜୁଥିଲା ସେହି
ସେହି ଫଳୁ ଏବେ ବିଷ୍ଣୁପଦକୁ ଲଭଇ ।
ଏହିପରି ଯଦି କେହି ବିଷ୍ଣୁଙ୍କ ମନ୍ଦିରେ
ଅଶ୍ରଦ୍ଧା ହୋଇ କାର୍ତ୍ତିକେ ଦୀପ ଦାନକରେ ।
ତଥାଚ ତା ପୁଣ୍ୟ କେହୁ କହି ନ ପାରିବ
ନିଶ୍ଚେ ମୃତ୍ୟୁଅନ୍ତେ ସେହୁ ବୈକୁଣ୍ଠ ପାଇବ ।
ବିଷ୍ଣୁଦୂତ ଏହାକହି ମୂଷିକକୁ ନେଲେ
ଶତମନ୍ୱନ୍ତର ଯାଏ ବୈକୁଣ୍ଠେ ରଖିଲେ ।
ମର୍ତ୍ତ୍ୟେ ଏକ ରାଜକନ୍ୟା ହୋଇ ଜାତହେଲା
ପୁତ୍ରପୌତ୍ରାଦି ନେଇଣ ସୁଖେ ବାସ କଲା ।

ଦୀପ ମାହାତ୍ମ୍ୟ ଶୁଣିଣ ହୁଅ ଏବେ ତୋଷ
ନ ଦଣ୍ଡିବ ଯମ ଆଉ ଧରି କାଳଫାଶ ।
ମଧୁସୂଦନ ଭାବଇ ସଦା ପଦ୍ମପାଦ
ସୁତ କହିଥିଲେ ପଦ୍ମପୁରାଣରେ ଭେଦ ।

ଇତି ଶ୍ରୀ ପଦ୍ମପୁରାଣେ ବ୍ରହ୍ମଖଣ୍ଡେ ଦୀପଦାନ ମାହାତ୍ମ୍ୟେ ନାମ ତୃତୀୟ ଅଧ୍ୟାୟ ।



# ଚତୁର୍ଥ ଅଧ୍ୟାୟ

## ଜୟନ୍ତୀ-ମାହାତ୍ମ୍ୟ

ସୁତମୁନି କହନ୍ତି ଯେ ଶୌନକ ଆଗର
ଜୟନ୍ତୀବ୍ରତ ଶୁଣିଣ ପାପକର ଦୂର ।
ଏକଦା ନାରଦ ଦେବଲୋକେ ଯାଇଥିଲେ
ବ୍ରହ୍ମାଙ୍କୁ ଦେଖିଣ ବ୍ରତ କଥା ପଚାରିଲେ
ଏ ବ୍ରତ କରିଲେ କେଉଁ ଫଳ ପାଏ ନର
ମୋ ଆଗରେ କହ ଶୁଣି ପାପହେଉ ଦୂର ।
ବ୍ରହ୍ମା କହୁଛନ୍ତି ସୁତ ଶୁଣ ମନ ଦେଇ
ଜୟନ୍ତୀ ବ୍ରତର କଥା କହିବି ବୁଝାଇ ।
ଶ୍ରଦ୍ଧାରେ ଜୟନ୍ତୀ ବ୍ରତ କରେ ଯେହୁ ନର
ସପ୍ତ ଜନ୍ମାର୍ଜିତ ପାପ ଦୂର ହୁଏ ତାର ।
ଜନ୍ମାଷ୍ଟମୀ, ଚୈତ୍ରମାସ ଶୁକଳ ନବମୀ
ଫାଇଗୁନର କୃଷ୍ଣା ଚତୁର୍ଦ୍ଦଶୀ ଦିନ ପୁଣି ।
ବୈଶାଖର ଶୁକ୍ଳ ଚତୁର୍ଦ୍ଦଶୀ, ଦୁର୍ଗାଷ୍ଟମୀ
ଶ୍ରାବଣ ଦ୍ୱାଦଶୀ ଏହି ଛଅଗୋଟି ପୁଣି ।
ଜୟନ୍ତୀ ବୋଲିଣ ଏହା ଶାସ୍ତ୍ର ଅଛି କହି
ଏହି ବ୍ରତ କଲେ ଜାଣ ପାପ ନାଶଯାଇ ।
କୋଟି ଯଜ୍ଞ, ତୀର୍ଥ ସ୍ନାନ, ଗୋରୁଆଦି ଦାନ
ସହସ୍ର କନ୍ୟା ଦାନ ଯେ କରେ ଯେଉଁଜନ ।
ସସାଗରା ଧରା ଦାନେ ଏ ଫଳ ଲଭଇ
ଏକ ଜୟନ୍ତୀ ବ୍ରତରେ ସବୁ ଫଳ ପାଇ ।
ବାମ୍ପୀ, କୂପ, ତଡ଼ାଗ ଯେ ସହସ୍ର ଖୋଳିଲେ
ଗଙ୍ଗା, ସରସ୍ୱତୀ, ନର୍ମଦାରେ ସ୍ନାନକଲେ ।
ପିତାମାତା ଗୁରୁଜନ ପ୍ରତି ଭକ୍ତି ଥିଲେ
ଏକା ଜୟନ୍ତୀ ବ୍ରତକୁ ନୁହେଁ ସମତୁଲେ ।
ପୂର୍ବେ କେଉଁମାନେ ବ୍ରତ କରିଥିଲେ ପୁଣ
ତାହା ବୁଝାଇ କହିବା ମନଦେଇ ଶୁଣ ।
କାର୍ତ୍ତବୀର୍ଯ୍ୟ, କର୍ଣ୍ଣରାଜା, ସଗର ଦିଲୀପ
ଗଉତମ, ଯମଦଗ୍ନି ଗାର୍ଗ୍ୟେ ବାଲ୍ମୀକ ।
ଜୟନ୍ତୀ ବ୍ରତ କରିଣ ପୁଣ୍ୟବାନ ହେଲେ
ମୃତ୍ୟୁଅନ୍ତେ ବୈକୁଣ୍ଠରେ ଯାଇଣ ବସିଲେ ।
ଭୋଜନ କରିଲେ ନର ଯୟନ୍ତୀ ତିଥିରେ
ତ୍ରୈଲୋକ୍ୟର ପାପନେଇ ବସେ ସ୍ୱଦେହରେ ।
ରୋହିଣୀ ନକ୍ଷତ୍ରଯୁକ୍ତ ବୁଧବାର ଦିନ
ଯଦି ପଡ଼ିବ ଜୟନ୍ତୀ ବ୍ରତ ସେହି ଦିନ ।
ବେଦ ପୁରାଣରେ ଲେଖା ହୋଇଅଛି ପୁଣ
ଅନ୍ୟ ବ୍ରତଠାରୁ ଏହି ଶ୍ରେଷ୍ଠ ବ୍ରତ ଜାଣ ।
ସତ୍ୟ, ତ୍ରେତା ଦ୍ୱାପର ଯେ କଳିଯୁଗେ ପୁଣି
ସର୍ବଯୁଗେ ପୁଣ୍ୟବାନ ବ୍ରତବୋଲି ଜାଣି ।
ହରିବାସରେ ଯେ ନର ପୁରାଣଟି ଶୁଣେ
କୋଟି ଜନ୍ମାର୍ଜିତ ପାପ ନରହଇ କ୍ଷଣେ ।
ବିଧି ବିଧାନେ ଯେ ନର ଏ ବ୍ରତ କରିବ
ଏକ ବିଂଶତି ପୁରୁଷ ତା ମୁକ୍ତି ହୋଇବ ।
ଯେ ଯେଉଁ କାମନାକରି ଏ ବ୍ରତକୁ କରେ
ସବୁ ଲାଭକରି ସେହୁ ବସେ ବୈକୁଣ୍ଠରେ ।
କୁଳଭ୍ରଷ୍ଟ କୀର୍ତ୍ତିହୀନ ଯଦି ହୋଇଥିବ
ଏ ବ୍ରତ କରିଲେ ନିଶ୍ଚେ ବୈକୁଣ୍ଠ ପାଇବ ।
ପତି ପତ୍ନୀ ଦୁହେଁ ମିଶି ଏ ବ୍ରତ କରିଲେ
ଶ୍ୱଶୁର ପକ୍ଷ ଉଦ୍ଧାର ହୋଇବଟି ଭଲେ ।
ଏ ବ୍ରତ କରିଲେ ବନ୍ଧ୍ୟା କରେ ପୁତ୍ର ଲାଭ
ଚକ୍ଷୁହୀନ ଲୋକ ପୁଣି କରେ ଚକ୍ଷୁ ଲାଭ ।
ଏମନ୍ତ କହିଲେ ବ୍ରହ୍ମା ନାରଦଙ୍କୁ ପୁଣି
ଫେରିଲେ ନାରଦ ସ୍ୱର୍ଗୁ ବ୍ରତକଥା ଶୁଣି ।
ଆହେ ସୁଜ୍ଞଜନମାନେ ନ ଘେନିବ ଦୋଷ
ଜୟନ୍ତୀ ମାହାତ୍ମ୍ୟ ଶୁଣି ମନକର ତୋଷ ।
ଏ ପଦ୍ମପୁରାଣ ଅଟେ ମଧୁମୟ ବାଣୀ
ଶ୍ରୀ ପଦ୍ମ ପାଦକୁ ଭଜେ ଦୀନ ମଧୁ ପୁଣି ।

ଇତି ଶ୍ରୀ ପଦ୍ମପୁରାଣେ ବ୍ରହ୍ମଖଣ୍ଡେ ଜୟନ୍ତୀ ମାହାତ୍ମ୍ୟ ନାମ ଚତୁର୍ଥ ଅଧ୍ୟାୟ ।

# ପଞ୍ଚମ ଅଧ୍ୟାୟ

## ପୁତ୍ରଲାଭ ଉପାୟ କଥନ

ଶୌନକ ପୁଛନ୍ତି ଆହେ କହ ସୁତ ମୁନି
କେଉଁ କର୍ମ କଲେ ନର ପୁତ୍ରପାନ୍ତି ପୁଣି ।
କେଉଁ କର୍ମ କଲେ ପୁଣି ବନ୍ଧ୍ୟାହୁଏ ନାରୀ
ସଂଶୟ ଫେଡ଼ି ମୋ ଆଗେ କହ ତପଚାରୀ ।
କେଉଁ କର୍ମଫଳେ ନର କନ୍ୟା ଲାଭ କରେ
ନପୁଂସକ ହୋଇ ପୁଣି ଦିନ କାଳ ହରେ ।
କି କର୍ମ କରିଲେ ନାରୀ ମୃତ ବତ୍ସା ପାଏ
କେଉଁ ପୁଣ୍ୟ ପ୍ରଭାବରେ ପୁତ୍ର ଲାଭ ହୁଏ ।
ସୁତ କହିଲେ ଏହିତ ଅଟେ ଗୁପ୍ତ କଥା
ଆନନ୍ଦରେ କହିଥିଲେ ଥରେ ଚଉମଥା ।
ପୂର୍ବଜନ୍ମେ ଯେ ମାନବ ବ୍ରହ୍ମସ୍ୱ ହରଇ
ପରଜନ୍ମେ ପୁତ୍ରହୀନ ହୋଇ କାଳଯାଇ ।
ଇହ ଜନ୍ମେ ଯେ ମାନବ ଶୁଣଇ ପୁରାଣ
ସଶସ୍ୟ-ଭୂମି ଦକ୍ଷିଣା ଦେଇଥାଏ ଦାନ ।
ଦୁଗ୍ଧବତୀ ଗାଭୀ ବିପ୍ରେ ଦାନ କରିଥାଏ
ପରଜନ୍ମେ ପୁତ୍ରବାନ ବୋଲି ସେ ବୋଲାଏ ।
ପୂର୍ବଜନ୍ମେ ଯେଉଁନାରୀ କପଟ କରିଣ
ପର ବାଳକକୁ ହିଂସା କରିଥାଏ ପୁଣ ।
ଜଳମଗ୍ନ ବାଳକକୁ ଉଦ୍ଧାର ନକରେ
ଆସୁଥିବା ଅତିଥିକୁ ନିରାଶ ଯେ କରେ ।
ନର କିମ୍ବା ନାରୀ ହେଉ ଶିଶୁକଲେ ହତ୍ୟା
ପରଜନ୍ମେ ସେହୁ ଲାଭ କରେ ମୃତବତ୍ସା ।
ଯେ ନର ଗୋରୁ ହରଣ ପୂର୍ବଜନ୍ମେକରେ
ଶୂଦ୍ରହୋଇ ବ୍ରାହ୍ମଣୀକୁ ହରଣ ଯେ କରେ ।
ନିଜ କର୍ମଫଳେ ସେହୁ ନପୁଂସକ ହୁଏ
ଇହ ଜନ୍ମେ ପାପ ପୁଣି ସେହୁ କରୁଥାଏ ।
ଯେ ବ୍ୟକ୍ତି ପାପକରିଣ ପରେ କରେ ପୁଣ୍ୟ
ଇହ ଜନ୍ମେ କନ୍ୟା ତାର ହୋଇଥାଏ ଜନ୍ମ ।
ଶ୍ରଦ୍ଧାର ସହିତ ଯେହୁ କରୁଥାଏ ଦାନ
ମର୍ତ୍ତ୍ୟେ ବାସକରେ ସେହୁ ହୋଇ ପୁତ୍ରବାନ ।
ବୃଷଭ, ସୁବର୍ଣ୍ଣ, ବସ୍ତ୍ର, ବ୍ରାହ୍ମଣକୁ ଦେଲେ
ସର୍ବ ପାପ ନାଶି ସେହୁ ପୁତ୍ରଲାଭ କରେ ।
ଅନ୍ନଦାନ, ଜଳଦାନ ମନ୍ଦିର ନିର୍ମାଣ
ଯେ ନର ଶ୍ରଦ୍ଧାରେ କରେ ପୁଣ୍ୟ କାର୍ଯ୍ୟମାନ ।
ଯେ ନାରୀ ସ୍ୱାମୀ ସହିତ ଏକାଦଶୀ କରେ
ବହୁ ପୁତ୍ରବତୀ ହୋଇ ସୁଖେ ବାସ କରେ ।
ତ୍ରେତାଯୁଗେ ଶ୍ରୀଧର ନାମେଣ ଏକ ରାଜା
ପୁତ୍ର ନଥାଇ ତାହାର ଅଛଇ ଭାରିଯା ।
ରାଣୀ ନାମ ଅଟେ ତାର ହେମ ପ୍ରଭାବତୀ
ବହୁ ଦାନ ଧ୍ୟାନକରେ ଅଟେ ପୁଣ୍ୟବତୀ ।
ଏକଦା ନାରଦଙ୍କୁ ସେ ଦେଖି ନୃପବର
ପଚାରନ୍ତି ପୁତ୍ର କିମ୍ପା ନହୁଏ ମୋହର ।
ତାହାପରେ ସ୍ୱର୍ଣ୍ଣାସନେ ଦେଲେ ନାରଦଙ୍କୁ
ପାଦ ଧୌତକରି ମନେ ପୂଜିଲେ ତାହାଙ୍କୁ ।
ନାରଦ କହନ୍ତି ଶୁଣ ପୂର୍ବଜନ୍ମ କଥା
କାହିଁପାଇଁ ଅପୁତ୍ରିକ ହୋଇଛ ସର୍ବଥା ।
ତୁମ୍ଭ ନାମ ଚନ୍ଦ୍ରଥିଲା ରାଣୀଟି ଶଙ୍କରୀ
ଯାଉଥିଲ ଏକଦିନେ ନଦୀ ସ୍ନାନ କରି ।
ଏକ ବାଳକ ଜଳରେ ବୁଡ଼ିଗଲା ବେଳେ
ତାକୁ ଦେଖି ନ ଧରଇଲ ତୁମ୍ଭେ ତତକାଳେ ।
ସେହି କର୍ମଫଳୁ ଏବେ ଅପୁତ୍ରିକ ହୋଇ
ଜନ୍ମହେଲ ଆସି ମର୍ତ୍ତ୍ୟେ ରାଜା ରାଣୀହୋଇ ।
ନୃପ ପୁଛନ୍ତି ଏବେ କି ଉପାୟ କରିଲେ
ପୁତ୍ରଜନ୍ମ ହେବ ମୋର କହ ତୁମ୍ଭେ ଭଲେ ।
ନାରଦ କହନ୍ତି ରାଜା ଶୁଣ ମନଦେଇ
ଗୋରୁ ସୁବର୍ଣ୍ଣ ବ୍ରାହ୍ମଣେ ଦାନ ଦିଅ ନେଇ ।
ଆବର ପୁରାଣ ଶାସ୍ତ୍ର ଯେବେ ଶୁଣୁଥିବ
ଇହଜନ୍ମେ ତୁମ୍ଭେ ଦୁହେଁ ପୁତ୍ରବତୀ ହେବ ।
ସେହି ଦିନଠାରୁ ରାଜା ଦାନ ଧ୍ୟାନ କଲା
ଏକବର୍ଷରେ ପୁତ୍ରେକ ଜନମ ହୋଇଲା ।
ଏ ପୁରାଣ ଯେଉଁ ନର ଶ୍ରଦ୍ଧାରେ ଶୁଣଇ
ସଂସାରେ ସୁଖେ ରହଇ ପୁତ୍ର କନ୍ୟାପାଇ ।
ନାରଦ କହନ୍ତି ରାଜା ଆଗେ ତୋଷହୋଇ
ମଧୁସୂଦନ କହଇ ପାଦପଦ୍ମ ଧ୍ୟାୟି ।

ଇତି ଶ୍ରୀ ପଦ୍ମପୁରାଣେ ବ୍ରହ୍ମଖଣ୍ଡେ ପୁତ୍ରଲାଭ ଉପାୟ କଥନେ ନାମ ପଞ୍ଚମ ଅଧ୍ୟାୟ ।



## ଷଷ୍ଠ ଅଧ୍ୟାୟ

### ବୈକୁଣ୍ଠ ପ୍ରାପ୍ତିର ଉପାୟ

ଶୌନକ ପୁଛନ୍ତି ତୁମ୍ଭେ ଶୁଣ ସୁତଦେବ
କି ପୁଣ୍ୟକରିଲେ ଲୋକ ବୈକୁଣ୍ଠ ପାଇବ ।
ସୁତମୁନି କହୁଛନ୍ତି ଶୌନକଙ୍କୁ ଚାହିଁ
ପଦ୍ମପୁରାଣର ଏହି ଗୁପତ ଅଟଇ ।
ମୃତ୍ତିକାଗୃହ ବ୍ରାହ୍ମଣେ ଯେହୁକରେ ଦାନ
ଶତକଳ୍ପଯାଏ ସେହି ବସେ ବୈକୁଣ୍ଠେଣ ।
ଶ୍ରଦ୍ଧାରେ ବିଷ୍ଣୁଙ୍କୁ ସୌଧ ଗୃହଦାନ କଲେ
କୋଟି କୁଳସହ ସେହୁ ବସେ ବୈକୁଣ୍ଠରେ ।
ବ୍ରାହ୍ମଣଙ୍କୁ ବାସସ୍ଥାନ ଯେହୁ କରେ ଦାନ
ବିଧାତା କହି ନପାରେ ତାର ପୁଣ୍ୟମାନ ।
ଏକଦା ନାରଦ ଯାଇଁ ବ୍ରହ୍ମାଙ୍କୁ ପୁଛିଲେ
ନାରଦଙ୍କୁ ବ୍ରହ୍ମା ସେହି କଥା କହିଥିଲେ ।
ଦ୍ୱାପର ଯୁଗରେ ଏକ ବାରାଙ୍ଗନା ଥିଲା
ଚାରୁହାସିନୀ ନାମ ତା ରସିକା ସୁଶିଳା ।
ତାର ଏକ ଉପପତି ସଙ୍କେତକୁ ଦେଇ
ପ୍ରବେଶିଲା ଏକ ଦେବାଳୟେ ଖୁସିହୋଇ ।
କିଛିକ୍ଷଣ ଅପେକ୍ଷା ସେ କରି ଉପପତି
ତାମ୍ବୁଳ ଖାଇ ବସିଲା ତୋଷେ ଚାରୁଦନ୍ତି ।
ହସ୍ତରେ ମକଚି ସେହୁ ତାମ୍ବୁଳ ଖାଇଲା
ଅବଶିଷ୍ଟ ଚୂନକୁ ସେ କାନ୍ଥରେ ଲେପିଲା ।
ତହୁଁ ଯାଇ ନଗରର ମଧ୍ୟେ ପ୍ରବେଶିଣ
ଅନ୍ୟ ଏକ ପତିକୁ ସେ ସଙ୍କେତ କରିଣ ।
ବନମଧ୍ୟେ କଣ୍ଟଦେଇ ଗଲା ନାରୀବର
ସେଠାରେ ମଧ କାନ୍ତକୁ ନଦେଖିଲା ତାର ।
ବନକୁ ଯାଇଣ ଅନ୍ଧାରରେ ସେ ପଶିଲା
କାନ୍ତକୁ ବ୍ୟାଘ୍ର ଖାଇଲା ବୋଲି ବିଚାରିଲା ।
ଅବା ସେହି ଅନ୍ୟ ନାରୀ ଫାନ୍ଦେ ପଡ଼ିଥିବ
ମୋ ଛାର ରସିକା ପାଶେ କିମ୍ପାଇଁ ଆସିବ ।
କଟୁଆଳ ଭୟେ ନଗରକୁ ସେ ନଗଲା
ଏକ କ୍ରୁର ବ୍ୟାଘ୍ରମୁଖେ ସେ ନିଜେ ପଡ଼ିଲା ।
ବେଶ୍ୟାର ପ୍ରାଣଯିବାରୁ ଯମଦୂତେ ଆସି
ଚର୍ମରଜ୍ଜୁ ଆଣି ତାର ଗଳେଦେଲେ ଫାଶି ।
ନିଅନ୍ତେ ପଥରେ ବିଷ୍ଣୁ ଦୂତେ ଯେ ଭେଟିଲେ
ଯମଦୂତଙ୍କୁ ପୁଣି ତା କଥା ପଚାରିଲେ ।
କାହିଁପାଇଁ ବିଷ୍ଣୁଭକ୍ତ ତୁମ୍ଭେ ନେଉଅଛ
ଏହାଶୁଣି ଯମଦୂତେ ହେଲେ ସମକଛ ।
ବିଷ୍ଣୁ ଦୂତମାନେ ଚକ୍ର ପ୍ରହାରିଲେ ନେଇ
ଶସ୍ତ୍ରମାଡ଼େ ଯମଦୁତ ଗଲେ ଭଗ୍ନ ହୋଇ ।
ତେଣେ ଚିତ୍ରଗୁପ୍ତଙ୍କୁ ଯେ ଯମ ପୁଛାକଲା
କେଉଁପୁଣ୍ୟଫଳେବେଶ୍ୟା ବୈକୁଣ୍ଠ ଲଭିଲା ।
ତାହା ଶୁଣି ଚିତ୍ରଗୁପ୍ତ ପାଞ୍ଜିଫେଡ଼ି କହି
ଅନେକ ପାପ ଜୀବନେ କରିଅଛି ସେହି ।
ମାତ୍ର ଏକ ପୁଣ୍ୟ ଅଛି କହି ତା ନପାରି
ସେହି ପୁଣ୍ୟଫଳେ ମୁକ୍ତହେଲା ବେଶ୍ୟାନାରୀ ।
ଏକଦିନ କାନ୍ତ ଅପେକ୍ଷାରେ ସେହି ଗଲା
ସେବାଳୟେ ବସି ସେ ତାମ୍ବୁଳ ଖାଉଥିଲା ।
ଅବଶିଷ୍ଟ ଚୂନ ନେଇ ଲେପିଲା କାନ୍ଥରେ
ସେହି ପୂଣ୍ୟଫଳେ ସେ ବସିଲା ବୈକୁଣ୍ଠରେ ।
ସୌଧ ଲେପନ ମାହାତ୍ମ୍ୟ ଶୁଣ ସାଧୁଜନ
ଯାହା ଶୁଣନ୍ତେ ପାପଯେ ନରହେ ଦେହେଣ ।
ମଧୁସୂଦନ ଭଜିଣ ପାପ ନାଶଯାଉ
ମଧୁସୂଦନ ସେ ପଦ ନିତ୍ୟ ଘୋଷୁଥାଉ ।

ଇତି ଶ୍ରୀ ପଦ୍ମପୁରାଣେ ବ୍ରହ୍ମଖଣ୍ଡେ ବୈକୁଣ୍ଠ ପ୍ରାପ୍ତି ଉପାୟ
କଥନେ ନାମ ଷଷ୍ଠ ଅଧ୍ୟାୟ ।



## ସପ୍ତମ ଅଧ୍ୟାୟ

### ରାଧାଷ୍ଟମୀ ମାହାତ୍ମ୍ୟ

ସୁତମୁନି କହୁଛନ୍ତି ଶୌନକ ଆଗର
ରାଧାଷ୍ଟମୀବ୍ରତ କଥା ଶୁଣ ମୁନିବର ।
ଏ ବ୍ରତ କରିଲେ କେଉଁ ଫଳପାଏ ନର
ନକଲେ ପାପଭାଗୀ ସେ ଅଟେ କି ପ୍ରକାର ।

କେଉଁମାନେ ପୂର୍ବେ ଏହା କରିଥିଲେ ପୁଣି
କି କି ବିଧାନେ କରିଲେ ପୁଣ୍ୟହୋଏ ଜାଣି ।
ନିଜେ ଲକ୍ଷ୍ମୀଆସି ମର୍ତ୍ତ୍ୟେ ଜନମହୋଇଲେ
ବୃଷଭାନୁ ଘରେ ଯାଇ ରାଧାନାମ ହେଲେ ।
ଏହିସବୁ ଗୁପ୍ତକଥା କହିବି ବୁଝାଇ
ଏ ପଦ୍ମପୁରାଣ କଥା ଶୁଣ ମନ ଦେଇ ।
ରାଧାଷ୍ଟମୀବ୍ରତ ଫଳ କେ କହିପାରିବେ
ଏକମାତ୍ର ହରି ହେଲେ କିଞ୍ଚିତେ କହିବେ ।
ଭକ୍ତିଭରେ ଏକବାର ଏ ବ୍ରତ କରିଲେ
ବ୍ରହ୍ମହତ୍ୟା ସ୍ତିରୀହତ୍ୟା ପାପଯାଏ ଭଲେ ।
ସହସ୍ରେ ଏକାଦଶୀରେ ଯେଉଁଫଳ ହୋଏ
ଏକମାତ୍ର ରାଧାଷ୍ଟମୀ ସେହି ଫଳ ଦିଏ ।
ଯଦିକେହି ଶ୍ରଦ୍ଧାରେ ବା ଅଶ୍ରଦ୍ଧାରେ କରେ
କୋଟି ଜନ୍ମାର୍ଜିତ ପାପ ନରହେ ଦେହରେ ।
ପୂର୍ବଯୁଗେ ଲୀଳାବତୀ ନାମେ ବେଶ୍ୟାନାରୀ
ସୁରସିକା ସୁକେଶୀ ସେ ଅଟଇ ସୁନ୍ଦରୀ ।
କାନ୍ତ ଖୋଜିବାର ଅର୍ଥେ ନଗରକୁ ଗଲା
ଏକ ଦେବାଳୟେ ପଶି ଯାହାସେ ଦେଖିଲା ।
ଆସନପରେ ନାରୀଏ ମୂର୍ତ୍ତିକୁ ସ୍ଥାପିଣ
ଗନ୍ଧ ପୁଷ୍ପ ଧୂପ ଦୀପ ନୈବିଦ୍ୟ ଦେଇଣ ।
ପୂଜା କରୁଛନ୍ତି ଜନେ ଅତି ଶୁଦ୍ଧ ହୋଇ
ତାହାଦେଖି ବେଶ୍ୟାନାରୀ ତାହାଙ୍କୁ ପୁଚ୍ଛଇ ।
କେଉଁ ବ୍ରତ କରୁଅଛ ଆହେ ଭକ୍ତ ନରେ
ଏ ବ୍ରତର ନାମ କିସ କହ ମୋ ଆଗରେ ।
ତାହାଶୁଣି ବ୍ରତୀମାନେ କହନ୍ତି ତାହାକୁ
ରାଧାଜନ୍ମାଷ୍ଟମୀ ଏହି ପୂଜୁଛୁଁ ରାଧାଙ୍କୁ ।
ଭାଦ୍ରବମାସ ଶୁକଳ ଅଷ୍ଟମୀ ତିଥିରେ
ରାଧାଜନ୍ମ ହୋଇଥିଲେ ଦ୍ୱାପର ଯୁଗରେ ।
ତେଣୁ ସେହି ରାଧାକୁ ଯେ ପୂଜୁଛନ୍ତି ନରେ
ପୂଜିଲେ ପାପ ନାଶିଣ ବସିବ ସ୍ୱର୍ଗରେ ।
ବ୍ରହ୍ମହତ୍ୟା ନାରୀହତ୍ୟା ପାପଯିବ ନାଶ
ଅଷ୍ଟୈଶ୍ୱର୍ଯ୍ୟ ଫଳପାଇ ସ୍ୱର୍ଗେକରେ ବାସ ।
ଲୀଳାବତୀ ସେହିକଥା ତାଙ୍କଠାରୁ ଶୁଣି
ରାଧାଷ୍ଟମୀ ବ୍ରତ କଲା ଦିନ ତିଥି ଜାଣି ।
ଦୈବଯୋଗେ ସର୍ପାଘାତେ ତାର ମୃତ୍ୟୁହେଲା
ରାଜହଂସଯୁକ୍ତ ରଥ ତାପାଇଁ ଅଇଲା ।
ସେହି ରଥେ ବସି ସେହୁ ସ୍ୱର୍ଗପୁର ଗଲା
ରାଧାକୃଷ୍ଣ ସହ ବୈକୁଣ୍ଠରେ ସେ ରହିଲା ।
ଯେଉଁ ମୂଢ଼ ରାଧାଷ୍ଟମୀ ବ୍ରତକୁ ନକରେ
ନରକୁ ସେ ନର ଶତକଳ୍ପେ ନ ନିସ୍ତରେ ।
ରାଧାଜନ୍ମ କଥା ଏବେ କହିବାହେ ଶୁଣ
ଦୁଷ୍ଟଜନ ଭାରା ପୃଥ୍ୱୀ ସହି ନପାରିଣ ।
ଗୋରୂପ ଧରିଣ ପୃଥ୍ୱୀ ସ୍ୱର୍ଗପୁର ଗଲା
ବ୍ରହ୍ମାଙ୍କ ଆଗରେ ଦୁଃଖ ନିବେଦି କହିଲା ।
ବ୍ରହ୍ମାଯାଇ ବିଷ୍ଣୁଙ୍କୁ ଯେ ବୁଝାଇ କହିଲେ
ପୃଥ୍ୱୀ ଆଉ ଦୁଷ୍ଟଭାରା ସହି ନପାରିଲେ ।
ତାହାଶୁଣି ବିଷ୍ଣୁ ତାଙ୍କୁ ବୋଲନ୍ତି ଉତ୍ତର
ଦୁଷ୍ଟ ନାଶପାଇଁ ଜନ୍ମ ହେବି ମୁଁ ମର୍ତ୍ତ୍ୟର ।
ଅନନ୍ତର କୃଷ୍ଣ ଯାଇ ରାଧାଙ୍କୁ କହିଲେ
ତୁମ୍ଭେ ଯାଇ ମର୍ତ୍ତ୍ୟେ ଜାତହୁଅ ମୋହ ତୁଲେ
ରାଧିକା ଶୁଣିଣ ମହା ଆନନ୍ଦିତ ହେଲେ ।
ବିଷ୍ଣୁଙ୍କ ସଙ୍ଗରେ ମୁହିଁ ଜନ୍ମିବି ଭାବିଲେ ।
ଭାଦ୍ରମାସ ଶୁକ୍ଳପକ୍ଷ ଅଷ୍ଟମୀ ତିଥିରେ
ଜନ୍ମହେଲେ ବୃଷଭାନୁ ଯଜ୍ଞସ୍ଥାନ ପରେ ।
ବୃଷଭାନୁ ଯାଇ ତାହା ଆନନ୍ଦିତ ହେଲେ
ରାଣୀ ନିକଟେ ନେଇଣ କନ୍ୟା ସମର୍ପିଲେ ।
ରାଧାଜନ୍ମାଷ୍ଟମୀ କଥା ଯେ ନର ଶୁଣିବେ
ସର୍ବପାପ ନାଶି ସେହୁ ବୈକୁଣ୍ଠେ ବସିବେ ।
ମଧୁସୂଦନ ଚିନ୍ତିଲେ ପାପ ନାଶଯିବ
ରାଧା ରାଧା ମୁଖେ ନିରନ୍ତରେ ଘୋଷୁଥିବ ।
ଏ ପଦ୍ମପୁରାଣ ଅଟେ ସୁଧାମୟ ବାଣୀ
ମଧୁସୂଦନ ଭାବଇ ପଦ୍ମପାଦ ପୁଣି ।

ଇତି ଶ୍ରୀ ପଦ୍ମପୁରାଣ ବ୍ରହ୍ମଖଣ୍ଡେ
ଶ୍ରୀ ଶ୍ରୀ ରାଧାଷ୍ଟମୀ ମାହାତ୍ମ୍ୟେ
ନାମ ସପ୍ତମ ଅଧ୍ୟାୟ ।



## ଅଷ୍ଟମ ଅଧ୍ୟାୟ

### ସମୁଦ୍ର ମନ୍ଥନୋଦ୍‌ଯୋଗ ବର୍ଣ୍ଣନ

ସୁତମୁନି କହୁଛନ୍ତି ଜୈମିନି ଆଗର
ସମୁଦ୍ର ମନ୍ଥନୋଦ୍‌ଯୋଗ କହିବି ବିଚାର
ଏକଦା ଦୁର୍ବାସାଋଷି ସ୍ୱର୍ଗପୁର ଗଲେ
ଇନ୍ଦ୍ରଙ୍କୁ ଦେଖିଣ ମନେ ମନେ ତୁଷ୍ଟ ହେଲେ ।

ଗଜାରୋହୀ ଶଚୀପତି ଦେଖିଣ ଋଷିଙ୍କୁ
ଆନନ୍ଦେ ପ୍ରଣାମ ବିହିଲେ ସେ ଦୁର୍ବାସାଙ୍କୁ ।
ତହୁଁ ଋଷି ଇନ୍ଦ୍ରପ୍ରତି ଆନନ୍ଦିତ ହେଲେ
ପାରିଜାତମାଳା ଏକ ଉପହାର ଦେଲେ ।
ଇନ୍ଦ୍ର ମାଳା ନେଇ ଗଜ ମସ୍ତକେ ରଖିଲେ
ନିଜେ ସସୈନ୍ୟ ନନ୍ଦନବନେ ପ୍ରବେଶିଲେ ।
ହସ୍ତୀ ସେ ମାଳା ଛିଣ୍ଡାଇ ପକାଇଣ ଦେଲା
ପାରିଜାତମାଳା ଯାଇ ମର୍ତ୍ତ୍ୟରେ ପଡ଼ିଲା ।
ରୁଦ୍ରବଂଶୀ ମହାତେଜା ଋଷି ଏହା ଦେଖି
ଇନ୍ଦ୍ରଙ୍କୁ ପଚାରନ୍ତି ସେ ହୋଇ ମହାକୋପୀ ।
ତ୍ରୈଲୋକ୍ୟର ଅଧିପତି ହେବାରୁ ଯେ ତୁହି
ମୋତେ ଅବଜ୍ଞା କରିଲୁ ମନେ ଗର୍ବ ବହି ।
ତ୍ରୈଲୋକ୍ୟରଲକ୍ଷ୍ମୀ ଏବେନଷ୍ଟ ହେବେ ଜାଣ
ମୋକଥା ନିଶ୍ଚେ ହୋଇବ ଅନ୍ୟଥା ନୋହିଣ ।
ଦୁଃଖିତ ମନରେ ଇନ୍ଦ୍ର ସ୍ୱପୁରେ ଶୋଇଲେ
ତହୁଁ ସ୍ୱୟଂ ଜଗନ୍ମାତ ଅନ୍ତର୍ହିତ ହେଲେ ।
ରାଜଲକ୍ଷ୍ମୀ ଅନ୍ତର୍ଦ୍ଧାନ ହେବାରୁ ସେଠାରୁ
କଷ୍ଟପାଇଲେ ତ୍ରୈଲୋକ୍ୟଜନ ସେହିଠାରୁ ।
ମେଘ ଆଉ ସେହିଦିନୁ ବୃଷ୍ଟି କଲାନାହିଁ
ନଦୀ ଜଳାଶୟ ଆଦି ଶୁଷ୍କ ହେଲେ ତହିଁ ।
ଫଳ-ପୁଷ୍ପ-ଶସ୍ୟ-ହୀନ ବୃକ୍ଷ ଯହୁଁ ହେଲେ
କ୍ଷୁଧାପିପାସାରେ ଲୋକେ କଷ୍ଟଯେ ପାଇଲେ ।
ବ୍ରହ୍ମାଙ୍କ ନିକଟେ ଯାଇ ଜଣାଇଲେ ସର୍ବେ
ଦେବଲୋକେ ସୁରଲୋକେ ଆବର ଗନ୍ଧର୍ବେ ।
ବିଧାତା ଶୁଣିଣ କ୍ଷୀର ସାଗରକୁ ଗଲେ
କ୍ଷୀରସାଗରେ ବିଷ୍ଣୁଙ୍କୁ ନିବେଦନ କଲେ ।
ଅଷ୍ଟାକ୍ଷର ମନ୍ତ୍ରସହ ମନେ ଧ୍ୟାନକଲେ
ଧ୍ୟାନରେ ମଧୁସୂଦନ ଗରୁଡ଼େ ଅଇଲେ ।
ଶଙ୍ଖ ଚକ୍ର ଗଦାପଦ୍ମ ବିଭୂଷିତକର
ଦେଖିଣ ଦେବତା ପାଦେ କଲେ ନମସ୍କାର ।
ବିଷ୍ଣୁଙ୍କୁ ଚାହିଁଣ ସ୍ତୁତି କରନ୍ତି ଦିଗ୍‌ପାଳେ
ମହା ଆତଙ୍କ ପଡ଼ିଲା ଶୁଣ ଦେବଆଳେ ।
ସ୍ତବ ଶୁଣିଣ ଶ୍ରୀହରି ଆନନ୍ଦିତ ହେଲେ
ଦେବଗଣଙ୍କୁ ଚାହିଁଣ ବଚନ ବୋଇଲେ ।
କେଉଁବର ମାଗୁଅଛ ଆହେ ଦେବଗଣ
କି ବିପଦ ପଡ଼ିଲା ହେ କହ ତା କାରଣ ।

ଦେବଗଣ ବୋଲୁଛନ୍ତି ଶ୍ରୀହରିଙ୍କୁ ଚାହିଁ
ବ୍ରହ୍ମଶାପେ ତ୍ରିଭୁବନ ଅଛି କଷ୍ଟପାଇ ।
ତୁମ୍ଭେ ନ ରଖିଲେ ଆଉ କେରଖେ ଆମ୍ଭଙ୍କୁ
ବିଚାର କରିଣ ପ୍ରଭୁ କହ ଦେବତାଙ୍କୁ ।
ଶ୍ରୀହରି ବୋଇଲେ ତୁମ୍ଭେ ଶୁଣ ଦେବଗଣ
ବ୍ରହ୍ମଶାପ ଯୋଗୁଁ ଲକ୍ଷ୍ମୀହେଲେ ଅନ୍ତର୍ଦ୍ଧାନ ।
ଲକ୍ଷ୍ମୀହୀନ ହେଲେ ସର୍ବେ କଷ୍ଟପାନ୍ତି ଭବେ
ଲକ୍ଷ୍ମୀପାଇବା ଉପାୟ ଶୁଣ ଆହେ ଦେବେ ।
ମନ୍ଦର ସ୍ୱର୍ଣ୍ଣପର୍ବତ ତୁମ୍ଭେ ଉପାଡ଼ିଣ
ସର୍ପରାଜା ବାସୁକୀକୁ କରିବ ବେଷ୍ଟନ ।
କ୍ଷୀର ସାଗରକୁ ତହୁଁ ମନ୍ଥନ କରିବେ
ତହୁଁ ଜଗନ୍ମାତା ଲକ୍ଷ୍ମୀ ଆବିର୍ଭୂତ ହେବେ ।
କୂର୍ମ ଅବତାର ହୋଇ ତହୁଁ ରହିଥିବି
ମନ୍ଥନକାଳରେ ମେରୁ ଟେକିଣ ଧରିବି ।
ଏହାକହି ଶ୍ରୀହରି ଯେ ଅନ୍ତର୍ଦ୍ଧାନ ହେଲେ
ମନ୍ଥନଉଦ୍‌ଯୋଗେ ତହୁଁ ଦେବେବାହାରିଲେ ।
ମନ୍ଥନୋଦ୍‌ଯୋଗ ଶୁଣିଣ ପାପ କର ନାଶ
ମଧୁସୂଦନ କହଇ ମନୁଯାଉ କ୍ଳେଶ । ୨୯ ।

ଇତି ଶ୍ରୀ ପଦ୍ମପୁରାଣେ ବ୍ରହ୍ମଖଣ୍ଡେ
ସମୁଦ୍ର ମନ୍ଥନୋଦ୍‌ଯୋଗ ବର୍ଣ୍ଣନେ
ନାମ ଅଷ୍ଟମ ଅଧ୍ୟାୟ



## ନବମ ଅଧ୍ୟାୟ

### ସମୁଦ୍ର ମନ୍ଥନ

ଶୌନକଙ୍କୁ ସୁତମୁନି କହୁଛନ୍ତି ପୁଣ
ସମୁଦ୍ରମନ୍ଥନ ଏବେ ମନଦେଇ ଶୁଣ ।
ଏଥୁଅନ୍ତେ ଦାନବଙ୍କ ସହ ଦେବଗଣ
ଗନ୍ଧର୍ବଙ୍କୁ ନେଇ ସଙ୍ଗେ କରନ୍ତି ମନ୍ଥନ ।
ମନ୍ଦରଗିରି ଉପାଡ଼ି ପକାଇ ସାଗରେ
କୂର୍ମରୂପରେ ଶ୍ରୀହରି ଧରିଲେ ପୃଷ୍ଠରେ ।
ଅନନ୍ତ ନାଗରେ ବାନ୍ଧି ସେ ମେରୁଗିରିକୁ
ମନ୍ଥିଲେ ସମସ୍ତେ ମିଶି ପକାଇଣ ତାକୁ ।
ଏକାଦଶୀଦିନେ ତହୁଁ ଆରମ୍ଭ ହୋଇଲା
ପ୍ରଥମରେ କାଳକୂଟ ବିଷ ବାହାରିଲା ।

ସର୍ବ ଦେବଲୋକେ ଦେଖି ଡ଼ରି ପଳାଇଲେ
ଦେବଗଣଙ୍କୁ ଶଙ୍କର ଡାକିଣ ବୋଇଲେ ।
ସେହି ବିଷ ମୋତେ ଦିଅ ଭକ୍ଷିବି ମୁଁ ନେଇ
ବିଷଧରି ମହାମନ୍ତ୍ର ଉଚ୍ଚାରିଲେ ରହି ।
ନିଜେ ଭକ୍ଷିଲେ ସେ କାଳକୂଟ ବିଷନେଇ
ମହାମନ୍ତ୍ର ପ୍ରଭାବରେ ଗଲା ଜୀର୍ଣ୍ଣ ହୋଇ ।
ଯେଲୋକ ଅଗ୍ରେ ପ୍ରଣବ ଅନ୍ତେ ନମଃବୋଲି
ପରେ ଅଚ୍ୟୁତ ଅନନ୍ତ ଗୋବିନ୍ଦ ଉଚ୍ଚାରି ।
ନାମ ତ୍ରୟ ଜପକଲେ ବିଷ ହରିଯାଏ
ଏହୁ ଅତି ଗୁପ୍ତକଥା କହିଲି ଥୋକାଏ ।
ତହୁଁ ଦେବଗଣ ସାଗରକୁ ଯେ ମନ୍ଥିଲେ
ରକ୍ତ ନୟନା ଅଲକ୍ଷ୍ମୀ ତହୁଁ ଜାତହେଲେ ।
ଖାଙ୍କର ପେଟ ତା ଦିଶେ ମୁଣ୍ଡେ ଜଟାଭାର
ଅତି ଭୟଙ୍କର ଦିଶେ ଚାମୁଣ୍ଡା ପ୍ରକାର ।
ତହୁଁ ଆବିର୍ଭୁତ ହୋଇ କହିଲା ଦେବଙ୍କୁ
କି କରିବି କାହିଁ ଯିବି କହହେ ଆମ୍ଭଙ୍କୁ ।
ଦେବଗଣ ତାହାଙ୍କୁ ଯେ ବିହିଲେ ଉତ୍ତର
ଦୁଃଖଭାଗିନୀ ହୋଇଣ ରହିବ ମର୍ତ୍ତ୍ୟର ।
ଯାହାଘରେ ନିତ୍ୟ କଳି ଲାଗୁଥାଏ ପୁଣି
ସନ୍ଧ୍ୟାବେଳେ ଆହାର ଯେ କରଇ ରମଣୀ ।
ଦାନ ଧ୍ୟାନ ଜପ ଆଦି ଯାହାଘରେ ନାହିଁ
ଅତିଥି ଅଇଲେ ତାକୁ ନିରାଶେ ଫେରାଇ ।
ଜୀବଜନ୍ତୁ ପ୍ରତି ଯାର ଦୟା ନାହିଁ ତିଳେ
ସ୍ୱାମୀ ସ୍ତିରୀର କଳହ ଲାଗେ ନିରନ୍ତରେ ।
ଅମାବାସ୍ୟା ପୂର୍ଣ୍ଣମୀରେ ମତ୍ସ୍ୟ ମାଂସ ଖାଏ
ଏପରି ଲୋକର ଗୃହେ ହୁଅ ତୁ ବିଜୟେ ।
ମଶାଣୀ ତୋହର ହେଉ ବାସସ୍ଥାନ ପୁଣି
ଯେଉଁଠାରେ କେଶ ଅସ୍ଥି କପାଳ ନିଶାଣି ।
ଏହାକହି ଦେବଗଣେ ତାହାକୁ ଛାଡ଼ିଲେ
ପୁଣି କ୍ଷୀରସାଗରରେ ଗିରିକୁ ମନ୍ଥିଲେ ।
ବିଷ ଆଉ ଅଲକ୍ଷ୍ମୀର ଜାତ କଥା ଶୁଣି
ଏ ସଂସାରୁ ତର ଆହେ ପାପୀ ମୂଢ଼ପ୍ରାଣୀ ।
ସେହି ମନ୍ଦର ପର୍ବତେ ମୋର ଆଶା ଥାଉ
ମଧୁସୂଦନ ଭାବଇ ମୋର ଦିନ ଯାଉ ।

ଇତି ଶ୍ରୀ ପଦ୍ମପୁରାଣେ ବ୍ରହ୍ମଖଣ୍ଡେ
ସମୁଦ୍ର ମନ୍ଥନେ ନାମ
ନବମ ଅଧ୍ୟାୟ ।

## ଦଶମ ଅଧ୍ୟାୟ

### ଲକ୍ଷ୍ମୀ ଉତ୍ପତ୍ତି କଥନ

ତହୁଁ ସୁତ କହୁଛନ୍ତି ଶୌନକ ଆଗର
ମନ୍ଦରଗିରି ମନ୍ଥିଲେ ଦେବତା ଅସୁର ।
ତହୁଁ ଯାହା ଜାତ ହେଲା ଶୁଣ ମୁନିବର
ଯଥାକ୍ରମେ ଐରାବତ ପାରିଜାତ ହାର ।
ଉଚ୍ଚୈଶ୍ରବା ଅଶ୍ୱ ସେ ସୁରଭୀ ସହିତରେ
ଅପ୍‌ସରୀ ସହିତ ନାଗଲୋକ ଜାତହେଲେ ।
ଦ୍ୱାଦଶୀତିଥି ପଡ଼ିଲା ତହିଁ ଆରଦିନେ
ଲକ୍ଷ୍ମୀ ଉତ୍ପନ୍ନ ହୋଇଲେ ସମୁଦ୍ର ମନ୍ଥନେ ।
ଶ୍ରୀହରି ଅଙ୍କ ବାସିନୀ ତହୁଁ ହେଲେ ଜାତ
ଦେବଗଣ ଦେଖି ତାଙ୍କୁ ହେଲେ ଆନନ୍ଦିତ
ସୁଧାସହ ଶୀତରଶ୍ମି ଲକ୍ଷ୍ମୀଙ୍କର ଭାଇ
ହରିଜାୟା ତୁଳସୀ ଯେ ଜାତହେଲେ ତହିଁ ।
ଦେବଗଣ ତହୁଁ ପର୍ବତକୁ ନେଲେ ବହି
ଯଥାସ୍ଥାନେ ରଖିଦେଲେ ପୂର୍ବକରି ନେଇ ।
ଦେବଗଣ ଲକ୍ଷ୍ମୀଙ୍କି ଯେ ବହୁସ୍ତୁତି କଲେ
ଏ କଷ୍ଟରୁ ମାତ ରକ୍ଷାକରଗୋ ବୋଇଲେ ।
ନମୋ ନମୋ ଆଦିମାତା ବିଷ୍ଣୁଙ୍କ ଘରଣୀ
ନମୋ ପଦ୍ମାଳୟା ଦେବୀ ଲକ୍ଷ୍ମୀଠାକୁରାଣୀ ।
ନମସ୍ତେ କମଳାଦେବୀ ଭକ୍ତିପ୍ରଦାୟିନୀ
ତୁ ଦୟା କରିଲେ ମାଗୋ ରହିବ ଅବନୀ ।
ମହାଲକ୍ଷ୍ମୀ କହୁଛନ୍ତି ଦେବଗଣେ ଚାହିଁ
ଏବେ ସର୍ବଜନ୍ତୁ ରକ୍ଷା କରିବି ଯେ ମୁହିଁ ।
ତହୁଁ ଅନ୍ତେ ଶଙ୍ଖ ଚକ୍ର ଗଦା ପଦ୍ମ ଧରି
ଲକ୍ଷ୍ମୀଙ୍କପାଇଁ ଜନମ ହୋଇଲେ ଶ୍ରୀହରି ।
କୃତାଞ୍ଜଳି ପୁଟେ ତହୁଁ ଦେବକଲେ ସ୍ତୁତି
ନମୋ ନମୋ ନାରାୟଣ ଅନନ୍ତ ମୂରତି ।
ସଂସାର ରକ୍ଷାର୍ଥେ ତୁମ୍ଭେ ହେଲ ଅବତାର
ଲକ୍ଷ୍ମୀଙ୍କି ସଙ୍ଗରେ ନେଇ ପାଳ ଏ ସଂସାର ।
ଦେବଙ୍କ ବାକ୍ୟରେଯହୁଁ ହରି ତୁଷ୍ଟହେଲେ
ଅଙ୍ଗୀକାର କରିବାକୁ ତହୁଁ ବାହାରିଲେ ।

ହରିଙ୍କି କହିଲେ ତହୁଁ ଲକ୍ଷ୍ମୀ ବାଧାଦେଇ
ମୋର ଜ୍ୟେଷ୍ଠଭଗ୍ନୀ ଅଛି ଅବିବାହିତ ହୋଇ ।
ହେ ମଧୁସୂଦନ ଆଗେ ତା ବିବାହ କର
ମୁହିଁ ଅଟଇ ପରା ଯେ କନିଷ୍ଠ ତାଙ୍କର ।
ଅଲକ୍ଷ୍ମୀଙ୍କି ଡାକି ହରି ପାଶେ ଅଣାଇଲେ
ଉଦାଳଙ୍କ ସଙ୍ଗେ ତାଙ୍କୁ ବିଭା କରାଇଲେ ।
ଲକ୍ଷ୍ମୀଙ୍କ ସଙ୍ଗରେ ଯହୁଁ ବିଭାହେଲେ ହରି
ଦେବଗଣେ ଉଭୟଙ୍କୁ ନମସ୍କାର କରି ।
ଫେରିଲେ ସେଠାରୁ ଅସୁରଙ୍କୁ ମାରିବାକୁ
ଅସୁରେ ଡ଼ରିଣ ପଳାଇଲେ ଯେ ତାହାଙ୍କୁ ।
ଦେବଗଣେ ତହୁଁ ଯାଇ ସୁଧାପାନ କଲେ
ପରଶିବାକୁ ସେ ସୁଧା ନିଜେ କଳିକଲେ ।
ରମଣୀରୂପ ଧରିଣ ବିଷ୍ଣୁ ଉଠିଗଲେ
ଦେବଗଣଙ୍କୁ ସ୍ୱହସ୍ତେ ସୁଧା ପରଶିଲେ ।
ସୁବର୍ଣ୍ଣପାତ୍ରରେ ହରି ପରଶୁ ଅଛନ୍ତି
ତହିଁମଧ୍ୟେ ରାହୁ ଆସି ଭୋଜନ କରନ୍ତି ।
ଚନ୍ଦ୍ର ସୂର୍ଯ୍ୟ ତାହା ଦେଖି ଦେବଙ୍କୁ କହିଲେ
ଛଳକ୍ରମେ ଏ ରାକ୍ଷସ ସୁଧା ଖାଇଦେଲେ ।
ତହୁଁ କୋପହୋଇ ବିଷ୍ଣୁ ସୁବର୍ଣ୍ଣ ପାତ୍ରରେ
ରାହୁଙ୍କୁ ସେ ବଧକଲେ ପାତ୍ର ତୀକ୍ଷ୍ଣଧାରେ ।
ଗଣ୍ଡି ମୁଣ୍ଡ ଦୁଇଭାଗ ହୋଇଲା ତାହାର
ମୁଣ୍ଡନାମ ରାହୁ ହେଲା କେତୁଟି ଶରୀର ।
ତହୁଁ ରାହୁ କେତୁ ଦୁହେଁ ପଳାଇ ଅଇଲେ
ଚନ୍ଦ୍ର ସୂର୍ଯ୍ୟ ପ୍ରତି ବିଷଦୃଷ୍ଟି ପକାଇଲେ ।
ସେହିଦିନଠାରୁ ଯେଉଁଦିନ ହୋଏ ଭେଟ
ଚନ୍ଦ୍ର ସୂର୍ଯ୍ୟଙ୍କୁ ଗିଳଇ ହୋଇଣ ସେ ରୁଷ୍ଟ ।
ଦେବଗଣଙ୍କ ଭୟରେ ତହୁଁ ଛାଡ଼ିଯାଇ
ନିଜେ ମଧ୍ୟ ତାଙ୍କ ତେଜ ନପାରଇ ସହି ।
ସୂର୍ଯ୍ୟଙ୍କୁ ଗିଳିଲେ ସୂର୍ଯ୍ୟପରାଗ କହନ୍ତି
ଚନ୍ଦ୍ରଙ୍କୁ ଗିଳିଲେ ଚନ୍ଦ୍ରଗ୍ରହଣ ବୋଲନ୍ତି ।
ଅତି ଦୁର୍ଲ୍ଲଭ ସଂସାର ପକ୍ଷରେ ସେ ଦିନ
ସବୁଜଳ ଅଟେ ତହିଁ ଗଙ୍ଗାର ସମାନ ।
ବ୍ରହ୍ମର୍ଷି ବୋଲିଣ ବ୍ରାହ୍ମଣଙ୍କୁ ଯେ ମଣିବ
ଦାନକାଳେ ସେ କାଳରେ ସବୁ ପାପଯିବ ।
ସେ ସମୟେ ବାୟସ ତୀର୍ଥରେ ସ୍ନାନକଲେ
କୋଟିଯଜ୍ଞ ଫଳପାଇ ବସନ୍ତି ସ୍ୱର୍ଗରେ ।
ମନ୍ତ୍ର ଯନ୍ତ୍ର ବିଦ୍ୟା ଆଦି ଆରମ୍ଭ କରନ୍ତି
ଏଦିନ ସଂସାରପକ୍ଷେ ଦୁର୍ଲ୍ଲଭ ହୁଅନ୍ତି ।
ସମୁଦ୍ର ମନ୍ଥନ କଥା ଶୁଣ ମନଦେଇ
ଯାହା ଶୁଣନ୍ତେଣ ଦେହେ ପାପ ନ ରହଇ ।
ଆହେ ସୁଜ୍ଞଜନମାନେ ଦୋଷ ନ ଧରିବ
ମଧୁ ଖାଇଣ ତୁଣ୍ଡରେ ହରି ବୋଲୁଥିବ ।
ସୁତ କହନ୍ତି ସମୁଦ୍ର ମନ୍ଥନ ବିଚାରି
ମଧୁସୂଦନଙ୍କୁ ପ୍ରଭୁ ବେଗେକର ପାରି ।

ଇତି ଶ୍ରୀ ପଦ୍ମପୁରାଣେ ବ୍ରହ୍ମଖଣ୍ଡେ
ସମୁଦ୍ରମନ୍ଥନେ ଲକ୍ଷ୍ମୀ
ଉତ୍ପତ୍ତି ବର୍ଣ୍ଣନ ନାମୋ
ଦଶମ ଅଧ୍ୟାୟ ।

## ଏକାଦଶ ଅଧ୍ୟାୟ
## ଲକ୍ଷ୍ମୀବ୍ରତ ବିବରଣ

ଶୌନକ ପଚାରୁଛନ୍ତି ସୁତମୁଖ ଚାହିଁ
ଲକ୍ଷ୍ମୀବ୍ରତ କଥା ମୋତେ କହିବ ବୁଝାଇ ।
ଦୁର୍ଭାଗା ନାରୀ କିପରି ସୁସୌଭାଗ୍ୟା ହୁଏ
ପତି ପ୍ରିୟ ଆମ୍ଭ ପ୍ରିୟ ସୁସାଧୁ ବୋଲାଏ ।
କାହାକୁ ଅଲକ୍ଷ୍ମୀ ନାରୀ ବୋଲନ୍ତି ଜଗତେ
କହ ମୋତେ ତପୋଧନ ପଚାରିଲି ଯେତେ ।
ସୁତମୁନି କହୁଛନ୍ତି ଶୌନକଙ୍କୁ ଚାହିଁ
ପରମ ଦୁର୍ଲ୍ଲଭକଥା ପଚାରିଲୁ ତୁହି ।
ଦ୍ୱାପର ଯୁଗରେ ଭଦ୍ରଶ୍ରବା ନାମେ ରାଜା
ସୌରାଷ୍ଟ୍ର ଦେଶରେ ସୁଖେ ପାଳୁଥାଏ ପ୍ରଜା ।
ଭାର୍ଯ୍ୟାର ନାମ ତା ଅଟେ ସୁରତୀଚନ୍ଦ୍ରିକା
ସାତଗୋଟି ପୁତ୍ର ତାର ହୋଇଛନ୍ତି ଏକା ।
ଶ୍ୟାମବାଳା ନାମେ ତାର ଏକ କନ୍ୟାଥିଲା
ସତ୍ୟବାଦିନୀ ସୁନ୍ଦରୀ ଆବର ସୁଶୀଳା ।
ଏକମାତ୍ର କନ୍ୟା ସେ ରାଜାର ଅତିପ୍ରିୟ
ଏକଦା ସେ ଖେଳିଗଲା ସଙ୍ଗସଖୀ ସହ ।
ରତ୍ନରାଜି ନେଇ କନ୍ୟା ଖେଳୁଅଛି ପୁଣି
ଖେଳୁ ଖେଳୁ କଦମ୍ବମୂଳକୁ ଗଲାକ୍ଷଣି ।
ଏହି ସମୟରେ ନିଜେ ଲକ୍ଷ୍ମୀ ଉପସ୍ଥିତ
ବ୍ରାହ୍ମଣୀରୂପ ଧରିଣ ହୋଇଲେ ଆଗତ ।

ରାଜାର ପୁରକୁ ଯିବି ମନେ ବିଚାରିଲେ
ସୁବର୍ଣ୍ଣ ପାଚେରୀ ସିଂହଦ୍ୱାରେ ଉଭାହେଲେ ।
ଦେଖିଲେ ଦ୍ୱାରରକ୍ଷିକା ଅଛି ଏକ ବାଳୀ
ବୋଇଲେ ତାହାକୁ ଦ୍ୱାର ଛାଡ଼ ଯିବି ଚଳି ।
ସୁରତୀ ଚନ୍ଦ୍ରିକା ରାଣୀ ସହ ଦେଖା ହେବି
ଫେରିଲେ ସେଠାରୁ ସବୁ ବିଷୟ କହିବି ।
ସେ ଦ୍ୱାରରକ୍ଷିକା ତାକୁ ପଚାରଇ ପୁଣି
ହେ ବୁଢ଼ୀ କାହୁଁ ଆସିଲ କହ ତା ବଖାଣି
କେ ତୁମ୍ଭ ପତି ଅଟନ୍ତି ନାମ ତାଙ୍କ କିସ
କାହିଁପାଇଁ ରାଜଘର ତୁମ୍ଭେ ଆସିଅଛ ।
ରାଣୀସଙ୍ଗେ କି ନିମନ୍ତେ ସାକ୍ଷାତ କରିବ
କେଉଁକାର୍ଯ୍ୟେ ଆସିଅଛ କହ ମୋତେ ଯବ ।
କୁଢ଼ୀ କହୁଛନ୍ତି ଦଣ୍ଡଧାରିଣୀଲୋ ଶୁଣ
ମୋ ନାମ କମଳା ଅଟେ ଜଗତରେ ପୁଣ ।
ଭୁବନେଶ୍ୱର ମୋ ପତି ନାମ ଜାଣ ତୁହି
ଦ୍ୱାରାବତୀ ନାମେ ପୁରୀ ବାସ ମୋ ଅଟଇ ।
ମୋର ପ୍ରାଣେଶ୍ୱର ସେହି ନଗ୍ରରେ ଅଛନ୍ତି
ଆସିବା କାରଣ ଏବେ ଶୁଣ କୁନ୍ଦଦନ୍ତୀ ।
ପୂର୍ବେ ତୁମ୍ଭ ରାଣୀ ଏକ ବୈଶ୍ୟପତ୍ନୀ ଥିଲେ
ପତି ପତ୍ନୀ ଦୁହେଁ ଦିନେ କଳହ ଲାଗିଲେ ।
ପତ୍ନୀ ପୀଡ଼ାପାଇ ଘରୁ ବାହାରି ଅଇଲା
ନଗର ବାହାରେ ଉଭାହୋଇ କାନ୍ଦୁଥିଲା ।
କାନ୍ଦିବାର କାରଣ ମୁଁ ପଚାରିଲି ଯାଇଁ
ଏକ ବ୍ରତର କଥା ମୁଁ କହିଲି ବୁଝାଇ ।
ସେହି ବ୍ରତଫଳେ ନାରୀ ଅତି ସୁଖିହେଲେ
ପତି ପତ୍ନୀ ଦୁହେଁ ଯାକ ସୁଖରେ ରହିଲେ ।
କାଳକ୍ରମେ ଦୁହିଁଙ୍କର ମୃତ୍ୟୁହେଲା ଦିନେ
ଯମପୁର ନେବାକୁ ମିଳିଲେ ଦୂତଗଣେ ।
ତହୁଁ ବିଷ୍ଣୁ ଦୂତଗଣ ସେଠାକୁ ଅଇଲେ
ଦେବରଥରେ ବସାଇ ସ୍ୱର୍ଗ ଘେନିଗଲେ ।
ବୈଶ୍ୟପତ୍ନୀ ଯେତେବାର ବ୍ରତ କରିଥିଲା
ତେତେ ସହସ୍ର କଳ୍ପ ସେ ସ୍ୱର୍ଗରେ ରହିଲା ।
ପୁଣ୍ୟ ଶେଷ ଭାଗ ଭୋଗ କରିବାର ପାଇଁ
ସେହି ପୁଣ୍ୟଫଳେ ରାଜାଘରେ ଜନ୍ମିଛଇ ।
ଭୁଲିଗଲା ରାଜଭୋଗ ସୁଖେ ସେହି ରହି
ବ୍ରତ କରିବାକୁ ତାର ଆଉ ମନେନାହିଁ ।

ତାହାର ମନେ କରିବାପାଇଁ ଆସିଅଛି
ଏହା ପୁଣି ସେହି ଦ୍ୱାରୀ ପଚାରିଲା ବସି ।
କି ବିଧାନେ କେଉଁମାସେ ଏ ବ୍ରତ କରିବେ
କେଉଁ ଦେବତାଙ୍କୁ ପୁଣି କେଉଁ ପୂଜାଦେବେ ।
ଏହାଶୁଣି ଜଗନ୍ମାତା କହୁଛନ୍ତି ତାଙ୍କୁ
ମାର୍ଗଶିରମାସେ ପୂଜା କରିବ ଲକ୍ଷ୍ମୀଙ୍କୁ ।
ଗୁରୁବାର ଦିନ ଏହି ବ୍ରତ ଯେ ପଡ଼ଇ
ପାୟସ ପିଷ୍ଟକ ମିଷ୍ଟ ଭୋଗ ଯେ ଦିଅଇ ।
ନୈବିଦ୍ୟ ପରେ ଲକ୍ଷ୍ମୀଙ୍କୁ ସ୍ତୁତି ଯେ କରିବ
ନମସ୍ତେ କମଳାଦେବୀ ହେ ବିଷ୍ଣୁ ବଲ୍ଲଭ ।
ନମସ୍ତେ ନମସ୍ତେ ଲକ୍ଷ୍ମୀ ମାତା ଅନ୍ନଦାତା
ତୁମ୍ଭେ ଦୟାକଲେ ମୋର ଘୁଞ୍ଚିଯିବ ଚିନ୍ତା ।
ପୂଜାପରେ ନୈବିଦ୍ୟକୁ ବାଣ୍ଟିବ ବ୍ରାହ୍ମଣେ
ପତି ପୁତ୍ରଙ୍କୁ ଯେ ଭୋଗ ଦେବ ତୋଷମନେ ।
ଦ୍ୱିତୀୟ ଗୁରୁବାରର ଦିନ କଥା ଶୁଣ
ଗୋଧୂମରେ ଭଜା ପିଠା କରିବସେ ଦିନ ।
ତୃତୀୟ ବାରରେ ଦଧି ଦୁଗ୍ଧ ମିଷ୍ଟ ସଙ୍ଗେ
ପୂଜାକରିଲେ ଲକ୍ଷ୍ମୀଙ୍କୁ ତୋଷହୋନ୍ତିବେଗେ ।
ଚତୁର୍ଥବାରରେ ଶାକ ଅନ୍ନ ଦେବ ତାଙ୍କୁ
ପୂଜାକରିଣ ତୋଷିବ ସର୍ବଦା ଲକ୍ଷ୍ମୀଙ୍କୁ ।
ଧୂପ ଦୀପ ନଇବିଦ୍ୟ ସମର୍ପିବ ନେଇ
ବସ୍ତ୍ର ଅଳଙ୍କାରେ ଦେବ ଲକ୍ଷ୍ମୀଙ୍କୁ ସଜାଇ ।
ନାନାଜାତି ଫଳଫୁଲେ ପୂଜିବ ଆନନ୍ଦେ
ଦୁଃଖ କହିବ କାତରେ ସେ ପରମାନନ୍ଦେ ।
ତହୁଁ ଦ୍ୱାରୀ ବୁଢ଼ୀଙ୍କୁ ଯେ କହିଲା ଉତ୍ତର
ରାଣୀଙ୍କ ଅନୁମତିକୁ ଅପେକ୍ଷା ଯେ କର ।
ମୁଁ ଆସିବାଯାଏ ତୁମ୍ଭେ ଏହିଠାରେ ଥିବ
ଏହାକହି ଭିତରକୁ ଚଳିଗଲା ଯବ ।
ସର୍ବ ବୃତ୍ତାନ୍ତ ରାଣୀଙ୍କୁ ଜଣାଇଲା ପୁଣି
ତାହାଶୁଣି ରାଣୀ ଚଳିଗଲେ ତତକ୍ଷଣି ।
ଗର୍ବିତଭାବେ ବୁଢ଼ୀଙ୍କୁ ପଚାରିଲେ ଆସି
କି କାରଣେ ଆସିଅଛୁ କହ ମୋତେ ବସି ।
ବ୍ରାହ୍ମଣୀ କହିଲା ତାଙ୍କ ବଦନକୁ ଚାହିଁ
ତୋହର ଅନୀତି ଆଜ ଦେଖିଲିଗୋ ମୁହିଁ ।
ଲକ୍ଷ୍ମୀବାସର ଆଜିତ ଜାଣିନାହୁଁ ରାଣୀ
ପରମ ଦୁର୍ଲ୍ଲଭ ବ୍ରତ ଭୁଲିଗଲୁ ପୁଣି ।

ଏହାଶୁଣି କ୍ରୋଧେ ରାଣୀ କହଇ ବଚନ
ପଳା ପଳା ଏଥୁ ବୁଢ଼ୀ ମାଡ଼ ନ ଖାଇଣ ।
ଏହାଶୁଣି କାନ୍ଦି କାନ୍ଦି ପଳାଏ ବ୍ରାହ୍ମଣୀ
ଏଣେ ଶ୍ୟାମବାଳା ଜେମା ଖେଳୁଥିଲା ପୁଣି ।
ବୁଢ଼ୀ କାନ୍ଦିବାର ଦେଖି ତାହାକୁ ପଚାରେ
କିଏ ପୀଡ଼ାଦେଲା ତାହା କହମୋ ଆଗରେ ।
ତହୁଁ ସମସ୍ତ ବୃତ୍ତାନ୍ତ ବ୍ରାହ୍ମଣୀ କହିଲା
ଲକ୍ଷ୍ମୀବ୍ରତ ବିଧିମାନ ସବୁ ବୁଝାଇଲା ।
ତହୁଁ ଶ୍ୟାମବାଳା ଶୁଣି ସେଠାରୁ ଚଳିଲା
ଆନନ୍ଦରେ ଲକ୍ଷ୍ମୀବ୍ରତ ସମାପନ କଲା ।
ଚତୁର୍ଥ ପାଳି ଯହୁଁ ତା ପୂରଣ ହୋଇଲା
ଲକ୍ଷ୍ମୀଙ୍କ ପ୍ରସାଦୁ ଜେମା ସୁବର ପାଇଲା ।
ରାଜା ରାଣୀ ଦୁହେଁ ବସି ବିଚାର ଯେ କଲେ
ଜେମାଙ୍କୁ ବିବାହଦେବା ପାତ୍ରଖୋଜାଇଲେ ।
ସିଦ୍ଧେଶ୍ୱର ରାଜା ପୁଅ ମାଳାଧର ନାମ
ତାରସଙ୍ଗେ ଜେମା-ବିଭା କରିଲେ ସମ୍ପନ୍ନ ।
ତହୁଁ ଜାମାତା ସଙ୍ଗରେ କନ୍ୟାଗଲା ପୁଣି
ଏଣେ ମାୟା କରାଇଲେ ଲକ୍ଷ୍ମୀଠାକୁରାଣୀ ।
ରାଜାଘରୁ ଧନ ଦ୍ରବ୍ୟ ସବୁ ହଜିଗଲା
ରାଣୀ ନିଜେ ଦେହେ କଷ୍ଟ ଅନେକ ପାଇଲା ।
ତହୁଁ ସ୍ୱାମୀଙ୍କୁ ରାଣୀ ଯେ ବୋଲଇ ବଚନ
ଦୁହିତା ଘରକୁ ଯାଇ ଧନ କିଛି ଆଣ ।
ଚଳିବା ସେଥିରେ ମନେ ଚିନ୍ତାକର ନାହିଁ
ରାଜା ସେଠାରୁ ଚଳିଲା ମନେ ମନେ ଧ୍ୟାୟି ।
ଜାମାତା ରାଜ୍ୟର ପୁଷ୍କରିଣୀ ତୀରେ ଗଲା
କେତେ ନାରୀଙ୍କୁ ସ୍ନାନସେ କରିବା ଦେଖିଲା ।
ଶ୍ୟାମବାଳା ଦାସୀମାନେ ସ୍ନାନ କରୁଥିଲେ
ଆଗନ୍ତୁକ ଦରିଦ୍ରକୁ ବଚନ ପୁଛିଲେ ।
ତହୁଁ ରାଜା ତାଙ୍କୁ ନିଜ ପରିଚୟ ଦେଲା
ସଖୀଙ୍କ ଆସିବାଯାଏ ଅପେକ୍ଷା କରିଲା ।
ଶ୍ୟାମବାଳା ଦାସୀଠାରୁ ସବୁକଥା ଶୁଣି
ଦାସୀଙ୍କୁବୋଲେ ପିତାଙ୍କୁ ମୋରଯାଅ ଆଣି ।
ତହୁଁ ଯାଇ ଦାସୀମାନେ ପିତାଙ୍କୁ ଆଣିଲେ
ସେଠାବରେ ପିତା ଚାରିଦିନ ଯେ ରହିଲେ ।
ପଞ୍ଚମ ଦିନରେ କିଛି ଧନ ଦ୍ରବ୍ୟ ନେଇ
ଚଳିଲା ନିଜ ରାଜ୍ୟକୁ ଆନନ୍ଦିତ ହୋଇ ।

ଘରେ ଯାଇଁ ପେଡ଼ିକି ଯେ ଫିଟାଇଲା ଯହୁଁ
ପୋଡ଼ା ଅଙ୍ଗାର ଥିବାର ଦେଖିଲା ସେତହୁଁ ।
ରାଜାରାଣୀ ଦୁହେଁ ଦେଖି କାତର ଯେ ହେଲେ
ଜେମାର ଘରକୁ ଯିବି ରାଣୀ ବିଚାରିଲେ ।
ତହୁଁ ଦୁହିତା ଘରକୁ ରାଣୀ ଚଳିଗଲା
ସେଠାବରେ କିଛିଦିନ ସୁଖରେ ରହିଲା ।
କିଛିଦିନ ଅନ୍ତେ ଲକ୍ଷ୍ମୀ ବାସର ପଡ଼ିଲା
ଦୁହିତା ମାତାଙ୍କୁ ଲକ୍ଷ୍ମୀବ୍ରତ କରାଇଲା ।
ତହୁଁ ରାଣୀ ଆନନ୍ଦରେ ଫେରିଲା ଘରକୁ
ଘରକୁ ଆସିଣ ଦେଖେ ସୁଖରେ ସ୍ୱାମୀଙ୍କୁ ।
ପୂର୍ବପରି ଐଶ୍ୱର୍ଯ୍ୟରେ ପୂରିଅଛି ଘର
ରାଣୀ ତହୁଁ ପୂଜାକଲା ଲକ୍ଷ୍ମୀଙ୍କ ପୟର ।
ଏଣେ କିଛିଦିନ ଅନ୍ତେ ଦୁହିତା ଭାବିଲା
ମାତାର ଘରକୁ ଯାଇ ସମ୍ପଦ ଦେଖିଲା ।
ଦୁହିତାଙ୍କୁ ଦେଖି ମାତା କୋପହେଲା ଯହୁଁ
ଲୁଣ କିଛିନେଇ ଝିଅ ଫେରିଲା ଯେ ତହୁଁ ।
ପତ୍ନୀଙ୍କି ଦେଖିଣ ସ୍ୱାମୀ ପଚାରିଲା ଯାଇଁ
କିସ ଆଣିଅଛ ବାପ ଘର ଥିଲ ଯାଇ ।
ଶ୍ୟାମବାଳା ବୋଇଲା ଯେ ସଂସାରର ସାର
ଆଣିଅଛି ଦେଖାଇବି ଭୋଜନ ବେଳର ।
ସ୍ୱାମୀ ଭୋଜନବେଳରେ ଲୁଣ ଆଣି ଦେଲା
ବାପଘରୁ ଏହା ମୁହିଁ ଆଣିଛି ବୋଇଲା ।
ତହୁଁ ପତି ପତ୍ନୀ ଦୁହେଁ ସୁଖରେ ରହିଲେ
ବ୍ରତମାନ କରନ୍ତି ଯେ ଲକ୍ଷ୍ମୀବାର ହେଲେ ।
ଏ ପୁରାଣ ଯେଉଁ ନାରୀ ଶ୍ରଦ୍ଧାରେ ଶୁଣିବ
ଲକ୍ଷ୍ମୀଙ୍କ ପ୍ରସାଦୁ ସେହି ସୁଖରେ ରହିବ ।
ଅଶ୍ରଦ୍ଧା କରିଲେ ପୁଣି ନରକେ ପଡ଼ଇ
ଶୌନକ ଆଗରେ ସୁତ କହନ୍ତି ବୁଝାଇ ।
ପଦ୍ମପୁରାଣ ଅଟଇ ଅମୃତର ବାଣୀ
ହରି ବୋଲି ପାର ହୁଅ ସଂସାର ତରଣୀ ।
ମଧୁସୂଦନ ସେ ପାଦେ କରିଅଛି ଆଶ
କୃପା କରିଣ ମୋହର ଛେଦ କର୍ମ ଦୋଷ ।

ଇତି ଶ୍ରୀ ପଦ୍ମପୁରାଣେ ବ୍ରହ୍ମଖଣ୍ଡେ
ଲକ୍ଷ୍ମୀବ୍ରତ ବିବରଣେ ନାମ
ଏକାଦଶ ଅଧ୍ୟାୟ ।

## ଦ୍ୱାଦଶ ଅଧ୍ୟାୟ

### ବ୍ରାହ୍ମଣ ପାଳନ ଉପାଖ୍ୟାନ

ଶୌନକ ବୋଲନ୍ତି ସୁତ ପଚାରୁଛି ମୁହିଁ
କେଉଁ ପୁଣ୍ୟଫଳେ ନର ପାପୁ ମୁକ୍ତହୋଇ ।
କେଉଁ ପୁଣ୍ୟଫଳେ ନର ବୈକୁଣ୍ଠେ ବସଇ
ତାହା ମୋତେ ମୁନିବର କହନ୍ତୁ ବୁଝାଇ ।
ସୁତ ବୋଲନ୍ତି ଶୌନକ ସାବଧାନେ ଶୁଣ
ବ୍ରାହ୍ମଣକୁ ଯେଉଁବ୍ୟକ୍ତି ଧନକରେ ଦାନ ।
ନିଜ ପ୍ରାଣଦେଇ ତାର ପ୍ରାଣରକ୍ଷା କରେ
ସେହିଲୋକ ଅନ୍ତେଯାଇ ବସେ ବୈକୁଣ୍ଠରେ ।
ଦ୍ୱାପର ଯୁଗରେ ଦୀନନାଥ ନାମେ ରାଜା
ପୁତ୍ରହୀନ ହୋଇ ସୁଖେ ପାଳୁଥାଇ ପ୍ରଜା ।
ଦିନେ ରାଜା ବିପ୍ର ଗାଲବଙ୍କୁ ଯେ ପୁଚ୍ଛଇ
କରୁଣା କରିଣ ପ୍ରଭୁ ଦିଅହେ ବୁଝାଇ ।
କି ପୁଣ୍ୟ କରିଲେ ପୁତ୍ର ଉତ୍ପନ୍ନ ହୁଅଇ
ସେହି ବ୍ରତ ଭକ୍ତିଭାବେ ମୁହିଁ କରିବଇଁ ।
ଗାଲବ ବୋଲନ୍ତି ରାଜା ଶୁଣ ଦେଇ ମନ
ସଂକ୍ଷେପେ କହୁଛି ପୁତ୍ର ଉତ୍ପତ୍ତି କାରଣ ।
ଯଦି ରାଜା ନରମେଧ ଯଜ୍ଞକୁ କରିବ
ଭକ୍ତିମାନ ସୁଲକ୍ଷଣ ପୁତ୍ରଜାତ ହେବ ।
ରାଜା ପଚାରିନ୍ତି ଦ୍ୱିଜ ବୁଝାଇଣ କହ
କିରୂପ ନର ଆଣିବି ନକରି ସନ୍ଦେହ ।
ଗାଲବ କହିଲେ ସୁବଦନ ଯେଉଁ ନର
ଶାସ୍ତ୍ରଜ୍ଞ ସର୍ବାଙ୍ଗ ହୋଇଥିବ ଯେ ଆବର ।
ସତକୁଳ ଜାତ ଯଦି ସେହି ହୋଇଥିବ
ନରମେଧ ଯଜ୍ଞରେ ସେ ଉପଯୁକ୍ତ ହେବ ।.
ମୁର୍ଖ କୃଷ୍ଣବର୍ଣ୍ଣ, ଅଙ୍ଗହୀନ ଯଦି ଥାଏ
ସେପରି ନର ଯଜ୍ଞର ଉପଯୁକ୍ତ ନୋହେ ।
ବିପ୍ରଙ୍କ ଆଦେଶେ ରାଜା ଦୂତଙ୍କୁ ରାଇଲେ
ନର ଖୋଜିବାର ପାଇଁ ପଠାଇଣ ଦେଲେ ।
ନାନାଦେଶୁଁ ବ୍ରାହ୍ମଣଙ୍କୁ ବରଣ କରିଣ
ରାଜକୋଷୁଁ ବହୁଧନ ବସ୍ତ୍ର କଲେ ଦାନ ।
ନାନାସ୍ଥାନେ ଦୂତଗଣ ଖୋଜିକରି ଗଲେ
ଯଜ୍ଞ ଯୋଗ୍ୟ ନର କେଉଁନଗ୍ରେ ନପାଇଲେ ।
କେତେଦିନ ଅନ୍ତେ ଦଶପୁର ବୋଲି ଗ୍ରାମ
ସେଠାରେ ପ୍ରବେଶିଲେ ସେ ଯାଇ ଦୂତଗଣ ।
ସୁକେଶୀ କୁରଙ୍ଗନେତ୍ରୀ ଯହିଁ ପୁର ନାରୀ
ଯତିହେଲେ ଯୋଗଭଙ୍ଗ ହୋଇବ ତାହାରି ।
କୃଷ୍ଣ ଦେବ ନାମେ ଦ୍ୱିଜ ତହିଁ ଏକ ଥିଲା
ତିନିପୁତ୍ର ତାର ଭାର୍ଯ୍ୟା ନାମଟି ସୁଶୀଳା ।
ତାହାପାଶେ ଯାଇ ଦୂତଗଣ ପ୍ରବେଶିଲେ
ଗୋଟିଏ ପୁତ୍ରକୁ ତାର ନେବାକୁ କହିଲେ ।
ପୁତ୍ରହୀନ ରାଜା ହୋଇଛନ୍ତି ବିପ୍ର ଶୁଣ
ନରମେଧ ଯଜ୍ଞକରି ଋଷିଙ୍କୁ ବରିଣ ।
ଯଜ୍ଞ ସମାପନ ହେଲେ ବଳିଦେବେ ତହିଁ
ନର ଗୋଟିଏ ନେଇଣ ପୁତ୍ର ଦେବାପାଇଁ ।
ଚାରିଲକ୍ଷ ସ୍ୱର୍ଣ୍ଣମୁଦ୍ରା ନେଇଣ ଆପଣ
ଏ ପୁତ୍ରକୁ ଆମ୍ଭସଙ୍ଗେ ଦିଅନ୍ତୁ ଛାଡ଼ିଣ ।
ଯଦି ନଛାଡ଼ିବ ପୁତ୍ର ସ୍ନେହର ବଶରେ
ବଳକ୍କାରେ ନେଇଯିବୁ ରାଜ ଆଦେଶରେ ।
ଏହାଶୁଣି ବ୍ରାହ୍ମଣ ଯେ ରୋଦନ କରିଲା
ଧନନେଇ କି କରିବୁଁ ଦୂତଙ୍କୁ ବୋଇଲା ।
ପୁତ୍ର ଛାଡ଼ିକରି ତୁମ୍ଭେ ମୋତେ ଘେନିଯାଅ
ରାଜାଜ୍ଞା ପାଳନକରି କିମ୍ବା ଦୁଃଖ ଦିଅ ।
ଏହାଶୁଣି ଦୂତଗଣେ ତହୁଁ କ୍ରୋଧ ହେଲେ
ଜ୍ୟେଷ୍ଠ ପୁତ୍ରଟିକୁ ତାର ଧରିଣ ସେ ନେଲେ ।
ତହୁଁ ସେ ବ୍ରାହ୍ମଣ ଯାଇଁ ଦୂତଙ୍କୁ କହିଲା
ଅନ୍ୟପୁତ୍ର ନିଅବୋଲି ମୁଖେ ନଆସିଲା ।
ତହୁଁ ଦୂତଗଣେ ବ୍ରାହ୍ମଣୀଙ୍କୁ ଯେ କହିଲେ
କନିଷ୍ଠପୁତ୍ରକୁ ତୋର ଦିଅଗୋ ବୋଇଲେ ।
ଏହାଶୁଣି ବ୍ରାହ୍ମଣୀ ଯେ ପଡ଼ି ମୂର୍ଚ୍ଛାଗଲା
ଚେତାପାଇ କନିଷ୍ଠକୁ ନଦେବି କହିଲା ।
ଏ ସମୟେ ସେ ମଧ୍ୟମ ପୁତ୍ରଟି ତାଙ୍କର
ପ୍ରବେଶିଲା ଯାଇ ମାତା ପିତାଙ୍କ ଆଗର ।
ଦୂତକୁ ଚାହିଁଣ ପୁତ୍ର ବୋଲଇ ଉତ୍ତର
ଯଦି ମାତା ବିଷଦିଏ ପୁତ୍ରକୁ ତାହାର ।
ଯଦି ପିତା ନିଜପୁତ୍ରେ ବିକ୍ରୟ କରଇ
ଯଦି ରାଜା ପ୍ରଜା ଧନ ହରଣ କରଇ ।
ରକ୍ଷାକର୍ତ୍ତା ଆଉ କିଏ ହେବ ଏ ମହୀରେ
ଏଥକୁ ଯେ ବଳନାହିଁ କହିଛି ଶାସ୍ତ୍ରରେ ।

ଏହା କହି ପୁତ୍ର ମାତା ପିତାଙ୍କ ଚରଣେ
ପ୍ରଣାମ କରିଣ ଗଲା ସହ ଦୂତଗଣେ ।
ପଥରେସେ ଯିବାବେଳେ ଭେଟିଲେ ଆଶ୍ରମ
ବିଶ୍ୱାମିତ୍ର ବସି ତପ କରୁଛନ୍ତି ପୁଣ ।
ଦୂତଙ୍କୁ ଦେଖିଣ ଋଷି ବଚନ ପୁଛିଲେ
କିଏ ତୁମ୍ଭେମାନେ କାହିଁ ଯାଉଥିଲ ଭଲେ ।
ଦୂତଗଣ ବୋଲୁଛନ୍ତି ତାହାଙ୍କୁ ଉତ୍ତର
ଆମ୍ଭ ରାଜାଙ୍କର ପୁତ୍ର ନାହିଁ ମୁନିବର ।
ନରମେଧ ଯଜ୍ଞ ଗୋଟି କରିଛନ୍ତି ସେହୁ
ବଳିଦେବାପାଇଁ ଏହି ବ୍ରାହ୍ମଣକୁ ନେଉ ।
ବିଶ୍ୱାମିତ୍ର ଦୂତଙ୍କୁ ଯେ ବୋଇଲେ ବଚନ
ଆମ୍ଭଙ୍କୁ ନିଅହେ ଦୂତ ଏହାକୁ ଛାଡ଼ିଣ ।
ଦୂତଗଣ ବୋଲୁଛନ୍ତି ଚାହିଁଣ ଋଷିଙ୍କି
ରାଜା ଆଜ୍ଞା ନାହିଁ, ନେବୁ ତୁମ୍ଭଙ୍କୁ କାହିଁକି ।
ଏହାକହି ଚାଲିଗଲେ ଦୂତଗଣ ବେଗେ
ବିଶ୍ୱାମିତ୍ର ଚାଲିଗଲେ ତାହାଙ୍କର ସଙ୍ଗେ ।
ତହୁଁ ଯାଇ ଦୂତଗଣ ପ୍ରବେଶ ହୋଇଲେ
ବିଶ୍ୱାମିତ୍ର ଆସିବାର ରାଜାଙ୍କୁ କହିଲେ ।
ରାଜା ଶୁଣି ପଚାରନ୍ତି ମୁନିଙ୍କୁ ଚାହିଁଣ
କି ଉପାୟେ ପୁତ୍ର ମୁଁ ପାଇବି ମୁନି ଜାଣ ।
ଯଜ୍ଞରେ ବଳି ନଦେଇ ଯଦି ପୁତ୍ର ହେବ
ବ୍ରାହ୍ମଣ ପୁତ୍ରଙ୍କୁ ମୁହିଁ ଛାଡ଼ିଦେବି ଯବ ।
ଏହାଶୁଣି ମୁନିବର କହିଲେ ଉତ୍ତର
ବ୍ରାହ୍ମଣଙ୍କୁ ଛାଡ଼ିଦେଲେ ହେବ ପୁତ୍ର ତୋର ।
ବଳି ନ ଦେଇ ଯଜ୍ଞରେ ପୂର୍ଣ୍ଣାହୁତି କର
ଆଶ୍ରମକୁ ଯାଉଛି ଏ ବାଳକ ସଙ୍ଗର ।
ଏହାକହି ମୁନିବର ସେଠାରୁ ଅଇଲେ
ଦଶପୁର ଗ୍ରାମେ ଯାଇଁ ତକ୍ଷଣେ ମିଳିଲେ ।
କୃଷ୍ଣ ଦେବ ବିପ୍ର ଦ୍ୱାରେ ମିଳିଲେକ ଯାଇଁ
ଡାକଦେଲେ ଆରେ ବିପ୍ର ପୁତ୍ର ନିଅ ତୁହି ।
ବ୍ରାହ୍ମଣ ପଚାରେ ହର୍ଷେ ଚାହିଁଣ ମୁନିଙ୍କୁ
ତୁମ୍ଭେଯୋଗୁଁ ପାଇଲି ମୁଁ ମୋର ଏ ପୁତ୍ରକୁ ।
ତୁମ୍ଭେ କିଏ କହ ମୋତେ ବିଳମ୍ବ ନକରି
ବିଶ୍ୱାମିତ୍ର ବୋଇଲେ ମୁଁ ଅଟେ ତପଚାରୀ ।
ଏହାକହି ମୁନିବର ସେଠାରୁ ଚଳିଲେ
ନିଜ ଆଶ୍ରମରେ ତହୁଁ ଯାଇଣ ମିଳିଲେ ।
ନିଷ୍ଠାମନେ ଶ୍ରୀହରିଙ୍କୁ ଧ୍ୟାନକଲେ ଯହୁଁ
ଧ୍ୟାନବଳେ ଜଣାଇଲେ ରାଜା ପୁତ୍ର ପାଉ ।
ତେଣେ ଦୀନନାଥ ରାଜା ଯଜ୍ଞ କରୁଥିଲା
ଯଜ୍ଞର ଶେଷରେ ରାଣୀ ପୁତ୍ରେକ ପାଇଲା ।
ପୁତ୍ର ଜନ୍ମୋତ୍ସବ ରାଜ୍ୟେ କରାଇଲା ରାଜା
ବହୁ ଧନରତ୍ନଦେଇ ସୁଖେପାଳେ ପ୍ରଜା ।
ବ୍ରାହ୍ମଣଙ୍କୁ ଡାକି ବହୁ ଧନରତ୍ନ ଦେଲା
କେତେକ ବିପ୍ରଙ୍କ ପାଇଁ ନଗର ତୋଳିଲା ।
କେତେ ବିପ୍ର ତହିଁ ଯାଇ ବାସକଲେ ସୁଖେ
ସୁଜ୍ଞଜନମାନେ ବୋଲି ହରି ହରି ମୁଖେ ।
ବ୍ରାହ୍ମଣ ପାଳିଲେ ନରେ ବସନ୍ତି ସ୍ୱର୍ଗରେ
ସୁତ କହୁଛନ୍ତି ଏହା ଶୌନକ ଆଗରେ ।
ଏ ପଦ୍ମପୁରାଣ ଅଟେ ସୁଧାମୟ ରସ
ମଧୁସୂଦନ ଯେ ସଦା କରିଅଛି ଆଶ ।
ହରି ହରି ବୋଲି ମୁଖେ ମୋର ଦିନଯାଉ
ହରିବେ ମୋର ବିପତ୍ତି ସେହି ମହାବାହୁ ।

ଇତି ଶ୍ରୀ ପଦ୍ମପୁରାଣେ ବ୍ରହ୍ମଖଣ୍ଡେ
ବ୍ରାହ୍ମଣ ପାଳନେ ନାମ
ଦ୍ୱାଦଶ ଅଧ୍ୟାୟ ।



## ତ୍ରୟୋଦଶ ଅଧ୍ୟାୟ

### ଜନ୍ମାଷ୍ଟମୀ ମାହାତ୍ମ୍ୟ କଥନ

ଶୌନକ ପୁଛନ୍ତି ସୁତଦେବ ମୁଖ ଚାହିଁ
ଜନ୍ମାଷ୍ଟମୀ ମାହାତ୍ମ୍ୟ ଯେ କହିବ ବୁଝାଇ ।
ସୁତଦେବ ବୋଲୁଛନ୍ତି ମୁନିବର ଶୁଣ
ଜନ୍ମାଷ୍ଟମୀର ଫଳ ମୁଁ କରୁଛି ବର୍ଣ୍ଣନ ।
ହରି ଜନ୍ମାଷ୍ଟମୀ ବ୍ରତ ଯେଉଁ ନର କରେ
ବ୍ରତଫଳେ ପରଲୋକେ ବସେ ବୈକୁଣ୍ଠରେ ।
ରୋହିଣୀ ନକ୍ଷତ୍ରଯୁକ୍ତ ସୋମ ବୁଧବାର
ପଡ଼ିଲେ ଅଷ୍ଟମୀ ନରେ କରିବ ନିକର ।
ମହାପାପୀ ନର ଯଦି ଏହି ବ୍ରତ କରେ
ସର୍ବପାପ ନାଶି ସେହୁ ବସେ ବୈକୁଣ୍ଠରେ ।
ମୂର୍ଖ ନରେ ଭ୍ରମେ ଯଦି ବ୍ରତ ନ କରନ୍ତି
ଇହକାଳେ ଦୁଃଖ ଅନ୍ତେ ନରକେ ପଡ଼ନ୍ତି ।

ଜନ୍ମାଷ୍ଟମୀ ଦିନ ନରେ ଭୋଜନ କରିଲେ
କୋଟି ଜନ୍ମ ଯାଏ ସେହି ପଡ଼ନ୍ତି ନର୍କରେ ।
ଏକଦା ଦିଲୀପ ରାଜା ବଶିଷ୍ଠଙ୍କୁ ଚାହିଁ
ବ୍ରତକଥା ପୁଛିଥିଲେ ହରଷିତ ହୋଇ ।
ସେ ତିଥିରେ ଜନାର୍ଦ୍ଦନ ହୋଇଥିଲେ ଜନ୍ମ
ଭାଦ୍ରମାସରେ ଅଶିତାଷ୍ଟମୀ ବିବରଣ ।
ଦେବୀଙ୍କ ଜଠରେ କିମ୍ପା ହୋଇଲେ ସେଜାତ
ଜନ୍ମ ହେବାର କାରଣ କହ ମୁନି ସୁତ ।
ବଶିଷ୍ଠ ରାଜାଙ୍କୁ ଚାହିଁ ବୋଇଲେ ଉତ୍ତର
ଜନ୍ମ ହେବାର କାରଣ ଶୁଣ ନୃପବର ।
ଦ୍ୱାପର ଯୁଗରେ ଧରା ବହୁକଷ୍ଟ ପାଇ
କଂସ ନୃପତି ପ୍ରତାପେ ନପାରିଲା ରହି ।
ଉମାପତିଙ୍କୁ ଜଣାଏ ବସୁଧା କାନ୍ଦିଣ
କଂସର ପ୍ରତାପେ ପ୍ରଭୁ ନପାରେ ରହିଣ ।
ତାହାର କାନ୍ଦିବାଦେଖି ଶିବ କୋପହେଲେ
ଉମାଦେବୀ ସହିତରେ ବ୍ରହ୍ମାପାଶେ ଗଲେ ।
ବ୍ରହ୍ମାଙ୍କୁ କହନ୍ତି ଶିବ ଶୁଣ ମୋର ବାଣୀ
କଂସର ପ୍ରତାପ ଦିନୁ ଦିନ ବଢ଼େ ପୁଣି ।
ବିଷ୍ଣୁଙ୍କୁ ଜଣାଅ ଯାଇଁ କ୍ଷିରୋଦ ସାଗରେ
କଂସକୁ ମାରିବାପାଇଁ ହୋନ୍ତୁ ଅବତାରେ ।
ଏହାଶୁଣି ବ୍ରହ୍ମା ତହୁଁ ହଂସ ପୃଷ୍ଟେ ବସି
କ୍ଷୀରୋଦ ସାଗରେ ଯାନ୍ତି ସର୍ବଦେବେ ମିଶି ।
ସର୍ବଦେବେ ମିଶି ସ୍ତୁତି ହରିଙ୍କୁ କରନ୍ତି
ନମସ୍ତେ କମଳନେତ୍ର ଲକ୍ଷ୍ମୀଙ୍କର ପତି ।
ନମୋ ଜଗତଜୀବନ ସର୍ବ ପାପ ହର
ସର୍ବେ ଆମ୍ଭେ ମିଳି କରିଅଛୁଁ ନମସ୍କାର ।
ତହୁଁ ବିଷ୍ଣୁ ପଚାରନ୍ତି ଦେବବୃନ୍ଦେ ଚାହିଁ
କି ନିମନ୍ତେ ଆସିଅଛ କହ ବ୍ରହ୍ମସାଇଁ ।
ବ୍ରହ୍ମା କହିଲେ ଶୁଣହେ ପ୍ରଭୁ ଜଗନ୍ନାଥ
ଶିବ ବରେ କଂସ ପୁଣି ହୋଇଣ ଉନ୍ମତ୍ତ ।
ନ ମାନେ ଦେବଗନ୍ଧର୍ବେ ନମାନେ ନରଙ୍କୁ
ଜିଣିବ ବୋଲି ଭାବିଛି ସ୍ୱର୍ଗର ଇନ୍ଦ୍ରଙ୍କୁ ।
ବର ନେଲାବେଳେ ରାଜା ମନୁ ଭୁଲିଗଲା
ଭଣଜା ହସ୍ତେ ମରିବ ବୋଲି ବରନେଲା ।
ଆହେ ପ୍ରଭୁ ତୁମ୍ଭେ ଯାଇ ଦେବକୀ ଗର୍ଭରେ
ଜନ୍ମହୋଇ ମାରିପାର ସେ କଂସ ରାଜାରେ ।

ତହୁଁ ବିଷ୍ଣୁ କହୁଛନ୍ତି ଶିବଙ୍କୁ ଯେ ଚାହିଁ
ଦୁର୍ଗାଙ୍କୁ ସଙ୍ଗେ ପଠାଅ ନ ପାରିବି ମୁହିଁ ।
ଦୁର୍ଗାଙ୍କୁ ସଙ୍ଗରେନେଇ ହରି ମର୍ତ୍ତ୍ୟେଗଲେ
ମାୟା କରିଣ ଦେବକୀ ଗର୍ଭରେ ରହିଲେ ।
ଦୁର୍ଗାଙ୍କୁ ଯଶୋଦାଗର୍ଭେ ଦେଲେ ପଠାଇଣ
ନିଜେ ଗର୍ଭରେ ରହିଲେ ନ ମାସ ନ ଦିନ ।
ରୋହିଣୀ ନକ୍ଷତ୍ର କୃଷ୍ଣାଷ୍ଟମୀ ଭାଦ୍ରବରେ
ଜନ୍ମହେଲେ କଂସରାଜା ବନ୍ଦୀଶାଳ ଘରେ ।
ତହିଁ ପୂର୍ବୁ ବସୁଦେବ ଦେବକୀ ସଙ୍ଗେଣ
ରଖିଥିଲା କଂସରାଜା ବନ୍ଦୀ ଯେ କରିଣ ।
ନନ୍ଦ ପତ୍ନୀ ଯଶୋଦାର କନ୍ୟା ଜନ୍ମହେଲା
ବସୁଦେବ ଶ୍ରୀହରିଙ୍କୁ ଅନ୍ଧାରେ ଦେଖିଲା ।
ଦିଶୁଛି ଦେହର ବର୍ଣ୍ଣ ଚନ୍ଦ୍ର ଜ୍ୟୋତି ପ୍ରାୟେ
ଶଙ୍ଖ ଚକ୍ର ଗଦାଧାରୀ ହୋଇଲାର ପ୍ରାୟେ ।
ଦେବକୀ ଚାହିଁଣ ପୁତ୍ର ହରଷିତ ହୋଇ
ଦୁଃଖରେ କହିଲା ବସୁଦେବଙ୍କୁ ଅନାଇ ।
ଯଶୋଦାଗର୍ଭରେ ଏକ କନ୍ୟା ଅଛି ହୋଇ
ଏ ପୁତ୍ରକୁ ନେଇ ତହିଁ ଛାଡ଼ିଆସ ଯାଇଁ ।
ଶୁଣି ବସୁଦେବ ମନେ ଦୁଃଖିତ ହୋଇଲା
ପୁତ୍ରକୁ ନେଇଣ କିଛି ପଥ ବାହିଗଲା ।
ପଥରେ ଦେଖିଲା ନଦୀ ବହୁଛି ଉଜାଣି
ଯମୁନା ବଢ଼ିବା ଦେଖି ବସୁଦେବ ପୁଣି ।
ମନେ ମନେ ଚିନ୍ତାକଲା ପ୍ରଭୁ ଚକ୍ରଧର
କେମନ୍ତେ ଯମୁନାନଦୀ ହେବି ମୁହିଁ ପାର ।
ବ୍ୟାକୁଳେ ଡାକିଲା ତହିଁ ମଧୁସୂଦନଙ୍କୁ
ତାହାଶୁଣି ପ୍ରଭୁ ମାୟା କରିଲେ ତାହାଙ୍କୁ ।
ହରିଙ୍କ ମାୟାରେ ଜଳ କମିଗଲା ତହୁଁ
ଆଣ୍ଠୁଏ ହୋଇଲା ବସୁଦେବ ଚାହୁଁ ଚାହୁଁ ।
ତହୁଁ କୃଷ୍ଣ ମାୟାକରି ପଡ଼ିଲେ ଖସିଣ
ବସୁଦେବ ଚିନ୍ତିଲା ଯେ ପ୍ରଭୁ ଜନାର୍ଦ୍ଦନ ।
ଆକୁଳେ ଡାକିଲା ତହିଁ କି ବୁଦ୍ଧି କରିବି
ଭାସିଯିବ ଏ ପୁତ୍ରକୁ କେମନ୍ତେ ରଖିବି ।
ତହୁଁ ହରି ଦୟାକରି ଆସିଲେ କୋଳକୁ
ବସୁଦେବ ନେଇ ଚଳିଗଲା ଯେ ଗୋପକୁ ।
ନନ୍ଦର ମନ୍ଦିରେ ଯାଇଁ ଦେଖିଲା କନ୍ୟାକୁ
କନ୍ୟା କୋଳେ ନେଇତହିଁ ଥୋଇଲା ପୁତ୍ରକୁ ।

ଫେରିଣ ଅଇଲା ପୁଣି ବନ୍ଦୀଶାଳ ଘର
ଦେବକୀ କନ୍ୟା ଦେଖିଣ ଦୁଃଖିତ ମନର ।
କଂସ ଶୁଣିଲେ ନିଶ୍ଚେ ସେ କନ୍ୟାକୁ ମାରିବ
ଏହା ଭାବି ଚିନ୍ତାକଲା ପ୍ରଭୁ ଲକ୍ଷ୍ମୀଧବ ।
କଂସର ନିକଟେ ବାର୍ତ୍ତା ପହଞ୍ଚିଲା ଶୁଣ
ଦେଖିବାପାଇଁକି ରାଜା ଆସିଲା ତକ୍ଷଣ ।
ତହୁଁ ଧରି କନ୍ୟାକୁ ସେ ପିଟିଲା ଶିଳାରେ
ହସ୍ତୁ କନ୍ୟା ଖସିଯାଇ ରହିଲା ଶୂନ୍ୟରେ ।
ଆକାଶେ ରହିଣ କନ୍ୟା ବୋଲଇ କଂସକୁ
ଗୋପେ ଶତ୍ରୁ ଜନମିଛି ମାରିବ ତୁମ୍ଭଙ୍କୁ ।
ଏହା କହି କନ୍ୟା ତହୁଁ ନିଜସ୍ଥାନେ ଗଲା
ଦୁଃଖିତ ମନରେ କଂସ ପୁରକୁ ଅଇଲା ।
ପାଞ୍ଚିଲା କିପରି ଶତ୍ରୁ ବିନାଶିବି ମୁହିଁ
ଏହା କହି ତାର ଭଗ୍ନି ପୁତନା ଡକାଇ ।
କହିଲା ତାହାକୁ ତୁହି ଯାଆ ଗୋପପୁରେ
ମୋର ଶତ୍ରୁ ଜନମିଛି ମାରିବୁ ତାହାରେ ।
ନନ୍ଦର ମନ୍ଦିରେ ଅଛି ତାର ଶିଶୁପୁତ୍ର
ବିଷ ଦେଇଣ କ୍ଷୀରରେ ମାରିବୁ ତୁରିତ ।
ଏହାଶୁଣି ପୂତନା ଯେ ମାୟାରୂପ ଧରି
ସୁନ୍ଦରୀ ନାରୀ ହୋଇଣ ଗଲା ଗୋପପୁରୀ ।
ନନ୍ଦପୁରେ ପୂତନା ଯେ ଆନନ୍ଦେ ମିଳିଲା
ଯଶୋଦାକୁ ଚାହିଁ ସେହି ବଚନ ବୋଇଲା ।
ସ୍ତନରୁ ସର୍ବଦା କ୍ଷୀର ମୋର ଅଛି ଦ୍ରବି
ପୁତ୍ରକୁ ଦିଅ ଗୋ ତୋର କ୍ଷୀର ଖୁଆଇବି ।
ଦେବୀ ହସ୍ତୁ ଶ୍ରୀକୃଷ୍ଣଙ୍କୁ କୋଳରେ ଧଇଲା
ସ୍ତନରେ ବିଷ ଭରିଛି ମାରିବି ଭାବିଲା ।
ମନରେ ଶ୍ରୀକୃଷ୍ଣ ତାର କଥା ଯେ ଜାଣିଲେ
କ୍ଷୀର ସଙ୍ଗତେ ପୂତନା ପ୍ରାଣକୁ ଶୋଷିଲେ ।
ଏପରି କେତେ ବିପଦ କୃଷ୍ଣଙ୍କୁ ପଡ଼ିଲା
ମାୟାକରି ଶିଶୁ କେତେ ଅସୁର ମାଇଲା ।
କେତେଦିନ ଅନ୍ତେ ହରି ଅସୁର ସଙ୍ଗରେ
ନିମନ୍ତ୍ରଣ ହୋଇଥିଲେ କଂସରାଜା ପୁରେ ।
ଧନୁ ଉତ୍ସବ ଦେଖିବା ନିମନ୍ତେ ସେ ଗଲେ
କୁବଳୟା ହସ୍ତୀ ଅଷ୍ଟମଲ୍ଲଙ୍କୁ ମାଇଲେ ।
ରଙ୍ଗସଭାରେ କଂସକୁ ମାଇଲେ ମଞ୍ଚାରେ
ସୁଖରେ ରହିଲେ କେତେଦିନ ଦ୍ୱାରକାରେ ।

ଏହିପରି ହରିଜନ୍ମ ଶୁଣିଲ ରାଜନ
ଜନ୍ମାଷ୍ଟମୀ ପରି ଆଉ ବ୍ରତ ନାହିଁ ପୁଣ ।
ଆଉ ଏକକଥା ମୁହିଁ କହୁଛି ବୁଝାଇ
ତୃତୀୟା, ଷଷ୍ଠୀ ଅଷ୍ଟମୀ ଏକାଦଶୀ ଏହି ।
ପୂର୍ବତିଥି ମାନଙ୍କରେ ଯଦି ବିଦ୍ଧାହେବ
ଶୁଦ୍ଧହୋଇଲେ ସେ ମଧ ପରିତ୍ୟାଗ ହେବ ।
ସପ୍ତମୀ ବିଦ୍ଧା ଅଷ୍ଟମୀ ଯଦିଚ ପଡ଼ିବ
ନକ୍ଷତ୍ର ଯୋଗ ଥିଲେହେଁ ବ୍ରତ ଛାଡ଼ିଦେବ ।
ନବମୀ ସହିତ ଯଦି ଜନ୍ମାଷ୍ଟମୀ ହୋଏ
ତେବେ ତାକୁ ଶାସ୍ତ୍ରଶୁଦ୍ଧ ଜାଣିବ ନିଶ୍ଚୟେ ।
ରୋହିଣୀ ନକ୍ଷତ୍ରଯୁକ୍ତ ନବମୀ ତିଥିରେ
ଅଷ୍ଟମୀ ପଡ଼ିଲେ ଶୁଦ୍ଧ ଜାଣିବ ବିଧିରେ ।
ରୋହିଣୀ ନକ୍ଷତ୍ରଯୁକ୍ତ ସୋମ ବୁଧବାରେ
ଏପରି ବ୍ରତ ନପଡ଼େ ଶତବରଷରେ ।
ଏପରି ବ୍ରତ କରିଲେ ବହୁ ପୁଣ୍ୟ ହୁଏ
ଶତକୁଳ ପାପ ନାଶି ସ୍ୱର୍ଗ ସେହୁ ଯାଏ ।
ରାଜା ପଚାରିଲେ ମୁନି କହ ତାହା ବାଣୀ
କିଏ କେବେ କାହିଁପାଇଁ କରିଥିଲା ଶୁଣି ।
ମୁନି କହୁଛନ୍ତି ଚିତ୍ରସେନ ନାମେ ରାଜା
ମହାପାପୀ ଅଧର୍ମରେ ପାଳଇ ପରଜା ।
ମୃଗୟା ନିମନ୍ତେ ଏକଦିନ ମନେକଲା
ସସୈନ୍ୟ ବନକୁ ରାଜା ହର୍ଷେ ବାହାରିଲା ।
ନିଜେ ବ୍ୟାଘ୍ର ମାରିବାକୁ ସୈନ୍ୟଙ୍କୁ କହିଲା
ଆଉ କେହି ଏ ବ୍ୟାଘ୍ରକୁ ନ ମାରହେ ଭଲା ।
ଏହି ସମୟରେ ବ୍ୟାଘ୍ର ପଳାଇଲା ତହିଁ
ମାରି ନପାରି ସେ ରାଜା ଗଲା ଲଜ୍ଜାପାଇ ।
ଯମୁନା ତଟରେ ଯାଇଁ ପ୍ରବେଶ ହୋଇଲା
ଦେବକନ୍ୟାମାନେ ପୂଜା କରିବା ଦେଖିଲା ।
ପୂଜାର କାରଣ ରାଜା ତାହାଙ୍କୁ ପଚାରି
ନିଜେ କରିବାକୁ ମନେ ମନେ ସେ ବିଚାରି ।
ତହୁଁ ଶୁଦ୍ଧଦିନେ ରାଜା ଜନ୍ମାଷ୍ଟମୀ କଲା
ନିରାହାର ହୋଇ ପୁଣି ସେଦିନ ରହିଲା ।
ଇହକାଳେ ସୁଖୀ ହୋଇ ପରଜା ପାଳିଲା
ଅନ୍ତକାଳେ ଯାଇ ରାଜା ସ୍ୱର୍ଗରେ ବସିଲା ।
ଜନ୍ମଷ୍ଟମୀ ବ୍ରତକଥା ଯେ ନର ଶୁଣିବ
ମହାପାପ ନାଶି ସେହୁ ସ୍ୱର୍ଗରେ ବସିବ ।

ସେ ହରି ପାଦରେ ସଦା ରହୁ ମୋର ମନ
ମଧୁସୂଦନ ଭଜଇ ନାମ ଅନୁକ୍ଷଣ ।
ସେ ହରି ପଦ୍ମପାଦକୁ କରିଅଛି ଆଶ
ମୋତେ ଆଉ ପ୍ରଭୁ ଥରେ ନକର ନିରାଶ ।

ଇତି ଶ୍ରୀ ପଦ୍ମପୁରାଣେ ବ୍ରହ୍ମଖଣ୍ଡେ
ଜନ୍ମାଷ୍ଟମୀ ମାହାତ୍ମ୍ୟ କଥନେ
ନାମ ତ୍ରୟୋଦଶ ଅଧ୍ୟାୟ ।



## ଚତୁର୍ଦ୍ଦଶ ଅଧ୍ୟାୟ

### ବ୍ରାହ୍ମଣ ମାହାତ୍ମ୍ୟ କଥନ

ଶୌନକ ପୁଚ୍ଛନ୍ତି ସୁତ ଦେବ ମୁଖ ଚାହିଁ
ବ୍ରାହ୍ମଣ ମାହାତ୍ମ୍ୟ କଥା ଦିଅନ୍ତୁ ବୁଝାଇ ।
ସୁତ କହିଲେ ଶୁଣହେ ମହା ମୁନିବର
ବ୍ରାହ୍ମଣ ମାହାତ୍ମ୍ୟ ଶୁଣି ପାପକର ଦୂର ।
ସବୁ ବର୍ଣ୍ଣର ଗୁରୁ ଯେ ବ୍ରାହ୍ମଣ ଅଟନ୍ତି
ସର୍ବ ଦେବର ଆଶ୍ରୟ ବିଷ୍ଣୁ ଯେ ଅଟନ୍ତି ।
ହରି ଜ୍ଞାନେ ବ୍ରାହ୍ମଣଙ୍କୁ ପ୍ରଣାମ କରିଲେ
ସମ୍ପଦଯୁକ୍ତ ହୋଇଣ ସୁଖିହୋନ୍ତି ନରେ ।
ଗର୍ବ ବହି ଯେହୁ ମନେ ପ୍ରଣାମ ନକରେ
ବ୍ରାହ୍ମଣଙ୍କ ପ୍ରତି ମନେ ଈର୍ଷାଭାବ ଧରେ ।
ହରି ଈର୍ଷା କରିଛି ଯେ ମନରେ ତାଙ୍କର
ସେହି ନର ଦୁଃଖେ ରହି କଟାଏ ସଂସାର ।
ଭିକ୍ଷାର୍ଥୀ ବ୍ରାହ୍ମଣଙ୍କୁ ଯେ ଚାହେଁ କ୍ରୋଧଭରେ
ଯମଦୂତ ବିନ୍ଧନ୍ତି ଯେ ସୁଚି ତା ଆଖିରେ ।
ବ୍ରାହ୍ମଣଙ୍କୁ କ୍ରୋଧଭରେ ଭର୍ତ୍ସନାଯେ କରେ
ଯମଦୁତ ଲୌହଅସ୍ତ୍ର ତା ମୁଖରେ ଭରେ ।
ଶ୍ରଦ୍ଧାରେ ଯେ ବ୍ରାହ୍ମଣଙ୍କୁ କରାଏ ଭୋଜନ
ସ୍ୱୟଂ ହରି ଭୋଜନ କରନ୍ତି ତା ଗୃହେଣ ।
ବିପ୍ର ପାଦୋଦକ ଯେହୁ ନର ପାନ କରେ
ସର୍ବ ପାପ ନାଶି ସେହୁ ବସେ ବୈକୁଣ୍ଠରେ ।
ବ୍ରହ୍ମାଣ୍ଡରେ ଯେତେ ଅଛି ପୂର୍ଣ୍ଣ ପୁଣ୍ୟ ତୀର୍ଥ
ସମସ୍ତେ ଅଛନ୍ତି ବିପ୍ର ପାଦେ ବିରାଜିତ ।
ବିପ୍ର ପାଦୋଦକ ଯେହୁ ନରଶିରେ ସିଞ୍ଚେ
କୋଟି ଜନ୍ମାର୍ଜିତ ପାପ ଦେହୁ ତାର ନାଶେ ।
ଦ୍ୱାପର ଯୁଗରେ ବୈଶ୍ୟ ଭୀମ ନାମେ ଥିଲା
ଏକ ବେଶ୍ୟା ସହିତରେ ସେହୁ ରହିଥିଲା ।
ସୁରାପାନ ପରଦ୍ରବ୍ୟ ଚୋରିକରେ ସେହୁ
ସଂସାର ସମସ୍ତ ପାପ କରୁଥାଏ ସେହୁ ।
ଏକଦା ଚୋରି କରିବା ମାନସରେ ଗଲା
ବ୍ରାହ୍ମଣ ପୁରରେ ଯାଇଁ ସେ ଦସ୍ୟୁ ମିଳିଲା ।
ବ୍ରାହ୍ମଣକୁ ଦେଖିଲା ସେ ତାହାର ପଥରେ
ଦୈନ୍ୟହୋଇ ଦସ୍ୟୁ ଅନ୍ନମାଗିଲା ତାହାରେ ।
ତହିଁ ବ୍ରାହ୍ମଣ ବୋଲଇ ଭୀମ ମୁଖ ଚାହିଁ
ଅନ୍ନ ରାନ୍ଧିବାକୁ ମୋର ଘରେ କେହି ନାହିଁ ।
ତଣ୍ଡୁଳ ଦେଉଛି ନେଇ ଅନ୍ନ ରାନ୍ଧି ଖାଆ
ଏକା ହରି ବିନା ମୋର କେହିନାହିଁ ସାହା ।
ଏହିକଥା ଶୁଣି ମନେ ଭୀମ ଚିନ୍ତାକଲା
ବ୍ରାହ୍ମଣ ମୁଖକୁ ଚାହିଁ ବଚନ ବୋଇଲା ।
ମୋର କେହିନାହିଁ ପ୍ରଭୁ ଦିଅ ମୋତେ ବାସ
ରହି ମୁଁ ସେବା କରିବି ହୋଇ ପଦ ଦାସ ।
ଏହାଶୁଣି ବ୍ରାହ୍ମଣ ଯେ ଆନନ୍ଦ ହୋଇଲା
ଭୀମକୁ ନେଇଣ ଗୃହେ ତାକୁ ଠାବଦେଲା ।
ଭୀମ ଭାବିଲା ମନରେ ବାସେ ରହିଥିବି
ଯେଉଁଦିନ ହେଲେ ମୁହିଁ ଚୋରିକରି ନେବି ।
କପଟ ମନରେ ଭୀମ ତାହାଘରେ ରହି
ବିପ୍ର ପାଦ ଧୌତ ଆଦି ସେବା କରୁଥାଇ ।
ଏହିପରି କିଛିଦିନ ରହନ୍ତେ ସେଠାରେ
ଅନ୍ୟଏକ ଚୋର ଆସି ପଶିଲା ସେ ଘରେ ।
ଭୀମ ଦେଖିଣ ତାହାକୁ ଧରିବାକୁ ଗଲା
ଚୋର ଏହାର ମସ୍ତକ କାଟି ପକାଇଲା ।
ବିପ୍ର ପାଦ ସେବାଫଳେ ମୁକ୍ତି ସେ ଲଭିଲା
ତାପାଇଁ ସ୍ୱର୍ଗରୁ ବିଷ୍ଣୁରଥ ଯେ ଅଇଲା ।
ବ୍ରାହ୍ମଣ ମାହାତ୍ମ୍ୟ ଯେହୁ ଭକ୍ତିଭରେ ଶୁଣେ
ସର୍ବପାପ ନାଶି ସେହୁ ବସେ ବୈକୁଣ୍ଠରେ ।
ସେ ବିପ୍ର ପାଦରେ ନିତ୍ୟ କରିଅଛି ଆଶ
ଭଣଇ ପଦ୍ମପୁରାଣ ଦୀନ ମଧୁଦାସ ।

ଇତି ଶ୍ରୀ ପଦ୍ମପୁରାଣେ ବ୍ରହ୍ମଖଣ୍ଡେ
ବ୍ରାହ୍ମଣ ମାହାତ୍ମ୍ୟ କଥନେ
ନାମ ଚତୁର୍ଦ୍ଦଶ ଅଧ୍ୟାୟ ।



## ପଞ୍ଚଦଶ ଅଧ୍ୟାୟ

### ହରିବାସର ମାହାତ୍ମ୍ୟ କଥନ

ଶୌନକ ପୁଚ୍ଛନ୍ତି ସୁତ ମୁନିଙ୍କ ଆଗର
ଏକାଦଶୀର ମାହାତ୍ମ୍ୟ କହ ମୁନିବର ।
ଏକାଦଶୀ କରି ନର କେଉଁ ଫଳ ପାଏ
ନକଲେ ବା ଜୀବନରେ କେଉଁ ପାପ ହୁଏ ।
ସୁତ ମୁନି କହୁଛନ୍ତି ଶୌନକଙ୍କୁ ଚାହିଁ
ଏକାଦଶୀର ମାହାତ୍ମ୍ୟ ଶୁଣ ମନଦେଇ ।
ସର୍ବଶ୍ରେଷ୍ଠ ବ୍ରତ ଅଟେ ଏକାଦଶୀ ଜାଣ
ସେ ବ୍ରତୀ ନରଙ୍କୁ ଭୟପାନ୍ତି ଯମଗଣ ।
ଏକାଦଶୀ ଦିନ ଉପବାସ ରହି ନର
ତୁଳସୀ ପତ୍ରେ ପୂଜିବ ବିଷ୍ଣୁଙ୍କୁ ନିକର ।
ଗୋଟିଏ ଦଳରେ କୋଟି ଯଜ୍ଞ ଫଳ ପାଏ
ଏକ ଏକାଦଶୀ ବ୍ରତେ ସବୁ ପାପଯାଏ ।
ଏକାଦଶୀ ମହୋତ୍ସବ ଯାର ରାଜ୍ୟେ ହୁଏ
ସେ ରାଜ୍ୟରେ ଯମଦୂତ ନ ପଶଇ ଭୟେ ।
ଏକାଦଶୀରେ ଯେ ପାପୀ ଭୋଜନ କରଇ
କୋଟି-ଜନ୍ମାର୍ଜିତ ପୁଣ୍ୟ ତାର ନଷ୍ଟଯାଇ ।
ଏକାଦଶୀରେ ଯେ ଅନ୍ନ ଭୋଜନ କରଇ
କାଶ ଖଞ୍ଜ କୁଷ୍ଠଆଦି ରୋଗକୁ ଭୋଗଇ ।
ଏକାଦଶୀରେ ଆହାର କରିଲେ ମାନବ
ଶୂକର ହୋଇ ଜନ୍ମଇ ସେହୁ ଏହି ଭବ ।
ସର୍ବପାପ କରି ନର ନିଷ୍କୃତି ଲଭଇ
ଏକାଦଶୀରେ ଭୋଜନ କଲେ ନର୍କେଯାଇ ।
ଏକାଦଶୀରେ ଭୋଜନ କରିବା ନିଷିଦ୍ଧ
ବାରମ୍ବାର ମନା କରିଛନ୍ତି ମୁନି ଧବ ।
ଗଙ୍ଗା ସରସ୍ୱତୀ ସ୍ନାନେ ଯେଉଁଫଳ ପାଏ
ପଦ୍ମପୁଷ୍ପେ ବିଷ୍ଣୁପୂଜା ସେହୁ କରିଥାଏ ।
ଏକାଦଶୀରେ ଆହାର ନକରିଲେ ପୁଣ
ଜନମ ନଲଭେ କେଭେ ମାତ୍ର-ଜଠରେଣ ।
ଦଶମୀ ବିଦ୍ଧାରେ ଏକାଦଶୀଟି ଅଶୁଦ୍ଧ
ଶାସ୍ତ୍ରରେ କହିଛି ଏହା କେଭେ ନୋହେ ଶୁଦ୍ଧ ।
ଦ୍ୱାଦଶୀ ରହିଣ ଯଦି ଏକାଦଶୀ ହୁଏ
ତେବେ ତାକୁ ଶୁଦ୍ଧବୋଲି ଜାଣିବ ନିଶ୍ଚୟେ ।
ଦ୍ୱାଦଶୀ କ୍ଷୟ ଯାଇତି ତ୍ରୟୋଦଶୀ ହେଲେ
ସେ ଦିନ ବ୍ରତ କରିଲେ ମୁକ୍ତପାନ୍ତି ଭଲେ ।
ପୂର୍ଣ୍ଣ ଏକାଦଶୀ ଥିଲେ ଦୋଷ କିଛି ନାହିଁ
ମୃତ୍ୟୁଅନ୍ତେ ଯାଇଁ ବିଷ୍ଣୁ ପଞ୍ଜରେ ପଶଇ ।
ଯଦି ପତି-ପତ୍ନୀ ଦୁହେଁ ଏ ବ୍ରତ କରନ୍ତି
ଇହ ଜନ୍ମେ ପୁତ୍ରପାଇ ସୁଖରେ ରହନ୍ତି ।
ଏକାଦଶୀରେ ଯେ ନର ଘୃତଦୀପ ଜାଳେ
ସେ ପୁଣ୍ୟ କହିନପାରେ ବ୍ରହ୍ମାମଧ ହେଲେ ।
ଅମୂଲ୍ୟବସ୍ତୁ ହରିଙ୍କୁ ପ୍ରଦାନ କରିବ
ତାର ପୁଣ୍ୟ କହି ନପାରନ୍ତି ସଦାଶିବ ।
କାଞ୍ଚନ ନଗ୍ରେ ବଲ୍ଲଭ ନାମେ ଏକ ଧନୀ
ଭାର୍ଯ୍ୟା ନାମ ହେମପ୍ରଭା ଅଟଇ ଶଙ୍ଖିନୀ ।
ପ୍ରତ୍ୟହ ପତି ସହିତ କଳିକରେ ସେହି
ଜଗତେ ସାଧ୍ୱୀ ବୋଲିଣ ନିଜେ ବୋଲୁଥାଇ ।
ବ୍ୟଭିଚାରିଣୀ ସ୍ୱଭାବ ଅଟଇ ତାହାର
ସଦାବେଳେ କ୍ରୋଧକରେ ସ୍ୱାମୀର ଉପର ।
ଏକଦା କଳିକରି ସେ ଶୋଇଲା ରୁଷିଣ
କିଛି ନଖାଇ ପଡ଼ିଲା ଗୃହ ଭିତରେଣ ।
ଦୁଇଦିନ ଅନ୍ତେ ଏକାଦଶୀ ଯେ ପଡ଼ିଲା
ଅନ୍ନ ବିନା ସେହି ନାରୀ ପଞ୍ଚତ୍ୱ ପାଇଲା ।
ତହୁଁ ବିଷ୍ଣୁ ଦୂତମାନେ ତାହାକୁ ଯେ ନେଲେ
ଆସିବା ଯମଦୂତଙ୍କୁ ଘଉଡ଼ାଇ ଦେଲେ ।
ହେଳାରେ ଏକାଦଶୀ ଯେ କଲେ ମଧ ନର
ସର୍ବପାପ ନାଶି ସେହୁ ବସେ ବୈକୁଣ୍ଠର ।
ସେହିପରି ଏହି ନାରୀ ବୈକୁଣ୍ଠକୁ ଗଲା
ଶ୍ରୀହରି ମନ୍ଦିରେ ଯାଇଁ ସୁଖରେ ରହିଲା ।
ଏକାଦଶୀରେ ଯେ ନର ପୁରାଣ ଶୁଣିବ
ବ୍ରାହ୍ମଣଙ୍କୁ ଡାକି ବହୁ ଧନ ଦାନ ଦେବ ।
ଏକାଦଶୀରେ ଯେ ନର ନକରେ ଆହାର
ସର୍ବପାପ ନାଶି ସେହୁ ବସେ ବୈକୁଣ୍ଠର ।
ଏକାଦଶୀ ମାହାତ୍ମ୍ୟକୁ ଯେ ନର ଶୁଣିବ
ଇହଜନ୍ମେ ସୁଖ ଅନ୍ତେ ବୈକୁଣ୍ଠେ ବସିବ ।

ସେ ହରି ପଦ୍ମପାଦରେ ପଶିଲି ଶରଣ
ମଧୁସୂଦନ ଭାବଇ ରଖ ନାରାୟଣ ।
ତୁମ୍ଭ ବିନୁଁ ଏ ସଂସାରେ ଆଉ କେହି ନାହିଁ
ଏ ଭବସାଗରୁ ପ୍ରଭୁ କର ମୋତେ ତ୍ରାହି ।
ଏ ପଦ୍ମପୁରାଣ ଅଟେ ଅମୃତର ବାଣୀ
ହରି ବୋଲିଣ ତରିବ ଭବ ତରଙ୍ଗିଣୀ ।

ଇତି ଶ୍ରୀ ପଦ୍ମପୁରାଣେ ବ୍ରହ୍ମ ଖଣ୍ଡେ
ସୁତ ଶୌନକ ସମ୍ବାଦେ ହରିବାସର
ମାହାତ୍ମ୍ୟ କଥନେ ନାମ
ପଞ୍ଚଦଶ ଅଧ୍ୟାୟ ।

## ଷୋଡ଼ଶ ଅଧ୍ୟାୟ

### ହରିପରିଚର୍ଯ୍ୟା ମାହାତ୍ମ୍ୟ କଥନ

ଶୌନକ ପୁଚ୍ଛନ୍ତି ସୁତଦେବଙ୍କ ଆବର
କି କର୍ମ କରିବେ ପାପହୀନ ହୋନ୍ତି ନର ।
କି କର୍ମ କରିଲେ ଶ୍ରୀହରିର କୃପାପାଇ
ସର୍ବପାପ ହରି ସେହୁ ବୈକୁଣ୍ଠେ ବସଇ ।
ସୁତମୁନି ବୋଲୁଛନ୍ତି ଶୌନକଙ୍କୁ ଚାହିଁ
ଯେ କର୍ମ କରିଲେ ଦେହୁ ପାପ ନାଶଯାଇ ।
ପୂର୍ଣ୍ଣିମାରଦିନେ ଯେହୁ ବିବିଧ ବିଧାନେ
ଭକ୍ତିଭରେ ଶ୍ରୀବିଷ୍ଣୁଙ୍କୁ ପୂଜାକରେ ମନେ ।
ଦ୍ୱାଦଶୀ ତିଥିରେ ବିପ୍ରଗଣଙ୍କୁ ଡାକିଣ
ଅନ୍ନଦାନ କରେ ଯେହୁ ଭକ୍ତି ସହିତେଣ ।
ଦ୍ୱାଦଶୀ ତିଥିରେ ଦୁଗ୍ଧ ର୍ଶକରା ମିଶାଇ
ଯେ ନର ବିଷ୍ଣୁଙ୍କୁ ସ୍ନାନକରେ ହର୍ଷେ ନେଇ ।
ନାନାବିଧ ପୁଷ୍ପ ନେଇ ବିଷ୍ଣୁଙ୍କୁ ପୂଜିବ
ସର୍ବପାପ ନାଶି ସେହୁ ବୈକୁଣ୍ଠେ ବସିବ ।
ଭକ୍ତିରେ ବ୍ରାହ୍ମଣଙ୍କୁ ଯେ ଅନ୍ନକରେ ଦାନ
ସର୍ବପାପ ନାଶି ସେହୁ ବସେ ବୈକୁଣ୍ଠେଣ ।
ବିଦ୍ୟାହୀନ ମୂଢ଼ବୁଦ୍ଧି ବ୍ରାହ୍ମଣଙ୍କୁ ଦାନ
ନକରିବ କେଭେ ଶୁଣ ପୂଣ୍ୟବାନଜନ ।
ଦାରୁମୟ ହସ୍ତୀ ଆଉ ଚିତ୍ରମୟ ମୃଗ
ବିଦ୍ୟାହୀନ ବ୍ରାହ୍ମଣଟି ନାମଧାରୀ ହେବ ।
ପୂର୍ବକାଳେ ଏକ ବିପ୍ର କରବୀରପୁରେ
କାଳଦ୍ୱିଜନାମେ ତହିଁ ସଦା ବାସକରେ ।
ମହାପାପୀ ଅଟେ ସେହୁ ନିଷ୍ଠୁର ବ୍ରାହ୍ମଣ
ସୁରାପାୟୀ ପରଦାରସ୍ତିରୀ ହରେ ପୁଣ ।
ମୃତ୍ୟୁଅନ୍ତେ ଯମଦୂତେ ତାଙ୍କୁ ବାନ୍ଧିନେଲେ
ଭୀଷଣ ନରକକୁଣ୍ଡେ ନେଇ ପକାଇଲେ ।
ଚିତ୍ରଗୁପ୍ତ ପାଞ୍ଜି ଦେଖି ରାଜାଆଗେ କହେ
ଏହି ମହାପାପୀ ବିପ୍ର ଚଳଇ ନିର୍ଦ୍ଧୟେ ।
ଏହାଶୁଣି ଯମରାଜା ଆଦେଶ କରିଲା
ନରକର ଅନ୍ତେ ନାଗକୁଳେ ଜନ୍ମହେଲା ।
ଏକଦା ଅଶ୍ୱିନମାସ ପୂର୍ଣ୍ଣମୀର ଦିନ
ନାଗ ବାହାରିଲା ଗର୍ତ୍ତୁ ହୋଇ ଦୁଃଖମନ ।
ଗୋଟିଏ ହରିମନ୍ଦିରେ ପ୍ରବେଶ ହୋଇଲା
ଲାଜା ବରାଟିକା ତହିଁଫୋପଡ଼ାଇଦେଲା ।
ହରିର ଅଗ୍ରେ ସେ ସବୁ ପଡ଼ିଲାକ ଯାଇଁ
ଦୟାକଲେ ହରି ତାଙ୍କୁ ଆନନ୍ଦିତ ହୋଇ ।
ମୃତ୍ୟୁଅନ୍ତେ ସେହିନାଗ ବୈକୁଣ୍ଠେ ବସିଲା
ଲାଜା ବରାଟିକା ଦେଇ ମୁକ୍ତି ସେ ପାଇଲା ।
ହରିଙ୍କି ଭକ୍ତିରେ ଲାଜା ବରାଟିକା ଦେଲେ
ମୁକ୍ତିପାଇ ନର ଯାଇଁ ବସେ ବିଷ୍ଣୁପୁରେ ।
ଏ ପଦ୍ମପୁରାଣ ଅଟେ ସୁଧାରସ ବାଣୀ
ଭକ୍ତିରେ ଶୁଣିଲେ ପାପ ନରହେଟି ପୁଣି ।
ନମସ୍ତେ କମଳାପତି ନମସ୍ତେ ଶ୍ରୀହରି
ପଦ୍ମପାଦେ ଜଣାଉଛି ଶଙ୍ଖ ଚକ୍ରଧାରୀ ।
ମୋହରେ ପଡ଼ିଣ ମୁହିଁ ହୋଇଛି ଅଜ୍ଞାନ
ଦିନେ ପ୍ରଭୁ ତୁମ୍ଭ ନାମ ଧରିନାହିଁ ପୁଣ ।
ଧ୍ରୁବପରି ତପସ୍ୟା ମୁଁ ନପାରିବି କରି
ଅଗତିର ଗତି ନାଥ ଦିଅହେ ନିସ୍ତାରି ।
ଦାନ ଧ୍ୟାନ ଜପ ତପ କିଛି ଜାଣେନାହିଁ
ସଧୁସୂଦନ ଭଜଇ ପାଦପଦ୍ମ ଦୁଇ ।

ଇତି ଶ୍ରୀ ପଦ୍ମପୁରାଣେ ବ୍ରହ୍ମଖଣ୍ଡେ
ହରିପରିଚର୍ଯ୍ୟା ମାହାତ୍ମ୍ୟ କଥନେ
ନାମ ଷୋଡ଼ଶ ଅଧ୍ୟାୟ ।

## ସପ୍ତଦଶ ଅଧ୍ୟାୟ

### ବିଷ୍ଣୁ ପାଦୋଦକ ମାହାତ୍ମ୍ୟ

ସୁତମୁନି କହୁଛନ୍ତି ଶୌନକଙ୍କୁ ଚାହିଁ
ବିଷ୍ଣୁ ପାଦୋଦକ ଗୁଣ ଶୁଣ ମନଦେଇ ।
ବିଷ୍ଣୁ ପାଦୋଦକ ନର ସ୍ପର୍ଶ କରିଥିଲେ
ଅକାଳମୃତ୍ୟୁ ତାହାକୁ ନୋହେ କେଉଁକାଳେ ।
ବିଷ୍ଣୁ ପାଦୋଦକ ନିତ୍ୟ ସ୍ନାନକରେ ଯେହୁ
ଗଙ୍ଗାସ୍ନାନ ସମଫଳ ପାଏ ନର ସେହୁ ।
ବିଷ୍ଣୁ ପାଦୋଦକ ସହ ତୁଳସୀରପତ୍ର
ଯେ ନର ବହଇ ସଦା ଶିର ଆଉ ଗାତ୍ର ।
ରିଷ୍ଟତାହାର ଜନମେ କେବେନୋହେ ଜାଣ
ଶତ୍ରୁ ଆଦି ତାର କ୍ଷତି ନକରନ୍ତି ପୁଣ ।
ଯଦି କୋଟିଧେନୁ ଦାନ କେହି ନର କରେ
ସର୍ବପାପ ନାଶି ସେହୁ ବସେ ବୈକୁଣ୍ଠରେ ।
କୋଟି ଅଶ୍ୱମେଧ ଯଜ୍ଞ ଯେହୁ କରିଥିବ
କୋଟି କନ୍ୟାଦାନ ମଧ ଜୀବନେ କରିବ ।
ଶସ୍ୟଶାଳିନୀ ଧରଣୀ ଯଦିକରେ ଦାନ
ବିଷ୍ଣୁପାଦୋଦକ ସଙ୍ଗେ ନହୁଏ ସମାନ ।
ତ୍ରେତାଯୁଗେ ଏକ ବିପ୍ର ନାମ ସୁଦର୍ଶନ
ପାପୀଙ୍କର ମଧ୍ୟେ ସେହୁ ଅଟଇ ପ୍ରଧାନ ।
ଶାସ୍ତ୍ର, ବ୍ରତ ସବୁ ନିନ୍ଦା କରୁଥାଏ ସେହୁ
ନିଜ ଉଦର ପୂରିଲେ ନପଚାରେ ଆଉ ।
ଏକଦିନ ସେହି ବିପ୍ର ମୃତ୍ୟୁମୁଖେ ଗଲା
ପାପ କରିଥିବାରୁ ସେ ନରକ ପାଇଲା ।
ଚିତ୍ରଗୁପ୍ତ ପାଞ୍ଜି ଦେଖି କହେ ଯମରାଜେ
ଏ ପାପୀର ପାଞ୍ଜିରେ କି ଅଛି କେଉଁକାର୍ଯ୍ୟେ ।
ହରିବାସରେ ଭୋଜନ ଏହୁ କରିଅଛି
ସୁରାପାନ ଆଉ ସ୍ତିରୀ ହରଣ କରିଛି ।
ଶାସ୍ତ୍ର ବ୍ରତ ଦେବ ନିନ୍ଦା କରିଅଛି ଯେତେ
ନରକେ ପଡୁଏ ପାପୀ କଳପ ପର୍ଯ୍ୟନ୍ତେ ।
ନରକ ଭୋଗ ଅନ୍ତେ ସେ ଶୂକର ଯୋନିରେ
ଜନ୍ମ ହେବ ପୁଣି ଯାଇଁ ସେ ମର୍ତ୍ତ୍ୟ ନଗରେ ।
ଏହିପରି ସେହି ବିପ୍ର ନରକେ ପଡ଼ିଲା
ନରକ ଅନ୍ତେ ଶୂକର ଯୋନି ପ୍ରାପ୍ତହେଲା ।
ଶୂକର ହୋଇଣ ମଧ ପାପକଲା ସେହୁ
କିଛିଦିନ ଅନ୍ତେ ତାର ପ୍ରାଣ ଗଲା ଦେହୁ ।
ମୃତ୍ୟୁଅନ୍ତେ କିଛିଦିନ ନରକେ ପଡ଼ିଲା
ବାୟସ ଯୋନିରେ ପୁଣି ଜନମ ହୋଇଲା ।
ହରି ପାଦୋଦକ କୁଣ୍ଡେ ଦିନେ ସ୍ନାନକଲା
ତହୁଁ ପାଦୋଦକ ପାଇ ପୁଣି ଉଠିଗଲା ।
ଏକଦା ସେହି ବାୟସ ବ୍ୟାଧମୁଖେ ପଡ଼ି
ଶର ବାଜନ୍ତେ ତାହାର ପ୍ରାଣଗଲା ଛାଡ଼ି ।
ମୃତ୍ୟୁଅନ୍ତେ ବିଷ୍ଣୁଦୂତେ ତାକୁ ଘେନିଗଲେ
ବିଷ୍ଣୁଙ୍କ ଆଜ୍ଞାରେ ନେଇ ବୈକୁଣ୍ଠେ ରଖିଲେ ।
ଏ ପଦ୍ମପୁରାଣ ଅଟେ ଅମୃତର ବାଣୀ
ସୁଜନେ ବୈକୁଣ୍ଠେ ବସ ଏ ପୁରାଣ ଶୁଣି ।
ନମସ୍ତେ ନମସ୍ତେ ପ୍ରଭୁ ଲକ୍ଷ୍ମୀଙ୍କର କାନ୍ତ
ମୁହିଁ ଜଣାଉଛି ବାରେ ଅନାଥର ନାଥ ।
ପାରିକର ଆହେ ପ୍ରଭୁ ମୋତେ ଚକାଡ଼ୋଳା
ମଧୁସୂଦନ କହଇ ଭାସିଯାଏ ଭେଳା ।

ଇତି ଶ୍ରୀ ପଦ୍ମପୁରାଣେ ବ୍ରହ୍ମଖଣ୍ଡେ
ହରିପାଦୋଦକ ମାହାତ୍ମ୍ୟକଥନେ
ନାମ ସପ୍ତଦଶ ଅଧ୍ୟାୟ ।



## ଅଷ୍ଟାଦଶ ଅଧ୍ୟାୟ

### ଅଗମ୍ୟା ଗମନ, ପାପପନୋଦନ ଉପାୟ ବର୍ଣ୍ଣନ

ସୁତ ବୋଲନ୍ତି ଶୌନକ ଶୁଣ ମୋର ବାଣୀ
ଅଗମ୍ୟା ଗମନ ପାପ କରିବି ବଖାଣି ।
ଚଣ୍ଡାଳ ପତ୍ନୀର ସହ ଯଦି ଦ୍ୱିଜବର
ପାପକାର୍ଯ୍ୟେ ରତଥାଏ ଆବର ନିକର ।
ତିନି ଉପବାସ କରି ପ୍ରଜାପତ୍ୟ କରେ
ତହିଁପରେ ସେହି ଗୋ ଯୁଗଳ ଦାନକରେ ।
ତହିଁପରେ ବ୍ରାହ୍ମଣଙ୍କୁ ଦକ୍ଷିଣା ଦେଇଣ
ମୁକ୍ତି ଲଭିବ ହେ ମୁନି ମୋହଠାରୁ ଶୁଣ ।
ଚଣ୍ଡାଳୀ ଗମନ କରେ ଯଦି ବୈଶ୍ୟ କ୍ଷତ୍ରୀ
ପ୍ରଜାପତ୍ୟ କୃଚ୍ଛ ବ୍ରତ କରିବ ସେ ନିତି ।
ଗୋ ମିଥୁନ ଯୁଗଳ ସେ ଯଦି ଦାନକରେ
ଏ ପାପରୁ ସେହୁ ତେବେ କିଞ୍ଚିତ ନିସ୍ତରେ ।

ଶୂଦ୍ର ଯଦି ଚାଣ୍ଡାଳୀର ସହ ଭାବ କରେ
ଚାରିଗୋ ମିଥୁନଦାନ ସେହୁ ତେବେ କରେ ।
ପ୍ରଜାପତି ବ୍ରତ ଯଦି କରିବ ଭକ୍ତିରେ
ତେବେ ସେହି ପାପୁ ନର ପ୍ରକାରେ ନିସ୍ତରେ ।
ସୁତ ବୋଲୁଛନ୍ତି ଆହେ ଶୁଣ ମୁନିବର
ମାତା, ଭଗ୍ନୀ, ସୁତା, ପୁତ୍ରବଧୂର ବିଚାର ।
ଏହିମାନଙ୍କୁ ଯେ ନର ରମଣ କରଇ
ଶତକଳ୍ପ ଯାଏ ସେହୁ ନରକେ ପଡ଼ଇ ।
ତାର ପ୍ରାୟଶ୍ଚିତ୍ତ କଥା ଏବେ ମୁନି ଶୁଣ
ତିନୋଟି କୃଚ୍ଛ୍ର ବ୍ରତ କରିବ ଆଚରଣ ।
ତିନି ଚାନ୍ଦ୍ରାୟଣ ବ୍ରତ କରିବ ବିଧିରେ
ଗୋ ମିଥୁନ ତ୍ରୟଦାନ କରିଲେ ଦ୍ୱିଜରେ ।
ପଞ୍ଚଗବ୍ୟ ପାନ ଅନ୍ତେ ଯଦି ହୋମକରେ
ପ୍ରାୟଶ୍ଚିତ୍ତ ହେଲା ବୋଲି କହିବ ତାହାରେ ।
ଆବର କହିବା ଏବେ ମୁନିବର ଶୁଣ
ବିମାତା, ମାତୃଶ୍ୱଷାଯେ ଗୁରୁପତ୍ନୀ ଜାଣ ।
ମାତୁଳାନୀ, ଭ୍ରାତୃବଧୂ ସ-ଗୋତ୍ରଯା ନାରୀ
ଯଦି ଗମନ କରଇ କେହି ଦୁରାଚାରୀ ।
ସେ ନର ଦୁଇଟି ପ୍ରଜାପତ୍ୟ ବ୍ରତ କଲେ
ଚାନ୍ଦ୍ରାୟଣ ବ୍ରତ ତିନି କରିବଟି ଭଲେ ।
ପଞ୍ଚ ଗୋ ମିଥୁନ ସହ ଦକ୍ଷିଣା ଯେ ଦାନ
ବିପ୍ରଙ୍କୁ ଦେଇଣ ତୋଷ କରାଇବ ମନ ।
ତହୁଁ ତାର ଶୁଦ୍ଧିହେଲା ବୋଲି ଜାଣ ମୁନି
ଶାସ୍ତ୍ରରେ ଯେ ପ୍ରାୟଶ୍ଚିତ୍ତ କରିଛି ବଖାଣି ।
ଯଦି କେହି ପାପୀ ମୋହେଗୋ ଗମନକରେ
ତିନି ଉପବାସ କରି ପଞ୍ଚଗବ୍ୟ ସାରେ ।
ଶତ ଧେନୁ-ସଦକ୍ଷିଣା ଦ୍ୱିଜେ ଦେବ ଦାନ
ଶତସଂଖ୍ୟା ବ୍ରାହ୍ମଣଙ୍କୁ ଦେବ ଅନ୍ନପାନ ।
ତେବେସେହି ଶୁଦ୍ଧବୋଲି ଶାସ୍ତ୍ରରେ ବୋଲାଏ
ପ୍ରାୟଶ୍ଚିତ୍ତ ନ କରିଲେ ନରକ ନିଶ୍ଚୟେ ।
ଯଦି କେହି ଅଶ୍ୱୀ ସହ ଗର୍ଦ୍ଦଭୀ ଶୂକରୀ
ଆବର ବାନରୀ ଛାଗୀ ସହ ପ୍ରୀତି କରି ।
ଗୋମୟୋଦକ କର୍ଦ୍ଦମେ ଆକଣ୍ଠ ପର୍ଯ୍ୟନ୍ତ
ନିରାହାରେ ତିନିରାତ୍ର ହୋଇବ ସଂସ୍ଥିତ ।
ତିନିରାତ୍ର ଉପବାସ ଏକରାତ୍ର ଜଳେ
ରହିଲେ ଶୁଦ୍ଧ ହୋଇବ ଜାଣିବ ସକଳେ ।

ଯେ ନର କାମମୋହିତ ହୋଇଣ ବ୍ରାହ୍ମଣୀ
ସହ ରମଣ କରଇ ପାପକୁ ନ ମଣି ।
ତିନି ପ୍ରଜାପତ୍ୟେ ଆଉ ତିନି ଚାନ୍ଦ୍ରାୟଣେ
ତିନୋଟି ଗୋଦାନ ଫଳେ ଶୁଦ୍ଧବୋଲିଗଣେ ।
ଯଦି ଏପରି ବ୍ରାହ୍ମଣୀ ବ୍ୟଭିଚାର କରେ
ପଞ୍ଚରାତ୍ର ପଞ୍ଚଗବ୍ୟ ସେହୁ ପାନକରେ ।
ସ-ଦକ୍ଷିଣା ଗୋ ଯୁଗଳ ଦାନକରେ ପୁଣି
ଶୁଦ୍ଧ ହୋଇଲା ବୋଲିଣ ଶାସ୍ତ୍ରକହେ ବାଣୀ ।
ନାରୀ ଯଦି ବ୍ୟଭିଚାର କରେ ସଂସାରରେ
ମୁକ୍ତହୋଇ ନପାରନ୍ତି ସମାଜ ମଧ୍ୟରେ ।
ନାରୀଙ୍କର ମୁକ୍ତିନାହିଁ ଶାସ୍ତ୍ରେ ଅଛି କହି
ଏଣୁ ବର୍ଜନ କରିବା କର୍ତ୍ତବ୍ୟ ଅଟଇ ।
ନର ଯଦି ନୀଚ ନାରୀ ସହ ଭାବ କରେ
କୃଚ୍ଛ୍ର ପ୍ରଜାପତ୍ୟ ଦ୍ୱାରା ଶୁଦ୍ଧ ହୋଇପାରେ ।
ନାରୀ ଅଟଇ ଜଳନ୍ତା ଅଙ୍ଗାର ସମାନ
ପୁରୁଷ ଅଟଇ ଜାଣ ଘୃତକୁମ୍ଭ ସମ ।
ଏଣୁ ପୁରୁଷେ ଦୁହିଙ୍କି ସମାନ ନକର
ସମାନ କରିଲେ ନିଶ୍ଚେ ବିପଦର ଘର ।
ଯଦି ନାରୀ ଉପପତି ଦ୍ୱାରା ଗର୍ଭକରେ
ତାହାକୁ ତ୍ୟାଗ କରିବ ଆହେ ଜ୍ଞାନୀନରେ ।
ଯଦି କେହି ନାରୀ ଘରୁ ପଳାଇଣ ଯାଏ
କଦାଚ ତାସଙ୍ଗେ ଆଉ ନମିଶ ଥୋକାଏ ।
ପରପୁରୁଷ ସହିତ ରମଣ କରିଲେ
ପ୍ରଜାପତ୍ୟ ବ୍ରତକଲେ ଶୁଦ୍ଧିହୋଏ ଭଲେ ।
ସେପରି ନାରୀକି ଘରୁ ବର୍ଜନ କରିଲେ
ଶାସ୍ତ୍ରେ କହିଅଛି ତାର ଦୋଷନାହିଁ ତିଳେ ।
ଯଦି ବ୍ରାହ୍ମଣ ହୋଇଣ ବ୍ରାହ୍ମଣୀ କି ହରେ
ଗୋରୁତିଳ ଦାନକଲେ ଶୁଦ୍ଧିହୋଏ ତାରେ ।
ପାପ କରିଲେ ଏପରି ପ୍ରାୟଶ୍ଚିତ୍ତ ଅଛି
ମଧୁସୂଦନ ବୋଲଇ ମନେ ନିଅ ବାଛି ।
ପାପ କରିଣ କିମ୍ପାଇଁ ଅବାଟରେ ପଡ଼
ହରି ହରି ନାମ କିମ୍ପା ମନୁ ନରେ ଛାଡ଼ ।
ପାପୁ ତ୍ରାହି କରିବାକୁ ଆଉ କେହି ନାହିଁ
ହରି ହରି ମୁଖେ ସଦା ବୋଲୁଥାଅ ଭାଇ ।

ଇତି ଶ୍ରୀ ପଦ୍ମପୁରାଣେ ବ୍ରହ୍ମଖଣ୍ଡେ
ଅଗମ୍ୟ ଗମନୋପାୟ ବର୍ଣ୍ଣନୋ
ନାମ ଅଷ୍ଟାଦଶ ଅଧ୍ୟାୟ ।

## ଊନବିଂଶ ଅଧ୍ୟାୟ

## ବିବିଧ ପାପାନୋଦନପାୟ ବର୍ଣ୍ଣନ

ସୁତ ବୋଲୁଛନ୍ତି ଶୌନକଙ୍କ ମୁଖ ଚାହିଁ
ବିବିଧ ପାପର ଦୋଷ ଶୁଣ ମନଦେଇ ।
ଅଜ୍ଞାନରେ ଯଦି କେହି ସୁରା ସ୍ପର୍ଶକରେ
ଏକ ବୃକ୍ଷ ଦଶଗୋରୁ ଦାନ ସେହି କରେ ।
ଚତୁଷ୍ଟଥେ ପ୍ରଜାପତ୍ୟ ବ୍ରତକୁ କରିବ
ପଞ୍ଚଗବ୍ୟ ପାନକରି ଦ୍ୱିଜେ ଦାନ ଦେବ ।
ଶତ ବିପ୍ରଙ୍କୁ ଆନନ୍ଦେ ଅନ୍ନଦାନ ଦେଲେ
ଏ ପାପରୁ ଉଦ୍ଧରିବ ଶାସ୍ତ୍ର ଏହା ବୋଲେ ।
ବିପଦେ ପଡ଼ିଣ କେହି ଅତି କାତରରେ
ଚଣ୍ଡାଳ ଘରରେ ଅନ୍ନ ଭୋଜନହିଁ କରେ ।
ସେ ପାପରେ କୃଚ୍ଛ୍ର ଚନ୍ଦ୍ରାୟଣ ବ୍ରତ କଲେ
ଶତ ଗୋରୁ ସଦକ୍ଷିଣା ବିପ୍ରଙ୍କୁ ସେ ଦେଲେ
ପଞ୍ଚଗବ୍ୟ ପାନକରି ଦେବତା ପୁଜିବ
ତେବେ ଯାଇଁ ଏ ପାପରୁ ମୁକତି ଲଭିବ ।
ଶୂଦ୍ରର ଉଚ୍ଛିଷ୍ଟ ଯଦି କେହି ଖାଇଥାଏ
ଦୁଇ ପ୍ରଜାପତ୍ୟ ବ୍ରତ କରି ଶୁଦ୍ଧ ହୋଏ ।
ବିପ୍ରଙ୍କୁ ଦାନଦେଇଣ ମୋହକୁ କରିବ
ପ୍ରାୟଶ୍ଚିତ ବୋଲି ଏହା ଶାସ୍ତ୍ରରେ କହିବ ।
ଯଦି କେହି ଅଲାବୁ ଓ ମାଂସ ଭକ୍ଷ କରେ
ଚାନ୍ଦ୍ରାୟଣ ବ୍ରତ କଲେ ଶୁଦ୍ଧହୋଏ ତାରେ ।
ଯଦି କେହି ଶୂଦ୍ର ମଦ୍ୟ ମାଂସ ପ୍ରିୟ ହୁଏ
ଚଣ୍ଡାଳ ପରି ତାହାକୁ ଦୂରକର ଭୟେ ।
ମୃତ୍ତିକା ଛୁତିକା ଜନର ଉଚ୍ଛିଷ୍ଟଟି କେହି
ଖାଇଲେ ଲାଗିବ ପାପ ଶାସ୍ତ୍ର ଅଛି କହି ।
ଶତସଂଖ୍ୟକ ଗାୟତ୍ରୀ ଜପ ସେହି କଲେ
ବ୍ରାହ୍ମଣ ପକ୍ଷରେ ଶୁଦ୍ଧ ହୋଇବଟି ଭଲେ ।
ସେ ପାପେ କ୍ଷତ୍ରୀୟ ପକ୍ଷେ ସହସ୍ରେକ ବାର
ଗାୟତ୍ରୀ ଜପ କରିଲେ ଶୁଦ୍ଧହେବ ତାର ।
ବୈଶ୍ୟ ପଞ୍ଚସସ୍ର ଥର ଜପେ ଶୁଦ୍ଧିହୋଏ
ଶୂଦ୍ର ପଞ୍ଚଗବ୍ୟ ପାନକଲେ ପାପ ଯାଏ ।
ନୀଚଲୋକ ପାତ୍ର ମଧ୍ୟୁଁ ଜଳ ଅବା ଦଧି
ପାନକଲେ କର ପ୍ରଜାପତ୍ୟ ବ୍ରତ ବିଧି ।
ଯଥାବିଧି ହୋମ ଦାନକରି ଶୁଦ୍ଧ ହେବ
ଶୂଦ୍ର ହୋଇଲେ କେବଳ ଦାନ ସେ କରିବ ।
ନୀଚଲୋକ ଦ୍ୱାରା ଦଣ୍ଡେ ତାଡ଼ିତ ହୋଇଲେ
ଅହୋରାତ୍ର ଉପବାସ କରିବଟି ଭଲେ ।
ଚାନ୍ଦ୍ରାୟଣ କିମ୍ବା ପ୍ରଜାପତ୍ୟ ବ୍ରତପରେ
ଅନ୍ନାଦି ହୋମକରିବ ନେଇଣ ଅଗ୍ନିରେ ।
ସ ଶିଖ ବପନକରି ପଞ୍ଚଗବ୍ୟ ପାନ
ଉତ୍ତମ ବ୍ରାହ୍ମଣେ ବରି ଗୋ ଯୁଗଳ ଦାନ ।
ଏତେ କର୍ମ କରି ପାପୁ ନର ଶୁଦ୍ଧ ହୁଏ
ଶାସ୍ତ୍ରମତେ କହିଲଇଁ ଶୁଣ ମୁନି ରାଏ ।
ମଦ୍ୟପାୟୀ ଗୃହେ କେହି ଭୋଜନ କରଇ
ତେବେ ସେହି ବ୍ୟକ୍ତି ନିଜକୁଳ ଭ୍ରଷ୍ଟହୋଇ ।
ଗୋରୁହନ୍ତା ଜୀବହନ୍ତା ଯେ ନର ଅଟଇ
ତିନି ପ୍ରଜାପତ୍ୟ କଲେ ସେହୁ ଶୁଦ୍ଧିହୋଇ ।
ସ ଶିଖ ବପନ ଆଉ ପଞ୍ଚଗବ୍ୟ ପାନ
ଅଗ୍ନିରେ ହୋମ କରିଣ ଦେବ ଧେନୁଦାନ ।
ଏପରି କରିଲେ ନରେ ତେବେ ଶୁଦ୍ଧିହୋଇ
ଅନ୍ନ ଜଳ ତାର ଘରୁ ଖାଆନ୍ତି ଯେ ନେଇ ।
ପ୍ରଜାପତ୍ୟ ନିୟମଟି କରିବା ହେ ଶୁଣ
ଯେ ବିଧିରେ କଲେ ନର ଶୁଦ୍ଧହୋନ୍ତି ପୁଣ ।
ତିନି ପ୍ରାତଃକାଳେ ଆଉ ତିନି ସାୟଂକାଳେ
ତିନି ଅସମୟେ ପୁଣି ଭୋଜନ କରିଲେ ।
ଏହାପରେ ତିନିଦିନ ଉପବାସ ରହି
ପ୍ରଜାପତ୍ୟ ବ୍ରତବୋଲି ଶାସ୍ତ୍ରେ ଅଛି କହି ।
ଏବେ କୃଚ୍ଛ୍ର ବ୍ରତ ବିଧି କରିବାହେ ଶୁଣ
ଏକ ରାତ୍ର ଉପବାସ ରହିଲେଟି ପୁଣ ।
ଦ୍ୱିତୀୟ ଦିନେ ଗୋମୁତ୍ର ଗୋମୟ ପିଇଲେ
କ୍ଷୀର, ଦୁଧ ଘୃତ କୁଶୋଦକ ପାନକଲେ ।
ସର୍ବ ପାପହର କୃଚ୍ଛ୍ର ବ୍ରତ ଜାଣ ଏହି
ଏ ବ୍ରତ କରିଲେ ନର ଶୁଦ୍ଧହୁଏ ଯାଇଁ ।
ଅତି କୃଚ୍ଛ୍ର ବ୍ରତ ଏବେ କହିବାହେ ଶୁଣ
ତିନି ପ୍ରାତଃ ତିନି ସାୟଂ କାଳରେ ଭୋଜନ ।
ତିନିଦିନ ଅଯାଚିତ ଭୋଜନ କରିଲେ
ତିନିଦିନ ଉପବାସ ରହିବଟି ଭଲେ ।

ଏହିପରି କଲେ ଅତି କୃଚ୍ଛବ୍ରତ ହୁଏ
ଏ ବ୍ରତ କରିଲେ ନର ଶୁଦ୍ଧ ପୁଣି ହୁଏ ।
ଏବେ ତୃପ୍ତ କୃଚ୍ଛବ୍ରତ କରିବା ହେ ଶୁଣ
ପ୍ରତ୍ୟେକ ତିନି ଦିନରେ ତପ୍ତ ଜଳପାନ ।
ତହିଁପରେ କ୍ଷୀର ଆଉ ଘୃତ ପାନ କଲେ
ତପ୍ତ କୃଚ୍ଛବ୍ରତ ବୋଲି ଜାଣିବଟି ଭଲେ ।
ଏବେ ଚାନ୍ଦ୍ରାୟଣ ବ୍ରତ ଶୁଣ ମନଦେଇ
ଶୁକ୍ଳପକ୍ଷେ ଏକ ଏକ ଦିନ ବୃଦ୍ଧି ପାଇ ।
କୃଷ୍ଣପକ୍ଷେ ଏକ ଏକ ଦିନ କମାଇଣ
ଭୋଜନ କରିବ ନିତ୍ୟେ ପିଣ୍ଡ ଅକାରେଣ ।
ଅମାବାସ୍ୟା ଦିନ ଉପବାସ ରହିଥିବ
ଚାନ୍ଦ୍ରାୟଣ ବ୍ରତ ବୋଲି ଶାସ୍ତ୍ରରେ କହିବ ।
ଶିଶୁ ଚାନ୍ଦ୍ରାୟଣ ବ୍ରତ ଏବେ ତୁମ୍ଭେ ଶୁଣ
ଉଦୟ କାଳରେ ଅନ୍ନ କରିବ ଭୋଜନ ।
ଅସ୍ତକାଳେ ଚାରିପିଣ୍ଡ ଭୋଜନ କରିଲେ
ଶିଶୁ ଚାନ୍ଦ୍ରାୟଣ ବ୍ରତ ଯାକୁ ଶାସ୍ତ୍ର ବୋଲେ ।
ଯେ ନାରୀ କୁଷ୍ମାଣ୍ଡ ନିଜେ ଛେଦନଟି କରେ
ତିନିଦିନ ଯାକେ ପଞ୍ଚଗବ୍ୟ ପାନ କରେ ।
ପରେ ପାଞ୍ଚୋଟି କୁଷ୍ମାଣ୍ଡ ସମମତ ସୁବର୍ଣ୍ଣ
ଦାନକଲେ ନାରୀଗଣ ଶୁଦ୍ଧହୋନ୍ତି ଶୁଣ ।
ଏ ପଦ୍ମପୁରାଣ ରସ ଅମୃତର ବାଣୀ
ସେ ପଦ୍ମ ପାଦରେ ଲୀନ ରହୁ ମଧୁ ପୁଣି ।
ହରି ହରି ହରିବୋଲ ଆନନ୍ଦରେ ମୁଖେ
କଳିଯୁଗେ ନାମ ଏକା ରହିଅଛି ସାକ୍ଷେ ।

ଇତି ଶ୍ରୀ ପଦ୍ମପୁରାଣେ ବ୍ରହ୍ମଖଣ୍ଡେ
ବିବିଧ ପାପୋନୋଦନ ଉପାୟ
ବର୍ଣ୍ଣନେ ନାମ ଉନବିଂଶ ଅଧ୍ୟାୟ ।



## ବିଂଶ ଅଧ୍ୟାୟ

### ଦାମୋଦର ପୂଜା ମାହାତ୍ମ୍ୟ କଥନ

ଶୌନକ ପୁଚ୍ଛନ୍ତି ସୁତ ଦେବ ମୁଖ ଚାହିଁ
କି କର୍ମ କରିଲେ ନାରୀ ପାପୁ ପାରିହୋଇ ।
ସୁତ ବୋଲୁଛନ୍ତି ମୁନି ଶୁଣ ମନଦେଇ
କାର୍ତ୍ତିକ ମାସରେ ନାରୀ ଯେ ବ୍ରତ କରଇ ।
ପ୍ରାତରୁ ଉଠିଣ ସ୍ନାନ କରିବ ନଦୀରେ
ତହିଁପରେ ରାଧାକୃଷ୍ଣ ପୂଜିବ ବିଧିରେ ।
ପତିସେବା ପରାୟଣା ହୁଏ ଯେଉଁ ନାରୀ
ଅନ୍ତକାଳେ ବସେ ଯାଇଁ ସେହି ବିଷ୍ଣୁପୁରୀ ।
ଯେ ନାରୀ କାର୍ତ୍ତିକମାସେ ଧୂପ ଦୀପ ଦେଇ
ରାଧା କୃଷ୍ଣଙ୍କୁ ଭକ୍ତିରେ ସେ ପୂଜା କରଇ ।
ବିଷ୍ଣୁଙ୍କୁ ଯେ ନାନାରଙ୍ଗ ବସ୍ତ୍ର ଦାନକରେ
ନାନାଜାତି ପୁଷ୍ପ ଆଣି ସଜାଏ ଶ୍ରଦ୍ଧାରେ ।
ନାନାଜାତି ନଇବେଦ୍ୟ ସମର୍ପିଲେ ନେଇ
ପ୍ରାତଃକାଳୁ ଶ୍ରୀହରିଙ୍କି ପୂଜା ଯେ କରଇ ।
ସେ ନାରୀ ନରକେ କେଭେ ନୁହଇ ପତିତ
ଅନ୍ତେ ବିଷ୍ଣୁପୁରେ ଯାଇ ବସଇ ନିରତ ।
ବିଧବା ଯୋଗ ତାହାକୁ କେଭେ ନ ଘଟଇ
ସର୍ବସୁଖ ଭୋଗ କରେ ପୃଥିବୀରେ ରହି ।
ତ୍ରେତାଯୁଗେ ଶଙ୍କର ବୋଲିଣ ଏକ ଶୂଦ୍ର
ସୌରାଷ୍ଟ୍ର ଦେଶରେ ବାସ ଅଟଇ ସେ ଭଦ୍ର ।
ତା ପତ୍ନୀର ନାମ କଳି ପ୍ରିୟା ଅଟେ ନାଣ
ସେହିପରି କଳି କରିବାକୁ ସେ ନିପୁଣ ।
ଅସତୀ ଅଟଇ ସେହି ଖୋଜେ ଉପପତି
ତୃଣପରି ମଣେ ସଖି ତା ନିଜର ପତି ।
ଏ ପତି ଅଯୋଗ୍ୟ ଯୋଗ୍ୟ ଅଟେ ପରପତି
ଏହାଭାବି ଉଚ୍ଛିଷ୍ଟ ଯେ ଦିଏ ନିଜ ପତି ।
ନୀଚ ଜନର ସଂସର୍ଗେ ମନ୍ଦଅଟେ ଯେହୁ
ନିଜ ସ୍ୱାମୀକି ଭର୍ତ୍ସନା କରଇଟି ସେହୁ ।
ମନେ ମନେ ଭାବେ ଏହି ପତି ମୋର କଣ୍ଟା
ଏହାକୁ ମାରିପାରିଲେ ସବୁ ଯିବ ତେଣ୍ଟା ।
ଏହା ଭାବି ଏକ ଉପପତି ସହ ସେହୁ
ପରାମର୍ଶ କରିଣ ବିଦେଶ ଯିବାହେଉ ।
ଏକଦିନେ ସ୍ୱାମୀସହ ନିଦ୍ରା ଯାଇଥିଲା
ଅସୀଦ୍ୱାରା ତାର କଣ୍ଠ ଛେଦନ କରିଲା ।
ତହୁଁ ଯାର ପତି ସହ ବାହାରିଲା ସେହି
ପଥରେ ଯାନ୍ତେଣ ବ୍ୟାଘ୍ର ଗଲା ତାକୁ ଖାଇ ।
ଏହାଦେଖି କଳିପ୍ରିୟା ଅଚେତନ ହେଲା
ଚେତା ପାଇଣ ଉଠି ସେ ବସିଣ କାନ୍ଦିଲା ।
ନିଜସ୍ୱାମୀକି ହତ୍ୟା ମୁଁ କରିଣ ଆସିଲି
ଦୈବଯୋଗେ ପଥରେ ମୁଁ ବିପଦେ ପଡ଼ିଲି ।

କି ବୁଦ୍ଧି କରିବି ଏବେ କାହିଁ ମୁହିଁ ଯିବି
ଦଇବକୁ ନିନ୍ଦାକରେ ମନେ ମନେ ଭାବି ।
ଏପରି ଭାବିଣ ନାରୀ ସେଠାରୁ ଚଳିଲା
ସେହି ରାତ୍ରେ ନିଜ ଗୃହେ ପ୍ରବେଶ ହୋଇଲା ।
ମୃତ ସ୍ୱାମୀ ପଡ଼ିଥିବା ତହିଁ ସେ ଦେଖିଲା
ବଦନେ ବଦନ ରଖି ବିକଳେ କାନ୍ଦିଲା ।
ବୋଇଲାହେ ନାଥ ଆଜି ତୁମ୍ଭେ ମୋତେକହ
ମୁହିଁ ମହାପାପୀ ଅଟେ ନକର ସନ୍ଦେହ ।
ତହୁଁ ସେ ବ୍ୟାକୁଳେ ଉଠି ସେଠାବରୁ ଗଲା
ନର୍ମଦା କୂଳରେ ଯାଇ ପ୍ରବେଶ ହୋଇଲା ।
ଦେଖିଲା ନାରିଏ ମିଳି ସ୍ନାନ କରୁଛନ୍ତି
କେହି ଗନ୍ଧ ପୁଷ୍ପଦ୍ୱାରା ବିଷ୍ଣୁଙ୍କୁ ପୂଜନ୍ତି ।
କେହି ନୈବେଦ୍ୟ ଦେଇଣ ହରିଙ୍କି ପୂଜଇ
ଏହାଦେଖି କଳିପ୍ରିୟା ତାଙ୍କୁ ପଚାରଇ ।
ତୁମ୍ଭେ ଏଠାରେ କି ବ୍ରତ କରୁଅଛ ପୁଣି
ନାରୀ ବୋଇଲେ କାର୍ତ୍ତିକ ବ୍ରତ ଅଟେ ପୁଣି ।
ଆମ୍ଭେମାନେ ପୂଜୁଅଛୁ ରାଧା ଗୋବିନ୍ଦଙ୍କୁ
ଏହାକୁ ପୂଜାକରିଲେ ନାଶିବୁ ପାପକୁ ।
ଏହାଶୁଣି କଳିପ୍ରିୟା ମନେ ଚିନ୍ତା କଲା
କାର୍ତ୍ତିକ ମାସରେ ବ୍ରତକରି ଦିନ ନେଲା ।
ଏହିପରି କଳିପ୍ରିୟା କିଛିଦିନ ଅନ୍ତେ
ବୈକୁଣ୍ଠେ ବସିଲାଯାଇ ସେହି ମୃତ୍ୟୁଅନ୍ତେ ।
କାର୍ତ୍ତିକ ବ୍ରତର ଫଳ ଶୁଣ ମନଦେଇ
ଶୁଣନ୍ତେଣ ଏହି ପାପ ଦେହେ ନରହଇ ।
ଅସତୀ ନାରୀର କଥା କହିଲି ମୁଁ ପୁଣ
ବିଶ୍ୱାସ କେବେ ସ୍ତିରୀଙ୍କି ନଯିବହେ ଜାଣ ।
ଏହା ବୁଝିଣ ମାନବେ ସାବଧାନ ହୁଅ
ହରି ପାଦପଦ୍ମ ସଦା ଚିନ୍ତା କରୁଥାଅ ।
ରାଧାକୃଷ୍ଣ ପୂଜାବ୍ରତ ଏବେ ଶୁଣିଲତ
ମଧୁସୂଦନ କହଇ ହରି ହରି ଚିନ୍ତ ।

ଇତି ଶ୍ରୀ ପଦ୍ମପୁରାଣେ ବ୍ରହ୍ମଖଣ୍ଡେ
ଦାମୋଦର ପୂଜା ମାହାତ୍ମ୍ୟେ
ନାମ ବିଂଶ ଅଧ୍ୟାୟ ।



## ଏକବିଂଶ ଅଧ୍ୟାୟ

### କାର୍ତ୍ତିକ ମାସ କୃତ୍ୟ କଥନ

ସୁତ ବୋଲନ୍ତି ଶୌନକ ମନଦେଇ ଶୁଣ
କାର୍ତ୍ତିକ ମାସର ବିଧି କହିବା ହେ ପୁଣ ।
ଆଶ୍ୱିନ ପୂର୍ଣ୍ଣିମା ଅନ୍ତେ ବ୍ରତାରମ୍ଭ କରି
ସମାପନ କରିବ ହେ ପୂର୍ଣ୍ଣମୀ ବିଚାରି ।
ଦିବସେ ଉତ୍ତରମୁଖା ରାତ୍ରିରେ ଦକ୍ଷିଣ
ମୁଖକରି ମଳମୂତ୍ର ତ୍ୟାଗକରେ ପୁଣ ।
ଜଳେପଥେଗୋଷ୍ଠେ ଆଉ ଶ୍ମଶାନେ ବାଲ୍ମୀକେ
ମଳମୂତ୍ର ତ୍ୟାଗ ନ କରିବେ ବ୍ରତୀଲୋକେ ।
ମଳତ୍ୟାଗ ପରେ ଶୁଦ୍ଧ ମୃତ୍ତିକା ଘେନିଣ
ବିଂଶବାର ଶୁଦ୍ଧଜଳେ କର ପ୍ରକ୍ଷାଳନ ।
ଏକବାର ଲିଙ୍ଗେ ଆଉ ଗୁହେ ପଞ୍ଚବାର
ଦୁଇହସ୍ତେ ଦଶବାର ପଦେ ପଞ୍ଚବାର ।
ମୃତ୍ତିକା ଘେନିଣ ଶୁଦ୍ଧ ଜଳେ ଧୌତକରି
ଅନନ୍ତର ମୁଖ ଶୁଦ୍ଧି କରିବ ବିଚାରି ।
ତତପରେ ସ୍ନାନସାରି ଜପିବ ଶ୍ରୀହରି
କହିବ ହେ ଜନାର୍ଦ୍ଦନ ଶ୍ୟାମ ବଂଶୀଧାରୀ ।
ତୁମ୍ଭ ପ୍ରୀତିଅର୍ଥେ ମୁହିଁ କାର୍ତ୍ତିକରେ ସ୍ନାନ
କରିଣ ପୂଜିବି ପ୍ରଭୁ ଆହେ ଭଗବାନ ।
ଦେଉଅଛି ଅର୍ଘ୍ୟ ପ୍ରଭୁ ଘେନ ରାଧାସହ
ମୋ ପ୍ରତି ପ୍ରସନ୍ନହୋଇ ହୃଦୁ ପାପ ଦହ ।
ପୂଜାପରେ ଯଥାବିଧି ତିଳକ କରିବ
ଉର୍ଦ୍ଧ୍ୱ ପୁଣ୍ଡ୍ରହୋଇ କେବେ କର୍ମ ନ କରିବ ।
ଅଛିଦ୍ର ଉର୍ଦ୍ଧ୍ୱ ପୁଣ୍ଡ୍ର ଯେ ଯାହାର ଲଲାଟେ
ଦେଖିଲେ ଜାଣ କୁକୁର ପଦ ଚିହ୍ନ ଅଟେ ।
ତହିଁପରେ ତୁଳସୀକି ଭକ୍ତିଭରେ ପୂଜିବ
ପୁରାଣ ଶୁଣିବ ଶ୍ରୀହରିରେ ଚିତ୍ତ ମଜ୍ଜି ।
ତହିଁପରେ ବ୍ରାହ୍ମଣଙ୍କୁ ଭକ୍ତିରେ ପୂଜି
ଏହିପରି ନିତ୍ୟକର୍ମ କ୍ରିୟାକୁ ସାରିବ ।
ପରାସନ ପରାନ୍ନ ଯେ ପରଶଯ୍ୟା ଜାଣ
ପରାଙ୍ଗନାକୁ ଛାଡ଼ିବ ଆହେ ବ୍ରତୀଜନ ।
ସୌବାରକ ମାସ ଯେ ଆମିଷ ମଧୁସହ
ବର୍ଜ୍ଜନ କରିବ ଚିତ୍ତେ ମଣି ଶୁଦ୍ଧ ଦେହ ।

ଜମ୍ବିଳ ଚୂର୍ଣ୍ଣ ଯେ ଆଉ ପର୍ଯ୍ୟୁ ସିତ ଅନ୍ନ
ଧାନ୍ୟ ମଧ୍ୟେ ମସୁରିକା ଭୂମିଜ ଲବଣ ।
ପ୍ରାଣ୍ୟଙ୍ଗ ଓ ଅଳ୍ପ ସରୋବର ସ୍ଥିତ ଜଳ
ଏ ସବୁକୁ ଆମିଷରେ ଗଣନ୍ତି ସକଳ ।
ବ୍ରତୀମାନେ ବ୍ରହ୍ମଚର୍ଯ୍ୟ ରଖିବେଟି ଜାଣ
ଚତୁର୍ଥକାଳେ ଯେ ପତ୍ରାବଳୀରେ ଭୋଜନ ।
ଛତ୍ରାକ ନାଳୀକ ହିଙ୍ଗୁ ପଲାଣ୍ଡୁ ପୂତିକା
ଲଶୁନ ମୂଳକ ଶୀଗ୍ରୁଫଳ ଯେ ତୁମ୍ବିକା ।
କପିତ୍ଥ କୁଷ୍ମାଣ୍ଡ ଆଉ ମସ୍ୟ ସୁତିକାନ୍ନ
କାଂସ୍ୟପାତ୍ରେ ଖାଦ୍ୟ ଆଦି ନକର ଭୋଜନ
ରଜସ୍ୱଳା ସ୍ତିରୀଙ୍କି ଯେ ନ ଛୁଇଁବ ପୁଣି
ଦୁଇ ତିନିଥର ଅନ୍ନ ନ ଖାଇବ ଜାଣି ।
ବାର ତିଥି ଖାଦ୍ୟ କଥା କହିବା ହେ ପୁଣ
ରବିବାରେ ଧାତ୍ରୀଫଳ ନ ଘେନିବ ପୁଣ ।
ପ୍ରତିପଦେ କୁଷ୍ମାଣ୍ଡ ଭକ୍ଷଣେ ଧନହାନୀ
ଦ୍ୱିତୀୟାରେ ବୃହାତୀ ଭକ୍ଷଣେ ପାପ ପୁଣି ।
ତୃତୀୟାରେ ପଟୋଳ ଭକ୍ଷଣେ ବୁଦ୍ଧିହାନି
ଚତୁର୍ଥୀରେ ମୂଳକ ଭୋଜନେ ବଳହାନି ।
ପଞ୍ଚମୀରେ ଯେହ୍ନୁ ବିଲ୍ୱ ଭକ୍ଷଣ କରଇ
ଷଷ୍ଠୀରେ ନିମ୍ବ ଭୋଜନେ ନୀଚ ଜନ୍ମପାଇ ।
ଦେହ ନାଶ ସପ୍ତମୀରେ ତାଳ ଭକ୍ଷଣରେ
ମୂର୍ଖ ଅଷ୍ଟମୀରେରେ ନାରିକେଳ ଭକ୍ଷ କରେ ।
ନବମୀରେ ଅଲାବୁ ଭକ୍ଷଣେ ମହାପାପ
ଦଶମୀରେ କଳମ୍ବି ଭକ୍ଷଣେ ବଧ ପାପ ।
ଦ୍ୱାଦଶୀରେ ପୂତିକା ଭୋଜନେ ବ୍ରହ୍ମହତ୍ୟା
ତ୍ରୟୋଦଶୀରେ ବାର୍ତ୍ତାକୀ ଭକ୍ଷେ ନାଶ ସୂତା ।
ଚତୁର୍ଦ୍ଦଶୀରେ ଯେ ମାସ ଭୋଜନରେ ରୋଗ
ଅମାବାସ୍ୟା ପୂର୍ଣ୍ଣମୀରେ ମାଂସଖାଦ୍ୟେଯୋଗ ।
ଖାଇଲେ ଏପରି ଦ୍ରବ୍ୟ ମହାପାପୀ ହୋଇ
ବ୍ରତୀ ଏହା ଖାଇବାର ଶାସ୍ତ୍ରେ ନ ଯୋଗାଇ ।
ଶ୍ରୀହରିର ପ୍ରୀତିଅର୍ଥେ ଅନ୍ନ ପରିତ୍ୟାଗ
କରିଥିଲେ ବ୍ରାହ୍ମଣଙ୍କୁ ଅନ୍ନଦାନ ଦେବ ।
ବ୍ରତପରେ ନିଜେ ଯାଇ ଅନ୍ନକୁ ଖାଇବ
ବିଷ୍ଣୁ ପ୍ରୀତିଅର୍ଥେ ନିତି ପୂଜା କରୁଥିବ ।
କାର୍ତ୍ତିକ ମାସର ବ୍ରତ ଅଟେ ଶ୍ରେଷ୍ଠ ବ୍ରତ
କୋଟି ଯଜ୍ଞ ସମସେହ୍ନୁ ନହୁଏଟି ସତ ।
ମନେବାକ୍ୟେକାର୍ଯ୍ୟେକର୍ମେ ଯେହ୍ନୁ ପାପଥାଏ
କାର୍ତ୍ତିକବ୍ରତରେ ସେହି ସବୁ ଲୀନହୁଏ ।
କାର୍ତ୍ତିକ ବ୍ରତର ପୁଣ୍ୟ କହି ଯେ ନପାରି
ପାପରାଶି ଦେହେ ତାର ନପାରଇ ଭରି ।
ପୂର୍ଣ୍ଣିମାରେ ଶ୍ରୀହରିର ପ୍ରୀତିର ନିମନ୍ତେ
ଅନ୍ନ ବସ୍ତ୍ର ଦାନକରେ ଶକ୍ତିର ନିୟତେ ।
କାର୍ତ୍ତିକ ବ୍ରତର ଫଳ ଶୁଣେ ଯେ ଭକ୍ତିରେ
ପାପରାଶି ଆଉ ତାର ନରହେ ଶରୀରେ ।
ଏ ପଦ୍ମ ପୁରାଣ ଅଟେ ଅମୃତର ବାଣୀ
ଶାରଦା ପ୍ରସାଦେ ମୁହିଁ ଲେଖିଲି ନଜାଣି ।
ଦୟାକର ମାତା ମୋତେ ଆଉ ମୁଁ ଲେଖିବି
ମଧୁସୂଦନ ବୋଲଇ ପଦ ଭାବୁଥିବି ।

ଇତି ଶ୍ରୀ ପଦ୍ମପୁରାଣେ ବ୍ରହ୍ମଖଣ୍ଡେ କାର୍ତ୍ତିକମାସ ବ୍ରତ ମାହାତ୍ମ୍ୟେ
ନାମ ଏକବିଂଶ ଅଧ୍ୟାୟ ।



## ଦ୍ୱାବିଂଶ ଅଧ୍ୟାୟ

### ତୁଳସୀ ମାହାତ୍ମ୍ୟ ବର୍ଣ୍ଣନ

ଶୌନକ ପୁଚ୍ଛନ୍ତି ସୁତଦେବ ମୁଖଚାହିଁ
ସୁଳସୀ ମାହାତ୍ମ୍ୟକଥା କହହେ ବୁଝାଇ ।
ଲୋକଙ୍କର ହିତପାଇଁ ପଚାରୁଛ ଏହା
କହି ମୋତେ ଶାନ୍ତିକର ଆହେ ମୁନିନାହା ।
ଶୁକଦେବ ବୋଲୁଛନ୍ତି ଶୁଣ ଆହେ ମୁନି
ତୁଳସୀ ମାହାତ୍ମ୍ୟ ମୁହିଁ କରୁଛି ବଖାଣି ।
ଯାରଘରେ ତୁଳସୀର କାନନ ବିରାଜେ
ତାର ଘରେ ପଶି ନପାରଇ ଯମରାଜେ ।
ଯେନର ଏହାକୁ ଘରେ ଭକ୍ତିଭରେ ପୋତେ
ଯମ ଦର୍ଶନ ତାହାକୁ ନହୁଏ କିଞ୍ଚିତେ ।
ତୁଳସୀ ରୋପଣ ଆଉ ପାଳନ ସେବନ
ଦର୍ଶନ ସ୍ପର୍ଶନ ଆଉ ଭକ୍ତିରେ ଭୂଜନ ।
ଯେ ନର ଏହା କରଇ ନିତି ଭକ୍ତିଭରେ
ପାପରାଶି ଆଉ ତାର ନରହେ ଦେହରେ ।
ତୁଳସୀ ମଞ୍ଜରୀରେ ଯେ ହରି ପୂଜାକରେ
ମୃତ୍ୟୁଅନ୍ତେ ବସେ ସେହୁଯାଇ ବୈକୁଣ୍ଠରେ ।
ଗଙ୍ଗା ଆଦି ଗୋଦାବରୀ ଯେତେ ନଦୀଗଣ
ତା ମୂଳରେ ସର୍ବଦା ଯେ ରହିଥାନ୍ତି ପୁଣ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଆଦି ସର୍ବ ଦେବ
ତୁଳସୀପତ୍ରରେ ତାଙ୍କ ହୋଇଥାଏ ଠାବ ।
ମୃତ୍ୟୁକାଳେ ତୁଳସୀର ମୃତ୍ତିକା ଲେପିଲେ
ନିଶ୍ଚେ ସେହି ନର ଯାଇଁ ବସେ ବୈକୁଣ୍ଠରେ ।
ତୁଳସୀକାଷ୍ଠ ଚନ୍ଦନ ନିତ୍ୟେ ଯେହୁ ଘେନେ
ପାପରାଶି ପଶି ନପାରନ୍ତି ଭୟମନେ ।
ତୁଳସୀକାଷ୍ଠର ମାଳା କଣ୍ଠରେ ଧରିଲେ
ତାର ଗୃହେ ହରି ସଦା ବିରାଜନ୍ତି ହେଳେ ।
ବିଷ୍ଣୁପୂଜା ଅନ୍ତେ ଯେଉଁ ତୁଳସୀମଞ୍ଜରୀ
ଧରିଥାଏ ଭକ୍ତିଭାବେ ମନେ ଶ୍ରଦ୍ଧାକରି ।
ସମସ୍ତ ଦେବତାମାନେ ଶ୍ରଦ୍ଧାରେ ତାହାକୁ
ଆଶୀର୍ବାଦ କରୁଥାନ୍ତି ମନେ ମନେ ତାକୁ ।
କଣ୍ଠରେ ତୁଳସୀମାଳା ଧାରଣ କରିଣ
ନିତ୍ୟ ଜନାର୍ଦ୍ଦନ ପୂଜା କରୁଥାଏ ପୁଣ ।
ଯେତେ ପୁଷ୍ପ ଭକ୍ତିଭରେ ଦେଇଥାଏ ସେହୁ
ଅୟୁତ ଗୋଦାନ ଫଳ ପାଉଥାଏ ସେହୁ ।
ଯେଉଁ ପାପ ବୁଦ୍ଧି ନର ମାଳା ନ ଧରଇ
ହରି କୋପାନଳେ ସେହୁ ଦଗ୍ଧ ହେଉଥାଇ ।
ତୁଳସୀମାଳା ଯେ ଆଉ ଧାତ୍ରୀମାଳା ପୁଣ
ମହାପାତକନାଶିନୀ ଅଟେ ପୁଣ୍ୟଦାନ ।
ତୁଳସୀକାଷ୍ଠର ମାଳା କେଶବଙ୍କୁ ଦେଇ
ତାହାପରେ ପିନ୍ଧେ ଯେହୁ ନିଜେଭକ୍ତିହୋଇ ।
ତା ଦେହରେ ପାପ ଆଉ ନ ରହଇ ତିଳେ
ଶତକଳ୍ପଯାଏ ସେହୁ ବସେ ବିଷ୍ଣୁଆଳେ ।
ତୁଳସୀକାଷ୍ଠର ମାଳା କଣ୍ଠରେ ଦେଖିଲେ
ଯମଦୂତେ ତାର ପାଶେ ନ ପଶନ୍ତି ହେଳେ ।
ତୁଳସୀବନରେ ଆଉ ଧାତ୍ରୀଛାୟା ତଳେ
ପିଣ୍ଡଦେଲେ ତାହା ପିତୃଗଣ ପାନ୍ତି ହେଳେ ।
ହସ୍ତରେ ମସ୍ତକେ ଆଉ ଗଳେ କର୍ଣ୍ଣଦେଶେ
ଯେଉଁ ନର ପିନ୍ଧିଥାଏ ହରି ସମାନ ସେ ।
ଧାତ୍ରୀପତ୍ର ଧାତ୍ରୀଫଳଦ୍ୱାରା ଯେ ହରିଙ୍କୁ
ପୂଜାକଲେ ଭକ୍ତିରେ ସେ ନଯାଏ ନର୍କକୁ ।
ସର୍ବ ତୀର୍ଥ ମୁନି ଆଉ ସର୍ବ ଦେବଯାକ
ଧାତ୍ରୀମୂଳେ ଅବସ୍ଥାନ କରିଥାନ୍ତି ଲୋକ ।
ଅନ୍ନ ଭକ୍ଷଣ କରେ ଯେ ଧାତ୍ରୀଛାୟା ତଳେ
ତାର ସଙ୍ଗ ନିଜେ ହରି ଭକ୍ଷୁଥାନ୍ତି ହେଳେ ।
ତୁଳସୀମୂଳର ବାରି ମସ୍ତକେ ଘେନିଲେ
ସର୍ବ ତୀର୍ଥ ସ୍ନାନଫଳ ସେହୁପାଏ ହେଳେ ।
ତୁଳସୀପତ୍ର ଗଳିତ ଜଳ ଯେହୁ ନେଇ
ପାନକରେ ବିଷ୍ଣୁଆଳେ ସଦା ରହିଥାଇ ।
ଦ୍ୱାପରଯୁଗରେ ଏକ ଆଦିତ୍ୟ ନାମେଣ
ବିପ୍ରଶ୍ରେଷ୍ଠ ବାସକରେ ସଦା ଆନନ୍ଦେଣ ।
ନିତ୍ୟ ତୁଳସୀମୂଳରେ ଜଳଦାନକରେ
ତୁଳସୀପତ୍ର ନେଇଣ ଗୃହକୁ ଯେ ଫେରେ ।
ଦିନେ ଏକ ଶ୍ୱାନଆସି ତୁଳସୀର ମୂଳ
ଜଳପିଇ ଫେରିଯାଉଥିଲା ନିଜ ଆଳ ।
ତହୁଁ ଏକ ବ୍ୟାଧ ଆସି ତାହାକୁ ବୋଲଇ
ରେ କୁକୁରୀ ବୁଲୁଛୁ ତୁ ଅନ୍ନକୁ ଯେ ଖାଇ ।
ଅନ୍ନକୁ ଖାଇଲୁ କିମ୍ବା ଭାଣ୍ଡ ଭାଙ୍ଗିଦେଲୁ
ମୋହରି ବାଣରେ ଏବେ ଦେଖରେ ମରିବୁ ।

ଏହ କହି ବ୍ୟାଧ ତାକୁ ଏକ ବାଣ ମାରି
ପକାଇଣ ଦେଇ ତାକୁ ବ୍ୟାଧଗଲା ଫେରି ।
ତହୁଁ ଆସି ଯମଦୂତ ପ୍ରବେଶି ସେଠାରେ
କୁକୁରକୁ ନେବାପାଇଁ ବାହାରେ ସତ୍ୱରେ ।
ବିଷ୍ଣୁ ଦୂତମାନେ ତହିଁ ପ୍ରବେଶିଲେ ଆସି
କୁକୁରୀକୁ ନେବାପାଇଁ ବିଧାନ ଆକର୍ଷି ।
ଏହାଦେଖି ଯମଦୂତ ପଚାରିଲେ ତାଙ୍କୁ
କେଉଁ ପୁଣ୍ୟବଳେ ତାକୁ ନିଅ ବୈକୁଣ୍ଠକୁ ।
ବିଷ୍ଣୁ ଦୂତମାନେ ତହୁଁ ଉତ୍ତର ଯେ ଦେଲେ
ପୂର୍ବେ ଏହି କୁକୁରୀ ଯେ ଏକ ରାଜା ଥିଲେ ।
ସତୀତ୍ୱ ନାଶରେ ଏହୁ ନର୍କ ପାଇଥିଲା
ତପ୍ତ ତାମ୍ର ନାରୀସଙ୍ଗେ ଶୟନ ଯେ କଲା ।
ତପ୍ତ ଲୌହ ସ୍ତମ୍ଭ ଏକ ଆଲିଙ୍ଗନ କରି
ନରକର ଭୋଗ ଅନ୍ତେ ହୋଇଲା କୁକୁରୀ ।
ତୁଳସୀ ମୂଳର ପାଣି ପିଇଥିଲା ଏହୁ
ସେଥିପାଇଁ ତାକୁ ଆମ୍ଭେମାନେ ନେଇଯାଉଁ ।
ଏହାକହି ବିଷ୍ଣୁଦୂତେ କୁକୁରୀକୁ ନେଲେ
ବୈକୁଣ୍ଠରେ ନେଇ ତାକୁ ଆନନ୍ଦେରଖିଲେ ।
ତୁଳସୀର ମାହାତ୍ମ୍ୟ ଯେ ଶ୍ରଦ୍ଧାରେ ଶୁଣଇ
ସେ ନର ଦେହରେ ପାପରାଶି ନ ରହଇ ।
ଯେ ନର ଭକ୍ତି ସହିତ ତୁଳସୀର ପୂଜା
କରୁଥାଏ ନିତ୍ୟ ଆଉ ଧାତ୍ରୀବୃକ୍ଷ ପୂଜା ।
ମୃତ୍ୟୁ ଅନ୍ତେ ବସେ ସେହୁ ଯାଇ ବୈକୁଣ୍ଠରେ
ଇହଲୋକେ ସୁଖ ଆଉ ଧନ ଭୋଗକରେ ।
ଏ ପଦ୍ମ ପୁରାଣ ଅଟେ ସୁଧାମୟ ରସ
ଭାବେ ଭଣଇ ଏ ପଦ ଦୀନ ମଧୁଦାସ ।

ଇତି ଶ୍ରୀ ପଦ୍ମପୁରାଣେ ବ୍ରହ୍ମଖଣ୍ଡେ
ତୁଳସୀ ମାହାତ୍ମ୍ୟ ବର୍ଣ୍ଣନେ
ନାମୋ ଦ୍ୱାବିଂଶ ଅଧ୍ୟାୟ ।



## ତ୍ରୟୋବିଂଶ ଅଧ୍ୟାୟ

### ବିଷ୍ଣୁ ପଞ୍ଚକ ମାହାତ୍ମ୍ୟ କଥନ

ଶୌନକ ପୁଚ୍ଛନ୍ତି ସୁତଦେବ ମୁଖଚାହିଁ
କାର୍ତ୍ତିକମାସର ଶେଷ ପାଞ୍ଚଦିନପାଇଁ ।
ପଞ୍ଚକଦିନର କଥା କହ ମୁନିବର
କିପରି ସେ ଦିନମାନ ଅଟେ ପାପହର ।
ସୁତକହିଲେ ମୁନିହେ ଶୁଣ ମନଦେଇ
ପଞ୍ଚକଦିନ ମାହାତ୍ମ୍ୟ କହିବି ବୁଝାଇ ।
ସବୁ ବ୍ରତଠାରୁ ଅଟେ ଏହି ବତ୍ର ଶ୍ରେଷ୍ଠ
ବିଷ୍ଣୁ ପଞ୍ଚକ ଅଟଇ ମହତ ଗରିଷ୍ଠ ।
ପଞ୍ଚକଦିନରେ ଗନ୍ଧ ପୁଷ୍ପ ଧୂପ ଦୀପ
ବସ୍ତ୍ର ନାନାବିଧ ଫଳ ରଖିବ ସମୀପ ।
ରାଧାସହ ଶ୍ରୀହରିଙ୍କି ପୂଜାକରେ ଯେହୁ
ସର୍ବପାପ ନାଶି ବୈକୁଣ୍ଠରେ ବସେ ସେହୁ ।
ଗୃହସ୍ଥ ବ୍ରହ୍ମଚାରୀ ବା ବାନପ୍ରସ୍ଥ ଆଦି
ବିଷ୍ଣୁ ପଞ୍ଚକ ନକରି ନପାରନ୍ତି ଭେଦି ।
ବିଷ୍ଣୁ ପଞ୍ଚକର ପ୍ରତିଦିନେ ମୃଣ୍ଡେ ସ୍ନାନ
କରୁଥିଲେ ସର୍ବ ତୀର୍ଥଫଳ ପାଏ ଜନ ।
ଶ୍ରୀହରିଙ୍କ ସମ୍ମୁଖେ ବା ତୁଳସୀର ଆଗେ
ଘୃତପୂର୍ଣ୍ଣ ପ୍ରଦୀପକୁ ଜାଳିବ ସରାଗେ ।
ଶ୍ରୀହରିଙ୍କି ପ୍ରୀତିପାଇଁ ଆକାଶ ପ୍ରଦୀପ
ଜାଳିଲେ ସେ ଦୀପ ପାନ୍ତି ସର୍ବ ଦେବଲୋକ ।
ଯଦି କେହି ପାପୀ ଏହା ଭକ୍ତିରେ କରଇ
ତାର ଦେହୁ ସର୍ବପାପ ନିମିଷେ ହରଇ ।
ଯଦି କେହି ମଧୁ କ୍ଷୀର ଘୃତ ଆଦି ନେଇ
ଅଚ୍ୟୁତକୁ ସ୍ନାନକରାଏ ସେ ପୂଜାଦେଇ ।
ଦେବଦେବଙ୍କୁ ନୈବେଦ୍ୟ ନିତ୍ୟେ ଦେଉଥିବ
ନୈବେଦ୍ୟର ପୁଣ୍ୟ ବ୍ରହ୍ମା କହି ନ ପାରିବ ।
ଏକାଦଶୀରେ ମନ୍ତ୍ରରେ ଚାରଣାଦି କରି
ଗୋମୟ ନିଷ୍ପ୍ରୋଶନରେ ପୂଜିବ ଶ୍ରୀହରି ।
ଦ୍ୱାଦଶୀରେ ସମନ୍ତକ ଗୋମୂତ୍ର ପ୍ରାଶନ
କରିଣ ପୁଜିବ ଶ୍ରୀହରିଙ୍କି ଭକ୍ତିରେଣ ।
ତ୍ରୟୋଦଶୀ ଚତୁର୍ଦ୍ଦଶୀ ତିଥିରେଟି ପୁଣ
ଯଥାକ୍ରମେ କ୍ଷୀର ଦଧି କରିବ ପ୍ରାଶନ ।
ଚାରିଦିନ ଲଙ୍ଘନର ଅନ୍ତେ ପାଞ୍ଚଦିନେ
ସ୍ନାନାନ୍ତେ ବିଷ୍ଣୁଙ୍କୁ ପୂଜା କରିବ ଯତନେ ।
ଭକ୍ତିଭାବେ ବ୍ରାହ୍ମଣଙ୍କୁ କରାଇ ଭୋଜନ
ଦକ୍ଷିଣାଦି ଦେଇ ତୋଷ କର ତାଙ୍କ ମନ ।
ଅନନ୍ତର ରାତ୍ରିରେ ଯେ ମନ୍ତ୍ର ଆଦି କରି
ପଞ୍ଚଗବ୍ୟକୁ ଭକ୍ଷଣ କରିବ ବିଚାରି ।

ଏହା କରିବାକୁ ଅସମର୍ଥ ଯେଉଁ ନର
ତାହାପକ୍ଷେ ଫଳମୂଳ ଭୋଜନଟି ସାର ।
ଯେ ନର ବିଷ୍ଣୁପଞ୍ଚକ ଅନୁଷ୍ଠାନ କରେ
ତୁଳସୀଦଳେ ଶ୍ରୀହରି ନିତ୍ୟ ପୂଜାକରେ ।
ଏପରି ଲୋକଙ୍କୁ ସ୍ୱୟଂ ନାରାୟଣ ବୋଲି
ମଣିବ ହେ ପାପୀଲୋକ ମନରେ ବିଚାରି ।
ତ୍ରେତାଯୁଗେ ଦସ୍ୟୁ ଏକ ନାମେ ଦଣ୍ଡକର
ସର୍ବଦା ସେ ଧର୍ମ ନିନ୍ଦା କରଇ ମନର ।
ମିଥ୍ୟାବାଦୀ ମିତ୍ରଘାତୀ ଅଟଇ ସେ କ୍ରୁର
ବେଶ୍ୟା ବିଭ୍ରମ ଲୋଲୁପ ଅଟଇ ସେ ଛାର ।
ବ୍ରହ୍ମସ୍ୱ ହରେ ପରସ୍ତ୍ରୀଗାମୀ ଅଟେ ସେହୁ
ଶରଣାଗତ ଘାତୀଯେ ପାଷାଣ୍ଡଟି ସେହୁ ।
ଗୋ ମାଂସଭୋଜୀ ଯେ ଆଉ ପରନିନ୍ଦାକାରୀ
ବିଶ୍ୱାସଘାତୀ ଆବର ସୁରାପାନ କାରୀ ।
ଏହାଦେଖି ତାର ଜ୍ଞାନୀ ବନ୍ଧୁଗଣ ଆସି
ଦଣ୍ଡ କରକୁ ଦେଖିଣ କହନ୍ତି ଆକ୍ରୋଶି ।
ରେ ମୂଢ଼ ମୁରୁଖ ତୁହି ଅଟୁ ଦୁରାଚାରୀ
ନିର୍ମଳକୁଳେ କଳଙ୍କ ଲଗାଇଲୁ ବାରୀ ।
ପୂର୍ବକୁଳ ଧର୍ମ ତୁହି ସବୁ ନାଶ କଲୁ
ଆଜିଠାରୁ ତୋତେ ଆମ୍ଭେ କୁଳକୁ ଛାଡ଼ିଲୁ ।
ଅନନ୍ତର ଦଣ୍ଡକର ମହାଦୁଃଖ ପାଇ
ମହା ଅରଣ୍ୟେ ପଶିଲା କୁଳଭ୍ରଷ୍ଟ ହୋଇ ।
ତହୁଁ ଯାଇଁ ବନେ ଦସ୍ୟୁ ସଙ୍ଗରେ ମିଳିଲା
ତାଙ୍କ ସଙ୍ଗେ ଦସ୍ୟୁବୃତ୍ତି ନିଜେ ଆଚରିଲା ।
କ୍ଷୁଧାର୍ଥୀ ହୋଇଣ ବୁଲେ ସ୍ଥାନୁସ୍ଥାନେ ସେହୁ
ଏକସ୍ଥାନେ ମିଳିଲା ସେ ଦଣ୍ଡକର ରାହୁ ।
ଦେଖିଲା ଧାତ୍ରୀମୂଳରେ କେତେଜଣ ବସି
ପୂଜା କରୁଅଛନ୍ତି ସେ ବିଷ୍ଣୁପାଖେ ଆସି ।
ତାହାଙ୍କୁ ଚାହିଁ କହିଲା ସେହି ଦଣ୍ଡକର
କ୍ଷୁଧା ସହି ନପାରିବି ପ୍ରାଣ ଯାଏ ମୋର ।
କିଛି ଭୋଜ୍ୟ ଦିଅ ମୋତେ ଖାଇହେବିଶାନ୍ତ
ଏହା ଶୁଣିଣ ବୋଇଲେ ସେ ଧର୍ମ ନୀରତ ।
ବିଷ୍ଣୁପଞ୍ଚକ ଏ ବ୍ରତ ସର୍ବ ପାପ ହର
ଅନ୍ନ ଖାଇବାକୁ କିମ୍ପା ମନ ହୁଏ ତୋର ।
ଏହା ଶୁଣି ଦଣ୍ଡକର ତାହାଙ୍କୁ ବୋଲଇ
ବ୍ରତ କହ ମୋତେ ମହାପାପୀ ମୁଁ ଅଟଇ ।
ଉଦ୍ଧାର ପାଇବି ମୁହିଁ କହ ତା ଉପାୟ
ବ୍ରତୀମାନେ ବୋଲୁଛନ୍ତି ନକର ତୁ ଭୟ ।
ବିଷ୍ଣୁ ପଞ୍ଚକ ଅଟଇ ଶ୍ରେଷ୍ଠ ବ୍ରତ ପୁଣି
ଏ ବ୍ରତ କରିଲେ ପାପ ନରହେଟି ଜାଣି ।
ଏହାଶୁଣି ଦଣ୍ଡକର ବ୍ରତ ଆଚରିଲା
ସେହିଦିନଠାରୁ ବିଷ୍ଣୁ ପରାୟ ଦିଶିଲା ।
କିଛିଦିନ ଅନ୍ତେ ପୁଣି ମୃତ୍ୟୁ ତାର ହେଲା
ମୃତ୍ୟୁ ହେବାରୁ ତାପାଇଁ ସ୍ୟନ୍ଦନ ଆସିଲା ।
ବିଷ୍ଣୁ ଦୂତମାନେ ତାକୁ ନେଲେଟି ବସାଇ
ରଖାଇଲେ ବିଷ୍ଣୁପାଶେ ବୈକୁଣ୍ଠରେନେଇ ।
ଭକ୍ତିଭରେ ଏ ପୁରାଣ ଯେହୁଟି ଶୁଣିବ
ସର୍ବପାପ ହରି ସେହୁ ବୈକୁଣ୍ଠେ ବସିବ ।
କୋଟି ଜନ୍ମାର୍ଜିତ ପାପ ନରହିବ ପୁଣି
ଏହାଶୁଣି ଭବସାଗରରୁ ତର ପ୍ରାଣୀ ।
ବିଷ୍ଣୁ ପଞ୍ଚକ ମାହାତ୍ମ୍ୟ ଅଟେ ସୁଧାବାଣୀ
ଦୀନ ମଧୁ ଭାବୁ ଥାଇ ବିଷ୍ଣୁପଦ ପୁଣି ।
ମୁଁ ଦୀନ ପାପୀ ଅଟଇ ଦିନେ ଭଜିନାହିଁ
ଦୟାକରି ହରି ମୋତେ ରଖିବେଟି ନେଇ
ଆଶ୍ରା କରିଅଛି ମୁହିଁ ସେ ପଦ୍ମପାଦକୁ
ନ ରଖିଲେ ଭାସିଯିବି କହିବି କାହାକୁ ।

ଇତି ଶ୍ରୀ ପଦ୍ମପୁରାଣେ ବ୍ରହ୍ମଖଣ୍ଡେ
ବିଷ୍ଣୁପଞ୍ଚକ ମାହାତ୍ମ୍ୟ ବର୍ଣ୍ଣନେ
ନାମ ତ୍ରୟୋବିଂଶ ଅଧ୍ୟାୟ ।



# ଚତୁର୍ବିଂଶ ଅଧ୍ୟାୟ

## ବିବିଧ ଦାନ ମାହାତ୍ମ୍ୟ ବର୍ଣ୍ଣନ

ଶୌନକ ପୁଛନ୍ତି ସୁତଦେବ ମୁଖଚାହିଁ
ଦାନମାହାତ୍ମ୍ୟ ମୋ ଆଗେ କହହେ ବୁଝାଇ ।
ସୁତ ବୋଲୁଛନ୍ତି ତୁମ୍ଭେ ମନଦେଇ ଶୁଣ
ଦାନ ମଧ୍ୟେ କ୍ଷିତି ଦାନ ଅଟଇଯେ ପୂଣ୍ୟ ।
ଶସ୍ୟଶାଳିନୀ ପୃଥିବୀ ଯେହୁ ଦାନ କରେ
ଚତୁର୍ଦ୍ଦଶ ଇନ୍ଦ୍ରଯାକେ ବସେ ସେ ସ୍ୱର୍ଗରେ ।
ପରକାଳେ ପୃଥିବୀରେ ପୁଣି ଜନ୍ମ ହୋଇ
ନରପତି ହୋଇ ସୁଖ ଭୋଗ କରୁଥାଇ ।
ଗୋଚର୍ମ ପରିମିତ ଯେ ଭୂମିଦାନ କରେ
ସର୍ବପାପ ନାଶି ସେହୁ ବସେ ବୈକୁଣ୍ଠରେ ।
ଶଏ ଗୋରୁ ଏକ ଷଣ୍ଢ ଯହିଁ ରହିପାରେ
ଗୋଚର୍ମ ପରିମିତ ଯେ ଭୂମିବୋଲି ତାରେ ।
ଭୂମି ଗ୍ରହୀତା ଓ ପୁଣି ସେହି ଭୂମିଦାତା
ଉଭୟେ ବସନ୍ତି ସ୍ୱର୍ଗେ ନାହିଁ ଯମ ତ୍ରାତା ।
ଶତଦାନ ପଡ଼ିତ୍ୟାଗ କରି ଦ୍ୱିଜବର
ଭୂମିଦାନ ଆଗ୍ରହରେ ନେବ ଜ୍ଞାନୀ ନର ।
ଯେ ଅଜ୍ଞାନୀ ବ୍ରାହ୍ମଣ ଯେ ଛାଡ଼େ ଭୂମିଦାନ
ପ୍ରତିଜନ୍ମେ ଦୁଃଖଭୋଗ କରୁଥାଏ ପୁଣ ।
ଯେଉଁ ନର ଅନ୍ୟଠାରୁ ନିଜେ ଭୂମିପାଇ
ଦାନ ପୁଣି କରେ ତାହା ଦ୍ୱିଜବରେ ନେଇ ।
ଇହକାଳେ ସୁଖଭୋଗ କରି ସେହି ମରେ
ଅନ୍ତକାଳେ ବସେ ପୁଣି ଯାଇଁ ବୈକୁଣ୍ଠରେ ।
ଯେ ନର ସ୍ୱଦତ୍ତା କିମ୍ବା ଅଟେ ପରଦତ୍ତା
ଭୂମି ହରଣ କରଣେ ନୁହେଁ ସେ କୁଣ୍ଠିତା ।
ସେହିପରି ଲୋକ ଏ ଜନ୍ମେ ଦୁଃଖଭୋଗେ ଗୁଣି
ମୃତ୍ୟୁ ଅନ୍ତେ ନରକରେ ପଡ଼େ ଦେହଘେନି ।
ଦେବ ଦ୍ୱିଜ ଭୂମି ଆଦି ଯେ କରେ ହରଣ
କୋଟି ଶତକଳ୍ପେ ନରକରେ ପଡ଼େ ପୁଣ ।
ପରଦତ୍ତ ଭୂମି ଯେଉଁ ରାଜା ରକ୍ଷାକରେ
କୋଟିଗୁଣ ପୁଣ୍ୟ ସେହି ପାଏ ତା ଶରୀରେ ।
ଦ୍ୱିଜାତିକି ଯେହୁ କଳା ଧେନୁ ଦାନକରେ
ସପ୍ତଦ୍ୱୀପ ମହୀ ଦାନ ଫଳହୁଏ ତାରେ ।
ଦୁଃଖି କୁଟୁମ୍ବିଜନଙ୍କୁ ବୃକ୍ଷ ଦାନ କଲେ
ସର୍ବପାପ ନାଶି ସେହୁ ବସେ ଶିବ ଆଳେ ।
ସ୍ୱର୍ଣ୍ଣଆଉ ରୌପ୍ୟ ଭକ୍ତିରେଯେ କରେଦାନ
ଇନ୍ଦ୍ରଲୋକେ ଯାଇଁ ସେହୁ କରେ ସୁଧାପାନ ।
ତୁଳା ପୁରୁଷ ଦାନେ ଯେ ପୁଣ୍ୟ ଲାଭକରେ
କୋଟି ଗୁଣ ଲାଭପାଏ ଶାଳଗ୍ରାମ ଦେଲେ ।
ସଶୈଳ ବନ କାନନ ସପ୍ତଦ୍ୱୀପା ମହୀ
ଦାନକଲେ ନର ପୁଣି ଯେଉଁ ଫଳପାଇ ।
ଶାଳଗ୍ରାମ ଶୀଳା ଯଦି କେହି ଦାନ କରେ
ତା ସମାନ ଫଳପାଇ ବସଇ ସ୍ୱର୍ଗରେ ।
ତୁଳା ପୁରୁଷ ଆବର ଶାଳଗ୍ରାମ ଦାନେ
ଜନନୀ ଗର୍ଭରେ ଜାତନୁହେଁ ଏ ଜନମେ ।
ସାଳଙ୍କରା କନ୍ୟାଯେହୁ ନର ଦାନକରେ
ବ୍ରହ୍ମଲୋକେ ବସେ ଯାଇଁ ସେହି ମୃତ୍ୟୁପରେ ।
କନ୍ୟା ବିକ୍ରୟ କାରୀର ନିଷ୍କୃତି ଯେ ନାହିଁ
କନ୍ୟାଦାନ କଲା ଲୋକ ନିଶ୍ଚେ ସ୍ୱର୍ଗପାଇ ।
ଉପାନହ ଯୁଗ ଆଉ ଆତପତ୍ର ଦାନେ
ମରଣାନ୍ତେ ଇନ୍ଦ୍ରପୁର ଯାଏ ସେ ବିମାନେ ।
ବ୍ରାହ୍ମଣଙ୍କୁ ଯେଉଁ ନର ବସ୍ତ୍ର ଦାନ କରେ
ଦିବ୍ୟ ଅମ୍ବର ଧାରଣେ ବସଇ ସ୍ୱର୍ଗରେ ।
ବୃଦ୍ଧା ଧେନୁ ଜୀର୍ଣ୍ଣବସ୍ତ୍ର ରଜସ୍ୱଳା କନ୍ୟା
ଦାନକଲେ ନରକରେ ହୋଏ ଅତି ଶୂନ୍ୟା ।
କନ୍ୟା ବିକ୍ରୟକାରୀଏ ମୁଖକୁ ଚାହିଁଲେ
ପାପ ନଛାଡ଼ଇ ସୂର୍ଯ୍ୟ ଦର୍ଶନ ନକଲେ ।
ଫଳମୂଳ ଶାକ ଆଦି ଦ୍ୱିଜେ ଦେଲେ ଦାନ
ଅନ୍ତେ ଶିବଲୋକେ କରେ ପାୟସ ଭୋଜନ ।
ଦଧି ଦୁଧ ଘୃତ ନବନୀତ କଲେ ଦାନ
ବିଷ୍ଣୁ ସଦନେ ଯାଇଣ କରେ ସୁଧାପାନ ।
ଗନ୍ଧ ପୁଷ୍ପ ସାର ସହ ଶଯ୍ୟା ଦାନକଲେ
ବ୍ରହ୍ମାସଦନେ ଯାଇଣ ସୁଖେ ବାସକରେ ।
ପୀଠଦାତା ଦୀପଦାତା ଆଦି ପରକାଳେ
ସ୍ୱର୍ଗରେ ଦୀପ ଜାଳିଣ ବସଇ ତକ୍ତାଳେ ।
ଯେ ନର ତାମ୍ବୁଳ ଦାନକରେ ଦ୍ୱିଜେ ପୁଣି
ଅନ୍ତେ ଅପ୍‌ସରୀ ସଙ୍ଗରେ ସୁଖେବସେ ପୁଣି ।
ବିଦ୍ୟାଦାନ କରେ ଯେହୁ ବ୍ରାହ୍ମଣ ପୁତ୍ରଙ୍କୁ
ଶ୍ରେଷ୍ଠଦାନ ବୋଲି ସେହୁ ବୁଝାଇ ତାହାଙ୍କୁ ।

ତିନିଶତ ଯୁଗ ପରିମିତ କାଳ ସେହି
ଦୁର୍ଲ୍ଲଭ ଜ୍ଞାନ ପାଇଣ ବସେ ସ୍ୱର୍ଗେ ଯାଇଁ ।
ଦରିଦ୍ର ଅନାଥ ବିପ୍ର ପୁତ୍ରେ କଲେ ଦାନ
ଅନ୍ତେ ପୁଣି ବିଷ୍ଣୁ ତାକୁ ବସାନ୍ତି ପାଖେଣ ।
ଶ୍ରଦ୍ଧାରେ ବିପ୍ରଙ୍କୁ ଯେହୁ ବହି କରେ ଦାନ
କୋଟି କପିଳାର ଦାନ-ଫଳ ପାଏ ପୁଣ ।
ମଧୁ ଶର୍କରା ଆବର ଲବଣ ଯେ ଦାନ
କରିଥିବା ନର ବସେ ବରୁଣ ପୁରେଣ ।
ମର୍ତ୍ତ୍ୟଲୋକେ ଅନ୍ନ ଜଳ ଯେହୁ ଦାନକରେ
ଅନ୍ତଃକାଳେ ଅନ୍ନଜଳ ପାଏ ବୈକୁଣ୍ଠରେ ।
କ୍ଷୁଧାତୃଷ୍ଣା ଆଉ ତାକୁ ନବାଧେ ସେଠାରେ
ବ୍ରହ୍ମହତ୍ୟା ପାପଆଦି ନଥାଏ ଶରୀରେ ।
ଅନ୍ନଦାନ ଦେଇ ପୁଣ ଫେରାଏ ଯେ ନର
ସହସ୍ର କଳ୍ପ ପର୍ଯ୍ୟନ୍ତ ପଡ଼େ ନରକର ।
ପୁଣି ଜନ୍ମହୁଏ ଆସି ଦରିଦ୍ରର ଘର
ଭିକ୍ଷା ମାଗିଣ ନପୁରେ ପେଟ ଯେ ତାହାର ।
ବସ୍ତ୍ର ଆଦି ଦାନ ଦେଇ ଫେରାଏ ଯେ ନର
ପରଜନ୍ମେ ବସ୍ତ୍ର ତାକୁ ନମିଳେ ଶରୀର ।
ଧନ ଅର୍ଜ୍ଜିଣ ଧର୍ମ ଯେ ନ କରଇ ପୁଣି
ସେ ଧନରେକି କାରଣ ବୋଲେ ଶାସ୍ତ୍ରବାଣୀ ।
ଧନଦାନ ଦେଇ ନର ଦରିଦ୍ର ହୋଇଲେ
ଦରିଦ୍ର ନକହି ତାକୁ ମହେଶ୍ୱର ବୋଲେ ।
ଧନ ଥିଲେ ଦାନ ଆଉ ଭୋଜନ ନକଲେ
କ୍ଷୁଧା ତୃଷାରେ ସେ କଷ୍ଟପାଏ ଯମଆଳେ ।
ମହାଋଷିମାନେ ବୋଲିଯାଇଛନ୍ତି ପୁଣ
ତପସ୍ୟାଠାରୁଟି ଦାନ ଶ୍ରେଷ୍ଠ ଅଟେ ଜାଣ ।
ଉତ୍ସର୍ଗ କରିଣ ଦାନ ନକରଇ ଯେହୁ
ଭୟାଭୟ ନରକରେ ପଡ଼ିଥାଏ ସେହୁ ।
ଯୋଗ୍ୟ ଦେଶ କାଳ ପାତ୍ର ଘଟିଲେଟି ପୁଣି
ଦାନ ନକରି ଭୁଲିଣ ଯାଏ ଯଦି ପ୍ରାଣୀ ।
ପ୍ରତିଗ୍ରାହୀ ଯଦି ମଧ ପ୍ରାର୍ଥନା ନକରେ
ଦାତା ପ୍ରତିଗାହୀ ଦୁହେଁ ପଡ଼ନ୍ତି ନର୍କରେ ।
ଚନ୍ଦ୍ର ଦିବାକର ଯେତେଦିନ ଥାନ୍ତି ରହି
କେତେକାଳ ନରକରେ ପଡ଼ିଥାନ୍ତି ଯାଇ ।
ଦାନ ଅଟଇ ଯେ କଳିଯୁଗେ ଶ୍ରେଷ୍ଠଧର୍ମ
ତପସ୍ୟା କରିଣ କିବା ପାଉଥାନ୍ତେ ପୁଣ ।
ଦାନର ମହିମା କେହୁ କହି ନପାରଇ
ବ୍ରହ୍ମା ହେଲେ କହିବାକୁ ସମର୍ଥ ନୁହଇ ।
ଦାନ କରିଣ ସଂସାରୁ ତର ଆହେ ପ୍ରାଣୀ
ଏ ପଦ୍ମପୁରାଣ ଦୀନ ମଧୁ ଦାସ ଭଣି ।

ଇତି ଶ୍ରୀ ପଦ୍ମପୁରାଣେ ବ୍ରହ୍ମଖଣ୍ଡେ
ଦାନମାହାତ୍ମ୍ୟ ବର୍ଣ୍ଣନେ ନାମୋ
ଚତୁର୍ବିଂଶ ଅଧ୍ୟାୟ ।



## ପଞ୍ଚବିଂଶ ଅଧ୍ୟାୟ

### ନାମକୀର୍ତ୍ତନ ବିଧାନ ବର୍ଣ୍ଣନ

ଶୌନକ ପୁଚ୍ଛନ୍ତି ସୁତଦେବ ମୁଖ ଚାହିଁ
ନାମ କୀର୍ତ୍ତନ ମାହାତ୍ମ୍ୟ କହହେ ବୁଝାଇ ।
ଦୁଷ୍ଟଗ୍ରହ ନିବାରକ ସର୍ବ ପାପହାରି
ଚତୁର୍ବର୍ଗ ଫଳଧାତା ଅଟେ ବିଷ୍ଣୁଧାରୀ ।
ସୁତଦେବ କହୁଛନ୍ତି ଶୌନକକୁ ଚାହିଁ
ନାମ କୀର୍ତ୍ତନ ମାହାତ୍ମ୍ୟ ଶୁଣ ମନଦେଇ ।
ଏକଦା ସନତକୁମାରଙ୍କ ନିକଟରେ
ନାରଦ ପଚାରିଥିଲେ ଏହା ସଂକ୍ଷେପରେ ।
ତାହା ମୁହିଁ କହୁଅଛି ମନଦେଇ ଶୁଣ
ଯାହା ଶୁଣନ୍ତେଣ ପାପ ନରହେ ଦେହେଣ ।
ସନତକୁମାର ଏହାଶୁଣି କହୁଛନ୍ତି
ତୁମ୍ଭେ ଯେ ଗୋବିନ୍ଦପ୍ରିୟ ନାରଦମହର୍ଷି ।
କିପରିଯେ ଲୋକେ ପାପୁଁ ମୁକ୍ତ ହୋଇଯିବେ
ତାହା ପଚାରିଛ ମୁନି ମୋତେ ଏହିଠାବେ ।
ସର୍ବଚାର ବର୍ଜିତ ଯେ ଶଠବୁଦ୍ଧି ଅଟେ
ପାପୀଷ୍ଠ ନିଷ୍ଠୁର ଦମ୍ଭୀ ଅହଙ୍କାରୀ ଅଟେ ।
ଧନ ଦାରା ପୁତ୍ର ଦ୍ୱାରା ଯେ ବେଷ୍ଟନ ଥାଏ
ଗୋବିନ୍ଦ ପଦାରବିନ୍ଦେ ଶରଣ ଯେ ନିଏ ।
ଶ୍ରୀହରି ପାଦରେ ପାପ କରିଥିଲେ ପୁଣି
ଏକା ହରିନାମେ ପାପ ନରହେଟି ପୁଣି ।
ହରି ନିକଟରେ ଅପରାଧ କରିଥିଲେ
ହରିନାମ ଆଶ୍ରୟରେ ମୁକ୍ତିପାଏ ଭଲେ ।
ଯେଉଁ ସାଧୁଠାରେ ଭଗବାନ ନାମ ଖ୍ୟାତି
ସେ ସାଧୁର ନିନ୍ଦା ପ୍ରଭୁ ସହି ପାରନ୍ତି ।

ସାଧୁ ନିନ୍ଦା ଅଟଇ ଯେ ମହା ଅପରାଧ
ହରିନାମ ଶତ୍ରୁ ଅଟେ ଭିନ୍ନରୂପେ ବୋଧ ।
ଗୁରୁଙ୍କୁ ଅବଜ୍ଞା ଆଉ ସ୍ମୃତି ଶାସ୍ତ୍ରେ ନିନ୍ଦା
ହରିନାମେ ଅର୍ଥବାଦ କଳ୍ପନାଦି ବାଧା ।
ଏ ସବୁକୁ ଅପରାଧ ବୋଲି ଶାସ୍ତ୍ରେ ଗଣି
ମୃତ୍ୟୁ ଅନ୍ତେ ଯମ ତାକୁ ନ ଛାଡ଼ଇ ପୁଣି ।
ଧର୍ମ ବ୍ରତ ଦାନ ହୋମେ ଯାର ମନ ନାହିଁ
ହରିନାମେ ଶ୍ରଦ୍ଧା ଆଉ ଅବଧାନ ନାହିଁ ।
ବ୍ରହ୍ମଜ୍ଞାନ ଆଦି ଉପଦେଶ ତାକୁ ଦେଲେ
ଶିବାପରାଧରେ ଗଣ୍ୟ ହୁଅନ୍ତି ସେ ନରେ ।
ନାମ ମାହାତ୍ମ୍ୟ ଶୁଣିବା ଯାର ପ୍ରୀତି ନାହିଁ
ଅହଙ୍କାର ମମତାରେ ନିରତେ ଯେ ଥାଇ ।
ହେ ନାରଦ କହୁଅଛି ମୁହିଁ ଏବେ ଶୁଣ
ମହାଅପରାଧି ସେହୁ ନର ଅଟେ ଜାଣ ।
ମୁକ୍ତହେବାକୁ ଚାହିଁଲେ କର ହରିନାମ
ସମସ୍ତ ସିଦ୍ଧହୋଇବ ଆଉ ପୂର୍ଣ୍ଣ କାମ ।
ଯଦି ନାମାପରାଧ ବା ଦଇବେ ଘଟିବ
ସେହି ନାମ ରଟିଲେ ତା ଦୋଷ କ୍ଷୟଯିବ ।
ଶରଣ ପଶିବ ଯାଇ ଶ୍ରୀହରିଙ୍କଠାରେ
ଅବିଶ୍ରାନ୍ତ ମନମଧ୍ୟେ ଭଜ ହରେ ହରେ ।
ଶୁଦ୍ଧ ବା ଅଶୁଦ୍ଧଭାବେ ଶ୍ରୀହରିଙ୍କ ନାମ
ଭଜିଲେ ତାହାକୁ ଆଉ ନଦଣ୍ଡିବ ଯମ ।
ସ୍ମରଣ ପଥରେ ଅବା ପଡୁ କର୍ଣ୍ଣମୂଳେ
ଉଦ୍ଧାର ହୋଇବ ମଧ ମହାପାପୀ ହେଲେ ।
ଦେହ ସୁଖ ଅର୍ଥ ଅବା ବନିତାର ଲୋଭେ
ହରିନାମ ମନମଧ୍ୟେ ଯଦି କେହୁ ଭାବେ ।
ସେ ନାମରେ ଫଳ ନାହିଁ ପୁଣି ଶାସ୍ତ୍ର କହି
ପାଷାଣ୍ଡ ସଙ୍ଗରେ ସେହୁ ଗଣ୍ୟ ହୋଇଥାଇ ।
ଅପରାଧି ନରମାନେ ଯଦି ବିଷ୍ଣୁ ନାମେ
ଅଜ୍ଞାନ ହୋଇଣ ଯଦି ବୁଲୁଥାନ୍ତି ଭ୍ରମେ ।
ବୁଝୁ ବା ନବୁଝୁ ଯଦି ଥରେ ଶୁଣିଥାଏ
ନାମର ମହାତ୍ମ୍ୟ ଫଳେ ସେହୁ ମୁକ୍ତିପାଏ ।
ହରିନାମ ଶ୍ରବଣରେ ଯାର ଶ୍ରଦ୍ଧାଥାଏ
ବିଷ୍ଣୁ ଆଉ ଶିବ ତାର ଗୃହରେ ବିଜୟେ ।
ପୁଷ୍କର ତୀର୍ଥରେ ଅବା ପ୍ରୟାଗରେ ସ୍ନାନ
ଗଙ୍ଗା ଯମୁନାରେ ଅବା ସିନ୍ଧୁରେ ଯେ ସ୍ନାନ ।
କରି ଫଳପାଏ ଯେଉଁ ନର ପୃଥିବୀରେ
ହରିନାମ ତୁଲ୍ୟ ସେହୁ ସୁମନୋହେ ବାରେ ।
ପୁରାଣ ପଠନ ଅବା ପୁରାଣ ଶ୍ରବଣ
ପ୍ରତିଦିନ ଯେଉଁ ନର କରୁଥାଏ ପୁଣ ।
ସହସ୍ର କପିଳା ଦାନ ଫଳପାଏ ସେହୁ
ମୃତ୍ୟୁଅନ୍ତେ ଯମଦଣ୍ଡ ନ ଲାଗଇ ଆଉ ।
ପୁରାଣ ଶ୍ରବଣେ ଯେଉଁ ଫଳମାନ ହୁଏ
ନାମ କୀର୍ତ୍ତନର କଥା ଶୁଣ ମହାଶୟେ ।
ଅପୁତ୍ରୀର ପୁତ୍ର ହୁଏ ଧନାର୍ଥୀର ଧନ
ବିଦ୍ୟାର୍ଥୀର ବିଦ୍ୟାହୁଏ ପାଏ ମୋକ୍ଷସ୍ଥାନ ।
କୋଟି ଜନ୍ମାର୍ଜ୍ଜିତ ପାପ ନରହେ ଦେହରେ
ମୃତ୍ୟୁଅନ୍ତେ ବସେ ପୁଣିଯାଇଁ ବୈକୁଣ୍ଠରେ ।
ଗୋରୁ ଭୂମି ବସ୍ତ୍ର ଆଦି ଦକ୍ଷିଣା ଯେ ଦାନ
ପଢୁଥିବା ବ୍ରାହ୍ମଣଙ୍କୁ ପୂଜିବ ଯତନ ।
ଜଳପାତ୍ର ଅନ୍ନପାତ୍ର ଆଉ ବସ୍ତ୍ର ଦାନ
ସୁବର୍ଣ୍ଣ ମୁଦ୍ରିକା ଆଉ ପୁଷ୍ପମାଳ ଦାନ ।
ଦାନଦେଇ ଦାଣ୍ଡେ ଆଉ ନ କହିବ କେବେ
ନିଷ୍ଫଳ ହୋଇଣ ଶୁଣୁଥିବ ଶାସ୍ତ୍ର ତେବେ ।
ସେହିପରି ପୁରାଣକୁ ପୂଜିବ ଭକ୍ତିରେ
ଗନ୍ଧପୁଷ୍ପ ଧୂପ ଦୀପ ନୈବିଦ୍ୟ ଆଦିରେ ।
ପୁରାଣ ପଢ଼ିବାଦିନ ବ୍ରାହ୍ମଣ ଭୋଜନ
ନାନା ଧନ ରତ୍ନ ଆଉ ବସ୍ତ୍ର ଦେବ ଦାନ ।
ପୁରାଣ ଶୁଣିବା ନର ସର୍ବପାପ ପୁଣି
ଉଦ୍ଧାର ହୋଇଣବସେ ବୈକୁଣ୍ଠରେ ଜାଣି ।
ଏ କଳିଯୁଗରେ ନାମ କୀର୍ତ୍ତନହିଁ ସାର
ପ୍ରଚାର କରିଅଛନ୍ତି ଗୌରାଙ୍ଗ ସୁନ୍ଦର ।
ହରି ହରି ନାମ ବୋଲି ଭଜୁଥିବ ତୁଣ୍ଡେ
ବ୍ରହ୍ମହତ୍ୟା ଆଦି ପାପ ନରହିବ ପିଣ୍ଡେ ।
ଭଜରେ ଅଧମ ନର ସେ ଚକାଡ଼ୋଳାଙ୍କୁ
ପାରି କରିବେ ସଂସାରୁ ସେ ପରା ଆମ୍ଭଙ୍କୁ ।
ନମୋ ନମୋ ଜଗନ୍ନାଥ ନମୋ ମହାବାହୁ
ଦୟାକର ପ୍ରଭୁ ନାମ ଭଜି ଦିନ ଯାଉ ।
ସେହି ନାମକୁ ଆଶ୍ରୟ କରିଅଛି ମୁହିଁ
ମଧୁସୂଦନ ଭାବଇ ଭୟ ମୋର ନାହିଁ ।

ଇତି ଶ୍ରୀ ପଦ୍ମପୁରାଣେ ବ୍ରହ୍ମଖଣ୍ଡେ
ନାମକୀର୍ତ୍ତନ ମାହାତ୍ମ୍ୟ ବର୍ଣ୍ଣନେ
ନାମୋ ପଞ୍ଚବିଂଶ ଅଧ୍ୟାୟ ।

## ଷଡ଼ବିଂଶ ଅଧ୍ୟାୟ

### ପ୍ରତିଶ୍ରୁତି ପାଳନ ମାହାତ୍ମ୍ୟ କଥନ

ଶୌନକ ପୁଚ୍ଛନ୍ତି ସୁତଦେବ ମୁଖ ଚାହିଁ
ପ୍ରତିଜ୍ଞା ପାଳନ କଥା କହ ହେ ବୁଝାଇ ।
ପ୍ରତିଜ୍ଞା ଅପାଳନରେ କିବା ପାପ ହୁଏ
ପ୍ରତିଜ୍ଞା ପାଳନେ ଅବା କେଉଁ ପୁଣ୍ୟ ହୁଏ ।
ଅସତ୍ୟ ଶପଥେ ଅବା ସତ୍ୟର ଶପଥେ
କେଉଁଫଳ ହୁଏ ମୁନି କହ ତାହା ମୋତେ ।
ସୁତଦେବ କହୁଛନ୍ତି ଶୌନକ ଆଗର
ଯାହା ପଚାରିଲ ତାହା ଶୁଣ ହେ ନିକର ।
ଶତଧେନୁ ଦାନକଲେ ଯେ ଫଳ ହୁଅଇ
ପ୍ରତିଜ୍ଞା ପାଳନେ ତହୁଁକୋଟିଗୁଣ ହୋଇ ।
ପ୍ରତିଜ୍ଞା ଅପାଳନରେ ନରକ ଗମନ
ଶତ ମନ୍ୱନ୍ତର ଯାଏ ରହଇ ପଡ଼ିଣ ।
ତହିଁପରେ ଦରିଦ୍ର ଗୃହରେ ଜନ୍ମ ହୋଇ
ନିଜ କର୍ମ ଅନୁସାରେ କ୍ଲେଶ ଭୋଗୁଥାଇ ।
ଦେବତା ଅଗ୍ନି ଯେ ଗୁରୁଜନ ନିକଟରେ
ସତ୍ୟ ଶପଥରେ ମଧ ପାପ ହୁଏ ତାରେ ।
ବଂଶ ଲୋପ ନ ହୋଇବା ପରିଯନ୍ତେ ତାର
ବିଷ୍ଣୁଙ୍କର ଗାତ୍ର ଦାହ ହୁଏ ନିରନ୍ତର ।
ଅସତ୍ୟ ଶପଥ କଥା କି କହିବି ପୁଣି
ନରକରେ ପଡ଼ି କଷ୍ଟ ପାଉଥାଏ ପୁଣି ।
ନିର୍ମାଲ୍ୟ ସ୍ପର୍ଶ କରିଣ ସତ୍ୟ ଶପଥରେ
ତାହାର ସପ୍ତପୁରୁଷ ପଡ଼ନ୍ତି ନର୍କରେ ।
ତହୁଁ ସେହି ମର୍ତ୍ତ୍ୟେ ନରଜନ୍ମ ଲାଭକଲେ
ପ୍ରତିଜନ୍ମେ କୁଷ୍ଠରୋଗ ଗ୍ରସ୍ତହୋଏ ତାରେ ।
ଅସତ୍ୟ ଶପଥ କଥା କି କହିବି ମୁହିଁ
ସେ ପାପର କଥା ଆଉ ମୁଖେ ନ ଧରଇ ।
ଦକ୍ଷିଣ କର ଦ୍ୱାରା ଏ ସତ୍ୟ ରକ୍ଷା କଲେ
କୃଷ୍ଣପ୍ରାପ୍ତି ନିଶ୍ଚେ ତାର ହୁଅଇଟି ଭଲେ ।
ସତ୍ୟ କରି ଯଦି ତାହା ପାଳନ ନ କରେ
ତାର ପିତୃଗଣ କଷ୍ଟ ପାନ୍ତି ନିରନ୍ତରେ ।
ନିଜେ ମୃତ୍ୟୁ ଅନ୍ତେ କୋଟି ପୁରୁଷର ସହ
ଉଦଗାରଣ୍ୟ ନରକରେ ପଡ଼େ ଅହରହ ।
ଶୌନକ ପୁଚ୍ଛନ୍ତି ବ୍ୟାସ କହ ମୋତେ ପୁଣି
ଦକ୍ଷିଣ କର ଶପଥେ କେଉଁ ଫଳ ପୁଣି ।
କୃଷ୍ଣପ୍ରାପ୍ତି କାହାର ବା କିରୂପେ ହୋଇଲା
ତାହା ବିବରଣ ମୋତେ କହ ମୁନି ଭଲା ।
ସୁତଦେବ କହୁଛନ୍ତି କାଞ୍ଚିନାମ ପୁରେ
ବୀର ବିକ୍ରମ ଶୂଦ୍ରେକ ଥିଲା ଯେ ତହିଁରେ ।
ବହୁ ଭୋଜୀ ବିପୁଳାଙ୍ଗ ବହୁଭାଷି ଅଟେ
ଧନବାନ ପୁତ୍ରବାନ ସତ୍ୟପଣେ ଖଟେ ।
ପ୍ରତିଜ୍ଞା ପାଳନ ଆଉ ଦେବ ବିପ୍ରେ ଭକ୍ତି
ବିଷ୍ଣୁ ପୂଜକ ଅଟଇ ସଦା ଅଟେ ମତି ।
ଏକଦା ଏକ ସୁନ୍ଦର ଶ୍ୱପଚ ଅଇଲା
ବ୍ରାହ୍ମଣର ରୂପ ଧରି ଶୂଦ୍ରକୁ କହିଲା ।
ମୋର ପତ୍ନୀ ମରିଗଲା କି କରିବି ଭାବି
କି ବୁଦ୍ଧି କରିବି ମୁହିଁ କେଉଁଠାକୁ ଯିବି ।
ବ୍ରାହ୍ମଣକୁ ବିଭାକରି ଦେବା ପୁଣ୍ୟ କଥା
କୋଟି ଯଜ୍ଞ କୋଟି ବ୍ରତ ନୁହେଁ ସାମରଥା ।
ବୀର ବିକ୍ରମ ଯେ ଶୁଣି ଉତ୍ତର କହିଲା
ମୋର ଏକ କନ୍ୟାଅଛି ବିଭା ଦେବି ଭଲା ।
ବିଧି ପୂର୍ବକ ଦାନ ମୁଁ କରିବି ପାଞ୍ଚିଛି
ଦକ୍ଷିଣ ହସ୍ତ ଦ୍ୱାରା ମୁଁ ଶପଥ କରିଛି ।
ଅନ୍ୟଥା କରିବି ନାହିଁ କହୁଛି ତୁମ୍ଭଙ୍କୁ
ତା ଶୁଣି ବ୍ରାହ୍ମଣ ତାର ଧଇଲା କରକୁ ।
ଶୁଭକ୍ଷଣ ଦେଖି କନ୍ୟା ବିଭାକର ମୋତେ
ବିଳମ୍ବରେ ବହୁ ବିଘ୍ନ କହିଲି ନିଶ୍ଚିତେ ।
ବୀର ବିକ୍ରମ ଶୁଣିଲା କହିଲା ତାହାଙ୍କୁ
ଅନ୍ୟଥା ନକରି କାଲିଦେବି ମୁଁ କନ୍ୟାକୁ ।
ଦକ୍ଷିଣ କର ଦ୍ୱାରାଏ ଶପଥ କରିଣ
ପ୍ରତିଜ୍ଞା ରକ୍ଷା ନକଲେ ଅଟେ ପାପୀପୁଣ ।
ତହୁଁ ତାତ ପୁରୋହିତ କୃଷ୍ଣଶର୍ମା ଡାକି
ଏ ସମ୍ବାଦ ଜଣାଇଲା ସମସ୍ତ ନିବେଦି ।
ପୁରୋହିତ ଶୁଣି ବୀର ବିକ୍ରମେ କହିଲା
ବ୍ରାହ୍ମଣ ଶୂଦ୍ରକନ୍ୟାକୁ ନେବାକୁ ପାଞ୍ଚିଲା ।

ବ୍ରାହ୍ମଣକୁ ଯେଉଁପରି କରିବ ହେ ବିଭା
ଆବର ଅଜ୍ଞାନ ଅକୁଳୀନ ଲୋକ ସେବା ।
ଅଜ୍ଞାତ ଅକୁଳୀନକୁ କେଉଁପରି କନ୍ୟା
ଦାନ ଦେବା କଥା ଋଷି କରିଛନ୍ତି ମନା ।
କୁଳ ଦେଶ ଗୋତ୍ର ଗୁଣ ଯାର ଜଣାନାହିଁ
ଆବର ଶୀଳ ବୟସ କନ୍ୟା ଦେବାକୁହିଁ ।
ବୀର ବିକ୍ରମ ଶୁଣିଣ କହିଲା ଠାକୁରେ
ମୁହିଁ ପ୍ରତିଜ୍ଞା କରିଛି ଦକ୍ଷିଣ କରରେ ।
କଦାଚ ଅନ୍ୟଥା ମୁହିଁ କରି ନପାରିବି
ବ୍ରାହ୍ମଣକୁ କନ୍ୟା ମୁହିଁ ନିଶ୍ଚୟ ବରିବି ।
ଏହାଶୁଣି ସର୍ବ ଜ୍ଞାତୀ ପାଶେ ଆସି ତାର
ବିସ୍ମୟରେ ମନଦୁଃଖ ହୋଇଲା ତାଙ୍କର ।
ବୀର ବିକ୍ରମର ସେହି ସତ୍ୟ କଥା ଶୁଣି
ଉପସ୍ଥିତ ହେଲେ ଶଙ୍ଖ ଚକ୍ର ଗଦା ପାଣି ।
ଗରୁଡାରୋହଣେ ଆବିର୍ଭୂତ ହୋଇ ଆସି
ବୀର ବିକ୍ରମକୁ ଚାହିଁ କହିଲେ ସେ ହସି ।
ତୋର କୁଳ ଧର୍ମ ପିତା ମାତା ଆଦି କରି
ତୋର କର୍ମ ତୋର ଜନ୍ମ ଧନ୍ୟଟି ସବୁରି ।
ଦକ୍ଷିଣ କର ଦ୍ୱାରା ଏ ସତ୍ୟ ଯା କରିଛୁ
ସେହି ପୁଣ୍ୟଫଳେ ତୁହି ତ୍ରିଲୋକ ଜିଣିଛୁ ।
ତୋରକୁଳ ତୋରପିତୃ ଉଦ୍ଧାର ହୋଇବେ
ତୋର ଜ୍ଞାନୀମାନେ କିମ୍ବା ବିମର୍ଷ ଯେହେବେ ।
ଏହା ଶୁଣିଣ ସମସ୍ତେ ଯେ ସ୍ୱୀକାର କରିଲେ
ବୀରବିକ୍ରମ କନ୍ୟାକୁ ବ୍ରାହ୍ମଣଙ୍କୁ ଦେଲେ ।
ଯଥାବିଧିରେ କନ୍ୟାକୁ ବିଭା କରାଇଣ
ବିଦାୟ କରିଲେ ତାକୁ ସର୍ବେ ମିଶି ପୁଣ ।
ଗରୁଡ଼ଧ୍ୱଜ ଆବର ଶ୍ୱେତଛତ୍ର ସହ
ସ୍ୱର୍ଣ୍ଣ ନିର୍ମିତ ବିମାନ ଆସିଲା ସେଠାବ ।
ବିଷ୍ଣୁ ଦୂତଗଣ ତହୁଁ ସମସ୍ତଙ୍କୁ ନେଇ
ବୈକୁଣ୍ଠକୁ ଚାଲିଗଲେ ହରଷିତ ହୋଇ ।
ଦକ୍ଷିଣ କର ଦ୍ୱାରା ଯେ ଶପଥ କରିଣ
ବଚନ ନପାଳି ପୁଣି ଭାବୁଥାଏ ଜାଣ ।
ସର୍ବକୁଳ ଜ୍ଞାତି ସହ ନରକେ ପଡ଼ଇ
ପିତୃ ଦେବଗଣ ଆଦି ଜଳ ଯେ ନପାଇ ।
ତାର ଗୃହ ପରିତ୍ୟାଗ କରି ଧର୍ମଦେବ
ଲକ୍ଷ୍ମୀ ସହ ଚାଲିଯାନ୍ତି ସେଠାବରୁ ଯବ ।

ଯେଉଁ ନର ଆଶା ଦେଇ ନିରାଶ କରଇ
କୋଟି ପୁରୁଷ ସହ ସେ ନରକେ ପଡ଼ଇ ।
ବାକ୍ୟଦାନ କରିଯେହୁ ଅନ୍ୟଥା ତା କରେ
ଅଗ୍ନି ଆଉ କଣ୍ଟା ଦ୍ୱାରା ଯମ ଦଣ୍ଡେ ତାରେ ।
ଶୁକଦେବ କହୁଛନ୍ତି ଶୌନକ ଶୁଣନ୍ତି
ଏ ପଦ୍ମପୁରାଣ ବ୍ରତଖଣ୍ଡ ତାର ରୀତି ।
ଏ ପୁରାଣ ଯେଉଁ ନର ଭକ୍ତିରେ ଶୁଣିବ
ତାର ଘରେ ଧର୍ମ ଲକ୍ଷ୍ମୀ ବିରାଜିତ ହେବ ।
ଅପୁତ୍ରୀ ଶୁଣିଲେ ପୁତ୍ର ହୋଏ ତାର ଜାତ
ଅନ୍ଧ କୁଷ୍ଠ ଶୁଣିଲେ ଯେ ରୋଗୁହୋନ୍ତି ମୁକ୍ତ ।
ପାପୀମାନେ ଏହାଶୁଣି ସଂସାରୁ ତରନ୍ତି
ମୃତ୍ୟୁଅନ୍ତେ ସେହିମାନେ ବୈକୁଣ୍ଠକୁ ଯାନ୍ତି ।
ଭୂତଳେ ପୁରାଣ ସମ ନାହିଁ କିଛି ଆନ
ପଢ଼ିଲେ ଶୁଣିଲେ ମୁକ୍ତି ଲଭେ ସର୍ବ ଜନ ।
ସର୍ବ ଦୁଃଖ ନାଶହୁଏ କରିଲେ ଶ୍ରବଣ
ଶ୍ରୀହରି ଚରଣ ଲଭେ ସେହି ସାଧୁଜନ ।
ସମୁଦାୟ କିମ୍ବା ଅଧେ ପଢ଼ନ୍ତି ଯେ ନରେ
ଭବସିନ୍ଧୁ ତରନ୍ତି ସେ ଶ୍ରୀକୃଷ୍ଣଙ୍କ ବରେ ।
ଗୋଟିଏ ଅଧ୍ୟାୟ ପଢ଼େ ଯେଉଁ ସାଧୁଜନ
ଜାତିସ୍ମର ଫଳ ପାଏ ସେହି ମହାଜନ ।
ପ୍ରତିଦିନ ପ୍ରାତଃକାଳେ ତେଜିଣ ଶୟନ
ଯେଉଁ ଜନ ମୁଖେଧରେ ଶ୍ରୀକୃଷ୍ଣର ନାମ ।
ଜପ ତପ ତାର ଆଉ କିବା ପ୍ରୟୋଜନ
ଅନ୍ତିମେ ସେ ଜନ କରେ ଗୋଲୋକେଗମନ ।
ପୁରାଣରେ ସାର ଏହି ଶ୍ରୀପଦ୍ମପୁରାଣ
ବ୍ୟାସଙ୍କ ଚରିତ ଏହି ଅପୂର୍ବ ଆଖ୍ୟାନ ।
ଭବରୋଗେ ମହୌଷଧି ଅଟେ ଏ କେବଳ
ଏହି ସିନା ଅଟେ ଏକା ଭବ ତାପ କାଳ ।
ଏହି ଗ୍ରନ୍ଥ ଭକ୍ତିଭାବେ ଯଦି କେହୁ ପଢ଼େ
ଅଥବା ଯତନେ ରଖେ ଆପଣା ମନ୍ଦିରେ ।
ବହୁ ପୁଣ୍ୟ ଉପାର୍ଜନ କରଇ ସେ ଜନ
ତାହାର ପୁଣ୍ୟର କଥା କେ କରେ ବର୍ଣ୍ଣନ ।
ଏହି ଗ୍ରନ୍ଥ ଭକ୍ତିଭାବେ ପୂଜେ ଯେ ଆଦରେ
ସେହି ଜନ ଇହଲୋକେ ସୁଖରେ ବିହରେ ।
ଏହାର ବଳରେ ନ ରହଇ କିଛି ଭୟ
ଦୂରରେ ରହଇ ରୋଗ ଶୋକ ପାପଚୟ ।

ଖଳ ଦୁଷ୍ଟ ଦେବ ନିନ୍ଦା କାରୀ ଯେଉଁ ଜନ
ତାହାର ଆଗରେ ଏହା ନକର ପଠନ ।
ସାଧୁଜନ ପାଶେ ପୁଣି କରିଲେ କୀର୍ତ୍ତନ
ମହିମା ବଢ଼ିବ କ୍ରମେ ବେଦର ବଚନ ।
ଯେଉଁ ଜନ କୃଷ୍ଣ ନାମ ଜପକରେ ନିତି
ସହଜେ ଜିଣଇ ସେହୁ ସକଳ ଦୁର୍ଗତି ।
ଅଚଳା ହୋଇ କମଳା ରହଇ ତା ଘରେ
ଅନ୍ତକାଳେ ସେହି ପୁଣି ବସଇ ସ୍ୱର୍ଗରେ ।
ଜୟ ଜୟ ଦୀନବନ୍ଧୁ ଅଗତି ତାରଣ
ଜୟ ଜୟ କୃପାସିନ୍ଧୁ ଭକ୍ତ ଉଦ୍ଧାରଣ ।

ଚ-ରଣେ ପ୍ରଣାମକରେ ଦୟାକର ମୋତେ ।
ଉ-ଦ୍ଧରି ରଖିବାକୁ କେ ନାହିଁ ଏ ଜଗତେ ।।
ଧୁ-ରନ୍ଧର ଏକା ଅଟ ତୁମ୍ଭେ ଚକ୍ରଧର ।
ରୀ-ପୁ ସଂହାରଣ କରିବାକୁ ତୁମ୍ଭେ ମୋର ।।
ମ-ହିମା ତୁମ୍ଭର ଭବେ ପ୍ରକାଶୁଛି ମୁହିଁ ।
ସ୍ମୃ-ମ୍ରି ପ୍ରାୟେ ଉଡ଼ିଯିବ ପାପ ତାପ ଦୁଇ ।।
ଭୁ-କର୍ମ ମୋହର ଏହି ଗ୍ରନ୍ଥ କଲି ଶେଷ ।
ଦ-ଣ୍ଡ ନ ଦେଉ ମୋତେ ହେ ଯମ କାଳପାଶ ।।
ନ-ମୁଛି ମୁଁ ପଦ୍ମପାଦେ ବିନୟ ହୋଇଣ ।
ମ-ତେ ରକ୍ଷା କର ପ୍ରଭୁ ଆହେ ଜନାର୍ଦ୍ଦନ ।।
ହା-ବୋହି ପଡ଼ିଛି ମୁହିଁ ଏ ଭବସାଗର ।
ପା-ରିକର ମୋତେ ପ୍ରଭୁ ହୋଇ କର୍ଣ୍ଣଧାର ।।
ତ୍ର-ସ୍ତ ହେଉଅଛି ମୁହିଁ ଯମଦଣ୍ଡ ଦେଖି ।
ର-କ୍ଷାକର ଦୀନବନ୍ଧୁ ତୁମ୍ଭେ ମୋର ସାକ୍ଷୀ ।।

ମଧୁସୂଦନ ଯେ ମୁହିଁ କରିଅଛି ଆଶ
ତୁମ୍ଭ ଛଡ଼ା କେଉଁଠାରୁ ପାଇବି ମୁଁ ଯଶ ।
ହରି ହରି ବୋଲି ମୋର ଦିନ ସଦା ଯାଉ
ଦୁସ୍ତର ସାଗରୁ ମୋତେ ରଖ ମହାବାହୁ
ଏ ପଦ୍ମପୁରାଣ ଅଟେ ଅମୃତର ବାଣୀ
ଭବତରଙ୍ଗିଣୀ ପାର ହୁଅ ଏହା ଶୁଣି ।

ଇତି ଶ୍ରୀ ପଦ୍ମପୁରାଣେ ବ୍ରହ୍ମଖଣ୍ଡେ ସୁତ ଶୌନକ ସମ୍ବାଦେ ପ୍ରତିଶ୍ରୁତିପାଳନ
ମାହାତ୍ମ୍ୟ କଥନ ଓ ଫଳଶ୍ରୁତି କଥନ ନାମୋ ଷଡ଼ବିଂଶ ଅଧ୍ୟାୟ ।
ଇତି ବ୍ରହ୍ମଖଣ୍ଡ ସମାପ୍ତ ।


ଧର୍ମ




ଧର୍ମ


TM